ଶୁଦ୍ରମୁନି ୪ ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ଶୂଦ୍ରମୁନି ଶାରଳା ଦାସଙ୍କ ବିରଚିତ




# ସଭାପର୍ବ

(ନୂତନ ମୁଦ୍ରଣ)

ପ୍ରକାଶକ/ପ୍ରାପ୍ତିସ୍ଥାନ

**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରତିଷ୍ଠାତା : ବିଦ୍ୟାଧର ସାହୁ

ପ୍ରୋ : ମହିମା ପ୍ରସାଦ ସାହୁ

ଅଲିଶାବଜାର, କଟକ-୨

ଫୋନ୍ : ୨୫୦୮୨୯୬



ମୂଲ୍ୟ: ଏକଶହ ପଞ୍ଚଚାଳିଶି ଟଙ୍କା

# ମହାଭାରତ ସଭାପର୍ବର ସୂଚୀପତ୍ର

| ବିଷୟ | | ପୃଷ୍ଠା |
| --- | --- | --- |

| ବିଷୟ | | ପୃଷ୍ଠା |
|---|---|---|



ମହାଭାରତ ସଭାପର୍ବର ସୂଚୀପତ୍ର ସମାପ୍ତ

# ମହାଭାରତ

## ସଭାପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ।।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।।
ଓଁ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ର ତନୂତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାମ୍ ।।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃଷ୍ଣଣଂ,
ଭୀଷ୍ମଦ୍ରୋଣଦୁଯୋଧନାଦି ଦଳନଂ ଏତନ୍ମହାଭାରତଂ ।।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣୋଧାରୋ ହରିଃ ।।

ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ ।
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦେବତେ ।।
ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।

ତତୈବ ଗଙ୍ଗା ଯମୁନା ଚ ତତ୍ର, ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର, ଯତ୍ରାଚ୍ୟୁତୋଦାର କଥା ପ୍ରସଙ୍ଗଃ ।

## ଗଣେଶଙ୍କ ବନ୍ଦନା



ଜୟ ଜୟ ଲମ୍ବୋଦର ଜୟ ଗଣପତି
ପ୍ରଳୟରୁ ଉଦ୍ଧରିଲୁ ଧରି ବିଶ୍ୱମୂର୍ତ୍ତି ।
ପାଶ ଅଙ୍କୁଶ ତୋ କରେ ସୁଧାଲଡୁ ଭୋଜୀ
ବିଘ୍ନରାଜ ନାମ ବହୁ ବିଘ୍ନ ଦର୍ପ ଗଞ୍ଜି ।
ଚରଣେ ନୂପୁର ତୋର ଦିଶେ ସୁଶୋଭନ
ଭ୍ରମଣ କରୁ ତୁ ଚଢ଼ି ଇନ୍ଦୁର ବାହନ ।
ସକଳ ଦେବଙ୍କ ଆଗେ ପୂଜା ପାଉ ତୁହି
ତୋ କୃପାରେ ପ୍ରାଣୀ ଭୋଗ ଐଶ୍ୱର୍ଯ୍ୟ କରଇ
ସ୍ୱାମୀ ଏ ସଂସାରେ ଅଛି ବହୁ ଦୁଃଖମାନ
ତାହା ଖଣ୍ଡିବାକୁ ନାହିଁ ତୋ ବିନା କେ ଆନ ।
ଅନ୍ତେ ପ୍ରାଣୀଙ୍କୁ ଶମନ ଦିଏ ଯେବେ ଶାସ୍ତି
ସେଥିରୁ ଉଦ୍ଧାର କରୁ ତୁହି ଗଣପତି ।
ମରଣ ସମାନ ଅଟେ ଯେଉଁ ରୋଗମାନ
ହେ ଦେବ ସେହି ରୋଗକୁ କରୁ ବିନାଶନ ।
ତୋ କୃପାରୁ ରୋଗ ଅଙ୍ଗେ ନ ପାରଇ ପଶି
ତୋହାର ଅକୃପା ହେଲେ ଦିଏ ରୋଗ ଗ୍ରାସି ।
ଭକତଜନ-ବତ୍ସଳ ତୁହି ଗଜାନନ
ମୂର୍ଖକୁ ପଣ୍ଡିତ କରୁ ଦେଇ ଦିବ୍ୟଜ୍ଞାନ ।
ମହା ମହିମାକୁ କେହି ବର୍ଣ୍ଣିପାରେ ତୋର
କି ଅବା ବର୍ଣ୍ଣିବି ମୁହିଁ ମନୁଷ୍ୟ ମାତର ।
ମନ୍ଦର ସମାନ ଅଟେ ଜରାର ଶରୀର
ସଂସାରକୁ ନାଶକଲା ସେ ଦୁଷ୍ଟ ଅସୁର ।
ସେ ଜରା ବିଘ୍ନମାନଙ୍କ ଅଟଇ ଯେ ମୂଳ
ଦୁଷ୍ଟ ହେତୁ ଚାପିଲୁ ତୁ ତାକୁ ପାଦତଳ ।
ଜରାକୁ ଚାପନ୍ତେ ଯମ କରିଲା ଗୁହାରି
ବୋଇଲା ଏ ଜରା ସଖା ଅଟଇ ମୋହରି ।
ପ୍ରାଣ ନାଶ କରିବାକୁ ମୂଳ ଅଟେ ଏହି
ସକଳ ରୋଗ ଉପରେ ଦୁର୍ଦ୍ଦଣ୍ଡ ଅଟଇ ।
ଏହାଙ୍କୁ ଘେନିଣ ପ୍ରାଣୀ ଜୀବନ ହରଇ
ବଡ଼ ସେନାପତି ମୋର ଅଟଇ ଯେ ଏହି ।
ଯମର ବଚନେ କେଭେ ନ ଛାଡ଼ିଲୁ ତାକୁ
ପାଦ କଠାଉରେ ଚାପି ରଖିଲୁ ଦୁଷ୍ଟକୁ ।
ଏ କଳିଯୁଗରେ ବହୁ ହେବାରୁ ଅନୀତି
ତେଣୁ ତାହାକୁ ଛାଡ଼ିଲୁ ପ୍ରଭୁ ଗଣପତି ।

ଜୟ ତୁ ଜୟ ତୁ ଦେବ ଶରଣ ସୋଦର
ଜୟ ତୁ ଜୟ ତୁ ଦେବ ଦୁଃଖୀ ଦୁଃଖ ହର ।
ଜୟ ତୁ ଜୟ ତୁ ଦେବ ମୂର୍ଖେ ଜ୍ଞାନଦାତା
ଜୟ ତୁ ଜୟ ତୁ ଦେବ ସର୍ବଶାସ୍ତ୍ରଜ୍ଞାତା ।
ଜୟ ତୁ ଜୟ ତୁ ଦେବ ପ୍ରସନ୍ନ ମୂରତି
ଜୟ ତୁ ଜୟ ତୁ ଦେବ ଅଯୋନି ଉତ୍ପତ୍ତି ।
ଜୟ ତୁ ଜୟ ତୁ ଦେବ ଅମୃତ ଆହାରୀ
ଜୟ ତୁ ଜୟ ତୁ ଦେବ ବହୁରୂପ ଧାରୀ ।
ଜୟ ତୁ ଜୟ ତୁ ଦେବ ପଦ୍ମାସନେ ସ୍ଥିତ
ଜୟ ତୁ ଜୟ ତୁ ଦେବ ସୁଜ୍ଞାନୀ ପଣ୍ଡିତ ।
ଜୟ ତୁ ଜୟ ତୁ ଦେବ ମନ୍ତ୍ର ବ୍ରହ୍ମବେତ୍ତା
ଜୟ ତୁ ଜୟ ତୁ ଦେବ ଜ୍ଞାନ ବରଦାତା ।
ଜୟ ତୁ ଜୟ ତୁ ଦେବ ବୋଲାଉ କପିଳ
ଜୟ ତୁ ଜୟ ତୁ ଦେବ ଈଶ୍ୱରଙ୍କ ବାଳ ।
ଜୟ ତୁ ଜୟ ତୁ ଦେବ ସିନ୍ଦୂର ବଦନ
ଜୟ ତୁ ଜୟ ତୁ ଦେବ ବିକଟ ତୋ ନାମ ।
ଜୟ ତୁ ଜୟ ତୁ ଦେବ ଏକଦନ୍ତ ଧର
ଜୟ ତୁ ଜୟ ତୁ ଦେବ ପୃଥୁଳ ଶରୀର ।
ଜୟ ତୁ ଜୟ ତୁ ଦେବ ସମାନ ଅଗସ୍ତି
ଜୟ ତୁ ଜୟ ତୁ ଦେବ ଧୂମକେତୁ ମୂର୍ତ୍ତି ।
ଜୟ ତୁ ଜୟ ତୁ ଦେବ ହେ ଗଜକର୍ଣ୍ଣକ
ଜୟ ତୁ ଜୟ ତୁ ଦେବ ଦେବ ଗଣାଧକ୍ଷ ।
ଜୟ ତୁ ଜୟ ତୁ ଦେବ ଭାଲଚନ୍ଦ୍ରଧାରୀ
ଜୟ ତୁ ଜୟ ତୁ ଦେବ ପାପ ନାଶକାରୀ ।
ଜୟ ତୁ ଜୟ ତୁ ଦେବ ସ୍ୱରୂପ ଶୋଭନ
ଜୟ ତୁ ଜୟ ତୁ ଦେବ ଶ୍ୱେତ ଗଜାନନ ।
ଜୟ ତୁ ଜୟ ତୁ ଦେବ ବିଘ୍ନ ବିଦାରକ
ଜୟ ତୁ ଜୟ ତୁ ଦେବ ମହାବିନାୟକ ।
ଜୟ ତୁ ଜୟ ତୁ ଦେବ ପର ଦୁଃଖେ ଦୁଃଖୀ
ଜୟ ତୁ ଜୟ ତୁ ଦେବ ସିଦ୍ଧଙ୍କର ସାକ୍ଷୀ ।
ଜୟ ତୁ ଜୟ ତୁ ଦେବ ଭୁଜଙ୍ଗ ଉତ୍ତରୀ
ଜୟ ତୁ ଜୟ ତୁ ଦେବ ବିଦ୍ୟା ଅଧିକାରୀ
ମନ ବଚନେ କର୍ତ୍ତବ୍ୟ କରିଛି ସଂକଳ୍ପ
ପୂରାଅ କାମନା ବ୍ରତେ ଭାରତର କଳ୍ପ ।
କଳିକାଳ ପାପ ନାଶେ କରିଛି ଏ ବୁଦ୍ଧି
ଶୁଣିଲେ ତରିବେ ପାପୀ ଏ ଭବଜଳଧି ।
ଅଧମ ତାରଣ ନାଥ ଚତୁର୍ଭୁଜ ହେଲୁ
ବିନାୟକ ଅବତାରେ ଦୁଷ୍କୃତ ହରିଲୁ ।
ଦୟାକୁ ସାଧବ ତୁହି କାରଣକୁ ସାଧୁ
ମମ ଦୁରିତମାନଙ୍କୁ ନାଶକରୁ ବନ୍ଧୁ ।
ତୁମ୍ଭେ ଜ୍ଞାନ ଦିଅ ମୋତେ ହୋଇ ସୁପ୍ରସନ୍ନ
ଅବିଘ୍ନରେ ସଭାପର୍ବ କରେ ମୁଁ ଲେଖନ ।
ତୁମ୍ଭ ଚରଣେ ମୋହର ସହସ୍ର ପ୍ରଣାମ
ଶାରଳା ଦାସର ପୂର୍ଣ୍ଣ କର ମନସ୍କାମ ।

ଝଙ୍କଡ଼ପୁର ବାସିନୀ ଶ୍ରୀଚଣ୍ଡୀ ଶାରଳେ
ଶରଣ ମୁଁ ସଦା ତୁମ୍ଭ ଶ୍ରୀପଦ କମଳେ ।
ତୁମ୍ଭେ କୃପାମୟୀ ମୋର ଜ୍ଞାନଦାତ୍ରୀ ମାତ
ତବ ପ୍ରସାଦେ ଲେଖିବି ଭାରତ ଚରିତ ।
ତୃତୀୟ ଖଣ୍ଡ ଏହି ଯେ ସଭାପର୍ବ ବାଣୀ
ଲେଖିବି ତୋ ପରସନ୍ନେ ଆଗୋ ଠାକୁରାଣୀ
ହୁଅସି ସଦୟ ମାତ ମୋଠାରେ ଅଭୟା
ପ୍ରସନ୍ନେ ଯା କହିଦେବା ଲେଖିବି ଗୋ ତାହା
ମହାବିଜ୍ଞ ଅଗସ୍ତିଙ୍କ ଶ୍ରୀପଦ କମଳେ
ଲୋଟୁ ମୋର ଶିରଗୋଟି ସଦା ସର୍ବକାଳେ ।
ଯେବଣ ମୁନି ବିନୋଦଭାବେ ଅବହେଳେ
ସମୁଦ୍ର ଗଣ୍ଡୁଷ କଲେ ଖେଳ କୁତୁହଳେ ।
ସେ ମୁନିଙ୍କ ଶ୍ରୀଚରଣେ ସର୍ବଦା ମୋ ଆଶ
ବଦନ୍ତି ସାରଳା ଦାସ ତାଙ୍କ ଦାସ ଦାସ ।



## ବଳରାମଙ୍କ ନିକଟରେ ଶ୍ରୀକୃଷ୍ଣଙ୍କର ଯମପୁର ଦର୍ଶନ ବର୍ଣ୍ଣନ ଓ ନାରଦଙ୍କଠାରୁ ଯୁଧିଷ୍ଠିର ପଣ୍ଡୁରାଜାଙ୍କର ଦୁର୍ଦ୍ଦଶା ଶ୍ରବଣ

ଏଥୁ ଅନନ୍ତରେ କଥା ଶୁଣ ସୁଜ୍ଜନର
ଭାରତ ଚରିତ ଅଟେ ଶ୍ରୁତି ସୁଖକର ।
ଅଗସ୍ତି ମୁନିଙ୍କ ଯୁଗ୍ମ ଚରଣେ ବିନୟୀ
ଷଡଅର୍ଘ୍ୟେ ପୂଜା କରି ମନୁ ନରସାଇଁ ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ଦେଇ ଆନନ୍ଦେ ପୂଜିଲେ ମୁନିଙ୍କର ପାଦ ।
ବହୁ ବିନୟରେ ରାଜା କରପତ୍ର ଯୋଡ଼ି
ମୁନିଙ୍କର ଶ୍ରୀଚରଣେ ପୁନଃ ପୁନଃ ପଡ଼ି ।
ବୋଇଲେ ଭୋମୁନି ମୋର ଘେନିବାଜସେବା
ସଭାପର୍ବ କଥା ମୋତେ ବିସ୍ତାରି କହିବା ।
ପୂର୍ବେ ଯେ କହିଲେ ପଣ୍ଡୁ ବ୍ରହ୍ମହତ୍ୟା କଲେ
ସେ ପୁଣି ମରଣ ଅନ୍ତେ କି ଗତି ଲଭିଲେ ।
ତାଙ୍କ ପାଇଁ କି କରିଲେ କୁନ୍ତୀ ପାଞ୍ଚପୁତ୍ର
ଏକଥା ଶୁଣିବା ପାଇଁ ଉତ୍ସୁକ ମୋ ଚିତ୍ତ ।
ଏ କଥା ଫିଟାଇ ମୋତେ କହ ମହାଶୟ
ବ୍ରହ୍ମହତ୍ୟା ଦୋଷକୁ ଯେ କେବଣ ଉପାୟ ।
ବଦନ୍ତି ଅଗସ୍ତି ମୁନି ବିଜ୍ଞ ମହାତମା
ପ୍ରତ୍ୟକ୍ଷେ ସେ ନାରାୟଣ ରୂପୀ ସିଦ୍ଧ ବ୍ରହ୍ମା ।

ଶୁଦ୍ଧ ଆସନରେ ବସି କଲେ ସେ ଉତ୍ତର
ଶୁଣ ଆହେ ମହାରାଜା ଚିତ୍ତ କରି ସ୍ଥିର ।
କୁମ୍ଭ ମାସେ ଶୁକ୍ଳପକ୍ଷ ଦଶମୀ ଦିନର
ପୁଷ୍ୟା ନକ୍ଷତ୍ର କର୍କଟରାଶି ଗୁରୁବାର ।
ତୈତିଳ ନାମେ କରଣ ଅତିଗଣ୍ଡଯୋଗ
କୁମ୍ଭ ସଙ୍କରାନ୍ତିର ତିରିଶ ଦିନ ଭୋଗ ।
ସେ ଦିନ ଶ୍ରୀକୃଷ୍ଣ ଆସି ନୀଳାମ୍ବର ପାଶେ
ତାହାଙ୍କ ପାଦେ ନମିଲେ ଭକତି ମାନସେ ।
ଭାବେ ହଳୀ ଟୋଳିଲେକ କରି ଆଶୀର୍ବାଦ
ଶୁଭେ ଆସିଛୁ ତ ହରି ନାହିଁ ତ ପ୍ରମାଦ ।
ଯମ ପୁରକୁ ରେ ବାବୁ ବିଜେ କରି ଗଲୁ
ଗୁରୁ ପାଞ୍ଚପୁତ୍ରଙ୍କୁ କି ସେଠାରେ ଦେଖିଲୁ ।
କିବା ଖୋଜି ପାଇଲୁ କି ନ ପାଇଲୁ କହ
ଶୁଣିଲେ ତୋ ମୁଖୁଁ ହେବ ମୋର ମନ ଥୟ ।
ଭ୍ରାତାଙ୍କ ବଚନ ଶୁଣି ଶ୍ରୀକୃଷ୍ଣ କହିଲେ
ଯମ ଭୁବନକୁ ମୁହିଁ ଗଲି ଯେତେବେଳେ ।
ଗୁରୁ ପାଞ୍ଚପୁତ୍ରଙ୍କୁ ମୁଁ ଯାନ୍ତେ ଲୋଡ଼ି ଲୋଡ଼ି
ଅନେକ ପାପୀ ବାଟରେ ନର୍କେ ଥିଲେ ପଡ଼ି ।
ଯମଦୂତେ ଦଣ୍ଡୁଥିଲେ ବହୁ ଶାସ୍ତି ଦେଇ
ମୋତେ ଦେଖି ଦୂତମାନେ ଗଲେକ ପଳାଇ ।
ମୋ ଦର୍ଶନେ ପାପୀଙ୍କର ମୁକତି ହୋଇଲା
ମୋତେ ଦେଖି କୃତାନ୍ତକ ମହାଭୟ କଲା ।
ସୁବର୍ଣ୍ଣ ଥାଳିରେ ହୀରା ଦୀପ ଅର୍ଘ୍ୟ ଘେନି
ମୋର ପାଦେ ପୂଜାକଲା କାଳ ଦଣ୍ଡପାଣି ।
ଅନେକ ମତେ ମୋ ପାଦେ ହୋଇଣ ବିନୟୀ
ହସ୍ତଧରି ନିଜାସନେ ବସାଇଲା ନେଇ ।
ବୋଇଲେ ପୂର୍ବୁ ଆସିବା ଶୁଣିଥିଲି ତୋର
ଏବେ ପାଦରଜ ଦେବ ପଡ଼ିଲା ମୋପୁର ।
ଅନେକ ପାପୀଙ୍କୁ ତ୍ରାହି କଲୁ ନାରାୟଣ
ଏରୂପେ ବହୁ ବିନୟେ କହନ୍ତେ ଶମନ ।
ଶୁଣି ତାକୁ କହିଲି ମୁଁ ଶୁଣ ଜନ୍ତୁପତି
ବହୁତ କାର୍ଯ୍ୟେ ଆସିଛି ଜାଣ ତୋର କତି ।
ଶାନ୍ତିପନି ଋଷି ଗୁରୁ ଅଟନ୍ତି ଆମ୍ଭର
ତାଙ୍କ ପାଞ୍ଚପୁତ୍ର ହରି ଆଣିଲେ ତୋ ଚାର ।
ଆମ୍ଭେ ତାଙ୍କ ଠାରେ ପଢ଼ି ଜ୍ଞାନବାନ ହେଲୁ
ଗୁରୁ ଦକ୍ଷିଣା ଦେବାକୁ ଯହିଁ ଇଚ୍ଛା କଲୁଁ ।
ମୃତପୁତ୍ର ଗୁରୁପତ୍ନୀ ମାଗିଲେ ଆମ୍ଭଙ୍କୁ
ସେ ହେତୁ ଅଇଲି ମୁହିଁ ତୋର ଭୁବନକୁ ।
ଗୁରୁଙ୍କ ପୁତ୍ର ହୋଇଲେ ଆମ୍ଭ ଧର୍ମ ଭ୍ରାତ
ତାଙ୍କୁ ନେଇ ଦେଲେ ହେବ ଦକ୍ଷିଣା ପ୍ରାପତ ।

ବହୁ ଭୟ କରିଥିଲା ମୋତେ ଜନ୍ତୁରାୟ
ଏ କଥା ଶୁଣି ଅଳପ ହୋଇଲା ନିର୍ଭୟ ।
ତହୁଁ ଯମ ଚିତ୍ରଗୁପ୍ତେ ପୁଚ୍ଛିଲାକ ରାଇ
କହ କେଉଁଠାରେ ଦ୍ୱିଜପୁତ୍ରେ ଛନ୍ତି ରହି ।
ଆଜ୍ଞାମାତ୍ରେ ଚିତ୍ରଗୁପ୍ତ ହୋଇଲା ପ୍ରଣମି
ପଶ୍ଚିମ କୋଣଳେ କାଶୀଦେଶ ଅଛି ସ୍ୱାମୀ ।
ସିଦ୍ଧପାଦ ନଦୀ ଗଙ୍ଗାର ଉତ୍ତର କୂଳେ
ଯଜାତେଶ୍ୱରେକ ଲିଙ୍ଗ ଛନ୍ତି ବଟମୂଳେ ।
ସେହି ନଗ୍ରେ ଦ୍ୱିଜପୁତ୍ର ହୋଇଛନ୍ତି ଜନ୍ମ
ଚଉର୍ଯ୍ୟପଣେ ସେଠାରେ କାଟୁଛନ୍ତି ଦିନ ।
ଅନେକ ଦ୍ରବ୍ୟ ଆଣନ୍ତି ବାଟୋଇଙ୍କୁ ମାରି
ସେ ଦ୍ରବ୍ୟ ବାଣ୍ଟ କରନ୍ତି ବେନି ଭାଗ କରି ।
ରୁଦ୍ର ଦେବତାଙ୍କୁ ଦ୍ୟନ୍ତି ତହୁଁ ଅଧେ ଧନ
ଅର୍ଦ୍ଧେକ ନେଇ ବଞ୍ଚନ୍ତି ସେହି ପାଞ୍ଚଜଣ ।
ଏହାଶୁଣି ଆଜ୍ଞାଦେଲେ ଜନ୍ତୁ ଅଧିକାରୀ
କାଳ ବିକାଳ ଦୁହିଁଙ୍କି ଆଣ ଡାକିକରି ।
ଶୁଣି ଚିତ୍ରଗୁପ୍ତ ତହୁଁ ଡାକିଲା ଚଞ୍ଚଳ
ଯମ ପାଶକୁ ଅଇଲେ ସେ କାଳ ବିକାଳ ।
ଯମ ଆଜ୍ଞା ଦେଲା ତହିଁ କାଳ ବିକାଳଙ୍କୁ
ବେଗେ ଆଣ କାଶୀପୁର ସେ ପାଞ୍ଚ ଚୋରଙ୍କୁ ।
ଆଜ୍ଞା ପ୍ରମାଣେ ଚଳିଲେ ସେହି ବେନି ଦୁଷ୍ଟ
ପ୍ରବେଶ ହୋଇଲେ ସେହି ଚୋରଙ୍କ ନିକଟ ।
ପ୍ରାତଃ ସ୍ନାନ କରନ୍ତି ସେ ରୁଦ୍ର ଗଙ୍ଗାଜଳେ
ଧାଡିକାରେ ବୁଡାଇଲେ ସେ କାଳ ବିକାଳେ
ନାଶକର ପାଶେଆଣି ଦିଅନ୍ତେ ତାହାଙ୍କୁ
ଯମ ଆସନ ଉପରୁ ଓହ୍ଲାଇ ତଳକୁ ।
ବହୁଦିନୁ ମରିଥିଲେ ଏହୁ ଦେବରାଜ
ଗୁରୁଙ୍କୁ ଦେଇଣ ତୁମ୍ଭେ ସିଦ୍ଧକର କାର୍ଯ୍ୟ ।
ଗୁରୁଙ୍କ ପୁତ୍ରକୁ ପାଇ ସନ୍ତୁଷ୍ଟ ହୋଇଲି
ପଣ୍ଡୁ ରାଜାଙ୍କୁ ଦେଖି ମୁଁ ବଡ଼ ଦୁଃଖୀ ହେଲି ।
ଯମରାଜା ସଭାକରି ଯହିଁ ବସିଛନ୍ତି
ସେ ସଭାତଳରେ ସଦା ଠିଆ ହୋଇଛନ୍ତି ।
ଜନ୍ତୁ ପତିଙ୍କର ଯହିଁ ପଡ଼େ ପଦରଜ
ତିନିପାବଛର ତଳେ ଉଭା-ପଣ୍ଡୁରାଜ ।
ଯେଉଁଦିନୁ ପ୍ରାଣ ତେଜି ଛାଡ଼ିଲେ ଏ ମହୀ
ସେ ଦିନୁ ସେହି ପାବଛେ ଛନ୍ତି ଛିଡାହୋଇ ।
ଯମଦେବ ବସିଥାଏ ଆସ୍ଥାନ ଉପରେ
ବସ ବୋଲି ନ ବୋଲିଲେ ତାଙ୍କୁ ସେ ଦିନରେ
ପୁଣ୍ୟବନ୍ତ ବସିଛନ୍ତି ସିଂହାସନ ପରେ
ତାଙ୍କ ପାଦରଜ ପଡେ ପଣ୍ଡୁର ଉପରେ ।

କୃଷ୍ଣର ମୁଖରୁ ଶୁଣି ଏସନକ ବାଣୀ
ସ୍ତମ୍ଭୀଭୂତେ ବସିଲେକ ଦେବ ହଳପାଣି ।
ବଳରାମ ପୁଚ୍ଛାକଲେ କହ ଶିରୀପତି
କି ପାପେ ପଣ୍ଡୁଙ୍କୁ ଯମ ଦେଇଛି ଏ ଶାସ୍ତି ।
ଶ୍ରୀକୃଷ୍ଣ ବୋଇଲେ ପଣ୍ଡୁ ବ୍ରହ୍ମହତ୍ୟା କଲେ
ଅମ୍ବିକା ଋଷିଙ୍କି ପୂର୍ବେ ଶରରେ ମାଇଲେ ।
ସେହିହେତୁ ଏହି ଶାସ୍ତି ଦିଏ ନାଶକର
ବ୍ରହ୍ମହତ୍ୟା ଦୋଷକାହୁଁ ହୋଇବ ଯେ ପାର ।
ଶ୍ରୀକୃଷ୍ଣ ବଚନେ ହଳୀ ହସିଣ ବୋଇଲେ
ତୁ ବୋଇଲୁ ମୋତେ ଦେଖି ପାପୀଏ ତରିଲେ
ନାନା ପାପରୁ ତରନ୍ତି ତୋ ରୂପକୁ ଦେଖି
ପଣ୍ଡୁର କଥାକୁ କିପାଁ ନ ହୋଇଲୁ ସାକ୍ଷୀ ।
ଗୋବିନ୍ଦ ବୋଇଲେ ତାର ପାତକ ଅପାର
ବ୍ରହ୍ମହତ୍ୟା ପାତକ ଯେ ସବୁହୁଁ ଦୁସ୍ତର ।
ହଳୀ ଭାଷି ଯୁଧିଷ୍ଠିରେ କରୁ ଏତେ ଦୟା
ଜଣାଗଲା ମୁଖେ କହୁ ମନେ ନୋହେ ତାହା ।
ପଣ୍ଡୁଙ୍କଠାରେ ଯଦ୍ୟପି ତୋର ଦୟାଥାନ୍ତା
ଯମପୁରେ ସେ କିପାଇଁ ଏତେ ଶାସ୍ତି ପାନ୍ତା ।
ହଳୀଙ୍କ ବଚନ ଶୁଣି ଶ୍ରୀକୃଷ୍ଣ କହିଲେ
ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା କଲେ ।
କଉଣସି ରୂପେ ପାପୁଁ ନ ପାରିଲେ ତରି
ପାତାଳେ ଲୁଚିଲେ ସେହି ପାପେ ଭୟକରି ।
ହଳୀ ବୋଇଲେ ଯା ଯେବେ ଦେଖିଅଛ ହରି
ଯୁଧିଷ୍ଠିରଙ୍କ ଅଗ୍ରତେ କହ ଯାଇକରି ।
ଭଗୀରଥ ବୋଲି ସୂର୍ଯ୍ୟବଂଶେ ଜାତହେଲା
ସଗର ବଂଶକୁ ଗଙ୍ଗା ଆଣି ଉଦ୍ଧାରିଲା ।
ପଣ୍ଡୁ ବ୍ରହ୍ମହତ୍ୟା ଦୋଷୁଁ ମୁକ୍ତି ପାଇବାକୁ
ମୁହିଁ ସମରଥ ନୁହେଁ ଏ ମହା ପାପକୁ ।
ଦିଗପାଳ ସମ ଛନ୍ତି ପଣ୍ଡୁ ପାଞ୍ଚପୁତ୍ର
ପିତା ପାତକ ଖଣ୍ଡନ୍ତୁ କରି ଯଜ୍ଞ ବ୍ରତ ।
କରଯୋଡ଼ି କହିଲେକ ଧୀରେ ଦେବରାୟ
ଯୁଧିଷ୍ଠିଙ୍କୁ କହିବାକୁ କରେ ମୁହିଁ ଭୟ ।
ହଳୀ ବୋଇଲେ ଯେବେ ତୁ ନ କହିବୁ ତାଙ୍କୁ
କିଏ ଆଉ ବାର୍ତ୍ତା ଦେବ କହ ତା ଆମ୍ଭଙ୍କୁ ।
ଶୁଣ ହରି ପଣ୍ଡୁରାଜା ନାଶ ହୋଇଗଲା
ପୁତ୍ର ଥାଉ ଏଡ଼େ ଶାସ୍ତି ତା କପାଳେ ଥିଲା ।
କୃଷ୍ଣଙ୍କୁ କହନ୍ତେ ହଳୀ କଥା ଏହିପରି
ନାରଦଙ୍କୁ ସୁମରଣା କଲେକ ଶ୍ରୀହରି ।
ବ୍ରହ୍ମାଙ୍କର ସୁତ ମନଯାନକୁ ଆରୋହି
ତତକ୍ଷଣେ ଦ୍ୱାରକାରେ ପ୍ରବେଶିଲେ ଯାଇ ।

ନାରଦଙ୍କୁ ଦେଖି ପୂଜା କଲେ ବେନି ଭ୍ରାତ
ଶ୍ରୀକୃଷ୍ଣ ବୋଇଲେ ଶୁଣ ଆହେ ବିଧିସୁତ ।
ହସ୍ତିନାପୁରକୁ ତୁମ୍ଭେ ଏହିକ୍ଷଣି ଯିବ
କଥାଛଳେ ଯମପୁର ଯିବାର କହିବ ।
ଯୁଧିଷ୍ଠିର ପଚାରିଲେ ପିତାଙ୍କ ବାରତା
ଆମ୍ଭ ପାଇଁ କହିବ ଯେ ତୁମ୍ଭେ ମିଥ୍ୟାକଥା ।
ଏପରି କହିବ ତୁମ୍ଭେ ଯୁଧିଷ୍ଠି ଦେବଙ୍କୁ
ତିନି ପାବଚ୍ଛର ତଳେ ଦେଖିଲୁ ପଣ୍ଡୁଙ୍କୁ ।
ସେ ପୁଚ୍ଛିଲେ ପିତା ମୋର କଲେ କେଉଁପାପ
ବ୍ରହ୍ମହତ୍ୟା କଲା ବୋଲି କହିବ ସ୍ୱରୂପ ।
ଅନ୍ୟ କିଛି ପାପ ନାହିଁ କହିବ ତାହାଙ୍କୁ
ଏପରି କହନ୍ତେ ହରି ନାରଦ ଋଷିଙ୍କୁ ।
ଆଜ୍ଞା ପ୍ରମାଣେ ମହର୍ଷି ନାରଦ ଚଳିଲେ
ସେହିକ୍ଷଣି ହସ୍ତିନାରେ ପ୍ରବେଶ ହୋଇଲେ ।
ଦୁର୍ଯ୍ୟୋଧନ ଶତଭାଇ ଘେନି ସଙ୍ଗତରେ
ବସିଥିଲେ ଯୁଧିଷ୍ଠିଙ୍କ ସିଂହାସନ ପରେ ।
ଯୁଧିଷ୍ଠିର ସଙ୍ଗତରେ ଘେନି ସାନଭାଇ
ଦିବ୍ୟ ଦିବ୍ୟ ଆସନରେ ବସିଥିଲେ ତହିଁ ।
ନାରଦଙ୍କୁ ଦେଖି ସର୍ବେ ଉଠି ଧାଡିକାରେ
ଭକ୍ତିଭରେ ପ୍ରଣମିଲେ ମୁନିଙ୍କ ପୟରେ
ଅର୍ଘ୍ୟ ଘେନିଣ ଶ୍ରୀକରେ ଯୁଧିଷ୍ଠିର ରାଜା
ମୁନିଙ୍କ ବେନି ପାଦରେ କଲେ ଦିବ୍ୟପୂଜା
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ଅର୍ଘ୍ୟ ଦେଇ ପ୍ରଣମିଲା ସେ ମାନଗୋବିନ୍ଦ ।
ଆବର ଭାଇମାନେ ଯେ ପ୍ରଣାମ କରିଲେ
ସୁବର୍ଣ୍ଣ ଆସନେ ମୁନିବରେ ବସାଇଲେ ।
କୁଶ ହସ୍ତେ ଆଶୀର୍ବାଦ କଲେ ତପୋଧନ
ସମସ୍ତ ବିପଦ ଖଣ୍ଡୁ ସୁଖେ ବଞ୍ଚ ଦିନ ।
ଋଷି ବୋଇଲେ ସର୍ବେତ ଅଛ କୁଶଳରେ
ଶତ୍ରୁଙ୍କର ଉପଦ୍ରବ ନାହିଁ ତା ରାଜ୍ୟରେ ।
ପୁଅ ଆଉ ସହୋଦର ତୁମ୍ଭର ଭାରିଯା
ଏ ସମସ୍ତ କୁଶଳରେ ଅଛନ୍ତି ନା ରାଜା ।
ତପସ୍ଥାନେ ଅରିଷ୍ଟ ତ ନ କରନ୍ତି ଦୈତ୍ୟେ
ଆଜ୍ଞାବର୍ତ୍ତୀ ଅଛନ୍ତି ନା ପରଜା ସମସ୍ତେ ।
ଦୈତ୍ୟଙ୍କର ଉପଦ୍ରବ ନହୁଏ ତ ବନେ
ଅନଳେ ଆହୁତି ଦ୍ୟନ୍ତିଟିକି ତପୋଧନେ ।
ଯଥାକାଳେ ମେଘମାନେ ବୃଷ୍ଟି ତ କରନ୍ତି
ବସୁମତୀ ହେଉଛି ତ ବହୁ ଫଳବତୀ ।
ତୁମ୍ଭ ସୋଦର ସୋଦରେ ନ ହୁଅନ୍ତି ଦ୍ୱନ୍ଦ୍ୱ
ରାଜ୍ୟଲୋକେ ବଞ୍ଚନ୍ତି ତ ହୋଇଣ ଆନନ୍ଦ ।
ସର୍ବସୁବିଧାରେ ତୁମ୍ଭେ ରହିଛ ତ ରାଜା
କୁଶଳରେ ଅଛନ୍ତି ତ ତୁମ୍ଭ ଜନ ପ୍ରଜା ।
ଯାହା ବାଞ୍ଛାକର ତାହା ହୁଅଇ ତ ସିଦ୍ଧି
କୃଷିକାରୀମାନଙ୍କର ନୁହେଁ ତ ଅବଧି ।
ଦେଶୋଉରେ ବାରତା ତ ଜଣାଅନ୍ତି ଭଲେ ।
ବିବେକ ପେଷି ବୁଝ ତ ରିପୁ କେ ଆସିଲେ ।
ମୁନିଙ୍କ ବଚନେ ବୋଲେ ଧୃତରାଷ୍ଟ୍ର ବାଳ
ତୁମ୍ଭର କଲ୍ୟାଣେ ମୁନି ସମସ୍ତ କୁଶଳ ।
ଯୁଧିଷ୍ଠି ବୋଇଲେ ମୁନି କାହିଁ ଯାଇଥିଲ
କେଉଁଠାରେ କି କି କଥା ଦେଖିଣ ଅଇଲ ।
ନାରଦ ବୋଇଲେ ତୁମ୍ଭେ ଶୁଣ ଯୁଧିଷ୍ଠିରଂ
ଏହିକ୍ଷଣି ଯାଇଥିଲୁ ସଂଯମନୀପୁର ।
ଯୁଧିଷ୍ଠି ବୋଇଲେ ଗଲ ସଂଯମନୀ ଆଳେ
ଆମ୍ଭର ପିତା ସେଠାରେ ଛନ୍ତି ନା କୁଶଳେ ।
ଯୁଧିଷ୍ଠିଙ୍କ ବାକ୍ୟ ଶୁଣି ନାରଦ କହିଲେ
ଏକ ଚାଳିଶ ବର୍ଷ ହେଲା ତୁମ୍ଭ ପିତା ମଲେ ।
ଯହିଁ ଯମ ଦେବତାର ପଡ଼େ ପାଦରଜ
ତହିଁ ଛିଡା ହୋଇଛନ୍ତି ପଣ୍ଡୁ ମହାରାଜ ।
ଯୁଧିଷ୍ଠି ପୁଚ୍ଛିଲେ କହ ଆହେ ମହାମୁନି
ଯମ ଏତେ ଶାସ୍ତିଦିଏ କେଉଁ ଦୋଷ ଘେନି ।
ଋଷି ବୋଇଲେ ତୋ ପିତା ବହ୍ମହତ୍ୟା କଲା
ଅଗ୍ନିକା ମହାଋଷିଙ୍କୁ ଶରେ ନାଶିଥିଲା ।
ସେହି ଦୋଷେ ଧରି ଶାସ୍ତିଦିଏ ଜନ୍ତୁଇଶ
ମହା ବିଷମ ଅଟଇ ବ୍ରହ୍ମହତ୍ୟା ଦୋଷ ।
ଏହା ଶୁଣିଣ ହସିଲା କର୍ଣ୍ଣ ତାଳିଦେଇ
ଦୁର୍ଯ୍ୟୋଧନ ହସି ବୋଲେ ଛିଦ୍ରକଥା ପାଇ ।
ଗୋଳକୁଣ୍ଡା ଅଟନ୍ତି ଯେ ଏ ଜାରଜାତକ
ପୁଣି କରୁଛନ୍ତି ବ୍ରହ୍ମହତ୍ୟାର ପାତକ ।
ଏମନ୍ତ ପାତକୀ ମୁଖ ଚାହିଁବା କେମନ୍ତେ
ଏହା କହି ଆସ୍ଥାନରୁ ଉଠିଲେ ସମସ୍ତେ ।
ଯୁଧିଷ୍ଠି ବିସ୍ମୟ ହେଲେ ମୁନିବାକ୍ୟ ଶୁଣି
ଅର୍ଜୁନକୁ ଚାହିଁ ଆଜ୍ଞାଦେଲେ ଧର୍ମମଣି ।
ବୋଇଲେ ଏକ୍ଷଣି ଯାଅ ଦ୍ୱାରକା ପୁରକୁ
ବହନ କରିଣ ଆଣ ଶ୍ରୀ ଜଗନ୍ନାଥଙ୍କୁ ।
ସେହି କୃପାସିନ୍ଧୁ ମୋତେ ସବୁବେଳେ ସାହା
ବିଚାର କରିବା କାର୍ଯ୍ୟ ଆଜ୍ଞାଦେବ ଯାହା ।
ସର୍ବ ଭରସା ଆମ୍ଭର ସେହି ଦୟାମୟ
ତାଙ୍କୁ ପଚାରି କରିବା ଏଥିକି ଉପାୟ ।
ଯୁଧିଷ୍ଠି ଦେବଙ୍କ ମୁଖୁ ଏହି ବାକ୍ୟ ଶୁଣି
ଯେ ଆଜ୍ଞା ବୋଲି କହିଲେ ବୀର ପାର୍ଥମଣି ।

ହେ ଦୀନବାନ୍ଧବ ହରି କମଳ ଲୋଚନ
ଦୁଷ୍ଟ ଗର୍ବ ଖର୍ବକାରୀ ବିପଦ ଭଞ୍ଜନ ।
ଯାକୁ ଯେ ବୁଦ୍ଧି ଦେଇଛ କାର୍ଯ୍ୟ ସେହିପରି
କରଇ ଯେ ବୁଦ୍ଧି ଦାତା ତୁମ୍ଭେ ସବୁଙ୍କରି ।
କେହୁ ଜୀବହିଂସା ଆଦି କୁକର୍ମରେ ରତ
କେହୁ ତୁମ୍ଭ ପାଦେ ମନ ମଜ୍ଜାଏ ସତତ ।
କରିଛ କାହାକୁ ରାଜା କାକୁ ତା ପରଜା
କେ ପାଦେ ସେବଇ କେହୁ ପାଏ ଦିବ୍ୟପୂଜା ।
ଏ ସର୍ବ ଘଟନା କରି ତୁମ୍ଭେ ଦୟାମୟ
ନାହିଁ ମୋର ତୁମ୍ଭ ବିନା ଆନକେ ସହାୟ ।
ଅଜ୍ଞାନୀ ହୁଅଇ ଜ୍ଞାନୀ ତୁମ୍ଭ କରୁଣାରେ
ବାରେ ଦୟାକର ପ୍ରଭୁ ଶାରଳା ଦାସରେ ।



## ଅର୍ଜ୍ଜୁନ ଦ୍ୱାରକାରୁ ଶ୍ରୀକୃଷ୍ଣଙ୍କୁ ଆନୟନ ଓ ରାଜସୂୟ ଯଜ୍ଞର ପରାମର୍ଶ

ଏଥୁ ଅନନ୍ତରେ କଥା ଶୁଣ ଦଣ୍ଡଧର
ଯୁଧିଷ୍ଠି ଆଜ୍ଞାରେ ପାର୍ଥ ହୋଇଲେ ବାହାର ।
ରାତ୍ର ଦିବସ ଚାଲିଲେ ପବନ ଗତିରେ
ହରିନାମ ଘୋଷୁଥାନ୍ତି ସର୍ବଦା ଅନ୍ତରେ ।
ତେଇଶ ଯୋଜନ ପଥ ଚାଲି ଦିବାରାତ୍ର
ଦ୍ୱାରକାରେ ପ୍ରବେଶିଲେ ବୀରବର ପାର୍ଥ ।
ଦ୍ୱାରପାଳମାନେ ଦେଖି ଦ୍ୱାର ଛାଡ଼ିଦେଲେ
ଧନଞ୍ଜୟ ହରି ଚିହ୍ନି ଭିତରକୁ ଗଲେ ।
ଚଉବିଂଶ ଦ୍ୱାର ଜିଣି ଗଲେ ଧନଞ୍ଜୟ
ସତ୍ୟଭାମା ପୁରେ ବିଜେ ପ୍ରଭୁ ଦେବରାୟ ।
ସତ୍ୟଭାମାକୁ ଘେନିଣ ପ୍ରଭୁ ବନମାଳୀ
ବିନୋଦରେ ବସିଛନ୍ତି ତହିଁ ପଶା ଖେଳି ।
ବାସୁଦେବ ସତ୍ୟଭାମା ଖେଳିବା ସମୟେ
ସେ ଦ୍ୱାରେ ପ୍ରବେଶ ହେଲେ ବୀର ଧନଞ୍ଜୟେ
ସତ୍ୟଭାମାଙ୍କୁ ଦେଖିଣ ଘୁଞ୍ଚି ସବ୍ୟସାଚୀ
ନ ପଶିଣ ଭିତରକୁ ସଂକୋଚେ ରହିଛି ।
ଦାନ ପଡୁ ସତ୍ୟଭାମା ଦେଖିଲେ ଅର୍ଜ୍ଜୁନ
ପ୍ରତ୍ୟକ୍ଷରେ ନାରାୟଣ ରୂପ ବର୍ଣ୍ଣ ଚିହ୍ନ ।
ପାର୍ଥକୁ ନ ଚିହ୍ନି ସତ୍ୟ ବୋଇଲେ ଏମନ୍ତ
ମୋହଠାରେ ମାୟା ତୁମ୍ଭେ କଲ ଯଦୁନାଥ ।
ଏକ ମୂର୍ତ୍ତି ପଶାଖେଳ ମୋହର ସଙ୍ଗରେ
ପୁଣ ସେହି ମୂର୍ତ୍ତିଧରି ଉଭା ଅଛ ଦ୍ୱାରେ ।
ଜାଣିଛି ଶୁଣିଛି ମୁହିଁ ତୁମ୍ଭେ ମାୟାଧର
ଏତେ ମାୟା ମୋହଠାରେ କାହିଁ ପାଇଁ କର ।

ଏହା ଶୁଣି ଅନାଇଲେ ମୁଖ ଟେକି ହରି
ଦେଖିଲେ ଦ୍ୱାରେ ଅର୍ଜ୍ଜୁନ ଉଭା ଧନୁ ଧରି ।
ପାର୍ଥକୁ ଦେଖି ଡାକିଲେ ପ୍ରଭୁ ପଦ୍ମନେତ୍ର
ପୁଣି ପାର୍ଥ ତାଙ୍କ ପାଦେ ହେଲେ ପ୍ରଣିପାତ ।
ଭିତରକୁ ଆସ ବାବୁ ତୁ ମୋ ପ୍ରାଣସଖା
ସତ୍ୟଭାମାକୁ ଦେଖିଣ କିପାଁ କରୁ ଶଙ୍କା ।
ତୁହି ଯେ ଅଟୁ ମୋହର ପ୍ରାଣ ପଞ୍ଚଭୂତ
ବକ୍ଷସ୍ଥଳର ପଦକ ଆସରେ ତୁରିତ ।
ନିଜେ ହରି ଆସି ନେଲେ ଆଲିଙ୍ଗନ କରି
ଆବର ମୁଖେ ଚୁମ୍ବନ ଦେଇ ହସ୍ତ ଧରି ।
ସିଂହାସନେ ବସାଇଲେ ତାଙ୍କୁ ଯଦୁପତି
ଶ୍ରଦ୍ଧାରେ ତାଙ୍କର ପିଠି ଆଉଁଷି ଦିଅନ୍ତି ।
ପୁଣି ପ୍ରଭୁ ସତ୍ୟଭାମା ମୁଖ ଚାହିଁ ଭାଷି
ରୁକ୍ମିଣୀ ଅଗ୍ରତେ ବେଗେ କହଗୋ ପ୍ରେୟସୀ ।
ପାକକୁ ଯୋଗାଡ଼ କରି ରାନ୍ଧନ୍ତୁ ସେ ଅନ୍ନ
ଆମ୍ଭପୁରେ ଅଭ୍ୟାଗତ କୁନ୍ତୀଙ୍କ ନନ୍ଦନ ।
ପ୍ରଭୁ ବାକ୍ୟେ ସତ୍ୟଭାମା ସେ ସ୍ଥାନରୁ ଗଲେ
ରୁକ୍ମିଣୀ ଅଗ୍ରତେ ପ୍ରଭୁ କହିବା କହିଲେ ।
ରୁକ୍ମିଣୀ ପାର୍ଥ ଆସିବା ବାରତାକୁ ଶୁଣି
ଅତି ହରଷରେ ପାକ କଲେ ସେହିକ୍ଷଣି ।
ଆସ୍ଥାନୁ ଉଠି ଆସିଣ ନିଜେ ଚକ୍ରଧାରୀ
ତିଳଅଁଳା ଲେପିଲେ ପାର୍ଥ ସ୍ନାନ ସାରି ।
ତାଙ୍କୁ ନେଇ ପୁଣି ନାନା ଆଭରଣ ଦେଲେ
ସୁବର୍ଣ୍ଣର ସିଂହାସନ ପରେ ବସାଇଲେ ।
ସତ୍ୟା ରତ୍ନଝରି ଭରି ସୁବାସିତ ପାଣି
ତାହାଙ୍କର ସାକ୍ଷାତରେ ଥୋଇଦେଲେ ଆଣି ।
କାଳିନ୍ଦୀ ଆଲଟ ଧରି ସଧୀରେ ବିଞ୍ଚନ୍ତି
ସୁବର୍ଣ୍ଣ ପାତ୍ରେ ରୁକ୍ମିଣୀ ଅନ୍ନ ପରଷନ୍ତି ।
ଷଡ଼ରସର ଯୋଗାଡ଼ ସୁଧାସମ ଜାଣି
ଭୋଜନ କରନ୍ତି ତହିଁ ପାର୍ଥ ଯଦୁମଣି ।
ଭୋଜନ ସାରିଣ ଦୁହେଁ ଆଚମନ କଲେ
ସ୍ୱର୍ଣ୍ଣ ପଲ୍ୟଙ୍କେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ଶୋଇଲେ ।
କାଳିନ୍ଦୀ ଯେ ସତ୍ୟଭାମା ଚରଣ ଚାପନ୍ତି
ଜମ୍ବୁବତୀ ସୁକେଶୀ ଯେ ତାମ୍ବୁଳ ଯୋଗାନ୍ତି ।
ବାରାଙ୍ଗନାଏ କରିଲେ ଆଗେ ନୃତ୍ୟ ଗୀତ
କିଛିକ୍ଷଣେ ନୃତ୍ୟଗୀତ ହେଲା ସମାପତ ।
ତହୁଁ ଗୋବିନ୍ଦ ପୁଚ୍ଛିଲେ କହ ଫାଲଗୁନି
ଠାକୁରଙ୍କ କେଉଁ ଆଜ୍ଞା ଅଇଲୁ ତୁ ଘେନି ।
କିବା ମୋର ପୁତ୍ର ପୌତ୍ରୀ ଦେଖିବା ନିମନ୍ତେ
ବିନାରଥେ ପଦବ୍ରଜେ ଆସିଲୁ ତୁ ଏଥେ ।

କିବା ଅବା ଠାକୁରଙ୍କର ଅଛି କେଉଁକାର୍ଯ୍ୟ
ପୁଣି ପୁଣି ପଚାରନ୍ତି ପ୍ରଭୁ ଦେବରାଜ ।
ପାର୍ଥ ବୋଇଲେ ପଲ୍ୟଙ୍କ ଉପରୁ ଓହ୍ଲାଇ
ଯେ କାରଣେ ଅଇଲି ମୁଁ ଶୁଣନ୍ତୁ ଗୋସାଇଁ ।
ନାରଦ ମହର୍ଷି ବିଜେ କଲେ ଆମ୍ଭ ପୁର
କାହୁଁ ଆସିଲ ପୁଛିଲେ ଜ୍ୟେଷ୍ଠ ସହୋଦର
ନାରଦ କହିଲେ ଯମଭୁବନର କଥା
ଆମ୍ଭର ପିତାଙ୍କୁ ଯମ ଦିଏ ବହୁ ବ୍ୟଥା ।
ତାହା ଶୁଣି ଯୁଧିଷ୍ଠିର ହୋଇଲେ ଦୁଃଖିତ
ଉପହାସ କଲେ ତହୁଁ ଧୃତରାଷ୍ଟ୍ର ସୁତ ।
ଏହା ଶୁଣି ଯୁଧିଷ୍ଠିର ପେଷିଲେ ଏଥକୁ
ବେଗ ହୋଇ ଚାଲ ପ୍ରଭୁ ଇନ୍ଦ୍ରପ୍ରଶସ୍ତକୁ ।
ଶୁଣି ବାସୁଦେବ ବହୁ ସାନନ୍ଦ ହୋଇଲେ
ଯିବାକୁ ସଜ ହୋଇଣ ତହୁଁ ବାହାରିଲେ ।
ଗରୁଡ଼କୁ ସୁମରଣା କରିଲେ ତୁରିତ
ରମ୍ୟକଦ୍ୱୀପୁ ଅଇଲା ବିନତାର ସୁତ ।
ବିଜେକଲେ ନାରାୟଣ ବୈନତେୟ ପିଠି
ପାଶରେ ଯେ ବସାଇଲେ ପାଣ୍ଡବ କିରୀଟୀ ।
ଉଡ଼ିଲା ଗରୁଡ଼ ପ୍ରଭୁ ବସନ୍ତେ ପୃଷ୍ଠରେ
ଘଡ଼ିକେ ପ୍ରବେଶ ହେଲା ହସ୍ତିନା ନଗରେ ।
ଯେତେଦୂରୁ ଦେଖିଲେ ସେ ଯୁଧିଷ୍ଠି ଆସ୍ଥାନ
ତେତେଦୂରୁ ପ୍ରଣମିଲେ କୃଷ୍ଣ ଅରଜୁନ ।
ଶୁଭ ଆଶୀର୍ବାଦ କଲେ ଧର୍ମଙ୍କ ନନ୍ଦନ
ଆସ ଆସ ପାଶେ ଆସ ପଙ୍କଜ ଲୋଚନ ।
ସ୍ନେହରେ ଡାକନ୍ତେ ପାଶେ ଗଲେ ଯଦୁସାଇଁ
ବିନୟରେ କାର ଯୋଡ଼ି ଶ୍ରୀଛାମୁରେ ରହି ।
ପୁଣ ପୁଣ ଦୟାମୟ ଭକ୍ତି ମାନସରେ
ସାଷ୍ଟାଙ୍ଗେ ନମିଲେ ତାଙ୍କ ଚରଣ ତଳରେ ।
ଯୁଧିଷ୍ଠିର ଆଜ୍ଞା ଦେଲେ ଯାଅରେ ନକୁଳ
ତଲୁ ତୋଳି ଶ୍ରୀକୃଷ୍ଣଙ୍କୁ ଆଣ କରି କୋଳ ।
ମାଦ୍ରୀର ନନ୍ଦନ ଗଲା ଆଜ୍ଞା ପରମାଣେ
ଶ୍ରୀକୃଷ୍ଣଙ୍କୁ କୋଳ କରି ଆଣିଲା ତକ୍ଷଣେ ।
ଉଠିଲେକ ନାରାୟଣ ଧର୍ମ ଆଜ୍ଞା ପାଇ
ଉଭା ହେଲେ ନମ୍ରଭାବେ ପଛଘୁଞ୍ଚା ଦେଇ ।
ତଦପରେ ପୁଚ୍ଛାକଲେ ବେନି କରଯୋଡ଼ି
କେଉଁକାର୍ଯ୍ୟେ ଡକାଇଲେ କହନ୍ତୁ ତା ଫେଡ଼ି ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଦାମୋଦର
ନାରଦଙ୍କ ବାକ୍ୟେ ଥୟ ନୁହେଁ ମୋ ଶରୀର ।
ଏବେ ହରି ନାରଦଙ୍କୁ କର ସୁମରଣା
ସେ କହିବେ ତୁମ୍ଭ ଆଗେ ସକଳ ଘଟନା ।

ଯୁଧିଷ୍ଠିର ବାକ୍ୟେ ହରି ନାରଦେ ଚିନ୍ତନ୍ତେ
ସେକ୍ଷଣି ନାରଦ ସ୍ଥିତ ହରିଙ୍କ ଅଗ୍ରତେ ।
ଲକ୍ଷ୍ମୀପତି ପଚାରିଲେ ନାରଦଙ୍କୁ ଚାହିଁ
କହ ଆହେ ଋଷି କେଉଁ ବିଷୟ ଅଛଇ ।
ନାରଦ ବୋଇଲେ ବଡ଼ ଦୁଃଖର ବିଷୟ
କି କହିବି ତୁମ୍ଭ ଆଗେ ପ୍ରଭୁ ଦୟାମୟ ।
ଦିନେ ମୁହିଁ ସଂଯମନୀପୁରେ ଯାଇଥିଲି
ଏହାଙ୍କ ପିତା ପଣ୍ଡୁଙ୍କୁ ସେଠାରେ ଦେଖିଲି ।
ବ୍ରହ୍ମହତ୍ୟା ଦୋଷ ଯୋଗୁଁ ଦୁଷ୍ଟ ଜନ୍ତୁପତି
ପଣ୍ଡୁଙ୍କୁ ଛିଡ଼ା କରାଇ ଦିଏ ଏହି ଶାସ୍ତି ।
ପୁନରପି ଏହା ଶୁଣି ଦେବ ଯୁଧିଷ୍ଠିର
ହାୟ କହି ଲୋଟିଲେ ସେ ଧରଣୀ ଉପର ।
କୋଳକରି ଉଠାଇଲେ ତାଙ୍କୁ ଜଗନ୍ନାଥ
ଏଥିପାଇଁ ଆହେ ଦେବ ନ ହୁଅ ଚିନ୍ତିତ ।
ଯୁଧିଷ୍ଠି ବୋଇଲେ ଆହେ ଜନ୍ତୁ ଅଧିପତି
ମୋର ସମ ପୁତ୍ର ଥାଉ ପିତାଙ୍କୁ ଏ ଶାସ୍ତି ।
ଏହା ଶୁଣି ସହ୍ୟ ହେବ କାହାର ଶରୀର
ହେବି ତୀର୍ଥବାସୀ ମୁହିଁ ହୋଇ ଦେଶାନ୍ତର ।
ଗଙ୍ଗା ଗୟା ଗୋଦାବରୀ ଆଉ ବୈତରଣୀ
ନର୍ମଦା ସିନ୍ଧୁ କାବେରୀ କେଦାର ତ୍ରିବେଣୀ ।
ଫଲ୍‌ଗୁ ସ୍ୱର୍ଣ୍ଣରେଖା ଭଦ୍ର ମଣିକର୍ଣ୍ଣ ତୀର୍ଥେ
ଗମିବି ଏ ସର୍ବତୀର୍ଥେ ପିତା ମୁକ୍ତି ଅର୍ଥେ ।
ଜଗତ ମୋହନ ତୁହି ପତିତୋଦ୍ଧାରଣ
ଗାନ୍ଧାରୀ ପୁତ୍ରଙ୍କୁ ତୋତେ କଲି ସମର୍ପଣ ।
ଦୟାକରି ଚାହିଁଥିବୁ ତାଙ୍କୁ ନାରାୟଣ
ଯାଉଛି ମୁଁ ପିତାଙ୍କର ଗତିର କାରଣ ।
ଧର୍ମକୁ ବୋଧି ନାରଦେ ପୁଚ୍ଛିଲେ ଶ୍ରୀହରି
ବ୍ରହ୍ମହତ୍ୟାରୁ ତରିବେ କେଉଁ କାର୍ଯ୍ୟକରି ।
ନାରଦ ବୋଇଲେ ହରି ଅଛି ପ୍ରତିକାର
ତହିଁର କାରଣ ତୁମ୍ଭେ ଶୁଣ ଚକ୍ରଧର ।
ଅନ୍ନଦାନ ଯେବେ କେହି ଦିଏ ଅନୁକ୍ଷଣ
ତେବେ ବ୍ରହ୍ମହତ୍ୟା ଦୋଷୁଁ ହେବ ପରିତ୍ରାଣ ।
ନତୁବା ଯେ ଦୋଷୀ ସେହି ଯେବେ ବ୍ରହ୍ମଜ୍ଞାନ
ସାଧିପାରେ ସେ ହୋଇବ ପାପରୁ ମୋଚନ ।
ନୋହିଲେ ଯେବେ ପାରଇ ବହୁତୀର୍ଥ କରି
କିବା ରଣଯଜ୍ଞେ ମରେ ଅସ୍ତ୍ର ଶସ୍ତ୍ର ଧରି ।
କି ଅବା ପ୍ରୟାଗଜଳେ ଦେବ ଯେବେ ଝାସ
ତାହାର ଖଣ୍ଡନ ହେବ ବ୍ରହ୍ମହତ୍ୟା ଦୋଷ ।
ନାରଦ ବୋଇଲେ ତୁମ୍ଭେ ବୁଝ ଦେବରାୟ
ବ୍ରହ୍ମହତ୍ୟା ଦୋଷକୁ ଯେ ଏ ପାଞ୍ଚ ଉପାୟ ।

ଯୁଧିଷ୍ଠି ବୋଇଲେ ଶୁଣ ଆହେ ଭାବଗ୍ରାହୀ
ପିତା ଯେ ଦୁଃଖ ଭୋଗନ୍ତି ଯମପୁରେ ରହି ।
ମୁଁ କ୍ରିୟା କରିପାରିବି ଉଦ୍ଧରିବେ ସେହୁ
ଜଣାଯାଏ ତାଙ୍କ ଗତି ନୋହିବ ଯେ ଆଉ ।
କାହାତୁଲେ ଯୁଦ୍ଧ ମୁହିଁ କରିବି ହେ ହରି
ମୋହର ସେପରି କେହି ନାହିଁ ତ ବଇରୀ ।
ବ୍ରହ୍ମଜ୍ଞାନେ ସାଧିବାକୁ ଶକ୍ତି ନାହିଁ ମୋର
କିପରି ତ୍ରାଣ ପାଇବେ ମୋହର ପିଅର ।
ସବୁବେଳେ ଦେଉଥିବି ଅବା ଅନ୍ନଦାନ
ତାହା କରିବାକୁ ନାହିଁ ମୋର କେତେ ଧନ
ଧୃତରାଷ୍ଟ୍ର ପୋଷୁଛନ୍ତି ଅନ୍ନବସ୍ତ୍ର ଦେଇ
ଅନ୍ନଦାନ ଦେବାପାଇଁ ଶକ୍ତି ହେବ କାହିଁ ।
ପ୍ରୟାଗେ ଝାସିବି ଯେବେ ପିତାଙ୍କ ନିମନ୍ତେ
ଆତ୍ମଘାତୀର ପାତକ ଲାଗିବ ଯେ ମୋତେ ।
ଜାଣୁ ଜାଣୁ ଏହା ମୁହିଁ କରିବି କେମନ୍ତ
ମୋଦ୍ୱାରା ଏ ଚାରିକାର୍ଯ୍ୟ ନୋହିବ ସାଧିତ ।
ପାଞ୍ଚତୀର୍ଥ କରି ଆମ୍ଭେ ଯିବୁ ପାଞ୍ଚଭାଇ
ଆସିବୁ ପିତାଙ୍କ ଦୋଷ ଯେତେଦିନେ ଯାଇ ।
ଧୃତରାଷ୍ଟ୍ର ପୁତ୍ରଙ୍କୁ ମୁଁ ଦେବି ରାଜ୍ୟଭାର
ତାଙ୍କୁ ଦୟା କରିଥିବ ତୁମ୍ଭେ ଚକ୍ରଧର ।
ଯୁଧିଷ୍ଠିର ବାକ୍ୟଶୁଣି ବୋଇଲେ ଶ୍ରୀବତ୍ସି
ଅନ୍ନଦାନ ଦିଅ ତୁମ୍ଭେ ନ ଭାଳ ଯେ କିଛି ।
ନାରଦ ବୋଇଲେ ଯେବେ ଅନ୍ନଦାନ ଦେବ
ତେବେ ରାଜସୂୟ ଯଜ୍ଞକର ଧର୍ମ ଦେବ ।
ନାରଦଙ୍କ ବାକ୍ୟ ଶୁଣି ବୋଇଲେ ଅଚ୍ୟୁତ
କହ ରାଜସୂୟ ଯଜ୍ଞ ବିଧାନ କେମନ୍ତ ।
ନାରଦ ବୋଇଲେ ଶୁଣ ଆହେ ନରପତି
ଲକ୍ଷେକ ନରପତିଙ୍କୁ ଆଣିବ ନିମନ୍ତ୍ରି ।
ସବୁ ରାଜାଏ ଆସିବେ ଯେଝା ସୈନ୍ୟ ଘେନି
ବାଳଖିଲ୍ୟା ସହିତରେ ଆସିବେ ସେ ମୁନି ।
ଷୋଳଦିନ ପରିଯନ୍ତେ ହୋଇବ ଆହୁତି
ଶୌରୀ ଗୌରୀ ନଳବିଧି ରାନ୍ଧଣା ଏ ପ୍ରତି
ଯେ ଯାହା ମାଗିବ ତାହା ଦେଉଥିବ ଦାନ
ଶତ୍ରୁମିତ୍ର ସମସ୍ତଙ୍କୁ କରିବ ସମାନ ।
ଯୁଧିଷ୍ଠି ବୋଇଲେ ଶୁଣ ଦେବ ମଧୁହାରୀ
ଏହି ବିଧାନକୁ ଶକ୍ତି ନାହିଁ ତ ମୋହରି ।
ଧନାଢ୍ୟ ପଣକୁ ମୁହିଁ ନୁହଇ ଭାଜନ
ଅନୁକ୍ଷଣେ ଦାନମୁହିଁ କରିବି କେସନ ।
ମୋ ଦ୍ୱାରା ହୋଇ ନ ପାରେ ରାଜସୂୟ ସଭା
ତୀର୍ଥବାସୀ ହେବି ମୁହିଁ ଆଜ୍ଞା ମୋତେ ଦେବା

ଗୋବିନ୍ଦ ବୋଇଲେ କିପାଁ କହୁଛ ଏମନ୍ତ
ଏଥେ ଥାଇ ତାଙ୍କ ପାପ ଯେବେ ହେବ ହତ ।
ତେବେ କାହିଁପାଇଁ ଯିବ ବହୁତ ଦୂରକୁ
ନାରଦେ ବୋଇଲେ ଚିନ୍ତା ନ କର ଧନକୁ ।
ଯାହାକୁ ସପକ୍ଷ ଛନ୍ତି ପ୍ରଭୁ ଦେବରାଜା
ଲକ୍ଷ୍ମୀଦେବୀ ଯାହାଙ୍କର ଅଟନ୍ତି ଭାରିଯା ।
ସେହି ପ୍ରଭୁ ଯାକୁ ଭୃତ୍ୟପଣରେ ଖଟନ୍ତି
ଅନ୍ନ ଭୋଜନ ଦେବାକୁ କିସ ତାର ଭୀତି ।
ନାରଦ ଚାହିଁଣ ଧର୍ମ ନୃପତି ପୁଛନ୍ତି
ଲକ୍ଷେକ ରାଜା କି ଏହି ପୃଥ୍ୱୀରେ ଅଛନ୍ତି ।
ବଦନ୍ତି ଯେ ବ୍ରହ୍ମଋଷି ଶୁଣ ବାସୁଦେବ
ଚାରିଉଣା ଲକ୍ଷେ ରାଜା ପୃଥ୍ୱୀରେ ପାଇବ ।
ପଚିଶ ସହସ୍ର ରାଜା ଛନ୍ତି ପଶ୍ଚିମରେ
ଏକୋନ ପଚିଶସସ୍ର ଛନ୍ତି ଉତ୍ତରରେ ।
ପୂର୍ବଦିଗେ ଚାରିଉଣା ପଚିଶ ହଜାର
ଏକୋନ ପଚିଶସସ୍ର ଦକ୍ଷିଣ ଦିଗର ।
ଏହିରୂପେ ଚାରିଉଣା ଲକ୍ଷେ ରାଜା ଛନ୍ତି
ଏଥିମଧ୍ୟେ ଶାନ୍ତ ଆଉ ଦୁଷ୍ଟ ଯେ ଅଛନ୍ତି ।
ଚାରିଉଣା ଲକ୍ଷେ ରାଜା ଥିବାର କହିଲେ
ଏଥିରେ କି ଯାଗ ହେବ ଯୁଧିଷ୍ଠି ପୁଛିଲେ ।
ନାରଦ ବୋଇଲେ ଲକ୍ଷେଯେବେ ଉଣାହୋଇ
ରାଜୁସି ଯାଗ ନ ହୋଇ ଧର୍ମପ୍ରାପ୍ତ ନୋହି ।
ଗୋବିନ୍ଦ ବୋଇଲେ ଦେବ କଥାଏ କରିବା
ସୁବର୍ଣ୍ଣର ଚାରିଗୋଟି ରାଜା ଗଢ଼ାଇବା ।
ଯୁଧିଷ୍ଠି ବୋଇଲେ ଯାହା କହିଲ ଶ୍ରୀରଙ୍ଗ
ମୋହଦ୍ୱାରା ନୁହେ କରି ଏ ରାଜୁସି ଯାଗ ।
ଦ୍ୱାପର ଯୁଗେ ମନୁଷ୍ୟ ଉଚ୍ଚ ସାତ ହାତ
ଚାରି ପିତୁଳାକୁ ସ୍ୱର୍ଣ୍ଣ ଲାଗିବ ବହୁତ ।
ଗୋବିନ୍ଦ ବୋଇଲେ ଦେବ ଶୁଣିମା ଗୋସାଇଁ
କେବଳ ମୂର୍ତ୍ତି ଗଢ଼ିଲେ ରାଜା ନ ବୋଲାଇ ।
ସୁବର୍ଣ୍ଣର ସସ୍ରେ ରଥ ବେନିସସ୍ର ହସ୍ତୀ
ଚାରିସହସ୍ର ଅଶ୍ୱ ଯେ ସାଗରେ ପଦାତି ।
ଛତ୍ର ବାଦ୍ୟ ଆଦିକରି ସୁବର୍ଣ୍ଣ ନିଶାଣ
ଏପରି ହୋଇଲେ ବୋଲି ରାଜା ଏକ ଜାଣ
ଯୁଧିଷ୍ଠି ବୋଲେ ମୋ ଦ୍ୱାରା ନୁହଇ ଏ ଯାଗ
ଏହି କଥା ଶୁଣି ମୋର ହେବ ପ୍ରାଣତ୍ୟାଗ ।
ନାରଦ ବୋଲେ ଯୁଧିଷ୍ଠି ଚିନ୍ତା ତୁ ନ କର
ସ୍ୱର୍ଣ୍ଣ ଲକ୍ଷେ ରାଜା କରି ପାରନ୍ତି ଶ୍ରୀଧର ।
ଯୁଧିଷ୍ଠି ତୃପ୍ତ ହୋଇଲେ ଋଷିବାକ୍ୟ ଶୁଣି
ଲକ୍ଷେ ରାଜାକୁ ସାଧିବ କେହୁ ଚକ୍ରପାଣି ।

ନାରଦ ବୋଇଲେ ଶୁଣ ତୁ ହେ ଧର୍ମରାୟ
ସବୁ ସୁବିଧା କରିବେ ଏହି ଦୟାମୟ ।
ଚାରିଉଣା ହୋଇବାରୁ ଭାଳୁଛ ଗୋବିନ୍ଦ
ଛୟାଣୋଇ ସସ୍ତ୍ର ରଖିଅଛି ଜରାସନ୍ଧ ।
ପରଦିନ ହୋଇବ ଯେ ତାହାର ଆହୁତି
ରାଜା ମାରି ଯଜ୍ଞ କୁଣ୍ଡେ ଦେବ ସେ ସବୁନ୍ତି ।
ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ଏହି କଥା ଶୁଣି
ଯାକୁ କି ଉପାୟ ଅଛି କହ ଚକ୍ରପାଣି ।
ହରି ବୋଇଲେ ତହିଁକି ନ ଭାଳ ଯୁଧିଷ୍ଠି
ତୁମ୍ଭ ପାଇଁ ରାଜାଗଣେ କରିଛି ଯେ ଗୋଷ୍ଠୀ
ଜରାସନ୍ଧକୁ ମାରିଣ ରାଜା ନିମନ୍ତ୍ରିବା
ନ ଯାଇ ଏତେକ ଏକ ଠାବରେ ପାଇବା ।
ଯୁଧିଷ୍ଠି ବୋଇଲେ ହରି ତୁମ୍ଭ ବାକ୍ୟ ଶୁଣି
ଆଶ୍ଚର୍ଯ୍ୟ ହେଉଛି ମୁହିଁ କି କରିବି ପୁଣି ।
ଜରାସନ୍ଧର କୁଆଇଁ ନାଶ କଲା କଂସ
ସେ ରାଗେ ଘେନିଲା ତୁମ୍ଭ ମଥୁରା ପ୍ରଦେଶ
ଗୋପପୁର ଛାଡ଼ି ତୁମ୍ଭେ ପଳାଇଲ ଡରେ
ଦୁଇଭାଇ ଲୁଚିଲେ ଯେ ଗୋମତୀର ତୀରେ
ଖଣା ଖୋଳାଇଣ ଜରା ପର୍ବତ ବେଢ଼ିଲା
ତୁମ୍ଭ ଯୋଗୁଁ ତହିଁ ବହୁଲୋକ ନାଶ କଲା ।
ଧର୍ମେ ଉବୁରିଣ ଗଲ ତୁମ୍ଭେ ବେନିଭାଇ
ମଧୁବନ କଟକରେ ରହିଲ ଯେ ଯାଇ ।
କାଳଦମନ ରାଜାକୁ ବଧ କରାଇଲ
ମଧୁବନ ଭାଙ୍ଗି ବହୁ ଲୋକ ନାଶ କଲ ।
ଭୟରେ ପଶିଲ ଯାଇ କାଳେବର ବନେ
ତହିଁ ଧାଡ଼ିଦେଲା ଜରା ଅତିକୋପ ମନେ ।
କାଳେବର ବନ ଭାଙ୍ଗି କରନ୍ତେଣ ଧ୍ୱସ୍ତ
ପଳାଇ ପଶିଲ ଯାଇ ହିରଣ୍ୟ ପର୍ବତ ।
ଅଷ୍ଟାଦଶ ବାର ତହିଁ ସେହି ଦେଲା ଧାଡି
ଭାଙ୍ଗିଣ ଚୂରକଲା ସେ କଣୟର ଗିରି ।
ତହୁଁ ପଳାଇଲ ଜରାସନ୍ଧର ଭୟରେ
କୁଟୁମ୍ବ ଘେନି ପଶିଲ କ୍ଷୀରୋଦ ଭିତରେ ।
କୁଶସ୍ଥଳୀ ଦ୍ୱାରାବତୀ ନାମ ତାର ହେଲା
ଜଳରାଜ ତୁମ୍ଭଙ୍କୁ ଯେ ତହିଁଠାବ ଦେଲା ।
ବଳରାମଙ୍କ ଲଙ୍ଗଳେ ନ ମରିଲା ଜରା
ଦୁର୍ବାର ବଳବନ୍ତ ସେ ଅଟେ ମହାବୀରା ।
କେମନ୍ତ ଜରା ପୁରକୁ ଯିବା ଇଚ୍ଛା କରୁ
ଗତକଥାମାନ ହରି ମନୁ କି ପାସୋରୁ ।
ଗୋବିନ୍ଦ ବୋଇଲେ ଦେବ ତୁମ୍ଭ କାର୍ଯ୍ୟପାଇଁ
ଜରାସନ୍ଧକୁ ନ ମାରି ଗଲି ଛାଡ଼ିଦେଇ ।
ଭୀମ ଅର୍ଜ୍ଜୁନ ଦୁହିଁଙ୍କୁ ମୋର ସଙ୍ଗେ ଦେବ
ମାରିବା ଜରାକୁ ମନେ ଭୟ ନ କରିବ ।
ଯୁଧିଷ୍ଠି ଚାହିଁଲେ ସହଦେବଙ୍କ ବଦନ
ଜରା ବଧି ପାରିବେ କି କହ ଜନାର୍ଦ୍ଦନ ।
ସହଦେବ ବୋଇଲେ ତା ଜାଣନ୍ତି ଅଚ୍ୟୁତ
ଜରା ମୃତ୍ୟୁଭେଦ ଅଛି ଭୀମସେନ ହସ୍ତ ।
ସହଦେବ ବାକ୍ୟ ଶୁଣି ଛାଡ଼ିଲେ ସେ ଭ୍ରାନ୍ତି
ଜରାପୁରେ ଯିବାପାଇଁ ସଜ ଶିରୀପତି ।
ଭୀମ ଅର୍ଜ୍ଜୁନକୁ ଘେନି ଦେବ କୁତୂହଳେ
ଯୁଧିଷ୍ଠିଙ୍କ ପାଦପଦ୍ମେ ପ୍ରଣିପାତ କଲେ ।
କଲ୍ୟାଣ ବାଞ୍ଛିଲେ ତାଙ୍କୁ ଦେବ ଧର୍ମସୁତ
ବାଞ୍ଛା ସିଦ୍ଧହେଉ ଚିରଆୟୁ ଘେନି ବର୍ତ୍ତ ।
ତୁହି କରୁଣା ସାଗର ପ୍ରଭୁ ପୀତବାସ
ରିପୁମର୍ଦ୍ଦନ ନାଥ ତୁ ତୋତେ ମୋର ଆଶ ।
ତୁହି ଦେବ ପ୍ରତ୍ୟକ୍ଷରେ ଅଟୁ ଯଜ୍ଞକର୍ତ୍ତା
ଅଭୟ ବରଦାୟକ ସର୍ବ ପିତାମାତା ।
ଯେହୁ ତୋତେ ଚିନ୍ତେ ମନ ବଚନ କର୍ତ୍ତବ୍ୟେ
ତାହାର ମଙ୍ଗଳ କରୁ ତୁହିଁ ବାସୁଦେବେ ।
କ୍ଷତ୍ରିୟ ବୃତ୍ତି ଅଟଇ ଦେବ ବଡ଼ କଷ୍ଟ
ତୋ ପ୍ରସନ୍ନେ ମୋର କଷ୍ଟ ଏବେ ହେବ ନଷ୍ଟ
ମୁହିଁ ଅନାଥ ଯେ ତୁହି ଅନାଥଙ୍କ ବନ୍ଧୁ
ଭକତ ବତ୍ସଳ ନାଥ ଅଟୁ କୃପାସିନ୍ଧୁ ।
ଅପାର ମହିମା ତୋର ନ ସରେ କହନ୍ତେ
ମୁହିଁ ତୋହର ଶରଣ ଉଦ୍ଧର ଯେ ମୋତେ ।
ଦଧିବାମନ ସୁମରି କରନ୍ତୁ ଗମନ
ଶୁଭେ ଜୟଲାଭ କରି କର ଆଗମନ ।
ଏହା କହି ଯୁଧିଷ୍ଠିର ହୋଇଲେ ମଉନ
ତିନିଜଣ ଯିବାପାଇଁ ସଜ ସେହିକ୍ଷଣ ।
ଜୟ ଜଗନ୍ନାଥ ନବ ଜଳଧର କାନ୍ତି
ଯେମାନେ ତୁମ୍ଭଙ୍କୁ ସଦା ହୃଦରେ ଚିନ୍ତନ୍ତି ।
ତାହାଙ୍କ ସର୍ବ ବିପଦ କର ତୁମ୍ଭେ ନାଶ
ଆବର ତାଙ୍କୁ ଅଭୟ ଦିଅ ପୀତବାସ ।
ଯାଠାରେ ତୁମ୍ଭେ କରୁଣା କର ଆହେ ହରି
ମନ୍ଦକର୍ମରେ ନ ଯାଏ ମାନସ ତାହାରି ।
କରୁଣାସାଗର ପ୍ରଭୁ ଆହେ ଭଗବାନ
କରୁଣା କରନ୍ତୁ ବାରେ ମୋଠାରେ ଆପଣ ।
ଯାଉ ମୋ ମୂଢ଼ତା ହେଉ ଜ୍ଞାନର ସଞ୍ଚାର
ଏତିକି ପ୍ରାର୍ଥନା ପ୍ରଭୁ ଶାରଳା ଦାସର ।



## ଶ୍ରୀକୃଷ୍ଣ ସହିତ ଭୀମାର୍ଜ୍ଜୁନଙ୍କର ମଗଧଦେଶ ଗମନ

ଏଥୁ ଅନନ୍ତରେ ପୁଣି ମନୁ ଦଣ୍ଡଧର
ଅଗସ୍ତିଙ୍କୁ ପୁଚ୍ଛାକଲେ ଯୋଡ଼ି ବେନିକର ।
କହ ମୁନି କେଉଁରୂପେ କୃଷ୍ଣ ଭୀମ ପାର୍ଥ
ମଗଧକୁ ଯାଇ କଲେ ଜରାସନ୍ଧ ହତ ।
ଏ କଥା ଶୁଣିବାପାଇଁ ହୁଏ ଇଚ୍ଛା ମୋର
ବିସ୍ତାରି କହିଣ ମୋର ଚିତ୍ତ ତୃପ୍ତି କର ।
ଅଗସ୍ତି କହିଲେ ରାଜା କର ଅବଧାନ
ଯାହା ପଚାରିଲ ତାହା ମନଦେଇ ଶୁଣ ।
ମକର ଶୁକ୍ଳପଞ୍ଚମୀ ଅଟେ ଗୁରୁବାର
ରେବତୀ ନକ୍ଷତ୍ର ଭୋଗ ହେଲା ସେ ଦିନର ।
ବବ ନାମରେ କରଣ ସାଧ ନାମେ ଯୋଗ
ପଶ୍ଚିମ ଦିଗେ ବିଜୟ କରିଲେ ଶ୍ରୀରଙ୍ଗ ।
ଅଢ଼ାଇ ପ୍ରହର ତହିଁ ହୋଇଥିଲା ବେଳ
ରୋହିଣୀ ଚନ୍ଦ୍ର ବେଳାରେ କଲେ ଅନୁକୂଳ ।
ଅମୃତାକ୍ଷ ନାମେ କାଳ ଉତ୍ତରରେ ସ୍ଥିତି
ଦକ୍ଷିଣ ଯୁଗେ ଯୋଗିନୀ ମହାମାୟା ମୂର୍ତ୍ତି ।
ତାର ବାର ନକ୍ଷତ୍ର ଯେ ଶୁଭଯୋଗ ଘେନି
ଗମିଲେ ପଶ୍ଚିମେ କୃଷ୍ଣ ଭୀମ ଫାଲଗୁନି ।
ପଶ୍ଚିମ ଦିଗେ ଚଳିଲେ ଦେବ ଜଗନ୍ନାଥ
ଦୁଇଦିନେ ପ୍ରବେଶିଲେ ଯାଇ ସୋମନାଥ ।
କାଶୀକୁଣ୍ଡରେ ସମସ୍ତେ ସ୍ନାନଆଦି ସାରି
ସୋମେଶ୍ୱରଙ୍କୁ ଦର୍ଶନ କଲେ ଦେବହରି ।
ଜୟ ଜୟ ବିଶ୍ୱନାଥ ତୁ ଚନ୍ଦ୍ରମଉଳି
ଅଭୟ ବରଦାତା ତୁ ଜୟ ଦେବ ଶୂଳି ।
ଅନ୍ଧକକୁ ବିଦାରିଲୁ ତ୍ରୈଲୋକ୍ୟର ହିତେ
କାଳକୂଟ ଭକ୍ଷିଲୁ ତୁ ସଂସାର ରକ୍ଷାର୍ଥେ ।
ତ୍ରିପୁରାସୁର ନାଶନ୍ତେ ନାମ ତ୍ରିପୁରାରି
ଦକ୍ଷଯଜ୍ଞ ନାଶକଲୁ ମନେ କ୍ରୋଧକରି ।
ଆପଣେ ଦୁଃଖରେ ପଡ଼ି ଦେବଙ୍କୁ ଉଦ୍ଧରୁ
ଭକ୍ତଜନ ବରଦାତା ପୃଥ୍ୱୀ ରକ୍ଷାକରୁ ।
ଏହିରୂପେ ବହୁସ୍ତୁତି କରିଣ ରୁଦ୍ରଙ୍କୁ
ଶତସସ୍ର ଦଣ୍ଡବତ କଲେ ସେ ତାହାଙ୍କୁ ।
ନାରାୟଣଙ୍କ ବିନୟ ଦେଖି କାଶୀବାସୀ
ବୃଷଭ ଆରୋହୀ ବିଜେ ତାଙ୍କପାଶେ ଆସି ।
ଧବଳ ଶରୀର ଆଉ ପାଞ୍ଚଟି ଆନନ
ପଞ୍ଚଦଶ ନେତ୍ର ତହିଁ ପ୍ରବେଶି ତକ୍ଷଣ ।
ଭୀମ ଅର୍ଜ୍ଜୁନଙ୍କୁ ଦେଖି ହସିଲେ କପାଳୀ
ବୋଇଲେ କା ପୁରେ ବିଜେ କର ବନମାଳୀ ।
କରଯୋଡ଼ି ବୋଇଲେ ଯେ ଦେବ ନାରାୟଣ
ରାଜସୂୟଯଜ୍ଞ କରିବେ ଯୁଧିଷ୍ଠି ରାଜନ ।
ନାରଦ କହିଣ ଗଲେ ଯୁଧିଷ୍ଠି ଦେବଙ୍କୁ
ଜରା ବନ୍ଦୀ କରିଅଛି ବହୁତ ରାଜାଙ୍କୁ ।
ଭୀମ ଅର୍ଜ୍ଜୁନ ସହିତେ ଆଜ୍ଞାଦେଲେ ମୋତେ
ମଗଧ ଦେଶ ଯାଉଛୁ ଜରାର ନିମନ୍ତେ ।
ହର ବୋଲେ ଜାଣିଛ ନା ତାର ମୃତ୍ୟୁଭେଦ
ଭୀମ ଦ୍ୱାରା ନାଶଯିବ ସେହି ଜରାସନ୍ଧ ।
ତୁମ୍ଭେ ଆଉ ଅରଜୁନ ନ ପଶିବ ଯୁଦ୍ଧେ
ଭୀମସେନଙ୍କୁ ପେଷିବ ଜରାର ସନ୍ନିଧେ ।
ଯା କହି ବିଭୂତି କାଢ଼ି ଲେପି ଭୀମକାୟେ
ବୋଇଲେକ ତାକୁ ଆଉ ତୋର ନାହିଁ ଭୟେ ।
ଜରା ମୃତ୍ୟୁଭେଦ ଶୁଣ ହେ ପବନ ବାଳ
ଜନମ କାଳରେ ଜରା ଅଟେ ବେନିଫାଳ ।
ଖଡଗ ନ କାଟିବଟି ଶକ୍ତି ହେବ ଚୂର
ଜଳ ଅନଳରେ ଜରା ନୁହେଁ ମରିବାର ।
ଏହି କଥା ଭଲରୂପେ ଭୀମ ଜାଣିଥିବୁ
ଦୁଇଫାଳ କରି ତାକୁ ଚିରି ପକାଇବୁ ।
ତେବେ ସେ ନାଶଯିବଟି ଦୁଷ୍ଟ ଜରାସନ୍ଧ
ଭୀମକୁ କହିଲେ ଏହା ଦେବ ସଦାନନ୍ଦ ।
ଭଲ ଯାଗ ଗୋଟିଏ ଯେ କରିବେ ଯୁଧିଷ୍ଠି
ଯାଗେ ମୋତେ ନିମନ୍ତ୍ରଣ କରିବୁ କିରୀଟି ।
ସଦାଶିବଙ୍କ ମୁଖରୁ ଅସ୍ତୁ କଥା ଶୁଣି
ଜୟ ଶଙ୍ଖ ବଜାଇଲେ ଦେବ ଚକ୍ରପାଣି ।
ଏହାକହି ସଦାନନ୍ଦ ହେଲେ ଅନ୍ତର୍ଦ୍ଧାନ
ତହିଁ ତିନିଜଣ ଗଲେ ନିରାକୁଳ ବନ ।
ସେ ବନ ଜିଣିଣ ଗଲେ ଯୋଜନ ଦ୍ୱାଦଶ
ପଦ୍ମଦଳ ଦେଶେ ଯାଇ ହୋଇଲେ ପ୍ରବେଶ ।
ପଦ୍ମକେଶରୀ ବୋଲିଣ ସେ ଦେଶ ରାଜନ
ତାହାଙ୍କୁ ନେଇଣ ଜରା କରିଛି ବନ୍ଧନ ।
ସେ ରାଜ୍ୟଲୋକ ସକଳ ଆକୁଳ ହୋଇଣ
ରାଜାର ଗୁଣ ସୁମରି କରନ୍ତି କ୍ରନ୍ଦନ ।
ଜଗନ୍ନାଥ ପୁଚ୍ଛା କଲେ ସେମାନଙ୍କୁ ରାଇ
ଏଡ଼େବଡ଼ ରାଜ୍ୟ ଏତେ ଶୋକ କାହିଁପାଇଁ ।
ସେ ବୋଇଲେ ଆମ୍ଭ ରାଜା ପଦ୍ମ ଯେ କେଶରୀ
ଜରାସନ୍ଧ ତାହାକୁ ଯେ ନେଇଅଛି ଧରି ।
ଜଗନ୍ନାଥ ଚାହିଁଲେ ଯେ ଭୀମର ବଦନ
ତୋହଯୋଗୁ ଶାନ୍ତ ହେବ ପୃଥ୍ୱୀ ଶୋକମାନ ।

ଏତେ କହି ଦେବ ସେହି ରାଜ୍ୟ ଛାଡ଼ିଗଲେ
ମାନଭଙ୍ଗ ଦେଶେ ଯାଇ ପ୍ରବେଶ ହୋଇଲେ ।
ମାନାର୍ଜ୍ଜୁନ ବୋଲିକରି ତହିଁର ରାଜନ
ତାକୁ ନେଇ ଜରାସନ୍ଧ କରିଛି ବନ୍ଧନ ।
ବହୁ ରୋଦନ କରନ୍ତି ସେଠାକାର ଜନ
ରହିଣ ପୁଚ୍ଛା କରିଲେ ତହୁଁ ଅରଜୁନ ।
ଏଡ଼େବଡ଼ ରାଜ୍ୟ ଲୋକେ ବିକଳ କିପାଇଁ
ବୋଇଲେ ରାଜାକୁ ନେଲା ମଗଧର ସାଇଁ ।
ଏହା ଶୁଣି ସେହି ରାଜ୍ୟ ତେଜିକରି ଗଲେ
ନିରସ୍ତ ଦେଶରେ ଯାଇ ପ୍ରବେଶ ହୋଇଲେ ।
ମାଧବସେନ ବୋଲିଣ ତହିଁର ନୃପତି
ତାହାକୁ ଧରି ନେଇଛି ମଗଧାଧିପତି ।
ବିକଳ ଦେଖିଣ ତହିଁ ପୁଚ୍ଛି ମଧୁରିପୁ
ବୈକୁଲ୍ୟେ କହିଲେ ଲୋକେ ହୋଇ ହୀନବପୁ
ସେହି ଦେଶ ଜିଣି ଦେବ ଚଳିଲେ ବହନ
ପ୍ରବେଶ ହୋଇଲେ ଯାଇ ହରଷ ଉଦ୍ୟାନ ।
ତହିଁ ରାଜା ନାମ ଅଟେ ଭୀମ ଚକ୍ରବର୍ତ୍ତୀ
ତାହାକୁ ଧରି ନେଇଛି ମଗଧାଧିପତି ।
ବହୁ ବିକଳ ହୁଅନ୍ତି ସେଠାକାର ଲୋକେ
ପୁଚ୍ଛୁ କହି ନ ପାରନ୍ତି ପଡ଼ି ମହାଶୋକେ ।
ଆମ୍ଭରି ରାଜାକୁ ଜରାସନ୍ଧ ନେଲା ଧରି
କାଲି ଆହୁତିରେ ଦେବ ତାଙ୍କୁ ମାରିକରି ।
ଗୋବିନ୍ଦ ଚାହିଁଲେ ଭୀମସେନଙ୍କର ମୁଖ
ତୋହଯୋଗୁଁ ପାରଯିବ ଏହାଙ୍କର ଦୁଃଖ ।
ସାଧୁ ସାଧୁ ମାରୁତି ତୋ ଜୀବନହିଁ ଧନ୍ୟ
ଶୁଭକ୍ଷଣେ ମାତା ତୋତେ କରିଲା ଜନମ ।
ଭୀମସେନ ବୋଲେ ସ୍ୱାମୀ ନାହିଁ ଆଉ ଦିନ
ପୂର୍ଣ୍ଣାହୁତି ଦେବେ କାଲି ରାତି ବିଦ୍ୟମାନ ।
ଏଠାକୁ ମଗଧ ରାଜ୍ୟ ଅଛି କେତେ ଦୂର
କୃଷ୍ଣ ବୋଇଲେ ଏଠାକୁ ଯୋଜନ ପନ୍ଦର ।
ଭୀମସେନ ବୋଲେ ଦେବ ନୋହିବଯେକାର୍ଯ୍ୟ
ହସ୍ତିନାକୁ ଫେରିଯିବା ଚାଲ ଦେବରାଜ ।
ଶୁଣି ମନେ ବିଚାରିଲେ ଦେବ ଦାମୋଦର
ବିନତା ସୁତ ସ୍ମରଣ କରନ୍ତେ ମନର ।
ଖଗେଶ୍ୱର ରହିଥିଲା ରମ୍ୟକର ଦ୍ୱୀପେ
କ୍ଷଣକେ ପ୍ରବେଶ ହେଲା କୃଷ୍ଣଙ୍କ ସମୀପେ ।
କୃଷ୍ଣ ବୋଇଲେ ପିଠିରେ ଘେନ ତୁ ଆମ୍ଭଙ୍କୁ
ଏହିକ୍ଷଣି ଘେନିଯାଅ ମଗଧ ରାଜ୍ୟକୁ ।
ତିନିଙ୍କୁ ଘେନିଣ ପକ୍ଷୀ ଉଡ଼ିଲା ଗଗନେ
ରାତ୍ରଅର୍ଦ୍ଧେ ମିଳିଲା ଯେ ମଗଧ ଭୁବନେ ।
ମୋକ୍ଷ ପର୍ବତର ତଳେ କାବେରୀର ନଦୀ
ବାରସ୍ୱତୀ ଈଶାନରୁ ଆସୁଅଛି ଭେଦି ।
ସେ ନଦୀ ତୀରରେ ଜାଣ ମଗଧ ପର୍ବତ
ରାତ୍ରେ ପ୍ରବେଶିଲା ତହିଁ ବିନତାର ସୁତ ।
ଗରୁଡ ବୋଇଲା ସ୍ୱାମୀ ଏ ମଗଧ ଦେଶ
ଯଜ୍ଞଶାଳ ଏହିଠାକୁ ଯୋଜନ ଯେ ଦଶ ।
କୃଷ୍ଣ ବୋଇଲେ ତୁ ଥାଅ ହୋଇଣ ଗୋପନ
ରାତ୍ର ଶେଷରେ ବୁଝିବା ଆହୁତି ବିଧାନ ।
ଭୀମ ଅର୍ଜ୍ଜୁନ ରହିଲେ ଖଗେଶ୍ୱର ପିଠି
ଶ୍ରୀକୃଷ୍ଣ ଧଇଲେ ତହିଁ ମାୟାରୂପ ଗୋଟି ।
ରଜନୀ ଶେଷ ହୋଇଲା ରହି ସେହିଠାବେ
ଗରୁଡ଼ ପିଠି ଉପରୁ ଉତୁରିଲେ ସର୍ବେ ।
କାବେରୀ ଗଙ୍ଗାଜଳେ ସ୍ନାନ କଲେ ହରି
ପଥେ ବ୍ରାହ୍ମଣେକ ଦେଖି ତାହାକୁ ପଚାରି ।
ମଗଧ ଦେଶର ରାଜା ବିଜେ ଆଜ କାହିଁ
ବିପ୍ର ବୋଲେ ଯାଗଶାଳେ ବିଜେ ନରସାଇଁ ।
ଆଜର ରାତ୍ରେ ହୋଇବ ସମ୍ପୂର୍ଣ୍ଣ ଆହୁତି
ରାଜାଗଣେ ବଳିଦେବ ମଗଧାଧିପତି ।
ଗରୁଡ଼ରୁ ଉତୁରିଲେ ଭୀମ ଅରଜୁନ
କାବେରୀ ନଦୀରେ ସାରି ନିତ୍ୟକର୍ମମାନ ।
ତର୍ପଣ କରିଣ ସୂର୍ଯ୍ୟଦେବେ ଅର୍ଘ୍ୟଦେଲେ
ସ୍ତବ ପାଠ କରି ଦୁହେଁ କୂଳରେ ବସିଲେ ।
ଦାନ ଘେନିଣ ବ୍ରାହ୍ମଣେ ଆସନ୍ତି ଗହଳେ
ଦେବ ଜନାର୍ଦ୍ଦନ ଯାଇ ତାହାଙ୍କୁ ପୁଚ୍ଛିଲେ ।
ଯେଉଁଠାରେ ହେଉଅଛି ରାଜାଙ୍କ ଆହୁତି
ସେ ଯଜ୍ଞଠାକୁ ଯିବାକୁ ଅଛିକିନା ଭୀତି ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ ଦ୍ୱିଜବର
ପ୍ରଥମ ଦ୍ୱାରେ ଅଛି ଯେ ଜରାର କୁମର ।
ବଳିଷ୍ଠ ଅଟଇ ସେହି ରାଜାର ବିଶ୍ୱାସ
ଅସ୍ତ୍ରଥିଲେ ବିପ୍ର ହେଲେ କରେ ପ୍ରାଣ ନାଶ ।
ଦ୍ୱିତୀୟ ଦ୍ୱାରରେ ଜାଣ ଭେରୀ ଏକ ଥାଇ
ଶତ୍ରୁ ଉପଗତ ହେଲେ ଶବଦ କରଇ ।
ଶବଦ ଶୁଣିଲେ ଅସ୍ତ୍ର ଧରେ ଜରାସନ୍ଧ
ଯଜ୍ଞଶାଳୁ ବାହାରିଣ କରଇ ସେ ଦ୍ୱନ୍ଦ୍ୱ ।
ତୃତୀୟ ଦ୍ୱାରେ ଶିମୁଳିବୃକ୍ଷ ଏକ ଅଛି
ସେ ବୃକ୍ଷରେ ଫୁଲ ଫଳ ନ ଥାଏ ଯେ କିଛି ।
ଶତ୍ରୁ ଆସି ଉପଗତ ହୁଏ ଯେତେବେଳେ
ଅଦଭୂତେ ଫୁଲ ଫୁଟେ ବୃକ୍ଷେ ସର୍ବଡାଳେ ।
ଜାଣଇ ଯେ ଜରାସନ୍ଧ ଶତ୍ରୁ ଉପଗତ
ଶସ୍ତ୍ର ଧଇଲେ ଜିଣନ୍ତା ନାହିଁ ତ୍ରିଜଗତ ।

ଚତୁର୍ଥ ଦ୍ୱାରରେ ଜାଣ ଗର୍ଦ୍ଦଭେକ ଥାଇ
ଶତ୍ରୁ ଉପଗତହେଲେ ଉଚ୍ଚରେ ବୋବାଇ ।
ଜାଣିଣ ଶସ୍ତ୍ର ଧଇଲେ ମଗଧ ରାଜନ
ତେଣୁ ଶତ୍ରୁ ନ ପାରଇ ପଶି ତା ଭୁବନ ।
ଯଦି ବ୍ରହ୍ମା ରୁଦ୍ର ଇନ୍ଦ୍ର ହେଲେ ଚକ୍ରଧାରୀ
ଅସ୍ତ୍ର ଧରନ୍ତେ ରାଜାଙ୍କୁ କେହି ନୁହେଁ ସରି ।
ପଥୁକୀଙ୍କ ମୁଖୁ ହରି ଏହିପରି ଶୁଣି
ଗରୁଡ଼କୁ ହକାରିଲେ ଦେବ ଚକ୍ରପାଣି ।
ସମସ୍ତ ଅସ୍ତ୍ର ଥୋଇଲେ ତାହାର ଉପରେ
ଆମ୍ଭ ସଲଖେ ଉପରେ ତୁ ଥିବୁ କହିଲେ ।
ଯେତେବେଳେ ଯେଉଁଅସ୍ତ୍ରେ ହୋଇବଟି କାର୍ଯ୍ୟ
ତତକ୍ଷଣେ ସେହି ଅସ୍ତ୍ର ଦେବୁ ଖଗରାଜ ।
କ୍ଷତ୍ରୀରୂପ ଛାଡ଼ି କୃଷ୍ଣ ଭୀମ ଫାଲଗୁନି
ବ୍ରାହ୍ମଣର ସ୍ୱରୂପକୁ ଧଇଲେ ସେ ତିନି ।
ସର୍ବାଙ୍ଗରେ ଘେନିଲେ ସେ ଦ୍ୱାଦଶ ତିଳକ
ଯଜ୍ଞୋପବୀତ ଶୋଭନ ଦିଶଇ ଯେ ବକ୍ଷ ।
ଲମ୍ବିତ ଜୁଡ଼ା ତାଙ୍କର ଦିଶେ ସୁଶୋଭନ
ବେଦମନ୍ତ୍ର ପୋଥିକୁ ସେ କାଖରେ ଯାକିଣ ।
ହସ୍ତେ କୁଶବଟୁ ଶୋଭା ଗଡୁ ତମ୍ବାପାତ୍ରି
ରାଜାଙ୍କ ପୁରେ ଚଳିଲେ ସେହି ତିନିମୂର୍ତ୍ତି ।
ପ୍ରଥମ ଦ୍ୱାରରେ ଯାଇ ହୋଇଲେ ପ୍ରବେଶ
ଜରାପୁତ୍ର ସହଦେବ କରିଲେ ଆଶିଷ ।
ତିନି ବିପ୍ରେ ବସିଲେ ଯେ ପିଢ଼ାର ଆସନ
ସହଦେବକୁ କରିଲେ ବହୁତ କଲ୍ୟାଣ ।
ବେଦ ଅଧ୍ୟୟନ ଦକ୍ଷ ପ୍ରଭୁ ବାସୁଦେବ
ତାହାଙ୍କୁ ବାଛିବା ଭଳି କେ ଅଛି ମାନବ ।
ଜରାର ନନ୍ଦନ ବେଦ ଅଧ୍ୟୟନ ଶୁଣି
ଆତ୍ମା ବିସର୍ଜିଲା ସ୍ୱର ସୁମଧୁର ଜାଣି ।
ସାଧୁ ସାଧୁ ବ୍ରାହ୍ମଣ ହେ ତୁମ୍ଭର ଜୀବନ
ମାନବ ପ୍ରାୟ ନ ଦିଶ ତୁମ୍ଭେ ତିନିଜଣ ।
ମୋର ପିତା ରଚିଲାକ ଉଚ୍ଚକର୍ମ ଯାଗ
ତୃପତି ଭଜି ଧାତା ବା କଲା ଅନୁରାଗ ।
ପନ୍ଦର ଦିନ ହେଲା ମୁଁ ଅଛି ଏହିଦ୍ୱାରେ
ପରୀକ୍ଷା ଘେନିଲେ ତିନିଲକ୍ଷ ଦ୍ୱିଜବରେ ।
ତୁମ୍ଭ ସମ ବିଜ୍ଞ ବିପ୍ର ଦେଖିଲି ତ ନାହିଁ
କହି କୁମର ଉଠିଲା ଅତିବେଗ ହୋଇ ।
ରତ୍ନଝରୀ ଘେନିଣ ଯେ ରାଜାର ନନ୍ଦନ
ବିପ୍ରଙ୍କ ପାଦ ପଖାଳି କଲାକ ପୂଜନ ।
ଧନ୍ୟ ବ୍ରାହ୍ମଣ ତୁମ୍ଭେ ହେ ଦେବ ମହାବିଜ୍ଞ
ସର୍ବ ବିଦ୍ୟାରେ ନିପୁଣ ଅଟ ମହାଭାଗ ।
ଦାନର ବେଳ ସରିଲା ଆହେ ଦ୍ୱିଜବର
ଆଜକ ବିଶ୍ରାମିଥିବା ମୋହରି ପାଶର ।
ଭୋଜନ ଯୋଗାଡ଼ ଦେଇ କରିବି ମୁଁ ତୁଷ୍ଟ
କାଲିର ପ୍ରଭାତେ ତୁମ୍ଭେ ନୃପତିଙ୍କୁ ଭେଟ ।
ଦାନବେଳ ସରିଲାଣି ଆହ୍ନିକର ବେଳ
ଏହିକ୍ଷଣି ଗଲେ କାର୍ଯ୍ୟ ହୋଇବ ନିଷ୍ଫଳ ।
ଶ୍ରୀକୃଷ୍ଣଙ୍କୁ ଏହିପରି କହି ଶାନ୍ତିକଲା
ଚରଣେ କୁମର ଗଡ଼ଘାଲିଣ ନମିଲା ।
ଆଶିଷ କରି ବୋଇଲେ ତାକୁ ନାରାୟଣ
ଏ ମଗଧ ଦେଶେ ତୁହି ହୁଅ ନରରାଣ ।
ବହୁଦୂର ଚାଲି ଚାଲି ଆସିଅଛୁ ଆମ୍ଭେ
ରାଜାଙ୍କୁ ଭେଟିବା ଯାଇ ଛାଡ଼ ଦ୍ୱାର ତୁମ୍ଭେ ।
ଧାର୍ମିକ ବିବେକ ତୁହି ବହୁ ପୁଣ୍ୟବାନ
ଜରାସନ୍ଧେ ନ ଭେଟିଲେ ନାହିଁଟି ଭୋଜନ ।
ଯଦ୍ୟପି ଆମ୍ଭଙ୍କୁ ଦ୍ୱାର ନ ଛାଡ଼ିବୁ ବାବୁ
ରାଜାଙ୍କୁ ଭେଟିବାଯାଏ ଉପବାସେ ଥିବୁ ।
ଆମ୍ଭେ ବୁଭୁକ୍ଷିତ ଅଛୁ ଏ କଥା ଯଥାର୍ଥ
ଧର୍ମ ନାଶଯିବ ଯେବେ ଆମ୍ଭଙ୍କୁ ନିବର୍ତ୍ତ ।
ଏତେକ ସଂକଳ୍ପ କରି ଆସିଅଛୁ ଆମ୍ଭେ
ରାଜାର ମୁଖ ଦେଖିଲେ ତୁଷ୍ଟ ହେବୁ ସର୍ବେ ।
ସହଦେବ ବୋଲେ ରାଜାଙ୍କର ଆଜ୍ଞା ଯାହା
ତୁମ୍ଭ ଆଗେ କହିବାକୁ ଭୟ ଲାଗେ ତାହା ।
ଶ୍ରୀକୃଷ୍ଣ ବୋଇଲେ ଯେହ୍ନେ ତୋତେ ଅଛିଆଜ୍ଞା
କରୁନାହୁଁ ସେ ଆଜ୍ଞାକୁ କରୁ ତୁ ଅବଜ୍ଞା ।
କେବଳ କହୁଛୁଁ ତୁହି ନେଇ ଭିତରକୁ
ନରପତିଙ୍କି ସାକ୍ଷାତ କରାଅ ଆମ୍ଭଙ୍କୁ ।
ତୁ ତ ବ୍ରାହ୍ମଣଙ୍କୁ ନେଇ କରାଉ ଦର୍ଶନ
ଆମ୍ଭ ପାଇଁକି କିପାଇଁ ହେଉଛୁ ବିମନ ।
ହସ୍ତେ ଅସ୍ତ୍ର ଥିଲେ ସିନା କରନ୍ତୁ ବିରୋଧ
ଦେଖ ଆମ୍ଭଠାରେ ନାହିଁ କୌଣସି ଆୟୁଧ ।
ବସ୍ତ୍ର ଫେଡ଼ି ଦେଖାଇଲେ ଝଡ଼ାଝଡ଼ି କରି
ଦେଖିକରି ମନୁ ଭ୍ରାନ୍ତି ଛାଡ଼ିଲା ତାହାରି ।
ଦଧିବାମନ ସୁମରି ଯାଅ ହେ ପଣ୍ଡାଏ
ଅମୃତ ଦୃଷ୍ଟିରେ ଚାହିଁ ତୁମ୍ଭଙ୍କୁ ଯେ ରାୟେ ।
ପ୍ରଥମ ଦ୍ୱାରକୁ ଜିଣି ଯୋଜନ ଅନ୍ତରେ
ଗୋବିନ୍ଦ କହିଲେ ଭୀମ ଅର୍ଜ୍ଜୁନ ଆଗରେ ।
ଦ୍ୱିତୀୟ ଦ୍ୱାରରେ ଭେରୀ ତୃତୀୟ ଶିମ୍ଭୁଳୀ
ଚତୁର୍ଥ ଦ୍ୱାରେ ଗର୍ଦ୍ଦଭ ରହିଛି ତାହାରି ;
କହ କିଏ କେଉଁ ଦ୍ୱାରେ ଛିଦ୍ର ବଞ୍ଚାଇବ
ଆମ୍ଭ ଆସିବାର ଯେହ୍ନେ ଜଣା ନ ପଡ଼ିବ ।

ଭୀମସେନ ବୋଇଲେକ ହରିଙ୍କର ଆଗେ
ଦ୍ୱିତୀୟ ଦ୍ୱାରରେ ଭେରୀ ରହିଲା ମୋ ଭାଗେ
ଅର୍ଜୁନ ବୋଇଲେ ଦେବ ଶୁଣ ବନମାଳୀ
ତୃତୀୟ ଦ୍ୱାର ମୋ ଭାଗେ ରହିଲା ଶିମୂଳୀ ।
ତୁମ୍ଭେ ଦୁହେଁ ଦୁଇଗୋଟି ଦ୍ୱାର ନେଇ ବାଛି
ମୋ ଭାଗେ ଗଧ ରହିଲା ବୋଇଲେ ଶ୍ରୀବତ୍ସି
ଚଳିଯାନ୍ତି ତିନିଜଣ ବାୟୁଗତି ହୋଇ
ଦ୍ୱିତୀୟ ଦ୍ୱାରେ ଭେରୀକୁ ଭେଟିଲେକ ଯାଇ
ଭୀମ ମୁଖକୁ ଅନାଇ ବୋଇଲେ ଅଚ୍ୟୁତ
ଭେରୀ ନାଦ କରୁଅଛି ଏହାକୁ ନିବର୍ତ୍ତ ।
ଶତ୍ରୁ ଉପଗତ ଦେଖି ସେହି ମହାଭେରୀ
ଅତି ଉଚ୍ଚେ ଭୟଙ୍କର ଶବ୍ଦ ସେହି କରି ।
ପବନୁ ବେଗ ହୋଇଣ ଭୀମସେନ କ୍ଷେପି
ମୁଥେ ପ୍ରହାରିଲେ ଯାଇ ହୋଇ ବିଶ୍ୱରୁପୀ ।
ଭାଙ୍ଗି କରି ଭେରୀ ଗୋଟି ହୋଇଲାକ ଚୂର୍ଣ୍ଣ
ମୁକତି ପାଇଣ ଗଲା ସେହୁ ନିଜ ସ୍ଥାନ ।



## ଭେରୀର ପୂର୍ବ ବିବରଣ

ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ମହାରଥୀ
ଅମୃତ ସମାନ ଅଟେ ଏ ଭାରତ କଥା ।
ସେହି ଭେରୀ ଚରିତ ତ ବଡ଼ଇ ଦୁର୍ଲ୍ଲଭ
ସଜୀବ ନୋହି କିପରି ଦେଉଥିଲା ରାବ ।
ଏହିପରି ଭେରୀମାନ ବାଜେ ପରହସ୍ତେ
କହ ଏ ନିଜେ କିପାଇଁ ଗର୍ଜ୍ଜେ ଅଦଭୂତେ ।
ଏ ମହାଭାରତ ଅଟେ ବିଷ୍ଣୁଙ୍କ ଚରିତ
ଏ ଯାହା କହିଲ ତାହା ମଣେ ଆଚମ୍ୱିତ ।
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ତହିଁର ଚରିତ ଶୁଣି ପାପ କ୍ଷୟକର ।
ତୁହି ଏହା ଶୁଣିବାକୁ ଅଟୁ ଏକା ଶ୍ରୋତା
ତୋ ଆଗରେ କହୁଅଛି ଭେରୀ ଆଦ୍ୟକଥା
ହିରଣ୍ୟଗର୍ଭ ପୁରାଣେ ତ୍ରେତୟା ଯୁଗରେ
ମୋହିନୀ ନାମେ ଅପ୍ସରା ଥିଲା ସେହି ପୁରେ
ଅତ୍ୟନ୍ତ ସୁନ୍ଦରୀ ତାକୁ ରମ୍ଭା ନୁହେଁ ସରି
ଯୁବାକାଳରୁ ଭଜିଲେ ତାହାକୁ ବୃତ୍ରାରି ।
ତାହା ସଙ୍ଗେ ବାସବଙ୍କ ବଢ଼ନ୍ତେ ପୀରତି
ଭୟେ ବିଦ୍ୟାଧରମାନେ ନ ଯାନ୍ତି ତା କତି ।
ବଇଶାଖ ଶୁକ୍ଳପକ୍ଷ ଦ୍ୱିତୀୟାର ଦିନ
ଅର୍କବାସରେ ରୋହିଣୀ ଋକ୍ଷ ବିଦ୍ୟମାନ ।
ଦିବ୍ୟ ଅଳଙ୍କାର ପିନ୍ଧି ମୋହିନୀ ନାୟିକା
ଆକାଶଗଙ୍ଗାସ୍ନାନକୁ ଯାଉଥିଲା ଏକା ।
ସେ ନଳକୁବେରର ସ୍ନାନକରି ଆସୁଥିଲେ
କଣୟ ପର୍ବତ ପାଶେ ବାଟରେ ଭେଟିଲେ ।
ଦେଖିଲେ ଯେ ଚଉକତି କେହି ନାହିଁ ପାଶେ
ସୁନ୍ଦରୀକୁ ଉଗାଳିଲେ ରତିର ଲାଳସେ ।
ନଳକୁବେରର ପରିହାସ ବାଣୀ ଶୁଣି
ଆଡ଼ହୋଇ ସ୍ନାନେଯାଏ ସେ ସୁନ୍ଦରୀମଣି ।
ନିର୍ଜ୍ଜନ ଦେଖିଣ ତହିଁ ସେ ନଳକୁବେର
କୋଳରେ ଧଇଲା ତାକୁ ମଦନେ ଆତୁର ।
ଏପରି ଦେଖି ସୁନ୍ଦରୀ ହୋଇ ମହାରାଗ
ବୋବାଳି ଛାଡ଼ିଲା ତହିଁ କମ୍ପିଗଲା ସ୍ୱର୍ଗ ।
ଭୟ କରି ଛାଡ଼ିଦେଇ କୁବେରର ସୁତ
ସେହିଠାରେ ଶାପଦେଲା ହୋଇ କୋପାନ୍ୱିତ
ତୁମ୍ଭେ ଯେ ବେଶ୍ୟାରମଣୀ ଅଟ ମନ୍ଦଜାତି
ଚଞ୍ଚଳ ପୁରୁଷ ସିନା ତୁମ୍ଭଙ୍କୁ ରସନ୍ତି ।
ନ ବିଚାରି ତୁ ଯେ ରାବଦେଲୁ ଅପ୍ରମିତେ
ଭେରୀର ଶବ୍ଦ ପ୍ରାୟେକ ଶୁଭିଲା ଯୁକତେ ।
ମର୍ତ୍ତ୍ୟେ ଜାତହୁଅ ତୁହି ଭେରୀରୂପ ହୋଇ
ମଗଧ ଦେଶରେ ଜରା ଦ୍ୱାରେ ଥିବୁ ରହି ।
ଶତ୍ରୁପ୍ରାୟ ମଣି କଲୁ ଏ ଅଭୂତ ରାବ
ଶତ୍ରୁ ଦୃଶ୍ୟହେଉ ତୋତେ ରହୁ ଏ ସ୍ୱଭାବ ।
ଶୁଣିକରି ବିଷାଦିତା ହେଲା ଅପସରୀ
ନଳ କୁବେରେ ପୁଚ୍ଛିଲା ବିନୟକୁ କରି ।
ଅଦୋଷରେ ଶାପ ମୋତେ ଦେଲୁ ଅନିମିତ୍ତେ
ମୋକ୍ଷ ହୋଇବା କାରଣ କହିବାକ ମୋତେ
ବିକଳ ଦେଖିଣ ଦୟା କଲେ ସେ କୁବେର
ଦ୍ୱାପରଯୁଗେ ତୁ ଥିବୁ ଜରାସନ୍ଧ ଦ୍ୱାର ।
ପାଣ୍ଡବଙ୍କୁ ଘେନି ବିଜେ ହେବେ ଚକ୍ରଧାରୀ
ଗୁପ୍ତେ ଯାଉଥିବେ ସେହି ଜରାସନ୍ଧ ମାରି ।
ସେ ତୋତେ ଦୃଶ୍ୟ ହୋଇବେ ବଇରୀସମାନେ
ତାଙ୍କୁ ଦେଖି ରାବ ଦେବୁ ତୁହି ଅକାରଣେ ।
ବୃକୋଦର ପ୍ରହାରିବେ ତୋତେ ବଜ୍ରମୁଥେ
ହୋଇବୁ ତୁ ଶତେଚୁର ତାର ମୁଥାଘାତେ ।
ଶାପକୁ ଅନୁଗ୍ରହ ଯେ କରିବେ ଶ୍ରୀପତି
ପ୍ରତ୍ୟକ୍ଷେ ଦୃଶ୍ୟ ହୋଇବେ ତୋତେ କୃଷ୍ଣମୂର୍ତ୍ତି
ଶାପରୁ ମୁକତି ତୁହି ହେବୁ ତେତେବେଳେ
ଏ ରୂପ ଧରି ଆସିବୁ ଅମର ମଣ୍ଡଳେ ।
ନଳ କୁବେରର ଶାପେ ରାଜଦ୍ୱାରେ ଥିଲା
ନାରାୟଣ ଦରଶନେ ମୁକତି ପାଇଲା ।
ଅମରପୁରେ ପ୍ରବେଶ ହେଲା ଅପସରୀ
ପୁଣିହିଁ ହୋଇଲା ସେହି ଇନ୍ଦ୍ର ମନୋହାରୀ ।

## ଶିମୂଳୀ ବୃକ୍ଷର ବୃତ୍ତାନ୍ତ

ଏଥୁ ଅନନ୍ତରେ କଥା ଶୁଣ ମନଦେଇ
ଦ୍ୱିତୀୟ ଦ୍ୱାରୁ ବିଜୟ ତିନି ଦ୍ୱିଜଯାଇ ।
ଯୋଜନେକ ଅନ୍ତେ ଅଛି ଯେ ତୃତୀୟ ଦ୍ୱାର
ଶିମୂଳୀବୃକ୍ଷ ଦେଖିଲେ ଯୋଜନ ବିସ୍ତାର ।
ମୃତପ୍ରାୟ ତାର ଶାଖା ଶୁଷ୍କ ଦିଶୁଥିଲା
ଏମାନଙ୍କୁ ଦେଖି ବୃକ୍ଷ ପୁଷ୍ପେ ବିକାଶିଲା ।
ଗୋବିନ୍ଦ ବୋଇଲେ ଦେଖ ଦେଖ ହେ ଅର୍ଜ୍ଜୁନ
ଏ ଶୁଷ୍କ ଶିମୂଳୀବୃକ୍ଷ ପୁଷ୍ପେ ପରିପୂର୍ଣ୍ଣ ।
ଧ୍ୟାନେ ଆକାଶେ ଚାହାନ୍ତେ ବୀର ଫାଲଗୁନି
ଗରୁଡ଼ ପ୍ରବେଶ ହେଲା ଅସ୍ତ୍ରମାନ ଘେନି ।
ଗାଣ୍ଡୀବ ଧନୁକୁ କରେ ଧରିଣ ଅର୍ଜ୍ଜୁନ
ବାବଲ ଶରେକ ଘେନି ବିନ୍ଧିଲେ ବହନ ।
ନାରାଚ ପଡ଼ିଲା ଯାଇ ଶିମୂଳୀର ମୂଳେ
ଉପାଡ଼ିଲା ସେହି ଶର ବୃକ୍ଷକୁ ସମୂଳେ ।
ପବନାଶର ବିନ୍ଧନ୍ତେ ନେଲାକ ଉଡ଼ାଇ
ସମୁଦ୍ର ଭିତରେ ତାକୁ ପକାଇଲା ନେଇ ।
ଏହା ଶୁଣି ପୁଚ୍ଛାକଲେ ମନୁ ମହାରାଜା
ଅଗସ୍ତିଙ୍କ ପାଦପଦ୍ମେ କରି ଦିବ୍ୟପୂଜା ।
ବୋଇଲେ ଶିମୂଳୀ କଥା ବିସ୍ତାରିଣ କହ
ଯା ଶୁଣି ଲାଗିଲା ମୋତେ ବଡ଼ାଇ ସନ୍ଦେହ
ମଲାପରି ସେ ଶିମୂଳୀ ବୃକ୍ଷ ରହିଥିଲା
ଶତ୍ରୁ ଦେଖି କାହିଁପାଇଁ ଜୀବିତ ହୋଇଲା ।
ହେ ମୁନି ଏହା ଅଟଇ ଆଶ୍ଚର୍ଯ୍ୟର କଥା
ବିସ୍ତାରି କହନ୍ତୁ ମୋତେ ଏଥିର ବ୍ୟବସ୍ଥା ।
ଅଗସ୍ତି କହିଲେ ଶୁଣ ମନୁ ନୃପବର
ଯେସନେକ ରୀତି ହେଲା ଶିମୂଳୀ ବୃକ୍ଷର ।
ସତ୍ୟଯୁଗେ ବଇଧୃତ ନାମରେ ଗନ୍ଧର୍ବ
ତାହାର ପୁତ୍ରର ନାମ ଅଟେ ସଦାଶିବ ।
ଅଣଷ୍ଟକ ବୋଲିଣ ଯେ ଥିଲାକ ଋଷିଏ
ତାଙ୍କ ପାଶେ ଥିଲା କାମଧେନୁ ଯେ ଗୋଟିଏ
ସଦାଶିବ ଗନ୍ଧର୍ବ ଯେ ଦେଖିଲା ସେ ଗାଇ
ବନସ୍ତରୁ ଧରିନେଲା ମୁନିଙ୍କୁ ନ କହି ।
ଗାଈ ନେଇଣ ଗନ୍ଧର୍ବ ଲୁଚାଇଲା ପୁରେ
ଲୋଡ଼ି ନ ପାଇଲେ ମୁନି ସାତ ବରଷରେ ।
ଗାଈ ନ ପାଇଣ ମୁନି କୋପେ ଶାପଦେଲା
ଯେହୁ ମୋର ଗାଈଗୋଟି ଚୋରିକରି ନେଲା
ତାହାକୁ ମୋହର ଶାପ ପ୍ରତ୍ୟକ୍ଷରେ ହେଉ
ଯମ ଦେବତା ତାହାକୁ ବହୁ ଶାସ୍ତି ଦେଉ ।
ଋଷିର ଶାପରେ ସେହି ହେଲା ହତପ୍ରାଣ
ଯମ ଦେଖି ତାହାକୁ ଯେ ହେଲା କୋପମାନ
କାଳ ବିକାଳ ରାଇଣ ବୋଲେ ଯମରାଜ
ମୋ ଛାମୁରୁ ବେଗେ ନିଅ ଏ ଗୋରୁ ଚଉର୍ଯ୍ୟ
ଗାଈକୁ ବାନ୍ଧି ଆଣିଲା ଯେହ୍ନେ ମାରି ମାରି
ଶିମୂଳୀ କୋଳ କରାଇ ମାର ସେହିପରି ।
ନାଶକର ଆଜ୍ଞା ପାଇ ସେ ଚଣ୍ଡ ପ୍ରଚଣ୍ଡ
ଶିମୂଳୀ ବୃକ୍ଷକୁ କୋଳ କରାଇ ତା ପିଣ୍ଡ ।
ଛାଟ ମାରନ୍ତେଣ ଫାଟିଗଲା ତାର ପିଠି
ରୁଧିର ବାହାର ହେଲା କଣ୍ଟାମାନ ଫୁଟି ।
ବିକଳେ ରୋଦନ କରି ସେହି ବିଦ୍ୟାଧର
ଶିମୂଳୀକୁ ଶାପଦେଲା ହୋଇ କୋପଭର ।
ଆହେ ଆକାଶର ବୃକ୍ଷ ଏଡ଼େ ତୋ ଅହନ୍ତା
ମୋହର ଶାପରେ ତୁହି ଆକାଶରେ ନ ଥା ।
ଦେବପୁର କଥା ଆରେ ନୁହଇ ଏମନ୍ତ
ଅସୁରପୁରେ ଥାଅ ତୁ ହୋଇ ମୃତବତ ।
ଯେତେଦୂର ପରିଯନ୍ତେ ଦିଶିବ ତୋ ଶିଖା
ଏ ଦୋଷେ ତୋ ଜାତୀୟଙ୍କୁ କାଟନ୍ତୁ ସର୍ବଥା
ଯେ ଅବା ଦୟା କରିଣ ନ କାଟିବେ ଜନେ
ମୋର ଶାସ୍ତି ତାକୁ ହେବ ଆମ୍ଭ ସଂଯମନେ ।
ଗନ୍ଧର୍ବ ଶାପେ ଅସୁର ପୁରେ ରହିଥିଲା
ମୁକତିର ନିମନ୍ତେ ସେ ପୁଷ୍ପ ବିକାଶିଲା ।
ଅର୍ଜ୍ଜୁନଙ୍କ ଶରାଘାତେ ହୋଇଲା ମୁକତି
ବୈବସ୍ୱତ ମନୁଙ୍କୁ ଯା କହିଲେ ଅଗସ୍ତି ।
ଶୁଣିକରି ସନ୍ତୁଷ୍ଟ ଯେ ହେଲେ ମହାରାଜା
ଅଗସ୍ତିଙ୍କ ଚରଣରେ କଲେ ଦିବ୍ୟପୂଜା ।



## ଗଧର ଚରିତ, ଜରାସନ୍ଧ ସହିତ କୃଷ୍ଣଙ୍କର କଥୋପକଥନ ଓ ଜରାସନ୍ଧର ମୃତ୍ୟୁ

ତୃତୀୟ ଦ୍ୱାରକୁ ଜିଣିଗଲେ ଚକ୍ରପାଣି
ପୁଣି କେଉଁ କୃତ୍ୟ କଲେ କହ ମହାମୁନି ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ଚଳିଯାନ୍ତେ ଜଗନ୍ନାଥ ହୋଇ ଗୋପ୍ୟମୂର୍ତ୍ତି ।
ଯୋଜନେକ ପଥ ଯାଉ ଦିଶିଲା ଗର୍ଦ୍ଦଭ
ଶତ୍ରୁ ଉପଗତ ଜାଣି ଉଚ୍ଚେ ଦେଲା ରାବ ।
ପାର୍ଥ ବୋଇଲେ ସମ୍ଭାଳ ଏବେ ଚକ୍ରପାଣି
ଦକ୍ଷିଣ ଭୁଜ ବଢ଼ାଇ ଦ୍ୟନ୍ତେ କମ୍ବୁପାଣି ।

ଯୋଜନେକ ପରିଯନ୍ତେ ଭୁଜ ଗଲା ବଢ଼ି
ଦେବଦତ୍ତ ଶଙ୍ଖ ଗଧ ମୁଖେ ଦେଲେ ମାଡ଼ି ।
ତହୁଁ ଉଚସ୍ୱରେ ସେହି ଗଧ ରାବଦେଲା
ଶଙ୍ଖଧ୍ୱନି ପ୍ରାୟ ତାର ଶବଦ ଶୁଭିଲା ।
ପୁଣି ବିସ୍ତାରିଲେ ପ୍ରଭୁ ବାମଭୁଜ ଗୋଟି
ଆକର୍ଷି ଧଇଲେ ସେହି ଗର୍ଦ୍ଦଭର ତୋଟି ।
ଗର୍ଦ୍ଦଭ ମନେ ବିଚାରେ ଲମ୍ବଭୁଜ ଦେଖି
ନିଶ୍ଚୟ ବିଷ୍ଣୁ ଅଟନ୍ତି ତାହାଙ୍କୁ ନିରେଖି ।
ବିନୟ ଭାବରେ ତାଙ୍କୁ ବୋଇଲା ଗର୍ଦ୍ଦଭ
ପ୍ରତ୍ୟକ୍ଷରେ ବିଜେକଲୁ ଏଥେ ବାସୁଦେବ ।
ଜରାଧାଡ଼ିଦେଲା ତୋତେ ଅଷ୍ଟାଦଶ ବାର
କାର୍ଯ୍ୟହେତୁ ନ ନେଲୁ ତୁ ପରାଣ ତାହାର ।
ଗୋବିନ୍ଦ ବୋଇଲେ ବଧ କରିବି ଅସୁର
ରବ ସଂହରଣ କର ଆରେ ଜୀବ ଖର ।
ନାରାୟଣଙ୍କ ବଚନେ ବୋଲଇ ଗର୍ଦ୍ଦଭ
ତୋହର ବଚନ ମାନି ନ କରିବି ରବ ।
ଇଚ୍ଛାସୁଖେ ବଧ କର ତୁହି ଜରାସନ୍ଧ
ତୋହର ଶ୍ରୀହସ୍ତେ ହରି ଛୁଅଁ ମୋର ପାଦ ।
ଗୋବିନ୍ଦ ସନ୍ତୁଷ୍ଟ ହେଲେ ଗଧବାକ୍ୟ ଶୁଣି
କରପଦ୍ମ ଯୋଡ଼ିଣ ଯେ ବୋଲଇ ପାବନି ।
ତୁ ଦେବ ଜଗମୋହନ ଜଗତର ନାଥ
ଏ ଛାରପାଦ ଛୁଇଁବୁ ଏ ନୁହେ: ଉଚିତ ।
ଗୋବିନ୍ଦ ବୋଇଲେ ବାବୁ ଏହିପରି ଅଛି
ଅସମୟ କାଳ ଏଥେ ଦୋଷ ନାହିଁ କିଛି ।
ଏପରି କହି ଭୀମକୁ ଦେବ ଦାମୋଦର
ଗଧର ପାଦେ ଲଗାଇଦେଲେ ବାମ କର ।
ଶ୍ରୀକର ବଢ଼ାଇ କରି ଲଗାନ୍ତେ ଅଙ୍ଗୁଷ୍ଠି
ସେହିକ୍ଷଣି ସେ ଗଧର ମୂର୍ଦ୍ଧା ଗଲା ଫାଟି ।
ଅନ୍ତରୀକ୍ଷରୁ ଆସିଲା ପୁଷ୍ପକ ବିମାନ
ଚଳିଗଲା ସେ ଗନ୍ଧର୍ବ ଅମର ଭୁବନ ।
ଏହା ଶୁଣି ପୁଚ୍ଛା କଲେ ବୈବସ୍ୱତ ମନୁ
ସେ ଗଧ ବିଷୟ କହ କୁମ୍ଭଋଷି ସୂନୁ ।
ଗଧର ପାଦ ଛୁଇଁଲେ ପ୍ରଭୁ ନାରାୟଣ
କେବଣ ମହାତ୍ମା ସେହି ପୂର୍ବେ କେଡ଼େ ଜଣ
କାହାର ଶାପରେ ହୋଇଥିଲା ସେ ଏମନ୍ତ
ଏହା ବିସ୍ତାରି କହନ୍ତୁ ମୋତେ ତପୋବନ୍ତ ।
ଶୁଣି ଅଗସ୍ତି ବୋଇଲେ ସତ୍ୟଯୁଗ କଥା
ଅପାର କାଳର ଅଟେ ଗଧର ବାରତା ।
ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଶଉରୀ ବାସର
ବିଶାଖା ନାମେ ନକ୍ଷତ୍ର ଅଟେ ସେ ଦିନର ।
ବାଳକ ନାମେ କରଣ ବଇଧୃତ ଯୋଗ
ତ୍ରିଦେଶ ଦେବ ବସିଲେ ସ୍ୱର୍ଗ ମଧ୍ୟଭାଗ ।
ବୃଦ୍ଧଶ୍ରବା ବୋଲିକରି ଏକଇ ଗନ୍ଧର୍ବ
ମନ ହରିଲା କରି ସେ ନର୍ତ୍ତନ ତାଣ୍ଡବ ।
ଦେଖିଣ ସାନନ୍ଦ ହେଲେ ଦେବ ସୁରପତି
ବହୁ ଅଳଙ୍କାର ଦେଇ କରିଲେ ତୃପତି ।
କାମସେଣା ବୋଲିକରି ଏକ ଅପସରୀ
ବୃଦ୍ଧଶ୍ରବା ସଙ୍ଗେ ସେହୁ ନୃତ୍ୟ ଗୀତ କରି ।
ତା ନୃତ୍ୟ ଦେଖି ହରଷ ହୋଇ ଆଖଣ୍ଡଳ
ସ୍ନେହେ ଅପସରୀ ଗଳେ ଦେଲେ ଜୟମାଳ ।
ବିଶ୍ୱାବସୁ ଆଜ୍ଞାଦେଲେ ବୃଦ୍ଧଶ୍ରବା ରାଇ
କାମସେଣା ଅପସରା ନେବୁ ମୋର ତହିଁ ।
ତା ପାଶେ ରଖାଇକରି ଗଲା ବିଶ୍ୱାବସୁ
ବୃଦ୍ଧଶ୍ରବା ହସ୍ତେ ଦେଲା ଏକ ତୀକ୍ଷ୍ଣ ପର୍ଶୁ ।
ଚଳିଗଲା ବୃଦ୍ଧଶ୍ରବା ନିଜର ଆବାସ
ଅପସରୀକି କରିଣ ଉତ୍ତମ ସୁବେଶ ।
ରାତ୍ର ପ୍ରହରକରେ ସେ ବିମାନ ଆରୋହୀ
କାମସେଣା ଗନ୍ଧର୍ବୀକି ଘେନିଣ ଚଳଇ ।
କାମେ ଅସାଷ୍ଟମ ହେଲା ସେହି ବୃଦ୍ଧଶ୍ରବା
କାମସେଣାକୁ ବୋଇଲା ମୋତେ ରତିଦେବା
ରକ୍ଷମାନଙ୍କ ନାୟକ ଅଟେ ସେ ଗନ୍ଧର୍ବ
ଛାର ଅପ୍ସରା ତା ବାକ୍ୟ ମେଣ୍ଟିକି କରିବ
ଏଣୁ ଦୁଇଜଣଙ୍କର ବଢ଼ିଲା ପୀରତି
ପରିହାସ ହାସ୍ୟରସ କଉତୁକେ ମାତି ।
ଶୃଙ୍ଗାର ସାରି ଚଳିଲେ ତହୁଁ ବେନିଜନ
ପରବେଶ ହେଲେ ବିଶ୍ୱାବସୁର ସଦନ ।
ସେ ବେଳକୁ ପାଞ୍ଚଘଡ଼ି ହୋଇଛି ରଜନୀ
ବୃଦ୍ଧଶ୍ରବା ସମ୍ପିଲେ ନେଇ କାମସେଣୀ ।
ବିଶ୍ୱାବସୁ ତୁଳେ ସଙ୍ଗ କାମସେଣା ନାରୀ
ଜାଣିପାରି ବିଶ୍ୱାବସୁ ମନେ ତାପ କରି ।
ଶୃଙ୍ଗାର ବେଳରେ ତାର ହେଲା ଏହିଭାବ
ଚନ୍ଦ୍ର ନ ଚଳିଲା ସ୍ଥିର ହେଲା କାମଦେବ ।
ବିଶ୍ୱାବସୁ ପୁଚ୍ଛେ କାମସେଣାକୁ ଅନାଇ
କାହା ତୁଳେ ବଢ଼ାଇଲୁ ପ୍ରୀତି ଆରେ ସହି ।
ଶରୀର ଅବଶ ତୋର ହୋଇଛି ରେ ସଖି
କାହାସଙ୍ଗେ ମାତିଥିଲୁ କହ ଶଶୀମୁଖୀ ।
ଏହି କଥା ସଙ୍ଗାତୁଣୀ କହ ତଥ୍ୟକରି
ତାହା ଶୁଣି ମଥାପୋତି ରହିଲା ସୁନ୍ଦରୀ ।
ତୁହି ଯେବେ ଏହି କଥା ନ କହିବୁ ମୋତେ
ଏହିକ୍ଷଣି ସୁନ୍ଦରୀ ରେ ଶାପ ଦେବି ତୋତେ ।

ବୋଇଲା ଯେ ବିଦ୍ୟାଧରୀ ଶୁଣ ବିଶ୍ୱାବସୁ
ବୃଦ୍ଧଶ୍ରବା ରତିକଲା ପଥମଧ୍ୟେ ଆସୁ ।
ବିଶ୍ୱାବସୁ ଶାପଦେଲା ହୋଇ କୋପମୂର୍ତ୍ତି
ମୋର ରମଣୀର ପ୍ରତି ତୁ କଲୁ ଅନୀତି ।
ଶିଷ୍ୟପୁତ୍ର ହୋଇ ତୁରେ କଲୁ ଏଡେ କର୍ମ
ଆରେ ବୃଦ୍ଧଶ୍ରବା ଏବେ ଲଭ ଗଧ ଜନ୍ମ ।
ରାଗେ ଏହିପରି ଶାପ ଦ୍ୟନ୍ତେ ଯକ୍ଷେଶ୍ୱର
ବୃଦ୍ଧଶ୍ରବା ଉଭାହୋଇ ବୋଲେ ଯୋଡ଼ିକର ।
ସ୍ୱାମୀ ଦୋଷ ନ ବିଚାରି କିପାଁ କଲୁ କୋପ
ଗୁରୁ ହୋଇ ଦେଲୁ ମୋତେ ଗୁରୁତର ଶାପ ।
ଶାପର କାରଣ ମୋତେ କହ ଯକ୍ଷରାୟ
ତରିବି କେମନ୍ତେ ମୁହିଁ କହ ସେ ଉପାୟ ।
ବିଶ୍ୱାବସୁ ବୋଲେ ତୁ ତ ନିଶ୍ଚେ ଗଧ ହେବୁ
ମୋହର ଶାପେ ଅନେକ କଷ୍ଟ ତୁ ପାଇବୁ ।
ତ୍ରେତାରେ ଥିବୁ ରାବଣ ଦକ୍ଷିଣ ଦୁଆରେ
ଜରାସନ୍ଧ ଦ୍ୱାରପାଳ ହେବୁ ଦ୍ୱାପରରେ ।
ପ୍ରତ୍ୟକ୍ଷେ ଦେଖିବୁ ତୁହି ଦେବ ଚକ୍ରଧାରୀ
ହରି ତୋ ପାଦ ଧରିବେ କାର୍ଯ୍ୟବେଳ କରି ।
ଅଠାଇଶସସ୍ର ଅଧିକ ଯେ ସପ୍ତଦଶ
ଲକ୍ଷ ଭୋଗ ହୋଇ ସତ୍ୟଯୁଗ ହେବ ଶେଷ ।
ତଦନ୍ତରେ ତ୍ରେତାଯୁଗ ହୋଇବ ପ୍ରବେଶ
ବାରଲକ୍ଷ ଛୟାନବେ ସହସ୍ରର ଶେଷ ।
ଦ୍ୱାପରର ଆଠଲକ୍ଷ ବରଷ ଉତ୍ତାରେ
ମୁକତି ପାଇବୁ ଜରାସନ୍ଧର ଦୁଆରେ ।
ବିଶ୍ୱାବସୁ ଶାପରେ ସେ ଗଧ ହୋଇଥିଲା
ଜଗନ୍ନାଥ ଦରଶନେ ମୁକତି ଲଭିଲା ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ନରେଶ୍ୱର
ବୃଦ୍ଧଶ୍ରବା ଗନ୍ଧର୍ବ ଯେ ଅଟଇ ପୂର୍ବର ।
ବୈବସ୍ୱତ ମନୁ କଲେ ଅଗସ୍ତିଙ୍କ ପୂଜା
ଏବେ ଜରାସନ୍ଧ କଥା କହ ବ୍ରହ୍ମଦ୍ୱିଜା ।
ଚତୁର୍ଥ ଦ୍ୱାରକୁ ଜିଣି ଗଲେ ଦେବ ହରି
ଯଜ୍ଞଶାଳେ ବିଜେକଲେ ବିଶ୍ୱରୂପ ଧରି ।
ସେ ସମୟେ ଯଜ୍ଞଶାଳେ ଥିଲେ ବାମଦେବ
ବିଶ୍ୱାମିତ୍ର ଉଦ୍ଧାଳକ ଆବର ସୁଦେବ ।
ଭରଦ୍ୱାଜ ସଦାଶିବ ସୁମନ୍ତ କଶ୍ୟପ
ବାଲମୀକ ଆଦି ଦେଖି କୃଷ୍ଣଙ୍କର ରୂପ ।
ଅନଳ ସମାନ ଦିଶେ ତିନିଙ୍କର ତେଜ
ଗୁପ୍ତବେଶେ ଆସିଛନ୍ତି ପ୍ରଭୁ ଦେବରାଜ ।
କର ପ୍ରସାରି କଲ୍ୟାଣ କଲେ ତିନିଜଣ
ବେଦ ପଢ଼ନ୍ତେ କମ୍ପିଲା ଏ ତିନି ଭୁବନ ।

ଦେଖିଣ ମନେ ବିଚାର କଲେ ଋଷିଗଣ
ଅପୂର୍ବ ବିପ୍ର କେବଣ ଦେଶୁ ଆଗମନ ।
ଏକମୁଖେ କରୁଛନ୍ତି ସର୍ବେ ବେଦଧ୍ୱନି
ଦେଖିଣ ଆଶ୍ଚର୍ଯ୍ୟ ହେଲେ ତହିଁ ସର୍ବ ମୁନି ।
ଯାଙ୍କୁ ଦେଖି ଜରାସନ୍ଧ ଆଶ୍ଚର୍ଯ୍ୟ ହୋଇଲା
ଏ ବିପ୍ରଙ୍କ ଚରିତ୍ର ତ ଗୋଚର ନୋହିଲା ।
ପନ୍ଦର ଦିନ ହୋଇଲା କଲି ମୁଁ ଆହୁତି
କେବେ ନ ଦେଖିଲି ଯାଙ୍କ ପରାୟ ମୂରତି ।
ଏ କି ପିତାମହ କିବା ଇନ୍ଦ୍ର ଦିଗପାଳ
କି ଅବା ରୁଦ୍ର ଦେବତା କିବା ଆଖଣ୍ଡଳ ।
ବେଦଧ୍ୱନି ଶବଦରେ କମ୍ପେ ତିନିପୁର
ଆସ୍ଥାନ ତେଜିଣ ବିଜେ ମଗଧ ଈଶ୍ୱର ।
ଶ୍ରୀହସ୍ତରେ ରତ୍ନଝରି ଘେନିଣ ନୃପତି
ବିପ୍ରଙ୍କ ପାଦ ଧଉତ କଲା ସେ ଝଟତି ।
ଲକ୍ଷେକ ରତ୍ନ ଚରଣେ ଦେଇ କଲା ପୂଜା
ପାଦୋଦକ ସିଞ୍ଚି ବୃହଦ୍ରଥଙ୍କର ଆତ୍ମଜା ।
କରଯୋଡ଼ି ଜରାସନ୍ଧ ତାହାଙ୍କୁ ପଚାରି
କେଉଁଦେଶୁ ଆଗମନ କରିଲ ଏ ପୁରୀ ।
କେବଣ ଦେଶେ ଜନମ କିସ ତୁମ୍ଭ ନାମ
ସ୍ୱରୂପ କହିଣ ଛେଦ ମୋର ମନଭ୍ରମ ।
ଗୋବିନ୍ଦ ବୋଇଲେ ଶୁଣ ମଗଧାଧିପତି
ପଶ୍ଚିମ ଦିଗ ହସ୍ତିନାପୁରେ ଆମ୍ଭ ସ୍ଥିତି ।
ବିଷ୍ଣୁ ଦାସ ଆମ୍ଭ ନାମ ଯାଙ୍କ ନାମ ଶୁଣ
ଯଦୁଦାସ ଏହୁ ଜମ୍ଭଭେଦୀଙ୍କ ନନ୍ଦନ ।
ଭୀମେ ଦେଖାଇ କହିଲେ ଯାଙ୍କ ନାମ ଗୋତ୍ର
ଆମ୍ଭମାନଙ୍କର ଅଟେ ପୈଠିନୟୀ ଗୋତ୍ର ।
ଋକ ଯଜୁ ଅଥର୍ବ ଯେ ସାମବେଦ ଚାରି
ପଢ଼ିଲୁ ଆମ୍ଭେ ସୁରଥ ବିପ୍ର ସେବାକରି ।
ଜରାସନ୍ଧ ବୋଇଲାକ ତୁମ୍ଭେ ତିନିଜଣ
ସୁବିଜ୍ଞ ବେଦ ପଠନେ ଅଟ ଯେ ନିପୁଣ ।
ଦାନର ବେଳ ତ ଏହୁ ନୁହେଁ ବିପ୍ରବର
ଭେଟିଲ ତ କାର୍ଯ୍ୟସିଦ୍ଧି ନୋହିଲା ତୁମ୍ଭର ।
ଆଜକ ଅନ୍ନ ଭୁଞ୍ଜିଣ ମୋର ପୁରେ ଥିବ
କାଲି ପ୍ରଭାତେ ମୋଠାରୁ ଦାନ ଘେନିଯିବ ।
ଆଜ ଚବିଶ ଭଣ୍ଡାର ମୋର ସର୍ବ ତୁଚ୍ଛା
ସବୁଦାନ ଦେଇ କାଲି ପୂରାଇବି ବାଞ୍ଛା ।
ମୋହରପରାୟେ ରାଜା ଦାନ ଦେବ ତୋତେ
ତୋହର ପରାୟ ବିପ୍ର ନେବୁ ତଳହସ୍ତେ ।
ଆଉବେଳେ ନ ମାଗିବୁ ଦାନ ଯେ କାହାକୁ
ଦାରିଦ୍ର୍ୟରୁ ମୁକ୍ତ ମୁହିଁ କରିବି ତୁମ୍ଭଙ୍କୁ ।

ବହୁ ଆଶାରେ ଅଇଲ ତୁମ୍ଭେ ଦ୍ୱିଜବର
ବଂଶେ ଦରିଦ୍ର ଆଉ କି ଥୋଇବି ତୁମ୍ଭର ।
ଗୋବିନ୍ଦ ବୋଇଲେ ରାଜା ଧନ୍ୟ ତୋ ଜୀବନ
ମର୍ତ୍ତ୍ୟମଣ୍ଡଳେ କେ ନାହିଁ ତୋହର ସମାନ ।
ଯେଉଁ ଯାଗ ଆରୋପି ତୁ ଅଛୁ ମହୀତଳେ
କର୍ଣ୍ଣେ ଯା ଶୁଣି ନ ଥିଲୁ ତା ଦେଖିଲୁ ଡୋଳେ
ଏ ତିନି ଭୁବନେ ସାଧୁ ତୋହର ମହିମା
ମଗଧେଶ କଳାକର ପ୍ରତ୍ୟକ୍ଷେ ମହାତ୍ମା ।
କଷ୍ଟ ସହିକରି ବହୁ ଦୂରୁ ଅଛୁ ଆସି
କିଞ୍ଚିତ ଦାନେ ଆମ୍ଭଙ୍କୁ ପାରିବୁ କି ତୋଷି ।
ତୁ ଯେ ଧନଦେବା ଇଚ୍ଛା କରିଅଛୁ ରାୟ
ବହୁତ ଦାନେ ଆୟୁଷ ହୁଅଇ ସେ କ୍ଷୟ ।
ତୀର୍ଥ ଭ୍ରମଣ ଅଟଇ ଆମ୍ଭ ବ୍ରତ ହେତୁ
କିଛି ପ୍ରୟୋଜନ ନାହିଁ ଧନ ଧାନ୍ୟ ହେତୁ ।
ଜରାସନ୍ଧ ବୋଲେ ଧନେ ନାହିଁ ତୁମ୍ଭ କାର୍ଯ୍ୟ
କଷଣ ପ୍ରାୟେକ ମୋତେ ଦିଶୁଅଛି ଦ୍ୱିଜ ।
ଶ୍ରୀହରି ବୋଇଲେ ଆମ୍ଭେ କିଞ୍ଚିତ ବ୍ରାହ୍ମଣ
ତୁହି ମହାରାଜା ଆମ୍ଭେ କି ଦେବୁ କଷଣ ।
ଏତେକ କହିଣ ଦେବ କଲେ ବେଦଧ୍ୱନି
ଲୋକପାଳ କମ୍ପିଲେ ଯେ ମହାମନ୍ତ୍ର ଶୁଣି ।
ଜରାସନ୍ଧ ବୋଲେ ରହ ରହ ହେ ପଣ୍ଡାଏ
ତୁମ୍ଭର ବେଦ ଶୁଣିଣ ନ ରହେ ମୋ କାୟେ ।
କେବଣ କାର୍ଯ୍ୟ ତୋହର ମାଗ ଦ୍ୱିଜବର
ତୋତେ ଦେବାଭଳି ଧନ ନାହିଁ କି ମୋ ପୁର ।
ଭଣ୍ଡାର ତୁଚ୍ଛା ଶୁଣିଣ ଦେଉ କି କଷଣ
ଯେତେ ଧନ ମାଗୁ ତୋତେ ଦେବି ଏହିକ୍ଷଣ ।
ଏକକଥା ଛାଡ଼ି ଯାହା ଇଚ୍ଛା ତାହା ମାଗ
ଏକମାତ୍ର ମୋ ଆହୁତି ନ କରାଅ ତ୍ୟାଗ ।
ଧନଧାନ୍ୟ ବସନ ଯେ ପୃଥ୍ୱୀଆଦି କରି
ଦେବି ମୋହର ସତ୍ୟ ଯେ ମାଗ ବ୍ରହ୍ମଚାରୀ ।
ଗୋବିନ୍ଦ ବୋଇଲେ ତୋର ଅର୍ଜିଲାର ତପ
ଆହୁତି କିପାଁ ମାଗିବୁ ଏ ନୁହେ ସ୍ୱରୂପ ।
ଡାହାଣାବର୍ତ୍ତ ଶଙ୍ଖରେ ଜଳତିଳ ଭରି
ଜରାସନ୍ଧକରେ ଦେଲେ ନେଇଣ ଶ୍ରୀହରି ।
ମହାମନ୍ତ୍ର ବାକ୍ୟକୁ ଯେ କରାଇ ଅଚ୍ୟୁତ
ଆପଣେ ହରି ପାତିଲେ ତଳକୁ ଯେ ହସ୍ତ ।
ଉପର ହସ୍ତରେ ଜରା ଦେଉଅଛି ଦାନ
ସତ୍ୟ ସତ୍ୟ ମୁଖେ ବୋଲେ ମଗଧ ରାଜନ
ହସ୍ତେ ପାଣି ଦ୍ୟନ୍ତେ ବୋଇଲେ ଯେ ଜଗନ୍ନାଥ
ସାକ୍ଷୀ ହୋଇଥାଅ ତୁମ୍ଭେ ସର୍ବ ଦଇବତ ।
ବିଶ୍ୱେଦେବା ସନକ ଯେ ଆଉ ଚାରିମେଘେ
ହେ ଦ୍ୱାପର ସାକ୍ଷୀ ହୁଅ ଆଉ ଚାରିଦିଗେ ।
ଯାଜ୍ଞିକ ବିପ୍ରମାନେ ହେ ସାକ୍ଷୀ ହୋଇଥିବ
ଆହେ ରାଜଗଣ ତୁମ୍ଭେ ସକଳ ଶୁଣିବ ।
ମୁହିଁ ତଳହସ୍ତ କରି ଘେନୁଅଛି ଦାନ
ସତ୍ୟକରି ଦାନ ଦିଏ ମଗଧ ରାଜନ ।
ଜଳଧରି ବୋଇଲେକ ପୁରୁଷ ଉତ୍ତମ
ଆନେ ପ୍ରୟୋଜନ ନାହିଁ ଦିଅ ହେ ସଂଗ୍ରାମ ।
ଏହା ଶୁଣି ଜରାସନ୍ଧ ଆଶ୍ଚର୍ଯ୍ୟ ହୋଇଲା
ବିରସ ହୋଇ ଶଙ୍ଖରୁ ଜଳ ଯେ ଛାଡ଼ିଲା ।
କିସ ବୋଇଲୁ ଅଜ୍ଞାନ ତୁହି ଦ୍ୱିଜବର
କିପାଁ ଏଡେ ମତିଭ୍ରମ ହୋଇଲା ତୁମ୍ଭର ।
ତୁମ୍ଭେ ଦ୍ୱିଜ ହୋଇକରି ଏଭଳି କି ଆଶା
ଭାଗ୍ୟବନ୍ତ ହୋଇ ଯୁଦ୍ଧେ କିପାଇଁ ଭରସା ।
ଗୋବିନ୍ଦ ବୋଇଲେ ଯାର ଯେମନ୍ତ ପ୍ରକୃତି
ତୋହର ବୋଲେ ତାହା କି ରହଇ ନିବର୍ତ୍ତି ।
ପାରୁ ଯେବେ ରାଜା ତୁହି ଯୁଦ୍ଧ ହାଦେଦେବୁ
ନୋହିଲେ ଏକ୍ଷଣି ତୋର ଆହୁତି ଧ୍ୱଂସିବୁ ।
ଜୀବନଯାକେ ଆମ୍ଭର ଏସନ ପ୍ରକୃତି
ରଣ ନ ପାଇଲେ ଆମ୍ଭେ ନୋହୁ ଯେ ତୃପତି
ଯେବଣ ଦିନରେ ଆମ୍ଭେ ସଂଗ୍ରାମ ନ ପାଉ
ଅତ୍ୟନ୍ତ କଷ୍ଟରେ ସେହି ଦିନଟି କଟାଉଁ ।
ଶୁଣି କୋପାନଳ ହେଲା ମଗଧାଧିପତି
ତୁମ୍ଭେ ନାଶଯିବ ମୋତେ ହୋଇବ ଅଖ୍ୟାତି
ଈଶ୍ୱର ଦେବତା ପୂର୍ବେ ବ୍ରହ୍ମହତ୍ୟା କଲା
ତାହାର ପାତକ କେବେ ଖଣ୍ଡନ ନୋହିଲା ।
ମୋର ମହିମା ତୁହି କି ଶୁଣି ନାହୁଁ ଦ୍ୱିଜ
ଆୟୁଷ ଥାଉଁ ଲୋଡୁଛୁ ମରଣ ଐଶ୍ୱର୍ଯ୍ୟ ।
ମୋହର ଦୁହିତା ନାମ ହେତି ପରହେତି
ତାହାଙ୍କର ବଲ୍ଲଭ ଯେ କଂସ ନରପତି ।
କାହ୍ନୁ ସଂକର୍ଷଣ ନନ୍ଦ ଗଉଡ଼ର ପୁତ୍ର
କଂସକୁ ନାଶ କରନ୍ତେ ସେହି ଦୁଇଭ୍ରାତ ।
ଦୁହିତାଏ କାନ୍ଦିକରି କହିଲେ ମୋ ଆଗେ
ମଥୁରାକୁ ଧାଡ଼ିଦେଲି ଜୁଆଇଁର ରାଗେ ।
ଘର ଛାଡ଼ି ପଳାଇଲେ ସେହି ଭାଇ ବେନି
ଉନଞ୍ଚ ଦେଶେ ଲୁଚିଲେ ବନ୍ଧୁଗଣ ଘେନି ।
ଧନ ଭଣ୍ଡାର ଆଦି ଯେ ସବୁ କଲି ଜୁର
ଅନେକ ଗୋଧନ ପଲ ନେଇ ତାହାଙ୍କର ।
ଉନଞ୍ଚ ଦେଶକୁ ପୁଣି ମୁହିଁ ଦେଲି ଧାଡ଼ି
ତହୁଁ ଦୁହେଁ ପଳାଇଲେ ସେହି ଦେଶ ଛାଡ଼ି ।

ବିକଳେ ପଶିଲେ ଯାଇ ଗୋମନ୍ତନ ଗିରି
ଶତ ଯୋଜନ ବିସ୍ତାର ଅଟଇ ତାହାରି ।
ସାତତାଳ ଗଭୀରର ଖଣା ଖୋଳାଇଲେ
ଶତେପୁର କରି ତହିଁ ସୈନ୍ୟ ବେଢ଼ାଇଲେ ।
ରାଗେ ସେହି ପର୍ବତକୁ ଦେଲି ମୁହିଁ ପୋଡ଼ି
ପୁଣି ଦୁହେଁ ପଳାଇଲେ ସେ ଗିରିକୁ ଛାଡ଼ି ।
ତହୁଁ ପଳାଇଣ ଗଲେ ସେହି ବେନି ଭାଇ
ମଧୁବନେ ଲୁଚିଲେ ସେ କୁଟୁମ୍ବକୁ ନେଇ ।
କାଳଯବନକୁ ରାଇ ମୁହିଁ ଆଜ୍ଞାଦେଲି
ଭାଗିଣ ମଧୁବନକୁ ଧ୍ୱଂସ କରାଇଲି ।
ତହୁଁ ପଳାଇଣ ଗଲେ ସେ ଅନେକ ଦୂର
ତାହାଙ୍କୁ ମୁଁ ଧାଡ଼ିଦେଲି ଅଷ୍ଟାଦଶ ବାର ।
ରହି ନ ପାରିଲେ ମୋର ଭୟେ ଜମ୍ବୁଦ୍ୱୀପେ
ସମୁଦ୍ର ଭିତରେ ଯାଇ ରହିଲେ ସେ ଗୋପ୍ୟେ
ମୋହ ତହୁଁ ବଳବନ୍ତ ହୋଇବ କେ ଜନ
ନିଶ୍ଚୟ ପାଞ୍ଜି ତୁମ୍ଭର ପୋଛିଲାଣି ଯମ ।
ପ୍ରତ୍ୟକ୍ଷରେ ଦେଖ ହାଦେ ମୋହର ମହିମା
ଏ ନୃପେ ଲଙ୍ଘି ନାହାନ୍ତି କେହି ମୋର ସୀମା
ଏମାନେ ଏକେକେ ମହାବଳିଷ୍ଠ ଅଟନ୍ତି
କାଣ୍ଡ ଖଣ୍ଡା ମାଲବିଧି ସକଳ ଜାଣନ୍ତି ।
ଛୟାଣୋଇ ସସ୍ର ରାଜା କାରେ ନ ଡରନ୍ତି
ଏକା ଧାଡ଼ିକେ ବାନ୍ଧିଣ ଆଣିଲି ସବୁନ୍ତି ।
ଯତ୍ନକରି ରଖିଅଛି ଯଜ୍ଞବଳି ପାଇଁ
ମୋହର ପୂର୍ଣ୍ଣଆହୁତି ଦେଖ ଆଜ ରହି ।
ମାଜଣା କରାଇ ଅଛି ସର୍ବ ନରପତି
ସମସ୍ତଙ୍କୁ ପକାଇବି ସମ୍ପୂର୍ଣ୍ଣ ଆହୁତି ।
ତୋଷେ ପ୍ରସନ୍ନହୋଇବେ ମୋତେ ବୈଶ୍ୱାନର
ଇନ୍ଦ୍ରପଦ ଘେନି ମୁଁ ଯେ ବସିବି ସ୍ୱର୍ଗର ।
ବ୍ରାହ୍ମଣ ହୋଇ ତୁମ୍ଭର ପ୍ରକୃତି ଯେ ଲଘୁ
ପ୍ରିୟପ୍ରାଣ ବୁଡ଼ାଇବା ସମର ତୁ ମାଗୁ ।
ନୁହଁ ତୁମ୍ଭେ ମହାଦେବୀ ନୁହଁ ଯେ ବ୍ରାହ୍ମଣ
କପଟ ରୂପ ଧରିଣ ମାଗୁଅଛ ରଣ ।
ଦେବ କି ଦାନବ ତୁମ୍ଭେ ଛଦ୍ମବେଶଧାରୀ
ନିଶ୍ଚୟ ଆସିଛ ତୁମ୍ଭେ ମୃତ୍ୟୁ ଇଚ୍ଛାକରି ।
ଧର୍ମକୁ କଷଣ ତୁମ୍ଭେ ଦେଉଅଛ ଦ୍ୱିଜ
ଋଷିଙ୍କୁ ସାକ୍ଷ୍ୟକରିଣ ବୋଲେ ମହାରାଜ ।
ମୋର ଦୋଷ ନାହିଁ ତୁମ୍ଭେ ଇଚ୍ଛାରେ ମରିବ
ଏହି ବ୍ରହ୍ମହତ୍ୟା ଦୋଷ କାହାକୁ ଲାଗିବ ।
ଭୀମସେନ ବୋଇଲେ ଯେ ଶୁଣ ଜରାସନ୍ଧ
ସଂଗ୍ରାମେ ହୁଅଇ ଗୁରୁ ବିପ୍ର ଶିରଚ୍ଛେଦ ।

ଅହୋବଳ ସଂଗ୍ରାମରେ ହତ୍ୟାଦୋଷ ନାହିଁ
ଏହା ନ ବୁଝିଣ କିପାଁ କହୁ ନାହିଁ ନାହିଁ ।
ଗୋବିନ୍ଦ ବୋଇଲେ କହୁ ତୁ ପ୍ରତିଜ୍ଞା କରି
ଆତ୍ମବଡ଼ିମା କରିଲେ ଆତ୍ମଘାତୀ ସରି ।
ପାରୁଯେବେ ରାଜା ତୁହି ଯୁଦ୍ଧ ବେଗେ ଦିଅ
ଆହେ ଯାଜ୍ଞିକ ବ୍ରାହ୍ମଣେ ଆହୁତି ନ ଦିଅ ।
ଗୋବିନ୍ଦ ଏହା କହନ୍ତେ କୁପିତ ନୟନେ
ତ୍ରାସେ ଆହୁତି ନ ଦେଲେ ସେ ଯାଜ୍ଞିକମାନେ
ଜରାସନ୍ଧ ବୋଲେ କିପାଁ ଛାଡ଼ ହବିର୍ଭାଗ
ଅଗ୍ନିରେ ଆହୁତି ଦେଉଥାଅ ବେଗ ବେଗ ।
ପ୍ରୋହିତ ବୋଇଲେ ତୁଷ୍ଟ ନୋହିଲେ ଅତିଥି
ଧର୍ମ ପ୍ରାପତ ନୁହଇ ନ କଲେ ତୃପତି ।
ଜରାସନ୍ଧ ପ୍ରୋହିତଙ୍କ ଏହି ବାଣୀ ଶୁଣି
ରାଗଭରେ ଉଠିଲା ସେ ଗର୍ଜି ଶିର ଝୁଣି ।
ତ୍ରିକଚ୍ଛ ବସ୍ତ୍ର ପିନ୍ଧିଲା ମାଲଙ୍କ ସମାନ
ଲମ୍ବିତ କେଶ ବାନ୍ଧିଲା ଯେ ବିଧି ବିଧାନ ।
କାନ୍ଧରୁ ପଇତା କାଢ଼ି ବାନ୍ଧି ବାମକରେ
ଠିଆ ହୋଇକରି ରାଜା ଗର୍ଜେ କୋପଭରେ
ଯେସନ ପ୍ରଳୟ ମେଘ ଗର୍ଜେ ଘନ ଘନ
ସେହିପରି ଗରଜିଲା ମଗଧ ରାଜନ ।
ସାଧୁ ସାଧୁ ଜରାସନ୍ଧ ବୋଇଲେ ଆକାଶେ
ପୂର୍ଣ୍ଣବଳ ରାଜା ପଞ୍ଚଦଶ ଉପବାସେ ।
ବହାନାଦ କରି ପୁଣି ରଡ଼ି ଏକ ଦେଲା
ଶୂନ୍ୟ ମଞ୍ଚ ପାତାଳ ଯେ କମ୍ପିଣ ଉଠିଲା ।
କୋପ ନୟନରେ ଦ୍ୟନ୍ତେ ଅଧରକୁ ଚାପି
ଘୋର ନାଦକରି ଧାଏଁ ଦୈତ୍ୟ କାମରୂପୀ ।
ମନେ ବିଚାରେ ଡରାଇ ଦେଲେକ ଏହାଙ୍କୁ
ଭୟେ ଦ୍ୱିଜେ ନ ଆସିବେ ମୋ ସଙ୍ଗେ ଯୁଦ୍ଧକୁ
ଦନ୍ତେ ଅଧର ଚାପିଣ କୋପେ ଡାକ ଦେଲା
ତିନିହେଁ ସଜ ହୋଇଣ ଆସରେ ବୋଇଲା ।
ଜଗନ୍ନାଥ ବୋଇଲେ ଯେ ହୋଇବ ଅଧର୍ମ
ଏକ ଜଣକୁ କିପରି ତିନିଙ୍କ ସଂଗ୍ରାମ ।
ଜରା ବୋଲେ ଯୁଦ୍ଧେ କିସ ଧର୍ମ ଯେ ଅଧର୍ମ
ମୋତେ ଦିଶୁଅଛ ତୁମ୍ଭେ ପତଙ୍ଗ ସମାନ ।
ତେବେ ତୁମ୍ଭ ମଧ୍ୟୁ ଜଣେ ଆସ ସଜ ହୋଇ
ହରି ବୋଇଲେ ଆମ୍ଭର ଇଚ୍ଛାରେ ନୁହଇ ।
ତୁହି ଯାହା ସଙ୍ଗେ ଯୁଦ୍ଧକରି ଇଚ୍ଛା କରୁ
ଜଣେ ବାଛି ନିଅ ଆମ୍ଭ ତିନିଙ୍କ ମଧ୍ୟରୁ ।
ଜରାସନ୍ଧେ ବୋଇଲା ଯେ କୃଷ୍ଣେ ମୁଖ ଚାହିଁ
ଖର୍ବରୂପୀ ବ୍ରାହ୍ମଣ ତୁ ତୋର କାର୍ଯ୍ୟ ନାହିଁ ।

ଅର୍ଜ୍ଜୁନଙ୍କୁ ଚାହିଁ ବୋଲେ ହୀନ ବପୁ ତୋର
ତୋତେ ଚିପିଦେଲା ମାତ୍ରେ ଯିବୁ ଯମପୁର ।
ମଧ୍ୟରେ ଅଛଇ ଯେଉଁ ଧୂମୁଷା ବ୍ରାହ୍ମଣ
କୋଳକରି ଧଇଲେ ଯେ ଲାଗିବ କାଖେଣ ।
ପାରୁ ନ ପାରୁ ଏହାର ଶରୀର ଧୂମୁସା
ଯା ସଙ୍ଗେ ଯୁଦ୍ଧ କରିବି ଆସୁ ଏ ସହସା ।
ବେଗ ହୋଇ ଆସ ଆସ କୋନ୍ତେ ବିପ୍ରବର
ତୁମ୍ଭର ଆମ୍ଭର ଏବେ କରିବା ସମର ।
ଶୁଣି ଗୋବିନ୍ଦ ଚାହିଁଲେ ଭୀମର ବଦନ
ଯାଅ ଯା ପଣ୍ଡା ତୁମ୍ଭଙ୍କୁ ରାଜା କଲା ମନ ।
ନାରାୟଣ ଶ୍ରୀମୁଖରୁ ସୁଧାବାଣୀ ଶୁଣି
ବାହାର ହେଲେ ପାବନି ଆନନ୍ଦେ ସେକ୍ଷଣି ।
ତ୍ରିକଚ୍ଛ କରି ବସନ ମାଲବନ୍ଧେ ଛନ୍ଦି
ଲମ୍ବିତ କୂଡା ଗୋଟିକୁ ଭଲରୂପେ ବାନ୍ଧି ।
ପବିତ୍ର ଉତ୍ତରୀକୁ ସେ ବାନ୍ଧି ବାମକରେ
ପ୍ରତିଜ୍ଞା କରି ବାହାର ହେଲେ ବୃକୋଦରେ ।
ଭୂମିରୁ ଘେନି ମୁଠାଏ ଧୂଳି ଦେହେ ବୋଳି
ବାହାସ୍ଫୋଟ ଦେଇଣ ଯେ ଉଠେ ମହାବଳୀ
ଆକର୍ଷଣ କରି ତହୁଁ ଉଠିଲେ ସେ ପୁଣ
ଜରାସନ୍ଧ ବୋଲେ ତୁ ତ ନୋହୁ ହୋ ବ୍ରାହ୍ମଣ
ଦେବଙ୍କ ବୋଲେ କପଟରୂପ ତୁମ୍ଭେ ଧରି
ଆସିଅଛ ଜଣାଯାଏ ମୃତ୍ୟୁ ଇଚ୍ଛାକରି ।
ଧର୍ମେ ବାଧା ଦେଉଅଛ କିପାଇଁ ହେ ଦ୍ୱିଜ
ଋଷିଙ୍କୁ ସାକ୍ଷୀ କରଇ ମଗଧର ରାଜ ।
ମୋର ଦୋଷ ନାହିଁ ଶୁଣ ହେ ଋଷିପୁଙ୍ଗବ
ବ୍ରହ୍ମହତ୍ୟା ପାତକ ଯେ କାହାକୁ ଲାଗିବ ।
ଏହା କହି ରେରେକାର କରି ଡାକଦେଲା
ଭଇରବ ମୂର୍ତ୍ତି ଧରି ଭୀମେ ଆକର୍ଷିଲା ।
ବୋଇଲା ଖଡଗଫଲା ଧନୁଙ୍କ ବିନ୍ଧାଣ
ପଚ୍ଚୀଶ ଆଉ ଶକତି କିସ ଯୁଦ୍ଧ ଜାଣ ।
ଭୀମସେନ ବୋଇଲେ ଯେ ଆମ୍ଭେ ଦ୍ୱିଜଜାତି
କି ଜାଣିବୁ ଆମ୍ଭେ ଖଡ୍‌ଗ ଧନୁଫଳା ଗତି ।
ପୁଣି ବୋଇଲେକ ଶୁଣ ଯାହା ମୁଁ ଜାଣଇ
ଗଡଗଡ ପଡପଡ ମୋରଠାଇଁ ନାହିଁ ।
ଜରାସନ୍ଧ ବୋଲେ ମାଲ ବିନ୍ଧାଣର କଥା
ଶୁଣ ଦ୍ୱିଜ ମୋରଠାରୁ ବିନ୍ଧାଣ ବ୍ୟବସ୍ଥା ।
ଭୁଜେ ଭୁଜେ ପରିତାଳ ପାଦେ ପାଦ ଛନ୍ଦି
ଶିରେ ଶିର ପରିତାଳ ହୃଦେ ହୃଦ ବାନ୍ଧି ।
ତାଡଣ ଭିଆଣ ଯେହୁ ଭାଜଇ ବିକଟ
ଧରଣ ଧାରଣ ମହାଘୋର ଯେ ସଙ୍କଟ ।

ଦେଖୁ ଦେଖୁ ଆକ୍ରମଣ ବିକଟାଳ ରୂପ
ଧରାଧରି ମରାମରି ଏସନ ସ୍ୱରୂପ ।
ମରଣ ମାରଣ ଆଉ ତ୍ରାହି ଉଦ୍ଧାରଣ
ଏହିପରି ମାଲବିନ୍ଧା ଚୌରାଶୀ ବିନ୍ଧାଣ ।
କୌତୁକ ଛତିଶ ଭରା ଆଉ ପାତି ଛନ୍ଦ
ଏସନ ରୀତିରେ ଜାଣ ହୁଏ ମାଲବନ୍ଧ ।
ଆକର୍ଷି ଯୁଦ୍ଧ କରନ୍ତେ ପୁଣ ପୁଣ ଚଢ଼ି
କିରୀଟି ବୋଇଲେ ଆହେ ଶୀଘ୍ର ଦେବ ଛାଡ଼ି
ରାଜାର ବଚନ ଶୁଣି ବୋଲେ ବାୟୁସୁତ
ତୁ ଯାହା ବୋଇଲୁ ରାଜା ମୋର ସନମତ ।
ଭୀମସେନଙ୍କୁ ଆକର୍ଷି ଧଇଲାକ ଜରା
ଅଧରେ ଦନ୍ତ ଚାପିଣ ସେହି ମହାବୀରା ।
ଭୁଜେ ଭୁଜ ଧରାଧରି ମୁଣ୍ଡେ ମୁଣ୍ଡ ମାରି
ହୁଂକାର ଶବଦେ ସେହୁ ଘୋର ରଡ଼ି କରି ।
ପାଦେ ଛନ୍ଦାଛନ୍ଦି ହୋଇ ଧରାଧରି ହେଲେ
ଭୁଜରେ ଧରି ମୁଣ୍ଡରେ ମୁଣ୍ଡକୁ ପିଟିଲେ ।
କେହି କାହାକୁ ଯୁଦ୍ଧରେ ନ ଯାଆନ୍ତି ହାରି
ରାଗେଣ ଭୀମକୁ ଜରା କୋଳାଗ୍ରତ କରି ।
ପାଦେ ଛନ୍ଦିଲା ଭୀମକୁ ଜରାସନ୍ଧ ରାଗେ
ତଳେ ପକାଇ ଛାତିରେ ବସିଲା ସେ ବେଗେ
ମାଡ଼ିକରି ଜରାସନ୍ଧ ବସିଲା ଉପରେ
ପ୍ରତିଜ୍ଞା କରିଣ ବୋଲେ ଅତି କୋପଭରେ ।
ଜୀଉଁ ଜୀଉଁ ନାଶକର ପୋଛିଲା ତୋ ପାଞ୍ଜି
ବ୍ରାହ୍ମଣ ହୋଇଣ ତୁହି ବୃଥା ହେଲୁ ଗଞ୍ଜି ।
ସୁମର ବ୍ରାହ୍ମଣ ତୁରେ ତୋର ପିତାମାତା
ଆବର ସୁମର ତୋର ଯେ ଇଷ୍ଟଦେବତା ।
ହୁଂକାର ଶବଦ ତହୁଁ କରିଣ ମାରୁତି
ଜରାସନ୍ଧେ ଲେଉଟାଇ କରି ତାକୁ ଚିତି ।
ମାଡ଼ିଣ ବସିଲା ଭୀମ ଜରା ବକ୍ଷସ୍ଥଳେ
ପ୍ରତିଜ୍ଞା କରଇ ଭୀମ ଅତି ମତ୍ତ ଭୋଳେ ।
ପୁଣ ଜରାସନ୍ଧ ଭୀମେ ଲେଉଟାଇ ଦେଲା
ବେଗେ ତାଙ୍କ ବକ୍ଷସ୍ଥଳେ ମାଡ଼ିଣ ବସିଲା ।
ପୁନରପି ଲେଉଟାଇ ପଡ଼ିଲା ମାରୁତି
ଜରା ବକ୍ଷସ୍ଥଳେ ମାଡ଼ି ବସିଲା ଝଟତି ।
ଧରାଧରି ପଡ଼ାପଡ଼ି ଆଉ ମରାମରି
ପାଦଘାତେ କମ୍ପମାନ ହେଲା ବସୁନ୍ଧରୀ ।
ମୁଥେ ମୁଥେ ପଡ଼ି ତାଳ ହୁଅନ୍ତେଣ ବେନି
ଗଗନେ ଥାଇ କମ୍ପିଲେ ନାଥ ସଂଯମନୀ ।
ତର୍ଜନ୍ତି ଗର୍ଜନ୍ତି ବେନି ଉଠନ୍ତି ପଡ଼ନ୍ତି
ମୁଖରଡ଼ି ଶବଦରେ ଦିଗକୁ କମ୍ପାନ୍ତି ।

ଯାଗଲୋକ ମହାଯୁଦ୍ଧ ଦେଖି କଲେ ଭୀତି
ପାଉଁଶ ପକାଇ ବେଗେ ପୋତିଲେ ଆହୁତି ।
ଭରଦ୍ୱାଜ ପୁଚ୍ଛାକଲେ ସୁଦେବଙ୍କୁ ଚାହିଁ
କେବଣଜନ ଏହି ଯେ ସଂଗ୍ରାମ କରଇ ।
ସୁଦେବ ବୋଇଲେ ଦେଖି ଜରା ମନ୍ଦକର୍ମ
ଭୀମାର୍ଜ୍ଜୁନେ ଘେନି ଗୁପ୍ତେ ବିଜେ ନାରାୟଣ
ରଣ ପାଇଲେ ସନ୍ତୁଷ୍ଟ ଭୀମ ମହାବୀର।
ଏହି ଭୀମ ବଧିବ ଯେ ଏହିକ୍ଷଣି ଜରା ।
ଭୀମ ଜରାସନ୍ଧର ଯେ ଯୁଦ୍ଧ ଅଗୋଚର
ଯଜ୍ଞଶାଳ ଆଦିକରି ସର୍ବ ହେଲା ଚୁର ।
ମେଢ଼ ମଣ୍ଡପ ଦେଉଳ ଜଗତୀ ଆବର
ଏ ସମସ୍ତ ଭାଙ୍ଗିକରି ହେଲା ଛାରଖାର ।
ଦୁଃସହ ସଂଗ୍ରାମ ହେଲା କହି ତ ନୁହଇ
ଶରୀରମାନ ଛିଡ଼ିଣ ରୁଧିର ବହଇ ।
ବେନି କ୍ଷଣେ ଲଢ଼ାଲଢ଼ି ହୁନ୍ତି ଯେ ପ୍ରକାର
ସତ୍ୟଯୁଗେ ଯୁଦ୍ଧ ଯେହ୍ନେ କେତୁ ମଙ୍ଗଳର ।
ତେହ୍ନେ ଯୁଦ୍ଧେ ଅନିର୍ବାର ବୃହଧ୍ୱଜ ବଳା
ବେଳୁବେଳ ତାର ତେଜ ବଢ଼େ ଅନର୍ଗଳା ।
ଭୀମକୁ ମାଡ଼ି ବସିଣ ପକାଇଣ ତଳେ
ବଜ୍ରମୁଥ ପ୍ରହାରିଲା ତାର ବକ୍ଷସ୍ଥଳେ ।
ରାଜାମାନେ ବସିଛନ୍ତି ଶିକୁଳି ପିନ୍ଧିଣ
ଅନାଦି ଦେବୀଙ୍କୁ ମନେ କରନ୍ତି ଧିଆନ ।
ନମସ୍ତେ ନମସ୍ତେ ମାଗୋ ଦେବୀ ମାହେଶ୍ୱରୀ
ଆଦ୍ୟେ ସମ୍ଭୂତ ହୋଇଲୁ ଅନଳ ବିଦାରି ।
ଅନଳୁ ଅଧିକତର ବିରାଜେ ତୋ ତେଜ
ଏକ ଶରୀରରେ ଶୋଭା ସହସ୍ରେକ ଭୁଜ ।
ସକଳ ଦେବତା ତୋତେ ଦେଖି କଲେ ସ୍ତୁତି
ତୋଭୁଜେଦେଲେ ସନ୍ତୋଷେ ଧନୁଦ୍ରୋଣ ଶକ୍ତି
ପରିଘ କୁନ୍ତ ନାରାଚ ପଟ୍ଟିଶ କୁଠାର
ଗୁରୁଜ କମାଣ ଆଦି ଯେ କର୍ଣ୍ଣକଟାର ।
କାଳପାଶୀ ଜଳପାଶୀ ନାଗପାଶୀ ଶର
ବ୍ରହ୍ମଶକ୍ତି ଶବ୍ଦଶକ୍ତି ଆଉ ମୁଦ୍ଗର ।
ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ବିଦ୍ୟା
ଗୁଟିକା ଅଞ୍ଜନ ଧର ଧାରଣ ପ୍ରସିଦ୍ଧା ।
ତାରିଣୀ ତାରଣ ସାଧେ ଯେ ବିଦ୍ୟା ଉଲୁକ
ସର୍ବଶାସ୍ତ୍ର ଦେଲେ ତୋତେ ସେହି ବିଶ୍ୱସୃକ ।
ସାଧନ ବୋଧନ ମନ୍ତ୍ରେ ଅଟୁ ଜଗଜ୍ଜିଣା
କାମି ଉଚ୍ଚାଟ ଲଗାଇ ଦୈତ୍ୟ କଲୁ ବଶା ।
ଚଣ୍ଡମୁଣ୍ଡ ବଧିଲୁ ଗୋ ଶୁମ୍ଭ ଯେ ନିଶୁମ୍ଭ
ମାୟାମୋହିନୀ ରୂପରେ ବଶ କଲୁ ସର୍ବ ।

ଚଞ୍ଚପୁଟ ଚାଞ୍ଚପୁଟ ହର୍ଷ ନାଟ ରସେ
ବିରାଜଇ କାନ୍ତିମାଳା ମୋହିଲୁ ଗୋ ହାସେ
ରକ୍ତବୀର୍ଯ୍ୟ ବଧ କଲୁ ଡାକିନୀଙ୍କି ଘେନି
ଭଇରବୀ ତାରିଣୀ ଗୋ ଖେଚରୀ ରୂପିଣୀ ।
ଚାମଣ୍ଡା ବୋଲାଉ ମାଗୋ ଅଭୟା ବାସେଳୀ
କାମାକ୍ଷୀ ତ୍ରିପୁରା ମାଗୋ କଙ୍କାଳୀ ବେତାଳୀ
ଅନ୍ନପୂର୍ଣ୍ଣା ମୋହିନୀ ଗୋ ଅଟୁ କାମସେଣା
ବ୍ରହ୍ମାୟଣୀ ରୂଦ୍ରାୟଣୀ ମାର ସର୍ବଜିଣା ।
ଚଣ୍ଡିକା ଯେ ଚନ୍ଦ୍ରଚୂଡ଼ା ବେତାଳୀ କେଶରୀ
ମହା ବିଶ୍ୱରୂପ ହୋଇ ଘୋଟି ସର୍ବପୁରୀ ।
ଧାଆଁରେ ମାରରେ ବୋଲି ଦେଲୁ ତୁହି ରାବି
ରକ୍ତପାୟୀ ପିଶାଚୁଣୀ ଡାକିନୀ ଭୈରବୀ ।
କାଳିକା ସେ କାଳରାତ୍ରି ଅନନ୍ତା ବିଜୟା
ଏକେଶ୍ୱରୀ ଉତପତ୍ତି ବହୁ ତୋର ମାୟା ।
ଦୁଷ୍ଟ ଅସୁରଙ୍କୁ ମାରି ରକ୍ତ ମାଂସ ଫେଡ଼ି
ଆବର ଶୂନ୍ୟେ ବୁଲାଇ ପର୍ବତେ କଚାଡ଼ି ।
ଚାମର ବିଶାଳ ଦୈତ୍ୟ ମାଇଲୁ ତୁ ହସ୍ତେ
ବୀରଘଣ୍ଟା ନାଶ କଲୁ ଦେବତାଙ୍କ ହିତେ ।
ବେତାଳ ରୂପେ ନାଶିଲୁ ଦୁଷ୍ଟ କାଳଘଣ୍ଟ
ମାୟାରେ ମୋହି ବଧିଲୁ ମାଗୋ ସର୍ବ ଦୁଷ୍ଟ
ମହିଷ ବଧିଲୁ ହୋଇ ଉଲଗନ ମଣ
ମୋହିତ କାମ ବଶେ ସେ ମୂର୍ଚ୍ଛାଗଲା ଚାହିଁ ।
ଶୂଳରେ ମାଡ଼ି ବସିଲୁ ତାର ବକ୍ଷସ୍ଥଳେ
ମହିଷ ମର୍ଦ୍ଦିନୀ ନାମ ବହିଲୁ ଭୂତଳେ ।
ଜୟ ମାଗୋ ନାରାୟଣୀ ଜୟ ଆଦିଶକ୍ତି
ସଂସାର ଜନମାନଙ୍କ ଖଣ୍ଡୁ ତ ଦୁର୍ଗତି ।
ଲୋଭ ମୋହ କାମ କ୍ରୋଧ ହିଂସା ଅପବାଦେ
ମତ୍ତ ହୋଇ ସେବି ନାହୁଁ ତୋର ପଦ୍ମପାଦେ
ଯୋଗେ ଯୋଗେଶ୍ୱରୀ ମାଗୋ ଏ ଆପଦ ଖଣ୍ଡ
ଆମ୍ଭର ପରାଣ ନେବ ଏ ଜରା ପାଷାଣ୍ଡ ।
ଆନନ୍ଦଦାୟିନୀ ମାଗୋ ସର୍ବ ଦୁଃଖହର
ଏ ବିପଦୁଁ ଉଦ୍ଧର ମା ଆମ୍ଭେ ଯେ କାତର ।
ମୁକ୍ତି ଗତି ପାଇବୁଁ ଗୋ ହୁଅ ପରସନ୍ନ
ବାରେକ ମାତ୍ରେ ଅଭୟ ଦିଅ ଦରଶନ ।
କନ୍ୟାମାସ ଶୁକ୍ଳପକ୍ଷ ଅଷ୍ଟମୀର ତିଥି
ଶରଦ ଉତ୍ସବେ ତୋତେ କରିବୁ ଗୋ ଭକ୍ତି ।
ବହୁ ସମ୍ଭାରେ କରିବୁ ନିଶାକାଳେ ପୂଜା
ଷୋଳଦିନ ଦେଉଥିବୁ ତୋତେ ବଳି ଭୋଜା
ମହିଷ ମେଷ ଛାଗଳ ରକ୍ତମାଂସେ ପୂଜା
ନିଶ୍ଚୟ ଦେବୁ ମା ତୋତେ ଆମ୍ଭେ ସର୍ବରାଜା

ଜରାସନ୍ଧ ବଧ ହେଉ ଏ ବ୍ରାହ୍ମଣ ହସ୍ତେ
ଯଦି ଭକତବତ୍ସଳା ଅଟ ମା ଜଗତେ ।
ସ୍ତବ ଶୁଣି ଗୋସାମଣି ଅଭୟ ମଙ୍ଗଳା
ରାଜାଗଣେ ଦୃଶ୍ୟଦେଇ ବୋଇଲେରେ ବଳା
ଛାଡ଼ ମନଭ୍ରାନ୍ତି ତୁମ୍ଭେ ସକଳ ରାଜନ
ଏହିକ୍ଷଣି ଜରାସନ୍ଧ ହୋଇବ ନିଧନ ।
ରାଜାଙ୍କୁ ବର ଦେଇଣ ଭୀମେ କଲେ ଦୟା
ଭୀମ ହୃଦେ ବିଜେକଲେ ସେହି ମହାମାୟା ।
ସଂଗ୍ରାମରେ ପରାଜିତ ହୋଇଥିଲା ଭୀମ
ଦେବୀ ବଳ ପାଇବାରୁ ହୋଇଲା ସାକ୍ଷମ ।
ଜରାସନ୍ଧେ ପକାଇଲା ଯହୁଁ ଲେଉଟାଇ
ମାଡ଼ିଣ ହୃଦେ ବସିଲା ଭୀମସେନ ତହିଁ ।
ମନ୍ଦର ମାଡ଼ିବସିଲା ପରାୟେ ମେରୁକୁ
ତେହ୍ନେ ଭୀମ ମହାଭାରା ହେଲା ସେ ଜରାକୁ
ଲେଉଟାଇ ବକ୍ଷସ୍ଥଳେ ମାଡ଼ି ବସିଥିଲା
ହସ୍ତଭାଗ ଦେଇ ତାର ତୋଟିକି ଚିପିଲା ।
ବେନି ପାଦେ ମାଡ଼ିଲା ଯେ କରି ଉରୁ ଜାନୁ
ଅପାର ପ୍ରତିଜ୍ଞା କରେ ପବନର ସୂନୁ ।
ଆରେ ରେ ଜରା ସୁମର ତୋ ଇଷ୍ଟଦେବତା
ଆବର ସୁମର ତୋର ଯେଉଁ ପିତାମାତା ।
ରେ ରେ ଜରା ସରିଲା ରେ ବିଭୂତି ତୋହର
ମୋ ହସ୍ତେ ନିଶ୍ଚୟ ଯିବୁ ଶମନ ନଗର ।
ଆରେ ଜରାସନ୍ଧ ତୁହି ପ୍ରତିଜ୍ଞା ଦେଖାଇ
ବହୁ ଅନ୍ୟାୟ କରିଛୁ ଯମ ସେଥିପାଇଁ ।
ଦ୍ୱିତୀୟ ଯମ କରିଣ ମୋତେ ପେଷିଅଛି
ଆଜି ତୋ ପରାଣ ନେବି ସତ୍ୟ ମୁଁ କହୁଛି ।
ରେ ରେ ଜରା ଆଉ ତୋର ନାହିଁଟି ଆୟୁଷ
ତୋତେ କେ ରଖିବ ଆଜି ଆସୁ ମୋର ପାଶ
ଯଦ୍ୟପି କୁବେର ବ୍ରହ୍ମା ରୁଦ୍ର ବଜ୍ରଧାରୀ
ଆସିଲେ ସେ ନ ପାରିବେ ତୋତେ ରକ୍ଷାକରି
ଏପରି ପ୍ରତିଜ୍ଞା କରି ପବନର ସୁତ
ଗର୍ଜନ କରି ମାଇଲା ଏକ ବଜ୍ର ମୁଥ ।
ସାଧୁ ମହିମା ଅଟଇ ମଗଧାଧିପତି
ଭୀମ ମୁଥଘାତେ ସେ ନ ହେଲା ବିନଶ୍ୟତି ।
ପୁଣ ପ୍ରହାର କରିଲା ଭୀମ ଦୁଇ ମୁଥ
ସେ ମୁଥେ ଫାଟି ନ ଗଲା ଜରାସନ୍ଧ ମାଥ ।
କିବା ଅଚେତ ନୋହିଲା ଜରାସନ୍ଧ ବୀର
କେବଳ ସେ ଘାତେ ରକ୍ତ ହୋଇଲା ବାହାର ।
ବହେ ଶରୀରୁ ତ୍ରିପଣ୍ଡ ରକ୍ତ ସମ ଘର୍ମ
ଜରା ବକ୍ଷସ୍ଥଳେ ବସି ବିଦାରଇ ଭୀମ ।

ରେ ରେ କାର କରି ଦନ୍ତେ ଅଧରକୁ ଚାପି
ପୂର୍ଣ୍ଣଚନ୍ଦ୍ରକୁ ଯେସନେ ରାହୁ ଥାଏ ବ୍ୟାପି ।
କାଳାନ୍ତକ ରୂପକୁ ସେ ପ୍ରକାଶିଲା ଭୀମ
ରଡ଼ିଘାତେ କମ୍ପୁଅଛି ପୃଥ୍ୱୀ ଦମ ଦମ ।
ଆବର ଯେ କମ୍ପିଗଲା ସପ୍ତଦ୍ୱୀପ ମହୀ
ଜରାସନ୍ଧ ମୁଥଘାତେ ବିନାଶ ନୁହଇ ।
ଭୀମ ପ୍ରଶଂସଇ ଧନ୍ୟ ମଗଧର ନାଥ
ମୋର ଯୁଦ୍ଧ ସହିବାକୁ ହେଲୁ ତୁ ସମର୍ଥ ।
ମହାଶ୍ରମ ପାଇଣ ସେ ପବନର ବଳା
ଶତସିଂହ ପର୍ବତକୁ ସୁମରଣା କଲା ।
ହେଲା ଏକୋତ୍ତର ଶତସିଂହର ବିକ୍ରମ
ବୃକୋଦର ମୂର୍ତ୍ତି ତହିଁ ବିକାଶିଲା ଭୀମ ।
ଦେଖି ତ୍ରାସକଲେ ତାକୁ ପୁରଜନମାନେ
ନବତାଳ ଉଚ୍ଚ ଭୀମ ବଢ଼ିଲା ତକ୍ଷଣେ ।
ଭୀମ ବିଶ୍ୱରୂପ ଦେଖି ବୁଜିଲେ ରେ ଆଖି
ଜରାସନ୍ଧ ପ୍ରାଣହତ ନୋହିଲା ତା ଦେଖି ।
ସଂଗ୍ରାମରେ ବିମୁଖ ଯେ ହୋଇ ବୃକୋଦର
ଭାବିଲେ ଛାଡ଼ିବି ଥାଉ ହୋଇ ଏ ଅମର ।
ଯା ଦେଖି ଅର୍ଜ୍ଜୁନ ବୋଲେ ଶୁଣ ନାରାୟଣ
ଆମ୍ଭେ ପାଞ୍ଚଭାଇ ସଦା ତୁମ୍ଭରେ ଶରଣ ।
ଏହିପରି କଥା ଲୋକେ କହନ୍ତି ନିରତେ
ପାଣ୍ଡବେ ବଞ୍ଚୁ ଅଛନ୍ତି ଗୋବିନ୍ଦ ଆଶ୍ରିତେ ।
ସଂଗ୍ରାମେ ଭୀମ ପାଇଲେ ବହୁତର ଦୁଃଖ
ବଧ ଉପାୟ ନ କର କିପାଁ ପଦ୍ମମୁଖ ।
ନ ପୁଣ ଛାଡ଼ନ୍ତି ଭୀମ ଏ ଜରାସନ୍ଧକୁ
ବହୁତ କଷ୍ଟରେ ପାଇଅଛନ୍ତି ତାହାକୁ ।
ହରି ବୋଇଲେ କହିଲେ ଯାହା ବିଶ୍ୱନାଥ
ଜଣାଯାଏ ପାଶୋରି ତା ଦେଲେ ବାତସୁତ ।
ପାର୍ଥ ବୋଇଲେ ଯୁଦ୍ଧରେ ହୋଇ ସେହି ଭୋଳ
ମୂର୍ଖ ବୁଦ୍ଧି ହେତୁ ତାହା ଭୁଲିଲେ କେବଳ ।
ମତ୍ତଭରେ ପାଶୋରିଲେ ଶିବଙ୍କ ବଚନ
ଏବେ ତାଙ୍କୁ ଚେତାଇଣ ଦିଅ ଜନାର୍ଦ୍ଦନ ।
ଅର୍ଜ୍ଜୁନର ବୋଲ ଶୁଣି ଦେବ ଶିରୀପତି
କରତାଳି ମାରିକରି ହସିଲେ ଝଟତି ।
କରତାଳି ଶୁଣି ଚାହିଁଦେଲେ ଭୀମସେନ
ପୁନଃ ପୁନଃ ଚାହାନ୍ତେଣ ହରିଙ୍କ ବଦନ ।
ଧୋତି ଗୋଟିଏକ ହରି ଶ୍ରୀଭୁଜରେ ଧରି
ଭୀମ ଚାହିଁବା ମାତ୍ରକେ ଦେଲେ ତାକୁ ଚିରି ।
ଶିବଙ୍କ ବଚନ ଭୀମ ପାଶୋରିଣ ଥିଲା
ନାରାୟଣ ଠାରିଦ୍ୟନ୍ତେ ଜ୍ଞାନ ଉପୁଜିଲା ।

କରି ବାହାନାଦ ଧରି ଜରା ବେନିପାଦ
ଟେକିବା ବେଳେ ବିଚାର କରେ ଜରାସନ୍ଧ ।
ଗୁପ୍ତରୂପେ ବିଜୟ କି କଲୁ ଜଗନ୍ନାଥ
ତୋ ବିନା ବ୍ରହ୍ମାଣ୍ଡେ କେହି ନାହିଁ ସାମରଥ ।
ଅଷ୍ଟାଦଶବେଳ ଧାଡ଼ି ସହିଲୁ ମୋହର
ତଥାପି ଚକ୍ରରେ ଛେଦ ନ କଲୁ ମୋ ଶିର ।
ତୋ ଚକ୍ରାଘାତକୁ ଆଶା କରିଥିଲି ହରି
କୋପ କରିଛୁ ମୋଠାରେ ପୂର୍ବ ଦୋଷ ଧରି ।
ନିଜେ ନ ବଧି ମରାଉ ଅଛୁ ପରହସ୍ତେ
ଶ୍ରୀହସ୍ତେ ଚକ୍ର ମାରିଣ ବଧ କର ମୋତେ ।
ଦିଅ ମୋତେ ମୋକ୍ଷଗତି ଆହେ ଶିରୀପତି
ନାଶକର ହସ୍ତେ ମୋତେ ନ ଦିଅ ଯେ ଶାସ୍ତି ।
ବିକଳରେ ଜରାସନ୍ଧ ବହୁତ ବିନୟୀ
କହିଲାକ ନମ୍ରଭାବେ କାନ୍ଦ କାନ୍ଦ ହୋଇ ।
ଗୋବିନ୍ଦ ବୋଇଲେ ଭୀମ କିସ ଚାହିଁ ଦେଖୁ
ବେନିଫାଳ କରି ଚିର ନ ରଖ ଦୁଷ୍ଟକୁ ।
ହରି ଆଜ୍ଞା ପ୍ରମାଣରେ ଏକ ପାଦ ଧରି
ତାର ଆର ପାଦ ପରେ ଛିଡ଼ା ହୋଇକରି ।
ରାଗେଣ ଗର୍ଜ୍ଜିଇ ଭୀମ ନରସିଂହ ପ୍ରାୟେ
ବ୍ରହ୍ମାଣ୍ଡ ଯେ କମ୍ପିଗଲା ଘୋର ରଡ଼ିଘାଏ ।
ଆକର୍ଷି ଧଇଲା ଭିଡ଼ି ପବନର ବାଳ
ବିଶ୍ୱରୂପେ ଉଚ୍ଛୁଡ଼ିଣ କଲା ବେନିଫାଳ ।
ପବନ ସାହାଯ୍ୟେ ସେହୁ ଖଣ୍ଡେକ ବୁଲାଇ
ଛାଡ଼ିଦିଅନ୍ତେ ପଡ଼ିଲା ସମୁଦ୍ରେ ସେ ଯାଇଁ ।
ଅଗାଧଜଳେ ପଡ଼ିଲା ଜରା ଅର୍ଦ୍ଧଖଣ୍ଡ
ପଡ଼ନ୍ତେ ଜଳ ଉଛୁଳି କମ୍ପିଲା ପ୍ରଚଣ୍ଡ ।
ଆରଖଣ୍ଡ ବୁଲାଇଣ ଛାଡ଼ିଲା ସେ କୋପେ
ଆକାଶମଣ୍ଡଳଯାଏ ଗଲା ସେ ପ୍ରତାପେ ।
ଶୂନ୍ୟରେ ଅଦୃଶ୍ୟ ହେଲା ଭୀମସେନ ଡରେ
ଖେଚର ହୋଇଣ ସେହୁ ରହିଲା ଭୂମିରେ ।
ଜୟ ଜୟ ଶାରଳା ଗୋ ମହିଷମର୍ଦ୍ଦିନୀ
ଶାରଳା ଦାସକୁ ଦୟା କର ଗୋ ଜନନୀ ।



## ଜରାସନ୍ଧ ବଧ ଶୁଣି ସହଦେବର କୋପ ଓ କୃଷ୍ଣଙ୍କୁ ସ୍ତବ କରିବା ଏବଂ ମଗଧ ରାଜ୍ୟରେ ରାଜାହେବା

ଜଣାଇଲେ ସହଦେବ ଆଗେ ଚାରଗଣ
ତୁମ୍ଭ ପିତାଙ୍କୁ ବଧିଲେ ସେ ତିନିବ୍ରାହ୍ମଣ ।
ଶୁଣିକରି କୋପକଲା ସହଦେବ ବୀର
ଦଣ୍ଡ ସାଜି ପଶିଲା ସେ ନବର ଭିତର ।
ପାତ୍ରମନ୍ତ୍ରୀ ଅମାତ୍ୟ କୁଟୁମ୍ବଙ୍କୁ ଘେନି
ବିପ୍ର ମାର ବିପ୍ର ମାର କରି ଉଚ୍ଚେ ଧ୍ୱନି ।
ଧାଇଁଲେ ଯେ ଯୋଦ୍ଧାମାନେ କରେ ଶସ୍ତ୍ର ଧରି
ବୀର ତୂର ଶବ୍ଦେ ଶୂନ୍ୟମଣ୍ଡଳ ଯେ ପୂରି ।
ତେଇଶ କ୍ଷଉଣୀ ଥିଲେ ଜରାସନ୍ଧ ବଳ
ତାଙ୍କ କୋଳାହଳ କିବା ସିନ୍ଧୁର ଚହଳ ।
ଦଣ୍ଡ ଦେଖି କୋପମାନ ହୋଇଲେ ପାବନି
ଧାଇଁଲେ ପବନୁ ଖରେ ଶିଳାମାନ ଘେନି ।
ଗର୍ଜ୍ଜନ ନାଦେ କମ୍ପଇ ରାଜାର ନବର
ଶୂନ୍ୟଯାଏ ଲାଗିଅଛି ଭୀମସେନ ଶିର ।
କୋପରେ ପାଣ୍ଡବବୀର ଧାଏଁ ଗଳଗାଜି
ଦେଖିଣ ମଗଧ ସୈନ୍ୟ ପଳାଇଲେ ଭାଜି ।
ରଥ ଉପରେ ରଥକୁ କଚାଡ଼ଇ ଭୀମ
ଗଜେ ଗଜ କଚାଡ଼ଇ ପାଣ୍ଡବ ମଧ୍ୟମ ।
ଦୁଇ ଦୁଇ ତିନି ତିନି ଧରିଣ ସେ ପିଟି
ଭୟରେ ମଗଧବଳ ଯାନ୍ତି ମହୀଲୋଟି ।
ରକତରେ କରଦମ ହେଲା ମହୀଆଳି
ଶୋଣିତରେ ବୃକୋଦର କରେ ରଙ୍ଗକେଳି ।
ସକଳ ସଇନ୍ୟ ଭୀମ ପକାଇଲେ ଦଳି
ଅନନ୍ତ ସମ ଦିଶନ୍ତି ବଳ ନୋହେ କଳି ।
ସୈନ୍ୟ ମରନ୍ତି ଧାଇଁଣ ଭୀମ କୋପଭରେ
ମୁଥେକ ମାଇଲା ସହଦେବ ରଥପରେ ।
ଭାଙ୍ଗିଣ ରଥ ତାହାର ଚୂର୍ଣ୍ଣ ହୋଇଗଲା
ସହଦେବର କେଶକୁ ଆକର୍ଷି ଧଇଲା ।
ଆର ହସ୍ତ ଉଠାଅନ୍ତେ ମାରିବାକୁ ମୁଥ
ଦେଖି କୋଳକରି ବେଗେ ଧଇଲେ ଅଚ୍ୟୁତ ।
ରହ ରହ ଭୀମସେନ ଆମ୍ଭର ଶପଥ
ସହଦେବକୁ ନାଶିଲେ କାର୍ଯ୍ୟ ହେବ ହତ ।
ଜରାସନ୍ଧ ବଧ ହେଲା ତାର ଦୁଷ୍ଟପଣେ
ଚାରିଉଣା ଲକ୍ଷେ ରାଜା ପାଇବା ଏକ୍ଷଣେ ।
ଜରାସନ୍ଧ ରାଜ୍ୟେ ହେବ ଏହି ଚକ୍ରବର୍ତ୍ତୀ
କାର୍ଯ୍ୟ ଯୋଗୁଁ ରକ୍ଷାକର ଏହାକୁ ମାରୁତି ।
ଯଦି ଏହାକୁ ଏଠାରେ ରାଜା ନ କରିବା
ସୁବର୍ଣ୍ଣର ରାଜା ଏକ କାହୁଁ ଭିଆଇବା ।
ହରିଙ୍କ ବଚନେ କୋପ ମାରୁତି ଛାଡ଼ିଲେ
ସହଦେବଙ୍କୁ ଶ୍ରୀକୃଷ୍ଣ କୋଳେ ବସାଇଲେ ।
ଦିବ୍ୟ ଚକ୍ଷୁ ଦ୍ୟନ୍ତେ ତାକୁ ପ୍ରଭୁ ଦେବରାଜ
ଦେଖିଲା ସେ ଶଙ୍ଖ ଚକ୍ର ଆଦି ଚାରିଭୁଜ ।

କୋଳୁ ଉଠି ସହଦେବ ଭୂମିଷ୍ଟେ ନମିଲା
ପୁଣି ଉଠି କରଯୋଡ଼ି ବହୁ ସ୍ତୁତି କଲା ।
ଶରଣ ପଞ୍ଜର ନାଥ ରକ୍ଷାକର ସ୍ୱାମୀ
ଏହା କହି ପୁଣି ଶତସସ୍ର ପରଣାମି ।
ଉଦ୍ଧାର କରତା ନାଥ ତୁହି ଜଗଜ୍ଜେଠି
ପୁଣ ପୁଣ ସହଦେବ ଶ୍ରୀଚରଣେ ଲୋଟି ।
ତୁ ଦେବ ଜଗତ ନାଥ ଜଗଜ୍ଜନ ବନ୍ଧୁ
ଦୈତ୍ୟ ବିଦାରଣେ ନାଥ ଜାତ ପୂର୍ଣ୍ଣଇନ୍ଦୁ ।
ତୋର ବହୁଦୋଷ କଲା ଏହି ଜରାସନ୍ଧ
କାଳେ ନାଶ କଲୁ ତାକୁ ପାତି କୂଟ ଛନ୍ଦ ।
ଜୟ ତୁ ପରମେଶ୍ୱର କରୁଣା ସାଗର
ଜୟ ତୁ ପରମେଶ୍ୱର ଜଗତଈଶ୍ୱର ।
ଜୟ ତୁ ପରମେଶ୍ୱର ଦୁଷ୍ଟ ଦର୍ପ ଗଞ୍ଜା
ହେ ପରମ ଈଶ୍ୱର ଯାମଳାର୍ଜ୍ଜୁନ ଭଞ୍ଜା ।
ଜୟ ତୁ ପରମେଶ୍ୱର ଧ୍ୱଂସି କାଳିଦର୍ପ
ଜୟ ହରି ନାଶକଲୁ କଂସ କଉଣପ ।
ଜୟ ତୁ ପରମେଶ୍ୱର ଦୁଃଖୀ ନିବାରଣ
ଜୟ ତୁ ପରମେଶ୍ୱର ଶଙ୍ଖା ବିଦାରଣ ।
ଜୟ ତୁ ପରମେଶ୍ୱର କୂର୍ମରୂପ ଗୋଟି
ଜୟ ତୁ ପରମେଶ୍ୱର ସପ୍ତପୃଥ୍ୱୀ ପିଠି ।
ଜୟ ତୁ ପରମେଶ୍ୱର ମାୟାରୂପ ଧାରୀ
ଜୟ ତୁ ପରମେଶ୍ୱର ଦନ୍ତେ ପୃଥ୍ୱୀ ଧରି ।
ଜୟ ତୁ ପରମେଶ୍ୱର ମୂରତି ବାମନ
ଜୟ ତୁ ପରମେଶ୍ୱର କଳି ନିବାରଣ ।
ଜୟ ତୁ ପରମେଶ୍ୱର ନରସିଂହ ରୂପ
ନଖେ ବିଦାରିଲୁ ପ୍ରଭୁ ହିରଣ୍ୟ କଶ୍ୟପ ।
ଜୟ ଶ୍ରୀହରି ମାଳତୀ ରୂପେ କଲୁ ଜୟ
ଜୟ ହରି ବିଧ୍ୱଂସିଲୁ ବୈଲୋଚନ ରାୟ ।
ଜୟ ତୁ ପରମେଶ୍ୱର ଯମଦଗ୍ନି ବଳା
ଜୟ ପରମେଶ୍ୱର ପର୍ଶୁଧର ମହାଖଳା ।
ଜୟ ତୁ ପରମେଶ୍ୱର ରାଜାନୀ ନିରୋଧି
ଜୟ ତୁ ପର୍ଶୁ ଏକୋଇଶ ବାର ପୃଥ୍ୱୀ ସାଧି ।
ଜୟ ତୁ ପରମେଶ୍ୱର ଜାତ ସୂର୍ଯ୍ୟବଂଶୀ
ଜୟ ତୁ ପରମେଶ୍ୱର ଜାନକୀଙ୍କି ତୋଷି ।
ଜୟ ତୁ ପରମେଶ୍ୱର ରାମ ଅବତାର
ଜୟ ତୁ ପରମେଶ୍ୱର କୃଷ୍ଣ କଳେବର ।
ଜୟ ତୁ ପରମେଶ୍ୱର ନୀଳପଦ୍ମ ରୁଚି
ଜୟ ତୁ ପରମେଶ୍ୱର ସଖା ସବ୍ୟସାଚୀ ।
ଜୟ ତୁ ପରମେଶ୍ୱର ତୋର ସସ୍ରନାମ
ଜୟ ତୁ ପରମେଶ୍ୱର ଅର୍ଥମୋକ୍ଷ କାମ ।
ଜୟ ତୁ ପରମେଶ୍ୱର ପୁରୁଷ ଉତ୍ତମ
ତୋ ପାଦେ ଶାରଳା ଦାସ ସହସ୍ର ପ୍ରଣାମ ।
ଶୁଣ ଆହେ ନୃପବର ବଦନ୍ତି ଅଗସ୍ତି
ସହଦେବ ଏହିରୂପେ କଲା ବହୁସ୍ତୁତି ।
ପୁନଶ୍ଚ ବୋଇଲା ସ୍ୱାମୀ ଜୟ ତୁ କେଶବ
ଜଗତ ବିନାଶ କଲୁ ତୁହି ବାସୁଦେବ ।
ସହଦେବର ମୁଖରୁ ଏହିପରି ଶୁଣି
ଭୁଜ ଧରି ବସାଇଲେ କୋଳେ ଚକ୍ରପାଣି ।
ତୁହି ମହାଗୁଣବନ୍ତ ଅଟୁ ସହଦେବ
ମତ୍ତଗର୍ବ ପଣେ ଜରା ପାଇଲା ପ୍ରାଭବ ।
ଗୋମନ୍ତ ଯୁଦ୍ଧରେ ହଳୀ ଜରା ନାଶୁଥିଲେ
ହର ବ୍ରହ୍ମା ତେତେବେଳେ ତା ପ୍ରାଣ ରଖିଲେ
ବ୍ରହ୍ମା ବୋଇଲେ ଏହାକୁ ଛାଡ଼ ହଳପାଣି
ଏହାଦ୍ୱାରା ଯୁଧିଷ୍ଠିଙ୍କ କାର୍ଯ୍ୟ ହେବ ପୁଣି ।
ରାଜସୀ ଯାଗ ସମୟେ ସେ ରାଜାମାନେ ତ
ବନ୍ଦୀକରି ରଖିଥିବ ସେ ହେବ ପ୍ରାପତ ।
ଧାତାଙ୍କ ବାକ୍ୟେ ଛାଡ଼ିଲେ ତାଙ୍କୁ ବଳରାମ
ଯୁଧିଷ୍ଠି କାର୍ଯ୍ୟେ ନାଶିଲେ ତାହାକୁ ସେ ଭୀମ
ଏସନକ କହିଲେ ଯେ ଦେବ ବାସୁଦେବ
ଏଥିକି ଦୁଃଖ ନ କର ଆହେ ସହଦେବ ।
ତୋହର ପିତାକୁ ଆମ୍ଭେ ନାଶକଲୁ ବାବୁ
ତାକୁ ମାତ୍ର ଏବେ ତୋତେ ଦେଇ ନ ପାରିବୁ ।
କରପଦ୍ମ ଯୋଡ଼ିଣ ଯେ କହେ ସହଦେବ
ମୋ ପିତାକୁ ନାଶକଲୁ ତୁହି ବାସୁଦେବ ।
ଜରାସନ୍ଧ ରାଜା ଅଟେ ତୋହର ବଇରୀ
ବିଷ୍ଣୁଙ୍କ ଦୋରେହା ହୋଇ ରହିବ କିପରି ।
ତୋହର ବିବାଦୀ ସେହି ହେଲା ଯେତେବେଳୁ
ଯମ ପୋଛିଲାଣି ତାର ପାଞ୍ଜି ତେତେବେଳୁ
ପ୍ରୋହିତ ହକାରି କୁଶ ପ୍ରତିମା ଭିଆଇ
ଶ୍ମଶାନ ଭୂମିରେ ନେଇ ଦହନ କରାଇ ।
କରେ କୁଶଗଣ୍ଠି ଆଉ ଯବ ତିଳ ଘେନି
ସହଦେବ ଦେଲା କୁଶମୂର୍ତ୍ତିକି ମୁଖାଗ୍ନି ।
ଏକାଦଶ ଦିବସରେ ପ୍ରେତକର୍ମ ସାରି
ପ୍ରୋହିତ ସେବନ କଲେ ଶାନ୍ତ୍ୟୁଦକ କରି ।
ଅନେକ ଧନ ବସନ ଦେଲାକ ସେ ଦାନ
ଏହିପରି ଶୁଦ୍ଧ ହୋନ୍ତେ ଜରାର ନନ୍ଦନ ।
ଅଭିଷେକ ବିଧାନ ଯେ କରନ୍ତି ଶ୍ରୀହରି
ମଗଧରେ ସହଦେବ ହେଲା ଅଧିକାରୀ ।
ରାଜ୍ୟରେ ବହୁ ଉତ୍ସବ କଲେ ସହଦେବ
ସ୍ୱର୍ଣ୍ଣକୁମ୍ଭ ବସାଇଲା ନେଇ ସର୍ବଠାବ ।

ନେତରେ ପତାକା ଉଡ଼େ ହୋଇ ଫରହର
ରମ୍ଭାବୃକ୍ଷ ଆମ୍ରପତ୍ର ଲମ୍ବେ ସର୍ବ ଦ୍ୱାର ।
ସହଦେବ ଅଭିଷେକ ହେବାର ଶୁଣିଣ
ବହୁତ ଦେଶୁ ଅଇଲେ ବହୁ ତପୋଧନ ।
ପ୍ରବେଶ ହୋଇଲେ ଯାଇ ମଗଧ ରାଜ୍ୟରେ
ପୂଜା ପାଇ ବସିଲେ ସେ ଋଷି ସମାଜରେ ।
ଜଗନ୍ନାଥ ଆଜ୍ଞାଦେଲେ ସହଦେବ ରାଇ
ଉତ୍ସବକାଳେ ରାଜାଙ୍କୁ ଦିଅ ମୁକୁଳାଇ ।
ଶୁଭବେଳେ ଅମଙ୍ଗଳ କଥା ନ ରହିବ
ନିର୍ଦ୍ଦୋଷୀ ବନ୍ଦୀଙ୍କି ମୁକ୍ତି ଦିଅ ସହଦେବ ।
କୃଷ୍ଣ ବାକ୍ୟେ ସହଦେବ ସେଠାରୁ ଚଳିଲେ
ବନ୍ଦୀ ନୃପତିଙ୍କି ବନ୍ଦୀ ଗୃହରୁ କାଢ଼ିଲେ ।
ହସ୍ତ ପାଦେ ପଡ଼ିଥିଲା ଯେବଣ ଶିକୁଳି
ତା ଫେଡ଼ନ୍ତେ ହରି ବୋଲ ଦେଲେ କରତାଳି
କାବେରୀ ଗଙ୍ଗାଜଳରେ ପଶି କଲେ ସ୍ନାନ
ଶ୍ରୀହରିଙ୍କ ପାଦତଳେ କରିଲେ ବନ୍ଦନ ।
କୃଷ୍ଣ ବୋଇଲେ ଆମ୍ଭଙ୍କୁ କିପାଁ ପୂଜାକର
ଭୀମସେନ ଅଛନ୍ତି ଯେ ତୁମ୍ଭର ଠାକୁର ।
ଶୁଣିଛ ତ ଜରାସନ୍ଧ ଯେ ପ୍ରତିଜ୍ଞା କଲା
ଅଷ୍ଟାଦଶବାର ଯାଏ ମୋତେ ଧାଡ଼ିଦେଲା ।
ତାର ଭୟେ ଜମ୍ବୁଦ୍ୱୀପ ଆମ୍ଭେ ତ୍ୟାଗକଲୁ
ସମୁଦ୍ର ଭିତରେ ଯାଇ ଲୁଚିଣ ରହିଲୁ ।
ଜରା ମାରି ଭୀମ କଲେ ତୁମ୍ଭଙ୍କୁ ନିର୍ଭୟେ
ତାଙ୍କୁ ପୂଜା କର ଯାଇଁ ତୁମ୍ଭେ ସର୍ବରାୟେ ।
ଉପକାର ଯେହୁ କଲା ତା ପାଶକୁ ଯାଅ
ପ୍ରାର୍ଥନା କରି ତାହାକୁ ସନ୍ତୋଷ କରାଅ ।
ଜଗନ୍ନାଥ ବଚନେ ସକଳ ନୃପତି
ଭୀମସେନ ପାଦତଳେ ପ୍ରଣାମ କରନ୍ତି ।
ଶତସସ୍ର ଦଣ୍ଡବତ କରି ଉଭାହେଲେ
ଏକ ମୁଖେ ଭୀମସେନ ସ୍ତୁତି ଆରମ୍ଭିଲେ ।
ଜୟ ବୃକୋଦର ସୋମବଂଶ ଅଧିକାରୀ
ଜୟ ବୃକୋଦର ପୃଥ୍ୱୀଭରାକୁ ନିବାରି ।
ଜୟ ତୁହି ବୃକୋଦର ଶତସିଂହ ଭଞ୍ଜା
ଜୟ ତୁହି ବୃକୋଦର ନାଗଦର୍ପ ଗଞ୍ଜା ।
ଜୟ ତୁହି ବୃକୋଦର ଯମଦର୍ପହରା
ଜୟ ବୃକୋଦର ବିଷଲଡୁ ପାରକରା ।
ଜୟ ତୁହି ବୃକୋଦର ଦୈତ୍ୟ ନିବାରନ୍ତା
ଜୟ ବୃକୋଦର ଜତୁଘରୁ ଉଦ୍ଧାରନ୍ତା ।
ଜୟ ବୃକୋଦର ଗ୍ରାହ ମାରି କଲୁ ଠାବ
ଜୟ ତୁହି ବୃକୋଦର ହିଡ଼ିମ୍ବାବଲ୍ଲଭ ।
ଜୟ ବୃକୋଦର ହିଡ଼ିମ୍ବକ ବିହରନ୍ତା
ଜୟ ବୃକୋଦର ଶିବପୁର ଉଦ୍ଧାରନ୍ତା ।
ଜୟ ବୃକୋଦର ତୁହି ଦୈତ୍ୟବଳ ଧ୍ୱଂସି
ପଞ୍ଚାଳଦେଶ ମଣ୍ଡନ ଅଭୟ ଦିଆସି ।
ଜୟ ତୁହି ବୃକୋଦର ଅଟୁ ରଣରଙ୍ଗା
ଜୟ ତୁହି ବୃକୋଦର କୌରବଙ୍କ ଶଙ୍କା ।
ଜୟ ଜୟ ବୃକୋଦର ବାୟୁସୁତ ଭୀମ
ଜୟ ବୃକୋଦର ଯମ ପରେ ଦ୍ୱିତୀଯମ ।
ଜୟ ବୃକୋଦର କୁମ୍ଭସୈନ୍ୟ ଦର୍ପଧ୍ୱଂସା
ଜୟ ବୃକୋଦର ଶତ୍ରୁ ନାଶ ଯେ ସହସା ।
ଜୟ ଜୟ ବୃକୋଦର ଜରା ନିଶୋଧନ
ଜୟ ଜୟ ବୃକୋଦର ବଳୀ ଅଗ୍ରଗଣ୍ୟ ।
ଜୟ ଜୟ ବୃକୋଦର ବନ୍ଧନେ କାରଣ
ଜୟ ଜୟ ବୃକୋଦର ଶରଣ ରକ୍ଷଣ ।
ଜୟ ବୃକୋଦର ସହଦେବ ରାଜା କରୁ
ଜୟ ତୁହି ବୃକୋଦର ଆପଦ ଉଦ୍ଧାରୁ ।
ଜୟ ବୃକୋଦର ଦୈତ୍ୟ ପାଣ୍ଡବ ବିନାଶି
ଜୟ ତୁହି ବୃକୋଦର ଅସୀମ ସାହସୀ ।
ଏହିପରି କହି ନୃପେ କରି ବହୁ ସ୍ତୁତି
ଭୀମଙ୍କ ଚରଣ ତଳେ କରିଣ ପ୍ରଣତି ।
ବୋଇଲେ ଆମ୍ଭେ ଶରଣ ନେଲୁ ଯେ ତୁମ୍ଭର
କ୍ଷମାକର ସର୍ବଦୋଷ ତୁମ୍ଭେ ହେ ଆମ୍ଭର ।
ରାଜାଙ୍କ ସ୍ତୁତି ଶୁଣିଣ ଭୀମ ଶାନ୍ତି ଭଜି
ମଧୁର ବଚନ କହି ରାଜାଙ୍କୁ ସମାର୍ଜି ।
ତୁମ୍ଭ ଅପମାନେ ଏହି ଜରା ନାଶଗଲା
ଧର୍ମଦେବ ତୁମ୍ଭଙ୍କୁ ଯେ ସପକ୍ଷ ହୋଇଲା ।
ରାଜାଏ ବୋଇଲେ ସ୍ୱାମୀ ଜରା ନାଶକର୍ତ୍ତା
ତୁହି ଯେ ଅଟୁ ଆମ୍ଭର ଧରମ ଦେବତା ।
ବହୁ ପଉରୁଷ କଲେ ଭୀମେ ରାଜାମାନେ
ପ୍ରଶଂସା କଲେକ ସହଦେବ ବିଦ୍ୟମାନେ ।
ଅନେକ ସମାରୋହରେ ଦେବ ଦଇତ୍ୟାରି
ଜରାପୁତ୍ର ସହଦେବ ଶୁଭ ଅବଧାରୀ ।
ପୁଷ୍କରକୁ ଚିନ୍ତାକଲେ ଦେବ ଜଗନ୍ନାଥ
ବିଜୟ ପୁଷ୍କର ଦେବ ଘେନି କୋଟିତୀର୍ଥ ।
ସର୍ବ ତୀର୍ଥଜଳ ପୂର୍ଣ୍ଣକଳସେ ପୂରାଇ
ସହଦେବ ଅଭିଷେକ କରିଲେ ସେ ନେଇ ।
ଶିରରେ ପାଟ ବାନ୍ଧିଲେ ଦେବ ଦଇତ୍ୟାରି
ଶୁଭ ଧ୍ୱନିରେ ପୂରିତ ମଗଧ ନଗରୀ ।
ଧନ ଧାନ୍ୟ ବସ୍ତ୍ରଆଦି ଦେଲେକ ବଧାଇ
ଦେବତାମାନଙ୍କୁ ବହୁ ଶୀତଳ କରାଇ ।

ଶିରରେ ଫଣି ମୁକୁଟ ହୃଦେ ବନମାଳା
ତାଡ଼ ତୋଡ଼ର ବାହୁଟି ଆଉ ଜଗଦ୍‌ବଳା ।
ବିଜେ କଲେ ସହଦେବ ମହାନାଗ ପୀଠ
କରରେ କମାଣ ଖଡ୍‌ଗ କୁନ୍ତ ଆଉ ଜାଠ ।
ଧରିଣ ଭ୍ରମଣ କଲେ ଆପଣା ନଗର
ପାତ୍ର ଅମାତ୍ୟଙ୍କୁ ଦେଲେ ଯଥା ଅଧିକାର ।
ସାହେଣି ସାମଲ ମୂଳେ ଅନେକ ନିଯୋଗୀ
ପସରା ଘେନି ଆସନ୍ତି ସର୍ବେ ବେଗି ବେଗି ।
ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ଘେନି ନାରୀଗଣ
ସହଦେବେ ବନ୍ଦାଇଲେ ଯାଇ ଜଣ ଜଣ ।
ମୁନିମାନେ ବେଦମନ୍ତ୍ର ଏକତ୍ରେ ଉଚ୍ଚାରି
ସହଦେବ କନ୍ଧେ ଦେଲେ ସୁବର୍ଣ୍ଣ ଉତ୍ତରୀ ।
ବିତରଇ କୁମର ଯେ ଅନେକ ଭଣ୍ଡାର
ଯାଗରେ ହବି ଆହୁତି ଦ୍ୟନ୍ତି ମୁନିବର ।
ବୃକୋଦର ଆଜ୍ଞା ଦେଲେ ରାଜାଙ୍କୁ ଡକାଇ
ସହଦେବ ଆସ୍ଥାନର ତଳେ ଖଟ ଯାଇ ।
କରୁଥିଲ ଜରାସନ୍ଧ ସେବା ଯେଉଁପରି
ସହଦେବ କନ୍ଧେ ଦେଲେ ସୁବର୍ଣ୍ଣ ଉତ୍ତରୀ ।
ଯେ ଅବା ବାଳୁତ ବୋଲି କରିବ ଅମାନ୍ୟ
ମୋହର ସତ୍ୟ କରିବ ତା ଶିର ଛେଦନ ।
ଏପରି ପ୍ରତିଜ୍ଞା କରି ବୋଲନ୍ତେଣ ଭୀମ
ରାଜାଏ ଖଟିଲେ ସହଦେବର ଆସ୍ଥାନ ।
ଶ୍ରୀହସ୍ତେ ଅକ୍ଷତ ଗୁଆ ଘେନି ଫାଲଗୁନି
ରାଜାଙ୍କୁ ଯେ ନିମନ୍ତ୍ରଣ କଲେ ସେହିକ୍ଷଣି ।
ବୋଇଲେ ରାଜୁସି ଯଜ୍ଞ କରିବେ ଯୁଧିଷ୍ଠି
ରାଜାଏ ତୁମ୍ଭେ ସମସ୍ତେ ତହିଁକି ଯିବଟି ।
ରାଜାଏ ବୋଇଲେ ହୋଇକରି ପ୍ରଣିପାତ
ଏକମାତ୍ର ସାକ୍ଷୀ ଜଣେ ପଠାଇବ ଦୂତ ।
ତୁମ୍ଭ ହେତୁ ରକ୍ଷା ହେଲା ଆମ୍ଭ ଏ ଜୀବନ
ଗୋବିନ୍ଦ ବୋଇଲେ ରକ୍ଷା କଲେ ଭୀମସେନ
ରାଜାମାନେ ବୋଇଲେ ଯେ ଭୀମ ଆମ୍ଭ ଗୁରୁ
ତାହାଙ୍କର ବଚନକୁ ମେଣ୍ଟିଣ ନ ପାରୁ ।
ଜୟ ଜୟ ଜଗନ୍ନାଥ ନୀଳାଚଳ ପତି
ଭୁବନ ମୋହନ ତବ ସୁନ୍ଦର ମୂରତି ।
ସେ ନବଲାବଣ୍ୟ ରୂପ ଦେଖିବାର ପାଇଁ
ବହୁଦୂରୁ ଆସୁଛନ୍ତି ନାନାକଷ୍ଟ ସହି ।
ପାଶେ ରହି ଯେତେବେଳେ ଦେଖନ୍ତି ଶ୍ରୀମୁଖ
ହରଣ ହୁଅଇ ପ୍ରଭୁ ତାଙ୍କ ସର୍ବଦୁଃଖ ।
ଯାର ଯେଉଁ ଅଭିପ୍ରାୟ ତା ଜାଣି ଆପଣ
ସ୍ନେହବଶେ କୃପାକରି କରାଅ ପୂରଣ ।
ଧନ୍ୟ ତୁମ୍ଭର ମହିମା ହେ କମଳା ଈଶ
ଶାରଳା ଦାସକୁ ରଖ ସଦା କରି ଦାସ ।



## ଦୁର୍ଯ୍ୟୋଧନଙ୍କର କପଟ ମନ୍ତ୍ରଣା ଓ ଯୁଧିଷ୍ଠିରଙ୍କର ଶୋକ, କୃଷ୍ଣଙ୍କ ସହିତ ଭୀମାର୍ଜ୍ଜୁନ ହସ୍ତିନାରେ ପ୍ରବେଶ

କହନ୍ତି ଅଗସ୍ତି ଶୁଣ ମନୁ ନରପତି
ଯେଉଁ ଦିନ କୃଷ୍ଣ ହେଲେ ପଶ୍ଚିମ ମୂରତି ।
ଦୁର୍ଯ୍ୟୋଧନ ଭାଳେ ପାଶେ ବସାଇ ଶକୁନି
ଜରାପୁରେ ଯାଇଛନ୍ତି ଭୀମାର୍ଜ୍ଜୁନ ଘେନି ।
କେବଣ କୃତ୍ୟ କରିଲେ ତହିଁ ଦେବ ହରି
କହ ମାମୁଁ ଏହି କଥା ବୁଝିବା କିପରି ।
ଜରାସନ୍ଧ ଭୟକରି ଯେ ପଳାଇଥିଲା
ସେ ହରି ଯାଇ ସେଠାରେ ପୁଣି କିସ କଲା ।
ଶକୁନି ବୋଇଲା ଆମ୍ଭେ ବୁଦ୍ଧିଏ କରିବା
ଗୁପତ କରିଣ ତହିଁ ଦୂତ ବରଗିବା ।
ଶକୁନିଠାରୁ ଶୁଣିଣ ଏହା କୁରୁପତି
ଗୁପତରେ ଚାରିଜଣ ଦୂତ ବରଗନ୍ତି ।
ବୋଇଲେ ଚାରିହେଁ ତୁମ୍ଭେ ମଗଧକୁ ଯିବ
ଜରାସନ୍ଧ ପୁରେ କିସ କଲେ ବାସୁଦେବ ।
ସେହି କଥାମାନ ଜାଣି ଆସି ଧାତିକାରେ
ସନ୍ଦେଶ କହିବ ଆସି ଆମ୍ଭର ଛାମୁରେ ।
ରାଜାଙ୍କର ଆଜ୍ଞା ପାଇ ଗଲେ ଚାରିଦୂତେ
ମଗଧ ଦେଶରେ ଯାଇ ପ୍ରବେଶ ତୁରିତେ ।
ଶୁଣିଲେ ଭୀମ ଜରାର ହେଉଛି ସମର
ଭୀମ ବକ୍ଷ ମାଡ଼ିବସେ ଜରାସନ୍ଧ ବୀର ।
ବ୍ରାହ୍ମଣ ମଲା ବୋଲିଣ ଶୁଭିଲାକ ଧ୍ୱନି
ଚଳିଲେ ଡଗରମାନେ ବାରତାକୁ ଘେନି ।
ହସ୍ତିନାରେ ବିଜେ କରିଛନ୍ତି କୁରୁସାଇଁ
ଯୁଧିଷ୍ଠି ନକୁଳ ସହଦେବ ତିନି ଭାଇ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ବାହ୍ଲିକ
ଭୂରିଶ୍ରବା ଅଶ୍ୱତ୍ଥାମା ସଇନି ଅନେକ ।
ରାଜା ବହୁ ପାରିଦଣ୍ଡ ଛନ୍ତି ପଟୁଆରୀ
ନାନା କଥା ହେଉଛନ୍ତି ତହିଁ ବସିକରି ।
ଏ ସମୟେ ଏକ ଦୂତ ଆସି ପାଶେ ବୋଲେ
ଭୋ ଦେବ ପଶ୍ଚିମ ଦୂତ ଏକ୍ଷଣି ଅଇଲେ ।
ସେମାନଙ୍କ ମୁଖ କିପାଁ ବିରସ ଦିଶଇ
ଏକାଳେ ମଉଳାଇଲେ ସଭା କୁରୁସାଇଁ ।

ସଭା ମଉଳାନ୍ତେ ସର୍ବେ ଯେଝା ବାସେ ଗଲେ
ଦୁର୍ଯ୍ୟୋଧନ ସେ ଦୂତଙ୍କୁ ପାଶକୁ ଡାକିଲେ ।
ଏକାନ୍ତ ପୁରରେ ରାଜା ତାହାଙ୍କୁ ବସାଇ
ପୁଚ୍ଛେ କି ବାର୍ତ୍ତା ଆଣିଛ ଯାଇଥିଲ ଯହିଁ ।
ଦୂତେ ବୋଇଲେ ସେଠାରେ ଲାଗିଛି ସମର
ଦ୍ୱିଜେ ମାଡ଼ି ବସିଥିଲା ଜରାସନ୍ଧ ବୀର ।
ମରିଛି କି ନ ମରିଛି ମୁଖଧ୍ୱନି ହେଲା
ଜରାସନ୍ଧ ଏକ ଦ୍ୱିଜବରକୁ ମାଇଲା ।
ଏହା ଶୁଣି ସେମାନଙ୍କୁ ବୋଲେ କୁରୁନାଥ
ଆରେ କାଲି ସଭା ମଧ୍ୟେ କହିବ ଏମନ୍ତ ।
ପ୍ରଥମେ ନିହତ ହେଲେ ଯୁଦ୍ଧେ ବାସୁଦେବ
ତତ୍‌ପରେ ଯୁଦ୍ଧେ ବଧିଲା ସେ ଦୁଇ ପାଣ୍ଡବ
କାଲି ନିଶ୍ଚେ ସଭା ମଧ୍ୟେ କହିଲେ ଏମନ୍ତ
ତାଙ୍କ ନାଶ ଶୁଣି ହେବ ଯୁଧିଷ୍ଠିର ହତ ।
ଯେ ଆଜ୍ଞା କହିଣ ଦୂତେ ତହୁଁ ଚଳିଗଲେ
ପରଦିନ ସର୍ବେ ଯାଇ ସଭାରେ ବସିଲେ ।
ବିଜୟ କରି ଅଛନ୍ତି ସକଳେ ଆସ୍ଥାନେ
ପାଣ୍ଡବ ଆଦି କରିଣ ଛନ୍ତି ସୈନ୍ୟମାନେ ।
ଏ ସମୟେ ଦୂତେ ଆସି ଦ୍ୱାରେ ପହଁଞ୍ଚିଲେ
ପଶ୍ଚିମ ଦିଗର ବାର୍ତ୍ତା ଆଣିଛୁ ବୋଇଲେ ।
ଭୋ ଦେବ ଆମ୍ଭେ ଯେ ଗଲୁ ପଶ୍ଚିମ ପ୍ରଦେଶ
ତହିଁର ବାରତା ଏବେ ଶୁଣ କୁରୁଈଶ ।
ଶକୁନି ବୋଇଲା କହ କେବଣ ବାରତା
ଜରାସନ୍ଧ ପୁରେ ହରି କଲେ କେଉଁ କଥା ।
ଦୂତେ ବୋଇଲେ ପ୍ରଥମ ଦିବସରେ ଗଲେ
ବ୍ରାହ୍ମଣ ରୂପ ଧରିଣ ଦର୍ଶନ ପାଇଲେ ।
ବେଦ ଅଧ୍ୟୟନ କଲେ ଜରାର ଆଗର
ଦାନଛଳେ ମାଗିଲେ ସେ ଜରାକୁ ସମର ।
ଭୀମ ଜରାସନ୍ଧର ଯେ ହେଲା ଯୁଦ୍ଧ ଘୋର
ପ୍ରଥମ ଯୁଦ୍ଧରେ ହତ ହେଲେ ବୃକୋଦର ।
ଦ୍ୱିତୀୟ ଯୁଦ୍ଧରେ ଦେବ ଅର୍ଜୁନ ପଡ଼ିଲେ
ତୃତୀୟ ଯୁଦ୍ଧରେ ବାସୁଦେବ ନାଶଗଲେ ।
ଏସନକ ବାରତାକୁ ଶୁଣି କୁରୁପତି
ଆସ୍ଥାନୁ ଢଳିପଡ଼ିଲା ଶୋକ କରି ଅତି ।
ମୂର୍ଚ୍ଛାଗତେ ପଡ଼ିଲେ ଯେ ଶୁଣି ଯୁଧିଷ୍ଠିର
ମୂର୍ଚ୍ଛାରେ ପଡ଼ିଲେ ଯେତେ ଥିଲେକ ଆବର
ନକୁଳ ଅଚେତୁ ଉଠି କରଇ ରୋଦନ
ହା ଭ୍ରାତା ବୋଲି ପଡ଼ିଲେ କର୍ଣ୍ଣ ଦୁଃଶାସନ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ଶଲ୍ୟ ଯେ ବାହ୍ଲିକ
ଏମାନେ କାନ୍ଦିଲେ ତହିଁ ଥିଲେ ଯେତେଲୋକ
କପଟେ ଶୋକ କରଇ ତହିଁ କୁରୁପତି
କପଟେ ଶୋକ କରଇ ସେ ଶକୁନିମନ୍ତ୍ରୀ ।
ଯେ ସ୍ଥାନରେ ଯେତେଥିଲେ ସର୍ବେମୂର୍ଚ୍ଛା ହେଲେ
ଯୁଧିଷ୍ଠିଙ୍କି ସହଦେବ କୋଳରେ ଧରିଲେ ।
କର୍ଣ୍ଣ ଆଉ ଦୁଃଶାସନ ଧରାଧରି ହୋଇ
ଆସ୍ଥାନ ପରେ ପଡ଼ିଲେ ଗଡ଼ାଗଡ଼ି ହୋଇ ।
ଆହା ବୃକୋଦର କହି କାନ୍ଦେ ଦୁର୍ଯ୍ୟୋଧନ
ପାଣ୍ଡବାସୁରକୁ ମାରି ଦେଲେ ଜୀବଦାନ ।
ତୋହପରି ଉପକାରୀ ଭାଇକି ମରାଇ
କେବଣ ପ୍ରକାରେ ପ୍ରାଣ ରଖିବଇଁ ମୁହିଁ ।
ଯୁଧିଷ୍ଠି ଦେବଙ୍କ ଶୋକ କହି ତ ନ ପାରି
ଶୋକ ଭରେ ଧୃତରାଷ୍ଟ୍ର ଅର୍ଜୁନ ସୁମରି ।
ଆହା ମୋର ଗୁଣବନ୍ତ ପୁତ୍ର ଫାଲଗୁନି
ଏକା ହୋଇ ସାଧି କଲୁ ସକଳ ମେଦିନୀ ।
ତୋ ନାମ ଗୋଟି ତ୍ରୈଲୋକ୍ୟେସୁନ୍ଦର ଅଟଇ
ରହିଛି ଆତ୍ମା ତୋ ପରି ପୁତ୍ରକୁ ହରାଇ ।
ଜଗତ ସୁନ୍ଦର ପାର୍ଥ କେଉଁଆଡେ ଗଲୁ
ଅଗାଧ ଶୋକସାଗରେ ମୋତେ ବୁଡାଇଲୁ ।
ଅଳପ ଯୁଦ୍ଧରେ କେହ୍ନେ ହୋଇଲୁ ବିନାଶ
ଏହା ସେ କରିଲା ନିଶ୍ଚେଁ ଦେବ ହୃଷୀକେଶ
ଦୁର୍ଯ୍ୟୋଧନ ବୋଇଲା ହେ ଶୁଣ ଯୁଧିଷ୍ଠିର
ଏତେ ଅରିଷ୍ଟି ହୋଇଲା ବୁଦ୍ଧିରେ ତୋହର ।
ଢଗା ଗଉଡ଼ର ବୋଲେ ଚଳୁ ଅନୁବ୍ରତେ
କାଳେ ନାଶକଲୁ ଆଉ ବଞ୍ଚିବୁ କେମନ୍ତେ ।
କୂଟବୁଦ୍ଧି ଏ ପାଞ୍ଚିଲା ସେହି ନାରାୟଣ
ବୁଝି ନ ପାରିଲୁ ତୁହି ତା ଚତୁରପଣ ।
ଅର୍ଜୁନ ଯେବଣ ବେଳେ ଗଲା ଦ୍ୱାରକାକୁ
ବଳକ୍ରାରେ ହରିଲା ସେ ତହିଁ ସୁଭଦ୍ରାକୁ ।
ସେହି ରାଗକୁ ଶ୍ରୀହରି ହୃଦେ ଧରିଥିଲା
ଆପଣେ ନ ମାରି ପରହସ୍ତେ ମରାଇଲା ।
ଜାଣି ନ ପାରିଲୁ ତୁହି ସେ କୃଷ୍ଣର କଥା
ସମ୍ପଦ ହରାଇ ନାଶଗଲୁ ତୁହି ବୃଥା ।
ନିସତ କାଳକୁ ହେଲା ବିପରୀତ ବୁଦ୍ଧି
ଅଦଭୁତେ ହରାଇଲୁ ହସ୍ତେ ଥିବା ନିଧି ।
ଭୀମ ପ୍ରାୟେକ ସୋଦର ତୋର ନାଶଗଲା
ଅର୍ଜୁନ ପ୍ରାୟେକ ଭାଇ ଅଦୋଷରେ ମଲା ।
ଏହାଙ୍କୁ ମରାଇବ ସେ ପଳାଏ ଆପଣ
ଅଳପକେ ନାଶଗଲା ଏଡ଼େ ବଡ଼ପଣ ।
ଏବେ ବସିଲୁ ହୋଇଣ ବୃଦ୍ଧକାଳ ପ୍ରାୟ
ଜୀବହୀନ ହେଲୁ ଆଉ ଅଛି କି ଉପାୟ ।

ତ୍ରୈଲୋକ୍ୟଜିତା ଅଟଇ ସେଇ ଜରାସନ୍ଧ
ଇହଲୋକେ ତାର ସଙ୍ଗେ କେ କରିବ ଦ୍ୱନ୍ଦ୍ୱ ।
ଅଷ୍ଟାଦଶବାର ସେହି କୃଷ୍ଣେ ଧାଡ଼ିଦେଲା
ସମୁଦ୍ର ମଧ୍ୟେ ତା ଭୟେ ଯାଇଣ ଲୁଚିଲା ।
କୋଟିଏ ସିଂହର ବଳ ଯେଉଁ ବଳରାମେ
ସେ ପୁଣି ଜରାକୁ ସରି ନୋହିଲେ ସଂଗ୍ରାମେ
ଶକୁନି ନିଜ କର୍ମକୁ ନିନ୍ଦିଣ କହଇ
ଭୀମାର୍ଜ୍ଜୁନ ପ୍ରାୟ ଭାଇ ରହିଲେକ କାହିଁ ।
ଏପରି ଝିଙ୍ଗାସ କରି ରାଜା କୁରୁପତି
ସଭାରୁ ଉଠିଣ ଗଲା ହୋଇ ଶୋକମତି ।
ଆସ୍ଥାନ ମଉଳନ୍ତେ ଯେ ଗଲେ ସର୍ବବୀରେ
ମହାଶୋକେ ନରପତି ବିଜେ ଅନ୍ତଃପୁରେ ।
ଦୁଃଶା ବୋଲେ ଏବେ ପ୍ରେତକାର୍ଯ୍ୟ ହୋ କରିବା
ଭୀଷ୍ମ ବୋଲେ ଆଉଥରେ ବାରତା ବୁଝିବା
ଦୁର୍ଯ୍ୟୋଧନ ବୋଇଲା ଯେ ହୋଇଲକି ବାଇ
ଯେହୁ ନାଶଗଲେ ତାକୁ ଜୀବନ୍ତେ କି ପାଇ ।
ଆସ୍ଥାନରେ ବସିକରି ରାଜା ଯୁଧିଷ୍ଠିର
ବୋଲନ୍ତି ଯେ ଦଶଦିଗ ଦିଶଇ ଅନ୍ଧାର ।
ଆରେ ସହଦେବ ତୁହି ଏହି କୃତ୍ୟ କଲୁ
ଭୀମ ହସ୍ତେ ଜରାସନ୍ଧ ମରିବ ବୋଇଲୁ ।
ତୋହରି ବାକ୍ୟକୁ ମୁହିଁ କରିଣ ବିଶ୍ୱାସ
ଭାଇଙ୍କି ପେଷିଲି ସେହି ଏବେ ଗଲେ ନାଶ ।
ଯେବେ ବୋଲିଥାନ୍ତୁ ଜରା ନୋହିବ ନିଧନ
ମୁଁ କିପାଁ ପଠାଇଥାନ୍ତି ଭୀମ ଅରଜୁନ ।
ଅଭିନ୍ନ ଆତ୍ମା ତୋହର ବୋଲି ଜାଣିଥିଲି
ଏସନକ ହୃଦ ତୋର ଏବେ ମୁଁ ଜାଣିଲି ।
ସାବତ ମାତାର ପୁତ୍ର ଅଟୁ ସହଦେବ
ତୁହି ସିନା ଦେଲୁ ମୋତେ ଏତେ ପରାଭବ ।
କର୍ମ ଆଦରିଣ କରି ଧରମ ଯୁଧିଷ୍ଠି
ଅସାଷ୍ଟମେ ପଡ଼ିଗଲେ ମହୀପରେ ଲୋଟି ।
ଯୁଧିଷ୍ଠିଙ୍କ ବାକ୍ୟ ଶୁଣି ମାଦ୍ରୀର ନନ୍ଦନ
ହସିଣ ଉଠିଲା ହୋଇ ଆନନ୍ଦରେ ମଗ୍ନ ।
ନକୁଳ ବୋଇଲା ଆହେ ହସିଲ କି ଅର୍ଥେ
ଆମ୍ଭେ କି ବର୍ତ୍ତିବା ଭୀମ ପାର୍ଥ ନ ଦେଖନ୍ତେ
ସହଦେବ ବୋଲେ ସର୍ବେ ଶୁଣ ସାବଧାନେ
ଶତ୍ରୁର କପଟ ଦେବ ନ ବୁଝିଲ ମନେ ।
ଜରାସନ୍ଧପୁରକୁ ଯେ ଗଲେ ଦେବ ହରି
ତାର ରାଜ୍ୟରେ ପଶିଲେ ବିପ୍ରରୂପ ଧରି ।
ଜରାସୁତ ସହଦେବ ସେ ପରୀକ୍ଷା ଦେଲେ
ଦ୍ୱିତୀୟ ଦ୍ୱାରରେ ଭୀମ ଭେରୀକି ଭାଙ୍ଗିଲେ
ତୃତୀୟ ଦ୍ୱାରେ ଅର୍ଜ୍ଜୁନ ଛେଦିଲେ ଶିମୁଳୀ
ଚତୁର୍ଥେ ଗଧ କଚାଡ଼ି ଦେଲେ ବନମାଳୀ ।
ତତ୍ପରେ ପ୍ରବେଶ ହେଲେ ଜରା ଯଜ୍ଞଶାଳେ
ଦାନ ମାଗିଲେ ଯେ ପ୍ରଭୁ ଯୁଦ୍ଧ କୁତୂହଳେ ।
ମହାଯୁଦ୍ଧ ବଢ଼ିଲା ସେ ଭୀମସେନ ତୁଲେ
ଭୀମସେନ ଜରାକୁଁ ଯେ ନାଶକଲେ ହେଳେ
ହରିଙ୍କ ବଚନେ ଭୀମ ହୋଇ କୋପାନଳ
ଜରାସନ୍ଧକୁ ଚିରିଲେ କରି ବେନି ଫାଳ ।
ଜରାସନ୍ଧ ପୁତ୍ର ସହଦେବ ଯେ କୁମର
ମଗଧେ ତାହାକୁ ହରି କଲେକ ଠାକୁର ।
ଛୟାଣୋଇ ସସ୍ର ରାଜା ବନ୍ଦୀ ହୋଇଥିଲେ
ସବୁଙ୍କୁ ଏକାବେଳକେ ମୁକତ କରିଲେ ।
ସମସ୍ତ ରାଜାଙ୍କୁ ତହିଁ କରି ନିମନ୍ତ୍ରଣ
ତହୁଁ ଫେରି ଆସୁଛନ୍ତି ଦେବ ନାରାୟଣ ।
ଜରାପୁତ୍ର ତାଙ୍କ ସଙ୍ଗେ ପାଛୋଟି ଅଇଲା
ପଞ୍ଚଦଶ ଯୋଜନରୁ ରାଜ୍ୟେ ବାହୁଡ଼ିଲା ।
କପଟେ ମନ୍ତ୍ରୀଏ କରି ଅଛନ୍ତି ଏମନ୍ତ
ତାହାଙ୍କ ବଚନେ ଦେବ କାନ୍ଦ କି ନିମିତ୍ତ ।
ଶୁଣିଣ ସହଦେବ ଯେ କୁଣ୍ଢାଇ ଯୁଧିଷ୍ଠି
ବାବୁ କି ସତ ହୋଇବ ତୋ ବଚନଗୋଟି ।
ସହଦେବ ବୋଲେ ଚାରି ଦିବସ ମଧ୍ୟରେ
ପରବେଶ ହେବେ ସର୍ବେ ଏହି ହସ୍ତିନାରେ ।
ସହଦେବର ବଚନେ ଛାଡ଼ିଲେକ ଭ୍ରାନ୍ତି
ମୌଳିକ କର୍ମରେ ପୁଣ ବଳାଇଲେ ମତି ।
ପ୍ରବେଶ ହୋଇଲେ ଯାଇଁ ଆପଣା ଭୁବନେ
ଥୟ ନୁହେଁ ମନ କେଭେ ନ ଦେଖି ନୟନେ
ଗୁପତେ ଶୋକ କରନ୍ତି ଦ୍ରୌପଦୀ ଯେ କୁନ୍ତୀ
ଆଉ ସ୍ତିରୀଗଣ ବେଢ଼ି ରୋଦନ କରନ୍ତି ।
ସନ୍ନିଧେ ପ୍ରବେଶ ହେଲେ ଯାଇ ଧର୍ମସୁତ
ଯୁଧିଷ୍ଠି ବୋଇଲେ ଶୋକ ଛାଡ଼ ଆଗୋ ମାତ
ସହଦେବ ବୋଇଲେ ଗୋ ଅସମ୍ଭବ କଥା
ଜରାକୁ ବଧ କରିଲେ ଭୀମ ବଳବନ୍ତା ।
ଯୁଧିଷ୍ଠିଙ୍କର ବଚନେ ସର୍ବେ ହେଲେ ଶାନ୍ତି
ଛାଡ଼ିଣ ମନୁ ବିକଳ ହୋଇଲେ ତୃପତି ।
କୁମ୍ଭମାସ କୃଷ୍ଣପକ୍ଷ ଚତୁର୍ଥୀର ଦିନ
ଚନ୍ଦ୍ରବାର ନକ୍ଷତ୍ର ଯେ ଅଟେ ହସ୍ତା କନ୍ୟ ।
ତୈତିଳ ନାମେ କରଣ ଆୟୁଷ୍ମାନ ଯୋଗ
ଚନ୍ଦ ରୋହିଣୀ ସପ୍ତମ ଘରବରେ ଭୋଗ ।
ତିଥିବାର ନକ୍ଷତ୍ର ଯେ ଯୋଗକୁ ବିଚାରି
ମଗଧରୁ ବାହାରିଲେ ପ୍ରଭୁ ଦେବହରି ।

ରାଜାମାନେ ପଶ୍ଚାତରେ ଗୋଡ଼ାଇ ଅଛନ୍ତି
ଲେଉଟି ଚାହିଁ ଦେଖିଲେ ଜଗତର ପତି ।
ବୋଇଲେ ହେ ନୃପେ ଯାଅ ଯେ ଯାହା ସଦନ
ଆମ୍ଭ ସଙ୍ଗେ ଆସିବାର କିସ ପ୍ରୟୋଜନ ।
ଶୁଣିକରି ରାଜାମାନେ ବହୁ ବିନୟରେ
ବୋଇଲେ ପ୍ରାଣ ରଖିଲ କି ଦେବୁ ଛାମୁରେ ।
ଏହା କହି ପିନ୍ଧିଥିଲେ ଯେଉଁ ଆୟମାନ
ତାହା କାଢ଼ି ମାରୁତିଙ୍କୁ କରିଲେ ପ୍ରଦାନ ।
ଏହିପରି ଦରଶନୀ ଦେଲେ ରାଜାମାନେ
ନିଜ ରାଜ୍ୟକୁ ଚଳିଲେ ଆନନ୍ଦିତ ମନେ ।
ଜରାପୁତ୍ର ସହଦେବ ସଙ୍ଗେ ଆସୁଥିଲା
ତିନିଲକ୍ଷ ସ୍ୱର୍ଣ୍ଣ ରଥ ପୂର୍ଣ୍ଣ କରିଦେଲା ।
ସେହିଠାରୁ ବିଦାହୋଇ ତିନିଙ୍କି ପ୍ରଣମି
ନିଜ ରାଜ୍ୟକୁ ଚଳିଲା ସୈନ୍ୟଗଣ ଘେନି ।
ଅନେକ ସମାରୋହରେ ଅଇଲେ ଶ୍ରୀହରି
ପଶ୍ଚିମ ସୋମନାଥଙ୍କ ପାଶେ ବିଜେକରି ।
ନିତ୍ୟକର୍ମ ଶେଷକରି ବିଜେ ଶିବଆଳେ
କରନ୍ତି ଶ୍ରୀହରି ସ୍ତୁତି ପ୍ରଭାତର କାଳେ ।
ବୃଷଭ ପିଠିରେ ଚଢ଼ି ବିଜେ ସଦାନନ୍ଦ
ତାଙ୍କୁ ଦେଖି ପାଦତଳେ ପଡ଼ିଲେ ଗୋବିନ୍ଦ ।
ଭୀମ ଅର୍ଜ୍ଜୁନ ବିନୟେ କରିଲେ ଭକତି
ଦେଖିଣ ସାନନ୍ଦ ହେଲେ ପ୍ରଭୁ ପଶୁପତି ।
ଭୀମକୁ ଯେ ସଦାନନ୍ଦ ବହୁତ ଆଶ୍ୱାସି
ବହୁରତ୍ନ ଆଭରଣ ଦେଲେ ହୋଇ ଖୁସି ।
ଭୀମସେନକୁ ପ୍ରଶଂସା କଲେକ ଅନେକ
ସାଧୁ ସାଧୁ ମାରୁତି ତୋ ମହିମା ଅସଂଖ୍ୟ ।
ବହୁ ଭୁବନ ଧ୍ୱଂସିଲା ନାଶି ବହୁତୀର୍ଥ
ତପୀମାନଙ୍କୁ ସେ ନାଶ କରିଲା ବହୁତ ।
ତୁମ୍ଭେମାନେ ଉଶ୍ୱାସିଲ ମେଦିନୀର ଭାର।
ଧନ୍ୟ ଧନ୍ୟ ମାରୁତି ତୁ ବିନାଶିଲୁ ଜରା ।
ରାଜସୂୟ ଯାଗ ଏବେ କରାଅ ଶ୍ରୀହରି
ଆମ୍ଭୁ ନିମନ୍ତ୍ରଣ କର ଯାଇ ସ୍ୱର୍ଗପୁରୀ ।
ଆମ୍ଭେ ଯିବୁଟି ନିଶ୍ଚୟ ରାଜୁସି ଯାଗକୁ
ବ୍ରହ୍ମା ଇନ୍ଦ୍ର ଆସିବେଟି ଯଜ୍ଞ ଦେଖିବାକୁ ।
ଯେତେ ଧନ ଲାଗିବଟି ରାଜୁସି ଯଜ୍ଞକୁ
କୁବେର ତା ତୁଳାଇବ କହିଲୁ ତୁମ୍ଭଙ୍କୁ ।
ଶୁଣିକରି ଆନନ୍ଦିତ ହୋଇଲେ ଅଚ୍ୟୁତ
ତହୁଁ ଅନ୍ତର୍ହିତ ହେଲେ ଦେବ ବିଶ୍ୱନାଥ ।
ସେଠାରୁ ହର୍ଷେ ଅଇଲେ ଦେବ ବନମାଳୀ
ଭୀମାର୍ଜ୍ଜୁନ ସଙ୍ଗେ ଘେନି ଆସନ୍ତି ଯେ ଚଳି ।

ଆରଦିନ ଦୁର୍ଯ୍ୟୋଧନ ବିଜୟ ଆସ୍ଥାନେ
ବାର୍ତ୍ତା ଦେଲେ ଯାଇ ପରବେଶୀ ଚାରମାନେ
ଶୁଣସି ଦେବ ମଗଧ ଦେଶର ବାରତା
ଜରାକୁ ବଧ କରିଲେ ଭୀମ ବଳବନ୍ତା ।
ବନ୍ଦୀରୁ ମୁକତି କଲେ ସକଳ ରାଜାଙ୍କୁ
ରାଜ୍ୟେ ଅଭିଷେକ କଲେ ଜରାର ପୁତ୍ରକୁ ।
ପଶ୍ଚିମ ସୋମନାଥଙ୍କ ପାଶରେ ଅଛନ୍ତି
ତାଙ୍କୁ ଦେଖିଣ ଅଇଲୁ ଆମ୍ଭେ ଯେ ଝଟତି ।
ଶୁଣିଣ ମହାଆନନ୍ଦ ହେଲେ ଭୀଷ୍ମ ଦ୍ରୋଣ
ବୋଇଲେ ପୁରେ ଉତ୍ସବ କର ଏହିକ୍ଷଣ ।
ଶୁଣି ଦୁର୍ଯ୍ୟୋଧନ ହେଲା ଲୌକିକେ ସାନନ୍ଦ
ହୃଦ ମଧ୍ୟେ ବିଚାରଇ ନାନା କୂଟଛନ୍ଦ ।
ଯୁଧିଷ୍ଠିଙ୍କ ଶ୍ରୀଛାମୁରେ କହେ ସହଦେବ
ପଶ୍ଚିମେଶ୍ୱର ନିକଟେ ହୋଇଲେଣି ଦେବ ।
ମହାସମ୍ଭର୍ବେ ଆସନ୍ତେ ସେହି ତିନିଜଣ
ରାଜୁସି ଯାଗ ଭଳିକି ଆଣୁଛନ୍ତି ଧନ ।
ଶୁଣିଣ ଆନନ୍ଦ ହେଲେ ଧରମ ଯୁଧିଷ୍ଠି
ନକୁଳ ଯେ ସହଦେବ ଯାଅ ରେ ପାଛୋଟି ।
ସମଦଣ୍ଡ ଘେନିଣ ଯେ ବିଜେ କୁରୁପତି
ପୁରେ ଉତ୍ସବ କରାଇ ଚଳିଲା ଝଟତି ।
ଭୀମ ଅର୍ଜ୍ଜୁନଙ୍କୁ ଘେନି ବିଜୟ ଅଚ୍ୟୁତ
ହସ୍ତିନା ପାଶେ ପ୍ରବେଶ ଯେ ବାରୁଣାବନ୍ତ ।
ଅନେକ ସମ୍ଭର୍ବରେ ଯେ ରାଜା ଧାର୍ତ୍ତରାଷ୍ଟ୍ରି
ସମଦଣ୍ଡ ଘେନିଣ ଯେ ଆସିଲା ପାଛୋଟି ।
ବୈବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କି
କହ ମହାମୁନି ମୋତେ ଅମୃତ ବାଣୀକି ।
ସମଦଣ୍ଡ ଘେନିକରି ପାଛୋଟିଣ ଗଲେ
ଭୀଷ୍ମ ଦ୍ରୋଣ ଆଦି ସର୍ବ କଉରବ ବଳେ ।
ଏହାକୁ ଭେଟିଣ କୃଷ୍ଣ ପାର୍ଥ ଭୀମସେନ
କହ ମୋ ଆଗରେ ହେଲେ କି କି ସମ୍ଭାଷଣ ।
ଅଗସ୍ତି ବୋଇଲେ ଶୁଣ ବିଲଙ୍କାଧିପତି
ତୋ ଆଗେ କହିବା ତାହା ହେଲା ଯେଉଁ ରୀତି
ଥାଟ ନେଇ ଯାଉଁ ଯାଉଁ ପଥେ ହେଲେ ଭେଟ
ଭୀଷ୍ମ ଦ୍ରୋଣ ପ୍ରବେଶିଲେ କୃଷ୍ଣଙ୍କ ନିକଟ ।
ରଥୁ ଓହ୍ଲାଇଣ କୃପ ଦ୍ରୋଣ ଯେ ଗାଙ୍ଗେୟ
କୃଷ୍ଣପଦେ ଭକ୍ତିଭରେ କରିଲେ ବିନୟ ।
ଭୀମ ପାର୍ଥ ଭୀଷ୍ମ ଦ୍ରୋଣେ କରି ନମସ୍କାର
ଶୁଭବାର୍ତ୍ତା କହି କଲେ ଆନନ୍ଦ ଅପାର ।
ସଞ୍ଜୟ କହିଲେ ପୁଣ ରାଜା ଧୃତରାଷ୍ଟ୍ରେ
ଭୀମାର୍ଜ୍ଜୁନ ଘେନି ହରି ବିଜୟ ନିକଟେ ।

ମଞ୍ଚପୁରେ ଅଗୋଚର ଭୀମର ମହିମା
ପ୍ରତ୍ୟକ୍ଷେ ବିଜେ କଲେ କି ରୁଦ୍ର ଇନ୍ଦ୍ର ବ୍ରହ୍ମା ।
ଗ୍ରାମ ଦଗ୍ଧ କଲାବେଳେ ଯେହ୍ନେ ଦିଶେ ବହ୍ନି
ତେହ୍ନେ ଦେଖାଯାନ୍ତି କୃଷ୍ଣ ଭୀମ ଫାଲଗୁନି ।
ଜରା ବଧି ଆଣିଛନ୍ତି ବହୁତର ଧନ
ସେଥିରେ ରାଜୁସି ଯାଗ ହୋଇବ ସମ୍ପନ୍ନ ।
ଭୀମ ଅର୍ଜ୍ଜୁନ ଯେ ଧୃତରାଷ୍ଟ୍ରର ଅଗ୍ରତେ
ପ୍ରବେଶିଣ ପ୍ରଣିପାତ ହେଲେ ବେନି ଭ୍ରାତେ ।
ଧୃତରାଷ୍ଟ୍ର କୋଳ କଲେ ସେ ବେନି ଭାଇଙ୍କୁ
ଜାନୁପରେ ବସାଇଲେ ନେଇଣ ଭୀମକୁ ।
ପୁଣି ଧୃତରାଷ୍ଟ୍ର ବୋଲେ ଅସମ୍ଭବ କଥା
ଜରାସନ୍ଧ ରାଜା ଥିଲା ବଡ଼ ବଳବନ୍ତା ।
ବାବୁ ଐରାବତସିଂହ ତାର ପରାକ୍ରମ
ତାହାକୁ କେମନ୍ତେ ବଧ କଲୁ ଆରେ ଭୀମ ।
ବୃକୋଦର ବୋଲେ ସେହି କରୁଥିଲା ଯାଗ
ପନ୍ଦର ଦିବସ ଅନ୍ନ କରି ପରିତ୍ୟାଗ ।
ଶରୀର କ୍ଷୀଣରେ ସେହୁ କିସ ଯୁଦ୍ଧକରି
ବେନିଫାଳ କରି ତାକୁ ପକାଇଲି ଚିରି ।
ବ୍ୟାସଙ୍କୁ ଚାହିଁ ପୁଚ୍ଛିଲେ ନୃପ ଧୃତରାଷ୍ଟ୍ର
ଜରାର ରଣେ ଘୁଞ୍ଚିଲେ ଯେଉଁ ରାମକୃଷ୍ଣ ।
ଭୀମ ତାହାକୁ ଚିରିଲା ବେନିଫାଳ କରି
ଏଥିର ଚରିତ ମୋତେ କହ ତଥ୍ୟକରି ।
ଜୟ ଜୟ ମହାଲକ୍ଷ୍ମୀ ଝଙ୍କଡ଼ ବାସିନୀ
ଶାରଳା ଦାସ ତୋ ପାଦେ କରଇ ଦଇନୀ ।



## ଜରାସନ୍ଧର ଜନ୍ମ ଚରିତ

ବ୍ୟାସ ବୋଇଲେ ଶୁଣିମା ବାବୁ କୁରୁପତି
ଏହିଯୁଗେ ବୃହଦ୍ରଥ ନାମେଣ ନୃପତି ।
ପୁତ୍ର ଅଭାବରେ ସେହୁ ବହୁ କଷ୍ଟ ପାଇ
ରାଜକାର୍ଯ୍ୟ ଆଦିରେ ତା ମନ ନ ବଳଇ ।
ନାନା ଯଜ୍ଞ କରି କଲା ବହୁତର ଧର୍ମ
ତଥାପି ରାଜାର କୁଳେ ନୋହିଲା ସନ୍ତାନ ।
ଅଷ୍ଟୋତ୍ତରଶତ କନ୍ୟା କଲା ସେ ଗ୍ରହଣ
ତେବେ ସୁଦ୍ଧା ନ ହୋଇଲା ଏକଇ ସନ୍ତାନ ।
ପୁତ୍ରହୀନେ ନବସସ୍ର ବରଷ ବଞ୍ଚିଲା
କଉଣସି ମତେ ତାର ସନ୍ତାନ ନୋହିଲା ।
ମନ୍ତ୍ରୀକି ଡକାଇଣ ସେ ବୋଇଲା ଏସନ
ପରଲୋକେ ନର୍କଗତି ନ ଥିଲେ ସନ୍ତାନ ।
କହୁଅଛି ତୁମ୍ଭେ ଏବେ ମୋ ରାଜ୍ୟ ସମ୍ଭାଳ
ମୁଁ ତପ କରିବି ପୁତ୍ର ହେବା ଯେତେକାଳ ।
ମନ୍ତ୍ରୀକି ରାଜ୍ୟ ସମର୍ପି ଚଳିଲା ନୃପତି
ଜ୍ୟୋତିଷ ପୁରେ ରହିଲା ଯାଇ ଏକ ରାତି ।
ରଜନୀ ପ୍ରଭାତେ ରାଜା କରିଲା ଗମନ
ପ୍ରବେଶ ହୋଇଲା ଯାଇ ପ୍ରୟାଗ ତୀର୍ଥେଣ ।
ନନ୍ଦରାଜା ବସିଥିଲେ ଜପକରି ତହିଁ
ସେ ପୁଣି ଗ୍ରାମକୁ ଗଲା ସ୍ଥାନ ଛାଡ଼ିଦେଇ ।
ଯେବଣ ସ୍ଥାନରେ ନନ୍ଦ ତପେ ବସିଥିଲେ.
ଲୋକେ ଚଣ୍ଡାଳଙ୍କ ହସ୍ତେ ସେ ମାଟି ଖୋଳିଲେ
ଦେଖି ବୃହଦ୍ରଥ ନଗ୍ରଲୋକଙ୍କୁ ପୁଚ୍ଛଇ
ଏହି ସ୍ଥାନରେ ମାଟିକି ଖୋଳାଅ କିପାଇଁ ।
ନଗ୍ରଲୋକେ ବୋଇଲେ ନ ଜାଣୁ ତୁ କି ଏହା
ଏହିସ୍ଥାନେ ବସିଥିଲା ନନ୍ଦ ଗୋପ ନାହା ।
ଅପୁତ୍ରିକ ରାଜା ସେହି ପୁତ୍ର ତାର ନାହିଁ
ଅପୁତ୍ରିକ ରାଜା ହେଲେ ତା ମୁଖ ନ ଚାହିଁ ।
ରାଜା ହୋଇଣ ଯେବେଟି ହୁଏ ଅପୁତ୍ରିକ
ଇନ୍ଦ୍ର ଦେବତା ରାଜ୍ୟରେ ନ ବର୍ଷେ ଉଦକ ।
ବହୁତ ଫଳଦାୟନୀ ନୁହଇ ସେ ପୃଥ୍ୱୀ
ତାର ପ୍ରଜାମାନେ ସଦା ସୁଖେ ନ ରହନ୍ତି ।
ରାଜା ହୋଇ ଅପୁତ୍ରିକ ଯେବେ କି ହୁଅଇ
ଅଗ୍ନି ତାର ହବି ଶ୍ରଦ୍ଧା କରି ନ ଘେନଇ ।
ଅପୁତ୍ରିକ ହୁଅଇ ହେ ଯେଉଁ ଦେଶେ ରାଜା
ତପୀ ତହିଁ ନ ରହନ୍ତି ଦୁଃଖୀ ହୋନ୍ତି ପ୍ରଜା ।
ସେ ରାଜା ଯହିଁ ବସଇ ହସଇ ସେ ସ୍ଥାନ
ପୁଣି ଅପ୍ରତିଷ୍ଠା ହୁଏ ସେ ମୃତ୍ତିକା ଜାଣ ।
ତାଳେକ ଗଭୀର କରି ଖୋଳିବ ଚଣ୍ଡାଳ
ଆନ ମାଟି ପକାଇଣ କର ଯଜ୍ଞଶାଳ ।
ଶତଦିନ ଯାଏ ତହିଁ କଲେକ ଆହୁତି
ତେବେ ସେ ପ୍ରତିଷ୍ଠା ହେବ ସେହି ବସୁମତୀ ।
ଶୁଣି ବୃହଦ୍ରଥ ରାଜା ବିସ୍ମୟ ହୋଇଲେ
ନନ୍ଦଭୂପାଳ ସେବକଗଣ ତହିଁ ଥିଲେ ।
ବିଚାରିଲେ ଆମ୍ଭେ ସେବାକଲୁ ଯେତେଜନ
ଏହି ପାପରୁ ମୁକତି ପାଇବୁ କେସନ ।
ଏତେକ ବିଚାରି ଗଲେ ତହୁଁ ବେଗକରି
ତାହାର ରାଜ୍ୟେ ଭେଟିଲେ ନନ୍ଦ ଦଣ୍ଡଧାରୀ ।
ଅମ୍ଳ ଖାଇଲା ପରାୟେ କରିଣ ବଦନ
ରାଜାମୁଖ ନ ଚାହିଁ ହେଲେ ଦଣ୍ଡାୟମାନ ।
ରାଜା ବୋଲେ କିରେ ତୁମ୍ଭେ କାହିଁକି ଆସିଛ
ନ କହି ମୁଖକୁ ପୋତି କିପାଇଁ ରହିଛ ।
ହଡ଼ପିଆ ବୋଲେ ଦେବ କହିବାକୁ ଭୟ
କିଛି ଭୟ ନାହିଁ ବୋଲି ବୋଲେ ନନ୍ଦରାୟ ।

ତୁମ୍ଭେ ବସିଥିଲ ତପେ ଯେଉଁ ତୀର୍ଥସ୍ଥାନ
ତାଳେକ ଗଭୀର ମାଟି ଖୋଳାନ୍ତି ଯୋଜନ ।
ବୋଇଲେ ଅପୁତ୍ରି ରାଜା ଏଥେ ବସିଥିଲା
ତେଣୁକରି ଏହି ଭୂମି ପାତକୀ ହୋଇଲା ।
ଆନ ମାଟି ଭରି କରି କରିବେ ଆହୁତି
ତେବେ ସେ ପ୍ରତିଷ୍ଠା ହେବ ଏହି ବସୁମତୀ ।
ଶୁଣି ବିରସ ହୋଇଲେ ସେହି ନନ୍ଦରାୟ
ଧିକ ମୋ ଜୀବନ ଯେବେ ନାହିଁଟି ତନୟ ।
ପୁତ୍ର ଅଭାବେ ବଞ୍ଚନ୍ତି ଯେତେକ ପରାଣୀ
ବୃଥା ଜୀବନ ତାଙ୍କର ପୁରୁଷ ନ ଗଣି ।
ଏପରି ବିଚାରି ରାଜା ମଉନେ ରହିଲା
ଶୁଣ ମନୁ ଏ ଉତ୍ତାରୁ ଯେଉଁ କଥା ହେଲା ।
ଦୁଃଖେ ତହୁଁ ଚଳିଗଲା ମଗଧର ପତି
ବଦରିକାଶ୍ରମେ ଯାଇ ରଚିଲା ଆହୁତି ।
ଦ୍ୱିତୀୟ ଈଶ୍ୱର ସମ ସେ ଦୁର୍ବାସା ଋଷି
ତାଙ୍କୁ ଧ୍ୟାନ କରି ରାଜା ଯୋଗଲୟେ ବସି ।
ଛାଡ଼ି ସର୍ବ ମାୟାମୋହ କୁଟୁମ୍ବଙ୍କ ଆଶା
ସନ୍ତାନ ନିମନ୍ତେ ରାଜା ଭଜିଲା ଦୁର୍ବାସା ।
କାମ କ୍ରୋଧ ନିଦ୍ରା ଆଦି ସମସ୍ତ ବରଜି
ଐଭବ ମନ୍ତ୍ରେ ଅଜପା ଲୟେ ରାଜା ମଜି ।
ମହାମନ୍ତ୍ର ପାଠେ ରାଜା ହୋଇ ଉନମତ୍ତ
ଥୟ କରି ବସିଣ ସେ ଆତ୍ମା ପଞ୍ଚଭୂତ ।
ଏପରି ତପ କରନ୍ତେ ଦ୍ୱାଦଶ ବରଷ
ଦୁର୍ବାସା ମିଳିଲେ ଯାଇ ବୃହଦ୍ରଥ ପାଶ ।
ଦେଖିଲେ ଅଜ୍ଞାନେ ପଡ଼ିଅଛି ନରମଣି
ଉପରେ ସିଞ୍ଚିଲେ ଋଷି ଜୀବନ୍ୟାସ ପାଣି ।
ସାଷ୍ଟାମ ହୋଇଣ ରାଜା ଉଠି ଉଭାହେଲା
ବିନୟ ହୋଇଣ ତାଙ୍କୁ ବଚନ କହିଲା ।
କେବଣ ଦେଶର ତୁହୋ ଅଟ ମହାଋଷି
ଦୁଃଖେ ଅର୍ଜିଥିଲି ତପ ଦେଲୁ ତାକୁ ନାଶି ।
ଆହେ ମହାରାଜା ତୋର ଯହିଁକି ମନୀଷା
ମୁହିଁ ସେହି ମହାତମା ଅଟଇ ଦୁର୍ବାସା ।
ନିସ୍ତରିଲି ନିସ୍ତରିଲି ବୃହଦ୍ରଥ ବୋଲି
ଦୁର୍ଗତି ଦୁଃଖରୁ ଏବେ କାରଣ ପାଇଲି ।
ମୋତେ ଅନୁଗ୍ରହ କର ଆହେ ମୁନିଦେବେ
ଅଗତି ହୋଇଛି ମୁହିଁ ସନ୍ତାନ ଅଭାବେ ।
ସଂସାର ମଟରେ ମୁହିଁ ହେଲି ମହାକଷ୍ଟି
ପୁତ୍ର ଗୋଟି ଏକ ମୋତେ ଦେବା ତପୋନିଷ୍ଠି
ପଶ୍ଚିମ କୌଶଳର ମୁଁ ଅଟେ ଅଧିକାରୀ
ମହା ସମ୍ପଦ ମୋ ରାଜ୍ୟ ମଗଧ ନଗରୀ ।
ପୁତ୍ରର ଅଭାବେ ରାଜ୍ୟ ଏବେ ହେଲା ନଷ୍ଟ
ବୁଡ଼ିଲା ବଂଶ ମୋହର ହେଲା ବଡ଼ କଷ୍ଟ ।
ଦୁର୍ବାସା ବୋଇଲେ ଶୁଣ ବୃହଦ୍ରଥ ରାୟେ
ଏ ହରଉଦ୍ୟାନେ ଲୋଡ଼ା ଫଳରୁ ଗୋଟିଏ ।
ଯେଉଁ ଫଳ ପାଉ ଘେନି ଆସ ହେ ନୃପତି
ମନଦୁଃଖ ଯିବ ତୋର ପାଇବୁ ସନ୍ତତି ।
ଗମଇ ଯେ ବୃହଦ୍ରଥ ଋଷିଙ୍କ ବଚନେ
ପ୍ରବେଶ ହୋଇଲା ଯାଇ ହରଙ୍କ ଉଦ୍ୟାନେ ।
ବୁଲି ବୁଲି ମହାରାଜା ବହୁଦୂର ଗଲା
ଚୂତଫଳ ଗୋଟିଏକ ନୃପତି ପାଇଲା ।
ସେହି ଦୁର୍ବାସାଙ୍କ କରେ ଦେଲା ତାହା ଆଣି
ତାହାକୁ ଧରି ଦୁର୍ବାସା ବୋଇଲେ ଏ ବାଣୀ ।
ଏହି ଫଳ ଗୋଟିକ ତୁ ଯତନରେ ନିଅ
ତୋର ପ୍ରିୟରାଣୀ ଯେହୁ ତାହାକୁ ଖୁଆଅ ।
ଦୁର୍ବାସାଙ୍କ ବାକ୍ୟେ ଚଳେ ମଗଧନୃମଣି
ସୁମତୀ ଯେ ଚାରୁମତୀ ତାର ବେନିରାଣୀ ।
ସୁମତୀ ରାଣୀକି ରାଜା ଏକାନ୍ତେ ଡାକିଣ
ଚୂତ ଫଳ ଗୋଟି ଦେଲା ତାହାର କରେଣ ।
ଶଉଚ ହୋଇ ସୁନ୍ଦରୀ ଏହାକୁ ତୁ ଭକ୍ଷ
ଦୁର୍ବାସା ବାକ୍ୟରେ ପୁତ୍ର ହୋଇବ ପ୍ରତ୍ୟକ୍ଷ ।
ଚାରୁମତୀ ସୁମତୀର ପାଶରେ ମିଳିଲା
ଫଳ ଦେଇ ରାଜା ନିଜ ଆସ୍ଥାନେ ଚଳିଲା ।
ଦେଖିଣ ବିଚାର କଲେ ସୁମତୀ ସୁନ୍ଦରୀ
ନ ଦେଇ ଖାଇଲେ ଯାର ଦୁଃଖ ହେବ ଭାରି ।
ଚୂତଫଳ ଗୋଟି ବେନିଫାଳକରି କାଟି
ଦୁଇ ସପତଣୀ ତାହା ଭୁଞ୍ଜିଲେ ଯେ ବାଣ୍ଟି ।
ଋଷିଙ୍କର ବାକ୍ୟ କେଭେ ନୋହିଲାକ ଆନ
ଏକାବେଳେ ଗର୍ଭବାସ ହେଲେ ଦୁଇଜଣ ।
ଏକସଙ୍ଗେ ହୋଇବାରୁ ଦୁହେଁ ଗର୍ଭବତୀ
ଦେଖିଣ ପରମାନନ୍ଦ ହୋଇଲେ ନୃପତି ।
ନଗ୍ରେ ବହୁତ ଉତ୍ସବ କଲା ନରସାଇଁ
ନବମାସ ଶେଷେ ଦଶମାସ ପ୍ରବେଶଇ ।
ତୁଳମାସ କୃଷ୍ଣପକ୍ଷ ଚୌଠି ସୌରିବାର
ଆର୍ଦ୍ରାନକ୍ଷତ୍ର କରଇ ଭୋଗ ସେ ଦିନର ।
ବିଷ୍ଟି ନାମରେ କରଣ ଧ୍ରୁବନାମେ ଯୋଗ
ତୁଳ ସଂକରାନ୍ତିକି ଯେ ପାଞ୍ଚଦିନ ଭୋଗ ।
ରାତ୍ର ପାଞ୍ଚ ଘଡ଼ିଠାରେ ସେ ଯୁବତୀ ବେନି
ଏକାବେଳେ ପ୍ରସବିଲେ ଦୁଇ ପାଟରାଣୀ ।
ପ୍ରସବ କରିଲେ ତହିଁ ସେ ବେନି ଯୁବତୀ
ଅର୍ଦ୍ଧ ଅର୍ଦ୍ଧ ଅଙ୍ଗ ହୋଇ ପୁତ୍ର ଉତପତ୍ତି ।

ଶିର ଅଧେ ଚକ୍ଷୁ ଅଧେ ନାକପୁଡ଼ା ଏକ
ଭୁଜ ବକ୍ଷସ୍ଥଳ ଅର୍ଦ୍ଧପାଦ ଏକ ଏକ ।
ଏକଶିର ମଧ୍ୟ ହୋଇଥିଲା ବେନିଖଣ୍ଡ
ଜନ୍ମିଲା ସେ ପୁତ୍ର ହୋଇ ଅର୍ଦ୍ଧ ଅର୍ଦ୍ଧ ଖଣ୍ଡ ।
ରାଜା ଆଗେ ପଡ଼ିଆରୀ ଯାଇ ଜଣାଇଲା
ଭୋ ଦେବ ତୁମ୍ଭର ବେନିପୁତ୍ର ଜନମିଲା ।
ଶୁଣି ବହୁ ଧନ ଦାନ ଦେଲା ମହାରାଜ
ହାଟବାଟ କୂରହେଲା ମଗଧର ରାଜ୍ୟ ।
ଦୁର୍ବାସା ଋଷି ଅଟନ୍ତି ସିଦ୍ଧ ତପୋନିଷ୍ଠ
ତାହାଙ୍କ ଦର୍ଶନେ ଗଲା ମୋର ପୁତ୍ର କଷ୍ଟ ।
ଏମନ୍ତ ସମୟେ ଗଲା ମୁଦୁସୁଲୀ ତହିଁ
ରାଜା ଆଗରେ ସମ୍ବାଦ କହିଲା ସେ ଯାଇଁ ।
ଦେବ ସୁନ୍ଦର କୁମର ଅଟଇ ସୁସଞ୍ଚ
ଅର୍ଦ୍ଧ ଅର୍ଦ୍ଧକାୟ ହୋଇ ଜନ୍ମିଲା ପ୍ରପଞ୍ଚ ।
ମୁଦୁସୁଲୀର ବଚନ ଶୁଣି ନୃପମଣି
ବିଷାଦିତ ବୃହଦ୍ରଥ ଅମଙ୍ଗଳ ବାଣୀ ।
କଟୁଆଳ ରାଇ ଆଜ୍ଞା ଦେଲାକ ନୃପତି
ଶ୍ମଶାନଭୂମିକି ନେଇ ପକାଅ ଦୁହିଁଙ୍କି ।
ଡାଆଣୀ ରାକ୍ଷସୀ ତାକୁ ଭକ୍ଷନ୍ତୁ ନେଇଣ
ଦୁର୍ବାସାଙ୍କ ଆଜ୍ଞା ଏବେ ହେଲା ଅକାରଣ ।
ରାଜା ବାକ୍ୟ ଶୁଣି କଟୁଆଳ ଚଳିଗଲା
ଅନ୍ତଃପୁରୁ ବେନି ଅର୍ଦ୍ଧ ପୁତ୍ରଙ୍କୁ ଆଣିଲା ।
ବେନି ଖଣ୍ଡ ଶ୍ମଶାନରେ ପକାଇଣ ଦେଲା
ପୁନଶ୍ଚ ଆସି ରାଜାଙ୍କୁ ବାରତା କହିଲା ।
ଅର୍ଦ୍ଧରାତ୍ରେ ଶମଶାନେ ସେ ଜରାରାକ୍ଷସୀ
ଖାଇବା ପାଇଁ ଧାଇଁଲା ଦୁହିଁଙ୍କି ଆକର୍ଷି ।
ମହା ବିଶ୍ୱରୂପ ସେହି ଶ୍ମଶାନ ବାସିନୀ
ଦୁହିଁଙ୍କି ଗିଳିଲା ଯେହ୍ନେ ପିଇଦ୍ୟନ୍ତି ପାଣି ।
ପୁଚ୍ଛାକଲେ ବୈବସ୍ୱତ ମନୁ ଅଗସ୍ତିଙ୍କି
ବେନିଫାଳେ ଉତପତ୍ତି ହୋଇଲା କାହିଁକି ।
ଅଗସ୍ତି ବୋଇଲେ ଶୁଣ ଆମ୍ବ ଏକଗୋଟି
ନ ଜାଣି ସୁମତୀ ତାକୁ ବେନିଖଣ୍ଡ କାଟି ।
ଦୁଇରାଣୀ ଦୁଇଭାଗ କରନ୍ତେ କବଳ
ତେଣୁ କରି ଅର୍ଦ୍ଧ ଖଣ୍ଡ ଉପୁଜିଲା ବାଳ ।
ଆମ୍ବଟା ଯାକ ସୁମତୀ ଯେବେ ଖାଇଥାନ୍ତା
ମହାବଳବନ୍ତ ହୋଇ ପୁତ୍ର ଜନ୍ମିଥାନ୍ତା ।
ପୁଣି ବୈବସ୍ୱତମନୁ ମୁନିଙ୍କି ପୁଚ୍ଛିଲେ
ଅସୁରୀ ଗର୍ଭେ ଉଭୟ ପିଲା କି କରିଲେ ।
ଏହା ବିସ୍ତାର କରିଣ କହ ମହାଶୟ
ମୋହ ମନରୁ ଛେଦନ କରନ୍ତୁ ସଂଶୟ ।

ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ସେ ବେନିଖଣ୍ଡ ପଶିଲେ ଅସୁରୀ ଗର୍ଭର ।
ଗର୍ଭର ଭିତରେ ଦୁହେଁ ହୋଇଗଲେ ଯୋଡ଼ି
ଏକକାୟ ହୋଇ ତହିଁ ମଧ୍ୟେ ପଥ ଲୋଡ଼ି ।
ରାକ୍ଷସୀ ଗର୍ଭେ ପଶିଣ ବଳବନ୍ତ ହେଲା
ତାହାର ଜଠରାନଳେ ବିନାଶ ନୋହିଲା ।
ଗର୍ଭର ଭିତରେ ଥାଇ ମୁଥେକ ସେ ମାରି
ବାହାର ହୋଇଲା ତାର ପଞ୍ଜରା ବିଦାରି ।
ପୁତ୍ର ବାହାର ହୋଇଲା ଅସୁରୀ ମରିଲା
ରୋଦନ କରନ୍ତେ ପୁତ୍ର ପୃଥିବୀ କମ୍ପିଲା ।
ଅନ୍ଧକାର ଯାଇଁ ଯହୁଁ ହୋଇଲା ପାହାନ୍ତି
ବିଜୟ ସେ ବୃହଦ୍ରଥ ବାହାର ଜଗତୀ ।
ଶୁଭିଲା ସେ କୁମାରର ମହାନନ୍ଦ ବାଣୀ
କଟୁଆଳ ରାଇ ଆଜ୍ଞା ଦେଲେ ନୃପମଣି ।
ଆରେ କଟୁଆଳ ତୁହି ଶ୍ମଶାନ ଭୂମିକି
ଯାଇ କେ ଶିଶୁ କାନ୍ଦୁଛି ଶୀଘ୍ର ଆସ ଦେଖି ।
କଟୁଆଳ ପରବେଶ ଶମଶାନ ଭୂମି
ଦେଖି ରାଜାଙ୍କୁ ଆନନ୍ଦେ କହିଲା ହେ ସ୍ୱାମୀ
ଯେଉଁ ଶିଶୁ ଜନ୍ମିଥିଲା ବେନିଭାଗ ହୋଇ
ସେ କାନ୍ଦେ ପାଶେ ରାକ୍ଷସୀ ଅଛଇ ଯେ ଶୋଇ
ଶୁଣି ବୃହଦ୍ରଥ ରାଜା ବିଜୟ ଆପଣ
କୁମର ରୋଦନ୍ତେ ତହିଁ କମ୍ପିଲା ପାଷାଣ ।
କୋଳେ ଧଇଲା ତାହାକୁ ମଗଧର ସାଇଁ
ଜରାକୁ ମାରିଣ ପୁତ୍ର ରୋଦନ କରଇ ।
ଅନେକ ସାନନ୍ଦ ହେଲା ମଗଧ ଭୂପାଳ
ଜରାସନ୍ଧ ନାମ ଦେଲା ସେହି କୁମରର ।
ଘେନିଣ ନିଜ ପୁରକୁ ନୃପତି ଚଳିଲା
ଅତି ଯତନ କରିଣ ତାହାକୁ ପାଳିଲା ।
ତେଣୁ ମହାବଳବନ୍ତ ସେହି ବୀରମଣି
ଏସନକ ଭେଦ ତାର କେହି ଯେ ନ ଜାଣି ।
ଈଶ୍ୱର ଜାଣନ୍ତି ତାର ଜନ୍ମକାଳ କଥା
ଶ୍ମଶାନବାସୀ ଅଟନ୍ତି ଯେଣୁ ସେ ଦେବତା ।
ଶ୍ମଶାନ ବାରତା ଯାହା ସବୁ ସେ ଜାଣନ୍ତି
ତେଣୁ ଭୀମକୁ କହିଲେ ଦେବ ପଶୁପତି ।
ଆନମତରେ ବଧ ଯେ ନୋହିଥାନ୍ତା ଜରା
ଚିରିଣ ତାହାକୁ ନାଶକଲା ଭୀମବୀରା ।
ଅଗସ୍ତି ବୋଇଲେ ଶୁଣ ମନୁ ନୃପରାଣ
ଜରାର ପୂର୍ବ ବିଷୟ ଏହିପରି ଜାଣ ।
ଜରାର ବିଷୟେ ରାଜା କହିଲୁ ତୁମ୍ଭଙ୍କୁ
ଆଉ କି ସଂଶୟ ଥିଲେ ପଚାର ଆମ୍ଭଙ୍କୁ ।

ଏସନକ ଭେଦ ତାର ଜାଣି ଥିଲେ ହରି
ତେଣୁ କୂଟେ ମରାଇଲେ ତାକୁ ମଧୁହାରୀ ।
ବଦନ୍ତି ମହାତ୍ମା ଘଟରକ୍ଷିଙ୍କର ସୂନୁ
ତୁହି ଯାହା ପୁଚ୍ଛାକଲୁ ବୈବସ୍ୱତ ମନୁ ।
ପାଣ୍ଡବ ସୁନ୍ଦର ଅଟେ ଭୀମ ପରଚଣ୍ଡ
ଜରାକୁ ଚିରି ପକାଇ କଲା ବେନିଖଣ୍ଡ ।
ଏହିପରି ଯେତେବେଳେ ଜରାସନ୍ଧ କଥା
ବିସ୍ତାରି କହିଲେ ସବୁ ମୁନି ବ୍ରହ୍ମବେତ୍ତା ।
ସକଳ ବିଷୟ ତହିଁ କହିଲେ ଶ୍ରୀହରି
ବଡ଼ ଦୁଷ୍ଟ ଜରାସନ୍ଧ ଅଇଲୁ ଯେ ମାରି ।
ଶୁଣିଣ ସାନନ୍ଦ ହେଲା ରାଜା ଧୃତରାଷ୍ଟ୍ର
ଧନ୍ୟ ହରି ବିନାଶିଲୁ ରାଜାଗଣ କଷ୍ଟ ।
ଆହୁରି କଥାଏ ଶୁଣି ହୋଇଲି ସ୍ତବ୍ଧ
ତୁମ୍ଭମାନଙ୍କୁ ନାଶିଲା ବୋଲି ଜରାସନ୍ଧ ।
ବିଷାଦ ହୋଇଲି ଶୁଣି ଦୁର୍ବାର ବଚନ
ବହୁତ ଅଖ୍ୟାତି ତୋତେ ଦେଲେ ମୂର୍ଖଜନ ।
ସର୍ବଭୂତେ ହରି କହି ହେଉ ପରକାଶ
କୃପାସାଗର ତୋ ବିନା ନାହିଁ ପୀତବାସ ।
ଶ୍ରୀହରି ବୋଇଲେ ତାତ ଜାଣେ ମୁଁ ସମସ୍ତ
ଶକୁନିର ଏ ଭିଆଣ କରେ ସର୍ବ କୃତ୍ୟ ।
ତୁ ଗାନ୍ଧାରୀ ଜାଣୁ ନା ଏ କୁଳକ୍ଷୟ ମନ୍ତ୍ରୀ
ତାହା ଯୋଗୁ ନାଶ ଯିବ ତୋହର ସମ୍ପତ୍ତି ।
ତୋ ପୋଏ ବଳ ବୁଦ୍ଧିରେ ହେଲେ ଅବା ଦୁଷ୍ଟ
ତାହାଙ୍କୁ ଶାସନ ତୁହି କର ଧୃତରାଷ୍ଟ୍ର ।
ଅନେକ କଥା କହିଣ ପ୍ରଜାଙ୍କୁ ତିଆରି
ଦେଖ ପାଣ୍ଡବ ବିଜୟୀ ହେଲେଣି ତ୍ରିପୁରୀ ।
ଧୃତରାଷ୍ଟ୍ର ବୋଲେ ତୁହି ପୁରୁଷ ଉତ୍ତମା
ଦୁଷ୍ଟଙ୍କର ଦୋଷ ନାଥ ତୁହି କର କ୍ଷମା ।
ଅନେକ ଦୋଷ ତୋଠାରେ କଲା ସେହି ଜରା
ଉପାୟେ ନାଶିଲୁ ଦେବ ଦୁଷ୍ଟ ମହାବୀରା ।
ବହୁ ବିନୟେ କହନ୍ତେ ତାଙ୍କୁ କୁରୁସାଇଁ
ସାନନ୍ଦେ ଚଳିଲେ ତହୁଁ ଜଗତ ଗୋସାଇଁ ।
ପ୍ରବେଶ ହୋଇଲେ ଯାଇ ଧର୍ମରାୟ ପାଶ
ବିନୟ ଭାବେ ବୋଇଲେ ପ୍ରଭୁ ପୀତବାସ ।
ମୁହିଁ ଯାଉଅଛି ସ୍ୱାମୀ ଦ୍ୱାରକା ପୁରକୁ
ଶୁଭବାର୍ତ୍ତା ଜଣାଇବି ଶ୍ରୀବଳଦେବଙ୍କୁ ।
ଯେଉଁରୂପେ ମଲା ଜରା କହିବି ସେ କଥା
ତାହା ଯୋଗୁଁ ପାଇଅଛୁ ଅନେକ ଅବସ୍ଥା ।
ଧନୁ ଉତ୍ସବ ବୋଲିଣ ଯାତ୍ରା କଲା କଂସ
ନନ୍ଦକୁ ଶ୍ରୀମୁଖ ଦେଇ ନେଲାକ ଗୋରସ ।
ଗୋପାଳଙ୍କ ତୁଲେ ଗଲୁ ଆମ୍ଭେ ବେନିଭ୍ରାତ
ଧନୁ ଉତ୍ସବ ଯାତ୍ରାକୁ ଦେଖିବା ନିମିତ୍ତ ।
ଅନେକ ରଙ୍ଗ ରହସ୍ୟ ଯାତ୍ରାଦି ବିଧାନ
ରଙ୍ଗେ ବିହରିଲୁ ତହିଁ ଗୋପପୁତ୍ରଗଣ ।
ଆମ୍ଭଙ୍କୁ ଦେଖିଣ ଦେବ କଂସ ନାଶଗଲା
କିଞ୍ଚିତ ମାତ୍ରକେ ତାର ଅଷ୍ଟମଲ୍ଲ ମଲା ।
ତହିଁ ଗୋପାଳମାନେ ଯେ ନିରିଭୟ ହୋଇ
ବହୁ ଧନ ରତ୍ନମାନ ଆଣିଲେ ସେ ବହି ।
କଂସର ଭାରିଯା ନାମେ ହେତୀ ପରହେତୀ
ତାହାଙ୍କର ପିଅର ସେ ମଗଧ ନୃପତି ।
ବିଧବା ହୋଇଣ କଲେ ପିତାଙ୍କୁ ଗୁହାରି
ଶୁଣି ଗୋପପୁର ଜରା ଦେଲା ନାଶକରି ।
ପାଠପଢ଼ି ଯାଇଥିଲୁ ଅବନ୍ତୀ ନଗରେ
ଗୋପପୁର ଲୋକମାନେ ପଳାଇଲେ ଡରେ
ଜରାସନ୍ଧ ଭୟେ ତହୁଁ ଗଲୁ ଅପସରି
ବହୁତର ଗୋଧନ ସେ ନେଲା ନିଜପୁରୀ ।
ପ୍ରଥମ ଧାଡ଼ିରେ ଦେବ ଛାଡ଼ିଲୁ ଗୋପକୁ
ଯମୁନାକୁ ପାର ହୋଇ ଗଲୁ ମଥୁରାକୁ ।
ପୁନରପି ମଥୁରାକୁ ସେହି ଦେଲା ଧାଡ଼ି
ପଳାଇଲୁ ଦୁଇଭାଇ କୁଟୁମ୍ବକୁ ଛାଡ଼ି ।
ମଥୁରାକୁ ବେଢ଼ିଲା ସେ ଘେନି ବହୁବଳ
ରାଜ୍ୟ ଛାଡ଼ି ପଳାଇଲେ ସକଳ ଗୋପାଳ ।
ମଥୁରା ଦେଶକୁ ଭାଙ୍ଗି କଲା ଛାରଖାର
ଧନାଗାର କୂରକରି ପୋଡ଼ିଲା ନଗର ।
ପଳାଇ ପଶିଲୁ ଦେବ ଅନୁନରବନେ
ସମୟେକ ବର୍ତ୍ତିଲୁ ଯେ ତହିଁ ସର୍ବଜନେ ।
ପୁଣି ସେହିଠାରୁ ଗଲା ମଗଧର ରାଣ
ଅନୁକ୍ଷଣେ ଲୋଡୁଥାଏ ଆମ୍ଭ ଦୁଇଜଣ ।
ବନ୍ଧୁବର୍ଗ ଘେନି ତହୁଁ ପଳାଇଲୁ ଛାଡ଼ି
ଅନୁକ୍ଷଣେ ବନକୁ ସେ ପକାଇଲା ପୋଡ଼ି ।
ଗୋମନ୍ତକ ପର୍ବତରେ ବଞ୍ଚିଲୁ ସମୟେ
ତହିଁକି ଧାଡ଼ି ଦେଲା ସେ ଚୌଦ ବର୍ଷଯାଏ ।
ତହିଁ ଅପସରି ଗଲୁ ଆମ୍ଭେ ସର୍ବ ଜନ
ସମୟେକ ବିଶ୍ରାମିଲୁ ଯାଇ ମଧୁବନ ।
ଯଦୁରକ୍ଷିଙ୍କର ସେହି ଅରଜିଲା ଭୂମି
ତହିଁ ସମୟେ ବଞ୍ଚିଲୁ ଆହେ ଦେବସ୍ୱାମୀ ।
ସୈନ୍ୟସାଜି ଆସେ କାଳଯବନକୁ ଘେନି
ତହୁଁ ଚାଲିଗଲୁ ଆମ୍ଭେ ବନ୍ଧୁବର୍ଗ ଘେନି ।
ସମୁଦ୍ରେ ରହିଲୁ ପୁର ତା ନାମ ଦ୍ୱାରକା
ସେଠାରେ ରହିଲୁ ସର୍ବେ ହୋଇଣ ନିଃଶଙ୍କା ।

ଜରାସନ୍ଧ ଭୟେ ଦେବ ଯଦୁ ବୀରମାନେ
କେହି ବାହାର ନୋହିଲେ ସେ ମଧୁ ଭୁବନେ
ତୋହର ପ୍ରସନ୍ନେ ନାଶଗଲା ଏଡ଼େ ରିପୁ
ଏବେ ସେ ଯଦୁ କୁଳଙ୍କ ବିକାଶିବ ବପୁ ।
ଅନେକ ସାନନ୍ଦ ହେଲେ ଶୁଣି ବଳଦେବ
ଦ୍ୱାରକାପୁରେ ହୋଇବ ବହୁତ ଉତ୍ସବ ।
ଏହା ଶୁଣି ଯୁଧିଷ୍ଠିର ତାଙ୍କୁ ଆଜ୍ଞା ଦେଲେ
ଏବେ ହରି ଦ୍ୱାରକାକୁ ଯାଅ ହେ ବୋଇଲେ
କୁମ୍ଭ ଶୁକ୍ଳ ପ୍ରତିପଦେ ଜରା ନାଶଗଲା
ଶୁକ୍ଳପକ୍ଷ ହସ୍ତିନାରେ ଉତ୍ସବ ହୋଇଲା ।
ଫାଲ୍‌ଗୁନ ଶୁକ୍ଳ ଅଷ୍ଟମୀ ଆଉ ଗୁରୁବାର
ମୃଗଶିରା ଋକ୍ଷ ବେଳେ ଅଢ଼ାଇ ପହର ।
ଏ ସମୟେ ସୁମରନ୍ତେ ହରି ଗରୁଡ଼କୁ
ସେହିକ୍ଷଣି ଅଇଲା ସେ ତାହାଙ୍କ ପାଶକୁ ।
ଭୀମାର୍ଜ୍ଜୁନଙ୍କୁ ସମାର୍ଜି ଦେବ ବନମାଳୀ
ଗରୁଡ଼ ପୃଷ୍ଠରେ ବସି ତହୁଁ ଗଲେ ଚଳି ।
ଜୟ ତୁହି ଜଗଦମ୍ବେ ବିପଦ ନାଶିନୀ
ଶାରଳା ଦାସକୁ ଗତି ଦିଅ ଗୋ ଭବାନୀ ।



## ଶ୍ରୀକୃଷ୍ଣଙ୍କ ଦ୍ୱାରକାଗମନ, ପଥମଧ୍ୟେ ଯଜ୍ଞୋପକରଣମାନ ସଂଗ୍ରହ, ବଳଦେବଙ୍କ ସହିତ ସାକ୍ଷାତ ଓ ଦ୍ୱାରକାରେ ମହୋତ୍ସବ

ମୁନି କହିଲେ ରାଜନ କର ଅବଧାନ
ଗରୁଡ଼ ଆରୋହି ବିଜେ କଲେ ଭଗବାନ ।
ଦ୍ୱାରକାର ଅଭିମୁଖେ ଗମନ କରନ୍ତେ
କିରାତର ରାଜ୍ୟ ପଥେ ଦେଖିଲେକ ନେତ୍ରେ ।
କିରାତ ରାଜାକୁ ବେଗେ ହକାରି ଶ୍ରୀପତି
ଆପଣେ ଶ୍ରୀହସ୍ତେ ତାକୁ ଶାଢ଼ୀ ଯେ ଦିଅନ୍ତି
ଆହେ ତୁମ୍ଭେ ଏଥେ ଅଛ ଯେତେ ବୀରମାନେ
ସମସ୍ତେ ହେ ଶୁଣ ଆମ୍ଭ ବାକ୍ୟ ସାବଧାନେ ।
ବହୁକାଳ ପୁରାତନ ଶୁଷ୍କ ବୃକ୍ଷମାନ
ଏ ବନରେ ଯେତେ ଅଛି କର ଆହରଣ ।
ଜୀବଥିବା ବୃକ୍ଷମାନ କେଭେ ନ କାଟିବ
ଜୀବନାଶ ତରୁ ରୁଣ୍ଡ କର ଏକଠାବ ।
ଯୁଧିଷ୍ଠି ଦେବ କରିବେ ରାଜସୂୟ ସଭା
ଗଜ ଅଶ୍ୱ ଉଷ୍ଟ୍ର ଶାଳମାନ ତୋଳାଇବା ।
ତେର ଲକ୍ଷ ଯେ ତେଷଠି ସସ୍ତ୍ର ଥିଲେ ବୀର
ସବୁଙ୍କର କଣ୍ଠେ ହରି ଦେଲେ ରତ୍ନହାର ।
ଦେବାଙ୍ଗ ବସ୍ତ୍ର ଆଣିଣ ଦେଲେକ ବହୁତ
ପାଇକରି ସର୍ବ ବୀର ହୋଇଲେ ଉନ୍ମତ ।
ଝିମିଶାଳ ମହାରଣା ଯେତେ ଯହିଁ ଥିଲେ
ସେମାନଙ୍କୁ ଡାକି କରି ନିଜେ ଶାଢ଼ୀ ଦେଲେ ।
ବୋଇଲେ କୋଦାଳ କାଙ୍କ ଶାବଳ କୁଠାର
ତୁମ୍ଭେମାନେ ଏହା ସବୁ ନିରିମାଣ କର ।
ବିନ୍ଧାଣି ଡାକି କହିଲେ କର କମ କାଠ
ତୁମ୍ଭେମାନେ ବାରୁଣାକୁ ଯାଇ ସଦା ଖଟ ।
ତୁମ୍ଭେମାନେ ଅଶୀଲକ୍ଷ ନାବ ଦେବ ଗଢ଼ି
ଉଡନ୍ତା ନାବ ହୋଇବ ପବନହୁଁ ବଢ଼ି ।
ଚାଉଳ ଗହମ ମୁଗ ପରିବାଦିମାନ
ସବୁବେଳେ ଆସୁଥିବ ନାବ ପୂର୍ଣ୍ଣ ପୂର୍ଣ୍ଣ ।
ମେଢ ମଣ୍ଡପ ଜଗତୀ ଅଟାଳୀ ଯେ ପୁରୀ
ଏହା ସର୍ଜନା କରିବ ଭାଗକୁ ବିଚାରି ।
ବିଶ୍ୱକର୍ମା କୁଳେ ଯେତେ କରନ୍ତି ବିନ୍ଧାଣି
ଦଶଲକ୍ଷ କରତିଆ ଭେଟାଇବ ଆଣି ।
ଏହି ଆଜ୍ଞଦେଇ ତାଙ୍କୁ ଦେବ ଜଗନ୍ନାଥ
କନ୍ଧରାଜାଙ୍କୁ ଭେଟିଲେ ଯାଇଁ ଯମପ୍ରସ୍ଥ ।
ସୁବଳ ନାମ ଅଟଇ ସେହି ନୃପତିର
ତାହାକୁ ଯେ ଶାଢ଼ୀଦେଲେ ଆପଣେ ଶ୍ରୀଧର
ତାଡ଼ ସରଳ ବାହୁଟି ଝୁମ୍ପା ଜଗଦ୍‌ବଳା
ହୃଦେ ହାର ସୀମନ୍ତିନୀ ଆଉ ବନମାଳା ।
ଯୁଧିଷ୍ଠି ଦେବ କରିବେ ରାଜସୂୟ ସଭା
ଋଷିଗଣ ଆସିବେ ଯେ ଆଉ ସର୍ବ ଦେବା
ବେନିଲକ୍ଷ ଦେବ ତୁମ୍ଭେ କୃଷ୍ଣମୃଗ ଛୋରୀ
ହରିଣ ଗଣ୍ଡାମାନଙ୍କୁ ରଖିଥିବ ଧରି ।
ହରିଣ ମାଂସ ଭୋଜନ କରିବେକ ଋଷି
ବନ ବରାହ ତାହାଙ୍କୁ ଦେବ ମନ ତୋଷି ।
ଏହା ଯେତେ ଲାଗେ ଷୋଳଦିନ ପରିଯନ୍ତେ
ତିନିକ୍ଷୌଣୀ ବଳ ପେଷି ଯେ ବାରୁଣାବନ୍ତେ
କନ୍ଧ ନରପତି ଶୁଣି ପରମ ହରଷେ
ସନମତ କଲା ସେହି ଶ୍ରୀକୃଷ୍ଣଙ୍କ ପାଶେ ।
ଏହିପରି ଆଜ୍ଞାଦେଇ ପ୍ରଭୁ ଦେବରାଜେ
ଗରୁଡ଼ ପିଠିରେ ଯାଇ କରିଲେକ ବିଜେ ।
ମହ୍ଲାର ଦେଶର ରାଜା ନାମ ରଢ଼ପତି
ମହ୍ଲାର ଦେଶର ସେହୁ ଅଟେ ଚକ୍ରବର୍ତ୍ତୀ ।
ଜାହ୍ନବୀ ନଦୀର ତୀରେ ଅଟେ ତାର ବାସ
ତାହାର ପଲ୍ଲୀରେ ଯାଇ ହୋଇଲେ ପ୍ରବେଶ
ହରିଙ୍କୁ ଦେଖିଣ ସେହି ମହ୍ଲାରର ରାଜା
ତାହାଙ୍କର ପଦ୍ମପାଦେ କଲା ଦିବ୍ୟପୂଜା ।

ବାଟର ତଳକୁ ନେଇ ବସାଇଲା ତାକୁ
ଶ୍ରୀହସ୍ତରେ ଶାଢ଼ୀଦେଲେ ମହ୍ଲାର ରାଜାକୁ
ବାହୁଟି କଙ୍କଣ ଦେଲେ ଶିରେ ସୀମନ୍ତିନୀ
ତାହାର ଗଳାରେ ହାର ଲମ୍ୱାଇଲେ ଆଣି
ଆହେ ଯୁଧିଷ୍ଠି କରିବେ ରାଜସୂୟ ଯାଗ
ଲକ୍ଷେ ନୃପତି ସେଠାରେ ହେଲେ ଏକଯୋଗ
ଏ ମଧୁବନ ରାଜ୍ୟରେ ପୂର୍ବେ ଆମ୍ଭେ ଥିଲୁ
କାଳଯବନ ଭୟରେ ଛାଡ଼ି ପଳାଇଲୁ ।
ମଧୁବନ ପୂର୍ବୁ ତାହା ହୋଇଥିଲା ସଞ୍ଚି
ତ୍ରେତୟା ଯୁଗର ଏଥେ ତଣ୍ଡୁଳ ଯେ ଅଛି ।
ସୁବର୍ଣ୍ଣର ନିର୍ମିତରେ ଶତ ଶତ କୋଠି
ତଣ୍ଡୁଳରେ ପୂରିଅଛି ଘର ଶତଗୋଟି ।
ଏହି ତଣ୍ଡୁଳମାନ ତୁ ନାବରେ ପୂରାଇ
ହେଳା ନ କରି ଏହାକୁ ଦେବୁ ପଠିଆଇ ।
କାତ କେରୁଆଳ ଆଉ ନାବମାନ ସବୁ
ଯତ୍ନକରି ଏହା ତୁହି ନିର୍ବନ୍ଧ କରିବୁ ।
ଚୌରାଶୀ ଯୋଜନ ଅଟେ ଏହି ମଧୁବନ
ଏ ବୃକ୍ଷମାନଙ୍କ ଫଳ ଅମୃତ ସମାନ ।
ପଇଡ଼ କଦଳୀ ଆମ୍ର ଆଉ ନଡିକାଳ
ଆବର ପଣସ ଟଭା ନାନା ସ୍ୱାଦୁ ଫଳ ।
ଏହା ସବୁ ଠୁଳକରି ପୂରାଇଣ ନାବେ
ବାରୁଣାବନ୍ତକୁ ନେବୁ ତୁ ମହାସମ୍ଭର୍ବେ ।
ମଧୁବନେ ତୋଟାଳିଆ ଛନ୍ତି ପାଞ୍ଚଖର୍ବ
ତୋହର ଗୋଚରେ ନାବେ ଖଟିଥିବେ ସର୍ବ
ଏସନକ ଆଜ୍ଞା ତାକୁ ଦେଇଣ ଶ୍ରୀହରି
ତହୁଁ ଖଗପୃଷ୍ଠେ ବସିଗଲେ ବେଗକରି ।
ମନୋହର ବନ ରାଜା ଭୁବନ ଈଶ୍ୱର
ତାର ବନେ ଅଛି ବୃକ୍ଷ ଚନ୍ଦନ ଅଗୁର ।
ବହୁ ରତ୍ନ ଅଳଙ୍କାରମାନ ତାଙ୍କୁ ଦେଇ
କହିଲେ ତାକୁ ବୁଝାଇ ପାଶରେ ବସାଇ ।
ଯୁଧିଷ୍ଠିଦେବ କରିବେ ରାଜସୂୟ ସଭା
ଲକ୍ଷେରାଜା ଯିବେ ଆଉ ଯିବେ ସର୍ବଦେବା ।
ଅଗୁରୁ ଚନ୍ଦନ ବୃକ୍ଷ ସକଳ ତୁ କାଟ
ଗଙ୍ଗାକୂଳକୁ ନେଇଣ କରିବୁ ପଇଠ ।
ଲକ୍ଷେ ରାଜାଙ୍କ ପାଇଁକି ଲକ୍ଷେକ ନବର
ଖମ୍ୱରୁଅ ଶେଣୀ ସବୁ ହେବ ଚନ୍ଦନର ।
ପାତ୍ରମନ୍ତ୍ରୀ ଗୃହ ସୈନ୍ୟାଗାର ଆଦିକରି
ଅଗୁରୁ ଚନ୍ଦନେ ଏହା ହୋଇବ ତିଆରି ।
ଷୋଳ ଦିବସକୁ ଯେତେ ଇନ୍ଧନ ଲାଗିବ
ନାବ ପୂର୍ଣ୍ଣକରି ଗଙ୍ଗାବାଟେ ପଠାଇବ ।

କାଶୀ ନଦୀତୀରେ ଅଟେ କୁଣ୍ଡଳୀର ବାସ
ତହିଁ ଯାଇ ପ୍ରବେଶିଲେ ଦେବ ପୀତବାସ ।
ସେ ନଦୀତୀରେ ଅଛଇ ଏକଇ ବିପିନ
ନାନାବୃକ୍ଷରେ ଦିଶଇ ସେ ଅତି ଶୋଭନ ।
ସେ ବନମଧ୍ୟେ ଗଉରୀ ଦଶସସ୍ର ବର୍ଷେ
ରୁଦ୍ରେ ସେବା କରୁଥିଲେ ହୋଇଣ ହରଷ ।
ନାନା ସୁବାସ ଦ୍ରବ୍ୟକୁ ଏକତ୍ର ସେ କରି
ବାଲୁକା ଲିଙ୍ଗରେ ନିଉଡ଼ନ୍ତି ଶାକମ୍ଭରୀ ।
ସେହି ଜଳକୁ ପିଇଲେ ଯେତେ ଜୀବଗଣ
ସେହି ଜୀବ ହୋଇଲେକ କସ୍ତୁରୀ ଯେ ଜାଣ ।
ତାହାଙ୍କର ଉବୁରାକୁ ପାଇଲେ ଯେମାନେ
ଜଳଙ୍ଗ ମତ୍ସ୍ୟ ହୋଇଲେ ଜାଣ ସେହିମାନେ ।
ତାହାଙ୍କର ଉବୁରାକୁ ଯେ ଜୀବ ପାଇଲେ
ସେ ଜୀବ ଶାଳେହାପତ୍ନୀ ହୋଇ ଜନମିଲେ ।
ଆହେ କୁଣ୍ଡଳି ତୁମ୍ଭେ ଏ ଜୀବଗଣ ଘେନି
ରାଜୁସି ଯାଗେ ଏ ସବୁ ଦେଉଥିବ ଆଣି ।
ଆଉ ଯେ ପଦାର୍ଥ ତୁମ୍ଭେ ପାଅ ଅପରୁବ
ଯାଗଶେଷ ହେବାଯାଏ ଆଣି ଯୋଗାଇବ ।
ଯେହୁ ଅବଜ୍ଞା କରିବ ଆମ୍ଭର ଏ ବାଣୀ
ଅବଶ୍ୟ ତାହାକୁ ଚକ୍ରେ ପକାଇବୁ ହାଣି ।
ଶୁଣି ହର୍ଷ ହେଲା ସେହି କୁଣ୍ଡଳୀ ନୃପତି
ଶ୍ରୀକୃଷ୍ଣଙ୍କ ଦରଶନେ ତୋଷ କଲା ମତି ।
ଏସନକ ଆଜ୍ଞା ଦେଇ ତାକୁ ଜଗନ୍ନାଥେ
ଗରୁଡ଼ ପିଠିରେ ବିଜେ କରିଲେ ତୁରିତେ ।
ଲକ୍ଷ୍ମୀପତି ଆଜ୍ଞାଦେଲେ ଚାହିଁ ଗରୁଡ଼କୁ
ବହନ ଚାଲ ହୋ ଯିବା କୁବେର ପୁରକୁ ।
ନାରାୟଣଙ୍କ ଆଜ୍ଞାକୁ ଘେନି ଶିରପରେ
ଗରୁଡ଼ ମିଳିଲା ଯାଇ ଅଳକାପୁରରେ ।
ଜାଣିଲା କୁବେର ଏଥେ କୃଷ୍ଣ ବିଜେକଲେ
ପାଦାର୍ଘ୍ୟ ଦେଇଣ ତାଙ୍କ ପାଦରେ ପୂଜିଲେ ।
ଅଳକାନାଥରେ ଆଗେ କହନ୍ତି କେଶବ
ରାଜୁସିଯାଗ କରିବେ ଯୁଧିଷ୍ଠିର ଦେବ ।
ସପ୍ତନିଧି ଘେନି ଖଟିଥିବେ ଅନୁବ୍ରତେ
ଯେତେ ରତ୍ନ ଲାଗେ ଷୋଳଦିନ ପରିଯନ୍ତେ ।
ଯେ ଆଜ୍ଞା କହି କୁବେର ଗଲାକ ବହନ
ଭଣ୍ଡାରେ ସଞ୍ଚୟ ହୋଇଥିଲା ଯେତେ ଧନ ।
ଦଶମେବଚ୍ଛ ଥିଲେ ଯେ କୁବେର ସଇନି
ଭଣ୍ଡାରୁ ଧନ ସକଳ ଆଣିଲେ ସେକ୍ଷଣି ।
ଏସନକ କହି ତାକୁ ଦେବ ହୃଷୀକେଶ
ବିଶ୍ୱକର୍ମାକୁ ରାଇଲେ ଆପଣାର ପାଶ ।

ବୋଇଲେକ ସ୍ୱର୍ଗପୁରେ ଯେସନେ ସୁଧର୍ମା
ତେସନ ସଦୃଶ ସେହି ଦିଶିବ ସୁଷମା ।
ତା ତହୁଁ ସୁନ୍ଦର ହେଲେ ତୋର କାରିଗରି
ବହୁ ପୌରୁଷ ପାଇବୁ ଜାଣ ହେତୁକରି ।
ଦ୍ୱାଦଶ ଯୋଜନ ହେବ ସଭା ଆୟତନ
ଲକ୍ଷେକ ଖମ୍ବେ ହୋଇବ ସଭା ବିଦ୍ୟମାନ ।
ଆହୋ ଅଷ୍ଟାଦଶ ଦଣ୍ଡ ହେବ ନଳକାଠି
ଚାରିଆଡ଼କୁ ମାଡ଼ିବ ସେହି ଖମ୍ବଗୋଟି ।
ମଣିରତ୍ନ ହୀରା ହେବ ତହିଁରେ ଜଡ଼ିତା
ସପ୍ତପନ୍ତି ଥିବ ଗଜଦନ୍ତର ମୁକୁତା ।
ପ୍ରବାଳହାର ଯତନେ ତହିଁ ଖଞ୍ଜା ହେବ
ଦୂରକୁ ଯେସନେ ଜକଜକ ତ ଦିଶିବ ।
ସେ ରାଜା ଯେବଣ ଖମ୍ବ ମୂଳରେ ବସିବ
ସେ ଖମ୍ବ ଶୋଭା ବର୍ଣ୍ଣନେ ବେଳ ନ ଅଣ୍ଟିବ ।
ଯେ ରାଜା ଭଣ୍ଡାର ତାକୁ ନୋହିବ ଯେ ସରି
ଦେଖି ବସିଥିବ କ୍ଷୁଧା ପିପାସା ପାଶୋରି ।
ଆପେ ଜଗନ୍ନାଥ ଏକ ଚିତ୍ରପଟ ଲେଖି
ଏ ସ୍ୱରୂପ ହେବ କହିଦେଲେ ବିନ୍ଧାଣିକି ।
ପ୍ରତି ସ୍ତମ୍ଭତଳେ ହେବ ଆସ୍ଥାନ ନିର୍ମିତ
ବେନିକାଠି ଉଚ୍ଚ ହେମ ଦୀର୍ଘ ସପ୍ତହସ୍ତ ।
ସୁବର୍ଣ୍ଣର ବାରଗୋଟି ହୋଇବ ପାବଚ୍ଛ
ଲକ୍ଷେ ସ୍ତମ୍ଭ ପାଶେ ହେବ ଆସ୍ଥାନ ମେବଚ୍ଛ ।
ଶ୍ୱେତ ଚନ୍ଦ୍ରାତପ ତାର ଉପରେ ଟାଣିବ
ଅଷ୍ଟରତ୍ନେ କାରୁକାମ ତାହା ହୋଇଥିବ ।
ବହୁ ସୁସଞ୍ଚ ହୋଇବ ଯେହ୍ନେ ଅପୂରୁବ
ଲକ୍ଷେରାଜା ବସିବାକୁ ତହିଁ ହେବ ଠାବ ।
ମୁକୁତାର ମାଳାମାନ ଲମ୍ବୁଥିବ ତଥି
ଦେଖିଲା ବେଳକୁ ମନ ମୋହିବ ସେ ଅତି ।
ଏପରି ସୁନ୍ଦର ହେବ ସେ ଛାୟା ମଣ୍ଡପ
କୌତୁକେ ବୁଲି ଦେଖିବେ ଯେହ୍ନେ ସର୍ବଭୂପ ।
ପ୍ରସନ୍ନ ସମ୍ପଦ ଛାୟାମଣ୍ଡପର ସ୍ଥଳୀ
ଯେସନେ ରାଜାଏ ଦେଖି ନ ପାରିବେ କଳି ।
ଏସନକ ଆଜ୍ଞା ଦେଇ ଦେବ ଜଗନ୍ନାଥେ
କୁବେର ବୋଇଲେ ଦେବୁ ଧନଲାଗେ ଯେତେ
ହରିଙ୍କ ଆଜ୍ଞା ପାଇଣ କୁବେର ବହନ
ଚନ୍ଦ୍ର ପର୍ବତ ଗୁହାରେ ହେଲା ଉପସ୍ଥାନ ।
ଦଶ ମେବଚ୍ଛ ଅଛନ୍ତି କୁବେର ସଇନି
ଭଣ୍ଡାରୁ ଧନମାନ ସେ ଆଣିଲେକ ଘେନି ।
ବୈନତେୟ ଆରୋହିଣ ତହୁଁ ଚକ୍ରହସ୍ତ
ପ୍ରସ୍ଥାନ କଲେ ସେଠାରୁ ହୋଇ ଉଲ୍ଲସିତ ।

ବାରିନିଧିପୁର ଅଭିମୁଖେ ଜଗଦ୍‌ବନ୍ଧୁ
ପ୍ରବେଶ ହୋଇ ଉତୁରି ଗରୁଡ଼ର କନ୍ଧୁ ।
ଯାଆନ୍ତେ ବରୁଣ ସ୍ୱର୍ଣ୍ଣ ଆସନେ ବସାଇ
ବହୁ ପୂଜାକଲା ପାଦେ ଧୂପ ଦୀପ ଦେଇ ।
ଅନେକ ହରଷ ହୋଇ ବୋଲେ ଜଳପତି
ତବ ପାଦ ଦେଖି ମୋର ଫିଟିଲା ଦୁର୍ଗତି ।
ଭୋଦେବ କେଉଁ କାରଣେ ବିଜେ ମୋର ପୁର
ସେ କଥା ଶୁଣିଲେ ଚିତ୍ତ ଥୟ ହେବ ମୋର ।
ରତ୍ନାକର ସନ୍ନିଧାନେ ବଦନ୍ତି କେଶବ
ରାଜସୂୟ ଯାଗ କରିବେ ଯୁଧିଷ୍ଠିର ଦେବ ।
ତୁହି ରହିଥିବୁ ଯାଗ ଶେଷ ପରିଯନ୍ତେ
ଯୋଗାଉଥିବୁ ପଲମ ଲାଗୁଥିବ ଯେତେ ।
ଆହେ ଦିଗବିଜେ କାଳେ ସକଳ ଅମର
ଲୁଚାଇଛନ୍ତି ରତ୍ନର ପଲମ ତୋ ପୁର ।
ତ୍ରେତୟାଯୁଗେ ତାଡ଼କା ଅସୁର ଯେ ଥିଲା
କାର୍ତ୍ତିକ କୁମର ହସ୍ତେ ସେହି ନାଶ ହେଲା ।
ପୁଣି ଯହୁଁ ଉତପତ୍ତି ହୋଇଲା ରାବଣ
ସେ ଧାଡ଼ିଦ୍ୟନ୍ତେ ପଳାଇଗଲେ ଦେବଗଣ ।
ସେ ରତ୍ନ ଯୋଗାଣମାନ ଅଛି ତୋର ପୁରେ
ସେହି ପଲମକୁ ଦେବୁ ଯାଗ ସମୟରେ ।
ରତ୍ନାକର ବୋଇଲେକ ଯୋଡ଼ି ବେନିକର
ମୁଁ ଜଗିଲା ଲୋକ ସିନା ଭଣ୍ଡାର ତୋହର ।
ଜଳଚର ପଙ୍କଚର ନାଶିଣ ଅସୁରେ
ଜଳଭୁବନ ମନ୍ଥନ କଲେକ ବଳରେ ।
ଏ ବାରାନିଧି ଭଣ୍ଡାର ହେଲେ ଜୁର କଲେ
ଦେବଙ୍କ ବାକ୍ୟେ ନାଶିଲୁ ତାଙ୍କୁ ଅବହେଳେ ।
ଆଣି ଭଣ୍ଡାରକୁ ପୁଣି ଥୋଇଲୁ ଗୋ ତୁହି
ନିଜ ପଦାର୍ଥ କାହାକୁ ମାଗୁଛୁ ଗୋସାଇଁ ।
ଯେତେକ ପଦାର୍ଥ ତୋର ଲାଗଇଟି କାର୍ଯ୍ୟ
ତେତେକ ଯୋଗାଡ଼ ମୁହିଁ ଦେବି ଦେବରାଜ ।
ରାଜାମାନଙ୍କୁ ଲାଗେ ଯେତେ ପଲମ ଝରି
ଜଳଚରେ ଦେଉଥିବେ ତାହା ବୋହିକରି ।
ବରୁଣକୁ ଏହି ଆଜ୍ଞା ଦେଇଣ ଅନନ୍ତ
ଦ୍ୱାରକା ପୁରେ ବିଜୟ କରିଲେ ତୁରିତ ।
ଦ୍ୱାରୀ ମୁଖୁ ଶୁଣି କରି ଆସି ଉଗ୍ରସେନ
ଆସ୍ଥାନେ ବସାଏ ନେଇ ଦେବ ଭଗବାନ ।
କୃଷ୍ଣଙ୍କ ଆଗତ ଶୁଣି ଦେବ କାମପାଳେ
ବିଜେକଲେ ହରଷରେ ଯାଇ ସଭାତଳେ ।
ଆସ୍ଥାନ ତ୍ୟାଗ କରିଣ ଉଠିଲେ ସମସ୍ତେ
ଶ୍ରୀରାମଙ୍କ ପଦ୍ମପାଦେ ନମି ଜଗନ୍ନାଥେ ।

ଅନେକ ବିନୟ ବାକ୍ୟ କହି ଦେବସ୍ୱାମୀ
ବଳଦେବଙ୍କ ଚରଣେ ହୋଇ ପରଣାମି ।
କୃଷ୍ଣଙ୍କୁ ଦେଖିଣ ରାମ ଅତି ସ୍ନେହଭରେ
କୁଶଳବାର୍ତ୍ତା ପୁଚ୍ଛିଲେ ବସାଇ କୋଳରେ ।
ବାବୁ ଦ୍ୱାରକା ଛାଡ଼ି ତୁ ଗଲୁ ବହୁଦିନ
ଆସିବା ପଥ ଚାହିଁଣ ନ ସରିଲା ଦିନ ।
ଜରାସନ୍ଧ ଦୁଷ୍ଟରାଜା ଥିବା ପରିଯନ୍ତେ
ମନ ସ୍ଥିର ନୁହେଁ ତୋତେ ଦେଖିବା ପର୍ଯ୍ୟନ୍ତେ
ଗୋମନ୍ତର ଯୁଦ୍ଧେ ବାବୁ ପିଟିଲି ଲଙ୍ଗଳ
ସଂଗ୍ରାମରେ ପାତିଲା ସେ ଜରା ବକ୍ଷସ୍ଥଳ ।
ଏଡ଼େ ଆଘାତରେ ନାଶ ନ ଯାନ୍ତେ ସେ ଜରା
ବିଚାରିଲି ହେବ ପରା ଅସୁର ଏ ବୀରା ।
ପ୍ରଥମ ଧାଡ଼ିରେ ଗୋପପୁରକୁ ବେଢ଼ିଲା
ତାହାର ଭୟେ ଆମ୍ଭର ପାଏଡ଼ା ପଡ଼ିଲା ।
ଗୋପପୁର ତେଜିଣ ଯେ ରହିଲୁ ମଥୁରା
ତହିଁ ଯାଇ ଧାଡ଼ିଦେଲା ଜରା ମହାବୀରା ।
ତହିଁ ସଂଗ୍ରାମରେ ଆମ୍ଭେ ଜିଣି ତ ନ ପାରି
ଅବନ୍ତୀ ପୁରକୁ ଗଲୁ ତାକୁ ଭୟକରି ।
ତହିଁ ଯାଇ ଧାଡ଼ିଦେଲା ମଗଧ ଈଶ୍ୱର
ତହିଁ ଅପସରି ଆମ୍ଭେ ଗଲୁ ବାରମ୍ବାର ।
ଗୋପନ ହୋଇ ରହିଲୁ ଯାଇଣ ଗୋମନ୍ତେ
ସେହି ଠାବରେ ସଂଗ୍ରାମ ହେଲା ଅପ୍ରମିତେ ।
ତହିଁ ରହି ନ ପାରିଲୁ ଆମ୍ଭେ ତାର ଡରେ
ଯାଇଣ ରହିଲୁ ବାବୁ ସେ ମଧୁବନରେ ।
ଅଷ୍ଟାଦଶବାର ଯାଏ ସେହି ଧାଡ଼ିଦେଲା
ବଜ୍ରହଳ ମୂଷଳରେ ସଂହାର ନୋହିଲା ।
ବିଧାତା ବୋଇଲେ ରାମ ଯୁଦ୍ଧ ନ କରନ୍ତୁ
ତୁମ୍ଭର ହସ୍ତେ ଜରାର ନ ହୋଇବ ମୃତ୍ୟୁ ।
ଧାତାର ବଚନେ ମୁହିଁ ଗଲି ଅପସରି
ତେଣୁ ଜରାସନ୍ଧକୁ ମୁଁ ଥାଏ ସଦା ଡରି ।
ହରି ସମୁଦ୍ର ମଧ୍ୟେ ତୁ ରଚିଲୁ ଦ୍ୱାରକା
ତେବେ ସୁଦ୍ଧା ଜରାସନ୍ଧ ସବୁ ବେଳେ ଶଙ୍କା ।
ଦ୍ୱାରକାରୁ ବାହାର ମୁଁ ନୁହେଁ ତାର ଡରେ
ଜରା ନାଶଯାଏ ତୁ ନ ଯିବୁ ନିର୍ଭୟରେ ।
ଜରା ବିନାଶନେ ହରି ନ କଲୁ ଉପାୟ
ସେ ମଲେ ଆମ୍ଭେମାନେ ଯେ ହୁଅନ୍ତୁ ନିର୍ଭୟ ।
ହସିକରି ବୋଇଲେ ଯେ ତାଙ୍କୁ ନାରାୟଣ
ଦ୍ୱାରକା ପୁରେ ଉତ୍ସବ କର ଆଜଦିନ ।
ବଳରାମ ବୋଇଲେ ହେ ଉତ୍ସବ କାହିଁକି
ଜରାସନ୍ଧ ବଧ ହରି ଅଇଲ କି ଦେଖି ।

କରପତ୍ର ଯୋଡ଼ିଣ ଯେ ବୋଲନ୍ତି ଅଚ୍ୟୁତ
ଶୁଣ ଦେବ କାମପାଳ ଜରା ହେଲା ହତ ।
ଆଶ୍ଚର୍ଯ୍ୟ ହୋଇ ବୋଲନ୍ତି ରେବତୀରମଣ
କରାଇଲୁ କେଉଁପରି ଜରାକୁ ନିଧନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଦେବରାଜେ-
ମଗଧ ଦେଶକୁ ଗଲୁଁ ଯୁଧିଷ୍ଠିଙ୍କ କାର୍ଯ୍ୟେ ।
ଭୀମ ଅରଜୁନକୁ ମୁଁ ନେଲି ଯେ ସଙ୍ଗରେ
ଜରାକୁ ଭେଟିଲୁ ଯଜ୍ଞ ଆହୁତି କାଳରେ ।
ବେଦ ଅଧ୍ୟୟନ କରି ମାଗିଲୁ ଯେ ଦାନ
ସଂଗ୍ରାମ ମାଗନ୍ତେ ଦେଲା ସନ୍ତୁଷ୍ଟ ନୋହିଣ ।
ଜରା ତୁଲେ ସଂଗ୍ରାମ ଯେ କଲା ବୀର ଭୀମ
ଜରା ଭୀମର ବଢ଼ନ୍ତେ ତୁମୁଳ ସଂଗ୍ରାମ ।
ଜନ୍ମକାଳୁ ଜରାସନ୍ଧ ଅଟେ ବେନିଫାଳ
ଧରି ଚିରିଲା ତାହାକୁ ପବନର ବାଳ ।
ବଡ଼ବାନଳେ ପକାଇଦେଲା ଯେ ଫାଳକ
ଖେଚର ହୋଇ ରହିଲା ଆବର ଖଣ୍ଡକ ।
ଛୟାଣୋଇ ସସ୍ର ରାଜା ଧରି ବାହୁବଳେ
ଶାଙ୍କୁଳି ଦେଇ ରଖିଲା ତାଙ୍କୁ ଯଜ୍ଞଶାଳେ ।
ଆହୁତି ପାତିଲା ଋଷିମାନଙ୍କୁ ଡକାଇ
ମାଜଣା କରାଉଥିଲା ସେମାନଙ୍କୁ ନେଇ ।
ଆମ୍ଭେ ପ୍ରବେଶିଲୁ ତହିଁ ସେହି ଦିବସରେ
ନ ହେଲେ ମରିଥାଆନ୍ତେ ସେ ଯାଗ କୁଣ୍ଡରେ
ଜରା ମାରି ରାଜାଗଣ ଉଦ୍ଧାର କରିଲୁ
ଜରା ପୁତ୍ରକୁ ମଗଧେ ଅଧିକାରୀ କଲୁ ।
ରାଜାମାନଙ୍କୁ ସେଠାରେ କଲୁ ନିମନ୍ତ୍ରଣ
ଶୁଣିଣ ସାନନ୍ଦ ହେଲେ ଦେବ ସଙ୍କର୍ଷଣ ।
ବହୁ ହର୍ଷ ହେଲା ବାବୁ ଜରା ନାଶ ଶୁଣି
ଭୀମେ ନ ଆଣିଲୁ ସଙ୍ଗେ କିପାଁ ଚକ୍ରପାଣି ।
ବାବୁ ଉତ୍ସବ କରାନ୍ତି ଭୁବନ ଦ୍ୱାରକା
ଆପଦ ଖଣ୍ଡି ଆମ୍ଭଙ୍କୁ କଲା ଯେ ନିଃଶଙ୍କା ।
ଭୀମ ନାମରେ ଉତ୍ସବ କରନ୍ତି ଏ ପୁରୀ
ସେ ଉତ୍ସବ ଦେଖିଥାନ୍ତେ ସର୍ବ ନରନାରୀ ।
ପୁଣ ପୁଣ ଭୀମକୁ ଯେ ପରଶଂସା କରି
ତୁନି ହୋଇଣ ରହିଲେ ତହୁଁ ହଳଧାରୀ ।
ଶ୍ରୀକୃଷ୍ଣ ବୋଇଲେ ବଡ଼ ସମାରୋହ ହେବ
ଯୁଧିଷ୍ଠି ଦେବ କରିବେ ରାଜୁସି ଉତ୍ସବ ।
ଲକ୍ଷେ ନୃପତିଙ୍କୁ ଦେବ ଆଣିବ ସେ ସାଧି
ପାଣ୍ଡବମାନେ ଅଟନ୍ତି ଏକେ ଏକେ ଯୋଧି ।
ରାଜୁସି ଯାଗରେ ହେବ ତହିଁ ବଡ଼ ସଭା
ସଜ ହୋଇଥାଅ ପ୍ରଭୁ ସମସ୍ତେ ଯେ ଯିବା ।

ଶୁଣି ବଳରାମ ହେଲେ ପରମ ସାନନ୍ଦ
ଦେଖିବା ଯୁଧିଷ୍ଠିଙ୍କର ଉତ୍ସବ ସମ୍ପଦ ।
ଲକ୍ଷେ ରାଜା ଆସିବେ ତ ଏହାଙ୍କ ହୋଲରେ
ମହାବଳିଷ୍ଠ ଅଟନ୍ତି ଏହି ପୃଥିବୀରେ ।
ଗୋବିନ୍ଦ ବୋଇଲେ ରାଜା କି ଛାର ଏହାଙ୍କୁ
ବିଭୀଷଣ ତ ଆସିବ ଏ ମହାଯାଗକୁ ।
ପାତାଳପୁରୁ ଆସିବ ବାସୁକୀ ରାଜନ
ନାଗଙ୍କୁ ଘେନି କରିବ ସେ ପାଦ ପୂଜନ ।
ଆକାଶୁଁ ଆସିବ ଇନ୍ଦ୍ର ଘେନି ଦେବଗଣ
ଦେବର୍ଷି ରାଜର୍ଷି ଦେବ ଚତୁର ଆନନ ।
ମେଘ ବାୟୁ ଆଦିକରି ଯଜ୍ଞେ ଥିବେ ଖଟି
ଏମନ୍ତ ସମ୍ପଦ ଦେବ ଅର୍ଜିବେ ଯୁଧିଷ୍ଠି ।
ହଳୀ ବୋଇଲେ ହେ ହରି ନିଶ୍ଚେ ସର୍ବେଯିବା
ଯଦି ହେବ ଏଡ଼େ କଥା ସ୍ୱରୂପେ ଦେଖିବା ।
ମାନଧାତା ଯାଗକଲା ଶୁଣିଥିଲୁ ପୂର୍ବେ
ଯୁଧିଷ୍ଠି ରାଜୁସିଯାଗ ଦେଖିବାକ ଏବେ ।
ଗୋବିନ୍ଦ ବୋଇଲେ ଦେବ ଚତୁର୍ମାସ୍ୟାପରେ
ସାତବଂଶ ଘେନି ବିଜେ କରିବା ସେଠାରେ ।
ଏରୂପେ ଅନେକ କଥା ବଳଦେବ କହି
ଦ୍ୱାରକାର ମହାରାଣୀମାନଙ୍କୁ ଡକାଇ ।
ଦଶଲକ୍ଷ ସୁବର୍ଣ୍ଣର ଦେବ ତୁମ୍ଭେ ନୌତି
ଏହାର ନିର୍ମାଣ ସଜକର ଯା ଝଟତି ।
ଆଉ ଦେବ ଦଶଲକ୍ଷ ସ୍ୱର୍ଣ୍ଣର କୁଣ୍ଡାଇ
ସୁବର୍ଣ୍ଣର ଦଶଲକ୍ଷ ଦେବ ପଲମଇ ।
ଦଶଲକ୍ଷ ଦେବ ତୁମ୍ଭେ ସ୍ୱର୍ଣ୍ଣ ତେଲାଉଣି
ଭଣ୍ଡାରୁ ପ୍ରସନ୍ନାଜିତ ଧନ ଦେବ ଆଣି ।
ଦଶଲକ୍ଷ ଡ଼ାଳ ଦଶଲକ୍ଷ ଯେ ଗରିଆ
ରାଜାଙ୍କର ସ୍ନାନପାଇଁ ହୋଇବ ଯେ ଏହା ।
ଦଶଲକ୍ଷ ନାଲୁଆ ଯେ ଦଶଲକ୍ଷ ଝରି
ଚତୁର୍ମାସ୍ୟା ମଧ୍ୟେ ଏହା ଦେବ ଗଢ଼ିକରି ।
ସୁବର୍ଣ୍ଣ ଦିହୁଡ଼ି ଦେବ ଶତେକ ଅୟୁତେ
ସୁବର୍ଣ୍ଣର ଦୀପ ଦେବ ଦଶ ଅର୍ବୁଦେ ।
ଅଶୀଲକ୍ଷ ଦେବ ତୁମ୍ଭେ ସ୍ୱର୍ଣ୍ଣର ଖପରା
ସ୍ୱର୍ଣ୍ଣ ଦୀପରୁଖା ଲକ୍ଷେ ଲାଗିଥିବ ଖୁରା ।
ହେ ଅକ୍ରୁର ଅନାଧୃଷ୍ଟ ଉଦ୍ଧବ ସାତ୍ୟକି
ଏ ରତ୍ନ ଗଠନ ନେଇ ପାଶେ ଥିବ ରଖି ।
ଏ ପଦାର୍ଥ ଏକ ଯେବେ ନିଉନ ହୋଇବ
ଯୁଧିଷ୍ଠିର କୋପକଲେ ପ୍ରାଣେ ନାଶଯିବ ।
ଦ୍ୱାରକାରେ ଏହିପରି ଆଜ୍ଞା ଦେଇ ହରି
ଖଗେଶ୍ୱର ପିଠିପରେ ଯାଇ ବିଜେ କରି ।
ଘୃତ ସମୁଦ୍ରର ପାଶେ ହୋଇଲେ ପ୍ରବେଶ
ଘୃତଅଧିକାରୀକି ଯେ ଡକାଇଲେ ପାଶ ।
ବୋଇଲେକ ଲକ୍ଷସେନା ଘେନି ମେଘଦ୍ରୋଣ
ତୋଠୁଁ ଘୃତ ନେଇ ଦେବ ରାଜୁସି ଯାଗେଣ ।
ଶୁଣିଣ ପରମାନନ୍ଦ ହେଲା ବାରିନିଧି
ଏ ଯାଗେ ଖଟିଲେ ମୋର ହେବ କାର୍ଯ୍ୟସିଦ୍ଧି
ଘୃତ ସମୁଦ୍ରକୁ ଆଜ୍ଞା ଦେଇ ଦେବରାଜେ
ବୈନତେୟ ପିଠିପରେ କଲେ ଯାଇ ବିଜେ ।
ରତ୍ନାକର କୂଳେ ଯାଇ ହୋଇଲେ ପ୍ରବେଶ
ପଶି ଯାଉଛନ୍ତି ଜଳମଧ୍ୟେ ହୃଷୀକେଶ ।
ଦେଖିକରି ରତ୍ନାକର ଗରୁଡ଼ ଗମନ
ଶ୍ରୀହସ୍ତେ ଅର୍ଘ୍ୟ ଘେନିଣ କରିଲା ଦର୍ଶନ ।
ଅନେକ ବିନୟୀ ହୋଇ ଜଳଧିର ରାଜା
ଜଗନ୍ନାଥଙ୍କ ଚରଣେ କଲା ଦିବ୍ୟ ପୂଜା ।
ଗୋବିନ୍ଦ ବୋଇଲେ ଆହେ ଶୁଣ ରତ୍ନାକର
ସୁବର୍ଣ୍ଣ ଯୋଗାଡ଼ମାନ କରସି ସମ୍ଭାର ।
ଏହା ଶୁଣିକରି ବେଗେ ଯାଇ ଜଳନିଧି
ତକ୍ଷଣେ ଫେଡ଼ିଲେ ସେହି ଭଣ୍ଡାର ବାରିଧି ।
ସତ୍ୟଯୁଗେ ଦେବତାଏ ତାଡ଼କୀର ଭୟେ
ଥୋଇଥିଲେ ଯେ ଯୋଗାଡ଼ ସୁବର୍ଣ୍ଣର ଆୟେ
ବରୁଣକୁ ଆଜ୍ଞା ଦେଲେ ଦେବ ବନମାଳୀ
ଏ ରତ୍ନ ଯୋଗାଡ଼ମାନ କର ବେଗେ ଝଳି ।
ଅନେକ ସାନନ୍ଦ ହେଲା ଶୁଣି ଜଳପତି
ଜଳଚରଙ୍କ ହସ୍ତରେ ନିର୍ମାଣ କରନ୍ତି ।
ଚତୁର୍ମାସ୍ୟା ଅନ୍ତରେ ଯେ ସେ ଯଜ୍ଞ ହୋଇବ
ଏହି ରତ୍ନର ଯୋଗାଡ଼ମାନ ନେଇ ଦେବ ।
ବାରିନିଧି ବୋଲେ ଦେବ ବହୁ ଭାଗ୍ୟ ମୋର
ରାଜୁସିଯାଗେ ଦେବଇଁ ରତ୍ନର ସମ୍ଭାର ।
ତହୁଁ ବୈନତେୟ ପିଠି ପରେ ବିଜେ କରି
ଚଳିଗଲେ ହୃଷୀକେଶ ପାତାଳର ପୁରୀ ।
ହଟକେଶ୍ୱର ଭୁବନେ ଥାଏ ମୟଦୈତ୍ୟ
ତାହାର ପୁରେ ପ୍ରବେଶ ହେଲେ ନନ୍ଦସୁତ ।
ବାରତା ପାଇଣ ବିଦ୍ୟାକେତୁର ଯେ ନୃପତି
ସାକ୍ଷାତରେ ମିଳିଲା ସେ ସଙ୍ଗେ ବହୁରଥୀ ।
ଲକ୍ଷେ ସ୍ୱର୍ଣ୍ଣ ପାଣିଦ୍ରବ୍ୟ ଘେନିଣ ସେ ରାୟେ
ସହସ୍ର ପ୍ରଣାମ କଲା ଜଗନ୍ନାଥ ପାୟେ ।
କରିବେକ ରାଜସୂୟ ଯଜ୍ଞ ଯେ ଯୁଧିଷ୍ଠି
ସେ ଯାଗକୁ ଦେବୁ ତୁହି ମାୟା ସଭା ଗୋଟି
ଅବାଡ଼ରେ ଚିତ୍ରମାନ ହୋଇବ ଲିଖନ
ଜଳସ୍ଫଟିକ ଯେସନ ନୋହିବ ବାରଣ ।

ଜଳେ ସ୍ଥଳ ହେବ ଯେ ସ୍ଥଳେ ହେବ ଜଳ
ଶୂନ୍ୟେସ୍ତମ୍ଭ ଲାଗିଥିବ ସୁବର୍ଣ୍ଣର ଚାଳ ।
ଶତ୍ରୁଖଳ କଣ୍ଟକ ଯେ ହେବ ସଭାନାମ
ଶୂନ୍ୟରେ ତାର ପାବଚ୍ଛ ରଖିଥିବ ଜାଣ ।
ଯୁଧିଷ୍ଠିର ଦେବଙ୍କୁ ଯେ ଭକତି ହୋଇବ
ତାହାକୁ ସେହି ସଭାର ସକଳ ଦିଶିବ ।
ଯୁଧିଷ୍ଠିର ଦେବଙ୍କୁ ଯେ ହେବ ରିପୁସମ
ତାହାକୁ ଅଦୃଶ୍ୟ ହେବ ସେ ସଭାଗଠନ ।
ଏସନ ଉପାୟ ତହିଁ କରିଲେ କେଶବ
ଶୁଣି ସନମତ କଲା ସେ ମୟ ଦାନବ ।
ତୁମ୍ଭର ବଚନ ପ୍ରଭୁ ଅଟେ ଅଲଙ୍ଘିତ
ଶତ୍ରୁ ଖଳ କଣ୍ଟକ ମୁଁ ଦେବଇଁ ନିଶ୍ଚିତ ।
ପୁଣି ମୟକୁ କହିଲେ ତହିଁ ନାରାୟଣ
ଲକ୍ଷେ ରାଜାଙ୍କୁ ଦେବୁ ତୁ ରତ୍ନ ଆଭରଣ ।
ଝୁମ୍ପା ସରଳ ବାହୁଟି ତାଡ଼ ଜଗଦ୍‌ବଳା
ଶିରକୁ ସୀମନ୍ତିନୀ ଯେ ହୃଦେ ରତ୍ନମାଳା ।
ରତ୍ନ ଆଭରଣ ଦେବୁ ସକଳ ରାଜାଙ୍କୁ
ଯେତେକ ଲାଗଇ ରତ୍ନ ଦେବୁ ତୁ ସଭାକୁ ।
ଏସନକ ଆଜ୍ଞା ତାକୁ ଦ୍ୟନ୍ତେ ଜଗନ୍ନାଥ
ଶୁଣିଣ ମୟ ଦାନବ କଲାକ ସମ୍ମତ ।
ପାତାଳେ ଅଛନ୍ତି ତୋର ଯେତେକ ସଇନି
ସଭାସ୍ଥଳକୁ ତାହାକୁ ଆସିବୁ ତୁ ଘେନି ।
ଅକ୍ଷତ ଗୁଆ ତାହାକୁ ଦେଇ ଦାମୋଦର
ବିଜୟ କରିଲେ ଯାଇଁ ଗରୁଡ଼ ପିଠିର ।
ପାତାଳ ପୁରୁ ବାହାର ହୋଇଣ ଅନନ୍ତ
ଆକାଶପଥେ ହୁଅନ୍ତେ ବିନତାର ସୁତ ।
ଆସିଣ ଦର୍ଶନ କଲା ତାଙ୍କୁ ବିଶ୍ୱକର୍ମା
ସଭା ଦେଖାଇଲା ନେଇ ଯେସନେ ସୁଧର୍ମା ।
ଦ୍ୱାଦଶ ଯୋଜନ ସଭା ଆୟତନ ସ୍ଥଳୀ
ସୁବର୍ଣ୍ଣପୁରେ ବସିଛି ଅଷ୍ଟରତ୍ନ ଝଳି ।
ତିମିର ନାଶନ୍ତି ଯେହ୍ନେ ଦେବ ଦିନମଣି
ସେପରି ଗୃହ ଉଜ୍ଜ୍ୱଳ କରେ ରତ୍ନମଣି ।
ଚାରି ଯୁଗକୁ ସେ କର୍ମେ ହୋଇଛି ଆଶ୍ଚର୍ଯ୍ୟ
ଦେଖିଣ ସାନନ୍ଦ ହେଲେ ପ୍ରଭୁ ଦେବରାଜ ।
ସୁବର୍ଣ୍ଣର ଖମ୍ଭ ଆଉ ସୁବର୍ଣ୍ଣର ଶେଣି
ସୁବର୍ଣ୍ଣ ଉଭାରି ଅଷ୍ଟରତ୍ନରେ ଖଞ୍ଜାଣି ।
ଲକ୍ଷେ କୋଟି ଅଛଇ ତହିଁ ନନ୍ଦାବର୍ତ୍ତ
ବ୍ରହ୍ମାଣ୍ଡ ଝଲକେ ତେଜ ଯେସନ ଆଦିତ୍ୟ ।
ଯେବଣ ଆଜ୍ଞା ଦେଇଣ ଅଛନ୍ତି ଶ୍ରୀହରି
ଦେବତାଙ୍କୁ ଅସମ୍ଭବ ତା ନିର୍ମାଣ କରି ।
ଶତେକ ପଦ ବିନ୍ଧାଣି ତହିଁରେ ଲାଗିଣ
ପିତୁଳା ଗଠନ ପୀଢ଼ କରନ୍ତି ନିର୍ମାଣ ।
ତିନିକାଠି ଉସର୍ଗ ଯେ ସ୍ଥଳ ବାରପୂର୍ଣ
ଶୁଦ୍ଧ ସ୍ଫଟିକ ପାବଚ୍ଛ ମର୍କତ ରସାଣ ।
ଚଉବିଂଶ ପାବଚ୍ଛ ଯେ ନୀଳାରେ ନିର୍ମିତ
ସଭା ଦେଖିଣ ହରଷ ହେଲେ ଜଗନ୍ନାଥ ।
ଆପଣେ ଯେ ବିଶ୍ୱକର୍ମା ରୂପ ଦେବ ଧରି
ପଟ ଧରିଣ ନିର୍ମିତ କଲେ ତାହା ହେରି ।
ଯେବଣ ସ୍ଥାନରେ ଯାହା ଛାଡ଼ି ଯାଇଥିଲେ
ଆପଣେ ଶ୍ରୀହରି ତାହା ଲେଖନ କରିଲେ ।
ଏହି ପରାୟେ ନିର୍ମାଣ କଲା ବିଶ୍ୱକର୍ମା
ଏ ସଭା ଦେଖି ପ୍ରଶଂସା କରିବେ ଯେ ବ୍ରହ୍ମା
କୁବେର ହକାରି ଆଜ୍ଞା ଦେଲେ ଦାମୋଦର
ଧନକୁ ବଇଶ୍ରବଣ ଚିନ୍ତା ଯେ ନ କର ।
ଯେତେକ ଧନ ଲାଗଇ ରାଜୁସି ସଭାକୁ
ସଂଯୋଗ କରିତ ଦେବୁ ଏ ବିଶ୍ୱକର୍ମାକୁ ।
ତୋହର ଏହି ଭଣ୍ଡାର ସଞ୍ଚିତ ଶ୍ରୀପତି
ତୋ ଆନ ତାକୁ କରିବ କାହାର ଶକତି ।
ଅମର ଭୁବନୁ ବିଜେ ଦେବ ଲକ୍ଷ୍ମୀପତି
ଗରୁଡ଼ ପିଠି ଉପରେ ବିଜେ ଶୀଘ୍ର ଗତି ।
ଅମର ଭୁବନେ ଯାଇ ବିଜୟ କରିଲେ
ଦେଖି ଇନ୍ଦ୍ର ଆସ୍ଥାନରୁ ଉଠି ଉଭାହେଲେ ।
ଗୋବିନ୍ଦଙ୍କ ପଦ୍ମପାଦେ କଲେ ଦିବ୍ୟ ପୂଜା
ଆସ୍ଥାନେ ବସାଇ ପୁଚ୍ଛାକଲେ ଦେବରାଜା ।
ନାରାୟଣ ବୋଇଲେ ହୋ ଶୁଣ ମଘବାନ
ରାଜୁସି ଯାଗ କରିବେ ଧର୍ମଙ୍କ ନନ୍ଦନ ।
ତାହାଙ୍କ ପାଇଁ ତୋହର ଅମର ଭୁବନୁ
ବ୍ୟଞ୍ଜନ ଯୋଗାଡ଼ ଦେବୁ ନନ୍ଦନ କାନନୁ ।
ଆମ୍ବ ପଣସ କଦଳୀ ଆଉ ନଡ଼ିକାଳ
ଜମ୍ବିଳ ନାରଙ୍ଗ ଆଳୁ ଟଭା କନ୍ଦମୂଳ ।
ତୋଟାଳିଆଙ୍କୁ କହିବୁ ତୁହି ଯେ ତିଆରି
ଆଜ୍ଞୁଁ ଏ ପଦାର୍ଥ କେହି ନ କରିବେ ଜାରି ।
ଆକାଶଗଙ୍ଗା ପଥରେ ଲାଗୁଥିବ ନାବ
ନାବରେ ପୂରାଇ ଦେଉଥିବୁ ତୁ ବାସବ ।
ସେ ଗଙ୍ଗାଧାର ଅଛଇ ଇନ୍ଦ୍ରପ୍ରସ୍ଥେ ଲାଗି
ମେଲିଦେଲେ ସେହି ନାବ ଲାଗିବ ଯେ ବେଗି
ତୋ ବନର ଫୁଲ ଫଳ ନେଲେ ମଘବାନ
ତେବେ ସେ ଅର୍ଣ୍ଣିବ ବହୁ ଆସିବେ ଯେ ସୈନ୍ୟ
ତୋହର ସଞ୍ଚିଲା ଜାଣ ଅଟନ୍ତି ପାଣ୍ଡବେ
ଏଥିରେ ତୋ ବହୁ ଧର୍ମ ହୋଇଲାକ ଏବେ

ଇନ୍ଦ୍ର ବୋଇଲେ ହେ ହରି ତୋହର ଯେ ଆଜ୍ଞା
କେହୁ କରିପାରେ କି ସେ ଆଜ୍ଞାକୁ ଅବଜ୍ଞା ।
ବିଦ୍ୟାଧର ଛନ୍ତି ମୋର ଚଉବନ କୋଟି
ସମସ୍ତ ଘେନି ରାଜୁସି ଯଜ୍ଞେ ଥିବି ଖଟି ।
ଇନ୍ଦ୍ରକୁ ଆଜ୍ଞା ଦେଇଣ ଗଲେ ବାସୁଦେବ
ପୁଷ୍ପକେ ଚଢ଼ି ପଶ୍ଚାତେ ଗୋଡାନ୍ତି ବାସବ ।
ଇନ୍ଦ୍ର ଗୋବିନ୍ଦ ଚଳନ୍ତି ଅତି ହୃଷ୍ଟମନେ
ପ୍ରବେଶ ହୋଇଲେ ଯାଇ ନନ୍ଦନ କାନନେ ।
ଦେଖିଲେ ତୋଟାମେରୁର ନିକଟରେ ଅଛି
ଅତି ଉଚ୍ଚ ସୁବର୍ଣ୍ଣର ପାଚେରି ବେଢ଼ିଛି ।
ତିନିତାଳ ଓସାର ଯେ ବନଟି ସୁସଞ୍ଜ-
ବୃକ୍ଷଙ୍କରେ ହୋଇଅଛି ଅତି ସଞ୍ଜଘଞ୍ଜ ।
ଲାଗିଅଛି ବୃକ୍ଷଙ୍କର ଶାଖା ଗଗନକୁ
ଫଳଭରେ ବୃକ୍ଷ ମଥା ଲୋଟିଛି ତଳକୁ ।
ପାଚିକରି ପକ୍ୱଫଳ ପଡୁଅଛି ଭୂମି
ଦେଖିଣ ସାନନ୍ଦ ଇନ୍ଦ୍ର ଗୋବିନ୍ଦ ଏ ବେନି ।
ଇନ୍ଦ୍ର ଭାବନ୍ତି ନନ୍ଦନ କାନନକୁ ଦେଖି
ଯୁଧିଷ୍ଠି ଯାଗକୁ ଏହା ସଞ୍ଚିଥିଲୁ ରଖି ।
ଜୟ ଜୟ ଭଗବାନ ତୋହରି ଭିଆଣ
ତ୍ରିକାଳଜ୍ଞାତା ତୋପରି ନାହିଁ ଅନ୍ୟଜଣ ।
ତୁହି ସଚରାଚରକୁ ପାଳୁ ବାସୁଦେବ
ଏହା ସବୁ ସଞ୍ଚିଥିଲୁ ଯାଗକୁ କେଶବ ।
ଏହିପରି ମନମଧ୍ୟେ ପାଞ୍ଚୁ ଶଚୀପତି
ଜାଣିପାରି ଦରହାସେ ହସିଲେ ଶ୍ରୀପତି ।
ଆପଣେ ଶ୍ରୀହରି ହସ୍ତେ ରତ୍ନମାଳା ଧରି
ଲମ୍ବାଇଲେ ତୋଟାଳିଙ୍କ ଗଳେ ଯତ୍ନକରି ।
ଏ ବନର ସର୍ବଫଳ ତୁମ୍ଭେ କର ରକ୍ଷା
ରାଜୁସି ଯଜ୍ଞ ସରିଲେ ପୁରାଇବା ବାଞ୍ଛା ।
ନାରାୟଣ ବଚନରେ ସକଳ ଗନ୍ଧର୍ବେ
ଯେ ଆଜ୍ଞା କହି ପୂଜିଲେ ତହିଁ ବାସୁଦେବେ
ଇନ୍ଦ୍ର ଗୋବିନ୍ଦ ତୁମ୍ଭେ ଯେ ତ୍ରିଲୋକାଧିପତି
ଆମ୍ଭେମାନେ ସଦା ଅଟୁ ତୁମ୍ଭ ଆଜ୍ଞାବର୍ତ୍ତୀ ।
ଯେତେକ ଫଳ ଲାଗଇ ରାଜୁସି ଯାଗକୁ
ନାବମାନ ପଠାଇବ ନନ୍ଦନବନକୁ ।
ନାରାୟଣ ବୋଇଲେ ଯେ ସାତପଦ୍ମ ନାବେ
ଫଳଘେନି ଦିବାରାତି କୈବର୍ତ୍ତ ବାହିବେ ।
ନିରାଧାର ଆଜ୍ଞା ତାକୁ ଦେଇ ଜନାର୍ଦ୍ଦନ
ବିଜେକଲେ ବୈନତେୟ ପିଠିରେ ବହନ ।
ଇନ୍ଦ୍ରକୁ ଚାହିଁ କହନ୍ତି ପ୍ରଭୁ ଦେବରାଜ
ଦେବାଙ୍ଗ ବସ୍ତ୍ର ତୁ ଦେବୁ ଯେତେ ଲାଗେ କାର୍ଯ୍ୟ
ସୁଲଭ ଯୋଗାଡ଼ମାନ ଅଛି ଯେତେ ସ୍ୱର୍ଗେ
ସେ ସକଳ ଦେବୁ ନେଇ ରାଜସୂୟ ଯାଗେ ।
ଇନ୍ଦ୍ରେ ନିମନ୍ତ୍ରଣ ଦେଇ ବିଜୟ ଅଚ୍ୟୁତ
ନିଷାଦ ରାଜ୍ୟରେ ଯାଇ ହେଲେ ଉପସ୍ଥିତ ।
କୈବର୍ତ୍ତ ନୃପତି ଦେଖି କଲା ବହୁ ପୂଜା
କି ଅର୍ଥେ ବିଜୟ କହ ପ୍ରଭୁ ଦେବ ରାଜା ।
ବୋଲନ୍ତି ଅଚ୍ୟୁତ ଶୁଣ ହେ ରାଜନ ଶ୍ରେଷ୍ଠ
ରାଜୁସି ଯଜ୍ଞ ଆସିଣ ହୋଇଲା ନିକଟ ।
ନାବମାନ କି ସଞ୍ଚିତ କଲୁ କଇବର୍ତ୍ତ
ନନ୍ଦନବନ ଆମ୍ଭଙ୍କୁ ଦେଲେ ପୁରୁହୂତ ।
ନିଷାଦ ବୋଲଇ ତୁମ୍ଭେ ଶୁଣ ବନମାଳି
ପାଞ୍ଚତିରିଶ ମର୍ଭୂତ ନାବ ଅଛି ଖୋଲି ।
ଆହୁରି ଯେତେକ ନାବ କରିଛି ନିର୍ମାଣ
ରାଜସି ଯଜ୍ଞ ସଭାକୁ ଯେତେ ଅଣ୍ଟେ ଜାଣ ।
ଦିବାରାତ୍ରେ ବାହୁଥିବି ନନ୍ଦନବନକୁ
ଧାତିକାରେ ଲାଗୁଥିବ ଇନ୍ଦ୍ରପ୍ରଶସ୍ତକୁ ।
ଏହା କହିଣ ନିଷାଦ ବନ ନୃପମଣି
ଅନେକ ପୂଜାକଲା ସେ ଦେବ ଚକ୍ରପାଣି ।
ତାଡ ତୋଡ଼ର ବାହୁଟି ଆଉ ରତ୍ନମାଳା
ଶ୍ରୀହସ୍ତରେ ଶାଢ଼ୀ ଦେଲେ ଦେବକୀର ବଳା
ନିଷାଦକୁ ଆଜ୍ଞାଦେଇ ଦେବ ହୃଷୀକେଶ
ସେକ୍ଷଣି ବାରୁଣାବନ୍ତେ ହୋଇଲେ ପ୍ରବେଶ
ଜୟ ଜୟ ଜଗନ୍ନାଥ ଜଗତ କରତା
ପ୍ରାଣୀଙ୍କର ତୁମ୍ଭେ ଅଟ ମୁକ୍ତିଗତି ଦାତା ।
ତୁମ୍ଭ ନାମ ଯେହୁ ବାରେ କରଇ ଧିଆନ
ଲକ୍ଷ ଲକ୍ଷ ପାପ ତାର ହୁଅଇ ଦହନ ।
ତୁଳାରାଶିରେ ଅନଳ କଣିକା ପରାୟେ
ତୁମ୍ଭନାମ ଅନଳରେ ସବୁ ଦାହ ହୁଏ ।
ଏହାଜାଣି ଜଞ୍ଜାଳରେ ହୋଇଅଛି ଧନ୍ଦି
ଧରି ନ ପାରଇ ନାମ ଆହେ ଦୟାନିଧି ।
ଏ ଜଞ୍ଜାଳୁ କେଉଁପରି ପାଇବି ମୁଁ ତ୍ରାଣ
ଏଥିରୁ ବିଚାର ତୁମ୍ଭେ କର ନାରାୟଣ ।
ତୁମ୍ଭ ରୂପ ଦେଖି ସଦା ପାଦ ପୂଜୁଥିବି
ନାମାବଳି ଗାଇ ସଦା ପ୍ରେମ ହେଉଥିବି ।
ସତତ ଅଟଇ ମୋର ଏହି ଅଭିଳାଷ
ପୂର୍ଣ୍ଣକର ଜଣାଉଛି ଏ ଶାରଳା ଦାସ ।



## ରାଜାମାନଙ୍କ ନିମନ୍ତ୍ରଣାର୍ଥେ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଚାରିଭାଇଙ୍କୁ ଚାରିଦିଗେ ଯିବାକୁ ଶ୍ରୀକୃଷ୍ଣଙ୍କର ଆଦେଶ

ଅଗସ୍ତିଙ୍କି ପୁଚ୍ଛାକଲେ ମନୁ ନୃପରାଣ
ଏଉତ୍ତାରୁ କିସ ହେଲା କରନ୍ତୁ ବଖାଣ ।

ମୁନି କହିଲେ ରାଜନ କର ତୁ ଶ୍ରବଣ
ବାରୁଣାବନ୍ତେ ପ୍ରବେଶ ହୋଇ ଭଗବାନ ।
ତହୁଁ ବିଜୟ କରିଲେ ଦେବ ଶିରୀପତି
ହସ୍ତିନାପୁରେ ପ୍ରବେଶ ହେଲେ ତତ୍କ୍ଷଣାନ୍ତି ।
କରିଅଛନ୍ତି ଆସ୍ଥାନେ ବିଜେ କୁରୁପତି
ଭୀଷ୍ମ ଦ୍ରୋଣ ଶଲ୍ୟ ଆଉ କୃପ ମହାରଥୀ ।
ଯୁଧିଷ୍ଠିର ଭୀମାର୍ଜ୍ଜୁନ ମାଦ୍ରୀ ଦୁଇସୁତ
ଆବର ଆସ୍ଥାନେ ଛନ୍ତି ତପସ୍ୱୀ ବହୁତ ।
ଧର୍ମକୁ ଦେଖି ବାହନ ତେଜି ଦେବରାଜା
ଯାଇ ତାହାଙ୍କ ଚରଣେ କଲେ ଦିବ୍ୟପୂଜା ।
ଆସ୍ଥାନେ ବିଜୟକରି ଦେବ ଦଇତ୍ୟାରି
କୁଶଳବାର୍ତ୍ତା ପୁଛିଲେ ସମୟ ବିଚାରି ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ହେ ଶ୍ରୀବତ୍ସ
ପିତା ବ୍ରହ୍ମହତ୍ୟା କହି ଗଲେ ବ୍ରହ୍ମାସୁତ ।
ତହିଁକି ରାଜୁସି ଯାଗ କରିବା ନିମନ୍ତେ
ଜରାସନ୍ଧ ବଧ କଲ ତୁମ୍ଭେ କେଉଁ ଅର୍ଥେ ।
ଆଜଯାଏ ତାର କିଛି ନ କଲ ଭିଆଣ
ଏବେ ମୁଁ ଯାହା କହଇ ମନଦେଇ ଶୁଣ ।
ପ୍ରୟାଗଜଳେ ଝାସିବି ପିତାଙ୍କର ଅର୍ଥେ
ନୋହିଲେ ଭାଇଙ୍କି ଘେନି ଯିବି ସର୍ବତୀର୍ଥେ ।
କୃଷ୍ଣ ବୋଇଲେ ରାଜୁସି ଯଜ୍ଞ ତୁମ୍ଭେ କର
କିପାଇଁ ତୀର୍ଥ କରିବ ଆହେ ଯୁଧିଷ୍ଠିର ।
ଯୁଧିଷ୍ଠି କହିଲେ ଘରେ ବସିଛି ଶ୍ରୀବତ୍ସି
ମହାଯାଗକୁ କିଛିହିଁ ଦ୍ରବ୍ୟ ନାହିଁ ସଞ୍ଚି ।
କୃଷ୍ଣ ବୋଇଲେ ତହିଁକି ଚିନ୍ତା ଯେ ନ କର
ମୁହିଁ ସକଳ ଆଣିବି ତହିଁର ସମ୍ଭାର ।
ଯାହାର ଆଜ୍ଞାରେ ଦେବ ଚରାଚର କୀର୍ତ୍ତି
ତାଙ୍କ କୃପାରୁ ଏ ଯଜ୍ଞ ହେବ ସମାପତି ।
ଚାରିଦିଗକୁ ହେ ଦେବ ଦୂତ ପଠିଆଇ
ରାଜାମାନଙ୍କୁ ନିମନ୍ତ୍ରି ଆଣନ୍ତୁ ଗୋସାଇଁ ।
ଚାରିଦିଗକୁ ଯେ ଦେବ ବରଗିବା ଦୂତ
ଧାର୍ମିକ ଚାରିଜଣଙ୍କୁ କର ମନୋନୀତ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଚକ୍ରଧାରୀ
ବିଚାର କରିଣ ତୁମ୍ଭେ ପେଶ ଜଣ ଚାରି ।
ଶ୍ରୀକୃଷ୍ଣ ବୋଇଲେ ଦେବ ତୁମ୍ଭର ସୋଦରେ
ଗଲେ ସାଧହେବେ ଜାଣ ବଳିଷ୍ଠ ନୃବରେ ।
ପଶ୍ଚିମ ଦିଗକୁ ଦେବ ଭୀମସେନ ଯାନ୍ତୁ
ଅରଜୁନ ଉତ୍ତରକୁ ଗମନ କରନ୍ତୁ ।
ଦକ୍ଷିଣେ ନକୁଳ ପୂର୍ବଦିଗେ ସହଦେବ
ଏ ଚାରିହେଁ ଗଲେ ଚାରିଦିଗ ସାଧହେବ ।

ଯୁଧିଷ୍ଠି ବୋଇଲେ ବାବୁ ବିଚାର ଅଚ୍ୟୁତ
ମୋହର ଚିତ୍ତକୁ ଏହା ନ ଆସେ ଏମନ୍ତ ।
ଭୀମାର୍ଜ୍ଜୁନ ଯାନ୍ତୁ କରି ଦିଗ ନିମନ୍ତ୍ରଣ
ନକୁଳ ଯେ ସହଦେବ ଅଟନ୍ତି ଏ ସାନ ।
ତାହାଙ୍କଦ୍ୱାରା ରାଜାମାନେ ସାଧ ନ ହୋଇବେ
ଦୁଷ୍ଟ ରାଜାଙ୍କୁ ସଂଗ୍ରାମେ ଜିଣି ନ ପାରିବେ ।
ହେ ହରି ଯେ କାଳେ ମାଦ୍ରୀ ପ୍ରାଣ ବିସର୍ଜିଲେ
ବାଳକ ପୁତ୍ର ଦୁହିଁଙ୍କି ମୋତେ ସମର୍ପିଲେ ।
ତାହାଙ୍କୁ ଦୂତ ପଣେ ମୁଁ ପେଶିବି କେମନ୍ତେ
ସୁକୁମାର ଅଟନ୍ତି ଯେ ପିଲା ବେନିଭ୍ରାତେ ।
ସେ ରାଜୁସିଯାଗ ସଭା ନୋହୁ ପଛେ ମୋର
ତାଙ୍କୁ ପଠାଇ ନ ପାରେ ଆହେ ଚକ୍ରଧର ।
ଜଗନ୍ନାଥ ବୋଇଲେ ଯେ ସାଧୁ ତୋର ଧର୍ମ
କେଉଁ ଯୋଗେ ଗର୍ଭଧାରୀ କଲାକ ଜନମ ।
ଏପରି ବହୁ ପ୍ରଶଂସା କରି ଦେବ ହରି
ବୋଇଲେ ନିଜ ଭାଇକି ଉପେକ୍ଷା ନ କରି ।
ସାବତ ଭାଇଠାରେ ଗୋ ତୋ ଗାରିମା ଗୁଣ
ଅନାଥବନ୍ଧୁ ତୁ ସଦା ଧର୍ମେ ଥାଏ ମନ ।
ପୁନରପି ହରି ତାଙ୍କୁ କହିଲେ ବଚନ
ସାବଧାନେ ଶୁଣ ତୁମ୍ଭେ ଯୁଧିଷ୍ଠି ରାଜନ ।
ପଶ୍ଚିମଦିଗେ ଅଛନ୍ତି ଦୁଷ୍ଟ ରାଜାମାନେ
ତାହାଙ୍କୁ ସାଧ କରିବେ ବୀର ଭୀମସେନ ।
ଉତ୍ତରେ ବସନ୍ତି ମହା ପ୍ରତାପୀ ରାଜନ
ଅର୍ଜ୍ଜୁନକୁ ବୋଲ ସେହୁ କରୁ ନିମନ୍ତ୍ରଣ ।
ପୂର୍ବଦିଗରେ ଅଛନ୍ତି ଯେତେକ ନୃପତି
ଧାର୍ମିକ ବିବେକ ରାଜା ଦୁର୍ବାର ନୁହନ୍ତି ।
ସହଦେବର ବଚନେ ସର୍ବେ ହେବେ ସାଧି
ଦୁଷ୍ଟ ଯେ ହେବ ତାହାର ଶିର ଦେବି ଛେଦି ।
ଦକ୍ଷିଣେ ବସନ୍ତି ଦେବ ଯେତେକ ନୃପତି
ଦେବତା ବ୍ରାହ୍ମଣେ ଭକ୍ତି ଦୁଷ୍ଟ ସେ ନୁହନ୍ତି ।
ଯେ ଅବା ସାଧ ନୋହିବେ ନକୁଳ ବୀରକୁ
ଅବଶ୍ୟ ପ୍ରାଣେ ବିନାଶ କରିବି ତାହାକୁ ।
ଆପଣେ ଶ୍ରୀହରି ଶାର୍ଙ୍ଗୀ ଦେଲେ ଯେ ଭୀମକୁ
ତୁମ୍ଭେ ରାଜା ନିମନ୍ତ୍ରଣେ ଯାଅ ପଶ୍ଚିମକୁ ।
ପଚାଶ ସହସ୍ର ରାଜା ପଶ୍ଚିମର ଦିଗେ
ବିନା ଯୁଦ୍ଧେ ନୁହନ୍ତି ଯେ ସାଧ କେଉଁବାଗେ
ଯେବଣ ରାଜା ତୁମ୍ଭରେ ହୋଇବେ ଅସାଧ୍
ତାର ସୈନ୍ୟ ନାଶି ତାଙ୍କୁ ଆଣିବ ଯେ ବାନ୍ଧି
ବହୁତ ଦୋଷେ ନାଶ ନ କରିବ ନୃପତି
ଏହିପରି ଚାରିଉଣା ଲକ୍ଷେକ ଯୁକତି ।

ଯେତେ ରାଜାଙ୍କୁ ମାରିବ କରିଣ ସମର
ଥାଟ ସୈନ୍ୟ ଆଦି ହେବ ତେତିକି ସ୍ୱର୍ଣ୍ଣର
ଦୁର୍ବାର ଦୁଷ୍ଟ ପ୍ରକୃତି ତୋର ଅଟେ ଭୀମ
ତେଣୁ ରାଜାଙ୍କର ଦୋଷ କରିବୁ ମୋଚନ
ଆଶ୍ୱିନ ଶୁକଳପକ୍ଷ ଦଶମୀର ଦିନ
ଶ୍ରବଣା ନକ୍ଷତ୍ର ଚନ୍ଦ୍ରବାର ବିଦ୍ୟମାନ ।
ଧୃତି ନାମରେ ଯୋଗ ଯେ ତୈତିଳ କରଣ
ତାର ଚନ୍ଦ୍ର ସର୍ବ ଶୁଭ ଅମୃତ ଘଟନ ।
ସପତମେ ଶନି ଏକାଦଶେ ବୃହସ୍ପତି
ସ୍ୱାତୀତୁଳା ରାଶିକି ଯେ ଶୁଭଯୋଗ ପ୍ରୀତି ।
ଦିଗ ଅନୁକୂଳ ଅଟେ ମାହେନ୍ଦ୍ରର ଲଗ୍ନେ
ଉତ୍ତରରେ ମାହେଶ୍ୱରୀ ମକର ବାହନେ ।
ମାହେନ୍ଦ୍ର ବେଳକୁ ଜାଣି କଲେ ଅନୁକୂଳ
ପଶ୍ଚିମଦିଗେ ମାରୁତି ସର୍ବ ଯେ ମଙ୍ଗଳ ।
ଭଲ ବେଳ ଜାଣି ଯାତ୍ରାକଲେ ଦେବ ଭୀମେ
ଇନ୍ଦ୍ରପ୍ରସ୍ଥ ଅନୁକୂଳ କରିଲେ ପଶ୍ଚିମେ ।
ଜୟ ଶଙ୍ଖଧ୍ୱନି ଆଉ ବିପ୍ରେ ବେଦଧ୍ୱନି
ଗ୍ରହପୁତ୍ରେ ଯେ ମଙ୍ଗଳଅଷ୍ଟକ ବଖାଣି ।
ସହସ୍ରେକ ରଥ ଆଉ ଚାରିସସ୍ର ରଥୀ
ଅଇବ୍ରତ ଅଶ୍ୱ ଦଶକ୍ଷଉଣୀ ପଦାତି ।
ଐବ୍ରତେ ବୀର କାହାଳୀ ଐବ୍ରତେ ଦାଉଣ୍ଡି
ଅଷ୍ଟରତ୍ନେ ନିର୍ମିତ ଯେ ଗଜଦନ୍ତ ମଣ୍ଡି ।
ପାଟଛତ୍ରରେ ଆଲମ୍ୱ ଦେବା ଝାଲ ଛତା
ତିନିକୋଣ ମାଡ଼ି ଚଳେ ସୈନ୍ୟ ଅଗଣନ୍ତା ।
ଯମୁନାନଦୀକି ପାର ହେଲେ ସୁବିଧାନେ
ଗୋଡ଼ାଇ ଯୁଝାନ୍ତି ହରି ଗରୁଡ଼ ବାହନେ ।
ହେ ଭୀମ ରାଜ୍ୟ ନ ପଶୁ ପେଶିବୁ ଯେ ଚାର
ଦୂତ ବରଗି ସତତ ଦେବୁ ତୁ ଖବର ।
ଜରାସନ୍ଧ ବଧ କଲୁ ତୁ ପଶ୍ଚିମ ଦିଗେ
ତୋତେ ସର୍ବରାଜା ସାଧ ହେବେ ଅତିବେଗେ
ଆହୁତିରେ ପକାନ୍ତା ସେ କଲୁ ତୁ ରକ୍ଷଣ
ପଚାଶ ସହସ୍ର ରାଜା ସାଧ କରିଆଣ ।
ମକର ଶୁକଳ ପକ୍ଷ ଅର୍କବାର ତିଥି
ସେ ଦିନ ରାଜୁସିଯାଗ ପ୍ରଥମ ଆହୁତି ।
ରାଜାନ୍ତ ଘେନି ଆସିବୁ ତୁ ନଉ ଦିବସେ
ନୋହିଲେ ଚକ୍ରେ ଛେଦିବି ଯୁଧିଷ୍ଠି ଆଦେଶେ ।
ରାଜାମାନଙ୍କର ଥିବ ଯେତେକ ସଇନି
ସମ୍ଭାରେ ଆସିବେ ଦେଖା ଦରଶନୀ ଘେନି ।
ଯଦ୍ୟପି ରାଜାଏ ହେବେ ଦୋଷକାରୀ ତୋତେ
ତାଙ୍କ ଦୋଷ ନ ଧରିବୁ କାର୍ଯ୍ୟର ନିମନ୍ତେ ।
ଅନେକ ଦୋଷ ଯଦ୍ୟପି କରିବେ ନୃପତି
ତାହା ସହିକରି ବାବୁ ଆଣିବୁ ନିମନ୍ତି ।
ଏହା କହି ଭୀମେ ମେଲାଣି କରିଲେ ଶ୍ରୀହରି
ଧାତିକାରେ ଅର୍ଜ୍ଜୁନଙ୍କୁ ପାଶକୁ ହକାରି
ଉତ୍ତର ଦିଗକୁ ତୁମ୍ଭେ ଯାଅ ସଜ ହୋଇ
ରାଜାମାନଙ୍କୁ ନିମନ୍ତି ଆଣ ବେଗେ ଯାଇ ।
ଅଇବ୍ରତ ରଥୀ ଦୁଇ ଅଇବ୍ରତ ହସ୍ତୀ
ପାଞ୍ଚ ଅଇବ୍ରତ ଅଶ୍ୱ ଦ୍ୱିକୋଟି ପଦାତି ।
ଲକ୍ଷେକ ଯେ ପାଟଛତ୍ର ଆଲମ୍ୱ ଦ୍ୱିଲକ୍ଷ
ଉଦଣ୍ଡ ବହେ ମୟୂରିଝାଲି ବେନିଲକ୍ଷ ।
ବୀରତୁର ବେନିଲକ୍ଷ ବିଜୟ ଦାଉଣ୍ଡି
ଅଷ୍ଟରତ୍ନ ଆଭରଣେ ଅଶ୍ୱ ଗଜ ମଣ୍ଡି ।
ଦଧିବାମନ ସୁମରି ଚଳେ ଧନଞ୍ଜୟେ
ସର୍ବମଙ୍ଗଳା ମାତଙ୍ଗୀ ତାଙ୍କୁ କରି ଲୟେ ।
ନଉଦିବସକୁ କଣ୍ଟ ଅଟେ ସବୁଙ୍କର
ଯଜ୍ଞ ହେବ ମାଘ ଶୁକ୍ଳ ଆଦିତ୍ୟ ବାସର ।
ସେ ଦିନ ରାଜାଙ୍କୁ ଆଣି କରାଅ ଦର୍ଶନ
କ୍ଷତ୍ରିୟ ଜିଣନ୍ତା ତୁହି ପାଣ୍ଡବ ଅର୍ଜ୍ଜୁନ ।
ଉତ୍ତର କୋଶଳେ ଅଛି ଏକ ବଡ଼ ଦୁଷ୍ଟ
ସେ ରାଜାର ନାମ ଶୁଣ ଅଟେ ଜମାଘୃଷ୍ଟ ।
ସେ ରାଜା ପ୍ରାଗଦେଶରେ ଅଟେ ଅଧିକାରୀ
ତର୍ପଣେ ତୋଷିଲା ସେହି ଗଗନବିହାରୀ ।
ଲେଖିଲେ ପୋଛଇ ସେହି ଯାର ନାମ ଧରି
ବେନି ଖଣ୍ଡ ହୋଇ ଛିଡ଼େ କଟିଲାର ପରି ।
ସମାଧାନ କରିବାକୁ ବୋଲିବୁ ବଚନ
ତାହାଙ୍କୁ ଜିଣିଲେ ସାଧ ହେବେ ରାଜାଗଣ ।
କ୍ଷତ୍ରିୟ ପଣରେ ତୁହି ଅଟୁ ଜଗଜ୍ଜିତା
ମୁହିଁ ତୋତେ ଅର୍ଜ୍ଜୁନରେ କେତେ ତିଆରନ୍ତା
କାର୍ତ୍ତିକ କୃଷ୍ଣପକ୍ଷ ବୁଧବାସର ଚଉଠି
ରୋହିଣୀ ନକ୍ଷତ୍ରେ ଅନୁକୂଳ ଯେ କିରୀଟୀ ।
ବିଘ୍ନରାଜ ସୁମରି ହେ କର ଅନୁକୂଳ
ଚଳ ଅର୍ଜ୍ଜୁନ ତୁ ଏବେ ମାହେନ୍ଦ୍ରର ବେଳ ।
ନାରାୟଣଙ୍କ ଆଜ୍ଞାରେ ଶୁଭଲଗ୍ନ ଘେନି
ସୈନ୍ୟସହ ବାହାରିଲେ ବୀର ଫାଲଗୁନି ।
ସହସ୍ରେକ ବୀରତୂର ଟମକ ଯେ ବାଜେ
ଉତ୍ତରଦିଗକୁ ପାର୍ଥ କଲେ ଦିଗ ବିଜେ ।
ନନ୍ଦିଘୋଷ ରଥକୁ ଯେ ଜଗନ୍ନାଥ ସାଜି
ବାଛି ବାଛି ଯୋଚିଲେ ସେ ଆଣି ଚାର ବାଜୀ
ଅଶ୍ୱଙ୍କର ଟାପୁ ଶବ୍ଦେ କମ୍ପେ ସୁରଇନ୍ଦ୍ର
ଆକାଶେ ଥାଇ ଦେଖିଲେ ବୃନ୍ଦାରକ ବୃନ୍ଦ ।

ମାତଳିକି ରାଇ ଆଜ୍ଞା ଦେଲେ ସହସ୍ରାକ୍ଷ
ବସନ୍ତ ସାରଥି ଅଟେ ତୋହର ଯେ ବଶ ।
ତାହାକୁ ରାଇଣ ବୋଲ ଯାଉ ବେଗେ ସେହି
ଅର୍ଜୁନର ରଥ ବାହୁ ସେ ସାରଥି ହୋଇ ।
ପିତୃଠାରୁ ଆଜ୍ଞା ପାଇ ମାତଳି ସନ୍ତତି
ବେଗେ ମର୍ତ୍ତ୍ୟକୁ ଅଇଲା ବସନ୍ତ ସାରଥି ।
ମର୍ତ୍ତ୍ୟଭୁବନେ ପ୍ରୟାଗ ବେଣୀ ବଟତଳ
ଅରଜୁନକୁ ଭେଟିଲା ମାତଳିର ବାଳ ।
ଦେଖିକରି ଧନଞ୍ଜୟ ବସନ୍ତ ସାରଥି
ଅଶ୍ୱବାଗ ତାର ହାତେ ଦେଲେକ ଝଟତି ।
ବାବୁ ଚଳା ତୁରଙ୍ଗମ ପବନ ସମାନ
ନଉଦିନେ ନିମନ୍ତ୍ରିବି ସକଳ ରାଜନ ।
ଯୁଧିଷ୍ଠି ପାଶେ ମିଳିଲେ ନନ୍ଦବାଳ ଯାଇ
ନକୁଳକୁ ଆଜ୍ଞାଦେଲେ ପାଶେ ହକରାଇ ।
ତୁ ନକୁଳ ଯାଅ ଏବେ ଦକ୍ଷିଣର ଦିଗେ
ଏକ ଊଣା ସାତସସ୍ର ରାଜା ଆଣ ବେଗେ ।
ରାଜାମାନଙ୍କୁ ଆଣିବୁ ନଉଦିନ ମଧ୍ୟେ
ରାଜାଙ୍କୁ ଛାଡ଼ି ହାରିବୁ ସୈନ୍ୟଙ୍କୁ ଯେ ଯୁଦ୍ଧେ
ଦୁର୍ଭାର ହୋଇବ ଯେବେ କେହି ଦଣ୍ଡଧାରୀ
ସୈନ୍ୟବଧି ଆଣିବୁ ଯେ ତାକୁ ବାନ୍ଧିକରି ।
ଯଦ୍ୟପି ବଧ କରିବୁ ତୁ ଯେଉଁ ରାଜାକୁ
ରାଜସୂ ଯଜ୍ଞ ନୋହିବ କହିଲି ତୁମ୍ଭଙ୍କୁ ।
ଦକ୍ଷିଣ କୋଶଳେ ଅଛି ଭୂମନ୍ୟୁ ନୃପତି
ଦୁର୍ଯ୍ୟୋଧନ ଶ୍ୱଶୁର ତା ଝିଅ ଭାନୁମତୀ ।
ପ୍ରଥମେ ପ୍ରବେଶ ହେବୁ ତାହାର ଭୁବନେ
ତାକୁ ନିମନ୍ତ୍ରିଲେ ସର୍ବେ ଆସିବେ ରାଜନେ ।
ଅଇବ୍ରତ ରଥ ପାଞ୍ଚ ଅଇବ୍ରତ ହସ୍ତୀ
ଦଶ ଅଇବ୍ରତ ଅଶ୍ୱ ତେରଲକ୍ଷ ରଥୀ ।
ଲକ୍ଷେକ ପାଟଛତ୍ର ଯେ ଲକ୍ଷେ ବାଦ୍ୟକାର
ମାହେନ୍ଦ୍ର ବେଳେ ନକୁଳ ଘେନିଣ ବାହାର ।
ମାଦ୍ରୀର ନନ୍ଦନ ଏବେ ଚଳ ତୁ ହରଷେ
ମକର ଶୁକଳ ତ୍ରୟୋଦଶୀର ଦିବସେ ।
ସେ ଦିନ ଆସି ପ୍ରବେଶ ହୋଇବୁ ବହନ
ସଭାସ୍ଥାନେ ଆସିବେଟି ଯେହ୍ନେ ରାଜାଗଣ ।
ମୋହର ପ୍ରାକର୍ମ ତୁହି ଜାଣିଛୁ ତ ଭଲେ
ଚକ୍ରଘାତେ ନାଶଯିବୁ ସେଦିନ ନଇଲେ ।
ଆପଣେ ଶ୍ରୀଜଗନ୍ନାଥ ରଥ ଦେଲେ ସାଜି
ବାଛି ଯୋଚିଦେଲେ ଭଲ ଭଲ ଚାରି ବାଜୀ
କାର୍ତ୍ତିକ ଶୁକଳ ତ୍ରୟୋଦଶୀ ଯେ ଚନ୍ଦ୍ରବାର
ଅଶ୍ୱିନୀ ନକ୍ଷତ୍ର ବେଳ ଦେଢ଼ ଯେ ପ୍ରହର ।

ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
ଶୁଭ ଅନୁକୂଳ କଲେ ଦକ୍ଷିଣର ଦିଗ ।
ଅନେକ ବ୍ରାହ୍ମଣ ତହିଁ କଲେ ବେଦଧ୍ୱନି
ହୁଳହୁଳି ଦିଅନ୍ତି ଯେ ସକଳ କାମିନୀ ।
ମାଦ୍ରୀନନ୍ଦନ ଦକ୍ଷିଣ ଦିଗେ କଲେ ବିଜେ
ବାରୁଣାବନ୍ତ ପର୍ଯ୍ୟନ୍ତ ଗଲେ ଦେବରାଜେ ।
ସୁବିଧାନେ ନକୁଳକୁ ସକଳ ତିଆରି
ଖଗେଶ୍ୱର ବାହନରେ ବାହୁଡ଼ିଲେ ହରି ।
ସହଦେବକୁ ପାଶରେ ବସାଇ ଅଚ୍ୟୁତ
ପୂର୍ବଦିଗେ ଯାଅ ଶାଢ଼ୀ ଦେଲେ ଜଗନ୍ନାଥ ।
ମନ୍ତ୍ରୀ ଚୂଡ଼ାମଣି ସର୍ବଗୁଣେ ତୁ କୁଶଳ
ମାହେନ୍ଦ୍ର ଯୋଗ ଘେନିଣ ସୈନ୍ୟ ସାଜି ଚଳ
ସହସ୍ରେକ ରଥ ଦୁଇସସ୍ର ମତ୍ତନାଗ
ବାଛି ବାଛି ସଙ୍ଗେ ନିଅ ଲକ୍ଷେକ ତୁରଗ ।
ଟମକ ନିଶାଣ ଆଦି ବହୁତର ବାଜେ
ଶୁଭଯୋଗେ ସହଦେବ ପୂର୍ବ ଦିଗେ ବିଜେ ।
ଶ୍ରୀହରି ବୋଇଲେ ଶୁଣ ସହଦେବ ମନ୍ତ୍ରୀ
ଏକଊଣା ତିନିଶତ ପୂର୍ବର ନୃପତି ।
ଧାର୍ମିକ ଜ୍ଞାନୀ ପଣ୍ଡିତ ସେହି ସର୍ବରାଜା
ତୋତେ ଦେଖିଣ କରିବେ ନିଶ୍ଚେ ପାଦ ପୂଜା ।
ସକଳ ରାଜା ଆସିବେ ଯେଉଁ ପରକାରେ .
ସେମାନଙ୍କୁ ତୁ ଆଣିବୁ ବୁଦ୍ଧି କୌଶଳରେ ।
ଚଳଇ ସେ ସହଦେବ କୃଷ୍ଣଙ୍କ ବଚନେ
ପୂର୍ବ ଦିଗର ରାଜାଙ୍କୁ କରି ନିମନ୍ତ୍ରଣେ ।
ଚାରିଦିଗକୁ ଯେ ଚାରି ଭାଇଙ୍କୁ ପଠାଇ
ଅନେକ ସାନନ୍ଦ ହେଲେ ଦେବ ଯଦୁସାଇଁ ।
ଯୁଧିଷ୍ଠି ପାଶେ ମିଳିଲେ ଯାଇ ଜନାର୍ଦ୍ଦନ
ନଉ ଦିବସେ ଆସିବେ ଏଥେ ରାଜାଗଣ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ହୋ ଅନନ୍ତ
ରାଜାଙ୍କ ବିଶ୍ରାମ ଘର ହୋଇବ କେମନ୍ତ ।
ଖରା ଜାକର କୁହୁଡ଼ି ବତଖା ପାଇଲେ
ପିତା ପାତକ ଯିବ କି ଅଘଶାନ୍ତି ହେଲେ ।
ଯୁଧିଷ୍ଠି ଦେବଙ୍କୁ ସଙ୍ଗେ ଘେନି ଦେବରାଜେ
ଦୁଇଜଣ ଇନ୍ଦ୍ରପ୍ରସ୍ଥେ କଲେ ଯାଇ ବିଜେ ।
ପରବେଶ ନାରାୟଣ ଯମୁନାର କୂଳେ
ଗଠନ ଭୁବନମାନ ସର୍ବ ଦେଖାଇଲେ ।
ଗଠନ ବିନ୍ଧାଣି ଲକ୍ଷ ଲକ୍ଷ ଲକ୍ଷ ଛନ୍ତି ଲାଗି
ଦିବାରାତ୍ର ଅବିଶ୍ରାନ୍ତ ନିର୍ମାଣନ୍ତି ବେଗି ।
ବିବର୍ତ୍ତନ ରାଜା ଦାରୁ ନାବରେ ପୂରାଇ
ପାଷାଣ ସହିତ ଆଣି ଦିଅଇ ଯୋଗାଇ ।

ଅଶୀଲକ୍ଷ ଯୋଦ୍ଧା ଘେନି କିରାତାଧିପତି
ବାରୁଣାବନ୍ତରେ ନେଇ ବହିଣ ପକାନ୍ତି ।
ସାତଲକ୍ଷ ଯେ ପନ୍ଦର ମେବଚ୍ଛ ବିନ୍ଧାଣି
ନବରମାନ ଘଟଣ ସମସ୍ତ ନିର୍ମାଣି ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ସେ ମାନଗୋବିନ୍ଦ
ଯୁଧିଷ୍ଠିଦେବ ଦେଖିଣ ମନରେ ସାନନ୍ଦ ।
କର୍ଣ୍ଣ ଶକୁନି ଦେଖିଣ ନ ସ୍ଫୁରଇ କିଛି
ଦେବଙ୍କୁ ଦୁର୍ଲ୍ଲଭ ଯାହା ଭିଆଣ ହୋଇଛି॥
ତିରିଶ ମେବଚ୍ଛ ସୂପକାର ବିଦ୍ୟମାନ
କାରିଗର ମାନଙ୍କୁ ସେ ଦିଅନ୍ତି ଭୋଜନ ।
ଭୀଷ୍ମ ବିଚାର କରନ୍ତି ଏହାସବୁ ଚାହିଁ
ବ୍ୟଞ୍ଜନ ତଣ୍ଡୁଳ ହରି ସଞ୍ଚିଥିଲୁ କାହିଁ ।
ଜୟ ତୁ ପରମେଶ୍ୱର ଅନାଥର ବନ୍ଧୁ
ଜୟ ତୁ ପରମେଶ୍ୱର କରୁଣାର ସିନ୍ଧୁ ।
ଜୟ ତୁ ପରମେଶ୍ୱର ପୃଥ୍ୱୀଜନ ଚିନ୍ତା
ଜୟ ତୁ ପରମେଶ୍ୱର ସଂସାର ପାଳନ୍ତା ।
ଜୟ ତୁ ପରମେଶ୍ୱର ତୁହି ସିଦ୍ଧଯୋଗୀ
ଜୟ ତୁ ପରମେଶ୍ୱର ତ୍ରୈଲୋକ୍ୟର ଭୋଗୀ
ଜୟ ତୁ ପରମେଶ୍ୱର ଭକ୍ତିଭାବେ ବଶ
ଜୟ ତୁ ପରମେଶ୍ୱର ହେଉ ତାର ଦାସ ।
ଜୟ ତୁ ପରମେଶ୍ୱର ତୁହି ନିରାକୁଳ
ଜୟ ତୁ ପରମେଶ୍ୱର ବାସୁଦେବ ବାଳ ।
ଜୟ ତୁ ପରମେଶ୍ୱର ଗରବ ବିଧ୍ୱଂସା
ଜୟ ତୁ ପରମେଶ୍ୱର ନାଶୁ କେଶୀ କଂସା ।
ଜୟ ତୁ ପରମେଶ୍ୱର ପରଦୁଃଖେ ଦୁଃଖୀ
ଜୟ ତୁ ପରମେଶ୍ୱର ଆଦିଅନ୍ତ ସାକ୍ଷୀ ।
ଜୟ ତୁ ପରମେଶ୍ୱର ଯୋଗୀଜନ ହୃଦେ
ଜୟ ତୁ ପରମେଶ୍ୱର ବସୁ ତୁ ସାନନ୍ଦେ ।
ଜୟ ତୁ ପରମେଶ୍ୱର କିଶୋର ମୂରତି
ସର୍ବ ଚିନ୍ତାମଣି ନାଥ ଫେଡ଼ ମୋ ଦୁର୍ଗତି ।
ଯାହାକୁ ପ୍ରସନ୍ନ ସ୍ୱାମୀ ନାହିଁ ତାର ଚିନ୍ତା
ଅଣାକାର ପୁରୁଷ ତୁ ଶକ୍ତି ଗତିଦାତା ।
କିଞ୍ଚିତେ ପ୍ରସନ୍ନ ସ୍ୱାମୀ ହେଉ ତୁ ଯାହାରେ
ମହାଜନ ବୋଲାଏ ସେ ସଂସାର ମଧ୍ୟରେ ।
ତୁହି ଦେବ ତ୍ରଇଲୋକ୍ୟପୁର ଚିନ୍ତାମଣି
ଶମନ ଗର୍ବ ଗଞ୍ଜନ ଦେବ ଚକ୍ରପାଣି ।
କେଶୀ କଂସ ନିସୂଦନ ଆହେ ହୃଷୀକେଶ
ରଖିଥାଅ ଭୃତ୍ୟପଣେ ଏ ଶାରଳା ଦାସ ।



## ଯଜ୍ଞଶାଳା ଓ ସଭାଗୃହ, ରାଜାସହ ସୈନ୍ୟ ଗଜ, ଅଶ୍ୱଙ୍କର ଗୃହନିର୍ମାଣ ଓ ରାଜସୂୟ ଯଜ୍ଞର ଆୟୋଜନ

ବଦନ୍ତି ଯେ ମହାମୁନି ଶୁଣ ହେ ରାଜନ
ହରିଙ୍କ ଆଜ୍ଞାରେ ହୁଏ ସର୍ବ କାର୍ଯ୍ୟମାନ ।
ଗଙ୍ଗା ଯମୁନା ଉଭୟ ନଦୀ ମଧ୍ୟସ୍ଥାନ
ମହାକ୍ଷେତ୍ର ବୋଲି ଖ୍ୟାତ ଦ୍ୱାଦଶ ଯୋଜନ ।
ଚାରିକ୍ଷେତ୍ର ବେଢ଼ିଛନ୍ତି ତାର ଚାରିଦିଗେ
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଜୟନ୍ତାର ଭାଗେ ।
ଇନ୍ଦ୍ରପ୍ରସ୍ଥ ଦ୍ରୁମଲତା ଗିରିପରେ ବସି
ଯୁଧିଷ୍ଠି ଦେବ ସ୍ମରିଲେ ବ୍ୟାସ ମହାଋଷି ।
ଧ୍ୟାନବଳରେ ମହର୍ଷି ଏକଥା ଜାଣିଲେ
ଷାଠିସସ୍ର ଶିଷ୍ୟ ଘେନି ତହୁଁ ବାହାରିଲେ ।
ଇନ୍ଦ୍ରପ୍ରସ୍ଥରେ ବିଜୟ ପାଣ୍ଡବ କୌରବେ
ଆସ୍ଥାନରେ ଦ୍ରୋଣ କର୍ଣ୍ଣ ଶକୁନି ଗାଙ୍ଗବେ ।
ପ୍ରବେଶିଲେ ବ୍ରହ୍ମଋଷି ଏହିପରି ବେଳେ
ଆସ୍ଥାନକୁ ତ୍ୟାଗକରି ଉଠିଲେ ସକଳେ ।
ଶ୍ରୀକରେ ରତ୍ନଝରିକି ଘେନି ଧର୍ମରାଜା
ବେଦବ୍ୟାସଙ୍କ ଚରଣେ କଲେ ଦିବ୍ୟପୂଜା ।
ସର୍ବକୁଶଳ ପୁଚ୍ଛିଲେ ତାଙ୍କୁ ତପୋନିଷ୍ଠୀ
ସମସ୍ତ କୁଶଳ ବୋଲି ବୋଇଲେ ଯୁଧିଷ୍ଠି ।
କହିଲେକ ଯୁଧିଷ୍ଠିର ଶୁଣ ବ୍ରହ୍ମଋଷି
ପିତା ହୋଇଛନ୍ତି ମୋର ବ୍ରହ୍ମହତ୍ୟା ଦୋଷୀ
ମୁଁ ବୋଇଲି ଭାଇ ଘେନି ଯିବି ତୀର୍ଥ କରି
ରାଜୁସିଯଜ୍ଞକୁ ଆଜ୍ଞା ଦେଲେକ ଶ୍ରୀହରି ।
ରାଜସୂୟ ଯଜ୍ଞଗୋଟି ହୋଇବ କେମନ୍ତ
ଅଦେଖା ଅଶୁଣା ଆହେ ଶୁଣ ତପୋବନ୍ତ ।
ବ୍ୟାସ ବୋଇଲେ ତୋତେ ତ ସାହା ଚକ୍ରଧର
ରାଜସୂୟ ଯଜ୍ଞସଭା କିଞ୍ଚିତ ମାତର ।
ବାବୁ ଯେତେବେଳେ ତୁମ୍ଭେ ବଧକଲ ଜରା
ଲକ୍ଷେ ରାଜା ହୋଇଲେଣି ତୁମ୍ଭ ଭୃତ୍ୟପରା ।
ସୁମରିବୁ ଯେତେବେଳେ ଦେବତାମାନଙ୍କୁ
ସେହିକ୍ଷଣି ଆସିବେ ସେ ତୋହର ପାଶକୁ ।
ଖାଣ୍ଡବ ବନକୁ ଦହି ଦେଇଣ ଔଷଧି
ପାର୍ଥ ଖଣ୍ଡିଲା ଅଗ୍ନିର ଲୁଦୁବୁନ୍ଦ ବ୍ୟାଧି ।
ଅଗ୍ନି ଦେବତା ତୋତେ ଯେ ପ୍ରସନ୍ନ ହୋଇଛି
ପୁଷ୍କର ଦେବତା ତୋତେ ସାହାପକ୍ଷ ଅଛି ।
ଆବର ସାହା ଅଟନ୍ତି ଦେବ ନାରାୟଣ
ରାଜୁସିଯଜ୍ଞକୁ ବେଗେ କର ଆରୋପଣ ।

ବ୍ୟାସେ ନେଇ ଦେଖାଇଲେ ଯଜ୍ଞଶାଳ ହରି
ତିଳ ବୁଣାଇଲେ ତହିଁ ଶୂଳେ ଭୂମି ଚିରି ।
ଯଜ୍ଞକୁ ସଞ୍ଚିତ କଲେ ତାହା ବ୍ରହ୍ମବେତ୍ତା
ଯାଗଶାଳ ଆୟତନ କଲେ ନିର୍ଣ୍ଣୟତା ।
ରାଜାଙ୍କ ନବର ଅଶ୍ୱଶାଳ ଗଜଶାଳ
ଭାଗମାପ କରିଲେ ସେ ନେଇକରି ନଳ ।
ବାଂଶଦଣ୍ଡେ ମାପିଲେ ଯେ ସେହି ନଳକାଠି
ପଞ୍ଚନଳ ଆୟତନ ଯେ ବଖରା ଗୋଟି ।
ବିଶାଶଏ ବଖରା ଏ ଚାଳେକ ନିର୍ମାଣ
କାନ୍ଥପିଠି ସର୍ବ ହେଲା ପାଷାଣ ଘଟଣ ।
ଯମୁନା ନଦୀ ଦକ୍ଷିଣ ଭାଗରେ ଯେ କୂଳ
ଏତେ ଆୟତନ ତହିଁ ହେଲା ଯଜ୍ଞଶାଳ ।
ସାତପଦ୍ମ ବିଶାଶଏ ଯୋଜନ ମର୍ଭୂତ
ଯାଗଶାଳାମାନ ଏତେ ହୋଇଲା ନିର୍ମିତ ।
ଖଞ୍ଜନ ନାମେଣ ମଧୁବନ ବିଶ୍ୱକର୍ମା
ଏହାର ଉପର ବଂଶେ ଗଢ଼ିଲେ ସୁଧର୍ମା ।
ତାକୁ ରାଇ ଆଜ୍ଞାଦେଲେ ବ୍ୟାସ ମହାଯତି
ଚାରିଯୁଗେ ତୁମ୍ଭ ବଂଶେ ସଭା ନିର୍ମାଣନ୍ତି ।
ଏ ସ୍ଥାନେ ବିଜେ କରିବେ ଜାଣ ଲକ୍ଷେରାୟେ
ସୁଧର୍ମା ସ୍ୱରୂପ ସଭା ନିର୍ମାଣ ଗୋଟିଏ ।
ଖଞ୍ଜନ ବୋଇଲା ଆଜ୍ଞା ଦେଲେ ଚକ୍ରପାଣି
ଅଳକା ପ୍ରାୟେକ ଛାୟା ମଣ୍ଡପ ନିର୍ମାଣି ।
ଘରମାନ ଗଠନ ମୁଁ କରିବି ଏ ସ୍ଥାନେ
ଦ୍ୱିତୀ ଅମର ସମାନେ ଦେଖିବେ ତା ଜନେ ।
ଆଜ୍ଞା ପ୍ରମାଣରେ ଯହୁଁ ଚଳିଲେ ଖଞ୍ଜନ
କାଷ୍ଠ ପାଷାଣ ଆଦିରେ କରିଲେ ସୃଜନ ।
ଚଉଷଠି କାଠିରେ ଯେ ବଖରାଏ ବୋଲି
ବଖରା ଏ ବସାଇଲେ ଏକ ଏକ ଚୁଲ୍ଲୀ ।
ଚୁଲ୍ଲୀକରେ ଅଛି ଅଷ୍ଟୋତ୍ତରଶତ ପଖା
ଲକ୍ଷେ ରାଜାଙ୍କର ସୈନ୍ୟ କେ କରିବ ଲେଖା ।
ଏକବିଂଶ କାଠିରେ ଯେ ଅଟଇ କାଠିଏ
ଏକବିଂଶ ଦଣ୍ଡରେ ଯେ ବଖରାଏ ହୁଏ ।
ଏକଘର ଗୋଟିକରେ ବଖରା ଯେ ଶଏ
ଏ ବିଧି ପ୍ରକାରେ ତହିଁ ଘର ତୋଳାହୋଏ ।
ନପଦ୍ମ ଅଶୀ ସାଗର ହେଲା ଛତ୍ରଘର
ପୁଣି ଛତିଶ ନିଯୋଗ ରହିବେ ତହିଁର ।
ବତିଶଲକ୍ଷ ହୋଇଲା କୁରାଳର ଶାଳ
ମୃତ୍ତିକା ହାଣ୍ଡି ଗଢ଼ିଣ କରିବେ ଏ ଠୁଳ ।
କଣୟ ଗିରି ନିକଟୁ ନଦୀ ଏକଗୋଟି
ମେଖଳି ଗଙ୍ଗାରୁ ସେହି ଆସୁଅଛି ଘୋଟି ।

ସେ ନଦୀର କୂଳେ ବିଶାଶତେ ପାନ୍ଥଶାଳ
ବ୍ରାହ୍ମଣମାନଙ୍କୁ ସେହି ବଡ଼ଇ ବୃଷାଳ ।
ସହସ୍ର ଘର ବାରୁଣାବନ୍ତରେ ନିର୍ମାଣି
ଏଥି ଶାଳ କରିବେ ଯେ ତାମ୍ରର ବିନ୍ଧାଣି ।
ତମ୍ବାର ଯୋଗାଡ଼ମାନ କରିବେ ନିର୍ମିତ
ଏମାନେ ଯେ ଲାଗିଛନ୍ତି ପଞ୍ଚାଶ ମର୍ଭୂତ ।
ପାଞ୍ଚଲକ୍ଷ ଘର ହେଲା ତହୁଁ ଝିମିଶାଳ
ଲୌହକାମ ଗଠନ ଯେ କରିବେ ସକଳ ।
ଅସିପତ୍ର ଧରାକୁ ଯେ ତେରଲକ୍ଷ ଘର
ବୁଲାଇ ଶାଣ ଦିଅନ୍ତି ଅସି ତୀକ୍ଷ୍ଣଧାର ।
ଚୌରାଶୀ ସହସ୍ର ଘର ହେଲା ଯେ ତହିଁକି
ସ୍ୱର୍ଣ୍ଣ କାମ ହୁଏ ତହିଁ ଅଷ୍ଟରତ୍ନ ଯୋଖି ।
ତାଡ଼ ଝୁମ୍ପା ସରଳ ଯେ ବାହୁଟି କଙ୍କଣ
ନୂପୁର ମୁକୁଟ ଆଉ ହୃଦର ଭୂଷଣ ।
ବୀରବଲୀ କୁଣ୍ଡଳ ଯେ ତାଡ଼ ବିଦ ମୁଦି
ଅଷ୍ଟରତ୍ନ ଖଞ୍ଜା ହୁଏ ଯେଉଁପରି ବିଧି ।
ଥାଳି ତାଟିଆ ଗିଲାସ ଝରି ଆଦିକରି
ପିଢ଼ା ସିଂହାସନ ଖଟ ଆଉ ଆଲମାରି ।
ସୁବର୍ଣ୍ଣ ନଉତିମାନ କରନ୍ତି ନିର୍ମାଣ
ଏହା ଗଢ଼ିଣ କରନ୍ତି ନାନା କୋଟିକାମ ।
ଚାଳିଶ ସାଗର ସୂଚୀ କର୍ମର ବିନ୍ଧାଣି
ଯାଙ୍କପାଇଁ ଘରମାନ ନିର୍ମାଣିଲେ ସ୍ୱାମୀ ।
ଶେଯ ମୁଚୁଲା ହଂସୁଲି ତୁଳିକା ସୁପାତି
ଏହି ଯୋଗାଡ଼ କରିଲେ ସେଠାରେ ଶ୍ରୀପତି ।
ରତ୍ନମାନଙ୍କରେ ସବୁ ଜଡ଼ଉ କରାଇ
ପରିଧାନ ପିନ୍ଧାମାନ ରଖିଲେ ଖଞ୍ଜାଇ ।
ବ୍ୟାସଙ୍କୁ ଘେନିଣ ତହିଁ ଦେବ ଚକ୍ରପାଣି
ସକଳ ଦେଖାନ୍ତି ନେଇ କରିଣ ଭ୍ରମଣି ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣାକୁ ଛାଡ଼ି
ବସିଲେ ଯେ ଶାଳମାନ ନଦୀକୂଳେ ମାଡ଼ି ।
ଘଟଣାମାନ କଳନା ନ ଯାଇ ଅଲେଖା
ରାଜାମାନେ ଆସିକରି ଦିଅନ୍ତି ଯେ ଦେଖା ।
କାର୍ତ୍ତିକେ ବୁଣିଲେ ତିଳ ମାଘମାସେ ଫଳେ
ଆପଣେ ବ୍ୟାସେ ତୋଳିଲେ ଥାଇ ଯଜ୍ଞଶାଳେ
ଏ ପାଞ୍ଚ ରାଜ୍ୟରେ ଥିଲା ଯେତେ ଧାନ ସଞ୍ଜା
ତାହା ତଣ୍ଡୁଳ କରିଣ ଯୋଗାଅନ୍ତି ପ୍ରଜା ।
ଦ୍ୱାପରରେ ନିରିମାଣ ଭୂମି ଏକ ବାଟି
ବାଟିକେ ଦେବ ତଣ୍ଡୁଳ ଏକ ଯେ ପଉଟି ।
ଏହିପରି ଭିଆଇଲା ସୁମନ୍ତ୍ରୀ ଶକୁନି
ସାଧୁ ମନ୍ତ୍ରୀ ବୋଲିକରି ଉଠିଲାକ ଧ୍ୱନି ।

ଅଶୀସସ୍ର ମାପୁଣିଆମାନଙ୍କୁ ସେ ଘେନି
ଇନ୍ଦ୍ରପ୍ରସ୍ଥରୁ ତଣ୍ଡୁଳ ଅଣାଇ ଶକୁନି ।
ମାଟିକାମ କରିଣ ଯେ ଦଶସସ୍ର ଘର
ତଣ୍ଡୁଳମାନ ପୂରାଇ ତହିଁ ନିରନ୍ତର ।
ଯେତେ ଲୋକ ଲାଗିଛନ୍ତି ସେ ବିନ୍ଧାଣକାରୀ
ରାନ୍ଧଣା କରିଣ ତାଙ୍କୁ ଦ୍ୟନ୍ତି ତୃପ୍ତ କରି ।
ବାହାର ରୋଷାଇଘରେ ରାନ୍ଧଣା ନିର୍ମାଣି
ପଦ୍ମସାଗର ମର୍ଭୁତ ଭୂଞ୍ଜନ୍ତି ବିନ୍ଧାଣି ।
ସବୁ ଘରମାନଙ୍କରେ ରତ୍ନର ଖଞ୍ଜଣି
ଦେଖିଣ ସାନନ୍ଦ ହେଲେ ଦେବ ଚକ୍ରପାଣି ।
ଅନେକ ବିନ୍ଧାଣି ମୂଳେ ଖଞ୍ଜାନ ମହାତ୍ମା
ଦିବା ରାତ୍ରେ ଲାଗିଛନ୍ତି ତହିଁ ବିଶ୍ୱକର୍ମା ।
ବହୁ ମହାରଣା ତାର ତୁଳେ ଛନ୍ତି ଲାଗି
ଆହାର ନିଦ୍ରାରୁ ବଞ୍ଚ୍ କରୁଛନ୍ତି ବେଗି ।
ଆହେ ବୈବସ୍ୱତ ମନୁ ଦେଖ କୃଷ୍ଣମାୟା
ଆହାର ନ ରୁଚେ କାର୍ଯ୍ୟେ ପ୍ରଫୁଲ୍ଲିତ ହିୟା ।
କାର୍ଯ୍ୟରେ ତତ୍ପର ଛନ୍ତି ସର୍ବ ମହାରଣା
ସବୁହିଁ ସୁବର୍ଣ୍ଣ ପାଣିଦ୍ରବ୍ୟର ଘଟଣା ।
ଗଜ ଅଶ୍ୱଶାଳା ରୋଷଶାଳ ଆଦିକରି
ଅଷ୍ଟରତ୍ନ ସବୁ କଲେ ସ୍ୱର୍ଣ୍ଣପତ୍ରେ ଭରି ।
ହସ୍ତୀ ଦନ୍ତରେ ସିଂହଦ୍ୱା ତହିଁ ଝୁଲାଇଲେ
ସ୍ଥୂଳକର୍ମ ନିର୍ମାଣକୁ କୁନ୍ଦୁରାଏ ଥିଲେ ।
ରୂପାପତ୍ର ତା ଉପରେ କରିଲେ ଛାଉଣି
ପ୍ରତିଘରେ ସୁବର୍ଣ୍ଣର କଳସି ନିର୍ମାଣି ।
ଆଡ଼ଦୀର୍ଘେ ପଞ୍ଚାଶତ ଯୁଣ ଦୀର୍ଘ ପ୍ରତି
ଅମରଭୁବନ ଯେହ୍ନେ ପୁର ବାରସ୍ୱତୀ ।
କନକର ରୁଅ ଶ୍ରେଣୀ ବତା ଆଦିକରି
ମୟ ଦାନବ ସ୍ଫଟିକେ ସଭା ଅଛି କରି ।
ଆପଣେ ବସି ନିର୍ମାଣ କରାଅନ୍ତି ସ୍ୱାମୀ
ଯଜ୍ଞଶାଳ ହୋଇଲାକ ମଧସ୍ଥାନ ଭୂମି ।
ପୂର୍ବରେ ବଟ ପଶ୍ଚିମଦିଗେ ଅଛି ସୋମି
ଉତ୍ତରେଣ ଜଡ଼ିପଦ ଦକ୍ଷିଣେ ପ୍ରୟାମି ।
ବିଶାଶତେ ତାଳ ଉଚ୍ଚ କଲେ ଦିବ୍ୟପୁର
କୋଣେ ଆୟତନ ହେଲା ସେ ଯଜ୍ଞଶାଳର ।
ହଟି ଜଟି ବଟି ସଟି ଚାରିବୃକ୍ଷ ଶୋଭା
ଯଜ୍ଞପାଇଁ ହୋଇଅଛି ଚାରିକୋଣେ ଉଭା ।
ପଶ୍ଚିମ ସୌରାଷ୍ଟ୍ରେ ଅଛି ନଡପରଶାଳ
ସତୁରିପଦ୍ମ ଘଟଣା ଯେ ବୁଲେ ସବୁବେଳ ।
କଞ୍ଚନ ଦେଶର ରାଜା ନାମ ହୃଷୀକେଶୀ
ନାବରେ ପୂରାଇ ଆଣି ଦିଅଇ ଯେ ରାଶି ।

ଛଷଠି ପଦ୍ମ ଚାଳିଶ ସହସ୍ର ଦିହୁଡ଼ି
ଶତବୃନ୍ଦ ହୁଳା ଜଳେ ରାତ୍ରେ ଧାଡ଼ି ଧାଡ଼ି ।
ପଞ୍ଚାଶ ଯୋଜନ ଯାଏ ଦିଶେ ଆଲୋମୟେ
ମହାରଣା ନିର୍ମାଣ ଯେ ଦିବସ ପରାୟେ ।
ଦିବାରାତ୍ରେ ଲାଗିଛନ୍ତି ନାହିଁ ଅବକାଶ
ଖଟନ୍ତି ନିଯୋଗୀ ପରି ନ ଯାନ୍ତି ସେ ବାସ ।
ଅନୁବ୍ରତେ ବିଜେ କରି ତହିଁ ଯଦୁପତି
ନିଯୋଗୀଙ୍କୁ ଶ୍ରୀହସ୍ତରେ ଶାଢ଼ୀ ଦେଉଛନ୍ତି ।
ବହୁମୂଲ୍ୟ ଆଭରଣ ନାନା ରତ୍ନମାଳା
ଲମ୍ବାଇଲେ ପ୍ରଭୁ ନେଇ ବିନ୍ଧାଣିଙ୍କ ଗଳା ।
ନଉଦିନ ମଧ୍ୟେ ସର୍ବ କରିବ ନିର୍ମାଣି
ଯେତେ ରତ୍ନ ଲୋଡ଼ା ଆମ୍ଭେ ଦେଉଥିବୁ ଆଣି
ଆଜ୍ଞାଭ୍ରଷ୍ଟ କରିବେକ ଯେଉଁ ଲୋକମାନେ
ଚକ୍ରେ ଶିର ଛେଦିବୁଟି ଯୁଧିଷ୍ଠି ବଚନେ ।
ଜୀବନକୁ କାରଣ ଏ ରାଜସୂୟ ସଭା
ସକଳ ପାତକ ଏଥେ ଦହନ କରିବା ।
ଜନ୍ମାନ୍ତରେ ଯେହୁ ମହାପୁଣ୍ୟ କରିଥିବ
ସେହି ଏହି ମହାଯଜ୍ଞ କାର୍ଯ୍ୟକୁ କରିବ ।
ଜଣ ଜଣକୁ ସେ ଆଜ୍ଞା ଦିଅନ୍ତି ଶ୍ରୀପତି
ଆପଣେ ଚର୍ଚ୍ଚା କରନ୍ତି ଥାଇ ଦିବାରାତି ।
ଛାୟା ମଣ୍ଡପରେ ବସି ଭାବନ୍ତି ଅନାଇଁ
ସଭାକୁ ସମ ହେବାକୁ ତିନି ଲୋକେ ନାହିଁ ।
ବୈନତେୟ ଆରୋହିଣ ଦେବ ମଧୁହାରୀ
କ୍ଷଣକରେ ପ୍ରବେଶିଲେ ଅମର ନଗରୀ ।
କୃଷ୍ଣଙ୍କୁ ଦେଖି ଦେବେଶ ସାନନ୍ଦ ହୋଇଲେ
ଐରାବତ ଆରୋହିଣ ତହିଁ ବିଜେ କଲେ ।
ସୁଧର୍ମା ସଭାରୁ ସେହି ଅତ୍ୟନ୍ତ ସୁସଞ୍ଚ
ନର ହୋଇ କେ ଦେଖିବ ରହି କରି ମଞ୍ଚ ।
କ୍ଷୁଧା ତୃଷା ନ ବାଧଇ ଦେଖୁଥିଲେ ବସି
ରାତ୍ର ଦିବସ ଦୁଇରେ ଉଜ୍ଜ୍ୱଳ ସେ ଦିଶି ।
ସଭା ଦେଖି ଦେବରାଜ ସାନନ୍ଦ ହୋଇଲେ
ଜଗନ୍ନାଥଙ୍କୁ ବହୁତ ପରଶଂସା କଲେ ।
ବତିଶ ସସ୍ର ବିନ୍ଧାଣି ବିଶ୍ୱକର୍ମା ମୂଳେ
ଗୃହ ନିର୍ମାଣନ୍ତି ଦୁଇ ନଦୀ ମଧ ସ୍ଥଳେ ।
କରପତ୍ର ଯୋଡ଼ିକରି କହେ ବିଶ୍ୱକର୍ମା
ଏ ସଭାକୁ ପରଶଂସା କରୁଛନ୍ତି ବ୍ରହ୍ମା ।
ନାରାୟଣ ବୋଇଲେ ତୁ ଅପୂର୍ବ ବିନ୍ଧାଣି
ତୋହ୍ନ ସମାନ ନ ଥିବ ନୋହିବ ଧରଣୀ ।
ତୋର ଏହି ସଭା ଗୃହ ରାଜାମାନେ ଦେଖି
ତୋତେ ପରଶଂସା କରି ହୋଇବେକ ସୁଖୀ

ଏସନକ ତାଙ୍କୁ କହି ପ୍ରଭୁ ଦେବରାଜେ
ଇନ୍ଦ୍ର ସହିତେ ନନ୍ଦନବନେ କଲେ ବିଜେ ।
ତୋଟାମାନ ବୁଲି ବୁଲି ସମସ୍ତେ ଦେଖନ୍ତି
ଫଳଭରେ ଶାଖାମାନ ଭୂମିରେ ଲୋଟନ୍ତି ।
ତୋଟାଳିଆଙ୍କୁ ଯେ ଆଜ୍ଞା ଦେଲେ ଏହିପରି
ସାବଧାନେ ତୋଟାମାନ ଥାଅ ରକ୍ଷାକରି ।
ରାଜସୂୟଯାଗ ହୋଇଲା ଆସି ସନ୍ନିଧାନ
ସର୍ବେ ଅଛି ଆଉ ପଞ୍ଚତିରିଶ ଯେ ଦିନ ।
ତୋଟାଳେ ବୋଇଲେ ହରି ଯାହା ତୋରଆଜ୍ଞା
ଦେବ ଗନ୍ଧର୍ବ ହେଲେ କେ କରିବ ଅବଜ୍ଞା ।
ନାରାୟଣଙ୍କୁ ବିନୟୀ ହେଲେ ମଘବାନ
ଦେବ ତୋ ପ୍ରସାଦେ ହେଲା ଅମର ଭୁବନ ।
ଯେବଣ ବିଧାନ ତୁହି କରୁଅଛୁ ହରି
ନିଶ୍ଚେ ତା ହୋଇବ କେହୁ ଆନ କରିପାରି ।
ଦୁଷ୍ଟଙ୍କର ବହୁ ଭାର ନ ସହେ ଧରଣୀ
ଏହି ଯଜ୍ଞଛଳେ ଶେଷ କରିବୁ ତୁ ସ୍ୱାମୀ ।
ଏହା କହି ଶଚୀପତି ସୁରଲୋକେ ଗଲେ
ଗରୁଡ଼ରେ ବସି ହରି ହସ୍ତିନା ଅଇଲେ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ପୃଥିବୀର ତୁମ୍ଭେ ଏକା ସୁଖଦୁଃଖ ଦାତା ।
ସେହୁ ଅଜ୍ଞାନ ଅଟେ ଯେ ତୋତେ ନ ଚିନ୍ତଇ
ମତିଭ୍ରମେ ଅନ୍ୟ ଦେବଦେବୀ ଯେ ସେବଇ
କାହାକୁ କରିଛ ତୁମ୍ଭେ ରାଜରାଜେଶ୍ୱର
କାରେ ଦୁଃଖ ଦେଇ କର କିଙ୍କରୁ କିଙ୍କର ।
କାହାର ଶାଳୀ ତଣ୍ଡୁଳ ଅନ୍ନ ଯୋଗାଉଛ
କାହାକୁ ବଗଡ଼ାଭାତେ ଦିନ କଟାଉଛ ।
କାହାକୁ ସରଳବଣୀ ଦେଉଛ ପ୍ରତ୍ୟହ
କେହୁ ଦୁଇଦିନେ ଅନ୍ନ ପାଇବା ସନ୍ଦେହ ।
ତୁମ୍ଭ କୃପାରେ ସଂସାର ଆତଯାତ ହୋଇ
ତୁମ୍ଭେ ଅଟ ବୁଦ୍ଧିଦାତା ସବୁ ଦିଅ କହି ।
ତୁମ୍ଭ କୃପାରେ ପ୍ରାଣୀଏ ସକଳ କରନ୍ତି
ତୁମ୍ଭ ଛଡ଼ା କେ କି କରେ ନାହିଁ କାର ଶକ୍ତି ।
ତୁମ୍ଭେ ମହାବିପଦରୁ କର ପରିତ୍ରାଣ
ଧନ୍ୟ ତୁମ୍ଭେ ଦୟାମୟ କମଳଲୋଚନ ।
ମୂରୁଖ ଅଟଇ ମୁହିଁ ଜ୍ଞାନ ନାହିଁ ମୋର
ଏ ଭାରତ ଲେଖିବାକୁ କରିଛି ବିଚାର ।
ତୁମ୍ଭେ ସାହାହୁଅ ମୋତେ ଆହେ ପୀତବାସ
ଶାରଳା ଦାସର ଏହି ମାତ୍ର ଅଭିଳାଷ ।

* * *

## ପଶ୍ଚିମଦିଗ ରାଜା ନିମନ୍ତ୍ରଣ କାରଣେ ଭୀମଙ୍କର ଗମନ

ଏଥୁ ଅନନ୍ତରେ ରାଜା ବୈବସ୍ୱତ ମନୁ
ଷଡ଼ାର୍ଘ୍ୟେ ପୂଜିଲା କୁମ୍ଭ ଋଷିଙ୍କର ସୂନୁ ।
ତୁମ୍ଭେ ଅଟ ବ୍ରହ୍ମବେତ୍ତା ଆବର ପଣ୍ଡିତ
ସୁଧା ବୃଷ୍ଟି କରାଉଛ କହି ଏ ଭାରତ ।
କଳିକାଳୁ ତରିବାକୁ କଳାଇଲି ଇଚ୍ଛା
ତୋର ପ୍ରସାଦେ ପୂରିବ ମୋର ମନୋବାଞ୍ଛା ।
ଯେସନେକ ଆଜ୍ଞାଦେଲେ ପ୍ରଭୁ ଦେବରାଜେ
ଭୀମସେନ ପଶ୍ଚିମକୁ କରିଲେକ ବିଜେ ।
ରାଜାଗଣ ନିମନ୍ତ୍ରଣ କଲେ ସେ କେମନ୍ତେ
ଏହା ସବୁ ବିସ୍ତାରିଣ କହ ମୁନି ମୋତେ ।
ବଦନ୍ତି ଯେ ଯୋଗେଶ୍ୱର ମହା ବ୍ରହ୍ମବେତ୍ତା
ଶୁଣ ଆହେ ମହାରାଜା ଭୀମସେନ କଥା ।
ତୁଳାମାସ ଶୁକ୍ଳପକ୍ଷ ଦଶମୀର ଦିନ
ଚନ୍ଦ୍ରବାର ନକ୍ଷତ୍ର ଉତ୍ତରାଭାଦ୍ରମାନ ।
ବାଳ ନାମେ କରଣ ଯେ ନାମେ ଯୋଗ
ତୁଳ ସଂକରାନ୍ତି ଏକୋଇଶ ଦିନ ଭୋଗ ।
ସେଦିନ ସୈନ୍ୟ ଘେନିଣ ପବନ ତନୟ
ଶୁଭେ ପଶ୍ଚିମ ରାଷ୍ଟ୍ରକୁ କରିଲେ ବିଜୟ ।
ଆପଣାର ରଥ ଆଗେ ଯାଆନ୍ତି ଯେ ବାହି
ବାୟୁ ଦେଖିଲେ ରଥରେ ସାରଥୀଙ୍କ ନାହିଁ ।
ମରୁତ ନାମେ ସାରଥି ହକାରି ସେକ୍ଷଣ
ଚାରି ଅଶ୍ୱ ଦେଲେ ତାଙ୍କୁ ଆପଣ ସମାନ ।
ଏ ଚାରି ଅଶ୍ୱ ଯୋଚିବୁ ଭୀମସେନ ରଥେ
ସାରଥି ହୋଇ ବାହିବୁ ଆସିବା ପର୍ଯ୍ୟନ୍ତେ ।
ପବନର ବଚନରେ ମରୁତ ସାରଥି
ଚାରି ଅଶ୍ୱ ଘେନି ଆସି ପ୍ରବେଶ ତଡ଼ତି ।
ପଶ୍ଚିମ ସୋମରାଷ୍ଟ୍ରକୁ ବିଜୟ ପାବନି
ମରୁତ ପ୍ରବେଶ ହେଲା ଚାରି ଅଶ୍ୱ ଘେନି ।
ଶ୍ରୀକରେ ଘେନିଣ ସେହି ଜୟ ରତ୍ନମାଳା
ଭୀମସେନ କଣ୍ଠଦେଶେ ଲମ୍ବାଇଣ ଦେଲା ।
ରତ୍ନମାଳା ମୁକୁଟ ଯେ ଦିବ୍ୟ ଅଳଙ୍କାର
ଆଭରଣ ପିନ୍ଧାଇଣ ଭୀମଙ୍କ ଶରୀର ।
ଭୀମ ପଚାରେ ଅଇଲୁ ତୁହି କାହୁଁ କତି
ମଞ୍ଚେ ଜାତ ନୋହୁ ନୋହୁ ତୁ ମାନବ ଜାତି ।
ଅତ୍ୟନ୍ତ ସୁସଞ୍ଚ ତୋର ସୁକୁମାର କାୟେ
ପ୍ରତ୍ୟକ୍ଷରେ ଦିଶୁଅଛ ଅମରାଧି ପ୍ରାୟେ ।
ବୋଇଲେ ମରୁତ ତୁମ୍ଭେ ଶୁଣ ଭୀମସେନ
ମୋତେ ପେଷିଦେଲେ ତୁମ୍ଭ ପିଅର ପବନ ।

ତୁମ୍ଭର ରଥରେ ମୁହିଁ ହୋଇବି ସାରଥି
ବାହିବି ଯେ ତୁରଙ୍ଗମ ପଶ୍ଚିମ ମୂରତି ।
ତହିଁରେ ରାଜାଙ୍କୁ ତୁମ୍ଭେ ପାରିବ ହେ ସାଧି
ସାରଥିପଣେ ପଣ୍ଡିତ କହିଦେବ ବୁଦ୍ଧି ।
କେମନ୍ତେ ଯୁଦ୍ଧ କରିବ ସାରଥି ବିହୀନେ
ତହିଁ ଅନେକ ଦୁର୍ଦ୍ଦାନ୍ତ ଛନ୍ତି ରାଜାଗଣେ ।
ପବନ ଦେବତାର ମୁଁ ଅଟଇ ସାରଥି
ତୁମ୍ଭେ ମୋତେ ପ୍ରତେ କିପାଁ ନ କର ମାରୁତି ।
ଭୀମସେନ ବିଚାରେ ଏ ବଡ଼ ଅଗୋଚର
କଷଣ ଦେବାକୁ ଅବା କେବଣ ଅସୁର ।
ରୂପ ବଦଳାଇ ଆସି କହେ ଏ ପ୍ରକାର
କପଟରେ ନାଶିବ ବା କାର୍ଯ୍ୟକୁ ଆମ୍ଭର ।
ଏହା ବିଚାରି ମାରୁତି କରଇ ଅପ୍ରତେ
ଅଜ୍ଞାନୀ ଲୋକେ ବିଶ୍ୱାସ କରିବି କେମନ୍ତେ ।
ସାରଥି ବୋଇଲେ ତୁମ୍ଭେ ନଜାଣ ହେ ମୋତେ
ମୁଁ ଜାଣେ ତୁମ୍ଭ ପିଅର ଜନନୀ ସହିତେ ।
ତବ ଜ୍ୟେଷ୍ଠଭ୍ରାତ ଅଟେ ବୀର ହନୁମନ୍ତ
ତାହାର ଜନନୀକି ମୁଁ ଜାଣଇ ଯଥାର୍ଥ ।
ପବନର ମାତା ଜାଣ ଅଟଇ ଅଦିତି
କଶ୍ୟପଙ୍କୁ ସେବି ସେହୁ କଳ୍ପେ କଳ୍ପେ ବର୍ତ୍ତି ।
ଅନେକ ପ୍ରଳୟର ମୁଁ ଜାଣଇ ବାରତା
କାଳେ ନୋହିଲା ତାହାର ପୁତ୍ର କି ଦୁହିତା ।
ଆକାଶ ଗଙ୍ଗାଜଳରେ ବସି ଅନାହାରେ
ନିରାକାରଙ୍କୁ ସେବିଲା ଶତ ସମ୍ବତ୍ସରେ ।
ପ୍ରସନ୍ନ ହୋଇ ତାହାକୁ ଏହି ବର ଦେଲେ
ବଳିଷ୍ଠ ପୁତ୍ର ତୋହର ହୋଇବ ବୋଇଲେ ।
ତୋଷେ ତାକୁ ଏହି ବର ଦ୍ୟନ୍ତେ ନିରାକାର
ଅଦିତି ଦେବୀଙ୍କ ହେଲା ଗର୍ଭର ସଞ୍ଚାର ।
ଗର୍ଭେ ବଢ଼ନ୍ତେ ପବନ ହୋଇଲା ବଳିଷ୍ଠ
ଅଣଚାଶ ଖଣ୍ଡ କଲେ ତାକୁ ସୁରଜ୍ୟେଷ୍ଠ ।
ବାସବ ଛେଦିଲା ଯହୁଁ ଗର୍ଭର ଭିତର
ତେଣୁ ଅଣଚାଶ ବାୟୁ ଅଣମୂର୍ତ୍ତି ଧର ।
ବହୁତ କାଳର ଏହି କଥା ପୁରାତନ
ଅବିଶ୍ୱାସ କରିବାରୁ କହିଲି ଏମାନ ।
ଆହୁରି କଥାଏ ଏବେ ଶୁଣ ବୃକୋଦର
କୁନ୍ତୀଙ୍କୁ ପ୍ରସନ୍ନ ହେଲେ ସେ ଏସନ ବୀର ।
ସାଧୁ ସାଧୁ ଅଟନ୍ତି ସେ କୁନ୍ତୀ ମାହେଶ୍ୱରୀ
ପବନ ବୀର୍ଯ୍ୟରେ ସେହୁ ହୋଇଲେକ ଘାରି ।
ପ୍ରତ୍ୟକ୍ଷରେ ଅଣାକାର ବୀର୍ଯ୍ୟ ସେ ଧଇଲା
ସେ ବ୍ରହ୍ମବୀର୍ଯ୍ୟ ତାହାର ଗର୍ଭେ ସଞ୍ଚରିଲା ।
ତହିଁରୁ ତୁମ୍ଭେ ଜନମ ହୋଇଲ ହେ ବୀର
ମୋତେ ପେଷିଛନ୍ତି ନିଶ୍ଚେ ତୁମ୍ଭର ପିଅର ।
ଭୀମ ଆଶ୍ଚର୍ଯ୍ୟ ମରୁତ ବଚନକୁ ଶୁଣି
ଏମନ୍ତ ବେଳେ ଶୁଭିଲା ଆକାଶରେ ବାଣୀ ।
ହେ ବୀର ଏଥକୁ ଚିନ୍ତା ମନରେ ନ କର
ଏ ମରୁତ ସାରଥି ଯେ ଅଟଇ ଆମ୍ଭର ।
ଅଦଭୁତ ବାଣୀ ଶୁଣି ଭୀମ ହୋଇ ତୋଷ
ସାରଥିକୁ ପୂଜା କଲା ହୋଇଣ ହରଷ ।
ପିତା ଆଜ୍ଞାରେ ଅଇଲୁ ଯେବେ ଦୟାକରି
ସାରଥି ହୋଇଣ ରଥ ବାହା ତୁ ମୋହରି ।
ବହୁ ରତନେ ସାଜିଲା ମରୁତ ସେ ରଥ
ପୁଷ୍ପକ ବିମାନ ଜିଣି ଦିଶିଲା ଶୋଭିତ ।
ଶିବସାଗରେ ସ୍ନାହାନ ଭୀମସେନ କରି
ସୋମନାଥ ଦେବଙ୍କୁ ସେ ବହୁସ୍ତୁତି କରି ।
ଜୟ ଅନ୍ଧକଦାରୁଣ ଶ୍ରେଷ୍ଠତର ଯୋଗୀ
ଜୟ ଶରଣ ରକ୍ଷକ ଆନନ୍ଦେ ବିଭୋଗୀ ।
ଜୟ ଜୟ ଦିଗମ୍ବର ଜୟ ତ୍ରିପୁରାରି
ଜୟ ଅନଙ୍ଗନାଶନ ଭବଭୟହାରି ।
ଭକତଜନ ଆଶ୍ରୟ ଜୟ ସୁରଗୁରୁ
ଜୟ ସଦାନନ୍ଦ ଜୟ ବାଞ୍ଛା କଳ୍ପତରୁ ।
ଜୟ ଶୂଳଧର ଜୟ ସିଦ୍ଧ ଯୋଗୀବର
ଗଙ୍ଗାଦେବୀଙ୍କି ଧରିଣ ନିଜ ମସ୍ତକର ।
ବୃଷଭ ବାହନେ ଚଢ଼ି ଭ୍ରମ ତ୍ରିଭୁବନ
ଦକ୍ଷର ଯଜ୍ଞକୁ ରାଗେ ଭାଙ୍ଗିଲେ ଆପଣ ।
ଭକତବତ୍ସଳ ପ୍ରଭୁ ତୁମ୍ଭେ ଦୟାମୟ
ଅଭିଳାଷ ପୂର୍ଣ୍ଣ କର କରେ ଦିଗ୍‌ବିଜୟ ।
ଭୀମସେନଙ୍କ ମୁଖରୁ ଏହି ସ୍ତୁତି ଶୁଣି
ହରଷ ହୋଇଲେ ଅତି ଦେବ ଶୂଳପାଣି ।
ବୃଷଭରେ ଆରୋହିଣ ବିଜେ କଲେ ଆସି
ପଞ୍ଚ ବଦନ ପନ୍ଦର ନୟନ ପ୍ରକାଶି ।
ଶିରପରେ ଶଶଧର ଦିଶନ୍ତି ଶୋଭନ
ବିଜୟା ଦୁଦୁରା ପାନେ ନେତ୍ର ରଙ୍ଗବର୍ଣ୍ଣ ।
ଡିବି ଡିବି ଡମ୍ବରୁ ଯେ ନିରନ୍ତର ବାଜେ
ଗଳାରେ ସର୍ପଭୂଷଣ ଫୁଫୁକାର ଗର୍ଜେ ।
ଭୀମ ଶିବଙ୍କ ପୟରେ ପ୍ରଣମି ହୋଇଲେ
ପଶ୍ଚିମେ ରାଜାବରଣେ ଠାକୁରେ ପେଷିଲେ ।
ପଚାଶସସ୍ର ନୃପତି କରିବ ବରଣ
ଚଉଦିଗେ ଆସିବେକ ଯେହ୍ନେ ନରଗଣ ।
ସ୍ୱାମୀ ଅନୁବ୍ରତେ ମତେ ଦୟା ରଖିଥିବ
ଶିବଗଣ ଘେନି ନିଜେ ଯାଗକୁ ହେ ଯିବ ।

ଏହା ଶୁଣି କହିଲେକ ସେ ପଞ୍ଚବଦନ
ଯାଇଁ ପଶ୍ଚିମରାଜାଙ୍କୁ କର ନିମନ୍ତ୍ରଣ ।
ଆହୋ ଏକରାଜା ତହିଁ ଅଛି ପରତାପୀ
ମେଖଳଦେଶାଧିପତି ଅଟେ ମହାକୋପୀ ।
ତାର ସଙ୍ଗେ ବହୁ ଯୁଦ୍ଧ କଲା ଜରାସୁର
ଯୁଦ୍ଧେ ହାରି ପଳାଇଲା ହୋଇଣ କାତର ।
ଭୀମସେନ ବୋଲେ ସେହି କାହାର ନନ୍ଦନ
ଏଡ଼େ ବଳିଷ୍ଠ ହୋଇଲା କହ ସେ କାରଣ ।
ଶୁଣିଣ ଉମାବଲ୍ଲଭ ହରଷେ କହନ୍ତି
ମନଦେଇ ଶୁଣ ଆହେ ପବନ ସନ୍ତତି ।
ସତ୍ୟଯୁଗେ ଘୋରବନେ ଗଲେ ବ୍ୟାସଯତି
ବଇଶାଖ ଶୁକ୍ଳପକ୍ଷ ବାର ବୃହସ୍ପତି ।
ସେଦିନ ପୁଷ୍ୟାନକ୍ଷତ୍ର ବାଣିଜ୍ୟ କରଣ
ସୌଭାଗ୍ୟ ଯୋଗେ ମିଥୁନେଛନ୍ତି ଚନ୍ଦ୍ର ଜାଣ ।
ସେ ଦିନରେ ବେଦବ୍ୟାସ ଭ୍ରମନ୍ତି ବିପିନେ
ବୁଲୁଁ ବୁଲୁଁ ମହାଋଷି କୌତୁହଳ ମନେ ।
ନାନାଜୀବ ରୂପ ହୋଇ ବନେ ବନେ ଭ୍ରମି
ସର୍ବଜୀବ ଇଚ୍ଛାକଲେ ଋଷି ମହାଜ୍ଞାନୀ ।
କୌତୁହଳେ କ୍ଷଣେ କ୍ଷଣେ ହୋଇ ଅନ୍ୟରୂପୀ
ଶୃଙ୍ଗାର କୌତୁକ ଆଶେ ରଙ୍ଗରସେ କ୍ଷେପି ।
ହରିଣୀ ଗୋଟିଏ ତହିଁ ଦେଖିକରି ଯତି
ହରିଣ ହୋଇଣ ଋଷି ତା ସଙ୍ଗରେ ମାତି ।
ହରିଣୀ ଗର୍ଭରେ ଋଷି ବୀର୍ଯ୍ୟକୁ ଛାଡ଼ିଲା
ହରିଣୀର ଗର୍ଭୁ ତହୁଁ ପୁତ୍ରେକ ଜନ୍ମିଲା ।
ମହାବିଜ୍ଞ ପଣ୍ଡିତ ଯେ ମୃଗ ବନପତି
କିଷ୍କିନ୍ଧ୍ୟା ରାଜ୍ୟରେ ସେହୁ ଅଟେ ଚକ୍ରବର୍ତ୍ତୀ ।
ଶ୍ରୀରାମଙ୍କୁ ସେବାକଲା ସେ ତ୍ରେତୟା ଯୁଗେ
ସେତୁବନ୍ଧ ବାନ୍ଧିଲେ ସେ ବାରିଧି ତରଙ୍ଗେ ।
ପୁଣି ବିହରଇ ମୁନି ବନେ ଏ ସମୟେ
କୃଷ୍ଣଭଦ୍ରା ନଦୀକୂଳେ ଦେଖିଲେ ମୃଗୀଏ ।
ଆହେ ଭୀମ ସେ ମୃଗୁଣୀ ନାମ ଯମନିକା
କାମ ଆତୁରୀ ହୋଇଣ ବୁଲୁଥିଲା ଏକା ।
ମୃଗରୂପ ଧଇଲେ ସେ ବ୍ୟାସ ମହାମୁନି
ବଳେ କ୍ରୀଡ଼ାକଲେ ସେହି ମୃଗୁଣୀକି ଘେନି ।
ବିହ୍ୱଳିତ ଶୃଙ୍ଗାରେ ସେ ଛାଡ଼ିଲେ ବିନ୍ଦୁଟି
ପୁତ୍ରହେଲା ନରଦେବ ମୃଗପିଣ୍ଡ ଗୋଟି ।
ମୃଗସେନ ନାମ ତାର ଜଗତେ ବିଖ୍ୟାତ
ମେରୁ ଦକ୍ଷିଣ କୌଶଳେ ତାର ଆଧିପତ୍ୟ ।
ପଚିଶପଦ୍ମ ରାଉତ ଅଛନ୍ତି ତାହାର
ମୃଗବାହନ ଅଟଇ ତାଙ୍କମାନଙ୍କର ।

ସହସ୍ରାର୍ଜ୍ଜୁନ ସଙ୍ଗେ ସେହୁ ବହୁଯୁଦ୍ଧ କଲା
ସତ୍ୟଯୁଗେ ମାନଧାତା ଜିଣି ନ ପାରିଲା ।
ତାହାକୁ ସଂଗ୍ରାମେ ତୁହି ସମନୋହୁ ଭୀମ
ବ୍ୟାସଙ୍କୁ ସୁମରି ତୁହି କରିବୁ ସଂଗ୍ରାମ ।
ସେ ବ୍ୟାସ ଯାଇଣ ତୋତେ ହେବେ ପରସନ୍ନ
ତେବେ ସେ ସାଧହୋଇବ ତୋରେ ମୃଗସେନ ।
ଏହାଛଡା ତୋତେ କଷ୍ଟ ନାହିଁ ଅନ୍ୟଠାବ
ସମସ୍ତ ସାଧ କରିବୁ ବୋଇଲେକ ଶିବ ।
ରାଜାଙ୍କୁ ନିମନ୍ତ୍ରି ତୁହି ଆସ ସର୍ବ ସାଧି
ଯାଅ ତୁ ପାଣ୍ଡବ ଏବେ ହେଉ କାର୍ଯ୍ୟସିଦ୍ଧି ।
ଏ ଶସ୍ତ୍ରମାନ ତୋତେ ମୁଁ ଦେଉଅଛି ଭୀମ
ଜଗଜ୍ଜିତା ଶର ଦେଲି ହୋଇଣ ପ୍ରସନ୍ନ ।
ଯେଉଁ ଅସ୍ତ୍ରମାନ ଘେନି ଜିଣିଲୁ ତ୍ରିପୁରା
ତୋତେ ସେହି ଅସ୍ତ୍ର ଦେଲୁ ନାମ ପଞ୍ଚଶିରା ।
ଅମୋଘ ଶକତି ଆଉ ତ୍ରିଶୂଳ ଶକତି
ବଜ୍ରମୁଦ୍‌ଗର ଭୀମକୁ ଦେଲେ ପଶୁପତି ।
ବିଜୟ ଡମ୍ବରୁ ଦେଲେ ସେହୁ କରେ ଶବ୍ଦ
କୁତୂହଳେ ଦେଲେ ସ୍ୱାମୀ ବଜ୍ର ସିଂହନାଦ ।
ଆବର ଦେଲେ ଯେ ନାଥ ମହାକାଳ ବାଣ
ଏହାଯୋଗେ ହେ ମାରୁତି ସର୍ବ ରାଜା ଗଣ ।
ପ୍ରସନ୍ନେ ଅନେକ ଶସ୍ତ୍ର ଦେଲେ ପଶୁପତି
ଯାଅ ତ୍ରଇଲୋକ ତୋତେ ନ ପଡୁ ବିପତ୍ତି ।
ଏସନକ ଆଜ୍ଞା ଭୀମେ ଦେଇ ପଞ୍ଚାନନ
ସେକ୍ଷଣି ସେ ସ୍ଥାନରୁ ହେଲେ ଅନ୍ତର୍ଦ୍ଧାନ ।
ପଶ୍ଚିମ ସୋମନାଥଙ୍କ ପାଶୁ ମହାବୀର
ପଶ୍ଚିମ ଦିଗେ ଗମିଲେ ବସି ରହୁବର ।
ମାନସାନନ୍ଦ ବୋଲିଣ ସେ ଦେଶ ଗୋଟିଏ
ମାନଅର୍ଜ୍ଜୁନ ବୋଲିଣ ସେ ଦେଶର ରାୟେ ।
ବିଷ୍ଣୁ ପ୍ରସାଦ ବୋଲିଣ ଅଛି ନଦୀ ଗୋଟି
ତ୍ରିବେଣୀ ନଦୀରୁ ତାହା ଆସୁଅଛି ଫୁଟି ।
ସେ ନଦୀକୂଳରେ ରାଜ୍ୟ ଅଟଇ ତାହାର
ବଡ଼ ଧାର୍ମିକ ଅଟଇ ସେହି ଦଣ୍ଡଧର ।
ଭୀମସେନ ବିଜେ ମାନଭଙ୍ଗ ପରବତେ
ରାଜ୍ୟଗୋଟି କମ୍ପିଲା ସେ ବୀରତୂର ଘାତେ ।
ନିଜ ଆସ୍ଥାନେ ଥାଇଣ ବୋଇଲା ନୃପତି
ତୂରିତ ବିଘାତେ କିପାଁ କମ୍ପିଗଲା ପୃଥ୍ୱୀ ।
ରାଜାର ବଚନ ଶୁଣି ଗଲେ ଦେଶାଉରେ
ଧାତିକାରେ ପ୍ରବେଶିଲେ ଗ୍ରାମର ବାହାରେ ।
ପର୍ବତୁ ଓହ୍ଲାଉଛନ୍ତି ଆଗୁଆଣି ଥାଟ
ମୁନେହିକ ପୁଛାକଲେ ତୁମ୍ଭେ କିଏ ଅଟ ।

ଅଦଭୂତେ ରାଜ୍ୟେ କିମ୍ପା ପଶିଲ ଆମ୍ଭର
ପରରାଜ୍ୟେ ପଶିବାକୁ କି ଶକ୍ତି ତୁମ୍ଭର ।
କହିଲେକ ଭୀମ ତୁମ୍ଭେ ଶୁଣ ଚାରମାନେ
ବାର୍ତ୍ତା କହ ଯାଇ ତୁମ୍ଭ ରାଜା ସନ୍ନିଧାନେ ।
ସନ୍ତକ କହିବ ତୁମ୍ଭେ ଜରାବିଦାରଣ
ରାଜସୂୟଯାଗ ନିମନ୍ତେ କରିବେ ବରଣ ।
ନିମନ୍ତ୍ରିବା ପାଇଁ ଆସିଅଛନ୍ତି ଏ ଦିଗେ
ସମଦଣ୍ଡ ଘେନି ରାଜା ଯିବେ ବେଗେ ବେଗେ
ବାର୍ତ୍ତାପାଇ ଦୂତେ ଗଲେ ହୋଇଣ ହରଷ
ମାନଅର୍ଜ୍ଜୁନର ଆଗେ କହିଲେ ସନ୍ଦେଶ ।
ସ୍ୱାମୀ ରାଜସୂୟ ଯାଗ କରିବା ନିମନ୍ତେ
ଜରାସନ୍ଧ ବିଦାରଣ ଅଇଲେ ଯେ ଏଥେ ।
ସ୍ୱାମୀ ପାଣ୍ଡବ ସୁନ୍ଦର ପବନର ବସି
ରାଜା ନିମନ୍ତ୍ରିବା ପାଇଁ ବିଜେ କରିଅଛି ।
କୋଇନ୍ତା ଦେବୀଙ୍କ ସୁତ ବ୍ୟାସଙ୍କର ନାତି
ଭୀମସେନ ଠାକୁର ସେ ପ୍ରତ୍ୟକ୍ଷେ ଅଟନ୍ତି ।
ଦୂତମୁଖୁ ଏହିବାର୍ତ୍ତା ପାଇ ଧାଡିକାରେ
ଜଗତ ଛାଡ଼ି ଉଠିଲା ବେଗେ ନୃପବରେ ।
ପାଏଡ଼ା ପାରି ରାଜ୍ୟରେ କରାଇ ଉତ୍ସବ
ଆଗେ ଚାଲିଦେଇ ଶତେଭାର ପାଣିଦ୍ରବ୍ୟ ।
ଶ୍ରୀକରେ କନକଥାଳୀ ଘେନିକରି ରାୟେ
ଭୀମସେନ ଆଗେ ସ୍ୱର୍ଣ୍ଣବୃଷ୍ଟି ଯେ କରାଏ ।
ସନ୍ନିଧେ ପ୍ରବେଶ ହୋଇକରି ମହାବଳୀ
ଭୀମପାଦେ ନରପତି କରେ ନିଉଛାଳି ।
କରପତ୍ର ଯୋଡ଼ିଣ ସେ ବହୁ ସ୍ତୁତିକରି
ସାଷ୍ଟାଙ୍ଗେ ପାଦେ ପଡ଼ିଲା ମାନଦଣ୍ଡଧାରୀ ।
ପୁଣ ପୁଣ ନୃପତି ଯେ ହୋଇ ପରଣାମି
ବୋଲେ ଅପରାଧ ମୋର କ୍ଷମାକର ସ୍ୱାମୀ ।
ଦେଶାଉର ମୁଖୁଁ ମୁହିଁ ବାରତା ନ ପାଇ
ଥୋକାଏ ଦୂର ପାଛୋଟି ନ ପାରିଲି ଯାଇ ।
ଆନନ୍ଦରେ ଅଶ୍ରୁଜଳ ବହେ ନେତ୍ର ବେନି
ଛାମୁରେ ନୃପତି ଯାଇ କରଇ ଦଇନୀ ।
ଶରଣ ଶରଣ ବୋଲି କରେ ଆର୍ତ୍ତନାଦ
ସ୍ୱାମୀ କ୍ଷମ ମୁହିଁ ଅଜ୍ଞ ମୋର ଅପରାଧ ।
ରଥ ଉପରୁ ଓହ୍ଲାଇ ଆସିଣ ପାବନି
ମାନାର୍ଜ୍ଜୁନକୁ ବରିଲେ ଅକ୍ଷତ ଯେ ଘେନି ।
ତୋହର ଥାଟ ସଇନି ଯେତେ ଅଛି ବାବୁ
ସମସ୍ତ ଘେନି ରାଜସୂ ଯଜ୍ଞେ ତୁ ଚଳିବୁ ।
ବିନୟେ ବୋଲନ୍ତି ମାନଅର୍ଜ୍ଜୁନ ନୃପତି
ମୋହର ପୁରେ ମଣୋହି କରିବା ମାରୁତି ।
ଅତ୍ୟନ୍ତ ଭାଗ୍ୟ ମୋହର ଦେଖିଲି ନୟନେ
ମୁହିଁ ନିସ୍ତରିଲି ଆଜ ତୁମ୍ଭ ଦରଶନେ ।
ଭୀମସେନ ବୋଇଲେ ମୁଁ ନ ପାରଇ ରହି
ଏ ସୁଯୋଗ କାହିଁ ରାଜ୍ୟେ ରାଜ୍ୟେ ଯିବି ଖାଇ ।
ପଞ୍ଚାଶସହସ୍ର ରାଜା ନଉ ଦିବସରେ
କରିବି ସାଧ୍ୟ ଅସାଧ୍ୟ ଅଛନ୍ତି ଏଥିରେ ।
ନଉ ଦିନରେ ରାଜାଏ ନୋହିଲେ ପ୍ରବେଶ
ଚକ୍ରରେ ଶିର ଛେଦିବେ ମୋର ପୀତବାସ ।
ରାଜାମାନଙ୍କେ ମଣୋହି କରି କରି ଗଲେ
ପଞ୍ଚାଶସହସ୍ର ବରିବି ମୁହିଁ କେତେକାଳେ ।
ଆହେ ଅର୍ଜ୍ଜୁନ ଚଳ ଯା ହୋଇଣ ନିର୍ଭ୍ରାନ୍ତି
ମାନଭଙ୍ଗ ଦେଖୁ ଭୀମ ଗଲେ ତକ୍ଷଣାନ୍ତି ।
ବୀରତୂର ଶବ୍ଦକରି ଥାଟ ସେ ଚଳାଇ
ବନ ପର୍ବତ କନ୍ଦର ଜିଣିକରି ଯାଇ ।
କରଣ ନାମରେ ତହିଁ ଏକଇ ପର୍ବତ
ଗୁଣଭଦ୍ରା ବୋଲି ତହିଁ ବହେ ଏକ ତୀର୍ଥ ।
କାର୍ତ୍ତିକ ଶୁକଳପକ୍ଷ ଅଟେ ପୌର୍ଣ୍ଣମାସୀ
ରୋହିଣୀ ନକ୍ଷତ୍ର ଭୀମ ଜଳପଧେ ପଶି ।
ଅକାମାବଇ ଅଟଇ ଜାଣ ସେ ଦିନର
ତୀର୍ଥସ୍ନାନ କରି ଦାନ ଦେଲେ ବୃକୋଦର ।
ମନୋହର ଦେଶରେ ସେ ସୁବାହୁ ନୃପତି
ପାରିଦଣ୍ଡ ଘେନି ତୀର୍ଥସ୍ନାନ ସେ କରନ୍ତି ।
ରାଜାର ଆଗରେ ଯାଇ ଜଣାନ୍ତି ମୁନେହି
ଭୀମ ଅଛନ୍ତି ଶରଣଭଦ୍ରା କୂଳେ ରହି ।
ପଞ୍ଚାଶ ସହସ୍ର ରାଜା କରିବେ ବରଣ
ଯୁଧିଷ୍ଠିଙ୍କ ଆଜ୍ଞାରେ ସେ ପଶ୍ଚିମେ ଗମନ ।
ଶୁଣି ଆନନ୍ଦିତ ହେଲା ସୁବାହୁ ନୃପତି
ତୁଲେଣ ତାହାର ଅଛି ପାଞ୍ଚଖର୍ବ ହସ୍ତୀ ।
ଭୀମସେନର ଆଗତ ସେ ରାଜା ଶୁଣିଲା
ହସ୍ତୀ ତେଜି ଶସ୍ତ୍ରହୀନେ ଭୀମ ପାଶେ ଗଲା ।
ଆହେ ସ୍ୱାମୀ ବୃକୋଦର ତ୍ରାହି ତ୍ରାହି ବୋଲି
ଦନ୍ତେ ତିରଣ ଧରିଣ ପଡ଼ି ଗଡ଼ଘାଲି ।
ଦର୍ଶନ କଲାକ ରାଜା ଦରଶନୀ ଘେନି
ସୁବର୍ଣ୍ଣଚୂଡ଼ ପର୍ବତେ ବିଜୟ ପାବନି ।
କାଳିଞ୍ଜନ ପଡ଼ିହାରୀ କାଳଧ୍ୱଂସ ଦୂତ
ବିନୟେ ବାର୍ତ୍ତା କହିଲେ ଭୀମଙ୍କ ଅଗ୍ରତ ।
ମନୋହର ଦେଶରେ ଯେ ସୁବାହୁ ନୃମଣି
ଚାରିଶତ ଦଣ୍ଡ ତୁଲେ ଅନେକ କ୍ଷଉଣୀ ।
ତ୍ରାହି ବୋଲିଣ ବିନୟେ କରେ ପରଣାମି
ଦର୍ଶନ କରିବାପାଇଁ ଆସେ ଦେବସ୍ୱାମୀ ।

ନାମ ସଙ୍କେତ ବୁଝିଣ ପବନର ବଳା
କିଞ୍ଚିତେ ଭୀମ ସୁବାହୁ ନୃପକୁ ଦେଖିଲା ।
ଶ୍ରୀକର ଚାଳି ବୋଇଲା ପବନ ତନୟ
ଥାଟ ଘେନି ରାଜସୂୟ ଯଜ୍ଞେ ତୁହି ଯାଅ ।
ଯେତେକ ସୈନ୍ୟ ତୋହର ଅଶ୍ୱ ଗଜ ରଥ
ସମଦଣ୍ଡ ଘେନି ବେଗେ ଯାଅ ଇନ୍ଦ୍ରପ୍ରସ୍ଥ ।
ମକର ମାସ ମଧ୍ୟରେ ହେବ ମହାଯାଗ
ଦେଖା ଦରଶନୀ ଘେନି ଯାଅ ହୋଇ ବେଗ
ଶୁଣିଣ ସାନନ୍ଦ ହେଲେ ପାରିଦଣ୍ଡମାନେ
ଶ୍ରବଣେ ଯା ଶୁଣୁଥିଲୁ ଦେଖିଲୁ ନୟନେ ।
ତୁହି ଯେ ମାରୁତି ଅଟୁ ପାଣ୍ଡବ ସୁନ୍ଦର
ଜରାସନ୍ଧକୁ ବଧିଲୁ ଦୁର୍ଦ୍ଦାନ୍ତ ଅସୁର ।
ହିଡ଼ିମ୍ବାକୁ ମାରି ଆଉ ବକ ତିନିଜଣ
ତୁହି ଧରିଲା ମାତ୍ରକେ ଲଭିଲେ ମରଣ ।
ସ୍ୱାମୀ ତୁହି ବିଷଲଡୁ ଖାଇ ପାର କଲୁ
ନାଗବଳ ଜିଣି ବେଲାବଳୀ ବିଭାହେଲୁ ।
ପାଣ୍ଡବାସୁରକୁ ମାରି ଉଦ୍ଧାରି କୌରବ
ତୋହର କୋପକୁ ଶଙ୍କା କରେ ବଳଦେବ ।
ତୁହି ଦେବ ଦୁଷ୍ଟ ଜନ ଗରବ ଗଞ୍ଜନ
ଭକ୍ତବତ୍ସଳ ପୂରାଉ ଭକ୍ତ ମନସ୍କାମ ।
ଦୁଷ୍ଟ ପ୍ରକୃତି ଆମ୍ଭର ଶରଣ ଘେନିମା
ବହୁଦୋଷ କରିଅଛୁ ତାହା କର କ୍ଷମା ।
ଜରାସନ୍ଧ ବଧି ରାଜାଗଣ ଉଦ୍ଧାରିଲୁ
ଛୟାଶୋଇସସ୍ର ରାଜା ବନ୍ଦୀ ମୁକ୍ତ କଲୁ ।
ରାଜୁସିଯଜ୍ଞ ଦେଖିବୁ ତୋର ପରସନ୍ନେ
ପାପ ନାଶି ତରିଯିବୁ ଭବୁଁ ଆମ୍ଭେମାନେ ।
ଅକ୍ଷତ ଗୁଆ ଘେନିଣ ସୁବାହୁ ନୃମଣି
ଦଣ୍ଡସାଜି ଅନୁକୂଳ କଲା ସେହିକ୍ଷଣି ।
ତହୁଁ ଭୀମସେନ ଗଲେ ଅତି ହୃଷ୍ଟମନେ
ଦଣ୍ଡ ଘେନିଣ ପ୍ରବେଶ କୁଣ୍ଡଳୀର ବନେ ।
କୁଣ୍ଡୀନଗ୍ର ବୋଲି ତହିଁ ନଗ୍ର ଯେ ଗୋଟିଏ
ଭୀଷ୍ମକ ବୋଲି କରିଣ ତହିଁର ଯେ ରାୟେ ।
ରୁକ୍ମଣୀ ଯେ ରୁକ୍ମଅଙ୍ଗ ଏହି ପୁତ୍ର ଦୁଇ
ରୁକ୍ମିଣୀ ଦେବୀ ତାହାର ଦୁହିତା ଅଟଇ ।
ରୁକ୍ମଣ ବୋଲିଣ ଦୁଷ୍ଟ ତାର ଜ୍ୟେଷ୍ଠବଳା
ଦୁଷ୍ଟଙ୍କର ତୁଲେ ତାର ସବୁବେଳେ ମେଳା ।
ରୁକ୍ମିଣୀ ବିଭା କାଳରେ ହରିଙ୍କି ବାଛଇ
ଦୁଷ୍ଟ ଶିଶୁପାଳ ମେଳେ ସର୍ବଦା ବସଇ ।
ରୁକ୍ମିଣୀ ଦେବୀଙ୍କି ହରିନ୍ୟନ୍ତେ ଜଗନ୍ନାଥ
ବହୁତ ସଂଗ୍ରାମ କରି କଲା ମନ୍ଦକୃତ୍ୟ ।

ରାଗେ ହରି ଛେଦୁଥିଲେ ତାର ମୁଣ୍ଡ ଗୋଟି
ରୁକ୍ମିଣୀ ବିକଳ ଦେଖି କଲେ ସାତ ବେଣ୍ଟି ।
ଲାଜେ ଆଉ ନ ଗଲା ସେ କୁଣ୍ଡି ନଗରକୁ
ହର ଉଦ୍ୟାନେ ସେବିଲା ରୁଦ୍ର ଦେବତାଙ୍କୁ ।
ତାର ଭକ୍ତିରେ ପ୍ରସନ୍ନ ହେଲେ ଉମାନାଥ
ପିନାକ ସମାନ ଧନୁ ଦେଲେ ତାର ହସ୍ତ ।
ରୁଦ୍ର ପ୍ରସନ୍ନେ ହୋଇଛି ସେହି ମହାବଳୀ
ରାଜ୍ୟରେ ପଶନ୍ତେ ଭୀମ ସେ ଆସି ଓଗାଳି
ଆରେ ରେ କାହିଁର ତୁହି ଅଟୁ ଏଡ଼େ ଦୁଷ୍ଟ
ମମରାଜ୍ୟେ ପଶୁ କିମ୍ବା ପାମର ଦର୍ପିଷ୍ଟ ।
କାଳ ଆସି କରିଲାଣି ତୋତେ ଆକର୍ଷଣ
ଏହିକ୍ଷଣି ମୋର ହସ୍ତେ ହରାଇବୁ ପ୍ରାଣ ।
ରୁକ୍ମଣ ଯେ ଆଜ୍ଞା ଦେଲା ନିଜ ସଇନିଙ୍କି
ବିନ୍ଧ କିନା ରେ ନାରାଚ ଛାଡୁଛ କାହିଁକି ।
ରୁକ୍ମଣ ଆଜ୍ଞାରେ ଧାଇଁ ଅଇଲେ ସଇନି
ବିନ୍ଧିଲେ ସର୍ବେ ନାରାଚ ହସ୍ତେ ଧନୁ ଘେନି ।
କ୍ରୋଧଭରେ ବିନ୍ଧିଲେ ଯେ ବାଣ ଡାକ ହାକେ
ଯେସନେ ଗର୍ଜି ଧାମନ୍ତି ଶୂନ୍ୟେ ବଳାହକେ ।
ଭୀମସେନଙ୍କ ଥାଟ ଯେ ଧାଇଁଲେକ ବେଗେ
ମାର ମାର କହି ଯାଇଁ ଉଗାଳିଲେ ଆଗେ ।
କୋପେ ଶସ୍ତ୍ର ଧରିକରି ବେନିବଳ ଉଠି
ଜ୍ୱାଳାବଳୀ ବାଣମାନ କଲେ ତହିଁ ବୃଷ୍ଟି ।
ଶରେ ଶର ପରିତାଳ ହୁଅନ୍ତେଣ ବେନି
ତହିଁରୁ ଝଲକି ଉଠି ଅଛଇ ବହ୍ନି ।
ବିନ୍ଧିବାରୁ ଭୀମସେନ ଥାଟ ଗଳଗାଜି
ସହି ନ ପାରି ରୁକ୍ମଣ ସୈନ୍ୟ ଗଲେ ଭାଜି ।
ରୁକ୍ମଣ ଯେ କୋପକଲା ଥାଟ ଭଗ୍ନ ଦେଖି
କୋପଭରେ ଉଠିଲା ସେ ଉପ୍ରୋଧ ଉପେକ୍ଷି
ଅନିର୍ବାର ଶର ସେ ଯେ ଗୁଣରେ ବସାଇ
ଏକ ମୁଖରେ ବିନ୍ଧିଲେ ତୁହାଇ ତୁହାଇ ।
ଭୀମ ସୈନ୍ୟ ନ ଘୁଞ୍ଚନ୍ତି ରହିଅଛି ଲାଗି
ଅନିର୍ବାର ବିନ୍ଧନ୍ତି ଯେ ଶର ବେଗି ବେଗି ।
ରୁକ୍ମଣ ଉଠିଲା ଯହୁଁ ନିଜଥାଟୁ ଗର୍ଜି
ଭୀମଙ୍କ ସଇନି ଭୟେ ପଳାଇଲେ ଭାଜି ।
ରୁକ୍ମଣ ନାରାଚମାନ କରୁଅଛି ବୃଷ୍ଟି
ତୁଷାର ଆକାଶରେ ଶର ପଡୁଅଛି ଘୋଟି ।
ଏପରି ସଂଗ୍ରାମ ଦେଖି କୋପେ ବୀର ଭୀମ
କମ୍ପାଇ ଗାତ୍ର ବୋଇଲେ ହୋଇ ଅତି ତମ ।
ବାହା ମୋର ରଥ ଶୁଣି ମାରୁତ ସାରଥି
ଆକାଶକୁ ନେଲା ରଥ ପବନୁ ଝଟତି ।

ଭୀମ ହସ୍ତେ କୃତାନ୍ତକ ଗଦାବର ଦେଖି
ଭୟେ ପଳାଇଲେ ବୀର ସମର ଉପେକ୍ଷି ।
ଦଣ୍ଡ ଭଗ୍ନ ଦେଖିକରି ଧାଇଁଲା ରୁକ୍ମଣ
ନବନିଶୀକୁନ୍ତ ଘେନି ବୁଲାଇ ଆପଣ ।
ପ୍ରଳୟ ମେଘ ଯେସନେ ନିର୍ଘାତେ ଗର୍ଜଇ
ବୁଲାନ୍ତେ ଯେ ମହାକୁନ୍ତ ତେମନ୍ତ ଶୁଭଇ ।
ରୁକ୍ମଣ ତୁଲେ ଉଠିଲେ ତାହାର ରାଉତେ
ମାଇଲେ ଲାଙ୍କିଆ ଭୀମସେନଙ୍କର ଗାତ୍ରେ ।
ରୁକ୍ମଣ ମୂର୍ତ୍ତି ଦେଖି ନ ସହିଣ ପାବନି
ରାଗରେ ଉଠିଲେ କରେ ଗଦାବର ଘେନି ।
ରଥରୁ ଉତୁରି ସେହୁ ଧାଇଁଲାକ କୋପେ
ପୃଥ୍ୱୀ କମ୍ପମାନ ହେଲା ଭୀମଙ୍କର ଦର୍ପେ ।
ରଥ ଏକ ଚଢ଼ିକରି ଧାଇଁଲା ରୁକ୍ମଣ
ଭୀମସେନ ନିକଟରେ ମିଳିଲା ବହନ ।
ନିଜ ହସ୍ତେ ବୁଲାଇଣ ଏକ ଅସିପତ୍ର
ତାହାକୁ ପ୍ରହାର କଲା ଭୀମସେନ ଗାତ୍ର ।
ଗଦା ବୁଲାଇ ଉଠିଲା ବୀର ଗଳଗାଜି
ତା ଅସିପତ୍ର କିଞ୍ଚିତମାତ୍ରେ ଦେଲା ଭାଜି ।
କାଳେବର ଗଦା ଭୀମ ବୁଲାଇଣ ପିଟି
ରୁକ୍ମଣ ରଥ ଭାଙ୍ଗିଣ ମହୀପରେ ଲୋଟି ।
ହସ୍ତୀ ଉପରେ ଉଠିଣ ରୁକ୍ମଣର ସେନା
ବୃକୋଦର ବିନ୍ଧିଲେ ତୀକ୍ଷ୍ଣ ତୀକ୍ଷ୍ଣମୁନା
ମରୁତଦେବ ପ୍ରତ୍ୟକ୍ଷେ ଯାକୁ ବରଦାୟେ
ସେ କି ଘୁଞ୍ଚଇ ସାମାନ୍ୟ କ୍ଷତ୍ରିଙ୍କର ଘାୟେ ।
କୋପଭରେ ବୁଲାଇଣ ଗଦା କାଳେବର
ଭୀମସେନ ପିଟିଲା ସେ ହସ୍ତୀର ଉପର ।
ଗଦା ପ୍ରହାରେ ଭାଙ୍ଗନ୍ତେ ହସ୍ତୀ କୁମ୍ଭସ୍ଥଳ
ଯୋଦ୍ଧା ମାହୁନ୍ତେ ଗଡ଼ିଲେ ହୋଇ ଅସମ୍ଭାଳ ।
ଅତିକୋପେ ହସ୍ତୀଙ୍କର ଧରି ଥୋର ହସ୍ତ
ବୁଲାଏ ତାକୁ ମାରୁତି ହୋଇ କୋପାନ୍ୱିତ ।
ଆର ହସ୍ତୀ ଉପରେ ସେ ଦିଅନ୍ତେ ଯେ ପିଟି
ଗଳଗାଜି ମନସ୍ତାପେ ପଡ଼ନ୍ତି ଲେଉଟି ।
ପୁନରପି ଉଠିନିଜ କରେ ଧରି ଚାପ
ତୀକ୍ଷ୍ଣ ମୁନା ଶରମାନ ବିନ୍ଧିଲା ଅମାପ ।
ନାରାଚକୁ ଭୀମସେନ ଅଟନ୍ତି ନିର୍ଭୟା
ଶତସିଂହର ପ୍ରସନ୍ନେ ପାଷାଣ ତା ହିୟା ।
ତହୁଁ ମାରୁତି ଉଠିଲା ପୁଣି ମହାରାଗେ
ଗଜ ଅଶ୍ୱ କଚାଡ଼ଇ ନେଇ ଅତି ବେଗେ ।
ବହୁତ ସେନା ପଡ଼ିଲେ ତହୁଁ ମହୀ ଲୋଟି
ମହାବାତେ ଯେସନେକ ରମ୍ଭାବନ ଲୋଟି ।
ନିଜଦଣ୍ଡ ଅପଚୟ ଦେଖିଣ ରୁକ୍ମଣ
ଭୀମସେନ ଉପରକୁ ଧାଇଁଲା ଆପଣ ।
କ୍ରୋଧଭରେ ନିଜହସ୍ତେ ଧରି ଅସିପତ୍ର
ବୁଲାଇ ପିଟିଲା ନେଇ ଭୀମସେନ ଗାତ୍ର ।
ଦେଖି ମାରୁତି ପାତିଲା ତାର ଗଦାବର
ବେନି ଖଣ୍ଡ ରୁକ୍ମଣର ହେଲା ଅସିବର ।
ପୁଣି ମହାରାଗାନ୍ୱିତେ ପବନ ଆତ୍ମଜ
ରୁକ୍ମଣ ଉପରେ ନେଇ ପିଟିଲା ଗୁରୁଜ ।
ଶିରରୁ ରକ୍ତ ବୋହିଲା ସେ ଗୁରୁଜେ ଫାଟି
ରୁକ୍ମଣବୀର ପଡ଼ନ୍ତେ ଯାଏ ମହୀ ଲୋଟି ।
କୋପଭରରେ ଧାଇଁଲେ ଭୀମ ମହାବଳ
ଆକର୍ଷି ଧଇଲା ବେଗେ ରୁକ୍ମଣର ବାଳ ।
ରଙ୍ଗବର୍ଣ୍ଣ ଆଖିକରି ଓଷ୍ଠେ ଚାପି ଦନ୍ତ
ବାମକରେ କେଶ ଖଡ୍‌ଗ ଧରି ଦକ୍ଷହସ୍ତ ।
ରାଗରେ ଛେଦିବି ବୋଲି ରୁକ୍ମଣର ମାଥ
ଦେଖି ସାରଥି ଧଇଲା ଭୀମସେନ ହାତ ।
ବାବୁ ରାଜା ନିମନ୍ତ୍ରଣେ ଆସି ଧର୍ମ ଅର୍ଥେ
ଏଡେ ରାଜାକୁ ନାଶ ତୁ କରିବୁ କେମନ୍ତେ ।
ସଂହରିଲା ସାରଥିର ବାକ୍ୟ ଅସିବର
ରୁକ୍ମଣ ବୋଲେ ତୁ କେଉଁ ଦେଶ ଦଣ୍ଡଧର ।
ମୁହିଁ ଯୁଦ୍ଧକରି ହାଦେ କୃଷ୍ଣ ବଳରାମେ
ସାଷ୍ଟାଙ୍ଗେ ସେ ବଳରାମ ଜିଣିଲେ ସଂଗ୍ରାମେ
ଭୀମ ବୋଇଲେ କିପାଁ ତୁ ରାମ କୃଷ୍ଣ ବୈରୀ
କି ନିମନ୍ତେ ତାର ସଙ୍ଗେ ତୁହି ଦ୍ୱନ୍ଦ୍ୱକାରୀ ।
ରୁକ୍ମଣ ବୋଇଲା ତୁମ୍ଭେ ଶୁଣ ବୀରମଣି
ରୁକ୍ମଣୀ ଦେବୀ ଅଟନ୍ତି ମୋହର ଭଉଣୀ ।
ତା ସକାଶେ ବରିଥିଲେ ପିତା ସେ ହରିଙ୍କୁ
ବଳକ୍ୱାରେ ମୁଁ ବରିଲି ଯେ ଶିଶୁପାଳକୁ ।
ତହିଁର ନିମନ୍ତେ ଜାଣ ହେଲା ବଡ଼ ଦ୍ୱନ୍ଦ୍ୱ
ତେଣୁ ମୋତେ ଅପମାନ ଦେଲେ ରାମଚନ୍ଦ୍ର
ରୁକ୍ମଣ ବାକ୍ୟେ ଆଶ୍ଚର୍ଯ୍ୟ ହୋଇଲେ ମାରୁତି
ସେହିକ୍ଷଣି ତାର କେଶ ଛାଡ଼ିଲେ ଝଟତି ।
ଭୁଜେ ଭୁଜ ଭିଡ଼ିକରି କଲେ କୋଳାଗ୍ରତ
ତୁତ ସୋଦର ଆମ୍ଭର ପ୍ରାଣର ସଙ୍ଗାତ ।
ହେ ରୁକ୍ମଣ ତୁହି ରାମ ହରିଙ୍କର ଶଳା
ରୁକ୍ମଣୀଙ୍କ ଭାଇ ତୁହି ପଦ୍ମନ ମଉଳା ।
ଆହୋ ଆମ୍ଭର ତୁମ୍ଭର ଅପାର ପୀରତି
ନ ଜାଣିଣ ତୋତେ ମୁହିଁ ଚିନ୍ତିଲି ଦୁର୍ଗତି ।
ନ ଜାଣିଣ ଦ୍ରୋହକଲି ତୁତ ଆତ୍ମ ବନ୍ଧୁ
ଭାଗ୍ୟବଶେ ତୋର ଶିର ନ ଛେଦିଲୁ କନ୍ଧୁ

ଶୁଣିଣ ରୁକ୍ମଣ ଶତ ସହସ୍ର ପ୍ରଣମି
ସାଧୁ ବୃକୋଦର ମୋତେ ରକ୍ଷାକର ସ୍ୱାମୀ ।
ବହୁ ଅପରାଧୀ ମୁହିଁ ଅଟଇ ଅଜ୍ଞାନ
ଶରଣ ରକ୍ଷଣ ତ୍ରାହି କର ଭୀମସେନ ।
ବୃକୋଦର ବୋଲେ ହେଲୁ ପ୍ରାଣହୁଁ ଅଧିକ
ଯାଗକୁ ଚଳ ହେ ଏବେ ହୋଇଣ ଉତ୍ସୁକ ।
ଧନୁମାସ ଶୁକ୍ଳପକ୍ଷ ପୂର୍ଣ୍ଣମୀର ତିଥି
ପୁଷ୍ୟା ନକ୍ଷତ୍ରେ ପ୍ରବେଶ ହୋଇବୁ ତଡ଼ତି ।
ରୁକ୍ମଣ ବୋଇଲା ସ୍ୱାମୀ ଦୟାଥାଏ ଯେବେ
ମୋହର ପୁରେ ମଣୋହି କରନ୍ତୁ ଯେ ଏବେ
ଭୀମ ବୋଇଲେ ମାଇଲି ତୋର ବହୁ ସୈନି
ତୋହର ରାଜ୍ୟେ ଶୁଭୁଛି ବହୁ ଶୋକଧ୍ୱନି ।
ଆବର ତୋତେ ମୁଁ କଲି ରଣେ ପରାଜୟ
ଏ ସ୍ଥଳେ ଭୋଜନ ଅଟେ ଅତି ଅବିଧେୟ ।
ବାରତା ପାଇ ଅଇଲା ଭୀଷ୍ମକ ରାଜନ
ସୁବେଳେ ଦର୍ଶନ ତୋତେ କଲି ଭୀମସେନ ।
ଛାମୁରେ ଥୋଇଲେ ନେଇ ପାଦ୍ୟ ଅର୍ଘ୍ୟଥାଳି
ଭୀମସେନକୁ କରନ୍ତି ଯାଇ ନିଉଛାଳି ।
ଆନନ୍ଦରେ ଅଶ୍ରୁଜଳ ବହେ ଆଖି ବେନି
ଭୀଷ୍ମକ ଯେ ପୂଜା କଲା ବହୁ ରତ୍ନ ଘେନି ।
ଅନେକ ବିନୟେ କହେ ଭୀଷ୍ମକ ନୃପବର
ତୁମ୍ଭେ ଯେ ଅଟ ପଶ୍ଚିମ ଦିଗର ଠାକୁର ।
ତାରି ପାରୁ ମାରିପାରୁ ହେ ମାରୁତି ତୁହି
ତୋହ ବିନା ରକ୍ଷାକର୍ତ୍ତା ଆନ କେହି ନାହିଁ ।
ମୁହିଁ ନ ଜାଣିଣ ଦେବ ମଗାଇଲି ସୈନ୍ୟ
ମୁଁ ହାରିଲି ତୁମ୍ଭର ବା କିସ ଅପମାନ ।
ମୋ ପୁରକୁ ସ୍ୱାମୀ ଏବେ ଆସିବା ହେଉନ୍ତୁ
ଶାକାନ୍ନ ଭୋଜନ କରି ଶାନ୍ତିକି ଭଜନ୍ତୁ ।
ମୋର ପୁରେ ପଡୁ ଏବେ ତୋର ପାଦରଜ
ଏ ହୀନ କୁଣ୍ଡିନଗ୍ରର ବଢୁ ଅଇଶ୍ୱର୍ଯ୍ୟ ।
ତୋ ସ୍ନାନପାଣି ପଡ଼ିଲେ ରାଜ୍ୟରେ ମୋହର
ସୁବିଧାରେ କରିବେ ଯେ ବୃଷ୍ଟି ସୁରେଶ୍ୱର ।
ଆଜହୁଁ ଯେ ନିଷ୍କଣ୍ଟକ ହେଲା ରାଜ୍ୟ ମୋର
ଆଜହୁଁ ଯେ ସୁଖୀ ହେଲେ ମୋ ପ୍ରଜା ନିକର ।
ଆଝୁଁ ସାର୍ଥକ ହୋଇଲା ମୋହର ଜୀବନ
ତୁହି ବୃକୋଦର ଅଟୁ ମୋର ଇଷ୍ଟଧନ ।
ଏପରି ସ୍ତୁତି କରଇ ଭୀଷ୍ମକ ନୃବର
ଚାମର ଯେ ଢାଳୁଛନ୍ତି ବେନି ପାରୁଶର ।
ଇନ୍ଦ୍ର ଦେବତାଙ୍କୁ ଦେଖି ଯେହ୍ନେ ହିମବନ୍ତ
କୁଣ୍ଡୀ ନଗରରେ ତେହ୍ନେ ଉତ୍ସବର କୃତ୍ୟ ।
ସୁବର୍ଣ୍ଣ କଳଶ ନେତ ପତାକା ଉଡ଼ାନ୍ତି
ଆମ୍ରପତ୍ର ତ୍ରୋଣମାନ ଲମ୍ବେ ଚଉକତି ।
ଆଲଟ ପାଟଛତ୍ର ଯେ ଅନେକ ଗହଳେ
ପୂର୍ଣ୍ଣ ଜଗତୀ ମଣ୍ଡିଲେ ଅତି ପରିମଳେ ।
ଏପରି ଉତ୍ସବ କରି ଭୀଷ୍ମକ ନୃବର
ବହୁ କୃତ୍ୟେକୃତ୍ୟ ହେଲେ କୁଣ୍ଡୀ ନଗ୍ର ନର ।
ଯହୁଁ ପ୍ରସନ୍ନ ମୋତେଟି ପଣ୍ଡୁ ପୁତ୍ରଗଣ
ଏଭାବେ କାହାକୁ ମୋର ଭୟ ଅଛି ପୁଣ ।
ଏପରି ଉତ୍ସବ କରି ଭୀଷ୍ମକ ନୃବର
ସାନନ୍ଦେ ଭୀମକୁ ନେଲା ଆପଣାର ପୁର ।
ଭୀମଙ୍କ ଛାମୁରେ କଲା ଅନେକ ଯୋଗାଡ଼
ସୁବାସ ତଣ୍ଡୁଳ ଘୃତ ପରିବା ହରଡ଼ ।
ଭୀମଙ୍କ ସୂପକାର ତା କରଇ ରନ୍ଧନ
ବିଳମ୍ବ ଦେଖିଣ ତହିଁ ଆପେ ଭୀମସେନ ।
ସଉରୀ ଗଉରୀ ନଳବିଧି ତିନି ପ୍ରତି
ବାଲ୍ୟେ ପ୍ରସନ୍ନେ ଅନଳ ଯାହା ଦେଇଛନ୍ତି ।
ଦୋହଉା ସୁମରି ଭୀମ ଆପେ ପାକେ ଲାଗି
ତତକ୍ଷଣେ ରନ୍ଧନ ଯେ ହୋଇଲାକ ବେଗି ।
ଶତେ ପଉଟି ଚାଉଳ ଆଦି ଦ୍ରବ୍ୟମାନ
ହାତ ଲାଗନ୍ତେ ହୋଇଲା ଅମୃତ ସମାନ ।
ପାଞ୍ଚଘଡ଼ି ମଧ୍ୟେ ସବୁ ରାନ୍ଧଣା ହୋଇଲା
ସ୍ନାନାନ୍ତେ ଭୋଜନ ବିଜେ ପବନର ବଳା ।
ରାତ୍ର ହୋଇଅଛି ତହିଁ ସାତଘଡ଼ି ପୂର୍ଣ୍ଣ
ଭୋଜନ କଲେ ଷାଠିଏ ପଉଟି ଯେ ଅନ୍ନ ।
ଆଉ ଅନ୍ନ ଥିଲା ତହିଁ ଚାରିଶତ ପୌଟି
ଯୋଦ୍ଧା ସଇନ୍ୟମାନଙ୍କୁ ସେ ସମସ୍ତ ଅଣ୍ଟି ।
ଭୋଜନ ଅତୃପ୍ତି ଭୀମ ସଂଗ୍ରାମେ ଅତୃପ୍ତି
ଶୃଙ୍ଗାରେ ଅତୃପ୍ତି ଭୀମ ଶୟନେ ଅତୃପ୍ତି ।
ଭୋଜନ ସାରିଣ ବୀର କଲେ ଆଚମନ
ସଂହାସନ ବିଜେ କଲେ ଅତି ହୃଷ୍ଟମନ ।
ରୁକ୍ମଣ ଆପେ ତାମ୍ବୁଳ ଭାଙ୍ଗି ଆଣିଦେଲା
ନାନାଜାତି ପୁଷ୍ପେ ତାଙ୍କୁ ବେଶ ସଜାଇଲା ।
କୁଟୁମ୍ବଯାକ ଘେନିଣ କୁଣ୍ଡୀ ନରେଶ୍ୱର
ଭୃତ୍ୟପ୍ରାୟ ଖଟିଅଛି ଭୀମଙ୍କ ପାଶର ।
ଶ୍ରୀହସ୍ତରେ ଶାଢ଼ୀ ଦେଇ ପବନ ତନୟ
ବୋଲେ ବଡ ତୃପ୍ତି କଲୁ ମୋତେ କୁଣ୍ଡିରାୟ ।
ମାଗ ଆହେ ଭୀଷ୍ମକ ଯେ ତୁ ତୋହର ଇଚ୍ଛା
ସତ୍ୟ ମୋର ପୂରାଇବି ତୋର ମନୋବାଞ୍ଛା
ଭୀଷ୍ମକ ବୋଇଲା ଯେବେ ବର ଦେବ ସ୍ୱାମୀ
ମହାଭାରତ ଯୁଦ୍ଧେ ମୋ ପୁତ୍ରେ ଥିବୁ ଚିହ୍ନି ।

ଭୀମବୋଲେ ତୋର ପୁତ୍ର ଥିଲେ ମୋର କତି
କେହି ତାହାଙ୍କୁ ଦେଇ ନ ପାରିବେ ବିପତ୍ତି ।
ଯଦ୍ୟପି ରହିବେ ସେହି କୌରବଙ୍କ ସାଥ
ଚିହ୍ନିଲେ ନ ମାରିବି ଯେ ତ୍ରିବାର ମୋ ସତ ।
ମହତ ଲୋକଙ୍କର ବାଣୀ ପାଷାଣର ଗାର
ଭୀଷ୍ମକ ବୋଲେ ନିର୍ଭୟ ହେଲା ମୋ କୁମର
ରାତ୍ର ଅଢ଼ାଇ ପ୍ରହରେ ଭୀମସେନ ବିଜେ
କୁଣ୍ଡୀନଗ୍ର ତେଜିଗଲେ ପଦ୍ମଦଳ ରାଜ୍ୟେ ।
ସିଂହାସନେ ବସିଅଛି ପଦ୍ମନକେଶରୀ
ପାଞ୍ଚଶତ ପାରିଦଣ୍ଡ ଘେନି ଭୋଗକରି ।
ସପତ କ୍ଷଉଣୀ ବଳ ତାହାଙ୍କୁ ଖଟଇ
ପଦ୍ମଦଳ ଦେଶର ସେ ଠାକୁର ଅଟଇ ।
ପଦ୍ମଦେଶେ ପରବେଶ ଭୀମ ମହାବୀର
ବୀରତୂର ଶବଦରେ କମ୍ପେ ତିନିପୁର ।
ରାଜାର ଅଗ୍ରତେ ଯାଇ କହିଲେ ମୁନେହି
କେଉଁ ଦେଶରାଜା ଆମ୍ଭ ରାଜ୍ୟକୁ ଆସଇ ।
ରଥ ଗଜ ଅଶ୍ୱ ଆଉ ପଦାତି ବହୁଳ
ବୀର ତୂର ଶବଦରେ କମ୍ପେ ଭୂମଣ୍ଡଳ ।
ବହୁ ପ୍ରତିଜ୍ଞା ତାହାର ବଡ଼ ବଳବନ୍ତ
ଯୋଦ୍ଧାପଣେ ସମରଥ ପ୍ରାକର୍ମେ ଶକତା ।
ବିଚାରିଣ ବୁଝ ଆହେ ପଦ୍ମନ କେଶରୀ
ସମାଧାନ କରିବା କି ସମର ବା କରି ।
ଶୁଣିଣ ରାଜ୍ୟଈଶ୍ୱର କଥା କୁତୂହଳେ
ତିନିଲକ୍ଷ ଯୋଦ୍ଧା ଡାକି ରାତ୍ରେ ଆଜ୍ଞା ଦେଲେ
ସାଜ ଆରେ ତୁରଙ୍ଗମ ବଳବନ୍ତ ହସ୍ତୀ
ରାଜ୍ୟେ ପୂରାଇ ନ ଦିଅ ଧରିଆଣ ରଥୀ ।
ପଦ୍ମନ କେଶରୀ ରାଜା ଶୁଣିଣ ବଚନ
ଧାଇଁଲେ ସେ ସମଦଣ୍ଡ ଘେନି ଯୋଦ୍ଧାଗଣ ।
ବିହୁଡ଼ି ହୁଳା ଲାଗିଲା ତହିଁ ବେନି କୋଟି
ରାତ୍ରକାଳେ କି ମନ୍ଦର ଗିରି ଆସେ ଘୋଟି ।
ମାରମାର ଧର ଧର ପଡୁଅଛି ଡାକ
ପୃଥ୍ୱୀ କମ୍ପେ ଶୁଣିକରି କ୍ଷତ୍ରିଙ୍କର ହାକ ।
ଭୀମସେନକୁ ବୋଲଇ ମରୁତ ସାରଥି
ଦଣ୍ଡ ସାଜି ଆସେ ପରା ଏ ଦେଶ ନୃପତି ।
ବିଶେଷ ଅନ୍ଧାର ଅତି ଘୋର ଏ ରଜନୀ
ସଂଗ୍ରାମେ କେହି ପଡ଼ିଲେ ନ ପାରିବା ଚିହ୍ନି ।
ଏବେ କରିବାକୁ ଆମ୍ଭେ କେବଣ ଉପାୟେ
ଏକ୍ଷଣି ମରିବେ ଯାର ସଇନି ଲୁଚାଏ ।
ଭୀମସେନ ବୋଲେ ତୁହି ନ କହ ଏମନ୍ତ
ଥୋକାଏ ନ ପଡ଼ିଲେ ଯେ ନ ଭାଙ୍ଗଇ ମତ୍ତ ।
ମୁହିଁ ଅନର୍ଗଳ କ୍ଷତ୍ରୀ ଅଟେ ରଣରଙ୍କା
ସବୁଙ୍କୁ ମାରନ୍ତି ମାତ୍ର ହରିଙ୍କି ମୋ ଶଙ୍କା ।
ଯେତେ କଷ୍ଟ ପାଉଥିଲେ ଏହି ରାଜାମାନେ
ଜରାବନ୍ଦି କରିଥିଲା ଦ୍ୟନ୍ତା ହୁତାଶନେ ।
ଜରା ମାରି ଉଦ୍ଧାରିଲ ଏ ରାଜା ସବୁନ୍ତି
ବିଶାଶଏ ଦିନ ମଧ୍ୟେ ଭୁଲିଲେ ଏ ପ୍ରୀତି ।
ଏହା କହୁ କହୁ ଭୀମ ହୋଇ ମହାରାଗ
ପର୍ବତ ଉପରୁ ଡେଇଁ ପଡ଼ିଲେ ସେ ବେଗ ।
ନିଦାଘ କାଳେ ଦିଶଇ ଯେସନେ ତପନ
ସେହିପରି ଦେଖାଗଲା ଭୀମଙ୍କ ବଦନ ।
ଶୂନ୍ୟଭୁବନେ ଭେଦେ କି ଘୋରରୂପ କାୟେ
ବେନି ଲୋଚନ ବୁଲାଇ କାଳଚକ୍ର ପ୍ରାୟେ ।
ମନ୍ଦରଗିରି ଯେସନେ ନିଜ ସ୍ଥାନୁ ଉଠି
ଆସେ ସେ ସ୍ୱରୂପ ଦିଶେ ଭୀମ ଦେହ ଗୋଟି
ବିରୂପ ଯେ ବୀରଭଦ୍ର ବେନି ସେନାପତି
ଦୁଇପାଶେ ରହିଛନ୍ତି ଭୀମସେନ କତି ।
ରାହୁତୁଲେ ଦିଶେ ଯେହ୍ନେ କେତୁ ଯେ ମଙ୍ଗଳ
ସେହି ସ୍ୱରୂପ ଦିଶନ୍ତି ତିନି ଅନର୍ଗଳ ।
ଉଠିଲେ ଯେ ରେ ରେ କାର କରି ଗଳଗାଜି
ତ୍ରାସେ ପଦ୍ମଦଳଥାଟ ପଳାଇଲେ ଭାଜି ।
ପାଣ୍ଡବ ସୁନ୍ଦର କରେ ଗଦାବର ଧରି
ଯେହ୍ନେ ମତ୍ତଗଜ ଯାଏ ନ ମାନି କେଶରୀ ।
ବ୍ୟାଘ୍ର ଦେଖିଣ ଯେସନେ ହୁରୁଡନ୍ତି ଗାଈ
ସେପରି ସଇନମାନେ ଗଲେକ ପଳାଇ ।
ଗିରିବର ପ୍ରାୟ ଭୀମ ପିଟେ ଗଦା ତୋଳି
ରଥ ଗଜ ଅଶ୍ୱ ସୈନ୍ୟ ସବୁ ହୁଅନ୍ତି ଧୂଳି ।
କୋପଭରେ ଅଧରରେ ଚାପିଣ ଦଶନ
ମେଘ ଗର୍ଜନ ପରାୟେ କଲା ଗରଜନ ।
ଅଶୀସହସ୍ର ଯୋଦ୍ଧାଏ ଥିଲେ ଆଗୁଆଣି
ପ୍ରହାରରେ ପଡ଼ିଲେ ସେ ଅଗ୍ନିକଣା ଜାଣି ।
ଗଦାବରେ ବୁଲାଅନ୍ତେ ଉଡ଼ି ରଥମାନ
ବହୁଦୂରେ ପଡ଼ନ୍ତି ସେ ହୋଇକରି ଚୂର୍ଣ୍ଣ ।
ରାଜା ନବରେ ପଶିଲେ ଭୀମ ଗଳଗାଜି
ଗଦାଘାତେ ଘରମାନ ତାର ଦେଲେ ଭାଜି ।
ତୁଳାମାବାସ୍ୟାରେ ହେଲେ ସୁଆତୀ ନକ୍ଷତ୍ର
ସେପରି ଭାଙ୍ଗିଲେ ଘର ବୃକ୍ଷାଦି ବହୁତ ।
ଦେଖିଣ ପଦ୍ମ କେଶରୀ କରି ମହାଭୟେ
ଗୃହ ଛାଡ଼ିଣ ପଳାଏ ପଛକୁ ନ ଚାହେଁ ।
ଆରେ ରହ ରହ ବୋଲି ଡାକଇ ପାବନି
କାହିଁକି ପଳାଇଛୁରେ ଜୀବନକୁ ଘେନି ।

ମରୁତ ସାରଥି କହେ କ୍ରୋଧ ଶାନ୍ତିକର
ରାଜା ଆଗେ ଜଣାଇବା ଆମ୍ଭେ ଆସିବାର ।
ନିସତ ହୋଇ ପଳାଏ ରାଜା ଗୃହ ତେଜି
ସୈନ୍ୟମାରି ରାଜ୍ୟତାର ପକାଇଲ ଭାଜି ।
ବୃକୋଦରକୁ ସମର୍ପି ଚଳଇ ମରୁତ
ପଦ୍ମକେଶରୀ ପଳାନ୍ତେ ଉଗାଳିଲା ପଥ ।
ରହ ହେ ପଦ୍ମକେଶରୀ କାହିଁକି ପଳାଉ
ଖେଳନ୍ତା ସିଂହ ଛାମୁରେ କେତେ ଦୂର ଯାଉ
ଜରାସନ୍ଧ ନିସୂଦନ ପ୍ରତିଜ୍ଞା, ଯାହାର
ଭକତବତ୍ସଳ ସେହୁ ଶରଣ ପଞ୍ଜର ।
ପଶ୍ଚିମ ବରଣେ ଆସେ ତୁ ଜାଣୁ ନାହିଁକି
ଚଞ୍ଚଳେ ବାୟୁ ଛାମୁରେ ପଳାଉ କାହିଁକି ।
ଭୀମ ଦିଗବିଜେ ଶୁଣି ପଦ୍ମନ କେଶରୀ
ରଥପରୁ ବେଗ ହୋଇ ପଡ଼ିଲା ଉତୁରି ।
ଶ୍ରୀୟା ସୁମତୀ ବୋଲିଣ ବେନି ପାଟରାଣୀ
ତାଙ୍କୁ ଘେନି ପ୍ରଣମିଲା ପଦ୍ମ ନୃପମଣି ।
ଭୀମସେନ ଉଭା ହୋଇଛନ୍ତି ରଥପର
ପ୍ରଣମିଲା ଶିରେ ହସ୍ତ ଦେଇ ନୃପବର ।
ପଦ୍ମକେଶରୀ ବହୁତ ଦୂରୁ ପରଣାମି
ବୋଲେ ସର୍ବ ଦୋଷ ମୋର କ୍ଷମାକର ସ୍ୱାମୀ
ଜରାସନ୍ଧଘରେ ମୁହିଁ ହୋଇଥିଲି ବନ୍ଦୀ
ଅନେକ ଶାସ୍ତି ଯେ ମୋତେ ହେଉଥିଲା ବାନ୍ଧି
ଘୋର କଷଣରୁ ମୋତେ ଉଦ୍ଧରିଛୁ ସ୍ୱାମୀ
ଧିକ ମୋହର ଜୀବନ ନ ପାରିଲି ଚିହ୍ନି ।
ସ୍ୱାମୀ ମୁହିଁ ମତିହୀନ କ୍ରିୟା ମୋର ହୀନ
ପରଲୋକ ବାନ୍ଧବ ହେ ତାର ଭୀମସେନ ।
ଏହା କହି ଶ୍ରୀଚରଣେ ନମେ ଯୋଡ଼ି ପାଣି
ଭୀମସେନ ଆଜ୍ଞାଦେଲେ ଉଠ ନୃପମଣି ।
ଆଜ୍ଞା ପ୍ରମାଣରେ ପଦ୍ମକେଶରୀ ଉଠିଲା
ଆନନ୍ଦରେ ଅଶ୍ରୁଜଳ ନେତ୍ରୁ ବୁହାଇଲା ।
ଅକ୍ଷତ ଗୁବାକ ତାକୁ ଦେଲେକ ପାବନି
ଚଳ ହୋ ପଦ୍ମକେଶରୀ ତୋର ଦଣ୍ଡ ଘେନି ।
ଶୁଭେଣ ପ୍ରବେଶ ହୁଅ ରାଜସୂୟ ସଭା
ଅଜ୍ଞାନ ପଣରେ ଦୋଷ କଲୁ ତୁହି ଅବା ।
ପୁଣ ପୁଣ ପ୍ରଣମିତ ପଦ୍ମ ଦଣ୍ଡଧର
ସ୍ୱାମୀ ମୋ ପୁରେ ମଣୋହି ପାଇଁ ବିଜେ କର
ଭୀମସେନ ବୋଲେ ସୁଖଭୋଗେ ଇଚ୍ଛା ନାହିଁ
ଯଜ୍ଞ ନିମନ୍ତେ କୃଷ୍ଣଙ୍କ ଆଜ୍ଞା ଅଛି ଏହି ।
ନଉଦିନ ମଧ୍ୟେ ଯେହୁ ରାଜା ନ ଆସିବ
ଯେ ଯେଉଁଠି ଥିବ ତହିଁ ଛେଦନ ହୋଇବ ।
ଆହେ ରାଜା ଏହିପରି ବାସୁଦେବ ଆଜ୍ଞା
ମୁହିଁ ତାଙ୍କ କଥା କରି ନ ପାରେ ଅବଜ୍ଞା ।
ଆମ୍ଭେ ରହି ନ ପାରିବୁ ତୁହି ଅପରାଧୀ
ସହସ୍ରେକ ରାଜା ନଉ ଦିବସରେ ସାଧି ।
ଆହେ ପଦ୍ମକେଶରୀ ତୁ ଜରା ବଧକାଳେ
ରାଜସୂ ଯାଗ ବୋଲିଣ କହିଲୁ ସେ ବେଳେ
ତେତେ଼ କଥା ପାଶୋରିଲୁ ତୁହି ପାଞ୍ଚମାସେ
ପୁଣ ସଂଗ୍ରାମ କରିଲୁ କଥା ଅବିଶ୍ୱାସେ ।
ଏହିପରି କହି ଭୀମ ରାଜ୍ୟକୁ ଚଳଇ
ମରୁତକୁ ଆଜ୍ଞା ଦେଲେ ରଥ ଦିଅ ବାହି ।
ପଦ୍ମଦଳ ନରପତି କରିଲା ପ୍ରୟାନ
ବିଜେ ପାଣ୍ଡବ ସୁନ୍ଦର ହିରଣ୍ୟ କାନନ ।
ହିରଣ୍ୟ ନାମରେ ତହିଁ ଅଛି ନଦୀଗୋଟି
ପଞ୍ଚଧାର ପର୍ବତରୁ ବାହାରି ସେ ଫାଟି ।
ସେ ନଦୀ ପଶ୍ଚିମେ ଅଛି ମାଧବ ନୃପତି
ହିରଣ୍ୟ ନଗର ସେହି ଅଟେ ଅଧିପତି ।
ସେ ରାଜାର ଦେଶାଉରେ ପଦ୍ମଦେଶେ ଥିଲେ
ଯାଦବସେନ ଆଗରେ ସମସ୍ତ କହିଲେ ।
ପଶ୍ଚିମଦିଗ ବରଣେ ବୀର ବୃକୋଦର
ଅନେକ ରାଜାର ଦର୍ପ କରୁଅଛି ଚୂର ।
ଶରଣ ରକ୍ଷଣ ସେହି କଥା ଜଗଜ୍ଜେଠି
ସମଦଣ୍ଡ ଘେନି ଚାଲ ଆଣିବା ପାଛୋଟି ।
ଦେଶାଉରଙ୍କ ମୁଖରୁ ଏ ବାରତା ଶୁଣି
ଅଶୀଲକ୍ଷ ତୁରଙ୍ଗମ ରାଜାର ପଲାଣି ।
ବାରବାନି ସ୍ୱର୍ଣ୍ଣେ ଗଢ଼ା ତାହାର ମୁକୁଟ
ମାଣିକ୍ୟ ମୁକ୍ତାରେ ସେହି ଦିଶେ ଝଟ ଝଟ ।
କା ହସ୍ତେ ଆଲନ୍ଥ କା ହସ୍ତରେ ପାଟଛତ୍ର
ଚାମର ପତାକା ଅଶୀଲକ୍ଷ ଯୋଦ୍ଧାହସ୍ତ ।
ଆହ୍ନିକ କ୍ରିୟାକୁ ଭୀମ କରୁଅଛି ବସି
ଏ ବେଳେ ମାଧବ ରାଜା ପ୍ରବେଶିଲା ଆସି ।
କାଳିଞ୍ଜନ ପଡ଼ିହାରୀ ଭୀମଙ୍କ ଡ଼ଗର
ଠାକୁର ଆହ୍ନିକବେଳେ ରହେ ସେହିଠାର ।
ଛାମୁରେ ଜଣାଏ କାଳିଞ୍ଜନ ପଡ଼ିହାରୀ
ମାଧବ ରାଜା ଆସିଛି ଦରଶନ କରି ।
ଆଜ୍ଞା ଦେଲା ଠାକୁରଙ୍କୁ ଆସ ହୋ ମାଧବ
ଦେଖିଲେ ଥାଟ ଲୋକଙ୍କ ମନେ ଭକ୍ତିଭାବ ।
ଆଲଟ ଚାମର ଛତ୍ର ସବୁ ଉପଲେଖି
ଦୂରେ ଥାଇ ଭୀମସେନ ତାହାସବୁ ଦେଖି ।
ଚାହାନ୍ତେ ମାଧବସେନ କଲା ନିଉଛାଳି
ଆଲଟ ଚାମର କେଳି ପଞ୍ଝାମାନ ଢାଳି ।

ଦେଖା ଦରଶନୀ ସହ ସସ୍ର ଭାର ଧନ
ଘେନି ନିଉଛାଳି କଲା ସେ ମାଧବସେନ ।
ତାକୁ ଦେଖି କୋଳାଗ୍ରତ କଲେ ସ୍ନେହେଁ ଭୀମ
ଆମ୍ଭର ସୋଦର ନାମ ତୁମ୍ଭର ଯେ ନାମ ।
ଶ୍ରୀହସ୍ତେ ଶାଢ଼ୀ ତାହାକୁ ଦେଲେ ବୃକୋଦର
ଦଣ୍ଡ ଘେନି ରାଜସୂୟେ ଯାଅ ନୃପବର ।
ଭୀମଙ୍କ ବଚନେ ବୋଲେ ସେ ମାଧବସେନ
ସ୍ୱାମୀ ଆଜ ହୋଇଅଛି ମୋର ପିତୃଦିନ ।
ଗଣ୍ଡା ଗୋଟିଏ ମାରିଣ ଆଣିବଇଁ ମୁହିଁ
ଭୋଜନ କରି କାରଣ କରିବେ ଗୋସାଇଁ ।
ଏ ବଚନ ଶୁଣି ଭୀମ ହୋଇଲେ ତୃପତି
ଉତ୍ତମ ଭୋଜନ ଦେଲେ ମାଧବ ନୃପତି ।
ବହୁ ଶୀତଳ ନିଯୋଗୀ ଦ୍ରବ୍ୟମାନ ଦେଲେ
ସ୍ନାହାନ ସାରି ଭୋଜନେ ଭୀମସେନ ଗଲେ ।
ଆଚମନ ସାରିଣ ସେ ବୀର ବୃକୋଦର
ହିରଣ୍ୟ ନଗରୁ ଥାଟ ଚଳାଇ ତାଙ୍କର ।
ଚେଦିଦେଶ ବୋଲି ରାଜ୍ୟ ଅଛଇ ଗୋଟିଏ
ସେ ରାଜ୍ୟେ ପ୍ରବେଶ ହେଲେ ପବନ ତନୟେ
ଚେଦିଦେଶ ରାଜା ନାମ ଅଟେ ଦମଘୋଷ
ଶାଲ୍ୱ ଶିଶୁପାଳ ତାର ବେନିଗୋଟି ଶିଷ୍ୟ ।
ପାଞ୍ଚ ପରାର୍ଦ୍ଧ ଯେ ଚାରିପଦ୍ମ ତାର ବଳ
ଅସୁର ଅଂଶରେ ଜାତ ସେହି ଶିଶୁପାଳ ।
ପିଙ୍ଗଳଭଦ୍ର ବୋଲିଣ ତହିଁ ନଦୀଗୋଟି
ଶିବ ପିଙ୍ଗଳ ଜଟାରୁ ଆସୁଅଛି ଫୁଟି ।
ସେ ନଦୀ କୂଳରେ ଚେଦି ନଗ୍ର ଯେ ବସଇ
ରାଜ୍ୟ ଆୟତନ ଶତ ଯୋଜନ ଅଟଇ ।
ତାହାକୁ ଖଟନ୍ତି ବିଶାଶତେ ନରପତି
ପଞ୍ଚବିଂଶସସ୍ର ପାଞ୍ଚ ଅଇରାବତ ହସ୍ତୀ ।
କୋଟିଏ ଲକ୍ଷ ସାଜଇ ଚୋଖାଇ ତୁରଙ୍ଗ
ଲେଖାରେ ଜରାସନ୍ଧର ଭିଣୋଇ ଅର୍ଦ୍ଧାଙ୍ଗ ।
ସେ ରାଜ୍ୟେ ପ୍ରବେଶ ଯାଇ ପଣ୍ଡୁଙ୍କ କୁମର
ବୀରତୂର ଶବଦରେ ଉଛୁଳେ ନଗର ।
ମୃଗୟା ବିନୋଦେ ଭ୍ରମୁଥିଲା ଶିଶୁପାଳ
ଚୋଖା ଅଶ୍ୱ ଖୁରପାଣି ପାଞ୍ଚଶତ ବଳ ।
ବନେ ଭ୍ରମଇ କୁମର ବେଣ୍ଟର ବିନୋଦେ
ବନ ଗହନ କନ୍ଦର ପୂରେ ଘଣ୍ଟାନାଦେ ।
ସହସ୍ରେକ ଲାଗିଅଛି ହୁଳା ଯେ ଦଉଡ଼ି
ପାରିଧି ବିନୋଦେ ମୃଗ ମାରେ ସେ ଦିହୁଡ଼ି ।
ମାରଇ ଯେ ବାଘଭାଲୁ ଶୃଗାଳାଦି ଜୀବ
ଗଣ୍ଡା ମୃଗ ଧରେ ହୋଇ କଉତୁକ ଭାବ ।

କୃଷ୍ଣାଜିନ ମୃଗ ମାରେ ଋଷିଙ୍କ ନିମନ୍ତେ
ଆଉ କେତେ ଜୀବ ମାରେ ଭୋଜନର ଅର୍ଥେ
ନନ୍ଦାବର୍ତ୍ତକ ବୋଲିଣ ପରବତ ଗୋଟି
ସେ ଗିରି ଉପରେ ଯାଇଁ ଶିଶୁପାଳ ଉଠି ।
ବନ ମଧରେ ଦେଖିଲା ଭୀମସେନ ଥାଟ
ଆସନ୍ତି ବଳ ମାଡ଼ିଣ ନ ଦିଶଇ ବାଟ ।
ପର୍ବତେ ଥାଇଣ ସର୍ବ ଦେଖେ ଶିଶୁପାଳ
ରାଦ୍ରେ ଗମଇ କେବଣ ଅସୁରର ବଳ ।
ଶିଶୁପାଳ ଆଜ୍ଞା ଦେଲା ଯୋଦ୍ଧାଗଣ ରାଇ
ବିନ୍ଧିଲେ ନାରାଚ ସର୍ବେ ପର୍ବତରେ ଥାଇ ।
ଧନୁକୁ ସାଜିଣ ହସ୍ତେ ଧରି ସର୍ବ ଯୋଧୀ
ପର୍ବତ ଶିଖରେ ଥାଇ ଆକର୍ଷିଣ ବିନ୍ଧି ।
ଉହର୍ଗରୁ ଶରମାନ ପଡେ ଅନୁକ୍ଷଣେ
ଶରଘାଏ ଘୁମାଇଲେ ଭୀମଙ୍କ ସଇନେ ।
ନିଜ ସୈନ୍ୟ ଅସାଷ୍ଟମ ଦେଖିଣ ପାବନି
ଆପଣେ ଧାଇଁଲେ କରେ ଗଦାବର ଘେନି ।
କାଳବର ବିକରାଳ ବେନି ସେନାପତି
ଦୁଇ ବୀରେ ଭୀମ ବାମ ଦକ୍ଷିଣରେ ଛନ୍ତି ।
ରଥ ତ୍ୟାଗ କରିଣ ଯେ ଉଠି ଧାଡିକାରେ
ଯେସନକ ବୃଷ୍ଟିକରେ ଜଳ ଆଷାଢ଼ରେ ।
ସେହିମତି ପଡୁଅଛି ଅନୁକ୍ଷଣେ ବାଣ
ଶସ୍ତ୍ର ପଡି ଚୂର୍ଣ୍ଣ ହୋଇ ଭୀମଙ୍କ ହୃଦେଣ ।
ପର୍ବତ ଉପୁଡ଼ି ଯେହ୍ନେ ଆସୁଥାନ୍ତି ଚାଲି
ସ୍ତମ୍ଭୀଭୂତ ଶିଶୁପାଳ କିଛିହିଁ ନ ବୋଲି ।
ରେ ରେ କହି ସୈନ୍ୟମଧ୍ୟେ ପଶିଲା ସେ ଯାଇଁ
ରାହୁ ଆକର୍ଷିଲେ ଯେହ୍ନେ ରଖନ୍ତା କେ ନାହିଁ ।
କେଶ ମୁକଳିତ ଆଉ ମୁକୁଳା ବସନ
ଶରଦ ମେଘ ପ୍ରାୟେକ ଶୁଭଇ ଗର୍ଜ୍ଜନ ।
ପ୍ରହାରନ୍ତି ସଇନେ ଯେ କୁନ୍ତ ମୁନା ତୀକ୍ଷ୍ଣ
ଭୀମ ଦେହେ ନ ଭେଦଇ ହୁଅନ୍ତି ବିମୁଖ ।
ବିନ୍ଧିଣ ବିମୁଖ ହେଲେ ପାରିଦଣ୍ଡମାନେ
ନାରାଚ ଗୋଟିଏ ନାହିଁ କାହାରହିଁ ଦ୍ରୋଣେ ।
ରେ ରେ କରି ଭୀମ ଯହୁଁ ଅଇଲାକ ଧାଇଁ
ପର୍ବତ ଉପରୁ ସର୍ବେ ପଡ଼ିଲେକ ଡେଇଁ ।
ପଳାଇଲେ ଶିଶୁପାଳ ସୈନ୍ୟ ଅସମ୍ଭାଳେ
ଗୋଡ଼ାଇ ପିଟିଲେ ତାଙ୍କୁ ଭୀମ ଅନର୍ଗଳେ ।
ବହୁତ ସଇନ ଯହୁଁ ସମରେ ପଡ଼ିଲେ
ପର୍ବତ ଉପରୁ ପଡ଼ି କେତେ ଚୂର ହେଲେ ।
ଶତଯୋଦ୍ଧା ସଙ୍ଗେ ଘେନି ଦମଘୋଷବାଳ
ଭୀମ ପରେ ଶରବୃଷ୍ଟି କଲା ଅନର୍ଗଳ ।

ରେ ରେ କାର ଶବ୍ଦ କରି ଭୀମ ମହାବଳ
ବାମକରେ ଧଇଲା ଯେ ଶିଶୁପାଳ ବାଳ ।
ରାତ୍ର ହୋଇଅଛି ତହିଁ ଆସି ବାର ଘଡ଼ି
ଶିଶୁପାଳକୁ ଭୀମ ଯେ ଜାନୁପରେ ପାଡ଼ି ।
ବିଜେ କର୍ଣ୍ଣ କଟାରିକୁ ପିଟେ ତା ବକ୍ଷରେ
ନ ଛିଣ୍ଡିଲା ଶିଶୁପାଳ ଶିର କୃଷ୍ଣକରେ ।
କଟାରି ଭାଙ୍ଗିଣ ତହୁଁ ହେଲା ବେନିଖଣ୍ଡ
ନବନିଶି ଅସ୍ତ୍ରମାରେ ଭୀମ ପରଚଣ୍ଡ ।
ଅସିପତ୍ର ପଡ଼ିକରି ଶିଶୁପାଳ କଣ୍ଠ
କାଟି ନ ପାରିଲା ତାର କଣ୍ଠ ଏଡ଼େ ଆଣ୍ଠ ।
ଶିଶୁପାଳ କେଶ ଧରି ପବନର ବାଳ
ବୋଲେ କିପାଁ ନ ଛିଡ଼ଇ ତୋହର ଏ ଗଳ ।
ଭୀମସେନର ଅନଙ୍ଗ ପ୍ରାୟ ରୂପ ଦେଖି
ଅଙ୍ଗାରପନ୍ନଙ୍ଗ କିବା ଅଇଲା ଏଥିକି ।
ଦେଶାଉରେ କହିଦେଲେ ଦମଘୋଷ ଆଗେ
ପୁତ୍ର ତୋର ନାଶଗଲା ବିଜେକର ବେଗେ ।
ଅସମ୍ଭାଳ ହୋଇକରି ଧାଏଁ ନୃପମଣି
ଗୋଡ଼ାବନ୍ତେ ଅମାନତ୍ୟ ଥାଟ ଯେ ପଲାଣି ।
ରାଗେ ଦମଘୋଷ ଧାଏଁ କରେ ଧରି ଖଡ୍‌ଗ
ଅଧର ପୁଷ୍ଟ କରିଣ ଧାଏଁ ଅତି ବେଗ ।
ଦଣ୍ଡ ଘେନି ଦମଘୋଷ ମିଳି ତତକାଳ
ଦେଖିଲା ଧରିଛି ପୁତ୍ର କେଶ ମହାବଳ ।
ସବଳରେ ଧରି କେଶ ଟେକି ବାମକରେ
ଦକ୍ଷିଣ କରେ ଗଦାକୁ ବୁଲାଇଣ ଖରେ ।
ପର୍ବତ ଉପରୁ ବୀର ପଡ଼ିଲାକ ଡେଇଁ
ଦମଘୋଷର ସଇନି ସ୍ତମ୍ଭୀଭୂତ ହୋଇ ।
ଭୀମକୋପ ଦେଖି ଭାବେ ମରୁତ ସାରଥି
ଦମଘୋଷର ସମ୍ପତ୍ତି ସରିବ ଏ ଘାନ୍ତି ।
ରଥ ଘେନିଣ ମରୁତ ଗଲା ରାଜାପାଶେ
ରାଜାର ସନ୍ନିଧେ ଯାଇ କହଇ ବିଶ୍ୱାସେ ।
କାହାକୁ କୋପକର ହେ ତୁମ୍ଭେ ନୃପମଣି
ଭୀମସେନ ଦିଗବିଜେ ତୁମ୍ଭେ କି ନ ଜାଣି ।
ଜରାକୁ ନିଧନ ଏହୁ କଲେକ ସଂଗ୍ରାମେ
ରାଜାଙ୍କୁ ମୁକ୍ତ କରିଲେ ଯୁଧିଷ୍ଠିଙ୍କ ଧର୍ମେ ।
ତାର ତୁଲେ ରାଜା ତୁହି କରିଲେ ବିବାଦ
ଏହିକ୍ଷଣି ବୁଡ଼ାଇବୁ ଏତେକ ସମ୍ପଦ ।
ଏହି ବାରତା ପାଇଣ ଚେଦିଦେଶ ରାୟ
ମନ ମଧ୍ୟରେ ତାହାର ହେଲା ବଡ଼ ଭୟ ।
ଏହି ଭୀମସେନ ଅଟେ ହିଡ଼ିମ୍ବିକୀ ନାହା
ଅଜ୍ଞାନରେ ପୁତ୍ରମୋର ହୋଇଲା ଦୋରେହା
କେବଣ ସ୍ଥାନରେ ଅବା ଲୁଚିବି ମୁଁ ଯାଇଁ
ପାଣ୍ଡବେ ବିବାଦୀ ହୋଇ ଗତି ମୋର କାହିଁ
ମରୁତ ବୋଇଲା ସେହୁ ଦୁଃଖୀ ଉଦ୍ଧାରଣ
ଭକତଜନ ବତ୍ସଳ ଶରଣ ରକ୍ଷଣ ।
ଆସ ଆସ ମହାରାଜା ସମର୍ପିବି ନେଇ
ପୁତ୍ର ତୋର ରକ୍ଷା ହେବ ଭୟ କର ନାହିଁ ।
ବୋଲେ ଦମଘୋଷ ମୋର ନାହିଁ ଯେ ଭରସା
ତୋହର ବଚନେ ମୁହିଁ କଲି ପ୍ରତିଆଶା ।
ଦମଘୋଷ ହସ୍ତ ଧରି ମରୁତ ସାରଥି
ଭୀମସେନର ଛାମୁକୁ ନେଲାକ ଝଟତି ।
ଦଶନଖ ମୁଖେ ଭରି ଦମ ନୃପମଣି
ବୋଲେ ଦୋଷ କ୍ଷମା ମୋର କରିବାକ ସ୍ୱାମୀ
ହିଡ଼ିମ୍ବ ବିଦାରି ନାଥ ବକ ଦର୍ପଧ୍ୱଂସି
କୁମ୍ଭୀର ପ୍ରାଣ ନାଶିଲୁ ନଦୀଜଳେ ପଶି ।
ଜରାବିନାଶକ ଦେବତାର ଯଜ୍ଞ ଧ୍ୱଂସା
ଯୁଗାନ୍ତକ ବାଦ୍ୟ ଭେରୀ ଭାଙ୍ଗିଲୁ ସହସା ।
ପାଣ୍ଡବାସୁରକୁ ମାରି ଉଦ୍ଧାରିଲ ବଂଶ
ଭକ୍ଷ ପାର କଲୁ ତୁହି ହଳାହଳ ବିଷ ।
ବେଦଶାସ୍ତ୍ର ବିଚକ୍ଷଣ କିନ୍ନରୀ ନାଶନ୍ତା
ଦୁଃଖିଜନ ଉଦ୍ଧାରଣ ଶରଣ ରଖନ୍ତା ।
ଦମଘୋଷ ସ୍ତୁତିକରେ ହୋଇଣ ପ୍ରଣମି
ଦାସର ଦୋଷ ମନରେ ନ ଧର ହେ ସ୍ୱାମୀ
ନ ଜାଣିଣ ଶିଶୁପାଳ କରିଅଛି ଦୋଷ
ଧର୍ମେ ତାକୁ ରକ୍ଷାକଲୁ ନ କରି ବିନାଶ ।
ଦମଘୋଷ ସ୍ତୁତି ଶୁଣି କୁଇନ୍ତା ଦୁଲାଳ
ଶାନ୍ତ ହୋଇ ଛାଡ଼ିଲେ ସେ ଶିଶୁପାଳ ବାଳ ।
ଭୀମସେନ ପଚାରଇ ଶୁଣ ଦମଘୋଷ
ମୋର ଦିଗବିଜେ କିହେ ନ ଜାଣେ ତୋ ଶିଷ
ପୁଣି ବୋଇଲେ ତୋ ପୁତ୍ର ଦୁଷ୍ଟ ଯେ ପ୍ରକୃତି
ଜଗନ୍ନାଥ ତୁଲେ ତାର ଅଟଇ ଅପ୍ରୀତି ।
ଦମଘୋଷ ବୋଲେ ଦେବ ଶୁଣ ବୃକୋଦର
ପରାର୍ଦ୍ଧେ ଦେଶର ରାଜା ଯେ କେଶୀକେଶ୍ୱର ।
ତାହାର ଭାରିଯା ନାମ ଅଟେ ପ୍ରଭାବତୀ
ତାର ତହୁଁ ଉପୁଜିଲା ଦୁଇଟି ଦୁହିତୀ ।
ବଡ଼ ଦୁହିତାର ନାମ ଅଟଇ ଦେବକୀ
ଆର ଦୁହିତାର ନାମ ଅଟେ ଦଇବକୀ ।
ଦେବକୀକୁ ବସୁଦେବ ବିଭା କରାଇଲେ
ଦଇବକୀକୁ ପ୍ରଦାନ ମୋତେ ଯେ କରିଲେ ।
ବସୁଦେବର ଅଟେ ମୁଁ ସହୋଦର ଷଡୁ
ଏକଆତ୍ମା ହୋଇ କେହି କାହାକୁ ନ ଛାଡୁ ।

ବାସୁଦେବ ଉପୁଜିଲେ ଦେବକୀର କୋଳେ
ଉପୁଜିଲା ଦୈବକୀର ଗର୍ଭୁ ଶିଶୁପାଳେ ।
କୃଷ୍ଣ ଜ୍ୟେଷ୍ଠ ଶିଶୁପାଳ ଅଟଇ କନିଷ୍ଠ
କେବଣ ମନ୍ଦବେଳେ ଏ ଦୁହେଁ ହେଲେ ଭେଟ
ଶିଶୁପାଳେ ଦେଖି କୃଷ୍ଣ ହୋଇଲେ ଅତୃପ୍ତି
ହରି ଦେଖି ଶିଶୁପାଳ କରଇ ଯେ ଭୀତି ।
ବାଳ କାଳରେ ଦେବକୀ ତାହାଙ୍କୁ ନ ପାଳି
ଗୋପରେ ବଢ଼ିଲେ ଯାଇ ଦେବ ବନମାଳୀ ।
ପ୍ରୟାଗେ ଯୋଗ ପଡ଼ିଲା ଏକଇ ସମୟେ
କୃଷ୍ଣ ଯଶୋଦାଙ୍କୁ ଘେନି ଗଲେ ନନ୍ଦରାୟେ ।
ଦଇବକୀ ଶିଶୁପାଳ ସଙ୍ଗେ ଘେନିଗଲି
ଦେବକୀ ଯଶୋଦାଠାରେ ପ୍ରୀତି କରାଇଲି ।
ଶିଶୁପାଳକୁ ଦେଖି ଯେ ବାସୁଦେବ କୋଳେ
ଧଇଲେ ଯେ ବାସୁଦେବ ଅତି କୁତୂହଳେ ।
ସୁନ୍ଦର ଦେଖି ଶ୍ରୀହରି ଲଗାଇଲେ ହୃଦେ
ଦେହ ତୋ ଅତୁଟ ହେଉ ବୋଇଲେ ଗୋବିନ୍ଦେ
ତୋହର ହେଉ ସହସ୍ର ସିଂହ ପରାକ୍ରମ
କେବେହେଁ ବଧ ତୁହି ରେ ନୋହିବୁ ସଂଗ୍ରାମ
ଏହି ବର ଦେଇ ଦେବ କୋଳେ ଛନ୍ତି ଧରି
ଶିଶୁପାଳ କାନ୍ଦେ ଗୋଡ଼ ହଲାଇଣ କରି ।
ବାସୁଦେବଙ୍କ ହୃଦରେ ବାଜିଲା ତା ପାଦ
ମୂର୍ଚ୍ଛାଗତ ହୋଇକରି ପଡ଼ିଲେ ଗୋବିନ୍ଦ ।
ଧାତିକାରେ କୋଳକରି ଧଇଲେ ଦୈବକୀ
ଅଶ୍ରୁଜଳ ବରଷଇ ଶ୍ରୀକୃଷ୍ଣଙ୍କ ଆଖି ।
ଚେତନା ପାଇଣ କୋପେ ନନ୍ଦସୁତ ବୋଲି
ଭ୍ରାତୃପଣେ ଏକ୍ଷଣି ମୁଁ ତୋତେ ବରଦେଲି ।
ପ୍ରଥମରେ ମୋତେ ତୁହି କରିଲୁ ପ୍ରହାର
ଅବଶ୍ୟ ଚକ୍ରରେ ଶିର କାଟିବି ତୋହର ।
ଦଇବକୀ ବିକଳ ହେଲେ ତାହା ଶୁଣି
ଅନୁଗ୍ରହ କରି ନାଥ କହ ଚକ୍ରପାଣି ।
ଯେ ରଖେ ସେ ଭକ୍ଷେ ଏହା ଅଛି କେଉଁକାଳେ
ବାସୁଦେବ କ୍ଷମା କର ଦୋଷ ଶିଶୁପାଳେ ।
କେଶବ ବୋଇଲେ ଶୁଣ ତୁ ମୋହର ମାତ
ଅଷ୍ଟୋତ୍ତର ଶତବର୍ଷ ଥିବ ତୋର ସୁତ ।
ମାଗୋ ଯେତେ ବଇକୁଲ୍ୟ ହୋଇଲଟି ମୁହିଁ
ଅବଶ୍ୟ ଚକ୍ରେ ମାରିବି ଜାଣ ଏହାକୁହିଁ ।
ଅଷ୍ଟୋତ୍ତର ଶତବଳେ ଯେବେ ଦୋଷ କରେ
କ୍ଷଣେ ନ ସହି ଛେଦିବି ଅବଶ୍ୟ ଚକ୍ରରେ ।
ଶୁଣ ହେ ପାଣ୍ଡବ ଆଦିକାଳର ଏ କଥା
ରୁକ୍ମିଣୀ ହରଣେ ହେଲା ଅନେକ ଅବସ୍ଥା ।
ଯାକୁ ଚକ୍ରେ ମାରୁଥିଲେ ତହିଁ ଦେବହରି
ସେ ବେଳେ ଛାଡ଼ିଲେ ମାତା ବଚନ ସୁମରି ।
ବାସୁଦେବ ଦମଘୋଷ ଅଟୁ ବେନି ଭାଇ
ଦେବକୀ ଦୈବକୀ ଦୁଇ ଭଗିନୀ ଯେ ହୋଇ
ଗୋବିନ୍ଦ ସୋଦର ଏହୁ ଅଟଇ ଯୁକତେ
ତୁମ୍ଭର ଅଭିନ୍ନ ନୁହେଁ ନାଶିବ କେମନ୍ତେ ।
ଭୀମ ବୋଲେ ଦମଘୋଷ ମୁଁ ସଂଗ୍ରାମ ରାଗେ
ବେନିବଳ ତା ଚୋଟିରେ ପ୍ରହାରିଲିଖଡ୍‌ଗେ
ଲୁହାହୁଁ ବଳି ତାହାର କଠିନ ଯେ ଚୋଟି
ମୋହର ଖଡ୍‌ଗ ତାହାର ଗଳା ଯେ ନ କାଟି ।
ଏହା କହି ଛାଡ଼ି ଦେଇ ପିତା ତା ବଚନେ
ବହୁତ ଆଦର କଲେ ତାକୁ ଭୀମସେନେ ।
ସମଦଣ୍ଡ ଘେନି ଦମଘୋଷ ନରପତି
ରାଜସୂୟ ସଭାକୁ ତୁ ଯାଅ ହେ ତଡ଼ତି ।
ମକର ଶୁକଳପକ୍ଷ ଦଶମୀର ଦିନ
ଯେଦିନ ପୂର୍ଣ୍ଣଆହୁତି ହୋଇବ ସମ୍ପୂର୍ଣ୍ଣ ।
ପ୍ରଥମ ପକ୍ଷେ ସମସ୍ତେ ହୋଇବେ ପ୍ରବେଶ
ବହୁ ପୂଜାକରି ବୋଲେ ରାଜା ଦମଘୋଷ ।
ସ୍ୱାମୀ ମଣୋହି କରିବା ମୋହର ଭୁବନ
ରହି ନ ପାରିବି ବୋଲି ବୋଲେ ଭୀମସେନ
ସର୍ବରାଜା ନିମନ୍ତିବି ନଉଦିନ ମଧ୍ୟେ
ଏହିମତି ସର୍ବରାଜା କରିବି ମୁଁ ସାଧ୍ୟେ ।
ତହୁଁ ଚଳେ ବୃକୋଦର ଥାଟକୁ ଚଳାଇ
ଦମଘୋଷେ ବାହୁଡ଼ିଲେ କିଛି ଦୂର ଯାଇ
ଜୟ ଜୟ ଜଗନ୍ନାଥ କମଳା ବିଳାସ
ଶାରଳା ଦାସର ପୂର୍ଣ୍ଣକର ଅଭିଳାଷ ।



## ନୈଋତସେନ ରାଜା ନିମନ୍ତ୍ରଣ ଓ ଜରାସନ୍ଧ ପୁତ୍ର ସହଦେବ ସହିତ ଯୁଦ୍ଧ

ନୈର୍ଋତ ବୋଲି କରି ପର୍ବତ ଗୋଟିଏ
ନୈର୍ଋତ ଦେଶେ ପ୍ରବେଶ ପବନ ତନୟେ ।
ନୈର୍ଋତସେନ ବୋଲିଣ ତହିଁର ନୃପତି
ଚୋଖାର ମଣ୍ଡଳରେ ସେ ଅଟେ ଅଧିପତି ।
ଟମକ ନିଶାଣ ଭେରୀ ନାନାବାଦ୍ୟ ବାଜେ
ଭୀମ ପରବେଶ ହେଲେ ଚୋଖାରର ରାଜ୍ୟେ ।
ସେ ରାଜାର ଦେଶାଉରେ ଥିଲେ ଚେଦିଦେଶେ
ବାର୍ତ୍ତା ଜଣାଇଲେ ଯାଇ ନୈର୍ଋତର ପାଶେ ।
ଶୁଣିବା ଦେବ ଚୋଖାର ମଣ୍ଡଳାଧିକାରୀ
ଭୀମସେନ ପଶ୍ଚିମକୁ ଛନ୍ତି ବିଜେକରି ।

ରାଜା ନିମନ୍ତ୍ରିବେ ରାଜସୂୟ ଯଜ୍ଞଅର୍ଥେ
ଶିଶୁପାଳେ ମାରୁଥିଲେ ପ୍ରତିଜ୍ଞା ନିମନ୍ତେ ।
ଶରଣ ପଞ୍ଜର ସେହି କକ୍ଷା ଜଗନ୍ନେଠି
ସମଦଣ୍ଡ ଘେନି ଚାଲ ଯିବାକୁ ପାଛୋଟି ।
ମନ୍ତ୍ରୀ ବୋଇଲେ ହୋ ଚାଲ ସମଦଣ୍ଡ ଧରି
ଯୁଧିଷ୍ଠିଙ୍କ କନିଷ୍ଠ ସେ ପୃଥ୍ୱୀ ଅଧିକାରୀ ।
ମନ୍ତ୍ରୀର ବଚନ ଶୁଣି ହୋଇ କୃତ୍ୟକୃତ୍ୟ
ଆସ୍ଥାନୁ ଓହ୍ଲାଇଆସେ ରାଜା ନଇର୍ଗତ ।
ଭୀମସେନ ନିକଟକୁ ସମ୍ଭର୍ବରେ ଗଲେ
ଦର୍ଶନ କରିଲା ରାଜା ବିରୂପାର କୂଳେ ।
ଦଶନଖ ମୁଖେ ଭରି ଦୂରୁ ପରଣି
ଶରଣପଞ୍ଜର ନାଥ ଉଦ୍ଧର ହେ ସ୍ୱାମୀ ।
ଭୀମସେନ ବୋଇଲା ହେ ଶୁଣ ନଇର୍ଗତ
ସାଧୁବିବେକ ପଣ୍ଡିତ ତୁହି ଜ୍ଞାନବନ୍ତ ।
ଅଛନ୍ତି ମୂର୍ଖ ଅଜ୍ଞାନ ଅନେକ ନୃପତି
ଜାଣୁ ଜାଣୁ ଅକାରଣେ ପାଉଛନ୍ତି ଶାସ୍ତି ।
ନିମନ୍ତ୍ରଣାକ୍ଷତ ତାକୁ ଦେଲେ ତୋଷମନେ
ସୈନ୍ୟସହ ଯାଅ ଶୀଘ୍ର ଇନ୍ଦ୍ରପ୍ରସ୍ଥ ଗ୍ରାମେ ।
ନୈର୍ଗତେ ବୋଇଲା ତୋର ଅନୁଗ୍ରହ ନାଥ
ତୋ ପାଦରଜ ପଡ଼ିଲା ହୋଇଲା କୃତାର୍ଥ ।
ମୋହର ରାଜ୍ୟରେ ସ୍ୱାମୀ ରହିବ ଆଜକ
ଦେଖି ଆନନ୍ଦିତ ହେବେ ରାଜ୍ୟ ସର୍ବଲୋକ ।
ବୃକୋଦର ବୋଲ ବେଳ ରହିବାକୁ ନାହିଁ
ଭୋଜନେ ଶୟନ ମୋର ସୁଖ ଅଛି କାହିଁ ।
ପଚାଶସସ୍ର ରାଜାଙ୍କୁ ମୁଁ ନଉ ଦିବସେ
ନିମନ୍ତ୍ରିବି ବେଳ ନାହିଁ ଯିବି ବହୁଦେଶେ ।
ଏ କେଉଁ ରାଜ୍ୟଟି ଦିଶେ ହେ ମରୁତସେନ
ବଡ଼ ପବିତ୍ର ଦିଶଇ ରାଜ୍ୟର ଗଠନ ।
ସ୍ୱାମୀ ଏ ମଗଧ ଦେଶେ ରାଜ୍ୟର କଟକ
ଏଥେ ବନ୍ଦି ହୋଇଥିଲୁ ଆମ୍ଭେ ସର୍ବଲୋକ ।
ଛୟାଣୋଇ ସସ୍ର ରାଜା କାହିଁ ଥାନ୍ତୁ ହାଦେ
ସମସ୍ତେ ବଞ୍ଚିଲୁ ସ୍ୱାମୀ ତୁମ୍ଭର ପ୍ରସାଦେ ।
ଶୁଣି ସେ ରାଜ୍ୟରୁ ଚଳିଲେ ବେଗେ ଭୀମସେନ
ଦେଖନ୍ତି ଦାଣ୍ଡରେ ପୂର୍ଣ୍ଣ ରାଜ୍ୟ ସର୍ବଜନ ।
ଜୟ ଜୟ ମା ମଙ୍ଗଳା କହି ସର୍ବବାଳୀ
ସମସ୍ତେ ଅର୍ଘ୍ୟ ଘେନିଣ ଦ୍ୟନ୍ତି ହୁଳହୁଳି ।
ଏ ଉତ୍ତାରୁ ଭୀମ ହ୍ୱନ୍ତେ ପଶ୍ଚିମ ମୂରତି
ଆଜ୍ଞା ଦେଲେ ବାହୁଡ ହୋ ନୈର୍ଗତ ନୃପତି
ରାତ୍ର ଦିବସ ଦଣ୍ଡେହେଁ ନ କହି ଚଳିବୁ
ରାଜାଙ୍କୁ ବାଟେ ଦେଖିଲେ ସଙ୍ଗେ ଘେନିଯିବୁ

ବାହୁଡ଼ିଲେ ନୃପବର ଦଣ୍ଡଛତ୍ର ଦେଇ
ରାଜ୍ୟେ ନ ଯାଇ ରହିଲା ନଦୀକୂଳେ ଯାଇ ।
ଦହୁଁ ବୃକୋଦର କଲେ ପଶ୍ଚିମକୁ ବିଜେ
ବୀରତୂର କାହାଳି ଯେ ଟମକହିଁ ବାଜେ ।
ମଳୟଧର ବୋଲିଣ ଏକ ପରବତ
ସେ ପର୍ବତ ଦିଶଇ ଯେ ସୁନ୍ଦର ଅତ୍ୟନ୍ତ ।
ସେ ଗିରିରେ ଦମୟନ୍ତୀ ତପ କରୁଥିଲେ
ପଚାଶ ବର୍ଷ ପର୍ଯ୍ୟନ୍ତ ନିର୍ଭୟେ ରହିଲେ ।
ଗନ୍ଧବତୀ ବୋଲିକରି ବହେ ଏକ ନଦୀ
ଗନ୍ଧମଳୟ ପର୍ବତୁ ଆସଇ ସେ ଭେଦୀ ।
ଦକ୍ଷିଣ ଦିଗକୁ ଧାର ବହଇ ଉଜାଣି
ଉତ୍ତରକୁ ଧାର ଏକ ବହଇ ତ୍ରିବେଣୀ ।
ବେନି ନଦୀ ବହୁଅଛି ମଗଧକୁ ଘେରି
ପଚାଶ ଯୋଜନ ନଗ୍ର ଆୟତନ ପୂରି ।
ଭୀମସେନ ବିଜେ କଲେ ସେହି ପରବତେ
ପୃଥିବୀ ଯେ କମ୍ପୁଅଛି ବୀର ତୂରଘାତେ ।
ସହଦେବ ନୃପତିକୁ ଚାରେ ଜଣାଇଲେ
ସ୍ୱାମୀ କେଉଁ ରାଜା ବିଜେ ଏଥିକି କରିଲେ ।
ଶୁଣି ଆଜ୍ଞା ଦେଲା ତହୁଁ ଜରାର ତନୟ
ପାଶେ ଉଭା ହୋଇଥିଲେ ଜୟ ଯେ ବିଜୟ ।
ଅଶୀ କ୍ଷୌଣୀ ଥାଟ ଘେନି ଯାଅ ଏହିକ୍ଷଣି
କ୍ଷତ୍ରୀ କିମ୍ବା ଅନ୍ୟଜାତି ତୁମ୍ଭେ ଆସ ଚିହ୍ନି ।
କିବା ଆସିଅଛି ସେହି ମରିବା ନିମନ୍ତେ
କି ଅବା ଆସିଛି ପ୍ରିୟ ବାନ୍ଧବର ଅର୍ଥେ ।
ଏ ପଶ୍ଚିମ ଦିଗେ ଆଉ ନାହିଁ ପରରାଷ୍ଟ୍ର
ବାରତା ନ କହି କିପାଁ ଆଣିଲା ସେ ଥାଟ ।
କେଉଁ ଦୁଷ୍ଟ ରାଜା ସେହି ଆସେ ଯୁଦ୍ଧମାଗି
ଧାଆଁ ପାରିଦଣ୍ଡମାନେ ଉଗାଳ ହୋ ବେଗି ।
ପବନହୁଁ ବେଗକରି ଯାଅ ଚାରଗଣେ
ରାଜ୍ୟରେ ପଶି ନ ଦିଅ ଆଜ୍ଞା ପରମାଣେ ।
ରାଜା ଆଜ୍ଞା ପରମାଣେ ଧାଇଁଲେ ମୁନେହି
ମଳୟ ପର୍ବତେ ଛନ୍ତି ଭୀମସେନ ରହି ।
ଆଁଗୁଆଣି ଥାଟରୁ ଯେ ଓଗାଳିଲେ ଚାର
ରାଜ୍ୟେ ନ ପଶ ତୁମ୍ଭଙ୍କୁ ଦ୍ୱାହି ମଗଧର ।
ଥାଟ ଆଗରେ ବିକାଳ ଥିଲା ସେନାପତି
ାଣ ପକାନ୍ତେ ଖଡ଼ଗ ପ୍ରହାରିଲା ଧାତି ।
ଦୁଇନିଖଣ୍ଡ ହୋଇ ଛିଡ଼ିପଡ଼ିଲା ମୁନେହି
ଭୀମ ଠାକୁରେ ଅଛନ୍ତି ପର୍ବତରେ ରହି ।
ଆଗୁଆଣି ହୋଇ ଜୟ ବିଜୟ ଯେ ଥିଲେ
ସହଦେବ ଆଗେ ଯାଇଁ ବାରତା କହିଲେ ।

ସ୍ୱାମୀ ବଡ଼ ଦୁଷ୍ଟ ମୂର୍ଖ ଅଟନ୍ତି ସେ ଥାଟ
ନ ବିଚାରି ଦୂତର ସେ କଲେ ମୁଣ୍ଡକାଟ ।
ଦୂତ ଚାର ମଧ୍ୟସ୍ଥ ଯେ ଶରଣ ଏ ଚାରି
ଯାଙ୍କୁ ବଧ କଲେ ଦୋଷ ବ୍ରହ୍ମହତ୍ୟା ସରି ।
ରାଣ ପକାଇବା ମାତ୍ରେ ନାଶ କଲା ପ୍ରାଣୀ
ଧସାଇ ରାଜ୍ୟେ ପଶନ୍ତି କାହାକୁ ନ ଗଣି ।
ଜୟ ବିଜୟ ଏ ଦୁଇ ମହାକୋପାନଳେ
ଦୁଇ ବୀରେ ଧରିଛନ୍ତି ହସ୍ତେ ଶୂଳେ ଶୂଳେ ।
ପଚାଶଲକ୍ଷ ଯୋଦ୍ଧା ଯେ ଚୋଖାଇ ତୁରଙ୍ଗ
ରେ ରେ କାର ଶବ୍ଦକରି ଧାଇଁଲେକ ବେଗ ।
କୁନ୍ତ ଅସିବର ମୁଦୁଗରେ ଘେନି ଜାଠି
ସକଳେ ପ୍ରହାର କଲେ ଏକାବେଳେ ଉଠି ।
କାଳ ବିକାଳ ଭୀମର ଦୁଇ ସେନାପତି
ବଜ୍ରାବଳି ଗଦାଧରି ଅଶ୍ୱେ ଚଢ଼ିଛନ୍ତି ।
ରାଗରେ ଉଠିଲେ ଜରାସନ୍ଧ ପୁତ୍ର ତିନି
ବୁଲାଇ ଲଙ୍କିଆ ଆଉ ତୀକ୍ଷ୍ଣ ଅସି ଘେନି ।
ମେଘ ଗର୍ଜନ ପ୍ରାୟେକ ଶୁଭେ ଘୋର ରଡ଼ି
ଦୁଇଥାଟ ହୋଇଲେ ଯେ ହାବୋଡ଼ାହାବୋଡ଼ି
ଆକାଶ କମ୍ପାଉଅଛି ସୈନ୍ୟ ମୁଖଧ୍ୱନି
ପ୍ରହାରନ୍ତି ଯେ ଯାହାର ଅସ୍ତ୍ର ଶସ୍ତ୍ର ଘେନି ।
ଧାଆଁରେ ମାରରେ ବୋଲି ଦ୍ୟନ୍ତି ଘୋରଡାକ
ଗଗନରେ ଖେଳୁଛନ୍ତି ଯେହ୍ନେ ବଳାହକ ।
ଏସନକ ଗୋଳ ହେଲା ଦୁଇବଳ ଥାଟ
ରୁଧିର ବୋଲି ହୋଇଲେ ତହିଁ ସର୍ବରାଷ୍ଟ୍ର ।
ସଇନଙ୍କ ଗୋଳ ଦେଖି ଗର୍ଜି ଭୀମସେନ
ରଥ ଉପରୁ ଡେଇଁଣ ପଡ଼ିଲା ବହନ ।
ବୁଲାଅନ୍ତି କାଳଚକ୍ର ପ୍ରାୟ ବେନି ଆଖି
ଭାବିଲେ ମଗଧ ସୈନ୍ୟ ଭୀମରୂପ ଦେଖି ।
ଗଦା ବୁଲାଇଣ ସେହୁ ପବନ ଆଘାତେ
ହାବୋଡ଼ା ହାବୋଡ଼ି ହୋଇ ପଡ଼ିଲେ ନିର୍ଘାତେ
ମାର ମାର ବୋଲି କରି ଉଠିଲା ପାବନି
ଗୋଡ଼ାଇ ମାଇଲା ସେହି ମଗଧ ସଇନି ।
ରକତେ କର୍ଦ୍ଦମ ଗଜ ଅଶ୍ୱର ସହିତେ
ମଡ଼ାଏ ପଡ଼ିଲେ ଅଷ୍ଟ ଯୋଜନ ପର୍ଯ୍ୟନ୍ତେ ।
ପବନ ବିଘାତେ ଯେହ୍ନେ ହୁଅନ୍ତି ପଦ୍ମଫୁଲ
ତେହ୍ନେ ଦୋହଲାଇ ଦେଲେ ଭୀମ ଅନର୍ଗଳ
ସଂଗ୍ରାମେ ନିପାତ ଯହୁଁ ହୋଇଲେ ସଇନି
ଘୁଞ୍ଚି ପଳାଇଲେ ଜୟ ବିଜୟ ଏ ବେନି ।
ସହଦେବର ଛାମୁରେ କହିଲେ ବାରତା
ସ୍ୱାମୀ ସଂଗ୍ରାମରେ ସେହୁ ଅଟେ ମହାମତ୍ତା ।

ଚାରିଲକ୍ଷ ଯୋଦ୍ଧା ତୋର ପଡ଼ିଲେ ତା ରଣେ
ଏଡ଼େ ଥାଟକୁ ମନ୍ଥନ କଲା ଏକା ଜଣେ ।
ପଚାରିଲେ ନ କହେ ସେ କେଉଁ ଦେଶରାଜା
ନାଶକର ଦେବତା କି ପ୍ରତ୍ୟକ୍ଷେ ବିଡ଼ୋଜା ।
ମର୍ତ୍ତ୍ୟଲୋକରେ ନ ଦେଖେ ଏପରି କାହାକୁ
ଆଜ ତୋତେ ଦେଲା ସେହି ବଡ଼ ପ୍ରମାଦକୁ
ଭଗ୍ନବଳ ଥାଟ ଦେଖି ନୃପ ସହଦେବ
ମତ୍ତହସ୍ତୀଏ ଚଢ଼ିଲା ମନେ ବହି ଗର୍ବ ।
ହସ୍ତେ ବେନି ଗଦା ଘେନି ସେ କୁମର ମଣି
ସୃଜିଲା ବଳ ତାହାର ତେଇଶ କ୍ଷଉଣୀ ।
ରଥ ତୁଳେ ସାଜି ନବଶତ ପାରିଦଣ୍ଡ
ବୀରତୂର ଶବଦରେ କମ୍ପିଲା ଭୂଖଣ୍ଡ ।
ମର୍ଦ୍ଦୁତେକ ବୀରତୂର ଛାମୁରେଣ ବାଜେ
ମନ୍ତ୍ରୀ ଅମାତ୍ୟଙ୍କୁ ଘେନି ସଂଗ୍ରାମକୁ ବିଜେ ।
ରାଜ୍ୟ ଭିତରେ ପଶନ୍ତି ପାଣ୍ଡବ ସଇନି
ସଂଗ୍ରାମେ ନିର୍ଭୟ ସେହୁ ଛନ୍ତି ଶସ୍ତ୍ର ଘେନି ।
ସହଦେବ ଛାମୁରେ ଯେ ନେଇ ଭେଟି ରଥ
ବିନ୍ଧନ୍ତି ସେ ତୀକ୍ଷ୍ଣ ନାରାଚ ଯୋଖି ଅପ୍ରମିତ
ବିରାଜେ ମୁକୁଟ ବାଳ ଆଦିତ୍ୟକୁ ଜିଣି
ମଗଧ ଥାଟରେ କୁନ୍ତୀ ପ୍ରହାରିଲେ ଆଣି ।
ମଗଧ ସେନାଙ୍କ ଶର ବଜ୍ରପ୍ରାୟ ଘୋଟି
ବିନ୍ଧନ୍ତେ ସେ ସବୁ ଭୀମ ଶରୀରେ ନ ଫୁଟି ।
ଯାହାଙ୍କ ପିତା ଅଟନ୍ତି ପବନ ଦେବତା
କେ ତାହା ଛାମୁରେ ଅଛି ତ୍ରୈଲୋକ୍ୟ ଜିଣନ୍ତା
ପାଣ୍ଡବ ସୁନ୍ଦର ଭୀମ କୃତାନ୍ତକ ରୂପୀ
ତେଇଶି କ୍ଷୌଣୀ ବଳକୁ ଏକ ଯୋଦ୍ଧା ବ୍ୟାପି
ତରୁଣ ଆଦିତ୍ୟ ପ୍ରାୟ ଦିଶେ ବୃକୋଦର
କେ ଆସି ରଣେ ଝାସିବ ତାହାର ଛାମୁର ।
ଦଣ୍ଡ ଘେନି ବୃକୋଦର ଉଠିଲାକ ଗର୍ଜି
ମଗଧ ସଇନ ସବୁ ପଳାଇଲେ ଭାଜି ।
କେଶରୀ ଦେଖି ପଳାନ୍ତି ଯେହ୍ନେ ବନଜୀବ
ତାହା ଥାଟକୁ ମଛିଲା ସୁନ୍ଦର ପାଣ୍ଡବ ।
ମହାରଣ ଧାନ୍ଦୋଳ ଯେ କହିତ କେ ପାରି
ଭୀମଙ୍କ ସୈନ୍ୟ ବିନ୍ଧନ୍ତି ଶର ରୋଷ ଭରି ।
ଆପଣେ ସେ ଭୀମସେନ ଗଦା ଘେନି ପିଟି
ସହଦେବର ସଇନି ମହୀପରେ ଲୋଟି ।
ଦଣ୍ଡ ଭଗ୍ନ ଦେଖି ଧାଏଁ ମଗଧର ରାୟେ
ଅଶୀଲକ୍ଷ ଯୋଦ୍ଧା ଘେନି ପରବେଶ ହୋଏ ।
ବୃକୋଦର ଛାମୁରେ ଯେ ସହଦେବ ଭେଟି
ଆକର୍ଷିଣ ଯୋଦ୍ଧାମାନେ କଲେ ଶରବୃଷ୍ଟି ।

ଲୋହ ପାଷାଣୁ କଠିନ ଯେଉଁ ବୀର କାୟେ
ଅଶୀସହସ୍ର ଯୋଦ୍ଧାକୁ ସେ କରେ କି ଭୟେ ।
ଏକ ପ୍ରହାରେ ଲୋଟନ୍ତି ଗଜ ଯେ ମାହୁନ୍ତେ
ଧାଇଁଣ ସେ କଚାଡ଼ନ୍ତି ନେଇ ରଥେ ରଥେ ।
ସହଦେବର ଦେଖନ୍ତେ ପଡ଼ିଲେ ସେ ବଳ
ଶୋଣିତ ବୃଷ୍ଟି ହୋଇଲା ଯେହ୍ନେ ବୃଷ୍ଟିଜଳ ।
ଦୁଇପଦ୍ମ ରଥ ଚାରିପଦ୍ମ ମତ୍ତନାଗ
ନବପଦ୍ମ ପଡ଼ିଲେ ସେ ଚୋଖାର ତୁରଙ୍ଗ ।
ଅଗଣିତ ସୈନ୍ୟ ମଲେ କେହୁ ତାହା ଲେଖି
ପଳାଇଲା ସହଦେବ ସଂଗ୍ରାମ ଉପେକ୍ଷି ।
ତାଳେକ ପ୍ରମାଣେ ତହିଁ ପଡ଼ିଲେକ ମାଡ଼ି
ଅପ୍ରମିତ ଯୁଦ୍ଧ ହେଲା ପଞ୍ଚଦଶ ଘଡ଼ି ।
ଭୀମସେନ ଗଦାଘାତେ କେତେ ସୈନ୍ୟ ଉଡ଼ି
ରଥ ଗଜ ଅଶ୍ୱ ସୈନ୍ୟ ବହୁଦୂରେ ପଡ଼ି ।
ସହଦେବ ବିଜୟ ଯେ ଜୟ ତିନିଭ୍ରାତେ
ସେଠାରେ ରହିଲେ ଚଢ଼ି ତିନି ଏକ ଏକ ରଥେ
ସହଦେବ ପୁଚ୍ଛେ ତୁମ୍ଭେ କେଉଁଦେଶ ରଥୀ
ମୁଁ ତୋ ଶତ୍ରୁ ନୁହେଁ କିପାଁ ମୋ ସୈନ୍ୟ ନିପାତି
ମୁହିଁ ତୋର କେଉଁ ଦୋଷ କରିଛି ବା ପୂର୍ବେ
ଭୀମସେନ ରାଜ୍ୟ ଦେଲେ ପିତାର ଅଭାବେ
ମୋର ପିତା ଜରାସନ୍ଧ ଥିଲା ମହାଦୁଷ୍ଟ
କୃଷ୍ଣର ବିବାଦୀ ହୋଇ କଲା ମନ୍ଦବାଟ ।
ପଞ୍ଚରାଜ୍ୟେ ନ ପାରିଲେ ରହି ବାସୁଦେବ
କ୍ଷୀରୋଦ ମଧ୍ୟେ ରହିଲେ କରି ଭଲ ଠାବ ।
ରାଷ୍ଟ୍ରପଦ ପାଇବାକୁ ପିତା ଇଚ୍ଛାକଲା
ଅନେକ ରାଜାମାନଙ୍କୁ ବାନ୍ଧିଣ ଆଣିଲା ।
ପନ୍ଦର ଦିନ ପର୍ଯ୍ୟନ୍ତ କରିଲା ଆହୁତି
ରାଜାଙ୍କୁ ମାରି ପକାନ୍ତେ ଅଷ୍ଟମୀର ତିଥି ।
ସନ୍ଦେଶ ଶୁଣି ବିଜୟ କଲେ ବାସୁଦେବ
ସଙ୍ଗେ ଆଣିଥିଲେ ଭୀମ ଅର୍ଜୁନ ପାଣ୍ଡବ ।
ଦାନ ଗ୍ରହଣ ନିମନ୍ତେ ଅଇଲେ କପଟେ
ଯଜ୍ଞଶାଳାରେ ପଶିଲେ ମୋ ପିତା ନିକଟେ ।
ବେଦ ଅଧ୍ୟୟନ କରି ମାଗିଲେ ସଂଗ୍ରାମ
ମାଲବନ୍ଧେ ଜରାସନ୍ଧ ନାଶକଲେ ଭୀମ ।
ଜରାସନ୍ଧକୁ ମାରିଣ କୃପାକଲେ ମୋତେ
ଏ ମଗଧେ ଅଭିଷେକ ଉତ୍ସବ ନିମନ୍ତେ ।
ଦେବ ଭୀମସେନ ମୋତେ କୋଳରେ ବସାଇ
ରାଜ୍ୟେ ଅଭିଷେକ କଲେ ଶିରେ ପାଟଦେଇ ।
ରାଜାମାନଙ୍କୁ ବନ୍ଦୀରୁ ମୁକତ କରିଲେ
ସର୍ବ ନୃପତିଙ୍କ ପାଶେ ମୋତେ ସମର୍ପିଲେ ।
ଯେଉଁ ଆଜ୍ଞା ଦେଇଛନ୍ତି ମୋତେ ବୃକୋଦର
ଦିବାରାତ୍ର ସେ ଆଜ୍ଞାରେ ଅଛି ନିରାଧାର ।
ପରଭୂମି ନ ଜାଣେ ମୁଁ ଆଉ ପରରାଷ୍ଟ୍ର
ପ୍ରମାଣେ ଆଜ୍ଞାରେ ମୁଁ ନ ଜାଣେ ପରଥାଟ ।
ତାହାଙ୍କ ଆଜ୍ଞାରେ ମୁଁ ନ ଲଙ୍ଘେ ପରସୀମା
ତୁ ମୋହର ସୈନ୍ୟ ନାଶ କଲୁ ମହାତମା ।
ବୃକୋଦର ଦୟାରେ ମୁଁ ବର୍ତ୍ତେ ସବୁକାଳେ
ସେ ମୋ ପିଅର ଅଟନ୍ତି ଜାଣ ଏତେବେଳେ
କାର୍ପଣ୍ୟ ହୋଇ କହଇ ରାଜାର ନନ୍ଦନ
ସ୍ୱାମୀ କାହିଁଅଛ ରଖ ଆସି ଭୀମସେନ ।
ସହଦେବର ମୁଖରୁ ଏହିକଥା ଶୁଣି
ଭୀମ ବୋଲେ ଆସ ବାବୁ ମୋ କୁମରମଣି
ଆରେ ବାବୁ ସୁନ୍ଦରରେ ମୁହିଁ ଅଟେ ଭୀମ
ନ ଜାଣି ତୁ ଯୁଦ୍ଧ କଲୁ ତୋତେ କଲି ତମ ।
ଶୁଣି ସହଦେବ ରଥୁ ପଡ଼ିଲା ସେ ଡେଇଁ
ଶତସସ୍ର ପ୍ରଣମିତ ହେଲେ ତିନିଭାଇ ।
ସ୍ୱାମୀ କ୍ଷମାକର ମୋର କରିବା ଅପ୍ରାଧ
ନ ଜାଣିଣ କଲି ମୁହିଁ ବହୁତର ଯୁଦ୍ଧ ।
ଶରଣ ରକ୍ଷଣ ନାଥ ଭକତ ବତ୍ସଳ
ବୀରଙ୍କର ଶିରୋମଣି ଅଟ ମହାବଳ ।
କୈଳାସ ରକ୍ଷା କରିଲୁ କୁମ୍ଭଳ ବିଦାରି
ହିଡ଼ିମ୍ବିକକୁ ନାଶିଲୁ ବିଦାରି କୁମ୍ଭୀରୀ ।
ଶିବଗଣଙ୍କର ତୁହି ଛଡ଼ାଇଲୁ ଚିନ୍ତା
ଦୁଷ୍ଟ ଦୁରାଚାରଙ୍କର ଗର୍ବକୁ ଗଞ୍ଜନ୍ତା ।
ବେଦବର ସମ ତୁହି ଅଟୁ ମହାବିଜ୍ଞ
ଅଜ୍ଞାନୀଙ୍କ ଜ୍ଞାନୀ ତୁହି ଆବର ସର୍ବଜ୍ଞ ।
ପାଣ୍ଡବାସୁର ନିଧନ ବକାଦର୍ପଗଞ୍ଜା
ମର୍ତ୍ତ୍ୟେ ଥାଇ ନାଗଲୋକେ ପାଉଅଛୁ ପୂଜା ।
ଦୟାସାଗର ଶରଣବନ୍ଧୁ ଅଟୁ ତୁହି
ଜରାସନ୍ଧ ବିନାଶିଲୁ ମଲ୍ଲଯୁଦ୍ଧ ଦେଇ ।
ପବନ ଆତ୍ମଜ ତୁମ୍ଭେ ଦୟାର ସାଗର
ଏହି ଅପରାଧ ପ୍ରଭୁ ମୋର କ୍ଷମାକର ।
ବହୁତର ସ୍ତୁତି କଲା ମଗଧର ବାଳ
ବେନିନେତ୍ରୁ ବହେ ତାର ଆନନ୍ଦାଶ୍ରୁଜଳ ।
ପୁଣ ପୁଣ ପ୍ରଣମିତ କରନ୍ତେ ବିକଳେ
ଦୟାବହି ଭୀମସେନ ବସାଇଲେ କୋଳେ ।
ବହୁସୈନ୍ୟ ମଲେ ତୋର ଆରେ ପୁତ୍ରମଣି
ମୋ ଆସିବା ବାର୍ତ୍ତା ଚାରେ ନ ଦେଲେ କି ଆଣି
ପଶ୍ଚିମ ଦିଗେ ବିଜୟ ଆଗହୁଁ ନ ଜାଣୁ
ଦେଶାନ୍ତର ମୁଖରୁ କି ସନ୍ଦେଶ ନ ଶୁଣୁ ।

ଏ ଉତ୍ତାରୁ ଆଜ୍ଞାଦେଲେ ମଗଧ ନୃମଣି
ରାଜ୍ୟରେ ଉତ୍ସବ କର ତୁମ୍ଭେ ଏହିକ୍ଷଣି ।
ଚାମର ଢ଼ାଳୁଅଛନ୍ତି ଆଗେ ବେନିଭ୍ରାତେ
ଉଦଣ୍ଡ ଚାମର ଧରିଛନ୍ତି ଅମାନାତ୍ୟେ ।
ବିଜେକଲେ ଭୀମସେନ ଚନ୍ଦ୍ରଶାଳାପୁରେ
ସମାରୋହରେ ଉତ୍ସବ ହୋଇଲା ରାଜ୍ୟରେ
ବହୁ କୃତ୍ୟକୃତ୍ୟ ହୋଇ ବୋଲି ସର୍ବଜନେ
ହରିଲୁ ସକଳ ଦୁଃଖ ତୋର ଦରଶନେ ।
ପ୍ରତ୍ୟକ୍ଷେ ଦେଖିଲୁ ଆଜ କିବା ନିଦାବିଷ୍ଣୁ
ସମସ୍ତେ ତରିଲୁ ଆମ୍ଭେ ସଂସାରର କଷ୍ଟୁ ।
ମଣୋହି ଯୋଗାଡ ବେଗେ କରେ ସହଦେବ
ଜାଣିଥିଲା ଭୀମଙ୍କର ମଣୋହିର ଭାବ ।
ସହସ୍ରେକ ସୂପକାର ଥାନ୍ତି ଅନୁବ୍ରତେ
ରୋଷଘର ପରିମଳ ରାନ୍ଧଣା ନିମନ୍ତେ ।
ସୁସଞ୍ଚ ଚାଉଳ ନେଲେ ଷାଠିଏ ପଉଟି
ବହୁ ବ୍ୟଞ୍ଜନ କରିଲା ଯେତେ ତାକୁ ଅଣ୍ଟି ।
ସହସ୍ରେକ ସୂପକାର କରନ୍ତି ରନ୍ଧନ
ଶତେକ ମାଲ କରନ୍ତି ତଇଲ ମର୍ଦ୍ଦନ ।
ସ୍ନାନକଲେ ଭୀମସେନ ନଦୀର ଭିତରେ
ଆହ୍ନିକ ସାରି ବିଜୟ କଲେ ମଣୋହିରେ ।
ଘୃତର ଯୋଗାଡମାନ ନିରାମିଷ ଅନ୍ନ
ପରଶନ୍ତି ସୂପକାରେ ସୁପକ୍ୱ ବ୍ୟଞ୍ଜନ ।
ଭୁଞ୍ଜିସାରି ବୃକୋଦର ଉଠିଲେ ବହନ
ପନୀର ନୀରରେ ତହିଁ କଲେ ଆଚମନ ।
ଆଚମନ ସାରି ଭୀମ ବିଜୟ ଆସ୍ଥାନେ
ଖଟନ୍ତି ଯେ ବିଳାସିନୀ ନୃତ୍ୟକାରୀମାନେ ।
ଉର୍ବଶୀ କିନ୍ନରୀ ଆଦି ସପ୍ତ ବାରନାରୀ
ନାଚନ୍ତି ଗାଆନ୍ତି ତାଳମାନ ଲୟ ଧରି ।
ତୁମ୍ବୁର ବାଦ୍ୟ କରନ୍ତି ତାଳ ଧରି ହସ୍ତେ
ମୋହିନୀମାନେ ମୋହନ୍ତି ତାଙ୍କୁ ନୃତ୍ୟଗୀତେ
ସ୍ନାନ ଆଦି ଷଟକର୍ମ ସାରି ସହଦେବ
ମଣୋହି ସାରିଣ ଉଭା କିଙ୍କରର ଭାବ ।
ଶ୍ରୀକରରେ ଅର୍ଘ୍ୟ ଘେନି ଜରାସନ୍ଧ ପୁତ୍ର
ବୃକୋଦର ପାଦେ ଦେଲା ହୋଇ ତୋଷଚିତ୍ତ
ଲକ୍ଷେଭାର ସ୍ୱର୍ଣ୍ଣ ଦେଲା ଦେଖା ଦରଶନୀ
ପୁର ପୁଣ ସହଦେବ କରଇ ଦଇନୀ ।
ସହଦେବଙ୍କୁ କୋଳରେ ଧରି କହେ ଭୀମ
ରାଜୁସି ଯଜ୍ଞକୁ ତୋର ସଜକର ସୈନ୍ୟ ।
ଶ୍ରୀକରେ ମାରୁତି ଦେଲେ ଅକ୍ଷତ ଯେ ଗୁଆ
ଦଣ୍ଡଘେନି ଏହିକ୍ଷଣି ରାଜୁସିକି ଯାଆ ।
ସହଦେବ ବୋଲେ ସ୍ୱାମୀ ତୋ ଆଜ୍ଞା ପ୍ରମାଣେ
ଇନ୍ଦ୍ରପ୍ରସ୍ଥେ ଅନୁକୂଳ ମୋର ଏହିକ୍ଷଣେ ।
ତେଇଶ କ୍ଷଉଣୀ ବଳ ସହଦେବ ସାଜି
ମଣ୍ଡଣି ରଥେ ଯୋଚନ୍ତି ଚାରି ଚାରି ବାଜି ।
ସହଦେବଙ୍କୁ ନିମନ୍ତ୍ରି ତହିଁ ବୃକୋଦର
ଶ୍ରୀମୁଖେ ବୋଇଲେ ବାବୁ ଶୁଭ ହେଉ ତୋର
ନିଉଛାଳି ସହଦେବ କରି ପରଣାମି
ଏପରି ଦୟା ସର୍ବଦା ରଖିଥିବ ସ୍ୱାମୀ ।
ଦଣ୍ଡ ଘେନି ବାହାରିଲେ ଜରାସନ୍ଧ ବଳା
ଶାରଳା ଦାସ କହଇ ଚିନ୍ତିଣ ଶାରଳା ।



## ମରୁତରାଜା ନିମନ୍ତ୍ରଣ ଓ ବୀରବାହୁ ରାଜାସହିତ ଯୁଦ୍ଧ

ମଗଧ ଦେଶୁ ବାହାର ହୋଇ ସେହିକ୍ଷଣ
ମରୁତଦେଶେ ପ୍ରବେଶ ମରୁତ ନନ୍ଦନ ।
ପୃଥିବୀ ଯେ ଉଛୁଳଇ ବୀରତୂର ନାଦେ
ଶୁଭୁଛି ସୁସ୍ୱର ଧ୍ୱନି ବହୁଳ ଶବଦେ ।
ମରୁତ ଦେଶରେ ଭୀମସେନ ଯେ ପଶଇ
ଦେଶାଭର ରାଜାପାଶେ ବାର୍ତ୍ତାଦେଲେ ନେଇ
ଶୁଣ ଦେବ ସାବଧାନେ ମରୁତ ନୃପତି
ଭୀମସେନ ଦିଗବିଜେ ରାଜାଙ୍କୁ ନିମନ୍ତ୍ରି ।
ମଗଧ ଦେଶରୁ ଦେବ ବିଜେକଲେ କାଲି
ଦଣ୍ଡ ସାଜି ଭୀମସେନ ଆସୁଛନ୍ତି ଚାଲି ।
ଚାର ମୁଖୁ ବାର୍ତ୍ତା ଶୁଣି ମରୁତ ନୃପତି
ପାତ୍ର ମନ୍ତ୍ରୀ ସଙ୍ଗେ ଘେନି ବାହାର ତଡ଼ତି ।
ଦଶନଖ ସମସ୍ତେହେଁ ମୁଖେ ଛନ୍ତି ଭରି
ସ୍ୱାମୀ ତ୍ରାହି ତ୍ରାହି ବୋଲି ଶରଣ ଫୁକାରି ।
ଭୀମସେନ ରହିଛନ୍ତି କୌପଣ ପର୍ବତ
ତହିଁ ଦର୍ଶନ କରିଲା ନୃପତି ମରୁତ ।
ପାଣିଦ୍ରବ୍ୟ ଶତେଭାର ଦେଖା ଦରଶନୀ
ମରୁତ ଦର୍ଶନ କଲା ଶ୍ୱେତ ହସ୍ତୀ ଘେନି ।
ତାହା ଦେଖିଣ ଆନନ୍ଦ ହେଲେ ବୃକୋଦର
ଆସ ଆସ ନୃପତି ତୁ ବାନ୍ଧବ ମୋହର ।
ହେ ରାଜା ତୋର ଯେ ନାମ ମୋ ପିତାରନାମ
ଆଉବେଳେ ମୋତେ ତୁ ନ କରିବୁ ପ୍ରଣାମ ।
ଅକ୍ଷତ ଗୁବାକ ଦେଲେ ମରୁତର ହାତେ
ସମଦଣ୍ଡ ଘେନି ରାଜା ଯାଅ ଇନ୍ଦ୍ରପ୍ରସ୍ଥେ ।
ମରୁତସେନ ନୃପତି କଲେ ବହୁ ସେବା
ବୋଲେ ମୋର ପୁରେ ସ୍ୱାମୀ ଆଜକ ରହିବା

ମଣୋହି କରିଣ ଦେବ ଚଳ ଅନ୍ୟଦେଶେ
ଭୀମସେନ ବୋଲେ ଅନ୍ନ ନ ରୁଚେ ବିରସେ
ରାଜାଗଣ ନିମନ୍ତ୍ରିବା ମୋର ଇଷ୍ଟକର୍ମ
ଯେଉଁପରି ରାଜାମାନେ ଯାଆନ୍ତି ବହନ ।
ତୁ ତାତ ଚଳ ତୋହର ସମଦଣ୍ଡ ଘେନି
ଶୁଣିଣ ମରୁତ ବେଗେ ଚଳେ ସୈନ୍ୟଘେନି ।
ବହୁତର ବୀରତୂର ଟମ୍ବକହିଁ ବାଜେ
ପାଣ୍ଡବ ସୁନ୍ଦର କଲେ ସେହିଠାରୁ ବିଜେ ।
ବଳାଙ୍ଗୀ ନଦୀର କୂଳେ ଉଜାଣି ସେ କାନ୍ତି
ତହିଁ ରାଜ୍ୟ କରେ ବୀରବାହୁ ନରପତି ।
ବଡ ପ୍ରତାପୀ ରାଜା ସେ କାରେ ନୁହେ ସାଧି
ଜରାସନ୍ଧ ଯୁଦ୍ଧେ ତାକୁ ନ ପାରିଲା ବାନ୍ଧି ।
ପଞ୍ଚଦଶ କ୍ଷୌଣୀବଳ ତାହାକୁ ଖଟଇ
ତାହାର ରାଜ୍ୟକୁ ବିନ୍ଧ୍ୟଗିରି ନିକଟହିଁ ।
ସେ ରାଜ୍ୟେ ଯାଇଁ ପ୍ରବେଶ ହୋଇଲେ ମାରୁତି
ଚାରେ ବାର୍ତ୍ତା ଜଣାଇଲେ ବୀରବାହୁ କତି ।
ସ୍ୱାମୀ ପାଣ୍ଡବସୁନ୍ଦର ବୃକୋଦର ଭୀମ
ଦିଗବିଜେ କରିବାକୁ ଅଇଲା ପଶ୍ଚିମ ।
ବହୁତର ରାଜ୍ୟ ଦେବ ଆସିଛି ସେ ଜିଣି
ଆମ୍ଭ ରାଜ୍ୟେ ପଶିଲା ସେ କାଳଦଣ୍ଡ ପାଣି ।
ଶୁଣିକରି କୋପକଲା ନୃପ ବୀରବାହୁ
କିଏରେ ପାଣ୍ଡବ ତାର ଏଡେ ଦର୍ପ କାହୁଁ ।
କେଉଁ ଦେଶରାଜା ସେହି ଏଡେ ବଡ଼ ଭୀମ
ନିଶ୍ଚୟ ପାଞ୍ଜି ତାହାର ପୋଛିଲାଣି ଯମ ।
ନ ଜାଣଇ କିରେ ରାଜା ବୀରବାହୁ ବୋଲି
ଯୁଦ୍ଧେ ପରାଜୟ ମୁହିଁ କାହାକୁ ନ କଲି ।
କେ ଜାଣଇ ପାଣ୍ଡବରେ କେ ଜାଣଇ ଭୀମ
ମୋର ଯୁଦ୍ଧେ ଆଜି ତାକୁ ନିଶ୍ଚେ ନେବ ଯମ
ସୁବାହୁ ବୋଲି କରିଣ ଅଟେ ତାର ପାତ୍ର
ତାହାକୁ ରାଇ ବୋଇଲା ହୋଇ କୋପଚିତ୍ତ ।
ପଞ୍ଚ ଐରାବତ ରଥ ପାଞ୍ଚକ୍ଷୌଣୀ ହୟ
ଏ ସର୍ବ ଏଠାରୁ ନେଇ ବେଗେ ତୁହି ଯାଅ ।
ରାଜ୍ୟରେ ପଶି ଆସନ୍ତି ଥାଟ ମହାବଳୀ
ଆରେ ରହ ରହ ବୋଲି ଆଗେ ସେ ଉଗାଳି ।
ଶୁଣିନାହୁଁ ତୁହି କିରେ ନୃପ ବୀରବାହୁ
ନିଶ୍ଚୟ ତୋର ବଳକୁ ଘୋଟିଲାଣି ରାହୁ ।
ପ୍ରାଣୀଏ ବର୍ତ୍ତନ୍ତି କିରେ ଉଗାଳିଲେ କାଳ
ମୃଗପଲ ଦେଖି ଭୟ କରେ କି ଶାର୍ଦ୍ଦୂଳ ।
ବହୁତ ପ୍ରତିଜ୍ଞା ତହୁଁ କରୁଛନ୍ତି ସୈନ୍ୟ
ଏସକଳ କଥା ଶୁଣି ଅଛି ଭୀମସେନ ।

ଭୀମ ଥାଟେ ଆଗୁଆଣୀ କାଳ ଯେ ବିକାଳ
ବଜ୍ରାବଳୀ ଗଦାମାନ ଧରି କରସ୍ଥଳ ।
ବୋଇଲେ ସୁବାହୁ ପାତ୍ରେ ତୋ ରାଜାକୁ କହ
ନାଶକର ଦେବତାକୁ କେ କରିବ କୋହ ।
ବାଳକାଳେ ଯାର ପାଦେ ଶତଶୃଙ୍ଗ ଚୂନା
ନ ଜାଣେ କି ବୀରବାହୁ ବୃକୋଦର ଜେନା ।
ରାଜସୂୟଯାଗ କରିବେ ଯୁଧିଷ୍ଠିର ଦେବେ
ଚତୁର୍ଦ୍ଦିଗ ରାଜା ସମଦଣ୍ଡ ଘେନିଯିବେ ।
ତୁମ୍ଭର ଆମ୍ଭର ପୂର୍ବୁ ନାହିଁ କିଛି ଦ୍ୱନ୍ଦ୍ୱ
ଶୁଣିଣ ପଣ୍ଡିତ ଲୋକ ହୁଅନ୍ତି ଆନନ୍ଦ ।
ପ୍ରତ୍ୟକ୍ଷେ ଶମନ ଏଥେ ବିଜେ କଲେ ଆସି
କିଏ ଏଥି ଉବୁରିବ କାଳ ମୁଖେ ପଶି ।
କାଳ ବିକାଳଙ୍କ କଥା ଶୁଣି ପାତ୍ର ଆଗେ
କୃତାନ୍ତକ ଗଦା ଘେନି ପ୍ରହାରିଲା ବେଗେ ।
ଗଦା ଆସନ୍ତେ ଦେଖିଲା ଭୀମ ସେନାପତି
ବାମକରରେ ତାହାକୁ ଧଇଲା ଝଟତି ।
ସେହି ଗଦାକୁ ସେକାଳେ ଧରି ନିଜ ହସ୍ତେ
ଲେଉଟାଇ ପିଟିଲା ସେ ପ୍ରତିଜ୍ଞା ସାମର୍ଥେ ।
ଗଦାଘାତେ ସୁବାହୁର ରଥ ଚୂର ହେଲା
ପାଦଗତିରେ ସୁବାହୁ ମୁଦ୍‌ଗର ପିଟିଲା ।
ଗଦାବର ବୁଲାଇଣ ପିଟିଲା ବିକାଳ
ଏମନ୍ତ ଉଭୟେ ଯୁଦ୍ଧ ହେଲା ବହୁବେଳ ।
ବିକାଳର ସମରରେ ଲୋଟିଲା ସୁବାହୁ
ଚନ୍ଦ୍ର ଦେବତାକୁ ଯେହ୍ନେ ଘୋଟେ ଦୁଷ୍ଟରାହୁ ।
ଆକର୍ଷି ବିକାଳ ତାକୁ ମାଡ଼ିଣ ବସିଲା
ଦ୍ୱିଫାଳ କରି ସୁବାହୁ ପାତ୍ରକୁ ଚିରିଲା ।
ସଂଗ୍ରାମରେ ପାତ୍ର ଯହୁଁ ହୋଇଲା ସଂହାର
ଭାଙ୍ଗିଲେ ସଇନି ଆଉ ନ ଟେକିଲେ ଶିର ।
ଧାମନ୍ତି କାଳ ବିକାଳ ବେନି ସେନାପତି
ମହା କାଳାନଳ ପ୍ରାୟେ ବିରାଜଇ ମୂର୍ତ୍ତି ।
ବୁଲାଇଣ ଗଦାବର ଅତି କୋପେ ପିଟି
ବହୁ ସଇନି ପଡ଼ିଲେ ତହିଁ ମହୀ ଲୋଟି ।
ରଥେ ରଥ କଚାଡ଼ିଲେ ଗଜେ ଗଜ ଧରି
ପିଟନ୍ତେ ସର୍ବେ ପଡ଼ିଲେ ରକତ ଉଦ୍‌ଗାରି ।
ଏକଲକ୍ଷ ରଥ ପଞ୍ଚ ମର୍ଦ୍ଦୁତ ଯେ ହୟ
ପଞ୍ଚକୋଶେ ପଡ଼ି ପୃଥ୍ୱୀ ହେଲା ରକ୍ତମୟ ।
ରାଜାର ଛାମୁରେ ଯାଇ କହିଲେ ମୁନେହି
ସ୍ୱାମୀ ସର୍ବେ ନାଶଗଲେ ସୈନ୍ୟ କେହିନାହିଁ
କାଳ ବିକାଳ ଘେନିଣ ବେନି ସେନାପତି
ପ୍ରତ୍ୟକ୍ଷରେ ଦିଶୁଛନ୍ତି କାଳ ଯମ ମୂର୍ତ୍ତି ।

ଆମ୍ଭର ବୋଲ ନ କଲୁ ତୁହି ନୃପମଣି
ଚାରିକ୍ଷୌଣୀ ନାଶଗଲେ ତୋହର ସଇନି ।
ଶୁଣିଣ ଅଧର ପୁଷ୍ଟ କରେ ବୀରବାହୁ
ପାଣ୍ଡବମାତ୍ରକ ଆରେ ଏଡେ ଦର୍ପ କାହୁଁ ।
ସୈନ୍ୟସାଜ ବୋଲି ଆଜ୍ଞାଦେଲା ନୃପମଣି
ରଥ ଗଜ ଅଶ୍ୱ ଦଣ୍ଡ ସଇନି ପଲାଣି ।
ଏଗାର କ୍ଷଉଣୀ ପୁଣି ସୈନ୍ୟବଳ ସାଜି
ଧାମନ୍ତି ଯେ ସୈନ୍ୟମାନେ ହୋଇ ଗଳଗାଜି
ନଗ୍ରର ଭିତରେ ବଳେ ପଶୁ ଆରେ ଭୀମ
ଦଣ୍ଡଦେଖି ଭୀମ ସ୍ମରେ ପୁରୁଷ ଉତ୍ତମ ।
ସ୍ୱାମୀ ତୁମ୍ଭେ ବୋଲିଥିଲ ରାଜା ନ ମାରିବୁ
ପଶ୍ଚିମଦିଗ ରାଜାଙ୍କୁ ନିମନ୍ତ୍ରି ଆଣିବୁ ।
ସ୍ୱାମୀ ଜରାସନ୍ଧ ବଧ କଲୁ ଏ ନିକଟେ
ଏଡ଼େବଡ଼ କଥାଗୋଟି ପାଶୋରିଲେ ରାଷ୍ଟ୍ରେ
ଆଜ ଯୁଦ୍ଧେ ନ ବର୍ତ୍ତିବ ଏହି ବୀରବାହୁ
ଏ ରାଜାର ତୁଲେ ଧନ ଦେବ ମୋତେ ତହୁଁ
ତହିଁ ସୁବର୍ଣ୍ଣ ରାଜାଏ ଗଢ଼ାଇବେ ହରି
ଦୁଷ୍ଟଙ୍କ ପ୍ରତିଜ୍ଞା ଦେହ ସହି ଯେ ନ ପାରି ।
ଦି ଚାରିଟା ନ ମାଇଲେ ଦିଗ ନୋହେ ସାଧି
ଦୁଷ୍ଟରାଜା ବର୍ତ୍ତିଥିଲେ କାର୍ଯ୍ୟ ନୋହେ ସିଦ୍ଧି ।
ମରୁତ ସାରଥି ବୋଲେ କୋପ ଶାନ୍ତିକର
ରାଜାଙ୍କୁ ମାଇଲେ ଯଜ୍ଞ ହେବ କି ତୋହର ।
ଏରୂପେ କହିଲା ଯହୁଁ ମରୁତ ସାରଥି
ଶୁଣିକରି ବୃକୋଦର କୋପକଲେ ଶାନ୍ତି ।
ବୀରବାହୁ ସୈନ୍ୟମାନେ ବେଢ଼ିଲେକ କୋପେ
ପୁଚ୍ଛ ଆଘାତରେ ଯେହ୍ନେ ଗରଜନ୍ତି ସର୍ପେ ।
ଧର ଧର ମାର ମାର ବୋଲି ପଡ଼େ ବୋବି
ସୈନ୍ୟଙ୍କ କ୍ରୀଡ଼ାଗତିରେ କମ୍ପେ ପୃଥ୍ୱୀଦେବୀ ।
ରେ ରେ କାର କରି ବୀର ଛାଡୁଛନ୍ତି ରଡ଼ି
ସେ ରଡ଼ି ଶୁଭଇ ଯେହ୍ନେ ମେଘ ଘଡ଼ ଘଡ଼ି ।
ସର୍ପ ଦେଖି ଖଗେଶ୍ୱର ଯେହ୍ନେ ରାଗ ହୋଇ
ସେପରି ଉଠିଲେ ଭୀମ ନ ପାରିଲେ ସହି ।
ସେନାପତି କୃତାନ୍ତକ କାଳ ଆଗୁସରି
ସେ ଥାଟେ ପଶିଲେ ଯଥା ବିକ୍ରମକେଶରୀ ।
କାଳେବର ଗଦା ଘେନି ଧାଇଁଲେ ମାରୁତି
ରଣେ ଅନିର୍ବାର ସେହୁ ଅଟନ୍ତି ଅଶାନ୍ତି ।
ଯେଉଁପରି ଦେଖାଯାଏ ମନ୍ଦର ଭୂଧର
ସେହି ସ୍ୱରୂପ ଦିଶଇ ପାଣ୍ଡବେ ସୁନ୍ଦର ।
ଗଦା ବୁଲାଅନ୍ତେ ତାର ବହେ ଯେ ପବନ
ସେ ବାତେ ଉଡ଼ିଲେ ବହୁ ବୀରବାହୁ ସୈନ୍ୟ
ଗଦାରୁ ବହେ କି ତହିଁ ଅଣଚାଶ ବାତ
ରଥ ଗଜ ଅଶ୍ୱ ଆଦି ଉଡ଼ିଲେ ବହୁତ ।
ଅନେକ ଦୂରେ ସେମାନେ ପଡ଼ିଲେକ ଉଡ଼ି
ଯମସମ ମୂର୍ତ୍ତି ଧରି ଭୀମଦେଲେ ରଡ଼ି ।
ଦେଖିଣ ତରସ୍ତ ହେଲା ଉଜାଣର ପତି
ଉଲ୍‌କାପାତୁ ବଞ୍ଚିବାକୁ କାହିଁ ତାର ଶକ୍ତି ।
ମରୁତ ସାରଥି ବୋଲେ କୋପକୁ ସଂହର
ନିଜ କାର୍ଯ୍ୟ ଅଛି ତାର ଦୋଷ କ୍ଷମାକର ।
ସେବକର ଦୋଷାଦୋଷ ସ୍ୱାମୀ ଯେ ସହଇ
ଯେହ୍ନୁ ପ୍ରଭୁ ହୁଏ ସେହୁ ଦଣ୍ଡଇ କ୍ଷମଇ ।
ମରୁତ ଏହା ବୁଝାନ୍ତେ ବୀରବାହୁ ତେଣେ
ବହୁତ ପ୍ରତିଜ୍ଞା କରେ ଶରବିନ୍ଧି ରଣେ ।
ଏହା ଦେଖି କୋପଭରେ କମ୍ପାଇଣ କାୟ
ଗଦା ତୋଳିଣ ଧାଇଁଲେ ପବନ ତନୟ ।
ରାଗେ ଅଇବ୍ରତ ଯୋଦ୍ଧା ଏକମୁଖ ହୋଇ
ପ୍ରହାର କଲେ ଭୀମଙ୍କୁ ଖଡ୍‌ଗ କୁନ୍ତ ନେଇ ।
ଗଜପଲ ଦେଖି ଯେହ୍ନେ ଧାମଇଁ କେଶରୀ
ତେହ୍ନେ ବୃକୋଦର ଧାଏଁ ଗଦା ଘେନିକରି ।
ତା ରଡ଼ି ଶବଦେ ସାତବ୍ରହ୍ମାଣ୍ଡ କମ୍ପିଲା
ମହା ମହା ଗିରି ବୃକ୍ଷ ଭାଙ୍ଗି କି ପଡ଼ିଲା ।
ପୋଡ଼ିଲା ପର୍ବତେ କିବା ଆସେ ସ୍ଥାନ ତେଜି
ସେପରି ରୋଷେ ଧାମନ୍ତି ଭୀମ ଗଳଗାଜି ।
ଆକର୍ଷି ମାଇଲେ ବହୁ ସୈନ୍ୟକୁ ସମରେ
ରଥ ନେଇ କଚାଡ଼ିଲେ ରଥର ଉପରେ ।
ପୁଣି ବାହା ନାଦ କରି ଗଜେ ଗଜ ପିଟି
ଅଶ୍ୱେ ଅଶ୍ୱ କଚାଡନ୍ତେ ପଡ଼ିଲେ ସେ ଲୋଟି
ସୈନ୍ୟନାଶ ହେବା ଦେଖି ଆସେ ବୀରବାହୁ
ବୋଲେରେ ପାଣ୍ଡବା ଏଡ଼େ ଦର୍ପ ତୁହି ବହୁ
ପରରାଷ୍ଟ୍ରେ ପଶି ତୋର ଏଡେ ବଡ଼ ଦର୍ପ
ଖଗେଶ୍ୱର ଆଗେ କାହିଁ ଗରଜଇ ସର୍ପ ।
ଅନେକ ପ୍ରତିଜ୍ଞା କରି ଗର୍ଜି ସେହି ରାୟେ
ଅଶ୍ୱେ ଚଢ଼ି କ୍ଷେପିଲା ସେ ଶ୍ୟେନପକ୍ଷୀ ପ୍ରାୟେ ।
ଶତ ଶତ ଭାର ବେନି ଗଦା ସେ ବୁଲାଇ
ଭୀମସେନର ଉପରେ ପିଟିଲା ନିଠାଇ ।
ସେ ଆଘାତେ ଭୀମସେନ ଦେହ ଗଲା ଫାଟି
ରକତ ବହିଲା ଯେହ୍ନେ ହୁଏ ଜଳବୃଷ୍ଟି ।
ସେ ଆଘାତେ ଘୁମାଇଲେ ପବନର ବାଳ
ପୁଣି ତେଜି ଉଠିଲା ସେ ତେଜେ ଅନର୍ଗଳ ।
ବୃକୋଦର ମୂରତିକି ବିକାଶିଣ ଭୀମ
ଗଦା ବୁଲାଇଣ ପୁଣି କରିଲେ ସଂଗ୍ରାମ ।

ଆରେ ଆରେ କହି ଗଦା ପିଟିଲେକ ଟୋକି
ଗଜ କୁମ୍ଭରେ ବାଜନ୍ତେ ଗଜ ହେଲା ଧୂଳି ।
ପାଦଗତିରେ ଧାମଇଁ ବୀରବାହୁ ନୃପ
ଭୀମଙ୍କୁ ଗଦା ପିଟିଲା କରି ମହାକୋପ ।
ସେ ଗଦା ପିଟନ୍ତେ ଭୀମ ଗଦାକୁ ପାତିଲା
ବେନିଗଦା ଘଉଷଣେ ଅନଳ ଉଠିଲା ।
ଗଦା ବୁଲାଇ ମାରନ୍ତେ ବୀର ବୃକୋଦର
ବୀରବାହୁ ଗଦା ବାଜି ହେଲା ଶତେ ଚୂର ।
ଗଦା ଭାଜନ୍ତେ ବିରସେ ଘେନି ଖଡ଼୍ଗଫଳା
ନିର୍ଭୟେ ଯୁଝେ କୁମୁଦସେନ ରାଜବଳା ।
ବାୟୁଗତିରେ ବୁଲାଇ ସେହି ଖଡ଼ଗକୁ
ପ୍ରହାର କଲାକ ନେଇ ଭୀମର ଗାତ୍ରକୁ ।
ଖଡ୍‌ଗ ଦେଖି ଭୀମ ବାମଅଙ୍ଗ ପାତିଦେଲା
ବାଜିଣ ସେହି ଖଡ଼ଗ ଭାଙ୍ଗି ଗୁଣ୍ଡା ହେଲା ।
ଖଡ୍‌ଗ ଭାଙ୍ଗୁ ବୀରବାହୁ ହେଲା ଶୂନ୍ୟହସ୍ତ
ଭୀମସେନଙ୍କୁ ମାଇଲା ରୋଷେ ବେନିମୁଥ ।
ପ୍ରତିଜ୍ଞା ବଳବନ୍ତ ସେ ପବନର ଶିଷ୍ୟ
ବାମହସ୍ତରେ ଧଇଲା ବୀରବାହୁ କେଶ ।
ଦକ୍ଷିଣ ହସ୍ତେ ଖଡ୍‌ଗ ଧରି କୋଳାଗ୍ରତେ
ମାରିବ ବୋଲି ଖଡ଼ଗ ଉଞ୍ଚାଏ ତୁରିତେ ।
ଖଡ୍‌ଗ ଉଞ୍ଚାନ୍ତେ ମରୁତ କଲା କୋଳାଗ୍ରତ
ବୋଇଲା ହେ ଭୀମ ତୁମ୍ଭେ କୋପ କରଶାନ୍ତ
ସୂତକୁ ପେଲି ଦେଇଣ ଭୀମ ପରଚଣ୍ଡା
ମାରିବାକୁ ସେ ରାଜାକୁ ଝମକାଏ ଖଣ୍ଡା ।
ଛାଡ ଛାଡ ହେ ସାରଥି ବୋଲେ ବୃକୋଦର
ଅବଶ୍ୟ ଶିର ଛେଦିବି ଏ ବୀରବାହୁର ।
ସାରଥି ବୋଲେ ଅଇଲୁ ରାଜାଙ୍କୁ ନିମନ୍ତି
ରାଜାଙ୍କୁ ମାଇଲେ ଯଜ୍ଞ ଦେବ କେଉଁମତି ।
ସଜ୍ଜନ ପାଳକ ତୁହି ଭାଙ୍ଗୁ ମୂଢ଼ ଦର୍ପ
ଭକତବତ୍ସଳ ତୁହି ତ୍ୟାଗ କର କୋପ ।
ଏହା ପ୍ରତି ମନମଧ୍ୟେ କରିଲେ ତୁ ରିହ
ଏ ଅନାଥ ହେବ ଆହେ ପବନ ତନୟ ।
ଏକାଳେ ଦନ୍ତେ ତିରଣ ଧରି ବୀରବାହୁ
ବୋଲେ ତୋ ଶରଣ ଦୋଷ କ୍ଷମ ମହାବାହୁ
ମୁଁ ଅଜ୍ଞାନ ତୁ ଅନାଥ ଜନଙ୍କର ବନ୍ଧୁ
ଶରଣରକ୍ଷଣ ନାଥ ବଂଶ ତୋର ସାଧୁ ।
ନ ଜାଣି ପ୍ରତିଜ୍ଞା ମୁହିଁ କଲଇଁ ବହୁତ
ମୁଁ ଅଧମ ମୋର ଦୋଷ କ୍ଷମ ବଳବନ୍ତ ।
ମୁହିଁ ଅବା ଦ୍ରୋହ ତୋତେ କଲଇଁ ଅଜ୍ଞାନେ
ଏଥକୁ ଅବା ଦ୍ରୋହ ତୁ କରିଛୁ ବିଧାନେ ।

ପଣ୍ଡିତ ଜନଙ୍କର ଯେ ଶତ୍ରୁମିତ୍ର ନାହିଁ
ବ୍ରାହ୍ମଣ ଚୋରି କରିଲେ ଦୋଷ କି ନୁହଇ ।
ମୂର୍ଖ ଅପରାଧୀ ହେଲେ ସେହୁ ଦଣ୍ଡ ପାଏ
ମୁହିଁ ମୂର୍ଖ ଅପରାଧୀ ଦୋଷ କ୍ଷମ ରାୟେ ।
ଶରଣ ସୋଦର ନାଥ ମୋତେ କର ରକ୍ଷା
ପ୍ରାଣଦାନ ମାଗୁଅଛି ଦିଅ ଏହି ଭିକ୍ଷା ।
ବହୁ ସ୍ତୁତି କରି ରାଜା କାନ୍ଦିଣ ବିକଳେ
ପ୍ରଣାମ କରଇ ପୁଣ ଭୀମ ପଦତଳେ ।
ଏମନ୍ତ ଦେଖି ବୋଲଇ ପବନ ଦୁଲାଳ
ଦୁଷ୍ଟପଣେ ଯା ଭୋଗିଲୁ ତୁହି ମହୀପାଳ ।
ଏହା କହି ତାକୁ କ୍ଷମା ଦେଲାକ ପାବନି
ବୋଇଲେ ରାଜୁସିଯଜ୍ଞେ ଯାଅ ସୈନ୍ୟଘେନି
ଚନ୍ଦନ କସ୍ତୁରୀ ତାର ଶିରରେ ଲେପିଲେ
ଦେବାଙ୍ଗବସନ ଭୀମ ତା ମାଥେ ବାନ୍ଧିଲେ
ଅନେକ ଭକ୍ତିରେ ବୀରବାହୁ ନୃପମଣି
ପାରିଦଣ୍ଡ ସହ ଭୀମସେନ ଗଲା ଘେନି ।
ନିଜ ସିଂହାସନ ପରେ ନେଇ ବସାଇଲା
ନାନା ଉପଚାରେ ଭୀମ ଚରଣ ପୂଜିଲା ।
ନିଜେ ବୀରବାହୁ ଛତ୍ର ଧରି ଉଭା ହେଲେ
ବନ୍ଧୁବର୍ଗାଦି ଆଲଟ ଚାମର ବିଞ୍ଚିଲେ ।
ବିଜୟ ଭୀମ ନୃପତି ଆସ୍ଥାନ ଉପରେ
ନାଚୁଛନ୍ତି ବାରାଙ୍ଗନା ତାହାର ଛାମୁରେ ।
ଦାସଭାବେ ପୁଚ୍ଛା କଲେ ସେ ବୀର ନୃପତି
ଆଜି ମୋ ପୁରରେ ଦେବ ରହ ଦିବାରାତି ।
ଭୀମ ବୋଲେ ଧ୍ୱଂସ କଲି ମୁଁ ତୋହର ରାଜ୍ୟ
ବହୁସୈନ୍ୟ ନାଶ କଲି ହେଲା ତ ଅକାର୍ଯ୍ୟ ।
ତୋହର ରାଜ୍ୟରେ ଆମ୍ଭେ ରହିବୁ କେମନ୍ତେ
ରାଜାଙ୍କୁ ନିମନ୍ତି ଯିବୁ ପଶ୍ଚିମ ପ୍ରଶସ୍ତେ ।
ଆସ୍ଥାନୁ ଓହ୍ଲାଇ ସେହି ରାଜାଙ୍କୁ ସମ୍ବୋଧି
ଅମାନାତ୍ୟେ ଶାଢ଼ୀ ଦେଲେ ବହୁତ ପ୍ରବୋଧି
ବୀରବାହୁ ବୋଲେ ଦେବ ତୋ ସଙ୍ଗରେ ଥିବି
ତୋପରି ସ୍ୱାମୀକି ଛାଡ଼ି କିମ୍ପା ଆଗ ଯିବି ।
ଭୀମ ବୋଲେ ମୋ ସଙ୍ଗକୁ ନ ବଳାଅ ଇଚ୍ଛା
ରାଜସୂୟ ଯଜ୍ଞେ ଚଳ ପୁରୁ ମନୋବାଞ୍ଛା ।
ବାହୁଡ଼ିଲା ବୀରବାହୁ ତଥ୍ୟ କଥା ଶୁଣି
ଆପଣା ରାଜ୍ୟେ ଚଳିଲା ଥାଟକୁ ପଲାଣି ।
ଜୟ ଶ୍ରୀଶାରଳା ଚଣ୍ଡୀ ଝଙ୍କଡ଼ବାସିନୀ
ତୋ ପାଦ ଚିନ୍ତେ ଶାରଳା ଦାସ ଶୂଦ୍ରମୁନି ।

## କାଶୀରାଜାଙ୍କ ନିମନ୍ତ୍ରଣ ଓ ପଞ୍ଚଧାର ତୀର୍ଥର ମାହାତ୍ମ୍ୟ

ଦଣ୍ଡଘେନି ସେ ସ୍ଥାନରୁ ଚଳିଲେ ମାରୁତି
ବିହୁଡ଼ି ହୁଳା ଲଗାଇ ଗଲେ ନିଶାରାତି ।
ମହାସମ୍ଭର୍ବରେ ଚଳିଯାଆନ୍ତି ଭୀମସେନ
ପ୍ରବେଶିଲେ ନଦୀତୀରେ ହରଙ୍କ ଉଦ୍ୟାନ ।
ସେହି ନଦୀତୀରେ କାଶୀତୀର୍ଥ ଯେ ବସଇ
କାଶୀଶ୍ୱର ବୋଲି ରାଜା ରହିଥିଲା ତହିଁ ।
ବଡ ପ୍ରତାପୀ ସେ ରାଜା ସେବା କରେ ଶିବ
ଧାର୍ମିକ ବିବେକ ସେହି ମହା ବଇଷ୍ଣବ ।
ଶିରେ ଜଟା ରୁଦ୍ରଚିହ୍ନ ଶ୍ରୀଭୁଜେ କଙ୍କଣ
ଶୂଳେକ ଧରି ବୃଷଭ ବାହନେ ଭ୍ରମଣ ।
କୋଟିଏ ଗଣନାୟକ ଥାନ୍ତି ତାର ତୁଲେ
କେ ରାଜା ସମ ନୋହିବ ସମର କରିଲେ ।
ତିନିଭୁବନର ଲୋକେ ସଂଗ୍ରାମେ ତା ସମ
ନୋହିବ ଏଡ଼େ ବଳିଷ୍ଠ ସେ ଦ୍ୱିତୀୟ ଯମ ।
ମହାବଳବନ୍ତ ସେହି ଶିବଙ୍କ ପ୍ରସନ୍ନେ
ରଥୀପଣେ ସାମରଥା ନାହିଁ ତା ସମାନେ ।
ଭୀମସେନ ପ୍ରବେଶିଲେ ତାହାର ରାଜ୍ୟରେ
ବହୁ ବୀର ତୂର ଢୋଲ ବାଜେ ଏକତ୍ରରେ ।
ଚାର ଜଣାଇଲା ଯାଇ କାଶୀଶ୍ୱର ପାଶେ
ପଶ୍ଚିମ ରାଜାଙ୍କୁ ବରି ଭୀମସେନ ଆସେ ।
ବୀରବାହୁ ରାଜ୍ୟେ ପଶି ତା ସୈନ୍ୟ ମାଇଲା
ରାଜା ଯୁଦ୍ଧେ ହାରୁଁ ତାକୁ ପ୍ରାଣଦାନ ଦେଲା ।
ରାଜସୂୟ ଯାଗ ଅର୍ଥେ ରାଜା ନିମନ୍ତ୍ରଇ
ଯେହୁ ଦ୍ୱନ୍ଦ୍ୱ କରେ ତାର ସକଳ ସରଇ ।
ବିଚାରିଣ କାର୍ଯ୍ୟକର କାଶୀଶ୍ୱର ରାୟ
ସଂଗ୍ରାମକଲେଟି ଦେବ ହେବଟି ଅଜୟ ।
ନରପତି ହୋଇ ଯେହୁ ପଶଇ ଶରଣ
ଆବର ଭକ୍ତି କଲେ ତା ରକ୍ଷାହୁଏ ପ୍ରାଣ ।
ଦେଶାଉର ମୁଖୁ ଏହି ବଚନକୁ ଶୁଣି
ଦଣ୍ଡସାଜ ବୋଲି ବୋଲେ କାଶୀ ନୃପମଣି ।
ଆଜ୍ଞା ମାତ୍ରେ ସଜହେଲେ ବୀର ଯୋଦ୍ଧାମାନେ
ଶୂଳ ଏକ ଏକ ଧରି ବିଜେ ବୃଷାସନେ ।
ଏକ ହସ୍ତେ ଶୂଳ ଆର ହସ୍ତରେ ଡମ୍ବରୁ
ହୃଦରେ ଭୂଷଣ ସର୍ପ ଟେକିଛନ୍ତି ଫେରୁ ।
ପରିଧାନ କଷାବସ୍ତ୍ର ଶିରେ ତାମ୍ରଫଣୀ
ଡମ୍ବରୁ ବାଇ ଆସନ୍ତି ଚିନ୍ତି ଶୂଳପାଣି ।
ଭୀମ ବିଜେ କରିଛନ୍ତି କାଶୀନଦୀକୂଳେ
ତ୍ରିପୁରାନ୍ତକ ପର୍ବତ ରୁଦ୍ରବଟ ତଳେ ।
ଦୂରୁ ଦେଖିଲା ତାହାକୁ କାଶୀ ନରପତି
ଭୀମସେନଙ୍କରେ ଅଛେ ଭୈରବ ମୂରତି ।
ବେନିହସ୍ତେ ଗଦାବର ଗିରିସମ କାୟ
ଦେଖି ତ୍ରାସ କଲା ସେହି କାଶୀଶ୍ୱର ରାୟ ।
ଚାରଗଣ ଜଣାଇଲେ ଶୁଣିମା ହେ ଭୀମ
ଦେଖ ରୁଦ୍ରବରେ ରାଜା ଆଦି ଶିବ ସମ ।
ଭୀମସେନ ରୂପ ଚାହିଁ କାଶୀଶ୍ୱର ଭାଷି
ବୃଷଭୁଁ ଓହ୍ଲାଇ ହସ୍ତେ ଅର୍ଘ୍ୟ ଘେନି ଆସି ।
ଭୀମସେନ ପାଶେ ମିଳି ଦେଲାକ ପାଦାର୍ଘ୍ୟ
ବୋଲେ ତୁ ଠାକୁର ଅଟୁ ଏହି ମଧ୍ୟ ସ୍ୱର୍ଗ ।
ସଂସାରେ ଜନଙ୍କ ହିତେ ଜରାସନ୍ଧ ବଧି
ଶିବପୂଜେ ନେଲୁ ରାଜା ଚାଣ୍ଡାଳକୁ ସାଧି ।
ନ ଜାଣି ଦୁଷ୍ଟ ରାଜାଏ ହେଉଛନ୍ତି ବଶ
ତୁହି ପରମ ପଣ୍ଡିତ ନୁହେଁ ତାଙ୍କୁ ଜଣ ।
କୁମ୍ଭକ ବିଦାରି କଲୁ କପିଳାସ ରକ୍ଷା
ଶତଶୃଙ୍ଗ ଦର୍ପ ଭଞ୍ଜା ସର୍ପବିଷଭକ୍ଷା ।
ସଞ୍ଚି ପାଳୁ ଦୁଷ୍ଟଙ୍କର ଦର୍ପକୁ ତୁ ରାହୁ
ନ ଜାଣି ଅପ୍ରାଧ ହେଲା ତୋରେ ବୀରବାହୁ ।
ଅନେକ ସ୍ତୁତି କରି ସେ କାଶୀ ଦେଶସ୍ୱାମୀ
ଦୂରେ ରହି ହୁଏ ଶତ ସହସ୍ର ପ୍ରଣମି ।
ଭୀମ ବାକ୍ୟେ ଚାର କାଶୀଶ୍ୱରକୁ କହିଲା
ଉଠ ରାଜା ଠାକୁରଙ୍କ ତୋତେ ଆଜ୍ଞାହେଲା ।
ଭୀମ ନିଜେ କୋଳକରି ଧରି ସେ ରାଜାକୁ
ଅକ୍ଷତ ଗୁଆ ଦେଇଣ ନିମନ୍ତ୍ରିଲେ ତାକୁ ।
ପୁଣି ବୋଇଲେକ ଭୀମ ଶୁଣ କାଶୀଶ୍ୱର
ରାଜସୂୟଯଜ୍ଞ କରନ୍ତି ଦେବ ଯୁଧିଷ୍ଠିର ।
ଆମ୍ଭର ଜ୍ୟେଷ୍ଠ ସୋଦର ଜାଣ ସେ ଅଟନ୍ତି
ବ୍ରହ୍ମହତ୍ୟାରୁ ତରିବେ ପଣ୍ଡୁ ନରପତି ।
ଅନେକ ନୃପତି ତହିଁ ହୋଇବେକ ମେଳି
ପଶ୍ଚିମେ ପେଶିଲେ ମୋତେ ଦେବ ବନମାଳି
ରହିଛନ୍ତି ଯେତେ ତୋର ଥାଟେ ଆଦି ସୈନି
ଇନ୍ଦ୍ରପ୍ରସ୍ଥେ ଯାଅ ଦେଖା ଦରଶନୀ ଘେନି ।
ଶୁଣି ଅନେକ ବିନୟେ ବୋଲେ କାଶୀଶ୍ୱର
ସ୍ୱାମୀ ଆଜକ ମଣୋହି ମୋର ପୁରେ କର ।
ତାର ଭକ୍ତି ଦେଖି ଭୀମ କଲେ ସନମତ
ତା ପୁରେ ପ୍ରବେଶ ହେଲେ ପବନର ସୁତ ।
ବେନି ଅଇବ୍ରତ ଭୀମ ସଙ୍ଗେ ସୂପକାର
ତାଙ୍କ ରାନ୍ଧଣାରେ ତୃପ୍ତ ହୁନ୍ତି ବୃକୋଦର ।
ସେ ସୂପକାରେ ବୋଇଲେ ଶୁଣ କାଶୀନାଥ
ଠାକୁରଙ୍କର ମଣୋହି ଦେଇ ପାରିବତ ।

ସଂଗ୍ରାମରେ ଭୋଜନରେ ଆଉ ଶୃଙ୍ଗାରରେ
ଅତୃପତ ଥାଆନ୍ତି ଏ ସବୁ ସମୟରେ ।
ବିଳମ୍ବ ନ ସହେ ଯାହା ଦେବ ଶୀଘ୍ର ଆଣ
ତିନିଶ ଷାଠିଏ ପୌଟି ବେଳେ ଅଣ୍ଟେ ଜାଣ ।
ବ୍ୟଞ୍ଜନ ପାଇଁ ପରିବା ଯେତେ ଦେଇପାର
ରାଜା ବୋଇଲେ ସେଥିକି ଚିନ୍ତା କିମ୍ପା କର ।
ଯେତେକ ଅଣ୍ଟଇ ଦେବି ମୁଁ ଅନ୍ନ ବ୍ୟଞ୍ଜନ
ବେଗେ ତୁମ୍ଭେ ସୂପକାର କର ଯା ରନ୍ଧନ ।
ଶୁଣି ସୂପକାରେ ସ୍ନାନ କାର୍ଯ୍ୟାଦି ସାରିଲେ
ହାଣ୍ଡି ତଣ୍ଡୁଳାଦି ଦ୍ୟନ୍ତେ ରାନ୍ଧଣା କରିଲେ ।
ଦୋହରା ପ୍ରସନ୍ନେ ହେଲା ବହୁ ପାକସାର
ସ୍ନାନ ତର୍ପଣ ସାରିଲେ ବୀର ବୃକୋଦର ।
ହେ ଚୈତନ୍ୟ ମାରୁତିକୁ ରାତ୍ରେ ନିଦ୍ରାନାହିଁ
ଦିବସରେ ଭୋଜନକୁ ଇଚ୍ଛା ନ ବଳଇ ।
ରାଜାମାନଙ୍କୁ କିପରି ସାଧିବି ଏ ଇଚ୍ଛା
ତେବେ ସେ ପୂରଣ ହେବ ମୋର ମନୋବାଞ୍ଛା ।
ବେଗ ହୋଇ ଭୀମସେନ ମଣୋହି ସାରିଲେ
କ୍ଷଣକେ ଭୋଜନ କରି ଆଚମନ କଲେ ।
ତାମ୍ବୁଳ ଚର୍ବଣ କରି ହୋଇଲେ ସୁବେଶ
ତହୁଁ ଦଣ୍ଡ ସାଜ ବୋଲି ଦେଲେ ଏ ଆଦେଶ ।
ଛାମୁରେ ସେ କାଶୀଶ୍ୱର ଓଳଗି ହୋଇଲେ
ଦଣ୍ଡ ସାଜି ଭୀମସେନ ତହୁଁ ବାହାରିଲେ ।
ଜୟଶଙ୍ଖ ଭେରୀ ତୂରୀ ବାଦ୍ୟ ବଜାଇଣ
ତିହୁଡି ଦେଶକୁ ବିଜେକଲେ ଭୀମସେନ ।
ଧନୁମାସ ଶୁକ୍ଳପକ୍ଷ ଚଉଠି ଦିବସ
ଚଳିଲେକ ଭୀମସେନ ହୋଇଣ ହରଷ ।
ପଞ୍ଚଧାରା ବୋଲିକରି ନଦୀ ଏକଗୋଟି
ପଞ୍ଚଶୃଙ୍ଗ ପର୍ବତରୁ ଆସିଅଛି ଫୁଟି ।
ସେ ନଦୀରେ ପଶି ଧନୁମାସ ସ୍ନାନକଲେ
ପଞ୍ଚମହାପାତକ ଯେ ଛାଡ଼ିଯାଏ ଥିଲେ ।
ଗୋହତ୍ୟା ବୃଷଳୀ ଆଦି ପାତକୀ ମନୁଷ୍ୟ
ସ୍ନାନ କଲାମାତ୍ରେ ଅଙ୍ଗୁ ଦୋଷ ହେବ ନାଶ ।
ସେ ପଞ୍ଚବେଣୀ ନଦୀର ଜଳେ ଲିଙ୍ଗ ଅଛି
ସେ ଲିଙ୍ଗର ତେଜପୁଞ୍ଜ ଫୁଟି ବିରାଜୁଛି ।
ଅଶୀତାଳ ଗଭୀରରେ ସେହି ରହିଛନ୍ତି
ସ୍ନାନସାରି ଚାହିଁଲେ ସେ ନେତ୍ରକୁ ଦିଶନ୍ତି ।
କାଳଧ୍ୱଂସନ ଡଗର ଭୀମକୁ କହିଲା
ସ୍ୱାମୀ ତୋ ଯୋଗେ ଆମ୍ଭର ପାପ ନାଶଗଲା
ଏ ମହାତୀର୍ଥକୁ ଦେଖି ହୋଇଲୁ ସମର୍ଥ
ଏଠାରେ ଥିଲା ଅନ୍ଧକ ନାମେ ଏକ ଦୈତ୍ୟ ।

ଷାଠିଏ ସହସ୍ର ବର୍ଷହେଲା ମହାଯୁଦ୍ଧ
ତ୍ରିଅମ୍ବିକା ନାଥ ତାକୁ ରଣେ କଲେ ବଧ ।
ଯହୁଁ ସେ ମଲା ଏ ତୀର୍ଥ ହୋଇଲା ନିର୍ମଳ
ଏଥେ ସ୍ନାନ କଲେ ଖଣ୍ଡେ ଦୁରିତ ସକଳ ।
ଏହା ଶୁଣି ଭୀମସେନ ପଞ୍ଚଧାରା ତୀର୍ଥେ
ଶୌଚ ହୋଇ ଜଳ ମଧ୍ୟେ ପଶିଲେ ସୁଚିତ୍ତେ ।
ଦେଖିଲେ ବିଜେ ପରମ ଦେବତା ଧୂର୍ଜ୍ଜଟି
ଅଶୀତାଳ ଗଭୀରର ତେଜ ଦିଶେ ଫୁଟି ।
କର ଯୋଡ଼ିଣ ବିଚିତ୍ରବୀର୍ଯ୍ୟଙ୍କର ନାତି
ଶ୍ରୀପାରେଶ୍ୱର ସ୍ୱାମୀଙ୍କୁ କଲେ ବହୁ ସ୍ତୁତି ।
ନମସ୍ତେ ନମସ୍ତେ ଦେବ ଅଭୟ ବରଦ
ନମସ୍ତେ ନମସ୍ତେ ଦେବ ଦୟାଳୁ ତୋ ହୃଦ ।
ନମସ୍ତେ ନମସ୍ତେ ଦେବ ତୁ ପରମ ଯୋଗୀ
ନମସ୍ତେ ନମସ୍ତେ ଦେବ ଗୌରୀ ଅର୍ଦ୍ଧଅଙ୍ଗୀ ।
ନମସ୍ତେ ନମସ୍ତେ ଦେବ ବିବୁଧଙ୍କ ରାଜା
ନମସ୍ତେ ନମସ୍ତେ ଦେବ ପାର୍ବତୀ ଐଶ୍ୱର୍ଯ୍ୟା ।
ନମସ୍ତେ ନମସ୍ତେ ଦେବ ସର୍ବ ପିତାମାତା
ନମସ୍ତେ ନମସ୍ତେ ଦେବ ତୁହି ବରଦାତା ।
ନମସ୍ତେ ନମସ୍ତେ ଦେବ ପଞ୍ଚଦଶ ଆଖି
ନମସ୍ତେ ନମସ୍ତେ ଦେବ ପର ଦୁଃଖେ ଦୁଃଖୀ ।
ନମସ୍ତେ ନମସ୍ତେ ଦେବ ହେ ଗରଳଭକ୍ଷ
ନମସ୍ତେ ନମସ୍ତେ ଦେବ ବିଦାରିଲ ଦକ୍ଷ ।
ନମସ୍ତେ ନମସ୍ତେ ଦେବ ନୀଳକଣ୍ଠ ସ୍ୱାମୀ
ଭୀମ ଏ ସ୍ତବ ପଢ଼ିଣ ତାହାଙ୍କୁ ପ୍ରଣମି ।
ଯେ ଏହି ତୀର୍ଥର ନାମ ସଦା ସୁମରଇ
ତା ବାଞ୍ଛା ପୂରଣ ହୁଏ ସମ୍ପଦ ବଢ଼ଇ ।
ଯେହୁ ଅଟଇ ପଣ୍ଡିତ ବିଜ୍ଞବନ୍ତ ପ୍ରାଣୀ
ବିଷ୍ଣୁ କଳା ଘେନିଣ ସେ ଉପୁଜେ ଧରଣୀ ।
ଯେ ଏହି ପଞ୍ଚତୀର୍ଥକୁ କରେ ଏକ ଲୟ
ଯମଦଣ୍ଡରୁ ସେ ପ୍ରାଣୀ ହୁଅଇ ନିର୍ଭୟ ।
ଧର୍ମ ଅର୍ଥ ମୋକ୍ଷ ଅଛି ଯେବଣହିଁ ଶାସ୍ତ୍ରେ
ଜ୍ଞାନ ଥାଉଁ ତାହା ପ୍ରାଣୀ ମୂର୍ଚ୍ଛିବେ କେମନ୍ତେ ।
ଏ ନାବେ ବସି ତରିବେ ଏ ଭବ ଜଳଧି
ସକଳ ଜନଙ୍କୁ ଏହା ଦେଖାଇଲ ବୁଦ୍ଧି ।
ସଞ୍ଚିତ କର ହୃଦରେ ହରିନାମ ଗୋଟି
ଯେ ସ୍ଥାନେ ନାମ ହୁଅଇ ତହିଁ ସୁଧାବୃଷ୍ଟି ।
ଇହ ପରଲୋକ ପ୍ରାଣୀ ପାଏ ପରିତ୍ରାଣ
ଆପଦ ପଡ଼ିଲେ ତାରି ନ୍ୟନ୍ତି ନାରାୟଣ ।
ଆହେ ଜନେ ରାଗ ମୋହ ମାୟା ଛନ୍ଦ ହିଂସା
ଏହା ତେଜି ଭାରତରେ ବଳାଅ ମନୀଷା ।

କୁଟୁମ୍ବ ଦେଖି ମାୟାରେ ନ ପଡ଼ ହେ ବାବୁ
ଅନିତ୍ୟ ସଂସାରେ ଏଥେ ଜଗନ୍ନାଥ ସବୁ ।
ତାହାଙ୍କୁ ଯେହ୍ନେ ଭାବିବ କର ଏହି ଇଚ୍ଛା
ଅବଶ୍ୟ ପୂର୍ଣ୍ଣ କରିବେ ହରି ତୁମ୍ଭ ବାଞ୍ଛା ।
ଶରୀରେ ଧରିଛ ଯେଉଁ ଦୁଇଟି ଶ୍ରବଣ
ମନକୁ ନିବେଶି ତହିଁ ଭାରତକୁ ଶୁଣ ।
ଅଗତି ସଂସାରକୁ ଏ ଅଟଇ ଯେ ଗତି
ଧନ ସୁତ ବଢ଼େ ଯମଦଣ୍ଡେ ନାହିଁ ଭୀତି ।
ଏ ସଂସାରୁ ତରିବାକୁ ଯାର ଥିବ ଇଚ୍ଛା
ଭାରତ ଶୁଣି ପୂରଣ କରୁ ମନୋବାଞ୍ଛା ।
ବହୁ ପୁଣ୍ୟରୁ ହୋଇଛି ମାନବ ଶରୀର
ପଞ୍ଚଭୂତ ଆତ୍ମା ଛନ୍ତି ଜ୍ଞାନର ଭଣ୍ଡାର ।
ଅମୃତେ ବିଷ ଉପୁଜେ ନାହିଁ କେଉଁକାଳେ
ସଂସାର ସାଗରୁ ନରେ ତର ଧର୍ମବଳେ ।
କାୟା ଯେହ୍ନେ ନ ତୁଟଇ ଅମୃତ ଭକ୍ଷିଲେ
ଶମନ ନ ଦଣ୍ଡେ ଯେହ୍ନେ ହରିଙ୍କୁ ସେବିଲେ ।
ଶ୍ରୀହରି ଚରିତ ଅଟେ ଏ ମହାଭାରତ
ଏହା ଲେଖିବାକୁ ମୁହିଁ ହେଲି ସାମରଥ ।
ଜିହ୍ୱା ଲାଳସେ ନ ବଧ ପଶୁ କଦାଚିତେ
ମୁହିଁ ଏହା ଜଣାଇଲି ସଂସାରର ହିତେ ।
ବୈକୁଣ୍ଠ ଲଭିବ ନରେ ଭାରତ ଶୁଣିଲେ
ମୁକ୍ତିବାଟ ମିଳେ ଏଥେ ଶାରଳା ବୋଇଲେ ।
ଆହେ ସାଧୁଜନେ ଶୁଣ ନିବେଶିଣ ମତି
ପଶ୍ଚିମ ଦିଗର କଥା ସଭାପର୍ବ ରୀତି ।
ତୃତୀୟଖଣ୍ଡ ଏ ମହାଭାରତ ଚରିତ
ହେ ପଣ୍ଡିତ ଜନେ ଶୁଣ ସ୍ଥିର କରି ଚିତ୍ତ ।
ପଶ୍ଚିମ ଦିଗ ବାରତା ପଞ୍ଚତୀର୍ଥ କଥା
ଶୁଣିଲେ ଖଣ୍ଡନ ହୁଏ ଗୋ ବ୍ରାହ୍ମଣ ହତ୍ୟା ।
ଜଗନ୍ନାଥ ଶ୍ରୀଚରଣେ ରଖିଣ ମାନସ
ଭାରତ ରଚନା କରେ ଶ୍ରୀଶାରଳା ଦାସ ।



## ବିରାଟ ରାଜା ନିକଟକୁ ଭୀମଙ୍କର ପତ୍ର ପ୍ରେରଣ

ଏଥୁ ଅନନ୍ତରେ ପୁଣି ମନୁ ନୃପବର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛାକଲେ କହ ମୁନି ଭୀମ ସ୍ତବ କଲେ
ତଦନ୍ତରେ କେଉଁରାଜା ନଗ୍ରକୁ ଗମିଲେ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ନରପତି
ପଞ୍ଚବେଣୀ ତୀର୍ଥେ ଭୀମ କରି ବହୁସ୍ତୁତି ।
ସ୍ନାନ କରନ୍ତେ ଦିଶିଲେ ଯୋଗେଶ୍ୱର ମୂର୍ତ୍ତି
ଦେଖନ୍ତେ ଶରୀରୁ ପାପ ହେଲା ବିନଶ୍ୟତି ।
ଯେତେ ହତ୍ୟା କରିଥିବ ଜ୍ଞାନେ ବା ଅଜ୍ଞାନେ
ବେନିକନ୍ଧ ଆବୋରି ସେ ଥାନ୍ତି ଜୀବମାନେ ।
ପଞ୍ଚବେଣୀ ତୀର୍ଥରେ ଯେ କରଇ ସ୍ନାହାନ
ପ୍ରତ୍ୟକ୍ଷ ଛାଡ଼ଇ ତାର ହତ୍ୟା ଦୋଷମାନ ।
ହତ୍ୟାଦୋଷ କରଇ ଯେ ଜ୍ଞାନେ ବା ଅଜ୍ଞାନେ
ସେହି ପାପ ଗୋଡ଼ାଇଣ ଥାନ୍ତି ସନ୍ନିଧାନେ ।
ହତ୍ୟାକଲା ପ୍ରାଣୀଙ୍କୁ ଯେ ପ୍ରମାଦ ଚିନ୍ତନ୍ତି
ଅନ୍ତିମ କାଳେ ତାହାରି ପୁଣ୍ୟ ଘେନି ଯାନ୍ତି ।
ଯେ ପ୍ରାଣୀ ଯାହାକୁ ନାଶ କରଇ ଅଦୋଷେ
କାଳରୂପେ ସେ ତାହାକୁ ନାଶେ ଅବଶେଷେ ।
ବାଳିକୁ ବିନାଶ କଲେ ଶ୍ରୀରାମ ଠାକୁରେ
ତେଡେ ପ୍ରଭୁ ନାଶଗଲେ କିରାତ ହସ୍ତରେ ।
ଯେଉଁମାନେ ନିର୍ଦ୍ଦୟରେ ଆହେ ନରନାଥ
ଜୀବମାନଙ୍କୁ ନିର୍ଦ୍ଦୋଷେ କରନ୍ତିଟି ହତ ।
କାଳେ କାଳେ ହତ୍ୟାଦୋଷ ଲାଗଇ ଅବଶ୍ୟ
ଯେଉଁକାଳେ ନ ଯାଏଟି ଶୁଣ ହେ ନରେଶ ।
ଏ କଥା ନିଶ୍ଚୟ କରି ବୁଝ ନରମଣି
କୌଣସି ଉପାୟେ ତରି ନ ପାରଇ ପ୍ରାଣୀ ।
ଯେବେ ଏହି ପଞ୍ଚତୀର୍ଥେ ସ୍ନାହାନ କରିବ
ତେବେ ସେ ପ୍ରାଣୀ ନିଶ୍ଚୟ ତହିଁରୁ ତରିବ ।
ଅନେକ ହତ୍ୟା କରିଣ ଥିଲେ ବୃକୋଦର
ସ୍ନାନକରୁ ହତ୍ୟାଦୋଷ ହୋଇଲା ଅନ୍ତର ।
ଅଙ୍ଗୁ ବାହାରି ଅଗାଧଜଳେ ଗଲେ ଭାସି
ତହୁଁ ଭୀମସେନ ବେଗେ ଉପରକୁ ଆସି ।
ଦଣ୍ଡ ଘେନି ବିଜେ ପଞ୍ଚଧାରା ପରବତେ
ଦୂତଙ୍କୁ ପୁଚ୍ଛନ୍ତି କେଣେ ରାଜ୍ୟ ଅଛି କେତେ ।
ମୁନେହି ବୋଲେ ଉତ୍ତର ପଶ୍ଚିମର କୋଣେ
ମଘଦେଶ ମତ୍ସ୍ୟଦେଶ ରାଜ୍ୟ ଅଛି ଏଣେ ।
କୀଚକ ଜିଣିଲା ଦେବ ତ୍ରିଗର୍ତ୍ତର ଆଟ
ମତ୍ସ୍ୟ ମଘଦେଶ ଭୋଗ କରଇ ବିରାଟ ।
ସଂକୋଚନ ରାଜା ଝିଅ ସୁଦେଷ୍ଣା ଯେ ଥିଲା
ତାହାକୁ ବିରାଟ ରାଜା ବିବାହ ହୋଇଲା ।
ସଂକୋଚନର କୀଚକ ମୂଳେ ଶତବଳା
ମହା ମହା ପରାକ୍ରମୀ ସେ ବିରାଟ ଶ୍ୱଳା ।
ତାହାର ରାଜ୍ୟକୁ ଯେବେ ଯିବ ତୁମ୍ଭେ ଦେବ
ପନ୍ଦରଶତ ଯୋଜନ ବନରେ ଚାଲିବ ।
ତହିଁର ମଧ୍ୟରେ ଦେବ ନାହିଁ ଗ୍ରାମ ଘର
ସେହି ବନସ୍ତ ଅଟଇ ତାହାର ଗୋଚର ।

ତାର ବାଣିଜ୍ୟ ଗୋରସ ଦଧି ଛେନାଘୃତ
ଆବର ତା ରାଜ୍ୟେ ହୁଏ ଶସ୍ୟାଦି ବହୁତ ।
ଦୁହାଁଳ ଦ୍ୱିପଦ୍ମ ଲକ୍ଷେ ବରଡ଼ିଆ ଗାଈ
ପଦ୍ମେକ ଅଣ୍ଡିରା ବହା ପଦ୍ମେ ବହା ମାଇ ।
ସ୍ୱାମୀ କୀଚକ ତା ଶଳା ଅଟେ ମହାବଳୀ
ସଂଗ୍ରାମେ ସମାନ ତାକୁ ନାହିଁ ମହୀସ୍ଥଳୀ ।
ମୁନେହି ବଚନେ ବୋଲେ ପବନର ଚାଟ
ସେ ମତ୍ସ୍ୟ ଦେଶକୁ ବେଗେ କଢ଼ାଅ ତୁ ବାଟ
ଭୀମସେନ ସଙ୍ଗେ ଥିଲେ ପାତ୍ର ଧୂମାହତ
ବୋଇଲା ସେ ରାଜ୍ୟ ଦେବ ଦୁସ୍ତର ବହୁତ ।
ତା ପାଶେ ଶ୍ରୀମୁଖ ଦେଇ ବରଗିବ ଦୂତ
ଶ୍ରୀମୁଖ ପାଇ ବିରାଟ ଯିବ ଇନ୍ଦ୍ରପ୍ରସ୍ଥ ।
ନଉ ଦିବସେ ନ ଗଲେ ସେ ମତ୍ସ୍ୟାଧିପତି
ପଶ୍ଚିମ ରାଜାଙ୍କୁ ବରି ଯିବା ତାର କତି ।
ତାହାର ବଚନେ ଭୀମ ହେଲେ ତୋଷଚିତ୍ତ
ସତ୍ୱର ହୋଇ ଶ୍ରୀମୁଖ ଲେଖ ଆହେ ପାତ୍ର ।
ଆଜ୍ଞା ପ୍ରମାଣେ ଶ୍ରୀମୁଖ କଲେକ ଲେଖନ
ଯେମନ୍ତେ ଭୀମଙ୍କ ପ୍ରତିଜ୍ଞା ଯଜ୍ଞର ବିଧାନ ।
ତାଳପତ୍ରରେ ଯତନେ ଲେଖନ୍ତି ବିଚାରି
ଭୀମସେନଙ୍କ ପ୍ରତିଜ୍ଞା ଅଟେ ଯେଉଁପରି ।
ବିବେକ ପଣ୍ଡିତ ଅଟେ ସୁଚତୁର ପୁଣି
ଶ୍ରୀମୁଖ ଲେଖନ କଲେ ମନ୍ତ୍ରୀ ଶିରୋମଣି ।
ଶ୍ରୀ ଅନାଦି ପ୍ରଭୁଙ୍କ ଶ୍ରୀଚରଣେ ଶରଣ
ସୋମବଂଶ କୂଳରେ ଯେ ଅଟନ୍ତି ମଣ୍ଡନ ।
ଜାହ୍ନବୀ ସୁତ ନାୟକ ଭୀଷ୍ମ ଯେ କୁଳରେ
ଜାନୁଘଣ୍ଟ ହାରିଛନ୍ତି ତାହାକୁ ସମରେ ।
ଯଯାତିଦେବ ଦେଶର ସେ ରକ୍ଷାପାଳକ
ବିଚିତ୍ରବୀର୍ଯ୍ୟ ଅଟନ୍ତି ଯେ କୁଳନାୟକ ।
ଏହାଙ୍କ ନାତି ଅଟନ୍ତି କୁଳର ମଣ୍ଡନ
କୁମୁଦ ଦୈତ୍ୟର ସେହୁ ଘେନିଲେ ପରାଣ ।
କୈଳାସ ସ୍ୱର୍ଗକୁ ସେହୁ କଲେ ଉଦ୍ଧାରଣ
ପାଣ୍ଡବାସୁର ଦର୍ପ ଯେ କଲେକ ଧ୍ୱଂସନ ।
କାଶୀ ଭବନରେ ସେହୁ ରକ୍ଷଣ ପାଳକ
ଶିବପୁର ପ୍ରଜାଙ୍କର କଷ୍ଟ ଉଦ୍ଧାରକ ।
କୁରୁବଂଶରେ ଯାହାଙ୍କ ଯଶ ପରିଚାର
ଶତଧନୁ ଶରଣଟି ନେଲା ଯାହାଙ୍କର ।
କଉଶିକ ତୀର୍ଥରେ ଯେ ରକ୍ଷଣପାଳକ
କପଟ ବିଷଲଡ୍ଡୁକୁ ଯେ ବୀର ଭକ୍ଷକ ।
ନାଗବଳଙ୍କର ଯେହୁ ଗରବ ଗଞ୍ଜିତ
ବିନ୍ଧ୍ୟାବଳୀର ଅଟଇ ଯେହୁ ପ୍ରାଣନାଥ ।
ଶବର ପଲ୍ଲୀରେ ଯେହୁ ରକ୍ଷକ ପାଳକ
ଯେହୁ କପଟରେ ଯାଇ ମଗଧ କଟକ ।
ଜରାସନ୍ଧ ରାଜାକୁ ଯେ କଲେ ନିସୂଦନ
ଛୟାଣୋଇସସ୍ର ରାଜା ବନ୍ଦୀରୁ ମୋଚନ ।
ଇନ୍ଦ୍ରପ୍ରଶସ୍ତ ବାରୁଣା ହସ୍ତିନା ଜଇନ୍ତା
ଏହି ଚାରୋଟି ଗ୍ରାମର ଯେ ରକ୍ଷା କରତା
କୁଣ୍ଡଳ ଋଷିର ଯେହୁ ମାନ ଉଦ୍ଧାରଣ
ବାଳକାଳେ ଶତଶୃଙ୍ଗ ଯେହୁ କଲେ ଚୂର୍ଣ୍ଣ ।
ଦୋହରା ପ୍ରସଙ୍ଗେ ଯେହୁ ବାଳକ କାଳରେ
ମହାବଳବାନ ହେଲେ ଜାଣନ୍ତି ସଂସାରେ ।
ଚିତ୍ରାଙ୍ଗ ପର୍ବତକୁ ଯେ ମୁଥେ କଲେ ଚୂର୍ଣ୍ଣ
ଜତୁଘର ଭସ୍ମାନ୍ତକ ଯେହୁ ଭୀମସେନ ।
କୁମ୍ଭୀର ଦୈତ୍ୟକୁ ଜଳେ ନିଧନ ଯେ କଲେ
କିନ୍ନରୀକି ମଧୁବନେ ଯେ ବୀର ମାଇଲେ ।
ଏକଚକ୍ରା ନଗରରେ ଯେ ହୋଇଲା ରାଜନ
ବକାସୁରକୁ ଯେ ବୀର କରିଲେ ନିଧନ ।
ଅଶ୍ଳେଷାର ଦର୍ପକୁ ଯେ ଭଞ୍ଜନ କରିଛି
ଶିବପୁରକୁ ଯେ ବୀର ଉଦ୍ଧାରି ଧରିଛି ।
ଚାଣ୍ଡାଳବଳ ଧ୍ୱଂସିଲା ଯେଉଁ ବୀରବର
ହିଡ଼ିମ୍ବକ ଅସୁରକୁ ଯେ କରେ ସଂହାର ।
ହିଡ଼ିମ୍ବିକାର ଅଟନ୍ତି ଯେହୁ ପ୍ରାଣନାଥ
ପାଞ୍ଚାଳୀର ଯାହାଠାରେ ସଦା ତୁଷ୍ଟ ଚିତ୍ତ ।
ଲକ୍ଷେ ରାଜାଙ୍କ ଉପରେ ଯେ ମଉଡ଼ମଣି
ଯା ନାମେ ଭୟ କରଇ କାଳଦଣ୍ଡ ପାଣି ।
ଧୃତରାଷ୍ଟ୍ର ବଂଶର ଯେ ଅଟନ୍ତିଟି ସଲ
ଯୋଦ୍ଧାମାନଙ୍କ ଉପରେ ଯେହୁ ମହାମଲ୍ଲ ।
ଦ୍ରୋଣ କୃପା କର୍ଣ୍ଣ ଶଲ୍ୟ ଶକୁନି ଆବର
କୁରୁପତି ଆଦି ଯାର ନାମେ ଥରହର ।
ସୋମବଂଶ ଯାହା ଯୋଗେ ଅଭୟ ହୋଇଲା
କରୁଣାକର ଗନ୍ଧର୍ବେ ଯେହୁ ଉଦ୍ଧାରିଲା ।
ମାନଗୋବିନ୍ଦରେ ଯେହୁ ମାନମରଦନ
ଯାହାର ପ୍ରାକର୍ମ ଶତସିଂହର ସମାନ ।
ଶତ୍ରୁକୁ ଶରଣ ଯେହୁ ବୀର ନ ରଖଇ
ଦନ୍ତେ ତିରଣ ଧଇଲେ ମାରେ ଯେ ଗୋଡ଼ାଇ ।
ଯୋଗୀଜନମାନଙ୍କର ସେ ରକ୍ଷା ପାଳକ
ଦୁଷ୍ଟଗଣଙ୍କୁ ଯେ ବୀର କାଳ କୃତାନ୍ତକ ।
ରାଜାଧିରାଜାଙ୍କ ପରେ ଯେ ଅଟେ କେଶରୀ
ବୀରବର ବାନା ଭବେ ଉଡ଼ଇ ଯାହାରି ।
ସକଳେ ରାଜ୍ୟ କରନ୍ତି ଯାହାର ପ୍ରସାଦେ
ଯାକୁ ଜିଣି ନ ପାରନ୍ତି ଶତ୍ରୁଏ ବିବାଦେ ।

ବଳରାମଙ୍କର ଯେହୁ ଅଟନ୍ତିଟି ସଲ
ରାକ୍ଷସ ନିଧନେ ଯେହୁ ଅଟେ ରାହୁତୁଲ୍ୟ ।
ଗଦାଯୁଦ୍ଧରେ ଯେ ବୀର ଅଟନ୍ତି ନିପୁଣ
ତପୀ ଋଷିଏ ଯା ଗୁଣ କରନ୍ତି ବର୍ଣ୍ଣନ ।
ଅରଣ୍ୟରେ ତପୀଙ୍କର ଯେ ରକ୍ଷାପାଳକ
ରାକ୍ଷସବଳମାନଙ୍କୁ ଯେ ପ୍ରାଣକଣ୍ଟକ ।
କେଶରୀକି କ୍ରିପାରେ ଯେ ଅସ୍ତ୍ରଚାଳନ
କାଳକେତୁ ଦୈତ୍ୟଶିର ଯେ କରେ ଛେଦନ ।
କାଳାନ୍ତକ କାଳେବର ଧରେ ଗଦାବର
କାଳଦଣ୍ଡ ଦୀକ୍ଷାଗୁରୁ ଅଟେ ଯାହାଙ୍କର ।
ଯମ ସମାନ ଅଟଇ ଯେହୁ ବୀର ଭୀମ
କାଳ ବିକାଳ ଡରନ୍ତି ଶୁଣି ଯାର ନାମ ।
ଚିତ୍ରଗୁପ୍ତ ଅଟଇ ଯା ପାଦର ଆସନ
ଲୌହଦଣ୍ଡ ରଥ ଯାର ଅପୂର୍ବ ମଣ୍ଡନ ।
ଶାର୍ଦ୍ଦୂଳକେତନ ଚିହ୍ନ ଯା ରଥେ ଉଡ଼ଇ
ମୁକୁଟବନ୍ଧା ଯୋଦ୍ଧାଙ୍କ ମୁକୁଟ ଅଟଇ ।
ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ନୈର୍ଋତ
ବାୟବ୍ୟ ଈଶାନ ଅଗ୍ନିଦିଗ ନରନାଥ ।
ଚତୁର୍ଦ୍ଦିଗ ରାଜାଙ୍କର ଯେ ମଉଡ଼ମଣି
ବୀରାଧିବୀରମାନଙ୍କ ଯେ ବୀର ଅଗ୍ରଣୀ ।
ଯେହୁ ପାଣ୍ଡବ ସୁନ୍ଦର ନାମେ ଭୀମସେନ
ପଶ୍ଚିମରାଜା ବରଣେ କଲେ ଆଗମନ ।
ବହୁତ ରାଜାଙ୍କୁ ଜିଣି ନିମନ୍ତ୍ରଣ ଦେଇ
ମଘଦେଶ ମତ୍ସ୍ୟଦେଶ ତୋ ସୀମାରେ ରହି ।
ଦୂତ ହସ୍ତେ ପଠାଇଲେ ତା ମୁଖ ପ୍ରସାଦ
ସନ୍ତକ ଦେଇଛୁ ଜାଣ ଏହି ଗଦା ମୁଦ ।
ଏ ଲେଖା ପାଇଲା ମାତ୍ରେ ବିରାଟ ରାଜନ
ସୈନ୍ୟସହ ଯିବୁ ଘେନି ଦରଶନୀ ଧନ ।
ରାଜୁସି ଯାଗ ହୁଅଇ ଇନ୍ଦ୍ରପ୍ରସ୍ଥରେ
ପଢ଼ିଲା ମାତ୍ରେ ଚଳିବୁ ସେଠାକୁ ସତ୍ୱରେ ।
ମଣ୍ଡଳାଧିପତି ରାଷ୍ଟ୍ରପତି ବୀରବର
ବୃକୋଦର ସ୍ୱାମୀଙ୍କର ଏ ଆଜ୍ଞାପତର ।
ହେଳା ନ କରିବୁ ତୁହି ବିରାଟର ପତି
ଦୂତ ପଠାଇଣ ଅନ୍ୟ ରାଜ୍ୟେ ଗଲୁ ଇତି ।
ଶ୍ରୀମୁଖ ଲିଖନ କରି ଯତ୍ନେ ଧୂମାକ୍ଷତ
ତାହାକୁ ପଢ଼ନ୍ତେ ଶୁଣି ଭୀମ ତୁଷ୍ଟ ଚିତ୍ତ ।
କାଳିଞ୍ଜନ ଆଉ କାଳଧ୍ୱଂସନ ଡଗର
ଏ ବେନି ଦୂତଙ୍କୁ ଡାକି ବୀର ବୃକୋଦର ।
ତାହାକୁ ଶ୍ରୀମୁଖ ଦେଇ ବୋଇଲେ ଏସନ
ବିରାଟକୁ ଏହି ଲେଖା ଦେବରେ ବହନ ।
ଯେ ଆଜ୍ଞା କହିଣ ଦୂତେ ନମସ୍କାର କଲେ
ଶ୍ରୀମୁଖ ଘେନିଣ ତହୁଁ ଶିରେ ଲଗାଇଲେ ।
ଦେବ ବିମାନ ଆରୋହି ବେନି ସେନାପତି
ଶଏ ଚାର ସଙ୍ଗେ ଘେନି ଚଳିଲେ ୫ଟତି ।
ସେହି ବିମାନ ଗୋଟିକ ଅପୂର୍ବ ଗଠନ
ପବନ ଗତିରେ ଚଳେ ନାହିଁ ତା ସମାନ ।
ଜୟ ଜୟ ଜଗନ୍ନାଥ ଶ୍ରୀପୁରୁଷୋତ୍ତମ
ଜୟ ଜୟ ନାରାୟଣ ନବଘନ ଶ୍ୟାମ ।
ଆହେ ରାମ ମୋର ହୃଦେ ହୁଅ ଅଳଂକୃତ
ସର୍ବ ମଙ୍ଗଳା ଚରଣେ ସଦା ମୁଁ ଆଶ୍ରିତ ।
ମନକର୍ଣ୍ଣ ଦେଇ ଶୁଣ ହେ ବିଜ୍ଞ ପଣ୍ଡିତ
ମୁଁ ଶୁଦ୍ରମୁନି ଶାରଳା ଚଣ୍ଡୀଙ୍କର ସୁତ ।
ଶ୍ରୀଶାରଳା ଚଣ୍ଡୀଙ୍କୁ ମୁଁ ସୁମରଣା କରି
ଲେଖଇ ଏ ସଭାପର୍ବ ଭାରତେ ବିଚାରି ।



## ମଦନସେନ ରାଜାଙ୍କୁ ନିମନ୍ତ୍ରଣ, କନ୍ଦର୍ପସେନ ସହିତ ଯୁଦ୍ଧ ଓ ତାହାର ମୃତ୍ୟୁ

ଏଥୁ ଅନନ୍ତରେ ଶୁଣ ବିଲଙ୍କ ରାଜନ
ଅଗସ୍ତି ମୁନିଙ୍କ ପାଦ କରିଣ ବନ୍ଦନ ।
ବୋଇଲେକ ଭୀମସେନ ଲେଖଲେଖାଇଲେ
ଦୂତଙ୍କ ହସ୍ତରେ ଦେଇ ତାଙ୍କୁ ପଠାଇଲେ ।
ତଦପରେ କେଉଁଆଡ଼େ ଗଲେ ବୃକୋଦର
ସେ କଥା ବିସ୍ତାର କରି କହ ମୁନିବର ।
ରାଜାଙ୍କ ବଚନ ଶୁଣି କହନ୍ତି ଅଗସ୍ତି
ଏକମନେ ଶୁଣ ତୁହୋ ମନୁ ନରପତି ।
ଦୂତଙ୍କୁ ବିରାଟେ ପେଷି ଚଳିଲେ ପାବନୀ
ସୁରାମଣ୍ଡଳରେ ଯାଇ ବିଜେ ସୈନ୍ୟ ଘେନି ।
ପଶ୍ଚିମରେ ସୋମରାଷ୍ଟ୍ର ଗହନ ଯେ ଦେଶ
ତହିଁ ମଧେ ଭୀମସେନ ହେଲେ ପରବେଶ ।
ଶର ଗୁଣା ଅଧାଟି ଯେ ମହୁରୀ ବାଜଇ
ବାଦ୍ୟ ଗହଳରେ ପୃଥ୍ୱୀ ଉଛୁଳି ପଡ଼ଇ ।
କୁତୂହଳେ ସେ ରାଜ୍ୟକୁ ଯାନ୍ତି ଭୀମସେନ
ଛାମୁରେ ନୃତ୍ୟ କରନ୍ତି ଅପସରୀ ଗଣ ।
ମଦନିକା କାମସେଣା ମେନକା ମେଦିନୀ
ଆଗୁଁ ଯାଙ୍କୁ ପଠାଇଣ ଦେଲେ ସସ୍ତ୍ରଯୋନି ।
ପଞ୍ଚମସ୍ୱରରେ ବୀଣା ବାଜେ ନିନାଦିତ
ଅପସରୀଏ ନାଚନ୍ତି ହୋଇ ଆନନ୍ଦିତ ।
ଦେଖି ଶୁଣି ରାଜା ଆଗେ କହେ ଦେଶାଉର
ଅବଧାନ କର ଦେବ ମଦନ ଠାକୁର ।

ଜରାକୁ ମାରି ଯେ କଲେ ରାଜାଙ୍କୁ ମୋଚନ
ଆସନ୍ତି ସେହି ରାଜାଙ୍କୁ କରି ନିମନ୍ତ୍ରଣ ।
ଏହିକ୍ଷଣି ପଶିଲେ ଦେବ ଆମ୍ଭର ରାଜ୍ୟରେ
ଦେଖି ଆସି ଜଣାଇଲି ତୁମ୍ଭର ଛାମୁରେ ।
ବରନ୍ତି ରାଜା ରାଜୁସିୟାଗର ନିମନ୍ତେ
ଦୁଷ୍ଟନିସୂଦନ ଦଣ୍ଡ ଧରିଛନ୍ତି ହସ୍ତେ ।
ରାଜ୍ୟରେ ପ୍ରବେଶ ଆସି ହେଲେଣି ଏକ୍ଷଣି
କି ଉପାୟ କରିବ ହେ ମଦନ ନୃମଣି ।
ଚାରମୁଖୁଁ ଏହାଶୁଣି ସୋମରାଷ୍ଟ୍ର ଦେବ
ବୋଇଲା ମୋ ପୁରେ ବେଗେ କରାଅ ଉତ୍ସବ
ରାଜାର ଆଜ୍ଞାରେ ତହିଁ ଗଲେ ଚାରଗଣ
ରାଜ୍ୟେ ଉତ୍ସବ କରିଲେ ପୁରକୁ ମଣ୍ଡିଣ ।
ପୂର୍ଣ୍ଣକଳସ ପତାକା ନେତ ଉଡ଼ାଇଲେ
ଅଷ୍ଟରତନରେ ରାଜଭବନ ଖଞ୍ଜିଲେ ।
ସେହି ରାଜ୍ୟରେ ପ୍ରବେଶ ହୋଇଲେ ମାରୁତି
ଆସ୍ଥାନ ତେଜି ଅଇଲା ମଦନ ନୃପତି ।
ଦ୍ରୁପଦ ଶ୍ୱଶୁର ସେହି ଧୃଷ୍ଟଦ୍ୟୁମ୍ନ ଅଜା
ପାତ୍ର ଅମାନାତ୍ୟ ଘେନି ଅଇଲା ସେ ରାଜା ।
ବେନିଭୁଜେ ରାଜା ବେଗେ ଚାମରକୁ ଘେନି
ଭୀମସେନ ପାଶେ ଯାଇ କରଇ ଦଇନି ।
ଜୟ ଜୟ ବୃକୋଦର ପବନଦୁଲାଳ
ଜରାନିସୂଦନକାରୀ ଭକ୍ଷକ ଗରଳ ।
ମହାପାତକ ଧ୍ୱଂସିଲି ତୁମ୍ଭର ଦର୍ଶନେ
ମୋହର ରାଜ୍ୟ ପବିତ୍ର ହେଲା ଏତେ ଦିନେ
ଏରୂପେ ମଦନଦେବ ବହୁ ସ୍ତୁତି କଲା
ନିଉଛାଳି ହୋଇ ଭୀମ ଚରଣେ ଶୁତିଲା ।
ଭୀମ ଆଜ୍ଞା ଦେଲେ ଉଠ ହେ ମଦନ ଦେବ
କୁଶଳେ ତୋ ଜନପ୍ରଜା ଅଛନ୍ତି ନା ସର୍ବ ।
ମଦନ ଦେବ ନୃପତି ବୋଲେ ଯୋଡ଼ି ପାଣି
ତୁମ୍ଭ ପ୍ରସାଦେ ଅବିଘ୍ନେ ଛନ୍ତି ପ୍ରଜାଶ୍ରେଣୀ ।
ପର୍ଶୁରାମ ଆଜ୍ଞା ଯେହ୍ନେ ମେଣ୍ଟଣ ନ ଯାଇ
ଏ ପଶ୍ଚିମଦିଗ ତେହ୍ନେ ରହିଛି ଗୋସାଇଁ
ତହୁଁ ତା ନଗ୍ରକୁ ବିଜେ କରିଲେ ପାବନି
ଶତସସ୍ର ପ୍ରଣିପାତ ହେଲେ ରାଜସେନି ।
ବହୁ ବିନୟେ ଖଟିଲେ ଭୀମପାଦେ ଥୋକେ
ଥୋକେ ଠିଆହେଲେ କରି ଦଶନଖ ମୁଖେ ।
ଅଳକାନାଥ କି ବିଜେ କରିଛନ୍ତି ଭୂମି
ସେ ରୂପେ ଶୋଭା ପାଆନ୍ତି ବୃକୋଦର ସ୍ୱାମୀ
କୁଶଳ ପୁଛନ୍ତି ତାଙ୍କୁ ସେ ମଦନ ଦେବ
ଶୁଣି ଭୀମ ବୋଇଲେ ମୋ କୁଶଳଟି ସର୍ବ ।

ଦ୍ୱିତୀ ବାସୁଦେବ ସମ ଦେଖିଲଇଁ ଡୋଳେ
ଅନାଦି ଶିବ ବିଜେ ମୋ ସୌରାଷ୍ଟ୍ର ମଣ୍ଡଳେ
ଆଜ ସୁଫଳ ହୋଇଲା ମୋହର ଜୀବନ
ଜାଣିଲି ମୋତେ ତ ସାହାଛନ୍ତି ଭୀମସେନ ।
ତହୁଁ ରାଜା ଆଜ୍ଞା ଦେଲେ ସୂପକାର ରାଇ
ମଡ଼ଫୁଲି ରାନ୍ଧଣାଟି ବେଗ କର ଯାଇ ।
ଅନେକ ଯୋଗାଡ଼ ରାଜା କଲା ସମ୍ଭର୍ବରେ
ଆହ୍ନିକ ସାରିଣ ଭୀମ ବିଜେ ମଣୋହିରେ ।
ଭୋଜନରେ ଅତୃପତି ଯାହାର ମନୀଷା
ତ୍ରୈଲୋକ୍ୟ ମଧରେ କେ ତା ପୂରାଇବ ଆଶା
ଭୋଜନାନ୍ତେ ଆଚମନ କଲେ ବୀରମଣି
ତାମ୍ବୁଳ ଯୋଗାଡ଼ଦେଲା ସେ ନୃପତି ଆଣି ।
ଶତପୁତ୍ର ସଙ୍ଗେ ଘେନି ସେ ମଦନଦେବ
ଆଲଟ ଚାମର ଘେନି ଖଟିଲେ ସେ ସର୍ବ ।
ତାକୁ ଶାଢ଼ୀଦେଇ ବୋଲେ କାଳେବର ହସ୍ତା
ନ ଜାଣ କି ରାଜସୂୟ ଯାଗର ବାରତା ।
ଏବେ ଶୁଣ ତୋର ଛନ୍ତି ଯେତେ ଅଶ୍ୱସୈନି
ଏ କ୍ଷଣି ଚଳ ତୁ ଘେନି ଦେଖା ଦରଶନୀ ।
ଆଜ୍ଞା ପରମାଣେ ସେହି ମଦନ ଭୂଦେବ
ପଞ୍ଚାଶ ରଥେ ପୂରାଏ ଆଣି ପାଣିଦ୍ରବ୍ୟ ।
ଚୋଖାର ତୁରଙ୍ଗ ବାୟୁତୁଲ୍ୟ ଯେଉଁ ବାଜି
ରଥ ଗଜ ସୈନ୍ୟ ରାଜା ସମ୍ଭର୍ବରେ ସାଜି ।
ଭୀମ ସାକ୍ଷାତେ ମଦନ ସାଜି ସୈନ୍ୟବଳ
ଐଶାନ୍ୟ ମୂର୍ତ୍ତିରେ ତହୁଁ କରି ଅନୁକୂଳ ।
ସଉରାଷ୍ଟ୍ର ଦେଶ ତେଜି ଗଲେ ବାତସୁତ
କଉଶିକ ଦେଶେ ଯାଇ ହେଲେ ଉପସ୍ଥିତ ।
ବିଜୟ ନଦୀର ତୀରେ କୌଶିକନଗର
କନ୍ଦର୍ପସେନ ନୃପତି ମାଧବ କୁମର ।
ଦଶମର୍ଭୁତ ରଥ ତା ଅଶୀଲକ୍ଷ ହସ୍ତୀ
ବିଶାଶତେ ଖର୍ବ ଅଶ୍ୱ ଦ୍ୱିକୋଟି ପଦାତି ।
ବେନିଶତ ପାରିଦଣ୍ଡ ନୃପକୁ ଖଟନ୍ତି
ବେନିଶତ ସେ ଜନର ଅଟେ ଅଧିପତି ।
ଭୀମସେନ ବିଜେ କଲେ ଯାଇ ସେହି ରାଜ୍ୟେ
ଢୋଲ ଦମା ଟମକ ଯେ ବୀରତୂର ବାଜେ ।
ବୁଲୁଥିଲେ ରାଉତ ଯେ ତୁରଙ୍ଗମ ଚଢ଼ି
ମହା ଗହଳ ଶବଦ ଶୁଣି ସିଂହରଡ଼ି ।
ଧାମନ୍ତି ଯୋଦ୍ଧାଏ ରୋଷେ ମହାମହା ମଲ୍ଲ
ତାଙ୍କ ପାଦଭରେ ହୁଏ ପୃଥ୍ୱୀଦଲ ଦଲ ।
କୌଶିକ ପର୍ବତେ ରାଜ ପରିଦଣ୍ଡ ହେଲେ
କାବେରୀ ନଦୀର କୂଳେ ଭୀମକୁ ଭେଟିଲେ

ରହ ରହ ବୋଲିକରି ଉଗାଳିଲେ ଥାଟ
ଗଜକୁ ଆଗରେ ରଖି ଆବୋରିଲେ ବାଟ ।
ପୁଚ୍ଛାକଲେ ନାମ କିସ କେଉଁ ଦେଶବାସୀ
କେବଣ କାରଣେ ଆମ୍ଭ ରାଜ୍ୟେ ପଶୁ ଆସି
ନ ଜାଣୁ କିରେ କନ୍ଦର୍ପ ରାଜା ଅଛି ବୋଲି
ଯମ ଉଗାଳିଲେ ପଶି ପାରୁ କିରେ ପେଲି ।
ପ୍ରତିଜ୍ଞା ସାମରଥି ଏ ପଶ୍ଚିମ ନରେଶ
ଯୋଦ୍ଧା ସଜକରି ଗଲା କନାଉଜ ଦେଶ ।
ଭାଙ୍ଗି ଚୂରକଲା ଏହୁ ଆନୁଆନ ଗିରି
ଯୁଦ୍ଧେ ଅଙ୍ଗାରପନ୍ନଗ ଯାରେ ଗଲା ହାରି ।
ଜରାସନ୍ଧ ରାଜା ଯାକୁ ନ ପାରିଲା ସାଧି
ତାହାର ଛାମୁରେ କିସ ଦେଖାଅ ହେ ଯୋଦ୍ଧୀ
ଲୋହଧନୁ ଧରେ ଦୁଇବିଂଶସସ୍ର ଦଳ
ନାରାଚ ବିନ୍ଧନ୍ତେ ଯେହୁ ଫିଟାଏ ଅବଳ ।
ସୁଶୋଭାରେ ଯେଉଁଜନ କାମକୁ ନିନ୍ଦଇ
ଅପସରା ବଶ ହୋଇ ଯାର ରୂପ ଚାହିଁ ।
ଯେବେ ରାଜ୍ୟକୁ ଆସିଛ ତୁମ୍ଭେ ବନ୍ଧୁପଣେ
ତେବେ ଏଥେ ଥାଅ ଆମ୍ଭେ ଜଣାଉ ଏକ୍ଷଣେ
ଶତ୍ରୁଭାବେ ପଶୁଥିବୁ ଆହେ ରାଜା ଯେବେ
ପାଞ୍ଜିରୁ ତୋ ନାମ ଯମ ପୋଛିଲାଣି ତେବେ ।
ଅନେକ ପ୍ରତିଜ୍ଞା ଯହୁଁ କଲେ ପୁଣ ପୁଣ
ପର ପ୍ରତିଜ୍ଞା ଶୁଣି କି ସହେ ଭୀମରାଣ ।
ସୈନ୍ୟବଳମାନେ ତାର ଆସୁଛନ୍ତି ମାଡ଼ି
ଧାଇଁଲେ ମାରୁତି ମନୁ ଉପରୋଧ ଛାଡ଼ି ।
ମୁଦ୍‌ଗର ବୁଲାଇ ଭୀମ କଲେକ ସମର
ନିର୍ଘାତ ପିଟନ୍ତେ ବହୁସୈନ୍ୟ ହେଲେ ଚୂର ।
ଏକ ପ୍ରହାରେ ପଡ଼ିଲେ ବହୁଗଜ ଯୋଧୀ
ଭୀମ ସଇନି ଆକ୍ରୋଶେ ପୁଣି ଶର ବିନ୍ଧି ।
ଯୋଦ୍ଧା ଗଜ ହୟ ସର୍ବେ ପଡ଼ିଲେ ଘୁମାଇ
ଆବର ପଦାତି ମରି ଗଦା ହେଲେ ତହିଁ ।
ନିଶେ ହସ୍ତ ଦେଇ ଭୀମ ପ୍ରତିଜ୍ଞାରେ ଗର୍ଜି
ରାଜା ପାରିଦଣ୍ଡମାନେ ପଳାଇଲେ ଭାଜି ।
ରାଜମନ୍ତ୍ରୀ ଯେ ସକଳ ଦଣ୍ଡଭଗ୍ନ ଦେଖି
ତିନିଲକ୍ଷ ଯୋଦ୍ଧା ଘେନି ଅଇଲା ତହିଁକି ।
ନାରାଚ ବିନ୍ଧିଲେ ଆସି ସକଳ ସଇନି
ଆଦିତ୍ୟ କିରଣ ଲୁଚି ହୋଇଲା ରଜନୀ ।
ସାଞ୍ଜୁ ଟୋପର ତାଡ଼େଣି ପାଗ ବଜ୍ରସେହ୍ନା
ପରିଡ଼ା ନାୟକ ମହାମଲ୍ଲ ବଡ଼ଜେନା ।
ସୁବର୍ଣ୍ଣର ବନ୍ଧା କୁନ୍ତ ଅଷ୍ଟରତ୍ନେ ଖଞ୍ଜା
ଆକାଶରେ ଶୋଭା ପାଏ ଯେସନେକ ଲାଞ୍ଜା
ଅନୁବ୍ରତେ ନିଜ ଥାଟ ତେହ୍ନେ ସାଜିଥାଏ
ସଂଗ୍ରାମେ ବଡ଼ ଶକତା ସେ କନ୍ଦର୍ପ ରାୟେ ।
ସଦା ସେ କନ୍ଦର୍ପସେନ ଜିଣେ ପରରାଷ୍ଟ୍ର
ଖରାବର୍ଷା ସବୁଦିନେ ସାଜିଥାଏ ଥାଟ ।
ଯୁଦ୍ଧରେ ତେଣେ ଅନେକ ପଡ଼ିଲେଣି ସୈନ୍ୟ
ତଥାପି ନ କହେ ମନ୍ତ୍ରୀ ଯୁଦ୍ଧ ବିବରଣ ।
ବଡ଼ ଗୁରୁହଂସୀ ରାଜା ସେ କନ୍ଦର୍ପସେନ
ଶୂରବନ୍ତ ପଣ୍ଡିତ ସେ ସଭାରେ ନିପୁଣ ।
ରଣେ ତା ସୈନ୍ୟ ପହଣ୍ଡେ ମାତ୍ର ନ ଘୁଞ୍ଚନ୍ତି
ଭୀମସେନ ଗଦାଘାତେ ବହୁ ପଡୁଛନ୍ତି ।
ଯେଉଁ ଭୀମ ସମରରେ ଅଟଇ ନିର୍ଭୟ
ଶରଣ ନ ରଖଇ ସେ ଦୁର୍ଭାର ନିର୍ଦ୍ଦୟ ।
ପଳାନ୍ତି ସଇନି ଯଥା ବାସଭଗ୍ନ ପକ୍ଷୀ
ବୃକୋଦର ମୂର୍ତ୍ତି ତାର କେ ରହିବ ଦେଖି ।
ଶତଶୃଙ୍ଗ ପ୍ରସନ୍ନେ ଯା ବଜ୍ର ଅଟେ ଅଙ୍ଗ
ସମରେ ଅନିର୍ବାର ସେ ରଣେ ନୁହେ ଭଙ୍ଗ ।
ଯେସନେକ ମତ୍ତଗଜ ଧାମଇ ମୁକୁଳା
ଥାଟ ମନ୍ଥନ କରଇ ତେହ୍ନେ ବାତବଳା ।
ରମ୍ଭାବନ ଯେହ୍ନେ ଭାଙ୍ଗେ ପ୍ରଚଣ୍ଡ ପବନ
କନ୍ଦର୍ପସେନ ସୈନ୍ୟଙ୍କୁ ତେହ୍ନେ ଭୀମସେନ ।
ପଡ଼ିଲେକ ରଥ ଗଜ ଅଶ୍ୱ କୋଟି କୋଟି
ରକତ ମାଂସେ କର୍ଦ୍ଦମ ହୋଇଲା ଧରାଟି ।
ସତୁରି ମର୍ଭୁତ ରଥୀ ସାତଲକ୍ଷ ହସ୍ତୀ
ପାଞ୍ଚକୋଟି ଅଶ୍ୱ ଚୌଦକୋଟି ଯେ ପଦାତି ।
ଏତେକ ସୈନ୍ୟ ପଡ଼ିଲେ ପିଟୁଁ ବାତସୁତ
ତଥାପି କୋପ ତାହାର ନୋହିଲାକ ଶାନ୍ତ ।
ଯୋଦ୍ଧାମାନେ ପଳାଇଲେ ସମର ଉପେକ୍ଷି
ବିଶ୍ରାମ ନ ନେଇ ଗଲେ ରାଜାର କତିକି ।
ବୋଇଲେ ଶୁଣ କନ୍ଦର୍ପସେନ ଚକ୍ରବର୍ତ୍ତୀ
ସମଦଣ୍ଡ ସୈନ୍ୟ ତୋର ହେଲେ ବିନଶ୍ୟତି ।
ବଡ଼ଇ ପ୍ରତାପୀ ରଥୀ ଆସି ଅଦଭୁତେ
ମାଇଲାଣି ବହୁସୈନ୍ୟ ତୋର ଅପ୍ରମିତେ ।
ଶୁଣିକୋପାନଳ ହେଲା ସେ କନ୍ଦର୍ପଦେବ
ରେ ରେ ବୋଲି ଉଠିଲା ସେ କରି ମତ୍ତଗର୍ବ
କୁଠାର ଆୟୁଧ ଘେନି ସେ କନ୍ଦର୍ପରାୟ
ଚଢ଼ିଲା ବେଗେ ଅଶ୍ୱେକ ଉଚ୍ଚୈଃଶ୍ରବା ପ୍ରାୟ ।
ବାମ ଡାହାଣେ ଚାଲନ୍ତି ପାଞ୍ଚଖର୍ବ ରଥୀ
ବିଦ୍ୟାଧର ପରାୟେକ ସେ ଶୋଭା ପାଆନ୍ତି ।
ଶିରେ ମୁକୁଟ ଝଟକେ କରେ ଅସିବର
ଡାକନ୍ତି ହାକନ୍ତି ଶବ୍ଦ କରି ରେରେକାର ।

ଦୂରୁଁ ଦେଖି ତାକୁ ଭୀମ ହୋଇ ମହାରାଗ
ରଥ ଉପରୁ ତଳକୁ ଡେଇଁଲେ ସେ ବେଗ ।
ଧାମନ୍ତେ ବୁଲାଇ କାଳଚକ୍ର ପ୍ରାୟେ ଆଖି
ପଳାନ୍ତି ସଞ୍ଚାଣେ ଦେଖି ଯେହ୍ନେ କ୍ଷୁଦ୍ରପକ୍ଷୀ ।
ତେହ୍ନେ ପଳାନ୍ତି ମାରୁତି ପଛରୁ ମାଇଲେ
ଏପରି ଅନେକ ସୈନ୍ୟ ତହିଁ ନାଶ ଗଲେ ।
ଗଦାଘାତେ ଗଜକୁମ୍ଭ ଧୂଳି ହୋଇଗଲା
ବର୍ଣ୍ଣାନିକ ରାଜା ସେନାପତି ଯା ଦେଖିଲା ।
ପାଞ୍ଚ ଅଇବ୍ରତ ହସ୍ତୀ ଘେନି ଆଗେ ଥିଲା
ଗଦାଘାତେ ହସ୍ତୀସହ ସେହି ନାଶ ଗଲା ।
ଏହିରୂପେ ରଣରଙ୍ଗେ ଭୀମ ମହାମନା
ଗଦା ପ୍ରହାରେ ଅସଂଖ୍ୟ କରି ଦେଲେ ଚୂନା ।
ଅସ୍ଥି ମାଂସ କିଛି ତହିଁ ନ ରହେ ପ୍ରହାରେ
ଯା ଦେଖି କନ୍ଦର୍ପସେନ ଧାଏଁ କୋପଭରେ ।
ରାଜା ଉଠନ୍ତେ ଉଠିଲେ ସଙ୍ଗେ ସର୍ବଯୋଧି
ଗୁଣ ଟାଣି ଅନିର୍ବାର ଶରମାନ ବିନ୍ଧି ।
ସଂଗ୍ରାମ ଦେଖିଲେ ଯେହୁ ହୁଅଇ ଉଷତ
ସେହୁ ଏ ସଂଗ୍ରାମ ଦେଖି ହୋଇ ଆନନ୍ଦିତ ।
ରଢ଼ି ଛାଡ଼ି ବୁଲାଇଣ କୋପେ କାଳଦଣ୍ଡ
କନ୍ଦର୍ପ ପରେ ପିଟିଲା ହୋଇ ପରଚଣ୍ଡ ।
ଭୀମ ଗଦାଘାତେ ତାର ଚୂର ହେଲା ରଥ
ଧାଇଁଲା ପାଦଗତିରେ ସେ କନ୍ଦର୍ପନାଥ ।
ଭେଟାଭେଟି ହୋଇ ଦୁହେଁ ଉଚ୍ଚବାଚ ହେଲେ
ବେନି ମତ୍ତସିଂହ କିଏ କେଣେ ନ ଘୁଞ୍ଚିଲେ ।
ଦୁହେଁ ଆୟୁଧ ବୁଲାଇ ଆରମ୍ଭିଲେ ଯୁଦ୍ଧ
ଭୀମକୁ କନ୍ଦର୍ପ ବିନ୍ଧେ କୁଠାର ଆୟୁଧ ।
ବାମଅଙ୍ଗ ପାତିଲାକ ପାଣ୍ଡବ ସୁନ୍ଦର
ଅଙ୍ଗେ ପଡ଼ି ଚୂର୍ଣ୍ଣ ହେଲା ସେ ବଜ୍ର କୁଠାର ।
ଆୟୁଧ ଭାଙ୍ଗି କନ୍ଦର୍ପ ହେଲା ଶୂନ୍ୟହସ୍ତ
ତେବେହେଁ ସେ ଯୁଦ୍ଧ ତେଜି ନ ହୁଏ ନିରସ୍ତ ।
ଆକର୍ଷି ଭୀମସେନର ଧରେ ବେନି ଭୁଜ
ମୁଥେକ ମାଇଲେ ତାକୁ ପବନ ଆତ୍ମଜ ।
ଭୀମସେନ ମୁଥ ବାଜି ତାହାର ଶିରରେ
ମୂର୍ଚ୍ଛାଗତ ହୋଇ ରାଜା ପଡ଼ିଲା ଭୂମିରେ ।
ରାଗେ ଭୀମ ଗଦାବର ପ୍ରହାରିଲା ତୋଳି
କନ୍ଦର୍ପ ରାଜାର ଅସ୍ଥିମାଂସ ହେଲା ଧୂଳି ।
ରାଜା ପଡ଼ନ୍ତେ ପଳାଇ ଗଲେ ପାରିଦଣ୍ଡ
ତାର ବେନିପୁତ୍ର ଥିଲେ ଚଣ୍ଡ ଯେ ପ୍ରଚଣ୍ଡ ।
ସେ ଦୁହେଁ ଧାଇଁଲେ ବେନି ମାତଙ୍ଗ ଆରୋହି
ଭୀମସେନ ପରେ ଶସ୍ତ୍ର ବିନ୍ଧିଲେକ ଯାଇଁ ।
ବିନ୍ଧନ୍ତେ ଲୌହ ନାରାଚ ତୀକ୍ଷ୍ଣ ତୀକ୍ଷ୍ଣ ମୁନା
ଦେଖିଣ ଗର୍ଜି ଧାଇଁଲେ ଭୀମ ମହାମନା ।
ଗଦା ବୁଲାଇ ପିଟନ୍ତେ ହସ୍ତୀ କୁମ୍ଭସ୍ଥଳେ
ସେ ଘାତେ ପଡ଼ିଲେ ବେନି ଗଜ ଏକାବେଳେ
ଅତି କୋପାନଳ ହୋଇ ମାରୁତି ଧାଇଁଲା
ବେନି କୁମରଙ୍କ କେଶ ସବଳେ ଧଇଲା ।
ତୋଳି କଚାଡ଼ି ଇଚ୍ଛନ୍ତେ ବେନି କୁମରଙ୍କୁ
ମରୁତ ସାରଥି ଧରେ ସେ ଭୀମସେନକୁ ।
ବୋଲେ କୋପ ଶାନ୍ତି କର ପାଣ୍ଡବ ସୁନ୍ଦର
ଏହାଙ୍କୁ ନ ନାଶ ଏହୁ ବାଳୁତ କୁମର ।
ଏହାଙ୍କ ପିତାଙ୍କୁ ତୁହି ନାଶ କଲୁ ଯୁଦ୍ଧେ
ଏହାକୁ ରାଜା କରିବା ଏହି ରାଷ୍ଟ୍ର ମଧ୍ୟେ ।
ସାରଥି ବାକ୍ୟେ ଛାଡ଼ିଲେ ଭୀମ ତାଙ୍କ ବାଳ
ମୁକ୍ତ ହୋଇ ଲୋଟିଲେ ସେ ଭୀମ ପାଦତଳ ।
ଗଳାରେ କୁଠାର ଦେଇ କରନ୍ତି ଦଇନି
ସ୍ୱାମୀ ଶରଣରକ୍ଷଣ ପାଣ୍ଡବ ପାବନି ।
ତୁହି ଦୁଃଖୀଜନନାଥ ଶରଣ ରଖନ୍ତା
ତୁହି ସେ ପ୍ରସନ୍ନ ଦେବ ଅଟୁ ବରଦାତା ।
ନ ଜାଣି ମୋ ପିତା କଲା ଦୁଷ୍ଟ ଆଚରଣ
ଜଗଦ୍‌ବନ୍ଦନ ସ୍ୱାମୀଙ୍କ ଚିନ୍ତେ ଦ୍ରୋହପଣ ।
ଆପଣାର କଲା କର୍ମେ ଆପେ ଗଲା ନାଶ
ପ୍ରତ୍ୟକ୍ଷେ ନାରାୟଣ ତୁ ମୋତେ ହେଉ ଦୃଶ୍ୟ
ଅକାରଣ କାରଣ ତୁ ଦୁଃଖୀଜନ ତାତ
ଆମ୍ଭେ ଅଜ୍ଞାନୀ ବାଳକ ଅଟୁ ତୋର ସୁତ ।
ଏପରି ସ୍ତୁତି କରିଣ କନ୍ଦର୍ପ କୁମର
ଦୁହେଁ ନେତ୍ରୁ ବୁହାଇଲେ ଅଶ୍ରୁ ଝରଝର ।
ଦୁହିଁଙ୍କ ବିନୟ ଦେଖି ସଦୟ ପାବନି
କୋଳେ ବସାଇ କନ୍ଦର୍ପସେନ ପୁତ୍ର ବେନି ।
ବୋଲେ ଶୋକ ଛାଡ଼ ବାବୁ ମଲାଣି ତ ପିତା
ମୁହିଁ ଏବେ ତୋହର ଯେ ରକ୍ଷଣ କରତା ।
ଏ ରାଜ୍ୟରେ ରାଜା ମୁହିଁ କରିବି ତୁମ୍ଭଙ୍କୁ
ସର୍ବରାଜା ସେବୁଥିବେ ତୁମ୍ଭର ପାଦକୁ ।
ଯା କହି ମଣି ମୁକୁଟ ତାଡ ଜଗଦ୍‌ବଳା
ବାହୁଟି ପିନ୍ଧାଇ କଣ୍ଠେ ଦେଲେ ରତ୍ନମାଳା ।
ପାତ୍ର ଅମାତ୍ୟ ସବୁଙ୍କୁ ପାଶକୁ ହକାରି
ତାଙ୍କ ଶିରେ ବାନ୍ଧିଲେକ ଶାଢ଼ୀ କରେ ଧରି ।
ବୋଲେ ଯେହ୍ନେ ଖଟିଥିଲ କନ୍ଦର୍ପ ନୃପକୁ
ତେହ୍ନେ ଭକ୍ତି କରିବ ଏ ଚଣ୍ଡ ପ୍ରଚଣ୍ଡକୁ ।
ଯେ ଅମାନ୍ୟ କରି ମନେ ଧରିବ ବିକୃତ
ଶିଶୁଙ୍କାନେ ଯାଙ୍କଠାରେ ହେବ ଅଭକତ ।

ନିଶ୍ଚୟ ତାଙ୍କୁ ବଧିବି ଏ କଥା ମୋ ସତ୍ୟ
ପିତା ପ୍ରେତକାର୍ଯ୍ୟ ସାରି ଯାଅ ଇନ୍ଦ୍ରପ୍ରସ୍ଥ ।
ଏରୂପେ ତିଆରି ଭୀମ ପାତ୍ର ଅମାତ୍ୟେ
ଚଣ୍ଡକୁ ରାଜା କରିଣ ଶାଢ଼ୀ ଦେଲେ ମାଥେ ।
ବୋଇଲେ ଦର୍ଶନୀ ଧନପାତ୍ର ସୈନ୍ୟସହ
ବିଳମ୍ବ ନ କରି ଯିବ ମନେ ରଖିଥାଅ ।
ସେହି ଚଣ୍ଡ ନୃପତିକୁ କରି ନିମନ୍ତ୍ରଣ
ତହୁଁ ଦଣ୍ଡ ଘେନିଗଲେ ବୀର ଭୀମସେନ ।
ଜୟ ଜୟ ମହେଶ୍ୱର କପିଳାସ ନାଥ
ମସ୍ତକରେ ଗଙ୍ଗାଦେବୀ ପନ୍ନଗ ଭୂଷିତ ।
ପଞ୍ଚ ବଦନେ ପନ୍ଦର ନେତ୍ର ଶୋଭା ପାଏ
ସର୍ବଦା ଡମ୍ବରୁ ତୁମ୍ଭ କରେ ବାଜୁଥାଏ ।
ବୃଷଭ ବାହନେ ଚଢ଼ି ଭ୍ରମ ତିନିପୁର
ଭକତଜନଙ୍କ ବାଞ୍ଛା ପୂର୍ଣ୍ଣେ ଦିଅ ବର ।
ଏଣୁ ମୁଁ ତୁମ୍ଭ ପାଦରେ କରଇ ଜଣାଣ
ଏ ସଭାପର୍ବ ଲେଖଇ ଦିଅ ଦିବ୍ୟଜ୍ଞାନ ।
ଉମାବଲ୍ଲଭଙ୍କ ପାଦେ ସଦା କରି ଆଶ
ଭାରତ ପଦ ଯୋଡ଼ଇ ଶ୍ରୀଶାରଳା ଦାସ ।



## ଭୀମଙ୍କର ସୁଜାଣେଶ୍ୱର ରାଜାଙ୍କୁ ନିମନ୍ତ୍ରଣ ଓ ଅଶ୍ୱିନୀକୁମାରଙ୍କ ଜନ୍ମ

ଏଥୁଅନ୍ତେ ବୈବସ୍ୱତ ମନୁ ନରପତି
ଅଗସ୍ତି ମୁନିଙ୍କ ପାଦେ ହୋଇଲେ ପ୍ରଣତି ।
ପଚାରିଲେ ଏ ଉତ୍ତାରୁ କିସ କଲେ ଭୀମ
ବିସ୍ତାରି କହନ୍ତୁ ତାହା ହେ ମୁନି ଉତ୍ତମ ।
ମୁନିବର ବୋଇଲେକ ଶୁଣ ହେ ରାଜନ
ଚଣ୍ଡରାଜାଙ୍କୁ ନିମନ୍ତ୍ରି ପବନ ନନ୍ଦନ ।
ଡାହାଳ ଦେଶେ ପ୍ରବେଶ ହୋଇଲେ ମାରୁତି
ସେ ରାଜ୍ୟେ ରାଜା ସୁଜାଣେଶ୍ୱର ଚକ୍ରବର୍ତ୍ତୀ ।
ଜାହ୍ନବୀ ନାମରେ ତହିଁ ସରିତ ଗୋଟିଏ
ଆକାଶବାହିନୀ ବହେ କ୍ଷୀରନଦୀ ପ୍ରାୟେ ।
ସେହି ନଦୀକୂଳେ ଡାହାଳ ଦେଶଟି ବସଇ
ରଥ ଗଜ ନାହିଁ ରାଜ୍ୟେ ଅଶ୍ୱପୂର୍ଣ୍ଣ ତହିଁ ।
ସତ୍ୟଯୁଗରେ ବିରଞ୍ଚି ସଂଜ୍ଞା ସଙ୍ଗେ ପ୍ରୀତି
କରିବାରୁ ଅଶ୍ୱଗଣ ବହୁତ ଉତ୍ପତ୍ତି ।
ସର୍ବେ ଅଶ୍ୱାରୋହୀ ତହିଁ ସୈନ୍ୟଆଦି କରି
ଧନୁତୀର କମାଣାଦି ନାନା ଅସ୍ତ୍ରଧାରୀ ।
ମହାସମ୍ପଦ ରାଜାର ଶତ ପାରିଦଣ୍ଡ
ସଂଗ୍ରାମେ ନିପୁଣ ସେହି କ୍ଷତ୍ରିକୁଳଖଣ୍ଡ ।
ବୀର ତୂର ଟମକ ଯେ ମର୍ଦ୍ଦଳ ବଜାଇ
ଦଣ୍ଡଘେନି ଡାହାଳରେ ଭୀମ ହେଲେ ଯାଇ ।
ଡଗର ବୋଲେ ଶୁଣିମା ସୁଜାଣ ନୃପତି
ରାଜ୍ୟେ ପଶୁଛି କେବଣ ଦେଶ ନରପତି ।
ବହୁତ ପ୍ରତିଜ୍ଞା ତାର ଅଟେ ମହାରଥୀ
ପଶ୍ଚିମଦିଗେ ଆସିଛି ଶୁଣ ତାର କଥା ।
କନ୍ଦର୍ପସେନ ବଧିଲା ତାର ନଗ୍ରେ ପଶି
ଏବେ ଆମ୍ଭ ରାଜ୍ୟେ ସେହି ପଶିଲାକ ଆସି ।
ସହସ୍ରେକ ରଥ ଦୁଇ ସହସ୍ରେ ମାତଙ୍ଗ
ସହସ୍ରେକ ଅଛି ଦେବ ତା ସଙ୍ଗେ ତୁରଙ୍ଗ ।
ପଦାତି ତା ସଙ୍ଗେ ଅଛି ଦଶ ଅଇବ୍ରତ
ବେନି ଅଇବ୍ରତ ଅଛି ତାର ପାଟଛତ୍ର ।
ତୁମ୍ଭ ରାଜ୍ୟରେ ପଶଇ ଏଡେକ ସମ୍ପଦେ
ତିନିଭୁବନ କମ୍ପଇ ତା ବାଦ୍ୟ ଶବଦେ ।
ଚାରଗଣଙ୍କ ମୁଖରୁ ଏହି ବାର୍ତ୍ତା ପାଇ
ଆଜ୍ଞା ଦେଲାକ ନୃପତି ପାତ୍ରଗଣେ ରାଇ ।
ଆଗୁଆଣି ଥାଟେ ତାର ଅଛି କେତେ ବଳ
ଯା ଦେଖି ଆସ ବୋଇଲା ସୁଜାଣ ଭୂପାଳ ।
ରାଜାର ବଚନ ଶୁଣି ସଇନି ଚଳିଲେ
ବିଜିଘୋଷ ଦାଉଣ୍ଡି ଯେ ଆଗେ ବଜାଇଲେ ।
ମତୁଆଳି ମହୁରୀ ଯେ ବାଜେ ରାମତାଳି
ସୈନ୍ୟ ଚାଲନ୍ତେ ନାରୀଏ ଦେଲେ ହୁଳହୁଳି ।
କିଳିକିଳା ନାଦକରି କୁଠାରକୁ ଧରି
ନଗ୍ର ବାହାରେ ଦୁଆରେ ରହିଲେ ଆବୋରି ।
କୁନ୍ତ ବୁଲାଇ ଭ୍ରମନ୍ତେ ଭୀମଙ୍କ ରାଉତେ
ଗଜ ଧୁଆଇଁ ଉଠନ୍ତି ଆବର ମାହୁନ୍ତେ ।
ସୈନ୍ୟ ପଟୁଆର ଧରି ଅଭେଦ ତାଢ଼େଣି
ବୁଲାନ୍ତି ଝଲକେ ତାହା ବିଜୁଳି କି ଜିଣି ।
ରଣେ ଅନିର୍ବାର ଅଟେ ସେ ପାଣ୍ଡବ ବୀର
ବସୁମତୀ ନ ସହଇ ଯାର ପାଦଭାର ।
ଦୟା କରଇ ଯଦ୍ୟପି ମହତ୍ତ୍ୱ ଦେଖାଇ
ଉଚ୍ଚବାଚ ହେଲେ ତାର ଜୀବନ ଘେନଇ ।
ସୈନ୍ୟ ଦେଖି ମାର ବୋଲି ଆଜ୍ଞାଦେଲେ ଭୀମ
ମୋହର ଆଗେ ଦେଖାନ୍ତି ସୈନ୍ୟ ଆସି ତମ ।
ସିଂହ ଅଟେ ବନସ୍ତରେ ପଶୁଙ୍କର ପତି
ପଶ୍ଚିମ ଦିଗରେ ସେହି ଅଟେ ଅଧିପତି ।
ଯଦ୍ୟପି କି ମତ୍ତଗଜ ହେବ କୋପକାରୀ
ତାର ପ୍ରାଣ ରଖଇ କି ବିକ୍ରମ କେଶରୀ ।
ଚକ୍ରପ୍ରାୟ ବୁଲାଇଣ ସୈନ୍ୟ କରି ବୃଷ୍ଟି
ରଣ ରଙ୍ଗରେ ପାଣ୍ଡବ ବିକ୍ରମରେ ଉଠି ।
କରଯୋଡ଼ି ବୋଇଲେକ କୃତାନ୍ତକ ମନ୍ତ୍ରୀ
ସ୍ୱାମୀ ଆମ୍ଭେ ଥାଇ ଯୁଦ୍ଧେ ପଶ କିପାଁ ଧାତି ।

ଭୀମସେନ ବୋଲେ ମୋର ଅଳପ ସଇନି
ସାଧିବି ପଞ୍ଚାସହସ୍ର ରାଜା ତୁମ୍ଭ ଘେନି ।
ବାହୁଡ଼ାଇ ଏହି ଥାଟ ନେଇପାର ଯେବେ
ତେବେ ସେ ଦୟା କରିବେ ମୋତେ ବାସୁଦେବେ ।
ଏଥୁ ଗୋଟିଏ ଯେବେ କି ହେବେ ପରମାଦୀ
ସମସ୍ତ କାର୍ଯ୍ୟ ମୋହର ହୋଇବ ଅସାଧି ।
ଚାରିଦିଗେ ରାଜା ବରଣକୁ ଗଲେ ଯେତେ
ସହଦେବର ପାଞ୍ଜିରେ ଲେଖାଅଛି ତେତେ ।
ତହିଁରୁ ଗୋଟିଏ ଯେବେ ହୋଇଯିବ ଊଣା
ନିନ୍ଦା ପାଇବି ନୋହିବି ବୀରମଧେ ଗଣା ।
ଆହେ ମେରୁ ଆଶ୍ରେ କରିଅଛ ତୁମ୍ଭେମାନେ
ବହୁତୀର୍ଥ ଭ୍ରମିଯିବ ହସ୍ତିନା ଭୁବନେ ।
ସଇନିଗଣ ବୋଇଲେ ତୋ ଜୀବନ ସାଧୁ
ଦୀର୍ଘଜୀବୀ ହୁଅ ଲକ୍ଷ୍ମୀ ନ ଛାଡୁ ତୋ କାନ୍ଧୁ ।
ଭୀମଙ୍କ ପ୍ରତିଜ୍ଞା ଶୁଣି ଉଠିଲେ ସଇନି
ବାହା ନାଦ ଶବଦରେ କମ୍ପିଲା ମେଦିନୀ ।
ଥାଟ ପିଠି ରକ୍ଷାକାରୀ ହୋଇଲେକ ଭୀମ
ଧାଇଁଲେ ବିକ୍ରମେ ବଳ କରିଲେ ସଂଗ୍ରାମ ।
ଅସୁର ଦେଖି ପଳାନ୍ତି ଯେହ୍ନେ ରକ୍ଷମାନେ
ସେରୂପେ ପଳାଇ ଗଲେ ତାହାଳର ସୈନ୍ୟେ
ସଂଗ୍ରାମ ନିମନ୍ତେ ବୀର ପଶିଲେକ ଯାଇ
ତର୍ଜନ୍ତି ଗର୍ଜନ୍ତି ସର୍ବେ ସର୍ପପ୍ରାୟ ହୋଇ ।
ଦେଖି ତ୍ରାସିଲେ ତାହାଳ ଦେଶର ସଇନି
ଭୟରେ ପଳାଇ ଗଲେ ଯେଝା ପ୍ରାଣ ଘେନି ।
ତାଙ୍କ ପଛେ ଧାଏଁ କାଳଦଣ୍ଡ ଦୀକ୍ଷାଗୁରୁ
ରଣେ ଅଭୟ ସେ ଅଟେ ଯାଏ ଯଥା ମେରୁ
ତିନି ଯୋଜନ ପର୍ଯ୍ୟନ୍ତେ ପ୍ରାଏଡ଼ା ପଡ଼ିଲା
ଭିତର ପୁରେ ପ୍ରବେଶ ବୃକୋଦର ହେଲା ।
ସୈନ୍ୟ ପଳାଇବା ଦେଖି ସୁଜାଣ ନୃପତି
ଜଗତୀ ଉପରୁ ଡେଇଁ ପଡ଼ିଲାକ ଧାତି ।
ରହ ରହ ବୋଲିକରି ଉଚ୍ଚେ ଡାକଦେଇ
ମହାଦାରୁ ପୃଷ୍ଟେ ଚଢ଼ିଯାଏ ନରସାଇଁ ।
କରେ ଶୋଭାପାଏ ତାର ଲୁହାର କମାଣ
ଭୀମଙ୍କ ପାଶେ ଭେଟିଲା ନୃପତି ସୁଜାଣ ।
ରଥ ଛାଡ଼ି ଭୀମସେନ ଅଛି ଉଭାହୋଇ
ଏ ବେଳେ ସୁଜାଣ ରାଜା ମିଳିଲାକ ଯାଇ ।
ବୋଇଲାକ ରାଜା ତୁମ୍ଭେ କେଉଁଦେଶ ରଥୀ
ଏ ମୋର ଥାଟକୁ କିପାଁ ଦେଉଅଛ ମଚ୍ଛି ।
ତୋହର ମୋହର ତ ଯେ ବାଦ ନାହିଁ ପୂର୍ବେ
ଅକାରଣେ ନାଶୁ କିପାଁ ମୋର ସୈନ୍ୟ ଏବେ

ମନ୍ଦର ସମାନ ଦିଶେ ତୋହର ଏ କାୟେ
ପ୍ରତ୍ୟକ୍ଷ ଦିଶୁ ତୁ ବାବୁ କାମଦେବ ପ୍ରାୟେ ।
କି ଅବା ଆକାଶ ତେଜି ବିଜେ ଆଖଣ୍ଡଳ
ନରଜନ୍ମ ହୋଇ ତୋର ଜୀବନ ସୁଫଳ ।
ସମସ୍ତ ରାଜା କରନ୍ତି ମୋତେ ଗଉରବ
କିପାଇଁ ଅଇଲୁ କହ ଏ ମୋହର ଠାବ ।
ସମସ୍ତ ରାଜାଙ୍କ ମୁହିଁ ଅଟେ ଗଉରବୀ
ଅଶ୍ୱବଣିଜ ତୋ ଯେତେ ଲୋଡ଼ାକେତେ ଦେବି
ତିନିଶତ ଯୋଜନ ଯେ ମନୋହର ବନ
ଅଶ୍ୱିନୀକୁମାରଙ୍କ ଏ ଅଟେ ଜନ୍ମସ୍ଥାନ ।
ଆକାଶ ବାହିନୀ ଏଥେ ନଦୀ ଧବଳାଙ୍ଗୀ
ଯମୁନା ଯେ ସରସ୍ୱତୀ ଗଙ୍ଗା ସଙ୍ଗେ ସଙ୍ଗୀ ।
ଆକାଶ ବାହିନୀ ବହେ ମେରୁର ମେଖଳି
ଦିବାରାତ୍ର ବହୁଥାଏ କ୍ଷୀରାର୍ଣ୍ଣବ ଭଳି ।
ପୂର୍ବରୁ ଏମନ୍ତ କଥା ଶୁଣିଅଛି ମୁହିଁ
ତୁମ୍ଭ ଆଗରେ କହିଲି ସକଳ ଫିଟାଇ ।
ସଂଜ୍ଞା ସାଥେ ଦିନନାଥ ଶୃଙ୍ଗାର କରନ୍ତି
ଆଦିତ୍ୟଙ୍କ କ୍ରୀଡାରଶ୍ମି ସହି ନ ପାରନ୍ତି ।
କଷ୍ଟ ପାଇ ଦିନେ ଦେବୀ କଲେକ ସେ ମାୟା
କଳ୍ପନା କରି ଶରୀରୁ ଜାତ କଲେ ଛାୟା ।
ସକଳ ଶୋଭାରେ ହେଲା ସେହି ପରିପୂର୍ଣ୍ଣ
ସଂଜ୍ଞା ପରାୟେ ଦିଶିଲା ତାର ଚିହ୍ନ ବର୍ଣ୍ଣ ।
ଆଦିତ୍ୟକୁ ସମର୍ପିଣ ସେ ଛାୟା କନ୍ୟାକୁ
ତ୍ରାସରେ ଗଲେ ପଶ୍ଚିମ ମେରୁ ମେଖଳାକୁ ।
ଯେଉଁଠାରେ ଆଦିତ୍ୟଙ୍କ ତେଜ ନ ପଡ଼ଇ
ସେହିସ୍ଥାନରେ ସେ ଦେବୀ ଗୋପ୍ୟହେଲେ ଯାଇ ।
ଛାୟା ଖଟିଲା ଜାଣିଣ ଆଦିତ୍ୟ ପ୍ରକୃତି
ସଂଜ୍ଞାହିଁ ଅନେକରୂପେ ଖଟେ ଦିବାରାତ୍ରି ।
ସୂର୍ଯ୍ୟଙ୍କର ମନ ଜାଣି ଛାୟା ଏହିମତେ
ତାହାଙ୍କୁ ଖଟିଲେ ପଞ୍ଚମନୁ ପରିଯନ୍ତେ ।
ବିରଞ୍ଚିନାରାୟଣ ତା ନ ପାରନ୍ତି ଜାଣି
ଦିନେ ଯମ ଶନିଶ୍ଚର ଏହି ଭ୍ରାତ ବେନି ।
ଯମ ସୁମନ୍ତକମଣି ଘେନିଣ ଅଇଲା
ଦୁଆରେ ବସିଣ ଭାଇସଙ୍ଗେ ଖେଳୁଥିଲା ।
ତାହା ଦେଖିକରି ଯମେ ଛାୟା କୋପକଲା
ଭର୍ତ୍ସନା କରିଣ ମଣି ଛଡ଼ାଇଣ ନେଲା ।
ଅଞ୍ଚଳ ଧରିଣ ଯମ ଉଗାଳିଲେ ବାଟେ
ମଣି ନ ଦ୍ୟନ୍ତେ ମାଇଲେ ବାମପାଦେ ଆଣ୍ଟେ
ଆମ୍ଭର ମାତା ହୋଇ ତୁ ଏଡେକ ନିର୍ଦ୍ଦୟା
ପାଦାଘାତେ ମୂର୍ଚ୍ଛାହୋଇ ପଡ଼ିଲାକ ଛାୟା ।

ଚେତି ରାଗେ଼ ଶାପଦେଲା ଶୁଣ ଆରେ ଯମ
ମୁହିଁଟି ଜାଣ ତୋହର ଅଟେ ଗୁରୁଜନ ।
ରାଗେ ଯେ ପାଦେ ମାଇଲୁ କରି ମୂର୍ଖ ବୁଦ୍ଧି
ସେ ପାଦେ ହେଉ ଗଳିତ ମହା କୁଷ୍ଟବ୍ୟାଧି ।
ଛାୟାଙ୍କର ଶାପ କେବେ ନୋହିଲା ମେଣ୍ଟଣ
ଯମ ପାଦେ କୁଷ୍ଟବ୍ୟାଧି ହେଲା ତତକ୍ଷଣ ।
ଗଳିଲା ପୂଜ ରକତ ପାଦଗୋଟି ଫୁଟି
ପୋଡନ୍ତେ ଶମନ କାନ୍ଦି ମହୀପରେ ଲୋଟି ।
ଦିନକରେ ବୁଲୁବୁଲୁ ଦେବ ଅଂଶୁମାଳି
ହିରଣ୍ୟଗର୍ଭ ପୁରକୁ ଅଇଲେ ସେ ଚଳି ।
ପ୍ରବେଶ ହୁଅନ୍ତେ ଯାଇ ସୂର୍ଯ୍ୟ ସେ ଭୁବନେ
ଯମ ଯାଇ ମିଳିଲାକ ତାଙ୍କ ସନ୍ନିଧାନେ ।
କୋଳେ ଧଇଲେ ତ୍ରୈଲୋକ୍ୟନାଥ ତପ୍ତନିଧି
ଦେଖିଲେ ଯମ ପାଦରେ ମହା କୁଷ୍ଟବ୍ୟାଧି ।
ଦୁର୍ଗନ୍ଧ ଗନ୍ଧାଇ ବହୁଅଛି ଯେ ଶୋଣିତ
ଆରେ ପୁତ୍ର କେହୁ କଲା ତୋତେ ରେ ଏମନ୍ତ ।
ପିତା ଛାମୁରେ କହିଲେ ଯମ ଦଇବତେ
ମାତା କୋପକରି ଏହି ଶାପଦେଲେ ମୋତେ
ଶୁଣି ଆଶ୍ଚର୍ଯ୍ୟ ହୋଇଲେ କମଳ ବାନ୍ଧବ
ମାତାଙ୍କର ଶାପ କାହିଁ ପୁତ୍ରକୁ ଫଳିବ ।
ବାଳକମାନଙ୍କର ଯେ ଦୁର୍ଜ୍ଜନ ପ୍ରକୃତି
ଖେଳନ୍ତା ଶିଶୁ ମାତାଙ୍କୁ ବଡ଼ ଦୁଃଖ ଦ୍ୟନ୍ତି ।
ବହୁତ ବିମୁଖ ହୋଇ ଗାଳିଦ୍ୟନ୍ତି ମାଏ
କୌଣସି କାଳେ ପୁତ୍ର ନ ହୁଏ ଅପଚୟେ ।
ମାତାଙ୍କର ଶାପ ଯେବେ ପଡ଼ିବ ପୁଅକୁ
ଆଉ କି ଉପାୟେ ଅଛି ପୁତ୍ରେ ବଞ୍ଚିବାକୁ ।
ମନେ ଏହା ବିଚାରନ୍ତି ଗଗନ ବିହାରୀ
ଏହି ଅବା ଏ ପୁତ୍ରର ନୁହେଁ ଗର୍ଭଧାରୀ ।
ଗର୍ଭଧାରୀ ମାତା ଶାପ ନ ଦେବେ ଏମନ୍ତି
ମନେ ସ୍ନେହ ରଖି ମୁଖେ କହେ କଟୁ ଉକ୍ତି ।
ଯା ଭାବି ଧ୍ୟାନେ ଜାଣିଲେ ଦିନକର ବନ୍ଧୁ
ଜାଣି ଛାୟାକୁ ବୋଇଲେ ଜୀବନ ତୋ ସାଧୁ
ସଂଜ୍ଞା ସହି ନ ପାରି ତ ମୋହର ସେ ଜ୍ୟୋତି
ପଞ୍ଚମନୁ ପରିଯନ୍ତେ ଖଟିଲୁ ମୋ କତି ।
ଦେବସ୍ତ୍ରୀ କୁଳକୁ ତୋର ମହିମା ଦୁର୍ଲ୍ଲଭ
ପଞ୍ଚମନୁ ପରିଯନ୍ତେ ମୁଁ ଛାୟାବଲ୍ଲଭ ।
ଧ୍ୟାନବଳରେ ଏ ସବୁ ପାରିଲେ ସେ ଜାଣି
ଦେଖିଲେ ସଂଜ୍ଞା ଲୁଚିଛି ମେରୁ କ୍ରୋଡେ ପୁଣି ।
ନିଜରୂପ ଛାଡ଼ି ସେହି ହୋଇ ଅନ୍ୟରୂପ
ଘୋଟକୀ ରୂପରେ ସଂଜ୍ଞା ହୋଇଅଛି ଗୋପ୍ୟ

ଏମନ୍ତ ସ୍ୱରୂପ ଦେବ ଦେଖି ଧ୍ୟାନବଳେ
ଅଶ୍ୱପୁରୁଷ ରତନ ଆପଣେ ହୋଇଲେ ।
ମେରୁ ମେଖଳେ ପଶିଲେ ସେ ଆଦିତ୍ୟ ଦେବ
ହ୍ରେଷାରବ କଲେ ଯେହ୍ନେ ଅଶ୍ୱଙ୍କର ଭାବ ।
ଅଶ୍ୱମାନଙ୍କ ଲକ୍ଷଣ ଯେସନେ ପ୍ରକୃତି
ସଂଜ୍ଞାହିଁ ଶବଦ କଲେ ଶୁଣି ତତ୍କ୍ଷଣାନ୍ତି ।
ସେ ଶବ୍ଦ ଶୁଣି ଗୋଡ଼ାଇ ସେହି ଅଶ୍ୱବର
ଅଶ୍ୱ ସାଙ୍ଗରେ ଯାଇଣ କଲେକ ଶୃଙ୍ଗାର ।
ପୁଚ୍ଛିଲେ ଘୋଟକୀ ତୁମ୍ଭେ କେବଣ ଦେବତା
ଅଶ୍ୱରୂପୀ ବୋଇଲେ ମୁଁ ଅଟଇ ସବିତା ।
ସଂଜ୍ଞା ସଙ୍ଗେ କ୍ରୀଡାକଲେ ଦେବ କୁତୂହଳେ
ବଢ଼ିଲା ଶୃଙ୍ଗାର ରସ ମହାକାମ ଭୋଳେ ।
ଘୋରରୂପୀ ବୀର୍ଯ୍ୟ ଗର୍ଭେ ପଡୁ ଉର୍ଦ୍ଧ୍ୱରେତା
ମୋହେ ପଡ଼ିଲେ ଘୋଟକୀ ହଜାଇଣ ଚେତା
ଅମୋଘ ରେତ ତାଙ୍କର ଯହୁଁ ସେ ଖସିଲା
ତିନିଧାର ହୋଇକରି ତା ଗର୍ଭୁ ବହିଲା ।
ଧାରକରୁ ଅର୍ଦ୍ଧଧାର ସଂହରିଲେ ଗର୍ଭ
ସଇନ୍ଦୁ ଜାତ ହୋଇଲେ ସେ ଅଶ୍ୱିନୀ ଦେବ ।
ମନୁଷ୍ୟ ଶରୀର ଅଶ୍ୱପରି ମୁଣ୍ଡ ଗୋଟି
ମହାମନ୍ତ୍ର ମହୌଷଧି ତା ଅମୃତ ଦୃଷ୍ଟି ।
ଜାତ ହୋଇକରି ସେହି ଚାହିଁଲା କୁମର
ତାହାର ଦୃଷ୍ଟି ପଡ଼ିଲା ବନେ ଯେତେ ଦୂର ।
ସେ ବୃକ୍ଷମାନେ ହୋଇଲେ ଜାଣ ମହୌଷଧି
ତାହା ଲେପ କ୍ଷେପକଲେ ନାଶେ ସର୍ବବ୍ୟାଧି
କହନ୍ତେ ସୁଜାଣେଶ୍ୱର ନୃପ ଚୂଡାମଣି
କୋପ ଛାଡ଼ି ଭୀମ ଶାନ୍ତି ଭଜିଲେ ତା ଶୁଣି ।
ତିନିଧାର ପଡ଼ିଲା ଯେ ମେରୁର ମେଖଳେ
ବହିଯାଇ ମିଶିଲା ସେ ସରସ୍ୱତୀ ଜଳେ ।
ସେ ମହାବୀର୍ଯ୍ୟ ମିଶ୍ରିତ ହୁଅନ୍ତେ ତା ଘେନି
ବହଇ ଯେ ସରସ୍ୱତୀ ଈଶାନ ବାହିନୀ ।
ଆଦିତ୍ୟ ସଂଜ୍ଞାର ମନୋହର ଏ ରମଣେ
ମନୋହରବନ ନାମ ହୋଇଲାକ ଏଣେ ।
ସେ ବନରେ ଥିଲେ ଯେତେ ବଡ଼ ବଡ଼ ଜୀବ
ସେମାନେ ରେତ ପିଇଣ ଲଭିଲେକ ଗର୍ଭ ।
ସରସ୍ୱତୀରୁ ପିଇଲେ ସେ ରେତ ପାଣିକି
ତାଙ୍କ ତହୁଁ ଜନ୍ମହେଲେ ଘୋଟକ ଘୋଟକୀ ।
ନାନା ଜାତୀୟ ସୁନ୍ଦର ସୁନ୍ଦର ତୁରଗ
ପୂର୍ଣ୍ଣହୋଇ ରହିଛନ୍ତି ଏହି ବନଭାଗ ।
ସେ ଅଶ୍ୱକୁ ସମ୍ଭାଳି ମୁଁ ରଖିଛି ଯତନେ
କିଣିବାକୁ ଆସୁଛନ୍ତି ଧନୀଲୋକମାନେ ।

ଯେଉଁ ଅଶ୍ୱର ହୋଇବ ଯେତେକଟି ମୂଲ୍ୟ
ଅଧା ଧନ ନେଇ ବାଛି ଦିଅଇ ମୁଁ ଭଲ ।
ମୋହର ତହୁଁ ସମସ୍ତେ ଅଶ୍ୱ ଘେନିଯାନ୍ତି
ତେଣୁକରି ମୋର ନାମ ଅଟେ ଅଶ୍ୱପତି ।
ଏଡେବଡ଼ ରାଜ୍ୟ ମୋର ପର ଉପକାରୀ
କେହ୍ନେ ସତ ବଳିଲା ତୋ ଏହା ଧ୍ୱଂସକରି ।
ପରଲୋକ ହିତେ ମୁହିଁ ବଞ୍ଚଇ ସର୍ବଦା
ତୁହି ଗୁଣବନ୍ତ ମୋର ସୈନ୍ୟ କଲୁ ପଦା ।
ଭୀମ ବୋଇଲେ ତୁ କହିଲୁ ଆପଣାର କଥା
ତୋ କଥା ଶୁଣି ମୋହର ଜନ୍ମିଲା ଯେ ବ୍ୟଥା ।
ତୁ କି ନ ଜାଣୁ ରାଜୁସି ଯାଗ ହେବ ବୋଲି
ପଶ୍ଚିମ ରାଜାଙ୍କୁ ମୁହିଁ ନିମନ୍ତ୍ରି ଅଇଲି ।
ମୁହିଁ ସେ ଭୀମପାଣ୍ଡବ କୁଳରଟି ଶ୍ରେଷ୍ଠ
ଯାଗର ନିମନ୍ତେ ଜରାସନ୍ଧ କରି ନଷ୍ଟ ।
ଭୀମସେନ ମୁଖରୁ ଏ ତଥ୍ୟ କଥା ଶୁଣି
ଅଶ୍ୱ ପୃଷ୍ଠରୁ ତେଇଁଣ ପଡ଼ି ନୃପମଣି ।
ବୃକୋଦର ପାଦତଳେ ବହୁତ ପ୍ରଣମି
ସର୍ବ ଦୋଷ ମୋର କ୍ଷମା କରିବାକ ସ୍ୱାମୀ ।
ମୁହିଁ ବନଚର ଦେବ କିସ ମୋର ବୁଦ୍ଧି
ପାଣ୍ଡବ ଦର୍ଶନେ ମୋର ହେବ କାର୍ଯ୍ୟ ସିଦ୍ଧି ।
ବହୁତ ବିନୟ ହୋଇ ଆନନ୍ଦ ହୃଦରେ
ରାଜ୍ୟେ ଉତ୍ସବ କରିଲା ନାନା ପରକାରେ ।
ଜଗତୀ ପର୍ଯ୍ୟନ୍ତେ ରାଜା ପାଏଡ଼ା ପଡ଼ିଲା
ବହୁ ବିନୟେ ଭୀମଙ୍କ ଚରଣ ସେବିଲା ।
ତା ଜଗତୀପରେ ବିଜେ କଲେ ବୀରମଣି
ବେଢ଼ି ଦେଖୁଛନ୍ତି ନରେ ତାଙ୍କୁ ଯକ୍ଷ ଜାଣି ।
ମହାସମ୍ଭର୍ବରେ ରାଜା ଯୋଗାଡ଼େକ ଦେଲା
ରହିଣ ପାଣ୍ଡବ ତହିଁ ଭୋଜନ କରିଲା ।
ଚୋଖାଇ ତୁରଙ୍ଗମ ଯେ ବାୟୁତୁଲ୍ୟ ଗତି
ଚାରିଲକ୍ଷ ଦେଲା ଆଉ ମତ୍ତଗଜ ହସ୍ତୀ ।
ଧଳାକଳା ଚଉରାଶୀ ଲକ୍ଷଣରେ ପୂର୍ଣ୍ଣ
ଛାମୁରେ ଦେଲା ଆଦିତ୍ୟ ଅଶ୍ୱର ସମାନ ।
ଲକ୍ଷେକ ଭାର ନରେଶ ପାଣିଦ୍ରବ୍ୟ ଘେନି
ଭୀମସେନେ ଦେଲା ଏତେ ଦେଖା ଦରଶନୀ
ଗୁବାକ୍ଷତେ ନିମନ୍ତ୍ରଣ କଲେ ବୃକୋଦର
ବୋଇଲେ ଯା ସମର୍ପିବୁ ସାତ୍ୟକି ପାଶର ।
ମୋତେ ଦେଲୁ ଯେତେକ ତୁ ଦେଖାଦରଶନୀ
ସାତ୍ୟକି ସମ୍ଭାଳିଥିବୁ ଭଣ୍ଡାର ତା ଘେନି ।
ତୋର ଯେତେ ସମଦଣ୍ଡ ତାହାଙ୍କ ସହିତେ
ଏହିକ୍ଷଣି ଅନୁକୂଳ କର ଇନ୍ଦ୍ରପ୍ରସ୍ଥେ ।

ଏମନ୍ତ ଶୁଣି ବୋଇଲେ ସେ ସୁଜାଣେଶ୍ୱର
ସୈନ୍ୟସହ ଯିବି ସ୍ୱାମୀ ନ କରି ଉଚ୍ଛୁର ।
ଭୀମ ବୋଇଲେ ଜାଣ ତୁ ସୁଜାଣ ନୃପତି
ପ୍ରବେଶିବୁ ଯାଇ ପୌଷ ପୂର୍ଣ୍ଣିମାର ତିଥି ।
ବିଶ୍ରାମ ନ କରି ଯିବୁ ଚାରି ଅହୋରାତ୍ରେ
ଯେମନ୍ତେ କୃଷ୍ଣ ଲାଞ୍ଛନା ନ କରନ୍ତି ମୋତେ ।
ଚଳିଲା ଡାହାଳେଶ୍ୱର ଓଳଗି ମେଲାଇ
ସେଠାବରୁ ଭୀମସେନ ଗଲେ ବେଗ ହୋଇ
ଜୟ ଜୟ ଜଗନ୍ନାଥ ଅନାଥର ନାଥ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ତୁମ୍ଭ ହସ୍ତ ।
ଗତି ମୁକ୍ତି ଦାତା ତୁମ୍ଭେ ଜୀବମାନଙ୍କର
ତୁମ୍ଭ ନାମ ଭକ୍ତଙ୍କର କଣ୍ଠ ହେମହାର ।
ତିନିପୁର ଅଧିକାରୀ ତୁମ୍ଭେ ଦେବରାଜ
ଅସୁରଙ୍କ ଗର୍ବ ଖର୍ବକାରୀ ତୁମ୍ଭ ତେଜ ।
କୃଷ୍ଣ କେଶବ ମୁରାରି ଶ୍ରୀ ମଧୁସୂଦନ
ରାମ ହରି ପଦ୍ମନାଭ ପତିତପାବନ ।
ଏହି ନାମାବଳି ଯେହୁ ଆନନ୍ଦ ହୃଦରେ
ଦୃଢ଼କରି ଭଜୁଥିବ ଦଣ୍ଡେ ଯେ ଅନ୍ତରେ ।
ତୁମ୍ଭର ନାମ ଅଟଇ ପାପୀ ପାପହରା
ଯମଦୂତଙ୍କ ହାତରେ ନ ପଡ଼େ ସେ ଧରା ।
ତବ ପାଦ ପଙ୍କଜରେ ମଧୁ ଲାଳସାରେ
ମୋ ମନଭୃଙ୍ଗ ଗୋଡ଼ାଏ ପିଇ ନିରନ୍ତରେ ।
ଦୟାକର ଦୀନବନ୍ଧୁ ଏ ଅଧମ ପ୍ରତି
ଶାରଳାଦାସର ସଦା ଏତିକି ବିନତି ।



## ବିରାଟ ରାଜ୍ୟରେ ଭୀମଙ୍କୁ ଦୂତର ଅପମାନ

ପୁଚ୍ଛାକଲେ ବୈବସ୍ୱତ ମନୁ ଅଗସ୍ତିଙ୍କି
ଭୀମ ଶ୍ରୀମୁଖ ଗଲା ଯେ ବିରାଟ କତିକି ।
ବିରାଟ ଶ୍ରୀମୁଖ ପାଇ କେଉଁ କୃତ୍ୟକଲା
କ୍ରୁଦ୍ଧ ହେଲା କି ନୋହିଲା ଦୂତେ ଶାସ୍ତି ଦେଲା ।
ଏହା ଶୁଣିବାକୁ ମନ ହେଉଛି ଉଦ୍‌ବେଗ
ସଂଶୟ ଫିଟାଇ କହ ମୁନି ମହାଭାଗ ।
ଅଗସ୍ତି କହିଲେ ଶୁଣ ହେ ମନୁ ରାଜନ
ବିରାଟ ରାଜ୍ୟକୁ ଗଲା ଦୂତ କାଳିଞ୍ଜନ ।
ସଙ୍ଗତରେ ନେଇଗଲା ଶତେକ ସଇନ
କାଳିଞ୍ଜନ ଯାଏ ଏକ ଆରୋହି ବିମାନ ।
କଥୋପକଥନ ହୋଇ ପଥ କ୍ଷେପିଗଲେ
ବିରାଟ ରାଜ୍ୟରେ ଯାଇଁ ପ୍ରବେଶ ହୋଇଲେ

କୀଚକ ବିଜେ କରିଛି ତାହାର ଜଗତୀ
ଶତେ ବିଳାସିନୀ ତାକୁ ଚାମର ଢ଼ାଳନ୍ତି ।
ବିରାଜେ ମଣି ମୁକୁଟ ତାହାର ଲଲାଟେ
କି ଅବା ସୁରଈଶ୍ୱର ବିଜେ ଏଇରାଷ୍ଟ୍ରେ ।
କାଳିଞ୍ଜନ ପଢ଼ିହାରୀ ଏ ଆରମ୍ଭ ଚାହିଁ
ଭାବିଲା ଏହି କି ବିଜେ ମତ୍ସ୍ୟଦେଶ ସାଇଁ ।
ହସ୍ତରେ ଧରି ଶ୍ରୀମୁଖ ବୋଲେ କାଳିଞ୍ଜନ
ହେ ବିରାଟ ଜଗତୀରୁ ଓହ୍ଲାଇ ବହନ ।
ପାଏଡ଼ା ପାଡ଼ି ଶ୍ରୀମୁଖ ଘେନିସି ହେ ରାୟେ
କେବଣ ଦର୍ପ ତୋହର ଏଡ଼େକ ନିର୍ଭୟେ ।
କୀଚକ ବୋଇଲା ତୁହି ଅଟୁ କାହା ଚାର
ଦୂତ ହୋଇକରି ତୋର ଏଡ଼େକ ଚାତର ।
କେ ରେ ଶ୍ରୀମୁଖ ଦେବାକୁ ମୋତେ ସାମରଥା
ନ ଜାଣୁ କି ସଂଗ୍ରାମେ ମୁଁ ଅଟେ ବଳବନ୍ତା ।
ଶରଣକୁ ସାଗର ମୁଁ ପରଲୋକ ବନ୍ଧୁ
ନିଶ୍ଚେଁ ଆଜ ଶିର ତୋର ନାଶଯିବ କନ୍ଧୁ ।
ପ୍ରତିଜ୍ଞା କରିଣ ଯହୁଁ କୀଚକ କହିଲା
କାଳିଞ୍ଜନ ପଢ଼ିହାରୀ ଶୁଣି କୋପକଲା ।
ଜଗତବନ୍ଦନ ବୃକୋଦର ମହାମତି
ତୋ ଭର୍ତ୍ସନା ବୋଲି ସେହି ସହି କି ପାରନ୍ତି ।
ପ୍ରତିଜ୍ଞା କରିଣ ସେ ଯେ ବୋଲେ କାଳିଞ୍ଜନ
ନ ଜାଣୁ କି ହୋ ବିରାଟ ସେହୁ ଭୀମସେନ ।
ହିଡ଼ିମ୍ବକ ରାକ୍ଷସ ଯେ ବିଦାରିଲେ ଜଣେ
ପାଞ୍ଚାଳେ ଲକ୍ଷେ ରାଜାଙ୍କୁ ଜିଣିଲେ ସେ ରଣେ
ଓଡ଼ାଧିର ଦର୍ପଭଞ୍ଜା ମର୍ଦ୍ଦି ବକାସୁର
ପ୍ରତିଜ୍ଞା ସାମରଥା ଯେ ଯୁଧିଷ୍ଠି ସୋଦର ।
ଯା ନାମ ଶୁଣିଲେ ହରି କୃଷ୍ଣ ଭୟକରେ
ଜରାସନ୍ଧ ଯେ ବଧିଲେ ଏକ ମୁଥକରେ ।
ବୀରବର ପାଣ୍ଡବ ସେ କ୍ଷୋହତ ପାଞ୍ଚନ
ରାଜସୂୟ ଯାଗ ହେତୁ କରେ ଆଗମନ ।
ପଶ୍ଚିମ ଦିଗରେ ଛନ୍ତି ଯେତେ ନରପତି
ତାହାଙ୍କୁ ଅକ୍ଷତ ଦେଇ ନେବେ ସେ ନିମନ୍ତି ।
ଦୁଷ୍ଟ ଦର୍ପ ଧ୍ୱଂସନ ଯେ ଜଗତେ ଉତ୍ତମ
ତ୍ରୈଲୋକ୍ୟ ଚମକେ ଯାର ବୃକୋଦର ନାମ ।
ପାଏଡ଼ା ପାଡ଼ି ଶ୍ରୀମୁଖ ଘେନ ହେ ବିରାଟ
ଠାକୁର ବିଜେକଲେ ଏ ପଶ୍ଚିମ ସୌରାଷ୍ଟ୍ର ।
କାଳିଞ୍ଜନ ପଢ଼ିହାରୀ କୀଚକ ନ ଚିହ୍ନି
ବିରାଟ ପ୍ରାୟ ମଣି ସେ ବୋଲେ କଟୁବାଣୀ ।
କୀଚକ ବିରାଟ ନିନ୍ଦା ନ ପାରଇ ସହି
ତେଣୁ କୀଚକର ମନେ ଥିଲା ରାଗହୋଇ ।
ତା ମୁଖରୁ ବାରମ୍ୱାର ପୌଢ଼ କଥା ଶୁଣି
ଜଗତୀ ପରେ କୀଚକ ରାଗେ ଶିରଝୁଣି ।
ବୋଇଲା ଯା କେଶ ଧରି ଯାଅ ଆରେ ନେଇ
ଜଗତୀର ତଳେ ଥିଲେ ଅନେଶ୍ୱତ ଭାଇ ।
କୀଚକ ଆଜ୍ଞାରେ ବେଗେ ଧାଇଁ ଅମନାତ୍ୟ
ପର୍ଶୁ ପାଶୀ ଗଦା ଆଦି ବୁଲାଇ ତୁରିତ ।
ରେରେକାର କରି ବେଗେ ଅଇଲେ ସେ ଧାଇଁ
କାଳିଞ୍ଜନ ପାଶେ ମିଳି ଧଇଲେକ ଯାଇଁ ।
ସବଳରେ ସାଉଁଟିଣ ଧଇଲେକ ବାଳ
ଉଠାଇ ନିଅନ୍ତେ ପାଦ ନ ଲାଗଇ ତଳ ।
ଶ୍ରୀମୁଖ ଡଛୁଡ଼ିକରି ଘେନିଲେ ତା ତହୁଁ
ବୋଇଲେ ଏଠାକୁ ଆସି ଏଡ଼େ ଦର୍ପ ବହୁ ।
ଶିରଚ୍ଛେଦନେ କୀଚକ ଯହୁଁ ଆଜ୍ଞାଦେଲା
ଯାଚକେଶ୍ୱର ସଚିବ ବିରାଟେ କହିଲା ।
ସ୍ୱାମୀ ଭୀମସେନ ନାମ ଇନ୍ଦ୍ରପ୍ରସ୍ଥେ ଘର
ଜରାସନ୍ଧକୁ ସଂଗ୍ରାମେ କଲା ଯେ ସଂହାର ।
ଯୁଧିଷ୍ଠି ଦେବଙ୍କ ରାଜସୂୟ ଯାଗକାର୍ଯ୍ୟେ
ଦଣ୍ଡ ଘେନି ସେ ମାରୁତି ଏ ପଶ୍ଚିମେ ବିଜେ ।
ବହୁ ରାଜା ଜିଣି ବିଜେ ପଞ୍ଚଧାର ତୀର୍ଥେ
ହେ ସ୍ୱାମୀ ଶ୍ରୀମୁଖ ଗୋଟି ଦେଇଅଛି ତୋତେ
କୀଚକ ଧରାଇ ତାକୁ କରୁଛି ନିଧନ
ଶୁଣିଣ ସେ ମତ୍ସ୍ୟେଶ୍ୱର ରାଇଲେ ବହନ ।
କୀଚକର ଭ୍ରାତେ ତାକୁ ନେଉଛନ୍ତି ହାଣି
ରହ ରହ ବୋଲି ଦୂରୁ ଡ଼ାକେ ନରମଣି ।
ରାଜାର ବଚନେ ସର୍ବେ ହୋଇଲେ ଯକିତ
କାଳିଞ୍ଜନେ କୋଳକଲା ମତ୍ସ୍ୟ ନରନାଥ ।
ବନ୍ଧନରୁ ମୁକ୍ତ କରି ତାକୁ ଘେନିଗଲା
ସ୍ୱର୍ଣ୍ଣ ଆସନେ ବସାଇ ସ୍ନାନ କରାଇଲା ।
କୀଚକ ଭ୍ରାତାମାନଙ୍କୁ ରାଗେ ଦେଲା ଗାଳି
ଆରେ ଯାହାକୁ ଖଟିଣଥାନ୍ତି ବନମାଳି ।
ଏମନ୍ତ ଅଜ୍ଞାନୀ ତୁମ୍ଭେ ଅଟ ଦୁଷ୍ଟ ମନ୍ଦ
ଦ୍ୱିତୀୟ ନିରଞ୍ଜନଙ୍କ ଶ୍ରୀମୁଖକୁ ନିନ୍ଦ ।
ବହୁତ ବିନୟେ ରାଜା କଲା ନିଉଛାଳି
ଶ୍ରୀମୁଖକୁ ଘେନିଲା ସେ ପାତି କରାଞ୍ଜଳି ।
ତାହାକୁ ମାଥେ ଲଗାଇ ମତ୍ସ୍ୟଦେଶ ପତି
କାଳିଞ୍ଜନକୁ କରିଣ ବହୁତ ଭକତି ।
ତାହାର କର ଧରିଣ ପୁରେ ଘେନିଗଲା
ନିଜ ଆସ୍ଥାନ ଉପରେ ତାକୁ ବସାଇଲା ।
ଶତଭାର ସ୍ୱର୍ଣ୍ଣ ଦେଇ କଲା ପାଦପୂଜା
ଶ୍ରୀମୁଖ ମୁଦ ଫେଡ଼ିଣ ମତ୍ସ୍ୟଦେଶ ରାଜା ।

ଯାଚକ ମନ୍ତ୍ରୀକୁ ଦ୍ୟନ୍ତେ ସେ ସବୁ ପଢ଼ିଲା
ପ୍ରତିଜ୍ଞା ଶୁଣି ବିରାଟ ବହୁ ଭୟ କଲା ।
ବହୁତ ପ୍ରତିଜ୍ଞା ଆଉ ବହୁତ ବଡ଼ିମା
ଶୁଣିଣ କାଳେବରର ଦୁଃସହ ମହିମା ।
ମନେ ମନେ ଭୟକରି ସେହି ମତ୍ସ୍ୟେଶ୍ୱର
ବିଚାରିଲା ନିଶ୍ଚେ ରାଜ୍ୟ ନାଶଗଲା ମୋର ।
ସ୍ୱାମୀ ଦୂତେ ଝିଙ୍ଗାସିଲା ଏ କୀଚକ ମୂଢ଼
ଏ ରାଜ୍ୟ ଏଥର ଶିରୀ ମୋର ହେବ ହୂଡ଼ ।
ଅନେକ ବିନୟେ କହେ ସେ କାଳିଞ୍ଜନକୁ
ତୁମ୍ଭେ ଦୟାକଲେ ଅଛି ମୋର ବର୍ତ୍ତିବାକୁ ।
କୀଚକର ଦୋଷମାନ କରିବାକୁ କ୍ଷମା
ତୋ ଧର୍ମ ଉଦିତ ହେବ ଜାଣ ହେ ମହାତ୍ମା ।
ତୁହି ଦୟାକଲେ ଜାଣ ରକ୍ଷା ହେବି ମୁହିଁ
ଏ ବିଷୟେ ତୋ ତହୁଁ ମୋ ଆନ କେହିନାହିଁ ।
କାଳିଞ୍ଜନ ବୋଇଲା ତୁ ଶୁଣ ମହୀପତି
ତୋ ଅପରାଧ ଖଣ୍ଡୁଛି ତୁହି ହୁଅ ଶାନ୍ତି ।
ଭାଇ ସହଦେବ ଯେହୁ ଯୁଧିଷ୍ଠିଙ୍କ ମନ୍ତ୍ରୀ
ଭୂତ ଭବିଷ୍ୟ ଆଗତ ସେ ସର୍ବ ଜାଣନ୍ତି ।
ଉତ୍ପତ୍ତି ପ୍ରଳୟ ହୁଏ ତାହାଙ୍କୁଟି ଦୃଶ୍ୟ
ସେ ମନ୍ତ୍ରୀ ସର୍ବଦା ଥାନ୍ତି ଯୁଧିଷ୍ଠିଙ୍କ ପାଶ ।
ଅବଶ୍ୟ ଯାଗେ ରାଜାଙ୍କ ବିଷୟ ପଢ଼ିବ
କୀଚକର ଦୋଷ ମନ୍ତ୍ରୀ ରାଜାଙ୍କୁ କହିବ ।
ଏ କଥା ଲୁଚିବ ନାହିଁ ଜାଣ କଦାଚିତେ
ଅବଶ୍ୟ କୀଚକ ନାଶଯିବ ଭୀମ ହାତେ ।
ସମଦଣ୍ଡ ଘେନି ତୁହି ଇନ୍ଦ୍ର ପ୍ରସ୍ଥ ଯିବୁ
ତୋର କୀଚକକୁ ବାବୁ ସଙ୍ଗତେ ନ ନେବୁ ।
ସଦାକାଳେ ମୁଁ ଧର୍ମଙ୍କ ଦୂତ ପେଷକାରୀ
ମୂର୍ଖପଣେ ତୋ କୀଚକ ବହୁ ଦୋଷକରି ।
ମଧ୍ୟସ୍ଥ ହୋଇଣ ଯେବେ ରହିବି ତା ଆଗେ
ଅବଶ୍ୟ ଦ୍ୱନ୍ଦ୍ୱ ଘଟିବ ଅହୋବଳ ସଙ୍ଗେ ।
ଦ୍ୱନ୍ଦ୍ୱ ହୋଇଲେ ହୋଇବ ଜାଣ ବ୍ରହ୍ମହତ୍ୟା
ସେ ଦୋଷେ ଦଣ୍ଡିବ ଦୂତେ ଶମନ ଦେବତା ।
ଯଦ୍ୟପି କୀଚକ ତୋର ହେଲା ଅପରାଧୀ
ତୋ ଶପଥ ଠାକୁରେ ନ କହିବି ତୋ ବୁଦ୍ଧି ।
ଅନେକ ଯୋଗାଡ଼ ଦେଲେ ସେ ମତ୍ସ୍ୟ ରାଜନ
ଭୁଞ୍ଜି ତୃପତ ହୋଇଲା ଦୂତ କାଳିଞ୍ଜନ ।
ବିରାଟ ରାଜାକୁ ଦ୍ୟନ୍ତେ ସେ ଅକ୍ଷତ ଗୁଆ
ଉଠି ମାଥେ ଲଗାଇଲା ସେ ସୁଦେଷ୍ଣା ନାହା ।
କାଳିଞ୍ଜନ ବୋଲେ ତୋର ଯେତେ ଥାଟ ସୈନ୍ୟ
ତାହାଘେନି ଇନ୍ଦ୍ରପ୍ରସ୍ଥେ କର ତୁ ଗମନ ।
ପାଣିଦ୍ରବ୍ୟ ଶତେଭାର ଦେଲା ମତ୍ସ୍ୟପାଳ
ଭୀମସେନଙ୍କୁ କହିବ ମୋହର କୁଶଳ ।
କାଳିଞ୍ଜନ ବୋଇଲା ଯା ଘେନିଯିବୁ ତୁହି
ରାଜସୂୟ ଯଜ୍ଞେ ଏହା ଦେବୁ ମୁକୁଳାଇ ।
ଏହି କଥା କହି ତହୁଁ ବାହୁଡ଼ିଲା ଦୂତ
ବିମାନ ଚଳିଲା ତହୁଁ ପବନୁ ତୁରିତ ।
ପୁରୁଷୋତ୍ତମ ନଗର ମହୋଦଧି ତୀରେ
ନୀଳଗିରି ପରବତ ଅଛି ତା ସ୍ଥାନରେ ।
ତହିଁ ଉପରେ ଦେଉଳ ଅତି ଶୋଭାବନ
ନୀଳଚକ୍ରେ ପାଟନେତ ଉଡେ ଘନ ଘନ ।
ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖ ଚକ୍ର ବହି ।
ପାପୀଜନଙ୍କୁ କରୁଛ ତହିଁ ମୋକ୍ଷଦାନ
ଜୟ ଜୟ ଜଗନ୍ନାଥ ପତିତପାବନ ।
ଜୟ ଜୟ ଜଗନ୍ନାଥ କମଳାର ପତି
ଶାରଳା ଦାସର ତୁମ୍ଭ ପାଦେ ରହୁ ମତି ।



## ବଜ୍ରସେନ ରାଜାଙ୍କୁ ଆମନ୍ତ୍ରଣ, କଣୟବିନ୍ଦୁ ରାଜାଙ୍କର ସୂର୍ଯ୍ୟଙ୍କ ପ୍ରତି ସ୍ତବ ଓ ଲମ୍ବାଜିତ ରାଜାଙ୍କୁ ଆମନ୍ତ୍ରଣ

ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ନରରାଣ
ଏ ଉତ୍ତାରେ କିସ କଲେ କହ ଭୀମସେନ ।
ଅଗସ୍ତି କହିଲେ ଶୁଣ ମନୁ ନୃପବର
ଦୂତ ସବୁ ଜଣାଇଲା ଭୀମଙ୍କ ପାଶର ।
ଡାହାଳ ଦେଶକୁ ଜିଣି ଚଳଇ ମାରୁତି
ବେଲାଳ ଦେଶେ ପ୍ରବେଶ ପାଞ୍ଚଦିନ ରାତି ।
ଚକ୍ରସେନ ବୋଲି ସେହି ବେଲାଳ ରାଜନ
ତା ରାଜ୍ୟେ ଯାଇ ପ୍ରବେଶ ହେଲେ ଭୀମସେନ
ଭାଗ୍ୟବର ବୋଲିଣ ଯେ ସେ ରାଜାର ମନ୍ତ୍ରୀ
ସେ ଯାଇ ଜଣାଇଲାକ ଚକ୍ରସେନ କତି ।
ତୋ ପିତାକୁ ମାରୁଥିଲା ଯେଉଁ ଜରାସନ୍ଧ
ତାହାକୁ ଯେଉଁ ପାଣ୍ଡବ ଯୁଦ୍ଧେ କଲା ବଧ ।
ପଶ୍ଚିମ ରାଜା ବରଣେ ସେହି ଭୀମସେନ
ଆସିଛନ୍ତି ଯାଇ ତାଙ୍କୁ କର ଦରଶନ ।
ବହୁତ ରାଜ୍ୟକୁ ସେହି ଆସିଛି ଉଜାଡ଼ି
ସଜ୍ଜନ ରକ୍ଷପାଳକ ଦୁଷ୍ଟେ ମାରେ ମୋଡ଼ି ।
ଶୁଣି ସହସ୍ରେକ ଭାର ପାଣିଦ୍ରବ୍ୟ ଧନ
ସସ୍ତ୍ରଅଶ୍ୱ ଅଷ୍ଟରତ୍ନେ ଖଞ୍ଜିଲା ବିମାନ ।
ସହସ୍ରେକ ପାଟଛତ୍ର ସହସ୍ରେ ବିନତା
ସହସ୍ରେକ ଭାର ଦେଲା ବର୍ତ୍ତୁଳ ମୁକୁତା ।

ଧନେ କୁବେର ସମାନ ଅଟେ ନୃପମଣି
ଅନେକ ରତ୍ନ ଘେନିଣ ବିଜେ ତତ୍‌କ୍ଷଣି ।
ଭୀମଙ୍କ ଆଗେ ବାରତା ଦେଲେ ଯାଇ ଦୂତ
ଦର୍ଶନେ ଆସୁଛି ଗାଲମାଧବର ସୁତ ।
ରତ୍ନ ଥୋଇ ଦରଶନ କରଇ କୁମର
ସ୍ୱାମୀ ଶତ୍ରୁ ଧ୍ୱଂସି ତୁହି ବୀର ବୃକୋଦର ।
ଅଭୟ ସୋମବଂଶୀ ତୋ ଜୀବନଟି ସାଧୁ
ଶରଣ ରକ୍ଷଣ ନାଥ ନିରେଖର ବନ୍ଧୁ ।
ଧରିଣ ଦନ୍ତେ ତିରଣ ଗଳାରେ କୁଠାର
ବୋଲେ ମୁଁ ଶରଣ ଗଲି ମୋତେ ରକ୍ଷାକର ।
ବାଳକେ ବିନୟେ ଦୟା କରିଲେ ମାରୁତି
ଦଣ୍ଡ ଘେନି ଯଜ୍ଞସ୍ଥାନେ ଚଳି ଦିବାରାତି ।
ବେଲାଳଦେଶ ନୃପତି କରେ ପୁଣି ସେବା
କ୍ଷଣକେ ବିଶ୍ରାମି ସ୍ୱାମୀ ମଣୋହି କରିବା ।
ଭୀମ ବୋଇଲେକ ମୋତେ ଏଡ଼େ ସୁଖ କାହିଁ
ରାଜାଗଣଙ୍କୁ ବେଗେ ମୁଁ ନିମନ୍ତ୍ରିବି ଯାଇ ।
ଚକ୍ରସେନକୁ ବିଦାୟ ଦେଇ ବୀରମଣି
କୋଶଳଦେଶେ ପ୍ରବେଶ ହେଲେ ଗଦାପାଣି ।
ଗନ୍ଧବତୀ ବୋଲିକରି ନଦୀ ଏକଗୋଟି
କର୍ଣ୍ଣଋଷିଙ୍କ କର୍ଣ୍ଣରୁ ଆସୁଛି ଯେ ଫୁଟି ।
ମନ୍ଦର ଅନୁଜ ଚାରିପୀଢ଼ା ପରବତ
ମେଘର ଜନ୍ମଭୂମି ସେ ଥାନ୍ତି ଅନୁବ୍ରତ ।
ସେ ପର୍ବତ ଉପରେ ଯେ ଭୀମସେନ ଉଠି
ଦେଖିଲେ କୋଶଳଦେଶ ରତ୍ନମୟ ସୃଷ୍ଟି ।
ସବୁଙ୍କ ଘରେ ଲାଗିଛି ସ୍ୱର୍ଣ୍ଣ ରୁଅ ଶ୍ରେଣୀ
ସୁବର୍ଣ୍ଣର ଖମ୍ବ ଅଷ୍ଟ ରତନେ ଛାଉଣି ।
ସ୍ୱର୍ଣ୍ଣ କଳସ ରହିଛି ସବୁ ପିଢ଼ାପରେ
ଅଳକା ଭୁବନ ପରି ସେହୁ ଶୋଭା ଧରେ ।
ନଗ୍ର ଆୟତନେ ଚଉବିଂଶ ଯୁଣ ସ୍ଥଳି
ତାକୁ ବେଢ଼ିଅଛି ସ୍ୱର୍ଣ୍ଣଗିରି କାନ୍ଥ ଭଳି
ଏମନ୍ତ ଦେଖି ପ୍ରଶଂସେ ପବନ ଆତ୍ମଜ
କେଉଁ ପୁଣ୍ୟବନ୍ତ ରାଜା ପାଇଛି ଏ ରାଜ୍ୟ ।
ପୂର୍ବେ ସେ ସଞ୍ଚୟ କଲା ତା ଜୀବନ ଧନ୍ୟ
ପୁଣ ପୁଣ ପ୍ରଶଂସଇ ବୀର ଭୀମସେନ ।
କିରାତ ବୋଲି କରିଣ ଏକ ବେଣ୍ଟକାର
ସେ ରାଜ୍ୟକୁ ଯାଉଛି ସେ ଘେନି ମୃଗଭାର ।
ତାକୁ ଦେଖି ଭୀମ ବୋଲେ ଶୁଣରେ କିରାତ
ଏହା କେଉଁ ଦେଶ ଏଥେ କିଏ ନରନାଥ ।
କିରାତ ବୋଇଲା ତୁମ୍ଭେ ଶୁଣ ଦୂରଦେଶୀ
ମୃଗଭାର ଓହ୍ଲାଇଣ ବୋଲେ ପାଶେ ବସି ।
ହରିହରବଂଶେ ଥିଲେ କଣୟ ଯେ ରାୟେ
କୌଶଲ୍ୟା ନାମେ ଉପୁଜେ ତାର ଦୁହିତାଏ ।
ବଡ଼ଇ ଧାର୍ମିକ ରାଜା ଦାନେ ଶୂରବନ୍ତା
ପର ଦୁଃଖେ ଦୁଃଖୀ ମାଗନ୍ତାକୁ ସେ ଦିଅନ୍ତା ।
ଅତି ଦାନରେ ଦରିଦ୍ର ଯହୁଁ ସେ ହୋଇଲା
ପ୍ରଜା ଯା ଅର୍ଜନ୍ତି ତହୁଁ ଦୁଇରାଶି ନେଲା ।
କର୍ଣ୍ଣ କଷ୍ଟକରି ରାଜା ନ ଘେନଇ ସଞ୍ଜା
କୃଷି କରିଣ ବଞ୍ଚନ୍ତି ତାର ଜନ ପ୍ରଜା ।
କେଉଁ ପାପେ କିଏ ଶାପ ଦେଲା ତାକୁ ପୂର୍ବେ
ଏପରି ଦରିଦ୍ର ହେଲେ ତାର ପ୍ରଜା ସର୍ବେ ।
ପ୍ରଜାଙ୍କର ଦୁଃଖ ଦେଖି ସେହି ନରନାଥ
କରତାଙ୍କୁ ସେବାକଲା ବସି ଅର୍କ ତୀର୍ଥ ।
ଅଜପା ମନ୍ତ୍ରେ ଦିବସନାଥ ମନ ତୋଷି
ଅନ୍ନ ଜଳ ତ୍ୟାଗକରି ମହାଯୋଗେ ବସି ।
ଅନାହାରେ ବସିଲା ସେ ରାଜା ରାଜ୍ୟ ଅର୍ଥେ
ସୂର୍ଯ୍ୟଙ୍କୁ ସେବିଲା ପଞ୍ଚବର୍ଷ ପରିଯନ୍ତେ ।
ସ୍ତୁତି ପାଠକରେ ତାଙ୍କୁ ଚାହିଁ କରତାର
ତିମିର ନାଶନ ତୁହି ଜୟ ହେ ଭାସ୍କର ।
ତୋହର ସୁବର୍ଣ୍ଣ ବର୍ଣ୍ଣ ଯାର ଶୂନ୍ୟପଥେ
ଗଗନେ ସଞ୍ଚରୁ ନାଥ ପ୍ରାଣୀ ସୁଖ ହିତେ ।
ପ୍ରଳୟ ଆଗମ ଜାଣି ତୁହି ମନେ ମନେ
ଅଣାକାରଙ୍କୁ ତୁହି ଚିନ୍ତିଲୁ ଦେବ ଧ୍ୟାନେ ।
କଳପ ଯାଏ ରଖିଲୁ ମହାତେଜ ମୂର୍ତ୍ତି
ଅନାଇ ନ ହୁଏ ଦେବ ତୋର ଯେଉଁ ଜ୍ୟୋତି ।
ଅଦଭୁତେ ପ୍ରାତଃକାଳୁ ଉଠିଆସୁ କାହୁଁ
ଜଗତ ଉଜ୍ଜ୍ୱଳ ହୁଏ ସର୍ବେ ଚାହୁଁ ଚାହୁଁ ।
ସ୍ୱାମୀ ଅନନ୍ତକଳ୍ପ ବୋଲି ଏକଇ ଦିବସେ
ବସିଲୁ ଅଚଳ ହୋଇ ନିଦ୍ରାର ଆଳସ୍ୟେ ।
ନିଦ୍ରାକୁହିଁ ଇଚ୍ଛା ଦେବ କଲୁ ଯେତେବେଳେ
ପବନ ଅଗ୍ନି ବିକାଶ ହେଲେ ତେତେବେଳେ ।
ଯେତେକାଳ ପରିଯନ୍ତେ ଥିଲୁ ତୁ ଭିଆଇ
ଆତଯାତ ହେଉଥିଲେ ଭବେ ସର୍ବେ ରହି ।
ଚିନ୍ତା ଛାଡ଼ି ନାଥ ତୁହି ବସନ୍ତେଣ ଲୟେ
ସମୁଦ୍ରେ ଘୋଟିଲା ଦେବ ହୋଇଲା ପ୍ରଳୟେ ।
ଏକ ରାତ୍ରକେ ତୋହର ହୋଇଲାକ କଳ୍ପେ
ଚିଆଇଁ ଉଠି ବସିଣ ପୁଣି ନାଥ ଆପେ ।
ଶରୀରରୁ ପକାଇଲୁ କାଢ଼ି ପଞ୍ଚଧାତୁ
ପାଞ୍ଚ ପୁରୁଷ ଜନ୍ମିଲେ ତୋର ଜ୍ଞାନ ହେତୁ ।
ଋଦ୍ଧି ସିଦ୍ଧି ବୁଦ୍ଧି ସନକ ଯେ ସନାତନ
ଏ ପାଞ୍ଚ ପୁରୁଷ ଦେବ ଆଦ୍ୟେ କଲୁ ଜନ୍ମ ।
ଏ ପାଞ୍ଚଙ୍କ ଶରୀରରେ ଥୋଇ ପଞ୍ଚଆତ୍ମା
ସେ ପଞ୍ଚେ ହେଲେ ଗୋଟିଏ ଗୋଟିଏମହାତ୍ମା

ସତ୍ୟଯୁଗ କରିଣ ତୁ ଆଦ୍ୟେ ସୃଷ୍ଟି ସଞ୍ଚି
ବିଧାତା ଅନନ୍ତ ଗୁରୁ ବ୍ରହ୍ମା ଯେ ବିରଞ୍ଚି ।
ଆଜ୍ଞା ଦେଲୁ ସ୍ୱାମୀ ଏହି ପୁରୁଷଙ୍କୁ ଚାହିଁ
ଯାଅ ବେଗେ ତୁମ୍ଭେ ନବସୃଷ୍ଟିକୁ ଭିଆଇ ।
ତୋର ଆଜ୍ଞାରେ ସଞ୍ଚିଲେ ସେ ସଚରାଚର
ଚାରିଖାନି ଚଉରାଶୀ ଜନ୍ତୁ ଭିନ୍ନାକାର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ଭିନ୍ନ ତ୍ରଇଲୋକ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁହି ପ୍ରଭୁ ଏକ ।
ସକଳ ଜୀବମାନଙ୍କ ତୁହି ଦିବ୍ୟଚକ୍ଷୁ
ଯେ ଯହିଁ ଥାଇ ଯା କରେ ତାହା ସବୁ ଦେଖୁ ।
ଯେ ଯାହା କରଇ ତାହା ଦେଖି ପ୍ରତ୍ୟକ୍ଷରେ
ସେମାନଙ୍କୁ ଶାସ୍ତି ବିହୁ ତୁହି ସଂସାରରେ ।
କରନ୍ତା ଉଦ୍ଧରନ୍ତାରୁ ନାମ କରତାର
ଦେଖିଣ ସ୍ତୁତି କରନ୍ତି ତୋତେ ସୁରନର ।
ଯାବତ ଜନଜନ୍ତୁଙ୍କ ଜନ୍ମକର୍ତ୍ତା ତୁହି
ପ୍ରଜାପତି ପୁରୁଷ ତୋ ତହୁଁ ଆନ ନାହିଁ ।
ଜାତ ଅନ୍ତ ଏ ଦୁଇରେ ତୁହି ଯେ କରତା
ତୋ ତହୁଁ ଜନ୍ମ ହୋଇଲେ ଶମନ ଦେବତା ।
ତାହାକୁ ହକାରି ତୁହି ଆଜ୍ଞା ଦେଲୁ ପ୍ରଭୁ
ପାପପୁଣ୍ୟ ବିଚାରି ତୁ ଜୀବେ ଦଣ୍ଡ ଦେବୁ ।
ସ୍ୱାମୀ ଆଦ୍ୟାବତାରେ ତୋ କୋଟିଏ କିରଣ
ସଂଜ୍ଞା ତବ ରଶ୍ମି ତେଜ ସହି ନ ପାରିଣ ।
ଭୟକରି ଦେବୀ ଯହୁଁ ହୋଇଲେ ଅନ୍ତର
ସଂଜ୍ଞା ନିମନ୍ତେ ବସିଲୁ ପର୍ବତ ଉପର ।
ନବଲକ୍ଷ ନଉସସ୍ର କିରଣ ତୋହର
ତାକୁ ଉଣା କଲୁ ବସି ପର୍ବତ କନ୍ଦର ।
ଏହା ଦେଖି ସଂଜ୍ଞାଦେବୀ ତୋତେ କୋଳକଲା
ସହସ୍ରେ କିରଣ ଦେବ ତୋହର ରହିଲା ।
ସେ ପରମ ସାଧବୀ ସେ ଆଦି ଅନ୍ନପୂର୍ଣ୍ଣା
ସ୍ତିରୀକୁଳେ ଉପୁଜିଣ ରୁହାଇଲା ସୀମା ।
ଦକ୍ଷନନ୍ଦିନୀ ସଂସାରଜନ ହିତକାରୀ
ଭାଳିଲେ ମୁଁ ଏହି ତେଜ ସହିତ ନ ପାରି ।
ଏ କଳିଯୁଗରେ ଲୋକେ ସହିବେ କେମନ୍ତେ
ସକଳ ଦହନ ହେବ ଜଳିବେ ପର୍ବତେ ।
ସଂସାର ହିତେ ସେ ବେନି ଗଲେ ଅପସରି
ସସ୍ରକିରଣ ବହିଲେ ଗଗନ ବିହାରୀ ।
କୋଟିଏ କିରଣ ଯେବେ ସୂର୍ଯ୍ୟଙ୍କର ଥାନ୍ତା
ଜନ ଜନ୍ତୁ ପତଙ୍ଗାଦି ଦହିର୍ଯ୍ୟ ହୁଅନ୍ତା ।
ସ୍ୱାମୀ ପରଦୁଃଖେ ଦୁଃଖ ଲାଗେ ପରଚିନ୍ତା
ପରମାନନ୍ଦ ସ୍ୱାମୀ ତୁ ଅଟୁ ବରଦାତା ।

ତୁ ଦେବ ଆଦିତ୍ୟ ଦୀନଜନଙ୍କ ଅନାଦି
ଯୋଗୀଜନମାନଙ୍କ ତୁ ହୃଦୟ ସମାଧି ।
ସ୍ୱାମୀ ଉଦେଗିରି ପ୍ରଦକ୍ଷିଣ କରୁ ନିତି
ତବ ପ୍ରସନ୍ନରେ ନାଥ ହୋଇବି ମୁକତି ।
ଛାୟାର ବଲ୍ଲଭ ନାଥ ସପ୍ତଅଶ୍ୱଶାୟୀ
ତୋ ନିର୍ମଳ ଜ୍ୟୋତିରୂପ ନ ପାରନ୍ତି ଚାହିଁ ।
ସ୍ୱାମୀ ଅନିତ୍ୟ ସଂସାର ଅକୂଳ ସାଗର
ରାଗ ମୋହହେତୁ ଏଥେ ଭାସେ ନିରନ୍ତର ।
ଭୋ ସ୍ୱାମି ଅଜ୍ଞାନୀ ମୁହିଁ ଜ୍ଞାନ ମୋର କିସ
ଗିରିଜାଙ୍କ ଶ୍ରୀଚରଣ ଦାସର ମୁଁ ଦାସ ।
ହେ ବିରଞ୍ଚି ପ୍ରଭୁ ତୁମ୍ଭ ପାଦରେ ଦଇନି
ସର୍ବଦା ଚିନ୍ତେ ଶାରଳା ଦାସ ଶୂଦ୍ରମୁନି ।
ମନୁରାଜା ଆଦିତ୍ୟଙ୍କୁ ଧ୍ୟାନକରି ବୋଲେ
ଅନେକ ସ୍ତୁତି କଣୟବିନ୍ଦୁ ଯେ କରିଲେ ।
ପରସନ୍ନ ହେଲେ କି ନ ହେଲେ ଦିବାକର
ଏ କଥା ମୋ ଆଗେ ଫେଡ଼ି କହ ମୁନିବର ।
ରାଜା ବଚନେ ଅଗସ୍ତି କଲେ ଏ ଉତ୍ତର
କଣୟେ ପ୍ରସନ୍ନ ହୋଇ ଯାଚିଲେକ ବର ।
ଯେବେ ପ୍ରସନ୍ନ ହୋଇଲ ମୋତେ ହେ ଆଦିତ୍ୟ
ଚନ୍ଦ୍ରଭାଗା ତୀର୍ଥେ ଅଛି ଅର୍କନାମେ ଦୈତ୍ୟ ।
କଣୟବିନ୍ଦୁର ବର ନେବା ଦୈତ୍ୟ ଶୁଣି
ଭାଳେ ଯାକୁ ଦେଇଛନ୍ତି ବର ଦିନମଣି ।
ନ ପୁଣ ମାଗଇ ଏହି ମୋହର ମଣ୍ଡଳ
ଯା ଭାଳି ଧାଇଁଲା ଧରି ଲୁହାର ମୂଷଳ ।
ଏ ମୂଷଳେ କଣୟକୁ କରିବଇଁ ଚୂର
ଲକ୍ଷେ ଯୋଜନେ ଥାଇ ତା ଜାଣି ଦିବାକର ।
କର ବଢ଼ାଇ ଧଇଲେ ସେ ଅସୁର କର
ସୂର୍ଯ୍ୟଙ୍କୁ ଦେଖି ପ୍ରଣମେ ସେହି ଗୟାସୁର ।
ଦେଖ ଦିବସ ନାଥଙ୍କ ମହିମା କିପରି
ଆକାଶୁ କର ବଢାଇ ଦୈତ୍ୟ ଭୁଜ ଧରି ।
କୋପରେ ବୋଲନ୍ତି ତାକୁ ଶୁଣରେ ଚଣ୍ଡାଳ
ଆସିଅଛୁ ମୋ ଭକ୍ତକୁ ମାରିବାକୁ ଶୂଳ ।
ଅର୍କବୋଲେ ତପସ୍ଥାନ ନାଶୁଛି ମୋହର
ତାର ବାକ୍ୟେ ରାଗ ହୋଇ ଦେବ ଦିନକର ।
ମ୍ଭାଇଲେକ ସୂର୍ଯ୍ୟାବର୍ତ୍ତ ଚକ୍ର ଅଂଶୁମାଳି
ଅର୍କର କିଛି ନୋହିଲା ରୋମୁଁ ରକ୍ତ ଗଳି ।
ଏ ସମୟେ ଆକାଶରେ ବୋଲନ୍ତି ବୃନ୍ଦାର୍କେ
ଯାକୁ ଛାଡ଼ିଲେ ମରିବୁ ଆମ୍ଭେ ଦେବଲୋକେ ।
ଏମନ୍ତ ଶୁଣିଣ ସୂର୍ଯ୍ୟଦେବ ସିନ୍ଧୁ କୂଳେ
ଅର୍କକୁ ମାଡ଼ି ବସିଲେ କ୍ରୀଡ଼ା କୁତୂହଳେ ।

ଅଗ୍ନିକୋଣେ ଚନ୍ଦ୍ରଭାଗା ପଶ୍ଚିମ ପ୍ରଶସ୍ତେ
କୋଣାର୍କ ନାମ ରଖିଲା ଧାତା ଏ ନିମନ୍ତେ ।
ଅର୍କଦେବ୍ୟ ମାଡ଼ିବସି ହୋଇ ହୃଷ୍ଟମନ
ବର ମାଗ ହେ କଣୟ ତୋହର ଯେ ମନ ।
କଣୟ ବୋଇଲା ଯେବେ ହୋଇଲ ପ୍ରସନ୍ନ
ମୋ ରାଜ୍ୟେ ସୁବର୍ଣ୍ଣବୃଷ୍ଟି କର ସାତଦିନ ।
ମୋର ପ୍ରଜାଜନମାନେ ହୋଇବେକ ସୁଖୀ
ସଦା ଧନ ପୂର୍ଣ୍ଣ ଥିବ କେ ନୋହିବେ ଦୁଃଖୀ ।
ସୂର୍ଯ୍ୟ ବୋଲେ ସାତଦିନ ସ୍ୱର୍ଣ୍ଣବୃଷ୍ଟି ହେଲେ
ଶସ୍ୟ କେହ୍ନେ ଉପୁଜିବ ପୃଥ୍ୱୀ ନ ତିନ୍ତିଲେ ।
କଣୟ ବୋଇଲା ତେବେ ବର୍ଷୁ ସାତଘଡ଼ି
ସୂର୍ଯ୍ୟ ବୋଲେ ତେବେ ବୃକ୍ଷଲତା ଯିବେ ସଡ଼ି
ସାତଦଣ୍ଡ ବରଷିବ ଶୁଣ ହେ କଣୟ
ରାଜ୍ୟଯାକ ହେବ ତୋର ଯେ ସୁବର୍ଣ୍ଣମୟ ।
ବିରାଜ ଶବର କହେ ଭୀମଙ୍କ ଅଗ୍ରତେ
ସ୍ୱର୍ଣ୍ଣବୃଷ୍ଟି ହେଲା ସାତଦଣ୍ଡ ପରିଯନ୍ତେ ।
ତ୍ରେତୟାଯୁଗେ କୋଶଳ ଦେଶ ନାମେ ଖ୍ୟାତ
ଦ୍ୱାପରେ ଏଥେ ହୋଇଲା ଏ କଣୟନାଥ ।
କିରାତ ବୋଇଲା ପୂର୍ବୁ ଏହି ରାଜ୍ୟ ଅଛି
ତ୍ରେତୟା ଯୁଗରେ ଏହା ଯତ୍ନେ ଥିଲା ସଞ୍ଚି ।
କୌଶଲ୍ୟା ପିଅର ଯାର ରାମଚନ୍ଦ୍ର ନାତି
ହରିହର ବଂଶେ ରାଜା ଜଗତେ ବିଖ୍ୟାତି ।
କଣୟ ବିନ୍ଦୁର ପୁତ୍ର ସୁରମ୍ୟ ନୃପତି
ତ୍ରେତୟାରେ କିଛିଦିନ ଏ ପାଳିଲେ ପୃଥ୍ୱୀ ।
ଏହାର ପୁତ୍ର ଅଟଇ ଜାଣ ଲଗ୍ନାଜିତ
ଲକ୍ଷଣା ବୋଲି କନ୍ୟାଏ ଏହାର ଦୁହିତ ।
ଏ କନ୍ୟାକୁ ବିଭା ହେଲେ ଦେବ ବାସୁଦେବ
ସେ କନ୍ୟା ପୁତ୍ର ବସନ୍ତ ଆଉ ସଦାଶିବ ।
ବିରାଜ ଶବର ବୋଲେ ଶୁଣ ହେ ନୃପତି
ଲଗ୍ନାଜିତ କୋଶଳରେ ଅଟେ ଚକ୍ରବର୍ତ୍ତୀ ।
ଶୁଣିଣ ଭୀମ ବୋଇଲେ ଚଳାଅ ରେ ବଳ
ତା ରାଜ୍ୟରେ ପଶ ସର୍ବେ ବୋଲେ ବାୟୁ ବାଳ
ମରୁତ ସାରଥି ବୋଲେ ସେ ବ୍ୟାଧ ବିରାଜେ
ବାରତା କହ ତୁ ଯାଇ ଯେ କୋଶଳ ରାଜ୍ୟେ ।
ବୋଲିବୁ ଜରାନାଶନ ପାଣ୍ଡବ ସୁନ୍ଦର
ପଶ୍ଚିମ ରାଜା ବରଣେ ତାଙ୍କ ଆସିବାର ।
ରାଜସୂୟଯାଗ କରିବେ ଯୁଧିଷ୍ଠିର ଦେବେ
ଏ ପଶ୍ଚିମ ଦିଗ ରାଜା ସର୍ବେ ତହିଁ ଯିବେ ।
ମରୁତ ସାରଥି ବାକ୍ୟେ ଚଳିଲା କିରାତ
ଲଗ୍ନାଜିତର ଛାମୁରେ ପ୍ରବେଶି ତୁରିତ ।

ବୋଲେ ଶୁଣିମା କୋଶଳ ଦେଶ ଅଧିକାରୀ
ପାଣ୍ଡବ ଭୀମସେନ ଯେ ଜରାର ଅଇରି ।
ରାଜସୂୟଯଜ୍ଞ ସେ ଦେବ କରିବା ନିମନ୍ତେ
ରାଜା ନିମନ୍ତ୍ରି ବୁଲନ୍ତି ପଶ୍ଚିମ ପ୍ରଶସ୍ତେ ।
ସମସ୍ତ ନୃପତି ଦେବେ ଯାଉଛନ୍ତି ସାଧେ
ଯେ ରାଜା ନ ଯାଏ ତାକୁ ନାଶ କରେ ଯୁଦ୍ଧେ ।
ଜ୍ଞାନସେନ ମନ୍ତ୍ରୀ କହେ ରାଜାକୁ ବିନୟୀ
ପାଣ୍ଡବ ବାସୁଦେବ ଯେ ଅଭିନ୍ନ ଅଟଇ ।
ସୈନ୍ୟ ଘେନି ଚାଲ ରାଜା ଆଣିବା ପାଛୋଟି
ଶୁଣିଣ ଆନନ୍ଦ ରାଜା ସେହିକ୍ଷଣି ଉଠି ।
ପାଏଡ଼ା ପାଡ଼େ ସେ ରାଜା ରାଜ୍ୟର ଭିତରେ
ଚାମରେକ ନିଜେ ସେହି ଧଇଲାକ କରେ ।
କଟକ ଭିତରେ ଯାଇ ପଶନ୍ତେ ପାବନି
ମତୁଆଳ ଯୋଦ୍ଧାମାନେ ଦର୍ପେ କଲେ ଧ୍ୱନି ।
ଭୀମ ଠାକୁର ବିଜୟ କରିଥିଲେ ରଥେ
ଛାମୁରେ ଚାମର ଢାଳି ରାଜା ପ୍ରଣପତ୍ୟେ ।
ଅନେକ ବିନୟ ହୋଇ କହଇ ପ୍ରଣମି
ଆହେ କ୍ଷତ୍ରିୟ ସୁନ୍ଦର ରକ୍ଷା କର ସ୍ୱାମୀ ।
ତା ବାକ୍ୟେ ରଥୁ ଓହ୍ଲାଇ ଯୁଧିଷ୍ଠି ସାନୁଜ
ଉଠ ଉଠ କହି ତୋଳି ଧରି ବେନିଭୁଜ ।
ତୁହି ତ ଯଦୁନାଥଙ୍କ ଶ୍ୱଶୁର ଯେ ଅଟୁ
ତୁ ମୋ ପିତାସମ ମୋର ପାଦେ କିପାଁ ଖଟୁ
ଲଗ୍ନାଜିତ ବୋଇଲାକ କର ଯୋଡ଼ିକରି
ପଞ୍ଚ କଟକ ଠାକୁର ଜଗତାଧିକାରୀ ।
ସୁନ୍ଦର ଦିଶିଲା ରାଜ୍ୟ ମାରୁତି ଚାଲନ୍ତେ
ଜନ ଗହଳେ ଦେଖନ୍ତି ପୂରି ଅପ୍ରମିତେ ।
ବାହାର ଗଡ଼ ଜିଣିଣ ଭିତର ଜଗତୀ
ତହିଁ ଯାଇ ବିଜେ କଲେ ପାଣ୍ଡବ ମାରୁତି ।
ଅନେକ ସାନନ୍ଦେ ରାଜା ଉତ୍ସବ କରାଇ
ବହୁତ ବିଧିରେ ଅର୍ଘ୍ୟେ ଭୀମକୁ ବନ୍ଦାଇ ।
କୋଶଳର ନରନାରୀ ଦେଖିଣ ସାନନ୍ଦ
ଭାଳନ୍ତି ମର୍ତ୍ତ୍ୟେ କି ବିଜେ କଲେ ଆସି ଇନ୍ଦ୍ର ।
ସୂପକାର ରାଇ ଆଜ୍ଞା ଦେଲେକ ନୃପତି
ରାନ୍ଧଣା ଯୋଗାଡ଼ କର ଯାଇଣ ଝଟତି ।
ବେନି ଅଇବ୍ରତ ସୂପକାରେ ଯେ ବହନ
ରାନ୍ଧିଲେ ଅମୃତସମ ଯୋଗାଡ଼ ଯେମାନ ।
ନୀତି ବିଧାନ ଷାଠିଏ ପଉଟି ଯେ ଅନ୍ନ
ସୂପକାରମାନେ ତାହା କଲେକ ପକ୍ୱାନ ।
ଆହ୍ନିକ ସାରିଣ ଭୀମ ମଣୋହିରେ ବିଜେ
ମହାସମ୍ଭର୍ବରେ ତହିଁ ଶଙ୍ଖ ଘଣ୍ଟା ବାଜେ ।

ମଣୋହି ସାରିଣ ଭୀମ କଲେ ଆଚମନ
ବିଜୟ ମାରୁତି ଚନ୍ଦ୍ରଶାଳା ଯେ ଭୁବନ ।
ଚତୁଃସମ ଭୀମ ଅଙ୍ଗେ କରିଲେ ଲେପନ
ଦିବ୍ୟ ଅବତାର ଦିଶେ ପବନ ନନ୍ଦନ ।
ଭୁଞ୍ଜିଣ ତୃପତ ହେଲେ ସକଳ ସଇନି
ଏ ସମୟେ ଲଗ୍ନାଜିତେ ଡକାଇ ପାବନି ।
ଅକ୍ଷତ ଗୁଆ ଦେଇଣ କଲେ ନିମନ୍ତ୍ରଣ
ଥାଟ ଘେନି ଚଳ ଇନ୍ଦ୍ରପ୍ରସ୍ଥେ ଏହିକ୍ଷଣ ।
ଭୀମବାକ୍ୟେ ଲଗ୍ନାଜିତ ଘେନି ତାର ବଳ
ସେକ୍ଷଣି ଇନ୍ଦ୍ରପ୍ରସ୍ଥକୁ କଲା ଅନୁକୂଳ ।
ଲଗ୍ନାଜିତକୁ ଚଳାଇ ବୀର ବୃକୋଦର
ସୈନ୍ୟସହ କୋଶଳରୁ ହୋଇଲା ବାହାର ।
ଜୟ ହେ ଜାନକୀପତି ଜୟ ରାମଚନ୍ଦ୍ର
ବାଳିକି ମାରି ସୁଗ୍ରୀକି କଲ କପି ଇନ୍ଦ୍ର ।
ସମୁଦ୍ରରେ ସେତୁବନ୍ଧ ବନ୍ଧାଇଲ ହେଳେ
ସୁବଳ ପର୍ବତେ ବିଜେ କଲ ବାହୁବଳେ ।
ସିନ୍ଧୁ କୂଳରେ ରହନ୍ତେ ଜାନକୀ ରମଣ
ଡରେ ଶରଣ ପଶିଲା ଯାଇ ବିଭୀଷଣ ।
ସୀତା ଚୋର ରାବଣର ବଂଶ ବିନାଶିଲ
ବିଭୀଷଣକୁ ଲଙ୍କାରେ ରକ୍ଷପତି କଲ ।
ଜାନକୀଙ୍କି ଉଦ୍ଧାରିଣ ଆସି ନିଜ ପୁର
ଅଭିଷେକ ହୋଇଲ ଯେ ଅଯୋଧ୍ୟା ନଗର
ସେ ଦାଶରଥି ପଙ୍କଜ ଚରଣେ ଶରଣ
ଶାରଳାଦାସ କରଇ ଭାରତ ରଚନ ।



## କର୍ଣ୍ଣକେଶରୀ ଓ ରାମଚନ୍ଦ୍ର ରାଜାଙ୍କୁ ନିମନ୍ତ୍ରଣ

ଏଥୁ ଅନନ୍ତରେ ପୁଣି ମନୁ ଦଣ୍ଡଧର
ବିନୟରେ ଅଗସ୍ତିଙ୍କି ଯୋଡ଼ି ବେନିକର ।
ପୁଚ୍ଛାକଲେ କହ ମୁନି କୋଶଳରୁ ଭୀମ
ଯାଇ ପୁଣି କେଉଁଠାରେ କଲେ କେଉଁ କର୍ମ ।
ଅଗସ୍ତି କହିଲେ ଯାହା ପୁଚ୍ଛାକଲ ଶୁଣ ।
ଲଗ୍ନାଜିତକୁ ଚଳାଇ ହିଡ଼ିମ୍ବି ରମଣ ।
କୋଶଳ ଦେଶରୁ ନିଜ ଥାଟକୁ ଚଳାଇ
କନ୍ୟକା ଦେଶରେ ଭୀମ ପ୍ରବେଶିଲେ ଯାଇଁ
ମଳୟ ବସନ୍ତ ବୋଲି ଏକ ପରବତ
ଦଣ୍ଡ ଘେନି ଭୀମସେନ ତହିଁ ଉପସ୍ଥିତ ।
ବୀରତୁର ବୀରଢୋଲ ଯେ ବୀର କାହାଳୀ
ଘୋର ବାଦ୍ୟ ଶବଦରେ ସମୁଦ୍ର ଉଛୁଳି ।

କଣୟଭଗ୍ନୀ ବୋଲିଣ ଏକ ନଦୀ ଗୋଟି
ସ୍ୱର୍ଣ୍ଣଭଦ୍ରାଠାରୁ ସେହି ଆସୁଅଛି ଫୁଟି ।
ସେ ନଦୀ ଉତ୍ତରତୀରେ ଯେ କନ୍ୟକା ଦେଶ
କର୍ଣ୍ଣକେଶରୀ ବୋଲିଣ ତହିଁ ନରଈଶ ।
ବଡଇ ପ୍ରତାପୀ ରାଜା ସେ କର୍ଣ୍ଣକେଶରୀ
ଚାରିଶତ ପାରିଦଣ୍ଡ ପରେ ଅଧିକାରୀ ।
ଚଉଦକ୍ଷଉଣୀ ତାର ଅଟେ ସୈନ୍ୟବଳ
ଅନୁକ୍ଷଣେ ସାଜିଥାଏ ସୈନ୍ୟ ସେ ଭୂପାଳ ।
ଗହଣେ ନିଶାଣ ଉଡ଼େ ନାନାବାଦ୍ୟ ବାଜେ
ମହା ସମ୍ଭ୍ରମେ କନ୍ୟକା ରାଜ୍ୟେ ଭୀମ ବିଜେ ।
ଆସୁଛି ସେ ଦିନ ରାଜା କେଣ୍ଡ ବିନୋଦରେ
କାହିଁର ଏ ଶବ୍ଦ ବୋଲି ଚାରଙ୍କୁ ପଚାରେ ।
କରପତ୍ର ଯୋଡ଼ିକରି କହିଲେ ମୁନେହି
କେବଣ ଦେଶର ରାଜା ଆସେ ଦଣ୍ଡବାହି ।
ସଙ୍ଗେ ରଥ ଗଜ ଅଶ୍ୱ ଆବର ପଦାତି
ବହୁତ ଅଛନ୍ତି ସେହି ଥାଟେ ମହାରଥୀ ।
ମହା ପ୍ରତାପୀ ସେ ତାର ଅପାର ପ୍ରତିଜ୍ଞା
ଏ ଦିଗ ରାଜା ତାକୁ ନ କରନ୍ତି ଅବଜ୍ଞା ।
ଏହା ଶୁଣି କୋପକଲା ସେ କର୍ଣ୍ଣକେଶରୀ
ଯୋଦ୍ଧାଙ୍କୁ ବୋଇଲା ଆରେ ତାକୁ ଆଣ ଧରି
ରାଜାର ଆଜ୍ଞାରେ ଗଲା ସୁରସେନ ମନ୍ତ୍ରୀ
ସାଜିଲା ରଥ ବତ୍ରିଶଲକ୍ଷ ତାର ରଥୀ ।
ମହାମଦମତ୍ତ ଦନ୍ତା ପାଞ୍ଚଗୋଟି ନାଗ
ଚାଳିଶ ଖର୍ବ ସାଜିଲା ଚୋଖାର ତୁରଙ୍ଗ ।
ପୁଣି ବିଶାଶତ ଖର୍ବ ସାଜିଣ ସଇନି
ବାହାରିଲା ସୁରସେନ ରାଜା ଆଜ୍ଞା ଘେନି ।
ଭୀମ ଅଛନ୍ତି ମଳୟ ବସନ୍ତ ପର୍ବତେ
ଦଣ୍ଡଘେନି ସୁରସେନ ଗମିଲା ତ୍ୱରିତେ ।
ଗିରିବର ଶିଖରକୁ ଉଠନ୍ତେ ସେ ଯାଇଁ
କରରେ କୁନ୍ତ ଖଡ଼ଗ ମୂଷଳ ବୁଲାଇ ।
ଡାକରେ କମ୍ପି ଉଠଇ ଗିରି ବନ ଘୋର
ଡାକ ଛାଡ଼ନ୍ତି ଗର୍ବରେ କରି ରେ ରେକାର ।
କେବଣ ଦେଶର ତୁହି ଅଟୁସି ହୋ ରାୟ
ସ୍ୱହସ୍ତେ ଲୋଡ଼ିଲୁ କିପାଁ ମରଣ ଉପାୟ ।
ବିନା ବାରତାରେ କିପାଁ ପଶିଲୁ ଏ ରାଜ୍ୟ
ନ ଜାଣୁ କି ଛନ୍ତି କର୍ଣ୍ଣକେଶରୀ ଯେ ରାଜ ।
ରାଜାଧିରାଜେଶ୍ୱର ସେ କକ୍ଷା ଜଗଜ୍ଜେଠି
ପଶ୍ଚିମ ଦିଗେ ଚମକ ପଡ଼େ ଯା ନାଁ ଗୋଟି ।
ଦେଶାଉର ବାରତା କି ନ ଦେଲେ ତୁମ୍ଭଙ୍କୁ
ମଗଧେଶ୍ୱର ନ ପାରିଲା ପଶି ଏ ରାଜ୍ୟକୁ ।

ପ୍ରାଣେ ଆଶାଥିଲେ ତୁମ୍ଭେ ପଶରେ ଶରଣ
ନୋହିଲେ ତୋ ପ୍ରାଣଗୋଟି ଗଲା ଅକାରଣ
ପୁଣି ପୁଣି ପ୍ରତିଜ୍ଞା ସେ ଧର୍ମ ଛାଡ଼ି କରେ
ପୃଥିବୀ ଉଛୁଳେ ହସ୍ତୀ ଘଣ୍ଟି ଶବଦରେ ।
ଶୁଣି ଭୀମ ଚକ୍ରପ୍ରାୟେ ବୁଲାଇଲା ଆଖି
କେଶରୀ ଉଠିଲା କି ସେ ଗଜବଳ ଦେଖି ।
ଫଣା ବିସ୍ତାରି ଯେସନେ ଗରଜନ୍ତି ଅହି
ଖଗ ଦେଖିଣ ପଶନ୍ତି ଯେହ୍ନେ ଗର୍ତ୍ତେ ଯାଇ ।
ତେସନ ଏକା ପାଣ୍ଡବ ଉଠେ ଗଳଗାଜି
ଘୁଞ୍ଚିଲେ କର୍ଣ୍ଣକେଶରୀ ଥାଟ ସର୍ବେ ଭାଜି ।
କାଳଦଣ୍ଡ ଘେନି ଯଥା ବିଜେ ନାଶକର
ସେ ରୂପେ ଭୀମସେନଙ୍କ ତେଜ ପରଖର ।
ଗଦା ବୁଲାନ୍ତେ ପୃଥିବୀ ଉଲ୍‌କାଘାତ ପ୍ରାୟେ
ଦେଖି ସୈନ୍ୟ ପଳାଇଲେ କରି ମହାଭୟେ ।
ପଳାନ୍ତେ ଭୀମ ତାହାଙ୍କୁ କରନ୍ତି ପ୍ରହାର
ରଥ ଗଜ ଅଶ୍ୱ ବହୁ ପଡ଼ି ହେଲେ ଚୂର ।
ରଣେ ମନ୍ଥଇ ପାଣ୍ଡବ ବୀରବର ଏକା
ପଶିଲେ ସଂଗ୍ରାମ ମଧ୍ୟେ ସେ ବୀର ନିଃଶଙ୍କା ।
ଲେଉଟି ଯୋଦ୍ଧାଏ ଶର ବିନ୍ଧନ୍ତେ ପଛରୁ
ସେ ଶର ସବୁ ଆସିବା ଦେଖିଣ ଦୂରରୁ ।
ବାମଅଙ୍ଗ ପାତିଦିଏ ଭୀମ ମହାବଳୀ
ଯୋଦ୍ଧାଙ୍କ ଅସ୍ତ୍ର ନ ଭେଦେ ବାଜି ହୁଏ ଧୂଳି ।
ଗୋଡ଼ାଇ ଭୀମ ମାଇଲେ ତାଙ୍କୁ ବଜ୍ରମୁଠ
ଦୁର୍ଭାର ସୈନ୍ୟ ପଡ଼ନ୍ତି ପାଇ ଘୋର ଆଘାତ ।
ଶସ୍ତ୍ର ଭେଦ ନ ହୁଅଇ ଯେଉଁ ଭୀମ କାୟେ
ଯାହାର କୋପକୁ ଯମ କରଇଟି ଭୟେ ।
ମାନସ ମାତ୍ରକେ ତାର ସାକ୍ଷାତେ କେ ରହୁ
ବୃକୋଦର ମୂର୍ତ୍ତି ଦେଖି କାର ଭୟ ନୋହୁ ।
ଅନେକ ସୈନ୍ୟଙ୍କ ପ୍ରାଣ ନେଲାକ ଗୋଡ଼ାଇଁ
ବେନି ଯୋଜନ ପର୍ଯ୍ୟନ୍ତ ଠାବ କାହିଁ ନାହିଁ ।
ସୈନ୍ୟଙ୍କ ମରଣ ଦେଖି ମନ୍ତ୍ରୀ ଭୟ ପାଇ
ଦଶନଖ ମୁଖେ ଭରି ଶରଣ ମାଗଇ ।
ଶରଣ ରଖ ବୋଲିଣ ଫୁକାରେ ନିସତେ
ଧାଇଁ ତାର କେଶ ଭୀମ ଧରି ବାମହସ୍ତେ ।
ଦକ୍ଷିଣ କରେ ଚାପୁଡ଼େ ତାକୁ ଦ୍ୟନ୍ତେ ମାରି
ପଡ଼ିଲା ସେ ମନ୍ତ୍ରୀବର ରକତ ଉଦ୍‌ଗାରି ।
ରାଜାର ପାଶେ କହିଲେ ଯାଇଁ ଚାରଗଣ
ଦଣ୍ଡଘେନି ପଡ଼ିଲାକ ମନ୍ତ୍ରୀ କରି ରଣ ।
ଶୁଣି ବିରସ ହୋଇଲା କେଶରୀ ନୃପତି
ହା ହା ମନ୍ତ୍ରୀ ବୋଲି ରାଜା ପଡ଼ିଲାକ କ୍ଷିତି ।
ରାଜାର ଶୋକ ଦେଖିଣ ତା ଜ୍ୟେଷ୍ଠ ନନ୍ଦନ
ତାହାର ନାମ ଅଟଇ ଜାଣ ରତୁପନ ।
ରାଜାକୁ ସମ୍ଭାଷି କରେ ପ୍ରତିଜ୍ଞା ସେ ବାଳ
ମୋହର ଥାନ୍ତେ ହେ ପିତା କିମ୍ପା ତୁମ୍ଭେ ଭାଳ ।
ସାଷ୍ଟାମ ହୋଇଣ ଏବେ ବସ ନୃପମଣି
ଆଜ୍ଞାଦିଅ ମୋତେ ଆସେ ସେ ବୀରକୁ ଜିଣି
ବହୁ ପ୍ରତିଜ୍ଞା କରନ୍ତେ ଆଜ୍ଞା ଦେଲେ ରାଜା
ଆଜ୍ଞା ଦିଅନ୍ତେ କୁମର ସୈନ୍ୟ କଲା ସଜ୍ଜା ।
ଦଣ୍ଡ ସଜାଇ ସେ କର୍ଣ୍ଣ କେଶରୀର ଚାଟ
ରେ ରେ କାର କରି ପାଶେ ଭୀମସେନ ଥାଟ ।
ରାଜାର ଏଭଳି ବେଗେ ହୋଇଲେ ବାହାର
ବେନିଥାଟ ଭେଟ ହେଲେ ନଗ୍ରର ଭିତର ।
ଭୀମ କୃତାନ୍ତକ ମନ୍ତ୍ରୀ କହେ ସେ ବାଳକୁ
ଏତେ ସୈନ୍ୟ ମରାଇଣ ଆସୁ ମରିବାକୁ ।
ଦେଶାଉର କି ବାରତା ନ କହିଲେ ତୋତେ
ଭୀମ ପଶ୍ଚିମ ବରଣେ ଆଜ୍ଞା ଯଜ୍ଞ ଅର୍ଥେ ।
ଜରାକୁ ବଧିଲା କରି ସେ ମାଲ ସଂଗ୍ରାମ
ଯମ ଉପରେ ବୋଲାଏ ଯେ ଦ୍ୱିତୀୟ ଯମ ।
ବାହୁଡ଼ି କହ ତୋହର ପିତାର ଅଗ୍ରତେ
ଜ୍ଞାନ ଥାଉଁ ଥାଉଁ ନାଶ ଯିବରେ କେମନ୍ତେ ।
ତଥ୍ୟ ବାରତା ପାଇଣ ଗଲା ରତୁପନ
ପିତାର ଛାମୁରେ ବୋଲେ କରି ଦରଶନ ।
ହେ ପିତା ଆସନ ଗୋଟି ବେଗେ ତ୍ୟାଗକରି
ଚାଲ ଭୀମ ଠାକୁରଙ୍କୁ ଦରଶନ କରି ।
ଜରା ବଧିଲେ ସଂସାର ଜନଙ୍କର ହିତେ
ପଶ୍ଚିମ ରାଜା ବରନ୍ତି ଯଜ୍ଞର ନିମନ୍ତେ ।
ଭକତ ବତ୍ସଳ ନାଥ ଶରଣ ପଞ୍ଜର
କାଳ ଦଣ୍ଡଧର କୃଷ୍ଣ ସାହା ଯାହାଙ୍କର ।
ଚାଳିଶସସ୍ର ରାଜାଙ୍କୁ ଅଇଲେଣି ସାଧି
ପାଣ୍ଡବଙ୍କ ତୁଲେ ଆମ୍ଭେ କି ହେବା ବିରୋଧି
ପଶ୍ଚିମ ଦିଗେ ଛରାହୁଁ ନାହିଁ ବଳବନ୍ତା
ଏ ତାକୁ ସାଧିଲା ଯାକୁ କେ ଅଛି ଶକତା ।
ପୁତ୍ରର ବଚନ ଶୁଣି ସେ କର୍ଣ୍ଣକେଶରୀ
ଉଠିଲାକ ଆସ୍ଥାନକୁ ବେଗେ ତ୍ୟାଗକରି ।
ସଙ୍ଗରେ ଅଛନ୍ତି ତାର ପଚିଶ ଭାରିଯା
ଶରଣ ଫୁକାର କହି ଯାଏ ମହାରାଜା ।
ଗଳଦେଶରେ କୁଠାର ଦନ୍ତରେ ତିରଣ
ବିନୟେବୋଲେ ମୁଁ ଜନ୍ମେଜନ୍ମେ ତୋ ଶରଣ
ଆନନ୍ଦରେ ଅଶ୍ରୁଜଳ ବହେ ବେନିନେତ୍ର
ପୁଣ ପୁଣ ପ୍ରଣମେ ସେ ଭୀମ ପଦାଗ୍ରତ ।
ମରୁତ ସାରଥି ଦେଖି କହଇ ବାରତା
ପଶ୍ଚିମଦିଗ ରାଜାଙ୍କ ମଧ୍ୟେ ଏ ମହତା ।

ଏ ରାଜା ଜାଣି ନ ପାରି ତୋହର ପ୍ରତିଜ୍ଞା
ସେ ହେତୁ କରିଲା ଏଣୁ ତୋ ବାକ୍ୟ ଅବଜ୍ଞା
ମରୁତ ସାରଥି ବାକ୍ୟେ ଭୀମ ଲଭି ଶାନ୍ତି
ବୋଲେ ଉଠ ହେ ରାଜନ ମନୁ ଗଲା ଭ୍ରାନ୍ତି
ଆଜ୍ଞା ପ୍ରମାଣେ ଉଠନ୍ତେ ସେହି ନରମଣି
ସନ୍ନିଧିକୁ ଆଶ୍ୱାସିଣ ତାକୁ ଡାକିଆଣି ।
ଅକ୍ଷତ ଗୁଆ ତାହାକୁ ଦେଲେ ବୃକୋଦର
ବୋଇଲା ଏକ୍ଷଣି ତୁହି ସସୈନ୍ୟେ ବାହାର ।
ଯାଗହେତୁ ନିମନ୍ତ୍ରି ମୁଁ ଅଇଲି ରାଜାଙ୍କୁ
ଥାଟ ସୈନ୍ୟ ଘେନି ଚଳ ତୁ ଇନ୍ଦ୍ରପ୍ରସ୍ଥକୁ ।
ଦେଖା ଦରଶନୀ ଧନ ଘେନି ସେହିକ୍ଷଣି
ଆଜ୍ଞା ପ୍ରମାଣେ ଚଳିଲା ସେହି ନୃପମଣି ।
ତାକୁ ଚଳାଇ ଚଳିଲେ ପାଣ୍ଡବେ ସତ୍ୱରେ
ଯାଇ ପ୍ରବେଶ ହୋଇଲେ କର୍ଣ୍ଣାଟ ଦେଶରେ
ସେ ଦେଶର ରାମଚନ୍ଦ୍ର ନାମେ ନରପତି
ପ୍ରତାପୀ ରାଜା ସେ ବିଷ୍ଣୁ ବଂଶେ ଅଧିପତି ।
ମାନିନୀ ନଦୀକୂଳରେ କଟକ ତାହାର
ବଡ଼ ଧନୀ ସେହି ରାଜା ପଶ୍ଚିମ ଦିଗର ।
ସେ ରାଜାକୁ ତିନିଶତ ଖଟେ ପାରିଦଣ୍ଡ
ବେନିଶତ ଯୁଣ ମାଡ଼ିବସେ ରାଜ୍ୟଖଣ୍ଡ ।
ଭୀମ ବିଜେ ସେ ମାନିନୀ ସରିତର କୂଳେ
ତହିଁ ପଶି ସ୍ନାନ କଲେ ଆହ୍ନିକର ବେଳେ ।
ବୀର ତୂର ଶବ୍ଦ ଶୁଭେ ବଡ଼ଇ ଗହଳ
ବ୍ରହ୍ମାଣ୍ଡ କମ୍ପେ ମେଦିନୀ ହୁଏ ଦଳ ଦଳ ।
ସମଦଣ୍ଡ ଘେନି ରାଜା ଆସ୍ଥାନରେ ବିଜେ
ସେ ଶବ୍ଦ ଶୁଣି ମନ୍ତ୍ରୀକୁ ପୁଚ୍ଛେ ଏ କି ବାଜେ
ଶୁଣିଣ ମନ୍ତ୍ରୀ କହଇ ଶୁଣ ହେ ରାଜନ
କ୍ଷତ୍ରୀବର ସୁନ୍ଦର ଯେ ବୀର ଭୀମସେନ ।
ଜରାସନ୍ଧକୁ ଯେ କଲା ଜୀବନେ ନିଧନ
ପଶ୍ଚିମେ ସେ ଆସିଛନ୍ତି ରାଜା ନିମନ୍ତ୍ରିଣ ।
ରାଜସୂୟ ଯାଗସ୍ଥାନେ ଯିବେ ଲକ୍ଷେ ରାଜା
ଦେବଙ୍କୁ ଘେନିଣ ବିଜେ କରିବେ ବିଡ଼ୋଜା
ଅନେକ ଉତ୍ସବ ଦେବ ଇନ୍ଦ୍ରପ୍ରସ୍ଥେ ହେବ
ସାତବଂଶ ଘେନି ତହିଁ ଯିବ ବାସୁଦେବ ।
ସୁପଣ୍ଡିତ ମନ୍ତ୍ରୀମଣି ବୁଝାଇ କହିଲା
ଶୁଣିକରି ରାମରାଜା ସନ୍ତୁଷ୍ଟ ହୋଇଲା ।
ପାଟଛତ୍ର ଘେନି ବିଜେକଲା ରାମରାଜା
ଚାମର ହସ୍ତରେ ଗଲେ ତା ବେନି ଭାରିଯା ।
ଭୀମସେନଙ୍କୁ ଦେଖିଲା ରାଜା ଖଣ୍ଡେଦୂରୁ
ଦେହୁ ଝାଳ ବହେ ନମସ୍କାର କରୁ କରୁ ।

ବିନୟଭାବେ ଅନେକ ସ୍ତୁତି ସେ କରିଲା
ସସ୍ତ୍ର ଦଣ୍ଡବତ କରି ଚରଣେ ଶୁତିଲା ।
ପାଦେ ପଡ଼ି ନିଉଛାଳି କରେ ନୃପମଣି
ଝରେ ଚାମର ଢାଳନ୍ତି ରାଜାପାଟରାଣୀ ।
ସେ ରାମରାଜା ଭକତି ଦେଖିଣ ପାବନି
ପ୍ରଶଂସା କରି କହିଲେ ମହିମା ତୋ ଧନି ।
ଦିଗମ୍ବର ରାଜା ହୋଇ ପାରିଲୁ ତୁ ଚିହ୍ନି
ଭକତି ଭାବରେ ବଶକଲୁ ମୋତେ ପୁଣି ।
ନ ଜାଣି ନାଶ ହୋଇଲେ ଅନେକ ନୃପତି
କିପରି ଚିହ୍ନିଲୁ ମୋତେ କରୁ ଏତେ ଭକ୍ତି ।
ଏହା ଶୁଣି ବୋଇଲାକ କର୍ଣ୍ଣାଟ ଈଶ୍ୱର
ଜରାପୁରେ କରିଥିଲ ଆମ୍ଭଙ୍କୁ ଉଦ୍ଧାର ।
ଜରାନେଇ ଯାଇଥିଲା ଆମ୍ଭଙ୍କୁ ଯେ ବାନ୍ଧି
ଶିକୁଳି ପିନ୍ଧାଇ ପୁରେ କରିଥିଲା ବନ୍ଦୀ ।
ସଂସାର ଜନଙ୍କ ହିତେ ଜରା ଦର୍ପ ଧ୍ୱଂସି
ତୁମ୍ଭେ ଉଦ୍ଧାରିଲ କାଟି ଯମ କାଳଫାଶି ।
ସେ ଉପକାର କି ମୋର ପାଶୋରିବ ମନ
ସେ ଦିନୁଁ ଚିହ୍ନିଛି ତୁମ୍ଭେ କଲ ପ୍ରାଣଦାନ ।
ଅଶ୍ୱମେଧ ଯାଗ ମୁହିଁ କରିଥିଲି ପୂର୍ବେ
ତେଣୁ ତବ ପାଦ ରାଜ୍ୟେ ପଡ଼ିଲାକ ଏବେ ।
ମୋ ରାଜ୍ୟ ଦୁଷ୍କୃତ ସବୁ ହୋଇଲା ଧ୍ୱଂସନ
ନୟନେ ଦେଖିଲି ଆଜ ଦ୍ୱିତୀ ନିରଞ୍ଜନ ।
ଭୀମସେନ ବିଜେକଲେ କର୍ଣ୍ଣାଟ ମଣ୍ଡଳେ
ରାମେଶ୍ୱର ଲିଙ୍ଗ ଦେଖି ମାନିନୀର କୂଳେ ।
କରପତ୍ର ଯୋଡ଼ି ବୋଲେ ଶ୍ରୀପତି ନୃପତି
ସୀତାଙ୍କର ମାନଭଙ୍ଗ ହୋଇଥିଲା ଏଥି ।
ଏହା କହି ମାରୁତିଙ୍କୁ ପୁରେ ଘେନିଗଲା
ଆପଣାର ସିଂହାସନେ ନେଇ ବସାଇଲା ।
ମଣୋହିର ସଞ୍ଜ ବେଗେ ଦେଲା ନରମଣି
ଚାମର ଘେନି ଭୀମକୁ ଖଟିଲାକ ପୁଣି ।
ଅଇବ୍ରତ ସୂପକାର ଭୀମସଙ୍ଗେ ଥିଲେ
ସେ ନଗରେ ପଶି ବେଗେ ମଣୋହି ରାନ୍ଧିଲେ
ଦୋହରା ଯାହାକୁ ହୋଇଅଛନ୍ତି ପ୍ରସନ୍ନ
ନିମିଷକେ ସୂପକାର କରିଲେ ରନ୍ଧନ ।
ଷାଠିଏ ପଉଟି ଅନ୍ନ ଆବର ବ୍ୟଞ୍ଜନ
ଭୋଜନ କରି ତୃପତ ହେଲେ ଭୀମସେନ ।
ମଣୋହି ସାରିଣ ଭୀମ କଲେ ଆଚମନ
ସଇନିମାନେ ହରଷେ କରିଲେ ଭୋଜନ ।
ବାଜିଲା ଢୋଲ ଟମକ ଉଡ଼ିଲା ନିଶାଣ
ଶ୍ରୀରାମରାଜାକୁ ଭୀମ ଦେଲେ ନିମନ୍ତ୍ରଣ ।

ଯେତେକ ଛନ୍ତି ତୋହର ପାରିଦଣ୍ଡ ସେନି
ଇନ୍ଦ୍ରପ୍ରସ୍ଥେ ଯାଅ ଦେଖା ଦରଶନୀ ଘେନି ।
ଜୟ ଜୟ ଜଗନ୍ନାଥ ଅଗତିର ଗତି
ଜୟ ଜୟ ନୀଳାଦ୍ରି ବିହାରୀ ଲକ୍ଷ୍ମୀପତି ।
ତୁମ୍ଭ କମଳ ଚରଣେ ରହୁ ମୋର ଆଶ
ଏହି ଭିକ୍ଷା ମାଗେ ସଦା ଶ୍ରୀଶାରଳାଦାସ ।



## ଭୀମଙ୍କର କିରାତ ଓ କାମପାଳ ସଙ୍ଗେ ଯୁଦ୍ଧ ଏବଂ ଜୟଲାଭ ଓ ନିମନ୍ତ୍ରଣ

ଏଥୁ ଅନନ୍ତରେ ପୁଣି ମନୁ ନରପତି
ଅଗସ୍ତି ମୁନିଙ୍କ ପାଦେ କରିଣ ପ୍ରଣତି ।
ପୁଚ୍ଛାକଲେ କର୍ଣ୍ଣାଟରେ ଶ୍ରୀରାମ ନିମନ୍ତ୍ରି
ପୁଣି କେଉଁଦେଶେ ଗଲେ ପବନ ସନ୍ତତି ।
ଅଗସ୍ତି କହିଲେ ଶୁଣ ମନୁ ଦଣ୍ଡଧର
ରାମରାଜାକୁ ବିଦାୟ ମାଗି ବୃକୋଦର ।
ନିମନ୍ତ୍ରଣ ଦେଇ ତହୁଁ ଗଲେ ଭୀମସେନ
ଦଣ୍ଡ ଘେନିଣ ପଶିଲେ ବିସ୍ତୁ ବାତ ବନ ।
ସେହି ରାଜ୍ୟରେ କିରାତସେନ ଚକ୍ରବର୍ତ୍ତୀ
ଭୀମ ଯାନ୍ତେ ଉଗାଳିଲା ହୋଇ କୋପମୂର୍ତ୍ତି
ବୋଲେ କି ଦର୍ପ ତୋହର ବିସ୍ତୁ ବନେ ପଶୁ
ମାନବ ଜନ୍ମ ହୋଇଣ ଏଡ଼େକ ଭରସୁ ।
ମରଣ ଇଚ୍ଛି ଅଇଲ ଏତେକ ପରାଣୀ
ବୁଝିଲି ମରିବ ସର୍ବେ ଅଇଲ ନ ଜାଣି ।
ମାର ମାର ଶବ୍ଦକରି ଓଗାଳିଲେ ସେନି
ମାରନ୍ତି ପରିଘ ଆଉ ନାରାଚାଦି ଘେନି ।
ଦିବା ଶେଷ ଦ୍ୱିପ୍ରହର ହୋଇଅଛି ରାତି
ଯୁକତେ କିରାତ ଅଟେ ସେ ବନାଧିପତି ।
ବିଶେଷ ବନଚର ସେ ଏ ଯେ ପରଦେଶୀ
ବାୟୁବେଗେ ସେ ଜନ୍ତୁଙ୍କୁ ପାତେ କୂଟଫାଶି ।
ଗିରିବରେ ଉଠିଣ ଯେ କିରାତ ଭୂଦେବ
ବିନ୍ଧଇ ନାରାଚ ସେହି ମନେ କରି ଗର୍ବ ।
ରଣ ରଙ୍ଗରେ ଧାନ୍ଦୋଳା ଶବରେ ଜାଣନ୍ତି
ବହୁ ଶର ବିନ୍ଧି ଭୀମ ସୈନ୍ୟ ପୀଡାଦ୍ୟନ୍ତି ।
ରାତ୍ରେ କିରାତ ସୈନ୍ୟଙ୍କୁ ଦେଖିଣ ନ ପାରି
ଭୀମଙ୍କ ସୈନ୍ୟ ଆସନ୍ତି ତହୁଁ ଅପସରି ।
ବନସ୍ତରୁ ନିଜ ଦଳ ଆସନ୍ତେଣ ଭାଜି
ରାଗେ ମାରୁତି ଉଠିଲା ତହୁଁ ଗଜଗାଜି ।
ମରୁତ ସାରଥିକୁ ସେ ବୋଇଲା ଏସନ
ଭୋପିତା ମୋହର ରଥ ବାହା ତୁ ବହନ ।
ଭୀମକୁ ବୁଝାଇଲା ସେ ମରୁତ ସାରଥି
ଯୁକତେ ଧନୁମାସ ଏ ଅମାବାସ୍ୟା ରାତି ।
ଏ ପର୍ବତେ କିରାତେଶ ତୋତେ ଅଛି ଭେଟି
ପର୍ବତ ଉପରେ ଥାଇ ଶର କରେ ବୃଷ୍ଟି ।
ରାତ୍ରରେ କି ଯୁଦ୍ଧ ତୁହି କରିବୁ ପାବନି
ପ୍ରଭାତେ ଆସିବୁ ପାହୁ ଆଜର ରଜନୀ ।
ତେଣେ ନାରାଚ ସନ୍ଧିଣ କିରାତ ରାଜନ
ଭୀମସୈନ୍ୟ ଉପରକୁ କଲା ବରଷଣ ।
ଅଗ୍ରଗାମୀ ହୋଇଲେକ ଯେତେ ଭୀମସୈନ୍ୟ
ଶରାଘାତରେ ରାତ୍ରକେ ଲଭିଲେ କଷଣ ।
ରକତ ଧାରା ବହିଲା ସବୁଙ୍କରି କାୟେ
ଶରୀର ଦିଶେ ମନ୍ଦାର କୁସୁମର ପ୍ରାୟେ ।
ପଳାଇବା ବାଟ ନାହିଁ ହୋଇଲେ ବିମୁଖ
ସେ ରାତ୍ରକ ଯୁଗ ପ୍ରାୟେ ମଣିଲେ ସେ ଦୁଃଖ ।
ଦୁଃଖରେ ସର୍ବେ ଜଣାନ୍ତି ରକ୍ଷାକର ଭୀମ
ତୁହି ଦେବ ପ୍ରତଜ୍ଞାରେ ଅଟୁ ଦ୍ୱିତୀୟମ ।
ମେରୁ ଆଶ୍ରିତେ ରହିଣ ପାଇଲୁ ଏ କଷ୍ଟ
ବିନାଦୋଷେ ଦଣ୍ଡ ଦିଏ ରାତ୍ରେ କେ ପାପିଷ୍ଠ
ସୈନ୍ୟଙ୍କ ବିକଳ ଶୁଣି ମରୁତ ସାରଥି
ତିମିରନାଶନ ମଣି କାଢ଼ି ତତ୍କ୍ଷଣାନ୍ତି ।
ଭୀମଙ୍କ ହୃଦଦେଶରେ ତାହା ଲମ୍ବାଇଲା
ସେ ମଣିର ତେଜ ବ୍ୟାପି ଅନ୍ଧାର ନାଶିଲା ।
ସେ ବନଯାକ ହୋଇଲା ଯେ ଆଲୋକମୟେ
ଦିବସକାଳରେ ଯେହ୍ନେ ସବୁ ଦେଖାଯାଏ ।
ସେପରି ଦିଶନ୍ତେ ଭୀମ ଚୌଦିଗ ଚାହିଁଲେ
କିରାତ ସୈନ୍ୟ ଦିଶିଲେ ଯହିଁ ଲୁଚିଥିଲେ ।
ରଥୁ ଡେଇଁପଡ଼ି ଭୀମ ଗଦାବର ଘେନି
ଧାଇଁଲେ ସେ ବୃକୋଦର କାଳମୂର୍ତ୍ତି ଜାଣି ।
ବୃକୋଦର ମୂର୍ତ୍ତି ଧରି ବିକାଶିଲେ କାୟେ
କିରାତ ସୈନ୍ୟ ଦିଶିଲେ ଛାଗପଲ ପ୍ରାୟେ ।
ଗଦାବର ବୁଲାଇଣ ଧାଇଁ ଭୀମସେନ
ପିଟନ୍ତେ ତହିଁ ଲୋଟିଲେ କିରାତର ସୈନ୍ୟ ।
ପର୍ବତ ପରି ଦିଶଇ ଭୀମର ଶରୀର
ରଜନୀରେ ଦେଖାଯାନ୍ତି ଯେହ୍ନେ ଶଶଧର ।
ଗଗନମଣ୍ଡଳେ ଯାର ଲାଗେ ବେନିବାହୁ
ରୋହିଣୀବଲ୍ଲଭ ଦେଖି ଯେହ୍ନେ ଧାଏଁ ରାହୁ
ଏକାଳେ ପାଣ୍ଡବେ ତହିଁ କଲେ ରଣ ରଙ୍ଗ
ରକତେ ଜର୍ଜର ହୁଏ କିରାତର ଅଙ୍ଗ ।
ସଂଗ୍ରାମରେ ନିର୍ଭୟ ଯେ ଭୀମ ବୀରମଣି
ଗଜକୁ ସେ କଚାଡ଼ଇ ମୃଗଯୂଥ ଜାଣି ।

କଣ୍ଠ ଗର୍ଜ୍ଜନେ ପଡ଼ନ୍ତି ମହା ମହା ନାଗେ
ସଂଗ୍ରାମେ ଛାଡ଼ିଲେ ମନୁ ଉପରୋଧ ରାଗେ
ଏକା ଜଣକେ ମଛିଲେ କିରାତ ସଇନି
ପଳାଏ କିରାତେଶ୍ୱର ସସ୍ର ଯୋଦ୍ଧା ଘେନି ।
କୋପେ ବନର ପର୍ବତ ପକାଇଲା ଭାଜି
କିରାତ ସୈନ୍ୟଙ୍କୁ ଭୀମ ଧାଏଁ ଗଳଗାଜି ।
ରଥ ଗଜ ଅଶ୍ୱ ସୈନ୍ୟ କେହି ନାହିଁ ସାହା
ଏକା ଗୋଡାଇ ପିଟଇ ହିଡ଼ିମ୍ବିକୀ ନାହା ।
ସହସ୍ରଯୋଦ୍ଧାଙ୍କୁ ଘେନି ପଳାଇ କିରାତ
କାଉଁରୀ ଦେଶରେ ଯାଇଁ ହେଲା ଉପଗତ ।
କାଉଁରୀ ଦେଶର ରାଜା ନାମ କାମପାଳ
ତାକୁ ଶରଣ ମାଗଇ କିରାତ ଭୂପାଳ ।
ଆହେ କାମପାଳ ତୁମ୍ଭେ ରକ୍ଷାକର ମୋତେ
ଦଣ୍ଡଭଗ୍ନେ ପଳାଇ ମୁଁ ଅଇଲି ଗୁପତେ ।
ଦଶଲକ୍ଷ ରଥୀ ପାଞ୍ଚଲକ୍ଷ ମଲେ ନାଗ
କ୍ଷଉଣୀ ପଦାତି ନବମର୍ଭୁତ ତୁରଙ୍ଗ ।
ଏତେ ସୈନ୍ୟ ମରାଇଲି ମୁହିଁ ଅକାରଣେ
କେଉଁଠୁ ଆସିଣ ନାଶ କଲା ଯୋଦ୍ଧା ଜଣେ ।
କାମପାଳ ବୋଇଲା ତୁ ରହସି ନିଶ୍ଚିନ୍ତେ
କେ ତୋହର ଶତ୍ରୁ ତାକୁ ଦେଖେ ମୁହିଁନେତ୍ରେ ।
ଏଥୁଅନ୍ତେ ସେ ପାଣ୍ଡବ କାଳଦଣ୍ଡ ପାଣି
କାଉଁରୀ ଦେଶେ ପ୍ରବେଶ ହେଲେ ସେହିକ୍ଷଣି ।
ରଥ ଗଜ ଅଶ୍ୱ କିଛି ସଙ୍ଗେ ନାହିଁ ସାହା
ମନ୍ଦର ପର୍ବତ ପରି ଦିଶେ ଭୀମ କାୟା ।
ଧାଇଁ ମାରୁତି ପଶିଲା କଟକ ଭିତରେ
କାଳଚକ୍ର ଆଖି ଦେଖି ପଳାଇଣ ଡରେ ।
କହିଲେ ଡଗରେ ଶୁଣ ନୃପ କାମପାଳ
କାଳଦେବ ବିଜେକଲା ତୋ ରାଜ୍ୟ ସମ୍ଭାଳ ।
ଦେଶାଉର ମୁଖୁ ବାର୍ତ୍ତା ପାଇ ନରନାଥ
ବିଜେକଲା ବେଗେ ସାଜି ଲୌହମୟ ରଥ ।
ସହସ୍ରେ ଶାର୍ଦ୍ଦୂଳ ତାର ରଥେ ଯୋଚା ଅଛି
ହରିଙ୍କି ଘେନିଣ ପୃଷ୍ଠେ ଖଗ କି ଉଡୁଛି ।
ତେସନକ ଶୋଭା କାମପାଳ ନରପତି
ବିଜେକଲା ଘେନି ବେନି ମରଭୁତ ରଥୀ ।
ସମସ୍ତଙ୍କ ରଥେ ଯୋଚା ହୋଇଛି ଶାର୍ଦ୍ଦୂଳ
ଏକମୁଖ ହୋଇ ସବୁ ଉଠିଲେକ ବଳ ।
ଚଢ଼ିଯାନ୍ତି ସହସ୍ରେକ ଯୋଦ୍ଧା ମତ୍ତହସ୍ତୀ
କିରାତେଶ ଯାଏ କାମପାଳ ପଛକତି ।
ଚାରିଶତ ପାରିଦଣ୍ଡ କାମପାଳ ତୁଲେ
ବାର କ୍ଷଉଣୀ ପଦାତି ଭୀମ ଉଗାଳିଲେ ।
ବନସ୍ତର ଭିତରେ ସେ ସଇନି ଗହଳ
ତାଙ୍କର ସୈନ୍ୟ ଦିଶନ୍ତି ଯେହ୍ନେ ବିନ୍ଧ୍ୟମାଳ ।
ସେ କାମପାଳ ସଇନି ବେଢ଼ିଣ ଭୀମକୁ
ନିରାଟେ ଶର ବିନ୍ଧନ୍ତେ ଭୀମ ଉପରକୁ ।
କେ ସସ୍ର କେ ଦ୍ୱିସହସ୍ର ବିନ୍ଧେ ଚୋଖାବାଣ
ଜ୍ୱାଳାବଳି ଶର ମାରି କଲେ ଘୋରରଣ ।
ଗୁରୁତର ଯୁଦ୍ଧ ଦେଖି ପାଣ୍ଡବ ତରୁଣ
ଚିନ୍ତି ତୁଳସୀବଲ୍ଲଭ ବୋଲେ ତୁମ୍ଭେ ଶୁଣ ।
ହେ ଦେବ ତୁମ୍ଭେ ଯେ ଆଜ୍ଞା ମୋତେ ଥିଲ ଦେଇ
ତାହା ମୁଁ ଭ୍ରଷ୍ଟ କରୁଛି ମୋର ଦୋଷ ନାହିଁ ।
ରାଜୁସିୟାଗ ପଛେ ନ କରନ୍ତୁ ଠାକୁର
ପଣ୍ଡୁ ବ୍ରହ୍ମହତ୍ୟା ଦୋଷ ନୋହୁ ପଛେ ପାର ।
ନ ରଖିବି ମାରିବି ମୁଁ ଆଜ ରାଜାଗଣ
ଆଦ୍ୟନ୍ତ କଥାକୁ ସାକ୍ଷୀ ଥାଅ ନାରାୟଣ ।
ନାରାୟଣ ସାକ୍ଷୀ ରଖି କାଳରୂପୀ ଭୀମ
ରେ ରେକାର ଶବ୍ଦ କରି କରିଲେ ସଂଗ୍ରାମ ।
ଧଇଲାକ ବୃକୋଦର ମୂର୍ତ୍ତି ବଳବନ୍ତା
ଗଗନ ଶିଖରେ ଯାଇ ଲାଗେ ତାର ମଥା ।
ପ୍ରତ୍ୟକ୍ଷେ ଶମନଦେବ ପବନ ସନ୍ତତି
ଶତସିଂହ ବର ଯୋଗୁଁ କଳେବର ମୂର୍ତ୍ତି ।
ଶୂଳ ବଜ୍ର ବ୍ରହ୍ମଶକ୍ତି ତାର ନାହିଁ ଭୟ
ବଜ୍ରେ ନିର୍ମାଣ ହୋଇଛି ଯେଉଁ ବୀର କାୟ ।
ମାଡ଼ି ବସିଲେ ଶତେକ ସିଂହ ଯାର ଅଙ୍ଗ
ତହିଁକି ତା ଭୟ ନାହିଁ ଶରୀର ଅଭଙ୍ଗ ।
ବାମଅଙ୍ଗ ଆଉଁସିଲେ ପ୍ରଚଣ୍ଡ ପବନ
ବୋଇଲେ ଏ ଅଙ୍ଗ ତୋର ବଜ୍ର ହେଉ ଭୀମ ।
ଯଦି ମନ୍ଦର ପଡ଼ିବ ତୋର ବାମଅଙ୍ଗ
ଚକ୍ରହିଁ ପଡ଼ିଲେ ଅଙ୍ଗ ନୋହିବ ତୋ ଭଙ୍ଗ ।
ପିତାର ବରରେ ଯେହି ସଂଗ୍ରାମେ ଦୁର୍ଜ୍ଜୟ
ଶରଣ ବୋଇଲେ ଯେହୁ ପେଶେ ଯମାଳୟ ।
ସଂଗ୍ରାମ ଦେଖିଲେ ଯେହୁ ତେଜଇ ଭୋଜନ
ସଂଗ୍ରାମ ଦେଖି ଯେ ବୀର ତେଜଇ ମୈଥୁନ ।
କଳିକାଳ କୃତାନ୍ତକ ଯାହାର ବୀରଧୁ
ହରିପ୍ରିୟା ନ ଛାଡ଼ନ୍ତି ଯେଉଁ ବୀର କନ୍ଧୁ ।
ଏ ମହୀର ଭାରା ସେହୁ ନିବାରିବା ଅର୍ଥେ
ପଞ୍ଚମୂର୍ତ୍ତି ସୃଜିଅଛି ବିଧାତା ଏ ମର୍ତ୍ତ୍ୟେ ।
ଏସନ ମହିମା ଯାର କହିଲେ ନ ସରି
ରଣେ ଧସାଇ ପଶିଲା ଗଦାବର ଧରି ।
ସଂଗ୍ରାମ ଦେଖିଲେ ଯାର ଉଲ୍ଲସଇ ମନ
ରଣରଙ୍କା ଯେହୁ ଥାଟ କରଇ ମନ୍ଥନ ।

କ୍ଷେପନ୍ତେ ଯାହାର ପାଦ ଗମେ ଚଞ୍ଚଳରେ
ମହାଖଳା ଦେଖି ଯେହ୍ନେ ପାଣ୍ଡବ ବିହରେ ।
ଗଦା ବୁଲାଇଣ ବୀର ପଶିଲାକ ଯାଇ
ରଣଧନ୍ଦୋଳା କରିଲା ସମ୍ମୁଖରେ ରହି ।
ବାଜେ ବିଜିଘୋଷ ବୀରତୂର ଯେ ଦାଉଣ୍ଡି
ପ୍ରବେଶି ଯୋଦ୍ଧାଙ୍କୁ ଦେଖି ନାଚନ୍ତି ଖେମୁଣ୍ଡି ।
ହିଡ଼ିମ୍ବି ବୀର ବଲ୍ଲଭ ଅଟେ ରଣରଙ୍ଗା
ପିଟିଲା କାଉଁରୀବଳ ମନୁ ତେଜି ଶଙ୍କା ।
ରାଜା ଆଜ୍ଞାରେ ପଳାଇ ନ ଯାନ୍ତି ସଇନି
ଏକ ପଡ଼ନ୍ତେ ଆରେକ ଧାଏଁ ଶସ୍ତ୍ର ଘେନି ।
ଭୀମଙ୍କ ଗଦାଘାତରେ ହେଉଛନ୍ତି ଚୂର
ହସ୍ତୀ ମାଡ଼ି ପଡ଼ନ୍ତି ଯେ ଯୋଦ୍ଧାର ଉପର ।
ମହାବାତେ ଯେଉଁପରି ଭାଙ୍ଗେ ରମ୍ଭାବନ
ତେହ୍ନେ ଲୋଟାଇଲେ ଭୀମ ବହୁତର ସୈନ୍ୟ
ପକ୍ଷ ଥିଲା ଗିରି ଯେହ୍ନେ ଆସିକରି ଧାଇଁ
ଯହିଁ ପଡ଼େ ସେଠାବରେ ସକଳ ନାଶଇ ।
ସେପରି ଡ଼ିଅଇଁ ତହିଁ ବୀର ବୃକୋଦର
ରଥ ଅଶ୍ୱପରେ ପଡ଼ି ହୁଅନ୍ତି ସେ ଚୂର ।
ଦୈତ୍ୟବଳ ଦେଖି ଯେହ୍ନେ ଧାମନ୍ତି ଚାମୁଣ୍ଡା
ସେରୂପେ ଧ୍ୱଂସେ ବଳକୁ ଭୀମ ପରଚଣ୍ଡା ।
ଶସ୍ତ୍ର ପଡ଼ି ନ ଭେଦଇ ଭୀମଙ୍କ ଶରୀରେ
ରଣେ ବିମୁଖ ହୋଇଲେ କାଉଁରୀର ବୀରେ ।
ସୈନ୍ୟଙ୍କ ଦୁର୍ଦ୍ଦଶା ଆଉ ମରିବାର ଦେଖି
କାମପାଳ ପଳାଇଲେ ସମର ଉପେକ୍ଷି ।
କହନ୍ତି ମନୁ ରାଜାକୁ ବିଜ୍ଞ ମୁନିବର
କାମାକ୍ଷୀ ବୋଲି ଦେବୀ ଯେ କାଉଁରୀ ଦେଶର
ପ୍ରତ୍ୟକ୍ଷରେ ମାତଙ୍ଗୀ ଯେ ଧରେ ଚାରିମୂର୍ତ୍ତି
ପ୍ରାତେ କୁମାରୀ ମଧ୍ୟାହ୍ନେ ବୃଦ୍ଧରୂପା ହୋନ୍ତି ।
ସନ୍ଧ୍ୟାକାଳେ ସେ କାମାକ୍ଷୀଦେବୀ କାମସେଣା
ନିଶାକାଳେ ସେ ମୋହିନୀ ଅଟେ ସର୍ବଜିଣା ।
ନିଶାରେ ଭ୍ରମି ଚାମୁଣ୍ଡା ରୂପେ ମାହେଶ୍ୱରୀ
ମୋହିନୀ ରୂପେ ସଂସାର ବଶ ସେହୁ କରି ।
କାଳାନ୍ତକ ଯୁଗାନ୍ତକ ଏହୁ ସର୍ବବିଦ୍ୟା
ସ୍ତମ୍ଭନ ମୋହନ ବଶ୍ୟ ଆଦି ମନ୍ତ୍ରସିଦ୍ଧା ।
ଧରଣ ଧାରଣ ଆଉ ଗାଢଣ ଗୁପତ
ମାୟାମୋହନ ଆଦି ସେ ଜାଣଇ ସମସ୍ତ ।
କାଉଁରୀର କାମାକ୍ଷୀ ସେ ଦେବୀ ଭଇରବୀ
କାମପାଳ ନୃପତି ସେ ଦେବୀ ପାଦେ ସେବି ।
ଅନାଦି ମାହେଶ୍ୱରୀ ଗୋ ଅଭୟ ଦାୟିନୀ
କାଉଁରୀ ମଣ୍ଡଳର ତୁ ଅଟୁ ଗୋ ମଣ୍ଡନି ।
ଶୀତାଂଶୁମଉଳି ଶୋହେ ଅଭୟା ମାତଙ୍ଗୀ
ବେଦ ମନ୍ତ୍ର ସାଧନୀ ଗୋ ପ୍ରସନ୍ନ ଶୁଭ୍ରାଙ୍ଗୀ ।
ସତ୍ୟ ତ୍ରେତୟା ଦ୍ୱାପର ତୁହି ଗୋ ପ୍ରସିଦ୍ଧି
ଜଳ ସ୍ଥଳ ଅନଳକୁ ତୁ ରଖୁ ରିପୁ ସାଧି ।
ସିଦ୍ଧ ସୁରଗଣ ତୋତେ କରନ୍ତି ଯେ ଆଶ
ସେମାନଙ୍କୁ ତାରି ତାଙ୍କ ଦୁର୍ଗତିକୁ ନାଶ ।
ବାଳୁତରୂପରେ ଦେବୀ ଖେଳ କୁତୂହଳେ
ମୋହିଲୁ ବାଳଖିଲ୍ୟାଙ୍କୁ ନୃତ୍ୟରସ ଭୋଳେ ।
ଅଭୟା ମାହେଶ୍ୱରୀ ଗୋ ପ୍ରସନ୍ନେ ସାନନ୍ଦେ
ତୋପାଦେ ଶରଣଗଲି ମୋତେ ଦୁଃଖ ନାଦେ
ଏହି ରୂପେ ବହୁସ୍ତୁତି କରିଣ ସେ ରାୟେ
କାଉଁରୀ କାମାକ୍ଷା ପାଦେ ଜଣାଏ ବିନୟେ ।
ରାଜାର କଷ୍ଟ ଦେଖିଣ ବିଜେ କାତ୍ୟାୟିନୀ
ବୋଇଲେ କି ନିମନ୍ତେ ତୁ ସେବୁ ନରମଣି ।
ରାଜାବୋଲେ ତୋ ପ୍ରସନ୍ନେ କାରେନାହିଁ ତ୍ରାସ
ଅଦୋଷେ କାହାକୁ ମୁହିଁ ନ କରେ ବିନାଶ ।
ତୋହର ପ୍ରସନ୍ନେ ମାତ ନ ଥିଲା ସେ ଭୟ
ତୋହର ପ୍ରସନ୍ନେ ମାତ ମୁହିଁ ସର୍ବଜୟ ।
ଅଭୟା ହିଙ୍ଗୁଳା ମାଗୋ ମୋତେ ସାହା ତୁହି
ତୋ ଡରେ ଏ ପୁରେ ପଶି ନ ପାରନ୍ତି କେହି ।
ସଦା କାଳଚକ୍ର ରଥେ ବୁଲାଇ ପ୍ରଚଣ୍ଡ
ମାଛି ପଡ଼ିଲେ ହୁଅଇ ସହସ୍ରେକ ଖଣ୍ଡ ।
କେଉଁ ରାଜା ଅଦଭୂତେ ପଶିଲା ମୋ ପୁରେ
ଯୁଦ୍ଧେ ନ ପାରିଲି ଦୟା ନ କଲୁ ମୋଠାରେ ।
ତୋ ପ୍ରସନ୍ନେ ସର୍ବଜୟୀ ଅଭୟା କାମାକ୍ଷୀ
ତୋହର ଥାନ୍ତେ ଗୋ ମାତ ହେଲି ମୁଁ ନିର୍ମାକ୍ଷୀ
ଏତେକାଳ ରଖି ଏବେ ତେଜୁ ଗୋସାମଣୀ
ଏହା କହି ନରପତି କାନ୍ଦେ ପୁଣି ପୁଣି ।
ରାଜା ବିକଳେ ବୋଲନ୍ତି ଦେବୀ ଶାକମ୍ଭରୀ
ସଂଗ୍ରାମେ ପଶିଲୁ କିମ୍ପା ମୋତେ ନ ପଚାରି ।
ପଶ୍ଚିମ ଦିଗେ ବିଜୟ କଲା ଭୀମସେନ
ନିମନ୍ତି ନେବ ପଞ୍ଚାଶ ସହସ୍ର ରାଜନ ।
ଲକ୍ଷେ ନରପତି ଯାର ଚରଣକୁ ବନ୍ଦି
କିମ୍ପା ତା ତୁଲେ ଅଜ୍ଞାନେ ହେଲୁ ପ୍ରତିଦ୍ୱନ୍ଦୀ ।
ନିଜେ ଶିବ ଭୟ କରେ ଯାହାର କୋପକୁ
ବଳରାମ ଥରିଉଠେ ଶୁଣି ଯା ନାମକୁ ।
ଯାହାର ରଡ଼ି ଶୁଣିଲେ କମ୍ପେ କୃଷ୍ଣବୁକୁ
ଭଲା ପ୍ରାଣେ ନାଶ ବାବୁ ନ କଲା ତୁମ୍ଭଙ୍କୁ ।
କାମପାଳ ବୋଲେ ମୋର ହେଲା ଅପଚୟେ
କେବଣ ବୁଦ୍ଧିରେ ଏବେ ରକ୍ଷା ହେବି ମାୟେ ।

ତୁମ୍ଭେ ରକ୍ଷା କର ମାତ ମୋତେ ସର୍ବକାଳେ
ମୋ ଦୁଃଖ ଦେଖି ଦୟା ନ ଛାଡ଼ ଏତେବେଳେ
ରାଜାର ବିକଳ ଦେଖି ବୋଇଲେ କାମାକ୍ଷୀ
ଅକାରଣେ ରାଜା ତୁହି ହୋଇଲୁ ନିର୍ମାକ୍ଷୀ ।
ତୋତେ କି ବାର୍ତ୍ତା ନଦେଲେ ଆସି ଚାରଗଣେ
ଭୀମ ଆସନ୍ତି ପଶ୍ଚିମେ ରାଜାଙ୍କ ବରଣେ ।
ପାଞ୍ଚସହସ୍ର ରାଜାଙ୍କୁ ନେବ ସେ ନିମନ୍ତ୍ରି
ଅଜ୍ଞାନେ ତାହାର ତୁଲେ ହୋଇଲୁ ଅପ୍ରୀତି ।
ଏବେ ଚାଲ ସମର୍ପିବି ତୋତେ ତାର ତହିଁ
ଦୟା କରୁ ତୋହଠାରେ ପାର୍ଥ ଜ୍ୟେଷ୍ଠଭାଇ ।
ଯାହାକୁ ବିନୟେ ଖଟିଛନ୍ତି ନାରାୟଣ
ଭାରତେ ଭୋଗଇ ମଲ୍ଲ ଯେଉଁ ଭୀମସେନ ।
କାମପାଳ ନୃପତିକୁ ଘେନି ସଙ୍ଗତରେ
ବିଜୟ କରିଲେ ଦେବୀ କେଶରୀ ପୃଷ୍ଠରେ ।
ରାଜାକୁ ସଙ୍ଗରେ ଘେନି ବିଜେକଲେ ମାଏ
ଚାଲି ନ ପାରଇ ରାଜା ଭୀମସେନ ଭୟେ ।
ରାଜା ବୋଲଇ ଗୋ ଭକ୍ତବତ୍ସଳା ଜନନୀ
ଏ ବିପଦୁଁ ତାରିବୁଟି ଦୁର୍ଗତି ନାଶିନୀ ।
ରାଜାକୁ ବୋଧ ଦେଇଣ ଅନାଦି ଶକତି
ଭୀମସେନର ଛାମୁରେ ମିଳିଲେକ ଧାତି ।
କାମାକ୍ଷୀଙ୍କ ମୂର୍ତ୍ତି ଦେଖି ପାଣ୍ଡବ ସୁନ୍ଦର
ଗଦାବର ଛାଡ଼ି ନମେ ଦେବୀଙ୍କ ପୟର ।
ଜୟ ତୁ ମାତଙ୍ଗୀ ମାଗୋ ପ୍ରସନ୍ନେ ଅଭୟେ
ଶରଣରକ୍ଷଣୀ ଭକ୍ତବତ୍ସଳେ ଗୋ ମାୟେ ।
ପଶ୍ଚିମ ଦିଗେ ଅଇଲି ରାଜାଙ୍କୁ ନିମନ୍ତ୍ରି
କାହିଁ ନ ଦେଖିଲି ମାଗୋ ତୋହପରି ମୂର୍ତ୍ତି ।
ହସି ବୋଇଲେ କାମାକ୍ଷୀ ଦେବୀ ମହାତମୀ
ବାବୁ କାଉଁରୀ ଦେଶଟି ଦୁର୍ଗମ ଏ ଭୂମି ।
ପଶ୍ଚିମ କୋଶଳ ମଧ୍ୟେ ଏ କାଉଁରୀ ଦେଶ
ଏଥେ ଏହି କାମପାଳ ଅଟଇ ନରେଶ ।
ଏ ରାଜାର ବଂଶଯାକ ମୋହର ଶରଣ
ସର୍ବଦା ଏହାଙ୍କୁ ମୁହିଁ ଥାଏ ପରସନ୍ନ ।
ମୋ ପ୍ରସନ୍ନେ ଏ ରାଜାଙ୍କୁ କେ ଜିଣନ୍ତା ନାହିଁ
ଶତ୍ରୁ ଉପଗତେ ନୃପେ ରକ୍ଷାକରେ ମୁହିଁ ।
ମୋ ପ୍ରସନ୍ନେ କାହାକୁ ଏ ନ କରଇ ଭୟ
ଯମ କାଳଦଣ୍ଡେ ଏହୁ ନୋହିବ ଯେ କ୍ଷୟ ।
ଅଷ୍ଟୋତ୍ତର ଶତବର୍ଷ ପ୍ରାଣୀଙ୍କ ଆୟୁଷ
ଏତେ ବର୍ଷେ ଏଠାକାର ପ୍ରାଣୀହେବେ ନାଶ ।
ତୁ ମୋହର ଯେହ୍ନେପୁତ୍ରତେହ୍ନେ ଏ ମୋବାଳ
ଯାର ଦୋଷ କ୍ଷମାକର ଏହାକୁ ସମ୍ଭାଳ ।
କାମପାଳକୁ କହିଲେ ଦେବୀ ଭଗବତୀ
ଭୀମସେନଙ୍କ ଚରଣେ କର ତୁ ଭକତି ।
ଦେବୀଙ୍କର ବଚନରେ କାମପାଳ ରାଜା
ମାରୁତିର ଚରଣରେ କରିଲାକ ପୂଜା ।
ତାର ସଙ୍ଗେ ଯାଇଥିଲା କିରାତ ନୃପତି
କାମପାଳ ତୁଲେ ସେହି ଭୀମେ କଲା ଭକ୍ତି ।
ବେନି ନୃପେ ଭୀମ ପାଦେ ହେଲେ ପରଣାମି
ଅନାଥଜନ ଠାକୁର ସୋମବଂଶ ସ୍ୱାମୀ ।
ଭୀମକୁ କୋଳେ ବସାଇ ଦେବୀ କାମସେଣା
କାମପାଳେ ସମର୍ପିଲେ ହେମବନ୍ତ ଜେମା ।
ଏହାକୁ ଦୟା ବାବୁରେ ସଦା କରିଥିବ
ଯାବତ କାଳକୁ ଏହି ତୋ ଭକତ ହେବ ।
ଏହା କହି ସମର୍ପିଲେ ବେନି ନରମଣି
ଭୀମ ବୋଇଲେକ ଯେ ତୋ ଆଜ୍ଞା ଗୋସାମଣି ।
ତୁ ଦେବୀ କାଉଁରୀଦେଶେ ମଣ୍ଡଣି ଗୋ ମାୟେ
ତୁ ଯାରେ ପ୍ରସନ୍ନ ହେଉ ସେ ଥାଏ ନିର୍ଭୟେ ।
ଭୀମ ବଚନେ ତୃପତି ହୋଇ ଜଗନ୍ମାତ
ପ୍ରସନ୍ନେ ଭୀମକୁ ଦେଲେ ସେ କାମ୍ୟକ ଅସ୍ତ୍ର ।
ବୋଇଲେ ଏ ଅସ୍ତ୍ରଥିଲେ ସଂଗ୍ରାମେ ତୁ ଧରି
ହରିହର ଆଦି ତୋତେ କେ ନୋହିବେ ସରି ।
ଅସ୍ତ୍ର ପାଇଣ ବିଜୟ ହିଡିମ୍ବିକୀ ନାହା
ବୋଲେ ତ୍ରିଲୋକ ଜିଣିବି ତୁହି ଥିଲେ ସାହା ।
କାମପାଳେ ଭୀମ ବହୁ ଗଉରବ କଲେ
କିରାତକୁ ତାର ବୋଲେ ଭୀମ ଛାଡ଼ିଦେଲେ ।
ତଦପରେ ସେ ବେନିଙ୍କୁ କହିଲେ ପାବନି
ଏହିକ୍ଷଣି ଚଳ ତୁମ୍ଭେ ସମଦଣ୍ଡ ଘେନି ।
ଦରଶନୀ ଧନ ତୁମ୍ଭେ ସଙ୍ଗତରେ ନେବ
ଇନ୍ଦ୍ରପ୍ରସ୍ଥେ ମିଳି ତାହା ଯୁଧିଷ୍ଠିଙ୍କୁ ଦେବ ।
ଦୁଇ କର ଯୋଡ଼ି ବୋଲେ କାଉଁରୀର ପତି
ମୋ ପୁରେ ମଣୋହି କରି ରହ ଆଜ ରାତି ।
ରାଜା ବଚନେ କହିଲେ ତହିଁ ଭୀମସେନ
ନିଜେ ଗୋସାମଣି କଲେ ଅନ୍ନ ଯେ ବ୍ୟଞ୍ଜନ ।
ଅମୃତ ରାନ୍ଧଣାମାନ କାମସେଣା କଲେ
ସନ୍ଧ୍ୟା ତର୍ପଣ ସାରିଣ ଭୀମସେନ ଗଲେ ।
ଦିବ୍ୟବେଶ ହୋଇ ଦେବୀ ତ୍ରୈଲୋକ୍ୟ ମୋହିନୀ
ବୋଇଲେ ବସହୋ ଭୀମ ତୋ ସୈନ୍ୟଙ୍କୁ ଘେନି
ଭୀମ ବୋଲେ ଯା ରାନ୍ଧିଛୁ ତୁ ଗୋ ଜଗନ୍ମାଏ
ଜଣକୁ ତ ନ ଅଣ୍ଟିବ ଏ ଆଟିକାଟିଏ ।
ଅଳ୍ପ ଅନ୍ନେ କାହିଁ ମାତ ତୃପ୍ତ ହେବି ମୁହିଁ
ଅତିଥି ଅତୃପ୍ତ ହେଲେ ଧର୍ମ ନାଶଯାଇ ।

ବୋଇଲେ କାମାକ୍ଷୀ ଭୀମେ ମାତା ପରଷିଲେ
ପୁତ୍ରେ ତୃପତି ହୁଅନ୍ତି ଅଳପ ଭକ୍ଷିଲେ ।
ଦେବୀ ବାକ୍ୟେ ମଣୋହିରେ ମାରୁତି ବସିଲେ
କାମାକ୍ଷୀ ଭୀମସେନକୁ ଅନ୍ନ ପରଷିଲେ ।
ଅଇରାବତେ ହସ୍ତୀ ଦୁଇ ଅଇରାବତ ରଥୀ
ଚାରିପଦ୍ମ ଅଶ୍ୱାରୋହୀ ତ୍ରିଲକ୍ଷ ପଦାତି ।
ନିଜେ ମାହେଶ୍ୱରୀ ଅନ୍ନ ତହିଁ ପରଷନ୍ତି
ମହା ଆନନ୍ଦରେ ବସି ସକଳେ ଭୁଞ୍ଜନ୍ତି ।
ଏତେ ଲୋକଙ୍କୁ କାମାକ୍ଷୀ ଦେବୀ ଦ୍ୟନ୍ତି ଅନ୍ନ
ଅନେକ ତୃପତି ହୋଇ କରନ୍ତି ଭୋଜନ ।
ପରଷନ୍ତି ଆଟିକାର ଅନ୍ନ ଗୋସାମଣି
ଯେସନେକ ନଉତିରୁ ଦେଉଛନ୍ତି ଆଣି ।
ଅନେକ ଗୋରସ କ୍ଷିରୀପିଠା ଅଗଣିତ
ଭୋଜନେ ତୃପତି ହେଲେ ପବନର ସୁତ ।
ସୁପକ୍ୱ ଅନ୍ନାଦି ବସି ହରଷେ ଭୁଞ୍ଜନ୍ତି
ତୃପତ ହୋଇ ସକଳେ ପ୍ରଶଂସା କରନ୍ତି ।
ଭୀମଙ୍କର ସୂପକାରେ ସେ ଯୋଗାଡ଼ ଖାଇ
ପ୍ରଶଂସି ଭୁଞ୍ଜନ୍ତି ମନୁ ରଙ୍କଣା ଛଡ଼ାଇ ।
ମହାମାୟା ପରଷନ୍ତି ତାହାଙ୍କୁ ଆନନ୍ଦେ
ଭୁଞ୍ଜନ୍ତି ଭୀମାଦି ସୈନ୍ୟ ପରମ ସାନନ୍ଦେ ।
ବିଶେଷରେ କାମାକ୍ଷୀ ଯେ ଜଗତ ମୋହିନୀ
ସମସ୍ତଙ୍କୁ କହିଲେ ସେ ସୁମଧୁର ବାଣୀ ।
ଭୁଞ୍ଜ ଅଢ଼ାଇ ପ୍ରହର ହୋଇଅଛି ରାତି
ଯେତେ ଖାଇବ ହେ ଖାଅ ହୋଇ ହୃଷ୍ଟମତି ।
ଖଣ୍ଡ କ୍ଷୀରିସା କଦଳୀ ଅମୃତର ରସ
ଦିଅନ୍ତି ସୁପକ୍ୱ ଆମ୍ବ ଡାଳିମ୍ବ ପଣସ ।
ଏହା ସବୁ ଦେଉଛନ୍ତି ଦେବୀ ଧନୁମାସେ
ଭୁଞ୍ଜନ୍ତି ସକଳେ ବସି ଅତ୍ୟନ୍ତ ହରଷେ ।
ଯେଉଁ ପଦାର୍ଥମାନ ନ ପାଇ ଅବସନ୍ତେ
ତାହା ପରଷନ୍ତି ଦେବୀ କଉତୁକ ଚିତ୍ତେ ।
ଭୁଞ୍ଜରେ ବାବୁ ଯେ ଯାହା ପୂର୍ଣ୍ଣଜର ବାଞ୍ଛା
ଯହିଁକି ଯାର ସରାଗ ନିଅ ମନଇଚ୍ଛା ।
ଭୋଜନ କରନ୍ତେ ତହିଁ ପ୍ରସରିଲା ରାତି
ଖାଇଣ ସକଳ ସୈନ୍ୟ ହୋଇଲେ ତୃପତି ।
ଏ ସମୟେ ଦେବଆଳେ ଶଙ୍ଖଧ୍ୱନି କଲେ
ତାମ୍ରଚୂଡ଼ ପିକ କାକଆଦି ଡାକ ଦେଲେ ।
ପୂର୍ବଦିଗରେ ଅରୁଣ ହୋଇଲେ ପ୍ରକାଶ
ଭୋଜନ କରି ସକଳେ ହୋଇଲେ ସନ୍ତୋଷ ।
କର୍ପୂର ରଜ ମିଶ୍ରିତ ସୁଶୀତଳ ପାଣି
ପିଇବାକୁ ତାଙ୍କୁ ଦେଲେ ଦେବୀ ଗୋସାମଣି ।
ଆଚମନ ସାରି ଭୀମ ବିଜୟ ଆସ୍ଥାନ
ସୁବାସ ତାମ୍ବୁଳ ବିଡ଼ି କଲେକ ଚର୍ବଣ ।
କାମାକ୍ଷୀଙ୍କୁ ବହୁସେବା କଲେ ବୃକୋଦର
ବଡ଼ଇ ଦୁର୍ଲ୍ଲଭ ମାଗୋ ମହିମା ତୋହର ।
ଏକହାଣ୍ଡି ଅନ୍ନ ମାଗୋ ହାଣ୍ଡିଏ ବ୍ୟଞ୍ଜନ
ସମସ୍ତ ସଇନି ମୋର କଲେକ ଭୋଜନ ।
ଆହୁରି ଅନ୍ନ ବ୍ୟଞ୍ଜନ ହାଣ୍ଡିଏ ରହିଛି
ଏ କଥା ବଡ଼ ଆଶ୍ଚର୍ଯ୍ୟ ମୋତେ ଯେ ଲାଗୁଛି ।
କାମାକ୍ଷୀ ବୋଇଲେ ଆମ୍ଭେ ହିଙ୍ଗୁଳା ଦୁହିତା
ସକଳ ବିଦ୍ୟାରେ ଆମ୍ଭ ଅଛି ପାରଗତା ।
ଯାବତ ବିଦ୍ୟା ଆମ୍ଭର ଆମ୍ଭ ସିଦ୍ଧ ହୋଇ
ମାତା ପ୍ରସନ୍ନେ ଅମୃତ ଯୋଗାଡ଼ କରଇ ।
ଲକ୍ଷେ ରାଜାଙ୍କର ଛନ୍ତି ଯେତେକ ସଇନି
ସମସ୍ତଙ୍କୁ ପରଷିବ ଏଥୁ ଅନ୍ନ ଘେନି ।
ଲକ୍ଷେରାଜା ସୈନ୍ୟସହ ଯଦ୍ୟପି ଆସିବେ
ଏହି ଆଟିକାକ ଅନ୍ନେ ସର୍ବେ ତୋଷ ହେବେ ।
ସ୍ତିରୀକୁଳରେ ସାଧବୀ ଅଛନ୍ତିଟି ଯେତେ
ଅନ୍ନ ବ୍ୟଞ୍ଜନ ଅଣ୍ଟଇ ସେହୁ ପରଷନ୍ତେ ।
ଏକମାତା ପିତାଠାରୁ ଯେବଣ ଦୁହିତୀ
ଏକ ସ୍ୱାମୀଠାରେ ଯାର ଥାଏ ଚିତ୍ତବୃତ୍ତି ।
ତାଙ୍କ ଶରୀରେ ବିଜୟ କରେ ମୁଁ ସର୍ବଦା
ଆମ୍ଭେ କାତ୍ୟାୟିନୀ ତାର ବାଞ୍ଛା କରୁ ସିଦ୍ଧା ।
ଭୀମକୁ ଯେ ଅନୁଗ୍ରହ କଲେ କାମସେଣା
କହିଲେକ ମହାବିଦ୍ୟା ଅତୁଟ ରାନ୍ଧଣା ।
ରାନ୍ଧିବାକୁ ଅଳ୍ପ ହେବ ପର୍ଷନ୍ତେ ବହୁତ
ଭୁଞ୍ଜିବାକୁ ଯେଉଁମାନେ ହୋଇବେ ତୃପତ ।
ଏମନ୍ତ ବିଦ୍ୟା ତୁ ବାବୁ ହୃଦେ ଥିଲେ ଘେନି
ରାନ୍ଧିବୁ ଗଉରୀ ସୌରୀ ନଳବିଧି ତିନି ।
ରାଜସୂୟ ଯାଗେ ଏହା କରସି ରନ୍ଧନ
ଏକା ରନ୍ଧନେ କରିବେ ରାଜାଦି ଭୋଜନ ।
ତୁ ଛତ୍ରଶାଳେ ଦେବୁଟି ଯୋଗାଡ଼ ସମ୍ଭାର
ଦିବା ରାତ୍ରେ ଭୁଞ୍ଜୁଥିବେ ସୈନ୍ୟ ଅସୁମାର ।
ଏମନ୍ତେ ପ୍ରସନ୍ନେ ଦେବୀ ବହୁବିଦ୍ୟା ଦେଲେ
ସ୍ତମ୍ଭନ ମୋହନ ବିଦ୍ୟାଆଦି ଶିଖାଇଲେ ।
ବାବୁ ତୋତେ ନ ପଡ଼ିବ କଷ୍ଟ ବୃକୋଦର
ମୁହିଁ ବିଜେ କରିଥିବି ବାମଅଙ୍ଗେ ତୋର ।
ସଦୟେ ପ୍ରସନ୍ନ ଯହୁଁ ହୋଇଲେ ଅଭୟେ
ତହୁଁ ମାରୁତି ଉଠିଲେ କରି ଜୟେ ଜୟେ ।
କାମାକ୍ଷୀ ଦେବୀଙ୍କୁ ତହିଁ କଲେ ନିମନ୍ତ୍ରଣ
ଅକ୍ଷତ ଗୁଆ ଅର୍ପିଲେ ନମି ଶ୍ରୀଚରଣ ।

ରାଜୁସି ଯାଗକୁ ବିଜେ କରିବେ ଗୋ ମାୟେ
ରାନ୍ଧଣାଶାଳେ ଆପଣେ କରିବେ ବିଜୟେ ।
ଏତେକ ବିନୟେଭୀମ ଦେବୀଙ୍କି ଜଣାଇ
ବୋଲେ ରାଜାଙ୍କୁ ନିମନ୍ତି ଯାଉଅଛି ମୁହିଁ ।
ଏରୂପେ କହି ସେଠାରୁ ଗଲେ ବୃକୋଦର
କାମପାଳ ଇନ୍ଦ୍ରପ୍ରସ୍ଥେ ହୋଇଲା ବାହାର ।
ଜୟ ଜୟ କାମାକ୍ଷୀ ଗୋ କାଉଁରୀମଣ୍ଡନୀ
ଜଗତ ଜୀବଜନ୍ତୁଙ୍କ ତୁହି ମା ଜନନୀ ।
ପରଦୁଃଖ କାତରା ଗୋ ଅଭୟା ଅପର୍ଣ୍ଣା
ସଂସାର ରଜ୍ଜୁ ବନ୍ଧନୁ ମୁକ୍ତ କର କିନା ।
ଏହି କଳିକାଳେ ହେଲି ମାୟାମୋହେବନ୍ଦୀ
ଏଥିରୁ ମୁକତ ବେଗେ କର ଗୋ ଅନାଦି ।
ମୋହଜଳେ ପଡ଼ିଅଛି ଅଜ୍ଞାନୀ ଅକ୍ରିୟା
ତୁ ସର୍ବାଙ୍ଗ ସାଧବୀ ଗୋ ଅଣାକାର ପ୍ରିୟା ।
ତୋ ଆଶ୍ରା ନେଲେ ବିପଦୁଁ କରୁ ତୁ ତାରଣ
ଲୋମଶିଖେ ପୃଥିବୀକୁ କରିଲୁ ଧାରଣ ।
ସତ୍ତ୍ୱ ରଜ ତମ ମାଗୋ ସିଦ୍ଧ ଷଡ଼ମୁଦ୍ରା
ତୋହର ପ୍ରସନ୍ନେ ମାଗୋ କାଳ କାମନିଦ୍ରା ।
ଭୂତ ଭବିଷ୍ୟତ ବର୍ତ୍ତମାନ ତିନିଗୋଟି
ଏ ସକଳ ତୋତେ ଜଣାଅଛି ବିଶ୍ୱ ଘୋଟି ।
ମାୟା ଯୋଗବଳେ ମାତା ସବୁ ପାରୁ ଜାଣି
କୃପା କର କୃପାମୟୀ ଦେବୀ ନିରଞ୍ଜନୀ ।
ଶମନ-ଦର୍ପ ଧ୍ୱଂସନେ କାମାକ୍ଷୀ ହୋଇଲୁ
ତୋ ଆଶ୍ରିତ ଜନେ ମାତ ଉଦ୍ଧରି ଧଇଲୁ ।
ଆଗୋ ମାତ ଶ୍ରୀୟାଦେବୀ କାଉଁରୀ କାମାକ୍ଷୀ
ଶାରଳା ଦାସକୁ ଥାଅ ଭୃତ୍ୟପଣେ ରଖି ।

■ ■ ■

## ଶିବରାଜା, ଅମ୍ବର ରାଜାଙ୍କୁ ନିମନ୍ତ୍ରଣ

ଏଥୁଅନ୍ତେ ଅଗସ୍ତିକି ମନୁ ନରବର
ପୁନରପି ପୁଚ୍ଛା କଲେ ଯୋଡ଼ି ବେନି କର ।
କହ ମୁନି କାଉଁରୀକି ତେଜି ଭୀମସେନ
କେଉଁ ଦେଶକୁ ସେ ପୁଣି କରିଲେ ଗମନ ।
ଅଗସ୍ତି କହିଲେ ତୁମ୍ଭେ ଶୁଣ ନୃପବର
କାମପାଳ କିରାତକୁ ପେଷି ବୃକୋଦର ।
ନିଜ ସଇନମାନଙ୍କୁ ସଙ୍ଗତରେ ଘେନି
କାଉଁରୀ ଦେଶୁ ବାହାର ହୋଇଲେ ପ୍ରାବନି ।
ଗହଳେ ଯାଆନ୍ତି ଜୟ ଶଙ୍ଖଙ୍କୁ ବଜାଇ
ମାନିନୀ ନଦୀକୂଳରେ ଥାଟ ଯେ ଚଳଇ ।
ଦଣ୍ଡଘେନି ବୃକୋଦର ପଶ୍ଚିମ ମୂରତି
ବନ ପର୍ବତ ଜିଣିଣ ଚଳଇ ମାରୁତି ।
ବିହରନ୍ତି ସଇନିଏ ମନର ହରଷେ
ବିଜେ କଲେ ବୃକୋଦର ମହାରାଷ୍ଟ୍ର ଦେଶେ ।
ସେ ରାଜ୍ୟରେ ଶିବ ନାମେ ଏକ ନରପତି
ଶ୍ୱେତାଶ୍ୱ ପଞ୍ଚାଶକୋଟି ତାହାକୁ ଖଟନ୍ତି ।
ଲକ୍ଷେକ ହସ୍ତୀ ଅଛନ୍ତି ଅର୍ବୁଦେ ସଇନ
ପଶ୍ଚିମ କୋଣଳେ ଛନ୍ତି ଯେତେକ ରାଜନ ।
ଅଭିଷେକବେଳେ ତହୁଁ ପାଟାଶ୍ୱ ଆଣନ୍ତି
ସେ ଅଶ୍ୱରେ ଅଭିଷେକ ରାଜାଏ ହୁଅନ୍ତି ।
ସମସ୍ତ ରାଜାଙ୍କର ସେ କୁଳ ଇଷ୍ଟଗୁରୁ
ତ୍ରେତାଯୁଗ ମାହେଶ୍ୱର ରାଜା ଅମଳରୁ ।
ଭୀମସେନ ପରବେଶ ହେଲେ ସେହି ରାଜ୍ୟେ
ନଗ୍ରରେ ପଶନ୍ତେ ବାଦ୍ୟ ଉତାଉଳ ବାଜେ ।
ସ୍ୱମଦଣ୍ଡ ଘେନି ରାଜା ବିଜୟ ଆସ୍ଥାନେ
କାମଦେବ ମନ୍ତ୍ରୀ ଥିଲା ତାର ସନ୍ନିଧାନେ ।
ସମ୍ଭାଉରେ ଥିଲା ରାଜା ନିଶ୍ଚଳରବେଳେ
ଚାର ଯାଇ ଜଣାଇଲା ଜଗତୀର ତଳେ ।
ଭୋ ଦେବ ଶୁଣିମା ହେଉ ପରରାଷ୍ଟ୍ର ବାର୍ତ୍ତା
ଯୋଦ୍ଧା ଏକ ପଶେ ରାଜ୍ୟେ ବଡ଼ ବଳବନ୍ତା
ସକଳ ଦେଶକୁ ସେହୁ ଆସୁଛନ୍ତି ଭାଜି
ତୋହର ଦେଶେ ପଶିଲା ଏବେ ଗଳଗାଜି ।
ଏହିକ୍ଷଣି ନଗ୍ର ତୋର ହୋଇବଟି ଚୂର
ପୃଥିବୀ ଦୁଲୁକୁ ଅଛି ବାଦ୍ୟନାଦେ ତାର ।
ତୁ ମହାପଣ୍ଡିତ ଅଟୁ ରାଜାଧି-ଈଶ୍ୱର
ଶତ୍ରୁ ଉପଗତ ହେଲା ବୁଝି କାର୍ଯ୍ୟକର ।
ଡଗର ମୁଖରୁ ରାଜା ପାଇଣ ବାରତା
ମନ୍ତ୍ରୀକୁ ଚାହିଁ ବୋଇଲା କି କରିବା କଥା ।
ମନ୍ତ୍ରୀବର ବୋଲେ ତହୁଁ ଶୁଣିବା ନୃପତି
ଭୀମ ଆସନ୍ତେ ପଶ୍ଚିମେ ରାଜାଙ୍କୁ ନିମନ୍ତ୍ରି ।
ରାଜସୂୟ ଯାଗସଭା ଯୁଧିଷ୍ଠି କରିବେ
ଲକ୍ଷେ ନରପତି ସୈନ୍ୟସହ ତହିଁ ଯିବେ ।
ଅନେକ ଦେଶ ରାଜାଙ୍କୁ ଅଇଲେଣି ସାଧି
ହେ ନରେଶ ନ ଭାଳ ଯେ ମନେ ଅନ୍ୟ ବୁଦ୍ଧି ।
ଦରଶନୀ ଧନ ଘେନି ଚଳ ଭୀମ ପାଶ
ଶୁଣି ନରପତି ମନେ ଅତ୍ୟନ୍ତ ହରଷ ।
ଏକଲକ୍ଷ ପାଟଅଶ୍ୱେ ବାଛିଣ ଘେନିଲା
ଦେଖା ଦରଶନୀ ଧନ ଲକ୍ଷେଭାର ନେଲା ।
ପାତ୍ରମନ୍ତ୍ରୀ ଅମାନତ୍ୟ ଘେନି ନୃପବର
ବାହନ ବିହୀନେ ସେହି ହୋଇଲା ବାହାର ।

ଭୀମ ବିଜେ କରିଛନ୍ତି ବିରୋଳ ପର୍ବତେ
କରବୀର ରାଜା ବାର୍ତ୍ତା ଜଣାଇଲେ ଦୂତେ ।
ଶୁଣ ସାବଧାନେ ଦେବ ବୀର ଚୂଡ଼ାମଣି
ନଇର୍ରତ କୋଣେ ପୁଣ୍ଡରୀକ ଚକ୍ରପାଣି ।
କରବୀର ଦେଶରେ ଯେ ସେହୁ ଅଧିପତି
ବଡ଼ଇ ପ୍ରତାପୀ ସେତ ଅଟେ ଚକ୍ରବର୍ତ୍ତୀ ।
ସୁବର୍ଣ୍ଣ ଶଗଡ଼ଟିଏ କରିଛି ନିର୍ମିତ
କାଠର ଗରୁଡ଼େ ଏକ ଥାଏ ଅନୁବ୍ରତ ।
ସେ ଗରୁଡ଼ ଏକା ଥାଏ ଦିଗବିଜେ କରି
କାଠ ବେନିଭୁଜେ ଥାଏ ଶଙ୍ଖ ଚକ୍ରଧାରୀ ।
ଗାଣ୍ଡିବ ସମାନ ଧନୁ ଧରି ବାମହାତେ
ବାସୁଦେବଙ୍କୁ ନିନ୍ଦେ ସେ ଦୁଷ୍ଟ କୋପଚିତ୍ତେ ।
ଦ୍ୱିତୀ କୃଷ୍ଣରୂପ ଧରି ଦିଗବିଜେ କରେ
ବଡ଼ ପ୍ରତାପୀ ରାଜା ସେ ପଶ୍ଚିମ ଦିଗରେ ।
ଦୁର୍ଭାର ରାକ୍ଷସଗଣ ଅଟନ୍ତି ତା ବଳ
ରାଜାଙ୍କ ମଧ୍ୟରେ ସେହୁ ଅଟେ ମହାବଳ ।
ଜରାପୁତ୍ର ସହଦେବ ଦେଇଛି ଦୁହିତା
ତେଣୁ ମନେ କାହାକୁ ସେ ନ କରେ ଗଣିତା
ଶୁଣିଣ ମାରୁତି ମନେ ବଡ଼ ମହାରୋଷ
ଗଦା ଡ଼ିଆଇଣ ହାତେ ଆଉଁଷିଣ ନିଶ ।
ବୋଇଲେ ସ୍ୱାମୀଙ୍କ ବେଶ ଧରେ ସେ ପାମର
ଶଙ୍ଖ ଚକ୍ର ଗାଣ୍ଡୀବାଦି ବହେ ଚାରିକର ।
ଦେଖିବା କିପରି ସେହି କେଡ଼େ ସାମରଥ
ହେ ସାରଥି ବେଗକରି ବାହା ମୋର ରଥ ।
ମରୁତ ସାରଥି ବୋଲେ ଆଜ୍ଞା ଅବଧାରି
ଯିବା ଶିବ ନରେଶଙ୍କୁ ନିମନ୍ତ୍ରଣ କରି ।
ଏମନ୍ତ କହିଣ ରଥ ଚଳାଏ ସାରଥି
ଶିବରାଷ୍ଟ୍ରରେ ପ୍ରବେଶ ହୋଇଲେ ଝଟତି ।
ଆସୁଥିଲା ଦରଶନୀ ଘେନି ଶିବରାଜା
ଭୀମଙ୍କୁ ଭେଟିଣ ପଥେ କଲା ପାଦପୂଜା ।
ଲକ୍ଷେଭାର ପାଣିଦ୍ରବ୍ୟ ଶ୍ରୀଛାମୁରେ ଥୋଇ
ଶତସସ୍ର ଦଣ୍ଡବତ କଲା ନରସାଇଁ ।
ପୁଣି ଭୀମଙ୍କୁ ସେ ଦେଲା ଏକଲକ୍ଷ ବାଜୀ
ଶୁଦ୍ଧ ସ୍ଫଟିକ ବର୍ଣ୍ଣ ସେ ପବନହୁଁ ତେଜି ।
ଏତେକ ଅଶ୍ୱ ଭୀମଙ୍କୁ କଲା ସମର୍ପଣ
ଶ୍ରୀଚରଣେ ଗଡ଼ଘାଲି ନମେ ପୁଣ ପୁଣ ।
ରାଜା ଭକ୍ତି ଦେଖି ଭୀମ ଉଠି ଅ ଜ୍ଞା ଦେଲେ
କାଳିଞ୍ଜନ ପଡ଼ିହାରୀ ଯାଇ ଉଠ ଇଲେ ।
ଉଠ ଉଠ ଶିବରାଜା ତୋତେ ଆଜ୍ଞାହେଲା
ଆଜ୍ଞା ପ୍ରମାଣେ ସେ ରାଜା ଭୂମିରୁ ଉଠିଲା

ବେନିକର ମସ୍ତକରେ ଦେଇ କଲା ସ୍ତୁତି
ବହୁତ ବିନୟ ଭାବ ଦେଖିଣ ମାରୁତି ।
ରଥ ଉପରୁ ସେହି ଉତୁରି ଚଞ୍ଚଳ
ସେ ଶିବ ନରପତିକୁ କରିଲେକ କୋଳ ।
ନିମନ୍ତ୍ରଣର ଅକ୍ଷତ ଦେଇ ତାର ହସ୍ତେ
ବୋଇଲେ ନିର୍ଭୟ ତୁହି ହୁଅ ଏବେ ଚିତ୍ତେ ।
ତୋହର ଥାଟେ ଅଛନ୍ତି ଯେତେକ ସଇନି
ଇନ୍ଦ୍ରପ୍ରସ୍ଥେ ଚଳ ତୁହି ସେମାନଙ୍କୁ ଘେନି ।
ଯେତେକ ଧନ ଆଣିଛୁ ମୋହର ଛାମୁକୁ
ଏହା ସବୁ ନେଇ ଦେବୁ ଶ୍ରୀଯଦୁପତିଙ୍କୁ ।
ରାଜସୂୟ ଯାଗ କରନ୍ତି ଯୁଧିଷ୍ଠିର ରାଜା
ଲକ୍ଷେ ରାଜା ଯାଇ ତାଙ୍କୁ କରିବେକ ପୂଜା ।
ଶିବରାଜା ବୋଲେ ଆଜ ମୋର ପୁରେ ରହି
ମଣୋହି କରନ୍ତୁ ସ୍ୱାମୀ ସୁଖୀ ହେବି ମୁହିଁ ।
ଭୀମ ବୋଲେ ଏହିକ୍ଷଣି ହୋଇନାହିଁ ରାତି
ଅନେକ ରାଜାଙ୍କୁ ମୁହିଁ ନେବଇଁ ନିମନ୍ତ୍ରି ।
ଭୋଜନ ଶୟନକୁ ମୋ ମନେ ଚିନ୍ତା ନାହିଁ
ଭଗବାନଙ୍କ ଯେ ଆଜ୍ଞା ତା ପାଳିବି ମୁହିଁ ।
ନଉ ଦିବସେ ପଞ୍ଚାଶ ସହସ୍ର ନରେଶ
ନିମନ୍ତ୍ରି ମକର ମାସେ ହୋଇବି ପ୍ରବେଶ ।
ନିରାଧାର ଆଜ୍ଞାଦେଇ ଅଛନ୍ତି ଗୋବିନ୍ଦ
ଏ ମଧ୍ୟେ ନ ଗଲେ ମୋର ମୁଣ୍ଡ ହେବ ଛେଦ ।
ହେ ରାଜା ଉତ୍ତର କୋଣ ବାଟେ ତୁହି ଯିବୁ
ମଘଦେଶୁଁ ବିରାଟକୁ ଡାକି ସଙ୍ଗେ ନେବୁ ।
ବିରାଟ ପଣ୍ଡିତ ତାର କୀଚକ କୁବୁଦ୍ଧି
କହିବୁ ନିଶ୍ଚେଁ ସେ ଯିବ ଛାଡ଼ି ତାର ଆଧି ।
ଶିବରାଜା ବୋଲେ ତୁମ୍ଭେ ଆଜ୍ଞାପରମାଣ
ମଘଦେଶୁଁ ବିରାଟକୁ ନେବି ଗଲାକ୍ଷଣ ।
ବିରାଟରେ ପୁତ୍ର ସେହୁ ଉତ୍ତର କୁମର
ତାକୁ ଝିଅ ଦେଇଛି ମୁଁ ସେ ଜ୍ୱାଇଁ ମୋହର ।
ଯଦ୍ୟପି ବିରାଟ ରାଜା ମୋହର ସମୁଧି
ସ୍ୱାମୀ ତୋ ଆଜ୍ଞା ପ୍ରମାଣେ ନେଇପାରେ ସାଧି
ଭୀମସେନଙ୍କ ଚରଣେ ଓଳଗି ମେଲାଇ
ଶିବରାଜା ଉତ୍ତରକୁ ଥାଟ ଗଲା ବାହି ।
ଲକ୍ଷେ ଶ୍ୱେତାଶ୍ୱେ ମୁକୁଟବନ୍ଧା ଥିଲେ ଯୋଦ୍ଧା
ଦିଶନ୍ତି ସେ ବିଦ୍ୟାଧର ପ୍ରାୟ ସର୍ବ ସିଦ୍ଧା ।
ଶିବରାଜାଙ୍କୁ ପେଷିଣ ପାଣ୍ଡବ ମାରୁତି
ଅମ୍ବୁ ଦେଶରେ ପ୍ରବେଶ ହେଲେ ସେହୁ ରାତି
ଚାରଗଣ ଜଣାଇଲେ ଅନ୍ୱେଶ ଅଗ୍ରତେ
ଭୀମ ଆମ୍ଭ ରାଜ୍ୟେ ବିଜେ ସୈନ୍ୟଙ୍କ ସହିତେ

ଶୁଣି ସାନନ୍ଦ ସେ ଅମ୍ବୁଦେଶ ଅଧିକାରୀ
ପାଏଡ଼ା ପାଡ ବୋଲିଣ ଆଜ୍ଞା ଅବଧାରି ।
ନରେଶଙ୍କ ଆଜ୍ଞାମତେ ଗଲେ ପାତ୍ର ମନ୍ତ୍ରୀ
ଅନେକ ଦିହୁଡ଼ି ହୁଳା ଜଳାଇଲେ ଧାଡି ।
ଦେବାଙ୍ଗ ବସନମାନ ପାଏଡ଼ା ପାଡ଼ିଲେ
ନରପତିଙ୍କ ଛାମୁରେ ଯାଇ ଜଣାଇଲେ ।
ଶୁଣି ଦ୍ୱିହସ୍ତେ ଚାମର ଘେନି ନରମଣି
ମଳୟା ବାସନ୍ତୀ ବୋଲି ତା ବେନି ରମଣୀ ।
ଏହାଙ୍କୁ ସଙ୍ଗରେ ଘେନି ଅମ୍ବୁଦେଶ ରାଜା
ଦରଶନୀ ଧନ ଦେଇ ଭୀମେ କଲା ପୂଜା ।
ଭୀମ ତା ନଗ୍ରେ ଜଗତୀ ଉପରେ ବିଜୟେ
ଲକ୍ଷେ ହୁଳା ଜଳୁ ଦିଶେ ଦିବସ ପରାୟେ ।
ରାଜାର ଭକତି ଦେଖି ପବନ ନନ୍ଦନ
ଅଭୟ ଦେଇ ତାହାକୁ ହୋଇଲା ପ୍ରସନ୍ନ ।
ବୋଇଲେ ତାହାକୁ ତୁହି ପଶ୍ଚିମରେ ଧନ୍ୟ
ରାଜାମାନଙ୍କେ ଉତ୍ତମ ଅଟୁ ପୁଣ୍ୟବାନ ।
ଏହା କହିଣ ଅକ୍ଷତ ତାର କରେ ଦେଲେ
ରାଜସୂୟ ଯାଗକୁ ତୁ ଯାଅସି ବୋଇଲେ ।
ତୋହର ଯେତକ ସୈନ୍ୟ ସେମାନଙ୍କୁ ନେବୁ
ଇନ୍ଦ୍ରପ୍ରସ୍ଥେ ଅତିଶୀଘ୍ର ଯାଇ ପ୍ରବେଶିବୁ ।
ଏରୂପେ କଥାବାର୍ତ୍ତାରେ ରାତ୍ର ହେଲା ଶେଷ
ପୂର୍ବ ଦିଗରେ ଉଦୟ ହୋଇଲେ ଦିନେଶ ।
କାକ ପିକ ତାମ୍ରଚୂଡ଼ ଖଗାଦି ରାବିଲେ
ଶଙ୍ଖ ଘଣ୍ଟା ଶବ୍ଦ ହେଲା ଦେବତାଙ୍କ ଆଳେ ।
ଏ ସମୟେ ଭୀମ ପ୍ରାତଃକ୍ରିୟା ଶେଷ କଲେ
ରନ୍ଧାବଢ଼ା କରି ତହିଁ ଭୋଜନ କରିଲେ ।
ଭୋଜନ ସାରି ଟିକିଏ ନେଲେ ଅବସର
ସୈନ୍ୟମାନେ ଇଚ୍ଛା ସୁଖେ କରିଲେ ଆହାର
ଜୟ ଜୟ ଜଗନ୍ନାଥ ଜଗତ ଜୀବନ
ଏ ସଂସାର ଖେଳଘର ତୁମ୍ଭର ଭିଆଣ ।
ଏ ମାୟାରୁ ଉବୁରିବ କାର ସାଧ ନାହିଁ
ତୁମ୍ଭର ଦୟାହିଁ ମୂଳ ଅଟେ ଭାବଗ୍ରାହୀ ।
ଏଣୁ ତୁମ୍ଭ ଚରଣରେ ପଶିଲି ଶରଣ
ଏ ଜଞ୍ଜାଳୁ ମୁକ୍ତି କରି ଦିଅ ଭକ୍ତଧନ ।
ଏତିକି ପ୍ରାର୍ଥନା ତୁମ୍ଭ ପାଦେ ଆହେ ହରି
ଶାରଳା ଦାସ ଅଟଇ କୃପାର ଭିକାରୀ ।



## ଭୀମଙ୍କର ପୁଣ୍ଡରୀକ ବାସୁଦେବ ରାଜା ସହିତ ଯୁଦ୍ଧ ଓ ତାହାର ବନ୍ଧନ

ଏହାଶୁଣି ମନୁରାଜା ଆନନ୍ଦିତ ହେଲେ
ମୁନିଙ୍କ ପାଦତଳେ ସାଷ୍ଟାଙ୍ଗେ ପଡ଼ିଲେ ।
ପୁଣି ଉଠି ବୋଇଲେକ କହ ମୁନିବର
ତହୁଁ ପୁଣି କାହିଁ ଗଲେ ବୀର ବୃକୋଦର ।
ଏହା ଶୁଣି ଅଗସ୍ତି ଯେ ରାଜାଙ୍କୁ କହିଲେ
ଅମ୍ବୁ ରାଜ୍ୟକୁ ଚଳାଇ ତହୁଁ ଭୀମ ଗଲେ ।
ସେଠାରୁ ଉତ୍ତମ ମୂର୍ତ୍ତି ହୋଇଣ ମାରୁତି
କରବୀର ଦେଶକୁ ସେ ଥାଟ ଚଳାବନ୍ତି ।
ତହିଁ କଉଶିକୀ ନାମେ ଅଛି ନଦୀ ଗୋଟି
ନୈରତେ ମେଖଳାଟୁ ସେ ଧାର ଆସେ ଫୁଟି ।
ଦକ୍ଷିଣ ସାଗରେ ଯାଇ ହୋଇଛି ସଙ୍ଗମ
ସେ ନଦୀ କୂଳରେ ଯାଇ ପ୍ରବେଶିଲେ ଭୀମ
ବାଜଇ ବିଜିଘୋଷ ଯେ ଦାଉଣ୍ଡି ଟମକ
ମେଦିନୀ କମ୍ପଇ ସ୍ୱର୍ଗେ ପଡ଼ିଲା ଚମକ ।
ସେହିଠାରେ ରହ ବୋଲି ବୋଇଲେ ପାବନି
ବିଶ୍ରାମ କରିବା ସର୍ବେ ରାତ୍ରେକ ଯେ ପୁଣି ।
ଭୀମଙ୍କ ଆଜ୍ଞାରେ ସର୍ବେ ସେଠାରେ ରହିଲେ
ଶୋଇ ବସି ରାତ୍ର ଗୋଟି ସୁଖେ ପୁହାଇଲେ
ପ୍ରାତେଃ ଭୀମ ସ୍ନାନ କଲେ ସେ ନଦୀଜଳରେ
ଦୂତେ ଜଣାଇଲେ ଯେଣେ ରାଜାର ଆଗରେ ।
ଶୁଣ ଦେବ କରବୀର ଦେଶ ଅଧିକାରୀ
ଦଣ୍ଡ ଘେନି କେଉଁ ରାଜା ଆସେ ବିଜେକରି ।
ସଙ୍ଗେ ରଥ ଗଜ ଅଶ୍ୱ ଅନେକ ପଦାତି
ମହାବଳବନ୍ତ ସେହୁ ଅଟେ ମହାକ୍ଷତ୍ରୀ ।
କୃତାନ୍ତକ ମୂରତି ସେ ଯମ ଦର୍ପଭଞ୍ଜା
ନିମନ୍ତ୍ରି ନେବାକୁ ଆସେ ପଶ୍ଚିମରୁ ରାଜା ।
ଅସଂଖ୍ୟ ମହିମା ତ ର ନ ସରେ କହନ୍ତେ
ବହୁଦେଶ ସାଧକରି ଆସେ ଏକା ରଥେ ।
ଏହି ପଶ୍ଚିମ ଦିଗରେ ତୁମ୍ଭେ ଚକ୍ରବର୍ତ୍ତୀ
ଏଥିକି ବିଚାରି କାର୍ଯ୍ୟ କର ମହାମତି ।
ଡ଼ଗର ମୁଖୁ ବାରତା ପାଇ ପୁଣ୍ଡରୀକ
କହେ ଚାହିଁ ମନ୍ଦପାଳ ମନ୍ତ୍ରୀବର ମୁଖ ।
ଜାଣୁ କି ହୋ ମନ୍ତ୍ରୀ ଏହୁ କେଉଁଦେଶ ଥାଟ
ଏ ପଶ୍ଚିମ କୋଶଳରେ ଅଭୟ ମୋ ରାଷ୍ଟ୍ର ।
ରାଜାର ବଚନ ଶୁଣି ବୋଲେ ମନ୍ତ୍ରୀବର
କେଉଁଦେଶ ଥାଟ ମୋତେ ନାହିଁ ଯା ଗୋଚର
ଏହା ଶୁଣି ଆଜ୍ଞା ଦେଲା କରବୀର ନାଥ
ଯାଅ ହୋ ନିରୋଧ କର ତା ଆସିବା ପଥ ।
ରାଜା ବଚନେ ବାହାର ହୁନ୍ତେ ଅମାତ୍ୟେ
ଆଜ୍ଞା ଦେଲାକ ସେ ସୋମଦତ୍ତ ସେନାପତେ
ସଜ ହୁଅ ଗଜ ଅଶ୍ୱ ରଥେ ପାରିଦଣ୍ଡ
ଉଗାଳ ନ ପଶୁ ଆମ୍ଭ ରଜ୍ୟେ ତାର ଦଣ୍ଡ ।

ରାଜାଜ୍ଞାରେ ବାହାରିଲେ ସର୍ବ ସେନାପତି
ମଣ୍ଡିଲେ ରଥ ସହିତେ ମତ୍ତହସ୍ତୀ ପନ୍ତି ।
ହୀରା ନୀଳା ମରକତ ମଣି ବଇଦୁର୍ଯ୍ୟ
ଏ ସବୁ ଖଞ୍ଜନ୍ତେ ରଥ ଦିଶେ ସୂର୍ଯ୍ୟତେଜ ।
ଝଲକେ ଲାଙ୍ଗିଆ ଗୁରୁଜାଦି ଅହିପତ୍ର
ରେ ରେକାର ଶବ୍ଦ କରି ଧାଇଁଲେ ସମସ୍ତ ।
ତାଙ୍କ ଗହଳ ଶବଦେ କମ୍ପିଗଲା ଭୁବି
ଶେଷ ଯୁଦ୍ଧକାଳେ ଯେହ୍ନେ ଡାକନ୍ତି ଭୈରବୀ
ସେହି ପ୍ରକାର ଚିତ୍କାର ଛାଡ଼ିଣ କୌଣପେ
ଗମନ କରିଲେ ଉଦେଗିରିର ସ୍ୱରୂପେ ।
ଦଶ ଅରବୁଦ ରଥ ବିଂଶଲକ୍ଷ ହସ୍ତୀ
ତ୍ରିଂଶଲକ୍ଷ ଅଶ୍ୱ ତିନି କ୍ଷଉଣୀ ପଦାତି ।
ପଞ୍ଚଛତ୍ର ଆଲମ୍ବ ଯେ ଅନେକ ଉଦଣ୍ଡ
ସଂଗ୍ରାମକୁ ବାହାରିଲେ ଶତ ପାରିଦଣ୍ଡ ।
ଭୀମସେନ ରହିଛନ୍ତି ନଦୀ ପୂର୍ବଭାଗେ
କରବୀର ଥାଟ ମିଳେ ପଶ୍ଚିମର ଭାଗେ ।
ମୁଖଗୋଳ ଶବ୍ଦ ଶୁଣି ଚାହିଁ ଭୀମସେନ
ଦେଖିଲେ ନଦୀ ସେପାରେ ଅନେକ ସଇନ୍ୟ
ରେ ରେକାର ଶବ୍ଦ କରି ଯୋଦ୍ଧାଏ ଗର୍ଜନ୍ତି
ଅଶ୍ୱମାନଙ୍କୁ ଖେଦାଇ କୋପରେ ପିଟନ୍ତି ।
ଖେଦାଇ ଖିଆଇ କରି ମତୁଆଳ ନାଟ
ଦେଖି ରାଗେ ମାରୁତିଙ୍କ କମ୍ପିଲା ମୁକୁଟ ।
ଉପରକୁ ଡିଅାଁଇଣ ଧରେ ଗଦା ବେନି
ନଦୀର ଭିତରେ ଡେଇଁ ପଶିଲା ପାବନି ।
ସେ ନଦୀର ଗଭୀର ଯେ ଅଟେ ତାଳ ତିନି
ପଶନ୍ତେ ମାରୁତିଙ୍କୁ ଯେ ହେଲା ଆଣ୍ଠୁଆଣି ।
ପୁଣ୍ଡରୀକ ବାସୁଦେବ ପକ୍ଷ ଯେତେ ଯୋଧୀ
ନଦୀ ସେପାରେ ଥାଇଣ ଭୀମେ ଶର ବିନ୍ଧି ।
ବରଷାଋତୁରେ ଯେତେ ବରଷଇ ନୀର
ତେସନ ପରାୟେ ବୀର ବିନ୍ଧୁଛନ୍ତି ଶର ।
ସେ ନଦୀ ପୂରି ତହିଁରେ ହେଉ ଶରବୃଷ୍ଟି
ଭୀମଙ୍କ ଶରୀରେ ଶର ଗୋଟିଏ ନ ଫୁଟି ।
ନଦୀ ପାରହୋଇ ବୀର ଉଠି ଗଳଗାଜି
କରବୀର ସଇନିଏ ପଳାଇଲେ ଭାଜି ।
କାଳଚକ୍ର ନୟନରେ ଚାହେଁ ବୃକୋଦର
ତ୍ରାସେ ପଳାଇଲେ କେହି ନ ରହି ଛାମୁର ।
ଏକା ମାରୁତି ଅଛନ୍ତି ପଶ୍ଚିମର କୂଳେ
ଭୀମଙ୍କ ସୈନ୍ୟ ଡେଇଁଣ ପଡ଼ିଲେ ସେ ଜଳେ
ଅଗାଧଜଳ ଯେ ଥିଲା ହୋଇଗଲା ସ୍ଥଳ
ପଶି ଗମିଲେ ସଇନି ହେଲେ ଆରକୂଳ ।

ସଂଗ୍ରାମରେ ବୃକୋଦର ପଶିଅଛି ଏକା
ଅସଂଖ୍ୟ ସଇନିକି ତା ମନେ ନାହିଁ ଶଙ୍କା ।
ସୁରବୀର ସୁନ୍ଦର ସେ ଭୀମ ମହାବଳୀ
ରଥମାନଙ୍କୁ କଚାଡେ ବାମକରେ ତୋଳି ।
ଏକ ରଥ ଘେନି ଅନ୍ୟ ରଥପରେ ପିଟି
ଗଜ ଅଶ୍ୱ ପଦାତି ଯେ ମହୀପରେ ଲୋଟି ।
ବିଜୟ କଲାକି ଆସି ଶମନ ପୁରୁଷ
ସେକାଳେ ମନ୍ଦର ତୁଲ୍ୟ ତା ଦେହ ପ୍ରକାଶ ।
ଗିରିବରେ ଅସ୍ତ୍ର ପଡ଼ି ଯେହ୍ନେ ଚୂନାହୁଏ
ତେହ୍ନେ ତୀକ୍ଷ୍ଣ ଅସ୍ତ୍ର ଭାଙ୍ଗେ ପଡ଼ି ଭୀମକାୟେ ।
ଶତଶୃଙ୍ଗ ପ୍ରସନ୍ନେ ଯା ବଜ୍ର ଅଟେ କାୟା
ନାନା ଅସ୍ତ୍ରମାନଙ୍କୁ ସେ ଅଟଇ ନିର୍ଭୟା ।
ଅନେକ ସଇନ ତାର ମାଇଲା ଗୋଡ଼ାଇ
ଶରଣ ଫୁକାରନ୍ତି ଯେ ମୁଖେ କର ଦେଇ ।
ନିର୍ଦ୍ଦୟ ପାଣ୍ଡବ ସୈନ୍ୟ ମଝେ ପଶି ରଣେ
ଦଶସହସ୍ର ରଥୀଙ୍କି ମାଇଲା ସେ ଜଣେ ।
ଗଜ ଅଶ୍ୱ ପଦାତି ଯେ ନ ଯାଇ କଳନ
ସୈନ୍ୟ ପାଏଡ଼ା ପାଡ଼ିଲେ ଚଉଦ ଯୋଜନ ।
ପଳାଇ ସୈନ୍ୟ କହିଲେ ରାଜାର ଅଗ୍ରତେ
ହେ ରାଜା ବିପଦ ଆସି ପଡ଼ିଲାକ ତୋତେ ।
ଅନେକ ସଇନି ତୋର ମାଇଲା ସେ ଜଣେ
ପ୍ରତ୍ୟକ୍ଷେ ଶମନ କି ସେ ବିଜେ କଲା ରଣେ ।
ବିନାଶକାଳକୁ ଦେବ ନ ସ୍ଫୁରଇ ବୁଦ୍ଧି
ଅଦୋଷରେ ନ ହରାନ୍ତୁ ଏଡ଼େ ବଡ଼ ଆଧି ।
ଧାର୍ମିକ ନୃପତି ତୁହି ଅଟୁ ମହାବିଜ୍ଞ
ଶୂରବନ୍ତ ପୁରୁଷ ତୁ ବିବେକ ସର୍ବଜ୍ଞ ।
ବିଜେ ନାରାୟଣ ତୁହି ପଶ୍ଚିମ କୋଶଳେ
ତୋ ସମାନେ ରାଜା କେହି ନାହିଁ ରବିତଳେ
ଅକସ୍ମାତେ ଏ ଉତ୍ପାତ ହେଲା ଆହେ ଦେବ
ବୁଝି କାର୍ଯ୍ୟ କର ଆହେ କରବୀର ଧବ ।
ଏହି ପରି ନିରାଧାର ବାକ୍ୟ ଶୁଣି ରାୟ
ବୋଲେ ମୁହିଁ ମହାରାଜା କିପାଁ କର ଭୟ ।
ପ୍ରତିଜ୍ଞା କଲି ମୁଁ ବାସୁଦେବଙ୍କ ବିରୋଧୁ
ମର୍ତ୍ତ୍ୟେ ସର୍ବ ରାଜପୁରେ ମହିମା ମୋ ସାଧୁ ।
କହୁ କହୁ ସେ ରାଜାର ପ୍ରତିଜ୍ଞା ବଢ଼ିଲା
ବେଗେ ଦଣ୍ଡ ସାଜ ବୋଲି ମନ୍ତ୍ରୀକୁ କହିଲା ।
ରାଜାର ବଚନେ ମନ୍ତ୍ରୀଆଦି ସର୍ବବୀରେ
ସଜ ହେଲେ ରାଜା ବିଜେ ଗରୁଡ଼ ପିଠିରେ ।
ଶଙ୍ଖ ଚକ୍ର ଗାଣ୍ଡୀବାଦି ଅସ୍ତ୍ରମାନ ଘେନି
ପ୍ରତ୍ୟକ୍ଷେ ଦିଶେ କୃଷ୍ଣଙ୍କ ଶୋଭା ଜ୍ୟୋତି ଜାଣି

ଲକ୍ଷେକ ପାଟଛତ୍ର ଯେ ରଖି ବେନି ପାଖ
ଏଡ଼େ ସମ୍ଭର୍ବେ ବିଜୟ କଲା ପୁଣ୍ଡରୀକ ।
ଚାରିଶତ କୋଟି ହସ୍ତୀ ବିଂଶକୋଟି ରଥୀ
ତ୍ରିକୋଟି ଅଶ୍ୱ ଦ୍ୱାଦଶ କ୍ଷଉଣୀ ପଦାତି ।
ଦଶଲକ୍ଷ ତରାସ ଯେ ଆଗରେ ଧରାଇ
ମହାସମ୍ଭର୍ବରେ ବିଜେ କରବୀର ସାଇଁ ।
ବାଜେ ବୀରତୂର ଢୋଲ ଉଡ଼ଇ ନିଶାଣ
ନିର୍ଘାତ ସଦୃଶ ସେହି ବିନ୍ଧୁଛନ୍ତି ବାଣ ।
ସେ ଶବଦେ କମ୍ପମାନ ହୁଏ ତିନିପୁର
ରଣଧାନ୍ଦୋଳା ବୀରଧୁ ଅଟେ ମହାବୀର ।
ସୈନ୍ୟ ସଜାଇଣ ଥାଏ ନାନା ରତନରେ
ରଥୀ ରାଉତାଦିଙ୍କର ମୁକୁଟ ଶିରରେ ।
କୋଟି ଅର୍ବୁଦ ସୈନ୍ୟ ଉପରେ ରାଜା ଯେହୁ
ସହସ୍ର ଶାର୍ଦ୍ଦୁଳ ରଥେ ଯୋଚିଥାଏ ସେହୁ ।
ଲକ୍ଷେ ରାଜାଙ୍କ ଭଣ୍ଡାରେ ଯେତେ ଥିବ ଧନ
ପୁଣ୍ଡରୀକ ମୁକୁଟକୁ ନୋହିବ ସମାନ ।
ଦୈତ୍ୟ ଦାନବ ସଂଗ୍ରାମେ ଅଟେ ସେ ନିର୍ଭୟା
ବିନ୍ଧ୍ୟଗିରି ସମାନରେ ଅଟେ ତାର କାୟା ।
ଶକଟରେ ରଥ ରଥପରେ ଖଗଧ୍ୱଜ
ସେ ଖଗେଶ୍ୱର ବିଜୟ ପୁଣ୍ଡରୀକ ରାଜ
ପଶ୍ଚିମ କୋଶଳ ରାଜାଙ୍କର ଅଟେ ଗୁରୁ
ଆସନ୍ତେ ଭୀମ ଦେଖିଲେ ତାହାକୁ ଦୂରରୁ ।
ଦେଖି ଅପସରଇ ସେ ପବନ ତନୟେ
ସାରଥିକୁ ବୋଲେ ବିଜେ କଲେ ଦେବରାୟେ
ସାରଥି ବୋଇଲା ଶୁଣ ପବନର ବସ
ବାସୁଦେବ ଚିହ୍ନ ବହେ ଏହି ପୁଣ୍ଡରୀକ ।
କାଠ ବେନି ଭୁଜେ ସେହୁ ଶଙ୍ଖ ଚକ୍ର ଧରି
କୃଷ୍ଣେ ନିନ୍ଦେ କାଠ ଖଗପୃଷ୍ଠେ ବିଜେକରି ।
ବଡ଼ ପ୍ରତାପୀ ତ୍ରିକାଳ ବାସୁଦେବ ବଳା
ଜଗନ୍ନାଥଙ୍କ ସ୍ୱରୂପ ବର୍ଣ୍ଣ ଦିଶେ କଳା ।
ଭୀମସେନ କୋପ କଲେ କୃଷ୍ଣ ନିନ୍ଦା ଘୋଷେ
ନିଶ୍ଚେ ପୁଣ୍ଡରୀକ ଯିବ ନାଶକର ପାଶେ ।
ଜଗନ୍ନାଥ ନିନ୍ଦୁକକୁ ରଖି ତ କି ନ ପାରି
କୃଷ୍ଣଙ୍କର ଶତ୍ରୁ ଯେହୁ ଆମ୍ଭର ବଇରୀ ।
ପାଣ୍ଡବେ ସପକ୍ଷ ସେହୁ ଅଟେ ଦୟାନିଧି
ମୁଁ ଯାକୁ କେହ୍ନେ ଥୋଇବି ଏ କୃଷ୍ଣ ବିରୋଧୀ ।
ଭୀମ କୋପ ଦେଖି ବୋଲେ ମରୁତ ସାରଥି
ଏହାର ବଂଶର କଥା ଶୁଣ ହୋ ମାରୁତି ।
ତ୍ରିକାଳ ବାସୁଦେବର ସୁତ ଅଟେ ଏହି
ଅନନ୍ତ ବାସୁଦେବର ନାତି ଏ ଅଟଇ ।

ପ୍ରତ୍ୟେକ ନୃପତି ଏକ ଅନାଦିଙ୍କ ବଂଶୀ
ଜନ୍ମେ ଜନ୍ମେ ଏ ବିଷ୍ଣୁଙ୍କଠାରେ ସଦା ଦୋଷୀ ।
ଅନଙ୍ଗ ବାସୁଦେବ ଯେ ଏହାଙ୍କର ବଂଶେ
ସେତିକ ଅପସରୀକି ରସିଲା ଆକାଶେ ।
ତ୍ରଇଲୋକ୍ୟ ବାସୁଦେବ ତା ପୁତ୍ର ହୋଇଲା
ତ୍ରୈଲୋକ୍ୟର ଏକଛତ୍ର ସଦାଶିବ ହେଲା ।
ଏହାର ନନ୍ଦନ ସୁରସିଦ୍ଧ ବାସୁଦେବ
ଏହା ପୁତ୍ର ପଦ୍ମଦେବ ଯା ପୁତ୍ର ପୁରୁବ ।
ଏହାର ନନ୍ଦନ ସଦାଶିବ ପଦ୍ମକର
ବାସୁଦେବ ବୋଲି ପୁତ୍ର ହୋଇଲା ଏହାର ।
ଅନଙ୍ଗ ନାମେ ହୋଇଲା ବସୁଦେବ ବଳା
ଅନଙ୍ଗ ଭାର୍ଯ୍ୟା ବାରାହୀ ଅଟେ ସସ୍ରକଳା ।
ସୁନ୍ଦରୀ ସୁଲକ୍ଷଣା ତା ରୂପ ନିନ୍ଦେ ଶଶୀ
ନିତି ମନ୍ତ୍ର ପଢ଼ି ବେଣୁ ବାଇ ତୋଷେ କାଶୀ ।
ସପତସ୍ୱର ସେ ବେଣୁ ପିନାକୀ ଅଧାଟି
କେଦାର ମହାଲିଙ୍ଗଙ୍କ ପାଦେ ଥାଏ ଖଟି ।
କର୍ଣ୍ଣବେଣୀ ସ୍ନାନୁ ଯାଏ ତାଙ୍କ ଦରଶନେ
ପତିବ୍ରତା ସ୍ତିରୀ ସେହୁ ନ ଭଜଇ ଆନେ ।
ବଇଶାଖ ଶୁକ୍ଳପକ୍ଷ ଶୁକ୍ରବାର ଚୌଠି
ଗ୍ରୀଷମ ଋତୁରେ ଆର୍ଦ୍ରା ନକ୍ଷତ୍ର ପଇଠି ।
ପାକଶୁଦ୍ଧ ସ୍ନାନ ହେବ ସେ ଦିନ ସେ ବାଳୀ
ବିଶ୍ୱନାଥ ଦର୍ଶନରେ ଚଳେ ମଧ ତୁଳି ।
ବଜ୍ରକବଚ ବୋଲିଣ ଏକ ରକ୍ଷପତି
ନିବାତ କବଚର ସେ ଅଟେ ପଣନାତି ।
ପ୍ରିୟବ୍ରତ ପାଳିଣ ସେ ଆସେ ସସ୍ରକଳା
ହର ପର୍ବତେ ଦେଖିଲେ ସେ ଅସୁର ବଳା ।
ଦେଖି କାମରୂପୀ ଦୈତ୍ୟ ତେଜି ନିଜ କାୟ
କପଟେ ହେଲା ଅନନ୍ତ ବାସୁଦେବ ପ୍ରାୟ ।
ବିଶ୍ୱନାଥଙ୍କୁ ସେବିଣ ଲେଉଟେ ଯୁବତୀ
ସନ୍ଧ୍ୟାକାଳଗତେ ଅନ୍ଧ ହୋଇଥିଲା ରାତି ।
ହସ୍ତରେ ଖଟ୍ୱାଙ୍ଗ ଏକ ଘେନି କଉଣପ
ସସ୍ରକଳାକୁ ଭେଟିଲା ଧରି ମାୟାରୂପ ।
ଦେଖିଲା ସୁନ୍ଦରୀ ନେତ୍ରେ ପଥେ ନିଜ ସ୍ୱାମୀ
ନିଜର ବଲ୍ଲଭ ମଣି ତକ୍ଷଣେ ପ୍ରଣମି ।
ଅଧର ପୁଷ୍ଟେ କରିଣ ବୋଇଲା ଚଣ୍ଡାଳ
କାହିଁ ରହିଥିଲୁ ତୁହି ହେଲା ରାତ୍ରକାଳ ।
ନିଜ ସ୍ୱାମୀ ମଣି ଭୟ କରିଲା ଯୁବତୀ
ବୋଲେ ପୁତ୍ର ମାଗୁଥିଲି ବିଶ୍ୱନାଥ କତି ।
ମନୁମନ୍ଥ ଗିରି ଜୀବନ୍ୟାସ ବଟତଳେ
ଦୁରନ୍ତ ଅସୁର ତାକୁ ଧଇଲାକ କୋଳେ ।

ବର୍ଣ୍ଣ ଦିଶଇ ଅନନ୍ତ ବାସୁଦେବ ପ୍ରାୟ
ରୂପ ଦେଖିଣ ସୁନ୍ଦରୀ ସମର୍ପିଲା କାୟ ।
ରାକ୍ଷସର ଶୃଙ୍ଗାର ଯେ ହୋଇଲା ବହୁତ
ବୋଲେ ମୋ ସ୍ୱାମୀର ଭାବ ନୁହେଁତ ଏମନ୍ତ
ରସେ ଶୃଙ୍ଗାର ସହିତ କଷ୍ଟେ ରସକଳା
ଛାଡ଼ିଲା ମହାବୀର୍ଯ୍ୟେ ସେ ଦୈତ୍ୟ ମହାବଳା
ବହୁତବେଳେ ସୁନ୍ଦରୀ ପାଇଲାକ ଜ୍ଞାନ
ଅନ୍ତଃପୁରେ ପରବେଶ ହେଲା ସେହିକ୍ଷଣ ।
ମରୁତ ସାରଥି ବୋଲେ ଶୁଣ ବାୟୁବଳା
ଦୈତ୍ୟବୀର୍ଯ୍ୟେ ସେ ପୁତ୍ରକୁ ଜନ୍ମ କଲା ବାଳା ।
ଦେଖିଣ ଅନନ୍ତରାଜ ଅତିତୁଷ୍ଟ ହୋଇ
ଅନେକ ସେ ଦାନ ଦେଲା ଦ୍ୱିଜଙ୍କୁ ଡକାଇ ।
ପୁରେ ଉତ୍ସବ କରାଏ ହୋଇ ହର୍ଷମତି
ଯେ ଯାହା ମାଗଇ ଦିଏ ଦୟାକରି ମତି ।
ତ୍ରିକାଳ ବିଶ୍ୱନାଥଙ୍କୁ ସେବି ଲଭୁଁ ବଳା
ତ୍ରିକାଳ ବାସୁଦେବ ତା ନାମ ରାଜା ଦେଲା ।
ଯଦ୍ୟପି ଜନମିଲା ସେ ବିଷ୍ଣୁଙ୍କର ବଂଶେ
ରାକ୍ଷସକଳା ଘେନିଲା ମନ୍ଦବୀର୍ଯ୍ୟ ଦୋଷେ ।
ରାକ୍ଷସମାନେ ସର୍ବଦା ବିଷ୍ଣୁଙ୍କ ବଇରୀ
ଅନନ୍ତ ଅବତାରେ ଏ ଅଟେ ଚକ୍ରଧାରୀ ।
ତ୍ରିକାଳ ପୁତ୍ର ପୁଣ୍ଡରୀକ ବାସୁଦେବ
ଏହି ଯେ ବହିଲା ହାଦେ ଅସୁର ସ୍ୱଭାବ ।
ଅସୁର ନିଧନେ ଜାତ ପ୍ରଭୁ ଦାମୋଦର
ପଶ୍ଚାତେ ଏହାକୁ ସେହୁ କରିବେ ସଂହାର ।
ତୁ କିମ୍ବା ଏହାକୁ ବଧ କରିବୁ ସମରେ
କୃଷ୍ଣ ଯା ବିଚାରିବେ ସେ ରାଜସୂୟ ସଭାରେ ।
ଯଦି ଏହାକୁ ମାରିବୁ ତୁହି ଭୀମସେନ
ରାଜା ସୈନ୍ୟ ଗଢ଼ିବାକୁ ବହୁ ଲୋଡ଼ା ଧନ ।
ଭୀମ ବୋଲେ ପ୍ରଭୁଙ୍କୁ ଏ କରଇ ଅବଜ୍ଞା
ମୋ ଦେହେ ସହି ନୁହଇ ଏସନ ପ୍ରତିଜ୍ଞା ।
ଏହାକୁ ବଧିଲେ କୃଷ୍ଣ ହୋଇବେ ସାନନ୍ଦ
ଯାଗସ୍ଥାନେ ଏହାଯୋଗେ ନ ହୋଇବ ଦ୍ୱନ୍ଦ୍ୱ
ସୂତ ବୋଲେ ରାଜାଙ୍କର ବହୁ ଥିବି ଗୁଣ
ଦୋଷ ବାଛିଲେ କି କରି କରିବ ବରଣ ।
ଯଦ୍ୟପି କୃଷ୍ଣଙ୍କଠାରେ ଏ ଦୋଷୀ ହୋଇଛି
ପୃଥ୍ୱୀଭାର ଯାକୁ କିମ୍ବା ପ୍ରଭୁ ଦେଇଛନ୍ତି ।
ଡରାଇ ଏହାକୁ ଆମ୍ଭେ ଯେ ପ୍ରକାରେ ସାଧି
ପ୍ରାଣେ ନ ମାରିଣ ଯାକୁ ନେଇଯିବା ବାନ୍ଧି ।
ଶୁଣିଣ ଆନନ୍ଦ ହେଲା ହିଡ଼ିମ୍ବିକୀ ନାହା
ବୋଲେ ପୁଣ୍ଡରୀକ ପାଶେ ବେଗେ ରଥବାହା
କି କି ବୋଲଇ ବୁଝିବା ଚାଲ ଯିବା ଦେଖି
କିପାଁ ସୈନ୍ୟଙ୍କୁ ମାରିବା ଏ ସର୍ବେ ନିର୍ମାକ୍ଷୀ ।
ଭୀମବାକ୍ୟେ ସୂତ ବେଗେ ବାହିଲାକ ରଥ
ଅନ୍ତରୀକ୍ଷେ ଗଲା ଛାଡ଼ି ସଇନି ସମସ୍ତ ।
ପୁଣ୍ଡରୀକ ରହିଥିଲା ନିଜ ମଣି ଥାଟ
ଭୀମ ବିଜେକରି ଯାଉଁ ପଛେ ହେଲେ ଭେଟ
ଯେସନ ପ୍ରକାରେ ଉଡ଼ି ଯାଆନ୍ତେ ପର୍ବତେ
ତେହ୍ନେ ସଇନି ପଡ଼ିଲେ ଭୀମ ଗଦାଘାତେ ।
ବହୁତ ଦୂରେ ପଡ଼ିଲେ ସର୍ବେ ଉଡ଼ିଯାଇ
ପୁଣ୍ଡରୀକ ଛାଡ଼ି ସୈନ୍ୟ ଗଲେକ ପଳାଇ ।
ରଥ ତେଜିଣ ପାଣ୍ଡବ ଧାଏଁ ଧାତିକାରେ
ଡେଇଁଣ ଚଢ଼ିଲା ତାର ରଥର ଉପରେ ।
କୋପେ ପ୍ରହାରିଲା ଗଦା ତହୁଁ ଭୀମ ଟୋଳି
କାଠର ଗରୁଡ଼ ଭାଙ୍ଗି ହୋଇଲାକ ଧୂଳି ।
ରଥ ଶକଟ ଭାଙ୍ଗିଣ ତାର ଧୂଳି ହେଲା
ବାମହସ୍ତରେ ତା କେଶ ମାରୁତି ଧରିଲା ।
ଯେତେବେଳେ ଭୀମ ତାର କେଶକୁ ଧଇଲେ
ବଜ୍ରାବଳୀ ଗଦା ପିଟେ ତାର ବକ୍ଷସ୍ଥଳେ ।
ଭୀମ ଅଙ୍ଗେ ବାଜି କରି ତାର ଗଦାବର
ଭାଙ୍ଗିଣ ପଡ଼ିଲା ତଳେ ହୋଇ ଶତେଚୂର ।
ପୁଣି ପ୍ରହାର କରିଲା ରାଜା ଅସିବର
ଖଡ଼ଗ ଉଚ୍ଛୁଳି କରି ନେଲା ବୃକୋଦର ।
ବାମକରେ କେଶ ଖଡ଼୍ଗ ଧରି ଦକ୍ଷପାଣି
ବୋଲଇ ଏହାର ଶିର ପକାଇବି ହାଣି ।
ମରୁତ ସାରଥି ତାର ଧଇଲାକ ହସ୍ତ
ରହ ରହ ବୃକୋଦର ନ କର ତୁ ହତ ।
ସାରଥି ବାକ୍ୟେ ବଞ୍ଚାଉ ଭୀମେ ସେ ଖଡ଼ଗ
କେଶ ଧରିଣ ଝିକନ୍ତି ନୋହି ଶାନ୍ତ ରାଗ ।
ଭୟେ ପଳାଇଲେ ତହୁଁ ଯୋଦ୍ଧା ଅମନାତ୍ୟେ
ଶରଣ ପଶିଲେ ଯାଇ ଭୀମ ପାଦଗତେ ।
ବାରସସ୍ର କ୍ଷୌଣୀ ବଳ ଶସ୍ତ୍ରକୁ ପକାଇ
ତ୍ରାହି ତ୍ରାହି ବୋଲନ୍ତି ଯେ ମୁଖେ କର ଦେଇ
ବିନୟ ହୋଇ କହଇ ମରୁତ ସାରଥି
ଏ ରାଜାର ହିତେ କୋପ କରିବାକୁ ଶାନ୍ତି ।
ଜୀବନ ଚିର ନୁହଇ ବୁଝ ମହାତମା
ଯୁଗେ ଯୁଗେ ରୁହାଥ ତୁ ତୋହର ଗାରିମା
ଆହେ ଭୀମ କ୍ଷମାଗୁଣେ କରି କ୍ଷମା ଦାନ
ସଂସାରେ ଶୁଭିବ ସଦା ତୋତେ ଧନ୍ୟ ଧନ୍ୟ ।
ଏ ଯେ ବିନୟ ହୁଅନ୍ତି ତୋତେ ସୈନ୍ୟମାନେ
ଧର୍ମ ଉଦେ ହେଉ କୋପ ତେଜ ଭୀମସେନେ ।

ଶରଣ ରକ୍ଷଣ ତୁହି କକ୍ଷ ଜଗଜ୍ଜେଠି
ତ୍ରୈଲୋକ୍ୟ ବିକାଶିଲାଣି ତବ ନାମଗୋଟି ।
ଭୀମ ବୋଇଲେ ଛାଡ଼ିଲି ମୁଁ ତୋହର ବୋଲେ
ପ୍ରାଣେ ରକ୍ଷା କଲି ସୈନ୍ୟ ଯାଆନ୍ତୁ ସକଳେ
ରାଜାକୁ ରଥେ ବାନ୍ଧି ମୁଁ ନେବଇଁ ଅବଶ୍ୟ
ବନ୍ଧନ ଯାର ଦେଖନ୍ତୁ ଯଜ୍ଞେ ହୃଷୀକେଶ ।
ଏହା କହି ରାଜା କେଶ ଛାଡ଼ି ପାଟଡ଼ୋରେ
ବନ୍ଧନ କଲେ ତାହାକୁ ରଥର ଖୟରେ ।
ତାହାର ପାରିଦଣ୍ଡକୁ ଭୀମ ଆଜ୍ଞା ଦେଲେ
ଅକ୍ଷତ ଗୁଆ ଦେଇଣ ଶାଢ଼ୀ ବନ୍ଧାଇଲେ ।
ବୋଇଲା ଯୋଦ୍ଧାଙ୍କୁ ତୁମ୍ଭେମାନେ ସୈନ୍ୟଘେନି
ଇନ୍ଦ୍ରପ୍ରସ୍ଥେ ଚଳ ଶୀଘ୍ରେ ଦିବସ ରଜନୀ ।
ସୈନ୍ୟ ସକଳ ବୋଲନ୍ତି ଭୀମକୁ ପ୍ରଣମି
ଆମ୍ଭ ରାଜାଙ୍କ ବନ୍ଧନ ଫେଡ଼ିବାକ ସ୍ୱାମୀ ।
ଭୀମସେନ ବୋଲେ ତୁମ୍ଭେ ନ କହ ଏମନ୍ତ
ତୁମ୍ଭ ରାଜା ନ ମାରିବି ଏ ମୋ ସତ୍ୟ ସତ୍ୟ
ରଥେ ବନ୍ଧନ ହୋଇଣ ବୋଲେ ବାସୁଦେବ
ମୁହିଁ ଜାଣି ନ ପାରିଲି ବିଜୟ ପାଣ୍ଡବ ।
ସ୍ୱାମୀ ନ ଜାଣିଣ ଦ୍ରୋହ କଲି ଅନିମିତ୍ତେ
ପ୍ରତ୍ୟକ୍ଷେ ଫଳିଲା ଫଳ ଅର୍ଜିଲି ସ୍ୱହସ୍ତେ ।
ପଞ୍ଚାଶ ସହସ୍ର ରାଜା ଛନ୍ତି ପଶ୍ଚିମରେ
କାହାକୁ ବନ୍ଧନ ଦେବ କରିଛୁ ରଥରେ ।
ମୋହର ଦୋଷ ମୋଚନ କର ମହାବୀର
ଦଣ୍ଡଘେନି ଏହିକ୍ଷଣି ଯିବି ଆଜ୍ଞା କର ।
ଭୀମସେନ ବୋଲେ ତୋର ଏଡ଼େକ ଗରବ
କୃଷ୍ଣଙ୍କ ସମ ବୋଲାଉ ତୁହି ବାସୁଦେବ ।
ବାସୁଦେବଙ୍କ ଛାମୁରେ ନେବି ତୋତେ ଧରି
ସେ ତୋତେ ଦଣ୍ଡନ୍ତୁ ଅବା ଛାଡ଼ନ୍ତୁ ବିଚାରି ।
ସୈନ୍ୟଙ୍କୁ ବୋଧି ପେଷିଲା କରବୀର ପତି
ବନ୍ଧନେ ରହିଲା ରାଜା ଦୁଃଖକରି ଅତି ।
ଜୟ ଜୟ ମହାପ୍ରଭୁ ଶରଣ ସୋଦର
ଜୟ ଜୟ ମହାପ୍ରଭୁ ଶଙ୍ଖ ଚକ୍ରଧର ।
ଅଗତିର ଗତି ତୁମ୍ଭେ ଦୁଷ୍ଟ ଗର୍ବହାରୀ
ଶାରଳା ଦାସର ପ୍ରଭୁ ଘେନନ୍ତୁ ଗୁହାରି ।



## ଗଣପତି ଓ ରୁଦ୍ରଦେବ ରାଜାଙ୍କୁ ନିମନ୍ତ୍ରଣ

ଏଥୁଅନ୍ତେ ମନୁରାଜା ଯୋଡ଼ି ବେନିକର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛାକଲେ କହ ମୁନି ତହୁଁ ଭୀମସେନ
ପୁନଶ୍ଚ କେଉଁ ରାଜ୍ୟକୁ କରିଲେ ଗମନ ।
ରାଜାର ବିନୟ ଭାବ ଦେଖିଣ ଅଗସ୍ତି
ବୋଇଲେକ ଶୁଣ ରାଜା ସ୍ଥିରକରି ମତି ।
କରବୀର ଦେଶ ଜିଣି ଚଳେ ବୀରମଣି
ନିର୍ଝରଦେଶେ ପ୍ରବେଶ ହୋଇଲେକ ପୁଣି ।
ସେ ରାଜ୍ୟର ନରପତି ଅଟେ ଗଣପତି
ତହିଁ ଯାଇଣ ପ୍ରବେଶ ହୋଇଲେ ମାରୁତି ।
ଦେଶାଉର ଜଣାଇଲା ରାଜା ସନ୍ନିଧାନ
ପଶ୍ଚିମେ ବରି ଆସଇ ଜରାନିସୂଦନ ।
ପୁଣ୍ଡରୀକ ନରପତି କଲା ମନ୍ଦବୁଦ୍ଧି
ତାହାକୁ ସେ ରଥଖୟେ ରଖିଅଛି ବାନ୍ଧି ।
ଶୁଣିଣ ସାନନ୍ଦ ହେଲା ଗଣପତି ରାଜେ
ମୁହିଁ ଜାଣିଛି ପଶ୍ଚିମ ଦିଗେ ଭୀମ ବିଜେ ।
ପାତ୍ର ଅମାତ୍ୟଙ୍କୁ ରାଇ ବୋଇଲା ଝଟତି
ପୁରେ ଉତ୍ସବ କରାଅ ବୋଲି ଗଣପତି ।
ହାଟ ଦାଣ୍ଡ ପହଁରାଇ କରାଅ ନିର୍ମଳ
ଦ୍ୱାରେ ଦ୍ୱାରେ ରମ୍ଭାତରୁ ରୋପନ୍ତୁ ସକଳ ।
ସର୍ବଘର ଚାଳଘଟେ ସୁବର୍ଣ୍ଣ କଳସ
ନାନା ଭଙ୍ଗିର ପତାକା ଉଡ଼ାଅ ବିଶେଷ ।
ଶତପୁତ୍ରଙ୍କୁ ନେଇଣ ନିର୍ଝରର ପତି
ହସ୍ତେ ଚାମର ଘେନିଣ ଆସେ ତୋଷମତି ।
ସ୍ତ୍ରୀ ପୁରୁଷ ଅଟନ୍ତି ଯେତେକ ମୋ ରାଜ୍ୟେ
ଅଳଙ୍କାରେ ଭୂଷା ହୋଇ ଆସ ମୋର କାର୍ଯ୍ୟେ
ଦ୍ୱିତୀୟ ନିରଞ୍ଜନ ଯେ ବିଜୟ ମୋ ପୁରୀ
ଦର୍ଶନେ ସମସ୍ତ ପାପ ଯିବ ଅପସରି
ରାଜାର ଆଜ୍ଞାରେ ଶୀଘ୍ର ଚଳିଲେ ସଇନ
ଦିବ୍ୟ ବାସ ଅଳଙ୍କାରେ ହୋଇଲେ ମଣ୍ଡନ ।
ଚାମର ଛତ୍ର ଉଦଣ୍ଡ ଘେନିଣ ପ୍ରୟାଣେ
ମହାସମ୍ଭର୍ବେ ଆସନ୍ତି ରାଜା ସୈନ୍ୟମାନେ ।
ନବଶତ ପାରିଦଣ୍ଡ ସୈନ୍ୟ ବିଂଶ କ୍ଷୌଣୀ
ଏତକ ଖଟନ୍ତି ସେହି ମହା ନୃପମଣି ।
ରଥ ମାତଙ୍ଗ ସତୁରି ପରାର୍ଦ୍ଧ ଖଟଇ
ପଁନ୍ଦରଶତ ଯୋଜନେ ଯେ ପ୍ରଭୁ ଅଟଇ ।
ପଶ୍ଚିମ କୋଶଳେ ଯେହୁ ମହାଚାରୁହଂସି
ସବୁଙ୍କଠାରୁ ଅସାଧ ଗଣେଶଙ୍କୁ ତୋଷି ।
ବହୁ ଉତ୍ସବ କରାଇ ନିର୍ଝରର ରାଜା
ଶ୍ରୀଲମ୍ବୋଦର ସ୍ୱାମୀଙ୍କୁ କରଇ ସେ ପୂଜା ।
ଅନେକ ଉପହାର ସେ ବହୁ ଭୋଗମାନ
ଭୀମ ଶାନ୍ତିଅର୍ଥେ ଦେଇ ତୋଷି ଗଜାନନ ।

ଭୀମ ବିଜେ କରିଛନ୍ତି ନର୍ମଦାର କୂଳେ
ରାଜା ଦର୍ଶନ କରିଲା ପ୍ରାତଃ ସ୍ନାନବେଳେ ।
ସସ୍ତ୍ରଭାର ପାଣିଦ୍ରବ୍ୟ ଦେଇ ଦମଶନୀ
ଦର୍ଶନ କରିଲା ରାଜା ଯୋଡ଼ି ବେନିପାଣି ।
ତ୍ରାହି ତ୍ରାହି କହି ପୁଣ ପୁଣ ସେ ପ୍ରଣମି
ଶରଣ ରଖ ହେ ଜରାନିସୂଦନ ସ୍ୱାମୀ ।
ଛାମୁରେ ଜଣାଏ ବେଗେ ଦୂତ କାଳିଞ୍ଜନ
ନିର୍ଝରର ରାଜା ଆସି କରଇ ଦର୍ଶନ ।
ଆନନ୍ଦରେ ଅଶ୍ରୁଜଳ ବେନିନେତ୍ରୁ ଗଡ଼େ
ଗଡ଼ଘାଲି ହୋଇ ରାଜା ଭୂତଳରେ ପଡ଼େ ।
ଦରହାସ ହୋଇକରି ଚାହିଁ ବୃକୋଦର
ବୋଇଲେ କାର୍ଯ୍ୟଟି ସିଦ୍ଧିହେଉ ଯେ ତୋହର
ବହୁତ ବିନୟୀ ହୋଇ କହଇ ରାଜନ
ଆଜ ସାର୍ଥକ ହୋଇଲା ମୋହର ଜୀବନ ।
ଦେଖିଲି ନେତ୍ରେ ପ୍ରତ୍ୟକ୍ଷ ବିଜେ ବାସୁଦେବ
ଛାଡ଼ିଲା ପାତକ ମୋର ଯାହାଥିଲା ସର୍ବ ।
ସୁରସୁନ୍ଦର ନାମ ତୋ କକ୍ଷା ଜଗଜେଠି
ଦର୍ଶନମାତ୍ରେ ମୋହର ଦୁଃଖ ଗଲା ତୁଟି ।
ତା କଟକେ ବିଜେ କଲେ ପବନ ଦୁଲ୍ଲାଳ
ଦେଖିଲେ ରାଜ୍ୟର ଲୋକେ ଆନନ୍ଦ ସକଳ ।
ପୁରେ ଉତ୍ସବ କରନ୍ତି ସର୍ବ ନରନାରୀ
ଯହିଁ ଭାବ ତହିଁ ଭକ୍ତି କେହୁ ଅନ୍ତକରି ।
ଅଳଙ୍କାରରେ ମଣ୍ଡନ ହୋଇ ସର୍ବବାଳୀ
ଅର୍ଘ୍ୟସ୍ଥାଳୀମାନ ଘେନି ଦ୍ୟନ୍ତି ହୁଳହୁଳି ।
ବାଜେ ବୀରତୂର ବାଦ୍ୟ ମହୁରି କାହାଳି
ସୈନ୍ୟ ଖଟନ୍ତି କରିଣ ସେ ତାଣ୍ଡବ କେଳି ।
ନିର୍ଝର ଦେଶରେ ଭୀମ ଅନେକ ସାନନ୍ଦେ
ଜଗତୀରେ ବିଜେ କଲେ ଆନନ୍ଦିତ ହୃଦେ ।
ପଞ୍ଚ ମହାଦେଇ ତାର ଶତପୁତ୍ର ଘେନି
ଜଗତୀର ତଳେ ତାକୁ କରନ୍ତି ଦଇନି ।
ପୁଣ ରାଜା ପ୍ରଣମଇ ଜଗତୀର ତଳ
ମଧ୍ୟସ୍ୱର୍ଗ ଠାକୁର ତୁ ବିଜେ ରବିତଳ ।
ଯାହା ଦୋଷ କରିଥିବି ଜ୍ଞାନେ ବା ଅଜ୍ଞାନେ
କ୍ଷମା ଗୁଣେ ତାହା ପ୍ରଭୁ ନ ଧରିବ ମନେ ।
ଭୀମ ତାହାକୁ ସନ୍ତୋଷେ ଦେଇଣ ଅକ୍ଷତ
ବୋଇଲେ ତୋ ଦଣ୍ଡ ଘେନି ଯାଅ ଇନ୍ଦ୍ରପ୍ରସ୍ଥ ।
ରାଜାବୋଲେ ଶିରୋଧାର୍ଯ୍ୟ ଯେ ଆଜ୍ଞା ତୋହର
ଆଜକ ମୋ ପୁରେ ରହି ମଣୋହି ତୁ କର ।
ଗଣପତିର ବଚନେ ତୁଷ୍ଟ ହେଲେ ଭୀମ
ଭକ୍ତି ଅନୁରୂପେ ତହିଁ ଉପୁଜିଲା ଧର୍ମ ।

ତାହାକୁ ବୋଇଲେ ଭୀମ ତୋ ସମାନ କେହି
ଏ ପଶ୍ଚିମେ କୋଶଳରେ ଥିବ କିବା ନାହିଁ ।
ଯେବେ କହିଲୁ ତୋ ପୁରେ ଭୁଞ୍ଜିବା ସାଦରେ
ଆଜ୍ଞାଦ୍ୟନ୍ତେ ସୂପକାର ଗଲେ ରୋଷଘରେ
ଅଇବ୍ରତ ସୂପକାର ଥିଲେ ଭୀମ ସଙ୍ଗେ
ରାନ୍ଧଣା ଯୋଗାଡ଼ସେହୁ କଲେ ବେଗେ ବେଗେ
ଅମୃତ ଯୋଗାଡ଼ ହେବ କଲେ ଯେ ପ୍ରକାରେ
ସେପରି ଯୋଗାଡ଼ କଲେ ଯାଇ ସୂପକାରେ ।
ଗଉରୀ ଶଉରୀ ନଳ ତ୍ରିବିଧ ରନ୍ଧନ
ଆହ୍ନିକ ସାରି ମଣୋହି କଲେ ଭୀମସେନ ।
ପରଷନ୍ତି ଆନନ୍ଦରେ ସର୍ବ ବିଦ୍ୱଜ୍ଜନ
ଭୀମ ଭୁଞ୍ଜିଲେ ତିନିଶଷାଠି ପୌଟି ଅନ୍ନ ।
ସଂଗ୍ରାମେ ଅତୃପ୍ତ ଯେହୁ ଭୋଜନେ ଅତୃପ୍ତି
ଶୃଙ୍ଗାର ରସରେ ସଦା ଯା ମନ ଅଶାନ୍ତି ।
କାମ୍ୟକପୁର ପରାୟେ ଭୁଞ୍ଜି ପ୍ରଶଂସିଲେ
ଆଚମନ କରିବାକୁ ବାହାର ହୋଇଲେ ।
ସୁବାସିତ ନୀରେ ଭୀମ କଲେ ଆଚମନ
କର୍ପୂର ତାମ୍ବୁଳ ବିଡ଼ି କରିଲେ ଚର୍ବଣ ।
ଅଷ୍ଟରତ୍ନରେ ଖଚିତ ସୁବର୍ଣ୍ଣ ଖଟୁଲି
ତହିଁପରେ ଭୀମେ ଝୁଲାଅନ୍ତି ମୃଦୁସୁଲୀ ।
ଛାମୁରେ ନୃତ୍ୟ କରନ୍ତି ଯେ ବାରଯୋଷିତ
ଗାବନ୍ତି ସୁସ୍ୱରେ ସେ ଯେ ମଧୁର ସଙ୍ଗୀତ ।
ସ୍ନାନ ଭୋଜନ ସାରିଣ ନିର୍ଝରର ପତି
ଶତପୁତ୍ର ଘେନି ଭୀମେ ଚାମର ଢ଼ାଳନ୍ତି ।
ବହୁ ସନ୍ତୋଷେ ବୋଇଲେ ତାକୁ ଭୀମସେନ
ପଶ୍ଚିମ କୋଶଳେ ତୁହି ରାଜାଗଣେ ଧନ୍ୟ ।
ଏହା କହି ତାଡ଼ ଝୁମ୍ପା ବାହୁଟି ସକଳ
ଶିରେ ସୀମନ୍ତିନୀ ଗଳେ ଦେଲେ ରତ୍ନମାଳ ।
ବହୁ ଅଳଙ୍କାର ଦେଲେ ତା ଭାର୍ଯ୍ୟା ସୁତଙ୍କୁ
ବୋଇଲେ ଏକ୍ଷଣି ଯାଅ ଇନ୍ଦ୍ରପ୍ରଶସ୍ତକୁ ।
ବୃକୋଦରଙ୍କର ଆଜ୍ଞା ଶିରରେ ନିବେଶି
ସେହିକ୍ଷଣି ଅନୁକୂଳ କଲେ ପୁରୁଁ ଆସି ।
ଏ ସମୟେ ଲଗାଇଣ ଦିହୁଡ଼ ମାଳିକା
ବାହାରିଲେ ବୃକୋଦର ମନରେ ନିଃଶଙ୍କା ।
ଦେଶାଉରେ ସେ ବାରତା ଶୁଣିକରି କାନେ
କାର୍ତ୍ତିକପୁର ନିର୍ଝର ଗିରି ସନ୍ନିଧାନେ ।
ବିଶାଶତେ ଯୋଜନ ସେ ଏ ଠାବକୁ ଦୂର
ବନ ଗହନଭୂମି ଯେ ବହୁତ ଡଙ୍ଗର ।
ତହିଁରେ ନରପତି ଯେ ଅଟେ ରୁଦ୍ରଦେବ
କାର୍ତ୍ତିକ ବିଜୟ ତହିଁ ଦ୍ୱିତୀ ସଦାଶିବ ।

ସତ୍ୟ ଯୁଗେ ଉପୁଜିଲା ତାରକା ଦଇତ
ତାରିଣୀ ନଦୀର ତୀରେ ତାରକା ପର୍ବତ ।
କାର୍ତ୍ତିକକୁମାର ଜନ୍ମ ହୋଇଲେ ସେ ବନ
ଅନଙ୍ଗ ଦହନକାରୀ ଦେବ ତ୍ରିଲୋଚନ ।
କୁମାର ବୋଲି ତା ନାମ ଦେଲେକ ବିଚାରି
ଏ ବାଳ ହେଲେ ତାରକା ଅସୁରର ଅରି ।
ତାରକା ନଦୀରେ ସ୍ନାନକରି ବୃକୋଦର
ଯାଇ ଉଠିଲେ କାର୍ତ୍ତିକ ପର୍ବତ ଉପର ।
ଦେଖିଲେ କୁମାର ଷଡ଼ମୁଖ ମହାରୂପୀ
ବାମ ଚରଣେ ତାରକାସୁରେ ଛନ୍ତି ଚାପି ।
ଦକ୍ଷିଣ ଚରଣ ଗୋଟି ଲମ୍ବାଇ ଅଛନ୍ତି
ସେ ପାଦ ଗୋଟିକ ସ୍ୱର୍ଗ ଯାଏ ବ୍ୟାପିଅଛି ।
ଦ୍ୱାଦଶ ନେତ୍ର ଦ୍ୱାଦଶ ଅଟେ ତାଙ୍କ ଭୁଜ
ମର୍କତ ପରାୟେ କର୍ଣ୍ଣ କାଳାନଳ ତେଜ ।
ଅନାଦି ଶମ୍ଭୁଙ୍କ ସୁତ ତୁ ସିଦ୍ଧ ଦେବତା
ଦେବଙ୍କ ଦୁଃଖ ଖଣ୍ଡନେ ତୁ ମହାଶକତା ।
ପିନାକ ସମାନ ଧନୁ ଧରିଅଛୁ ପାଣି
ପଳାନ୍ତି ଦୁରିତ ନାମ ତା ଶବଦ ଶୁଣି ।
ହେ ପରମଯୋଗୀ ତୋର ମନୋହର ରୂପ
ଭକ୍ତବତ୍ସଳ ଗଞ୍ଜିଲୁ ନାଶକର ଦର୍ପ ।
ମୟୂର ବାହନେ ବସି ଭ୍ରମୁ ତିନିପୁର
ପବିତ୍ର ଶୁଦ୍ଧ ତୋ କାୟା ଅନଙ୍ଗ ସୁନ୍ଦର ।
ଜୟ ଜୟ ହେ କାର୍ତ୍ତିକ ତୁମ୍ଭେ ବିଶ୍ୱରୂପୀ
ନବଦ୍ୱୀପ ସପ୍ତସିନ୍ଧୁ ମଧ୍ୟେ ଅଛ ବ୍ୟାପି ।
ଭୟ କରି ଭୟଙ୍କର ତାରକାସୁରକୁ
ଡରି ପଳାଇଲେ ଦେବେ ତେଜି ସେ ସ୍ଥାନକୁ ।
କ୍ଷେପିଣ ଅମର ପୁରେ କରିଲାକ ନାଶ
କୁମାର ବୟସେ ତାକୁ ତୁହି କଲୁ ଧ୍ୱଂସ ।
ବହୁତ ବିନୟ ତୋତେ କଲେ ଦେବତାଏ
ସର୍ବ ଭୁବନେ ଶୁଭିଲା ତୋର ଜୟେ ଜୟେ ।
ପ୍ରସନ୍ନରେ ବର ତୋତେ ଦେଲାକ କପାଳୀ
ସୁରବର ସୁନ୍ଦର ତୋ ଛଅଟି ମଉଳି ।
ନବଲକ୍ଷ ଡମ୍ବରୁ ତୋ ଶ୍ରୀଛାମୁରେ ବାଜେ
ଦେବାଙ୍ଗ ଜୟମାଳା ତୋ ହୃଦରେ ବିରାଜେ ।
ମୁହିଁ ତୋ ପାଦେ ଶରଣ ହେ କାର୍ତ୍ତିକେଶ୍ୱର
ଏ ପାପ ସଂସାରୁ ତୁହି ଉଦ୍ଧରିଣ ଧର ।
ତୁମ୍ଭ ଚରଣେ ମୋହର କୋଟି ନମସ୍କାର
ଈଶ୍ୱରଙ୍କ ପୁତ୍ର ତୁମ୍ଭେ ସବୁ କରିପାର ।
ଭବିଷ୍ୟତ ବର୍ତ୍ତମାନ ଭୂତ ତିନିକଥା
ତବ ପ୍ରସନ୍ନେ ଜାଣି ମୁଁ ଛାଡ଼ିବଇଁ ଚିନ୍ତା ।

ଅକଳିତ ସାଗରେ ମୁଁ ପଶିଲି ନ ଜାଣି
ବଳାଇଲି ପ୍ରତିଜ୍ଞା ମୁଁ ନ ପଢ଼ି ନ ଶୁଣି ।
କୈଳାସ ପଶ୍ଚିମ ଦ୍ୱାରେ ତୁମ୍ଭେ ଦ୍ୱାରପାଳ
ମୂଷକ ବଞ୍ଚିଲୁ ଚଉଷଠି ଲକ୍ଷେ କାଳ ।
ନ ଜାଣଇ ବିଦ୍ୟା ମୁହେଁ ପଣ୍ଡିତ ପ୍ରବର
ଅଜ୍ଞାନେ ଲେଖୁଛି ହେଉ ଶ୍ରୁତି ସୁଖକର ।
ଅନ୍ନଭୋଜନ କଲେ ତ ପୂରଇ ଉଦର
କର୍ଣ୍ଣେ ପିବନ୍ତେ ଅତୃପ୍ତ ଭାରତ ସାଗର ।
ଦ୍ୱିଜେ ଚିନ୍ତାମଣି କାର୍ତ୍ତିକେୟ ନଗ୍ର ପୁରେ
ମୁଁ ତାଙ୍କୁ ଭେଟେ ତାରକା ପର୍ବତ ଉପରେ ।
କିଞ୍ଚିତ ମାତ୍ରକ ତୁ ନ ସହୁ କଟୁକଥା
ପାଦେ ପ୍ରହାରିଲୁ ତୋର ଗଣେଶ ଯେ ଭ୍ରାତା ।
ତୋର ବାମପାଦ ବିଘ୍ନରାଜ ମୁଖେ ବାଜି
ବାମପାଟି ଦନ୍ତଗୋଟି ପଡ଼ିଲାକ ଭାଜି ।
ସେ ଭଗ୍ନଦନ୍ତ ଗୋଟିକ ପଡୁ ଧରା ପରେ
ରସାତଳ ହେଉଥିଲା ଧରା ସେ କାଳରେ ।
ଧରଣୀକୁ ରସାତଳ ହେବା ଦେଖି ନେତ୍ରେ
ବାମହସ୍ତେ ସମ୍ଭାଳିଲେ ତାହା ଗଣନାଥେ ।
ରୋମେ ତୋତେ ଶାପଦେଲେ ସେହି ବାଳବୁଦ୍ଧି
ଯେ ପାଦେ ମାଇଲୁ ମୋତେ ହେଉ କୁଷ୍ଠବ୍ୟାଧି
ଯୁକତେ ଜ୍ୟେଷ୍ଠ ସୋଦରମାନେ ତୁଲ୍ୟ ପିତା
ବାଳକର ଶାପରୁ ତୁ ନୋହିଲୁ ବଞ୍ଚିତା ।
ଗଳିଲା ଦୁର୍ଗନ୍ଧ ପୂଯ ଲମ୍ବୋଦର ଶାପେ
ତାହା ଖଣ୍ଡିଲୁ ଅଜପାମନ୍ତ୍ର ଜପି ଗୋପ୍ୟେ ।
ଅକାରଣ କାରଣ ତୁ ପ୍ରଭୁ ନିରାକାର
ଅଗାଧ ସାଗରୁ ମୋତେ ତାର ହେ କୁମାର ।
ଏ ତିନି ଭୁବନେ ତୋର ମହିମା ଦୁର୍ଲ୍ଲଭ
ଏ ମୋହଜାଲରୁ ରକ୍ଷାକର ସ୍କନ୍ଦଦେବ ।
ଗିରିଜାଙ୍କ ନନ୍ଦନ ତୁ ଦେବତାଙ୍କ ସେନା
ନାରାୟଣ ସମ ଯମ ଗରବ ଗଞ୍ଜନା ।
କିଞ୍ଚିତ ପାପୁ ମନୁଷ୍ୟକୁଳେ ଅଛି ଜନ୍ମି
ଦୁର୍ଗତି ସାଗରୁ ମୋତେ ପାରିକର ସ୍ୱାମୀ ।
ହେମବନ୍ତର କୁମର ନାମ ଚନ୍ଦ୍ରଧ୍ୱଜ
ତୁମ୍ଭର ଅଟେ ମାତୁଳ ବରାହୀ ଆତ୍ମଜ ।
ବାଲୁତ ଗଳାରେ ସେହି ହେଲେ ବାରୁଆଳି
ତବ ଶାପରେ ହୋଇଲା ପାଷାଣର ଭଳି ।
ତୁମ୍ଭ ଶାପରୁ ତରିବା ହେତୁ ସେ କୁମର
ରହିଲେ ତୁଠ ପାଷାଣ ହୋଇ ଗଙ୍ଗାତୀର ।
ବାଲଖିଲ୍ୟା ଅନନ୍ତରେ ବାଳ ବ୍ରହ୍ମବେତ୍ତା
ତୁହି ସେ ଏ ପାପଦୋଷୁ ମୋତେ ଉଦ୍ଧାରନ୍ତା ।

ନମସ୍ତେ ହେ ବିଶ୍ୱେଶ୍ୱର କାର୍ତ୍ତିକେୟ ସ୍ୱାମୀ
ଶାରଳା ଦାସକୁ କର କପିଳାସଗାମୀ ।
ଅଗସ୍ତି କହନ୍ତି ଶୁଣ ମନୁ ନରପତି
ଭୀମ ବିଜୟୀ ହୁଅନ୍ତେ କୁମାରଙ୍କ କତି ।
ଜାଣି କୁମାର ବିଜୟେ ମୟୂର ବାହନେ
ଦେଖିଣ ସାନନ୍ଦ ଭୀମ ହୋଇଲେକ ମନେ ।
ଅନେକ ସ୍ତୁତି ମାରୁତି ଶ୍ରୀମୁଖରେ ବୋଲି
ଶତସହସ୍ର ଦଣ୍ଡବତ କଲେ ଗଡ଼ଘାଲି ।
ପ୍ରସନ୍ନ ହୋଇ ବୋଇଲେ ସେ ଛଅ ମଉଳି
ସାଧୁ ସାଧୁ ପାଣ୍ଡବ ତୁ ଅଟୁ ମହାବଳୀ ।
ପଶ୍ଚିମେ ତୁହି ସମସ୍ତ ରାଜାଙ୍କୁ ସାଧିଲୁ
ବହୁତ ଦୂରରେ ଆସି ଆମ୍ଭଙ୍କୁ ଭେଟିଲୁ ।
ଆଉ ଅଛି ଅଙ୍ଗଦେଶ ଅଳପ ରାଜନ
ନିର୍ଭୟରେ ସାଧ ତୁହି ପବନ ନନ୍ଦନ ।
ଏ କାର୍ତ୍ତିକ ନଗ୍ର ହାଦେ ପଶ୍ଚିମ କୋଶଳେ
ଏ ସ୍ଥାନେ ବିଜୟ ଆମ୍ଭେ କରୁ ସର୍ବକାଳେ ।
ଏ ମହାରାଜ୍ୟକୁ ଭୀମ ଉଜାଡ଼ ନ କରି
ଭାବେ ସାଧକର ଆମ୍ଭେ ଦେଖନ୍ତେ ବିଚାରି ।
ସେ ରାଜାର ନାମ ଅଟେ କାର୍ତ୍ତିକ ନୃପତି
କାର୍ତ୍ତିକ ରାଜ୍ୟର ସେହି ଅଟେ ଚକ୍ରବର୍ତ୍ତୀ ।
ସେ ରୁଦ୍ରଦେବ ବିଜୟ ଆସ୍ଥାନ ଉପରେ
ଦେଶାଉର ଯାଇ ବାର୍ତ୍ତା କହିଲା ଛାମୁରେ ।
ଭୋ ଦେବ କେଉଁ ଦେଶରୁ ରାଜା ଏକ ଆସି
ଅଳପ ସଇନି ଘେନି ତୋର ରାଜ୍ୟ ପଶି ।
ବିଚାରିଣ କାର୍ଯ୍ୟକର ତୁମ୍ଭେ ନରସାଇଁ
ଜଗତେ ଜିଣନ୍ତା ଦେବ ତାକୁ କେହି ନାହିଁ ।
ଡଗର ମୁଖରୁ ରାଜା ପାଇଣ ବାରତା
ଦଣ୍ଡ ସାଜ ବୋଲି ଆଜ୍ଞା ଦେଲା ମହାରଥୀ ।
ଆକାଶ କମ୍ପାଇଲେ କେ ବୀରତୂର ବାଦ୍ୟେ
ମେଦିନୀ କମ୍ପିତ ହେଲା ବାଦ୍ୟର ଶବଦେ ।
ବିହରନ୍ତି ରାଉତେ ଯେ ତୁରଙ୍ଗମ ଚଢ଼ି
ମାର ମାର ଧର ବୋଲି ଛାଡୁଛନ୍ତି ରଡ଼ି ।
ସାଜ ସାଜ ବୋଲିକରି ଦ୍ୟନ୍ତେ ଘୋରଡାକ
ଧାଉଁଛନ୍ତି ଅଶ୍ୱଆରେ ପ୍ରତିଜ୍ଞା ଅନେକ ।
ଗୁରୁତର ପ୍ରତିଜ୍ଞା ଯେ କହିତ ନୁହଇ
ନବଶତ ପାରିଦଣ୍ଡ ଘେନି ରାଜା ବାହି ।
କମ୍ପିଲାକ ରେରେକାର ଶବ୍ଦେ ମହୀଆଳି
ରେଣୁ ଉଡ଼ନ୍ତେ ଅଦୃଶ୍ୟ ହେଲେ ଅଂଶୁମାଳୀ ।
ରୁଦ୍ରଦେବ ନୃପତି ଯେ ସମଦଣ୍ଡ ଘେନି
ଆସି ତାରକା ପର୍ବତେ ଭେଟିଲ ପାବନି ।

ଅଶ୍ୱନ୍ତ ଚଳାଇ କରି ଉଠିଲେ ରାଉତେ
ଗଜକୁ ଧୂଆଁଇ ଶିଖେ ଧାମନ୍ତି ମାହୁନ୍ତେ ।
ତାରକା ପର୍ବତେ ଉଠି ବେଢ଼ି କୋପାନଳ
ଦେଖିଲେ ଶୂନ୍ୟ ପୁରୁଷ ତ୍ରାସିଲେ ସକଳ ।
ଭୀମସେନ ପୁଚ୍ଛାକଲେ କାର୍ତ୍ତିକେଶ୍ୱରଙ୍କୁ
ସ୍ୱାମୀ ଏ ରାଜା ଅଇଲା ଯୁଦ୍ଧ କରିବାକୁ ।
ଏହି କଥା କହେ ଦେବ ତୋର ଉପରୋଧେ
ଏତେ ସୈନ୍ୟଙ୍କୁ ନାଶନ୍ତି ମୁଁ କିଞ୍ଚିତ ଯୁଦ୍ଧେ ।
ଏହା ଶୁଣି ବୋଇଲେ ସେ କାର୍ତ୍ତିକ ଦେବତା
ଆମ୍ଭ ବୋଲ ମାନି ତୁହି ଟିକେ ସମ୍ଭାଳିଥା ।
ଯା କହି ଶୂନ୍ୟେ କୁମର କହିଲେ ଏ ବାଣୀ
କା ସଙ୍ଗେ ସମର କରି ଆସୁ ନରମଣି ।
ନ ଜାଣୁ ନ କହିଲେ ତୋତେ ଦେଶାଉର
ଏ ପଶ୍ଚିମ ଦିଗ ବିଜେ ପାଣ୍ଡବ ସୁନ୍ଦର ।
ଶୁଣି ସାନନ୍ଦ ସେ ରୁଦ୍ରଦେବ ନରପତି
ହସ୍ତୀର କନ୍ଧରୁ ରାଜା ଡେଇଁଲା ଝଟତି ।
ଭୂମିରେ ପଡ଼ିଣ ଶତ ସହସ୍ର ପ୍ରଣମି
ବୋଲେ ନ ଜାଣି ଅଇଲି ଦଣ୍ଡ ସାଜି ସ୍ୱାମୀ ।
ଅଜ୍ଞାନୀଙ୍କି ପଣ୍ଡିତଙ୍କ ନ ଥାଇ ଯେ କୋପ
ମୋ ଭକ୍ତି ଘେନି ସ୍ୱାମୀ ଛାଡ଼ ପରତାପ ।
ତୁ ଦେବ ଏ ସଂସାରକୁ ଅଟୁ ଉଦ୍ଧାରନ୍ତା
ତୁହି ଦେବ ଏ ସକଳ ନୃପଙ୍କୁ ପାଳନ୍ତା ।
ବଚନରର ନୃପତି ନ ଜାଣୁ ଆମ୍ଭେ କିଛି
ମୂର୍ଖ ଅଜ୍ଞାନ ଆମ୍ଭର ଜ୍ଞାନ କିବା ଅଛି ।
ଭକ୍ତ ବତ୍ସଳ ତୁ ସୋମବଂଶ ଅଧିପତି
ମୋ ଦୋଷ ଖଣ୍ଡିବା ପ୍ରଭୁ କୋପକରି ଶାନ୍ତି ।
ରାଜାର ବିନୟ ଦେଖି କୋପ କଲେ ସାମ୍ୟ
କାର୍ତ୍ତିକ ଦେଖନ୍ତେ ବହୁ ପ୍ରୀତି କରେ ଭୀମ ।
ନିମନ୍ତ୍ରଣ ଦ୍ରବ୍ୟ ନେଇ ବୋଇଲେ ପାବନି
ଦଣ୍ଡଘେନି ଇନ୍ଦ୍ରପ୍ରସ୍ଥେ ଚଳ ଏହିକ୍ଷଣି ।
ସଙ୍ଗେ ଘେନିଯାଅ ଦେଖା ଦରଶନୀ ଧନ
ଦିବସ ରଜନୀ ଘେନି ଚଳ ତୁ ବହନ ।
ବିଳମ୍ବ କରିଲେ କାର୍ଯ୍ୟ ହୋଇବ ଅସାଧ୍ୟ
ମହାଯଜ୍ଞ ସଭାରେ ହୋ ହେବ ଅପରାଧୀ ।
ମୁଁ ଯେ ଅନୁଗ୍ରହ କଲି କୁମାର ସାକ୍ଷାତେ
ଯାବତ କାଳକୁ ଦୟା କଲି ମୁହିଁ ତୋତେ ।
ଶୁଣି ଆଜ୍ଞା ପରମାଣେ ସେ କାର୍ତ୍ତିକ ସ୍ୱାମୀ
ଯିବି ବୋଲି କହି ଶତସହସ୍ର ପ୍ରଣମି ।
ଆଜ୍ଞା ଦେଲା ସଜକର ନବଶତ ହସ୍ତୀ
ରଥ ରଥୀ ବହୁ ଅଶ୍ୱ ସଇନ୍ୟ ପଦାତି ।

ଶୁଣିକରି ବିଜେସନ ସାରଥି ଚଳିଲା
ସୈନ୍ୟଙ୍କୁ ସଜାଇ ରଥ ମଣ୍ଡନ କରିଲା ।
ପୁଣ ପୁଣ ରାଜା ପଡ଼ି ଭୀମ ପାଦତଳେ
ବୋଇଲା ଆଜ ରଜନୀ ଏ ମୋହର ଆଳେ
ମୋହର ପ୍ରଜା ତୁମ୍ଭଙ୍କୁ କରନ୍ତୁ ଦର୍ଶନ
ଏତିକି ତବ ଶ୍ରୀପଦେ ମୋର ନିବେଦନ ।
ସ୍ୱାମୀ ପ୍ରତ୍ୟକ୍ଷରେ ତୁହି ଅଟୁ ଜଗନ୍ନାଥ
ପଦରଜ ପଡ଼ି ହେଉ ମୋ ରାଜ୍ୟ ପବିତ୍ର ।
ଭୀମବୋଲେ ରହିବାକୁ ମୋତେ ବେଳନାହିଁ
ଭୋଜନ ଶୟନକୁ ମୋ ଇଚ୍ଛା ନ ବଳଇ ।
ମହା ମହା ରାଜାମାନେ ଛନ୍ତି ଏ ପଶ୍ଚିମେ
ପାଞ୍ଚସହସ୍ର ରାଜାଙ୍କୁ ସାଧି ନଉଦିନେ ।
ମକର ମାସେ ପ୍ରବେଶ ହେବି ଯାଙ୍କୁ ଘେନି
ଏ ଆଜ୍ଞା ଦେଇଅଛନ୍ତି ଦେବ ଚକ୍ରପାଣି ।
ତୁ ବହନ ଚଳ ତୋର ଘେନି ଥାଟ ସୈନି
ରୁଦ୍ରଦେବ କାର୍ତ୍ତିକଙ୍କ ଚରଣେ ପ୍ରଣମି ।
କରି ଭୀମଙ୍କ ଚରଣେ ଶତ ନମସ୍କାର
ଥାଟ ଘେନି ନରପତି ହୋଇଲା ବାହାର ।
ସେ କାର୍ତ୍ତିକ ଦେବଙ୍କର ଚରଣେ ଶରଣ
ଶୁଦ୍ରମୁନି ଶ୍ରୀଶାରଳା ମାଗେ ଅନୁକ୍ଷଣ ।



## ଶବରୀ ନାରାୟଣଙ୍କୁ ନିମନ୍ତ୍ରଣ

ପୁନରପି ପୃଚ୍ଛାକଲେ ମନୁ ଦଣ୍ଡଧର
କହ ମୁନି କାହିଁ ଗଲେ ତହୁଁ ବୃକୋଦର ।
ଅଗସ୍ତି କହିଲେ ତୁମ୍ଭେ ଶୁଣ ନରପତି
କନାଉଜ ଦେଶକୁ ଯେ ଚଳିଲେ ମାରୁତି ।
ମଣିଭଦ୍ରା ବୋଲିକରି ଅଛି ନଦୀଗୋଟି
ସରସ୍ୱତୀ ନଦୀରୁ ସେ ଆସୁଅଛି ଫୁଟି ।
ସେ ନଦୀକୂଳେ ଚଳଇ ପାଣ୍ଡବ ବରୁଣ
ଆକାଶ ଉଛୁଳେ ବାଦ୍ୟେ ଉଡ଼ଇ ନିଶାଣ ।
କୀର୍ତ୍ତିସୁନ୍ଦର ବୋଲିଣ ପର୍ବତ ଗୋଟିଏ
ସେ ପର୍ବତ ପରେ ଭୀମ କରିଲେ ବିଜୟେ ।
ବୀର ତୂର ନାନାବାଦ୍ୟ ଗହଳରେ ବାଜେ
ଏସନକ ସମ୍ଭ୍ରମରେ ସେ ପର୍ବତେ ବିଜେ ।
ଧନୁମାସ ଶୁକ୍ଳପକ୍ଷ ସପ୍ତମୀର ତିଥି
ସେଦିନ ପର୍ବତ ପରେ ବିଜୟ ମାରୁତି ।
ଶତଭିଷା ନକ୍ଷତ୍ର ଯେ ଅଟେ ଅର୍କବାର
ତୈତିଳ ନାମ କରଣ ଭୋଗ ସେ ଦିନର ।
ସିଦ୍ଧି ନାମେ ଯୋଗ ପୁଣ ଶୁଭ ଅନୁକୂଳେ
ଭୀମ ବିଜେକଲେ କୃତାନ୍ତକ ବଟ ତଳେ ।

ଶବରୀ ନାରାୟଣ ଯେ କନାଉଜପତି
ଜଳକ୍ରୀଡ଼ା କରେ ଘେନି ସହସ୍ର ଯୁବତୀ ।
ଦେଶାଉର ବୋଲେ ଯାଇ ସେ ରାଜାର ପାଶ
ଦଣ୍ଡବାହି ଆସେ କେଉଁଦେଶ ନରଈଶ ।
ରଥ ଗଜ ଅଶ୍ୱ ଦେବ ପଦାତି ଅଳପ
ମହାବଳବନ୍ତ ତାର ପ୍ରତିଜ୍ଞା ଅମାପ ।
ଦୁର୍ବାର ପ୍ରତିଜ୍ଞା ତାର ଅଟେ ମହାଯୋଧି
ପଶ୍ଚିମଦିଗ ରାଜାଙ୍କୁ ଆସୁଛି ସେ ସାଧି ।
ଶତ୍ରୁଭାବ କଲେ ଦେବ ନ ବର୍ତ୍ତନ୍ତି କେହି
ଭକ୍ତିରେ ଶରଣ ନେଲେ କରନ୍ତି ସେ ତ୍ରାହି ।
ଚାରର ମୁଖୁଁ ଏସନ ବାରତାକୁ ଶୁଣି
ଜଳକ୍ରୀଡ଼ା ରସେ ତା ନ ଶୁଣି ନୃପମଣି ।
କୋଶଳ ଦେଶକୁ ଭୀମ ଅଇଲେକ ମାଡ଼ି
ମନ୍ତ୍ରୀଆଦି ଉଗାଳିଲେ ତାଙ୍କ ଯାନ ଚଢ଼ି ।
ପାଞ୍ଚଲକ୍ଷ ରଥୀ ପଞ୍ଚବିଂଶ ଲକ୍ଷହସ୍ତୀ
ଚାରିଲକ୍ଷ ଉଣେଇଶ ସହସ୍ର ପଦାତି ।
ପାଞ୍ଚଲକ୍ଷ ରାଜା ଯେଉଁ ରାଜାଙ୍କୁ ଖଟନ୍ତି
ପଶ୍ଚିମ କୋଶଳେ ମହାଗରିଷ୍ଠ ଅଟନ୍ତି ।
ଅନଙ୍ଗ ସଦୃଶ ତାର ଶରୀର ସୁନ୍ଦର
ମହାବଳିଷ୍ଠ ଆବର ଅଟେ ଧନୁର୍ଦ୍ଧର ।
ଜରାସନ୍ଧ ରାଜା ସଙ୍ଗେ ବହୁଯୁଦ୍ଧ କଲା
ପଞ୍ଚଦଶ ଦିନ ଯୁଦ୍ଧେ ସମାନ ହୋଇଲା ।
ମହାପ୍ରତାପୀ ତା ସୈନ୍ୟ ନ ଯାଇ କଳନା
ଯା ଶୁଣି କ୍ରୁଦ୍ଧ ହୋଇଲେ ଭୀମ ମହାମନା ।
ପର୍ବତ ଉପରେ ଥାଇ ଥାଟ ତାର ଦେଖି
ରାଗେ ବୁଲାଇଲେ ଚକ୍ରପ୍ରାୟେ ବେନି ଆଖି ।
ମନେ ଚିନ୍ତିଲେ ତ୍ରୈଲୋକ୍ୟ ପ୍ରଭୁ ଚିନ୍ତାମଣି
ରାଜାଙ୍କ ଦୁଷ୍ଟପଣ ତୁ ଜାଣିଥିବୁ ସ୍ୱାମୀ ।
ତୁମ୍ଭେ ବୋଇଲ ସେ ରାଜା ଦୋଷକୁ କରିବ
ତା ସୈନ୍ୟ ମାରି ତାହାଙ୍କୁ ବାନ୍ଧିଣ ଆଣିବ ।
ବିଚାରି କୋପେ କରିବୁ ଜାଣି ଦେବ ମୋତେ
ଏଡ଼େ ଦୁର୍ଭର କଥାକୁ ସହିବି କେମନ୍ତେ ।
ମନେ ମନେ ଯା ବିଚାରି କାଳଦଣ୍ଡ ପାଣି
ପର୍ବତୁ ଡେଇଁ ପଡ଼ିଲା ରାଗେ ସେହିକ୍ଷଣି ।
ବାଉନ ବାଉନ ଭାର ଗଦା ଘେନି ହସ୍ତେ
ବ୍ରହ୍ମାଣ୍ଡ କମ୍ପାଇଲା ସେ ଗର୍ଜନର ଘାତେ ।
ରାଗରେ ଭୁଲିଲା ସେହି ଯୁଧିଷ୍ଠିର ଆଜ୍ଞା
ତ୍ରୈଲୋକ୍ୟ ଅକଥନୀୟ ଯାହାର ପ୍ରତିଜ୍ଞା ।
ବୃକୋଦର ମୂର୍ତ୍ତି ତାର ବିକାଶିଲା କାୟେ
ଉଚ୍ଚତାରେ ଦେଖାଗଲା ବିନ୍ଧ୍ୟଗିରି ପ୍ରାୟେ ।

ଏସନ ସଦୃଶ ରୂପ ବିକାଶିଲା ଭୀମ
ରାଗେ ତା ଦେହରୁ ଝାଳ ବହେ ଗମଗମ ।
ଗିରିବର ବେଢ଼ିଛନ୍ତି ଶବରୀର ଥାଟ
କାଦମ୍ବରୀ ପାନେ ସୈନ୍ୟ କରୁଛନ୍ତି ନାଟ ।
ବାଜେ ବିଜିଘୋଷ ବୀରମର୍ଦ୍ଦଳ ଦାଉଣ୍ଡି
ନିଶାରେ ନାଚନ୍ତି ସର୍ବେ ଯେ ଖେମଟା ଖଣ୍ଡି ।
ଅଶ୍ୱନ୍ତ ଖେଦାଇ କରି ବୁଲୁଛନ୍ତି ବୀରେ
ଲାଙ୍ଗିଆ ଝଲକେ ଅର୍କତେଜ ପରକାରେ ।
ବିନ୍ଧନ୍ତି ଯେ ଅସିପତ୍ର କୁନ୍ତ ବଜ୍ରବାଣ
ଅସୁର ତେଜ ପରାୟେ ଦିଶନ୍ତି ଯୁଦ୍ଧେଣ ।
ମତୁଆଳ ଯୁଦ୍ଧ ଦେଖି ରାଗରେ ମାରୁତି
ଗଦାବର ବୁଲାଇଣ ଧାଏଁ ମହାକ୍ଷତ୍ରୀ ।
ଭୀମସେନ ତ୍ରିନିସସ୍ର ଯୋଦ୍ଧା ତୁଲେ ଥିଲେ
ରେରେକାର ଶବ୍ଦକରି ସକଳେ ଧାଇଁଲେ ।
କୃତାନ୍ତକ ରୂପ ଯଥା ଦିଶଇ ପାବନି
ମୂର୍ତ୍ତି ଦେଖି ପଳାଇଲେ କନାଉନ ସୈନି ।
ସମରେ ଅନିର୍ବାର ସେ ହିଡ଼ିମ୍ବୀବଲ୍ଲଭ
ବୀରମାନଙ୍କ ମଧ୍ୟେ ଯା ମହିମା ଦୁର୍ଲ୍ଲଭ ।
ପାଦରେ ଭୀମ ସୈନ୍ୟଙ୍କୁ କରିଲେ ମନ୍ଥନ
ଗଦାର ଘାତେ ବହୁତ ରଥ କଲେ ଚୂର୍ଣ୍ଣ ।
ପାଞ୍ଚଲକ୍ଷ ରଥୀ ସର୍ବେ ଏକମୁଖ ହୋଇ
ଭୀମସେନ ପରେ ଶର ବିନ୍ଧନ୍ତି ନିଠାଇ ।
ବରଷା ଋତୁରେ ଯେହ୍ନେ ବରଷଇ ନୀର
ସେହିପରି ଉପରକୁ ବୃଷ୍ଟି ହୁଏ ଶର ।
ସେ ଶରମାନଙ୍କୁ ଭୀମ ମନରେ ନ ଗଣି
ବଜ୍ରାଙ୍ଗ ହୋଇ ଅଛଇ କ୍ଷତ୍ରି ଚୂଡ଼ାମଣି ।
ଅଭେଦ ଦେହ ତା ଶତଶୃଙ୍ଗ ପରସନ୍ନେ
ଯା ଶରୀରେ ନ ଭେଦନ୍ତି ତୀକ୍ଷ୍ଣ ଶରମାନେ
ପର୍ବତେ ନ ଫୁଟି ଯେହ୍ନେ ଖସିପଡ଼େ ଶର
ଭୀମ ଶରୀରେ ନ ଭେଦେ ଶର ସେ ପ୍ରକାର ।
ଯେ ପାଣ୍ଡବ ସଂଗ୍ରାମରେ ଅଟଇ ନିର୍ଭୟ
ଶତଶୃଙ୍ଗ ପ୍ରସନ୍ନେ ଯା ବଜ୍ର ଅଟେ କାୟ ।
ଗଦାବର ଅସୀପତ୍ର କୁନ୍ତମୁନା ଯାଠି
ବୁଲାଇ ଭୀମଙ୍କ ପରେ ଯୋଦ୍ଧାମାନେ ପିଟି ।
ଅସ୍ତ୍ରକୁ ଭୟ ତାହାର ନ ଥାଇ ଯୁଦ୍ଧରେ
କୃତାନ୍ତକ ମୂର୍ତ୍ତି ଭୀମ ଧଇଲେ ରାଗରେ ।
ଏକାନ୍ତେ ମନ୍ଥିଲା ସେହି କନଉଜ ଥାଟ
ପଳାଅନ୍ତି ସଇନିଏ ନ ପାଆନ୍ତି ବାଟ ।
ରଥେ ରଥ କଚାଡଇ ବେନିକରେ ଟୋଳି
ଗଜନ୍ତ କଚାଡ଼ଇ ସେ ଗଜପରେ ବଳୀ ।

ଧସାଇ ସଂଗ୍ରାମ କରେ ବୀର ବୃକୋଦର
ରଥ ଗଜ ଅଶ୍ୱମାରି କରିଦିଏ ଚୂର ।
ସମରେ ବିମୁଖ ହୋଇ ସକଳ ସଇନି
ପଳାନ୍ତି ଯାନବାହାନ ତେଜି ପ୍ରାଣ ଘେନି ।
ଅନେକ ସୈନ୍ୟଙ୍କୁ ଭୀମ ମାରି ଲୋଟାଇଲେ
ନବଯୋଜନ ପର୍ଯ୍ୟନ୍ତ ମଡ଼ାରେ ପୂରିଲେ ।
କଦଳୀ ବୃକ୍ଷେ ଲୋଟନ୍ତି ଯେହ୍ନେ ବାତ ଘାତେ
ତେସନେ ସୈନ୍ୟ ଲୋଟିଲେ ନ ଯୂଣ ପର୍ଯ୍ୟନ୍ତେ
କେତେକ ସୈନ୍ୟ ଭୟରେ ପଳାଇଣ ଗଲେ
ଶବରୀନାରାୟଣଙ୍କ ଆଗରେ କହିଲେ ।
ବୋଇଲେକ ସାବଧାନେ ଶୁଣ ନୃପରାଣ
ଜଳକ୍ରୀଡ଼ାରେ ଆପଣ ରହିଛ ମାତିଣ ।
ଆମ୍ଭେ ବହୁଯୁଦ୍ଧ କଲୁ ସେ ରଥୀ ସଙ୍ଗରେ
ତାକ୍ଷ୍ଣ ଶର ନ ଭେଦଇ ତାହାର ଶରୀରେ ।
ବହୁତ ସଇନ ଦେବ ପଡ଼ିଲେକ ଯୁଦ୍ଧେ
ଅସଂଖ୍ୟ ଯୋଦ୍ଧା ପଡ଼ିଲେ ସେହି ରଣ ମଧ୍ୟେ ।
ପଞ୍ଚ ମରଭୁତ ଦେବ ପଡ଼ିଲେ ମାତଙ୍ଗ
ଦଶ ଅର୍ବୁଦ ପଡ଼ିଲେ ଚୋଖାର ତୁରଙ୍ଗ ।
ଏଗାର ଯୋଜନ ଯାଏ ମଡ଼ା ପୂର୍ଣ୍ଣ ହେଲା
ଅସଂଖ୍ୟ ପଦାତି ମଲେ ଗଣନା ନୋହିଲା ।
ଚାରଙ୍କ ମୁଖରୁ ରାଜା ଏ ବାରତା ଶୁଣି
ଜଳକ୍ରୀଡ଼ା ତେଜିକରି ବାହାର ସେକ୍ଷଣି ।
ମହାନାଗ ଗର୍ଜ୍ଜେ ଯେହ୍ନେ ଫଣା ଟେକିକରି
ଆକାଶେ କ୍ଷେପଇ ତେହ୍ନେ ବିକ୍ରମ କେଶରୀ ।
ମୋହର ଛାମୁରେ ଆରେ ଏଡ଼େ କାର ଦର୍ପ
ଖଗ ଛାମୁରେ ପ୍ରତିଜ୍ଞା କରେ ଆସି ସର୍ପ ।
ସାଜରେ ସେ ରଥ ଆଜ୍ଞା ଦେଲା ନୃପମଣି
ଜୟସେନ ସୁତ ରଥ ସାଜିଲା ସେକ୍ଷଣି ।
ସୂର୍ଯ୍ୟମଣ୍ଡଳ ରଥରେ ରତ୍ନାଦି ଖଚିଲା
ସହସ୍ରେ ଶାର୍ଦ୍ଦୁଳ ନେଇ ତହିଁରେ ଯୋଚିଲା ।
ଲୁହାର ଧନୁ କରରେ ଧରିଣ ନୃପତି
ଲୁହା ତୂଣେ ଶରଭରି ଆସେ କୋପମୂର୍ତ୍ତି ।
ରଥ ଉପରେ ବିଜୟ କଲା ନରମଣି
ସଙ୍ଗରେ ସଇନ ନେଲା ପଚିଶ କ୍ଷଉଣୀ ।
ପାରିଦଣ୍ଡକୁ ଘେନିଣ ରାଜା ବିଜେ କଲା
ଆସନ୍ତେ ଭୀମସେନକୁ ଆଗରେ ଭେଟିଲା ।
ଦେଖିଲା ଭୀମମୂରତି କାଳାନଳ ତେଜ
ପୁଚ୍ଛାକଲେ ରଥେ ଥାଇ ସେହି ମହାରାଜ ।
ହେ ମହାତ୍ମା ତୁମ୍ଭେ ଅଟ କେଉଁ ଦେଶ ରଥୀ
ବୃଥା ମୋ ସୈନ୍ୟଙ୍କୁ କିପାଁ ମାଇଲୁ ତୁ ମଛି ।

ମୁହିଁ ତ ନୁହଇ ତୋର ପୂର୍ବର ବଇରୀ
ଅଦଭୁତ ଅପକାର ବ୍ରହ୍ମହତ୍ୟା ସରି ।
ନ ପୃଚ୍ଛି ରାଜ୍ୟରେ ମୋର ପଶିଲୁ କେମନ୍ତେ
ଏତେ ସୈନ୍ୟ ବଧିଲୁ ତୁ କେବଣ ନିମନ୍ତେ ।
ନ କହିଲେ କି ତୋ ଆଗେ ମୋର ଚାରଗଣ
ପଶ୍ଚିମେ ବୀରଧୁ ମୋ ନାଁ ଶବରୀ ନାରଣ ।
ପଶ୍ଚିମ କୋଶଳେ ଥିଲା ରାଜା ଜରାସନ୍ଧ
ଛୟାଣୋଇ ସସ୍ର ରାଜା ବନ୍ଦୀକଲା ମନ୍ଦ ।
ସେ ରାଜାର ସଙ୍ଗରେ ମୁହିଁ କଲି ବହୁ ଗୋଳ
ଯାକୁ ହାରି ପଳାଇଲେ ସେ କୃଷ୍ଣ ଗୋପାଳ ।
ସେ ଜରା ମୋ ସଙ୍ଗେ ଯୁଝି ପାଇଗଲା ଲଜ୍ଜା
ମୋତେ ସାଧି ନ ପାରିଲା ସେ ମଗଧ ରାଜା ।
ମୋହର ମହିମା କି ରେ ଶୁଣିନାହୁଁ ତୁହି
ଆୟୁ ଥାଉ ମରିବାକୁ ଅଇଲୁ କିପାଇଁ ।
ବେଳୁବେଳେ ଏ ପ୍ରତିଜ୍ଞା କରନ୍ତେ ସେ ରାଜା
ଶୁଣି ମୁକୁଟ କମ୍ପାଏ ପବନ ଅତ୍ମଜା ।
ରଥର ଉପରୁ ବେଗେ ପଡ଼ିଲା ସେ ଡେଇଁ
ମରୁତ ସାରଥି ତାକୁ ଧଇଲା କୁଣ୍ଢାଇ ।
ରହ ରହ ବୃକୋଦର ନ କର ତୁ କୋପ
କିଞ୍ଚିତ ଦୋଷକୁ କିପାଁ ଏଡ଼େ ପରତାପ ।
ଅକାରଣେ ରାଜାକୁ ତୁ ଲୋଡୁଅଛୁ ମାରି
କା ଘେନି ଯାଗ କରିବେ ଧର୍ମ ଦଣ୍ଡଧାରୀ ।
ସହଜେ ଚାରୋଟି ରାଜା ନ ଅଣ୍ଟେ ଯାଗକୁ
ଏହାକୁ ନାସିଲେ ହରି ରାଗିବେ ତୁମ୍ଭଙ୍କୁ ।
ଭୀମ ବୋଲେ ମୋ ଆଗେ ଏ ଦେଖାଏ ପ୍ରତିଜ୍ଞା
କେମନ୍ତେ ସହିବି ଆଜ୍ଞା କଲେ ଏ ଅବଜ୍ଞା ।
ଏହା ସମାନ କରିବି ସୁବର୍ଣ୍ଣ ରାଜାଏ
ଏହି ପଶ୍ଚିମ କୋଶଳେ ରହିବ କଥାଏ ।
ପାଞ୍ଚାଶ ସସ୍ର ରାଜାଙ୍କୁ ବରିବି ଏବିଗେ
ଦୁଇ ଚାରି ମାଇଲେ ଯେ ସାଧ ହେବେ ବେଗେ
ଛାଡ଼ ଛାଡ଼ ପିତା ତୁମ୍ଭେ କଟାଳ ନ କର
ପ୍ରତିଜ୍ଞା ଦେଖାଏ ଆସି ଏ ଦୁଷ୍ଟ ପାମର ।
ଭୀମକୁ ବୁଝାଇଲେ ସେ ମରୁତ ସାରଥି
ନାରାୟଣ ନାମ ଯାର ନ ନାଶ ଏ ଘାନ୍ତି ।
ଯେତେକ ଲୋକ ଜଗତନାଥଙ୍କ ଭକତ
କାରଣ ନିମନ୍ତେ ନାମ ଦ୍ୟନ୍ତି ତାତ ମାତ ।
ଶବରୀ ନାରାୟଣଙ୍କୁ କହିଲେକ ଚାର
ପ୍ରତ୍ୟକ୍ଷେ ନାରାୟଣ ସେ ପାଣ୍ଡବ ସୁନ୍ଦର ।
ରାଜସୂୟ ଯାଗ ଏହୁ କରିବା ନିମନ୍ତେ
ଭୀମସେନ ବିଜେକଲେ ପଶ୍ଚିମ ପ୍ରଶସ୍ତେ ।
ଏ ଦିଗ ରାଜାଙ୍କୁ ନେବେ କରି ନିମନ୍ତ୍ରଣ
ଅତି ଆନନ୍ଦେ ଯାଗକୁ ଯାନ୍ତି ରାଜାଗଣ ।
ତୋହର ପରି ବିବାଦ କଲା ପୁଣ୍ଡରୀକ
ରଥରେ ବନ୍ଧା ହୋଇଛି ପ୍ରତ୍ୟକ୍ଷରେ ଦେଖ ।
ଏଡ଼େ ବଡ଼ ସମ୍ପଦକୁ ନ ନାଶ ନୃପତି
ଦୁଷ୍ଟପଣ ଛାଡ଼ି କର ତାହାକୁ ଭକତି ।
ଚାର ବଚନେ ଆନନ୍ଦ ହୋଇ ନୃପନାଥ
ବୋଲେ ଭୀମ ବୋଲି ମୁହିଁ ଏହା ନ ଜାଣେତ
ଯେଞ୍ଚ ହେବ ବୋଲି ମୁହିଁ ଜାଣିତ ନ ଥିଲି
ଏତେ ଗୁଡାଏ ସୈନ୍ୟଙ୍କୁ ବୃଥା ମରାଇଲି ।
ପୁଣି ବୋଲେ କହ ମନ୍ତ୍ରୀ କୋପେ ଭୀମସେନ
ଆସି ନ ପୁଣତ ନିଅଇ ମୋହର ଜୀବନ ।
ମନ୍ତ୍ରୀ ବୋଲେ ତାକୁ ମନେ ଶଙ୍କା ତୁ ନ କର
ସୁଖ୍ୟାତି ପାଇବ ଦେବ ବୋଲ କଲେ ମୋର
ଶରଣ ରକ୍ଷଣ ସେହି ଦୁଷ୍ଟଙ୍କ ମାରଣ
ଭକ୍ତବତ୍ସଳ ଯେ ପଛେ କରଇ କରୁଣା ।
ଭକତି ହୋଇଲେ ତାରେ ସେ ଦୁଷ୍ଟ ଅପାର
ଅଭକତି ହେଲେ ତ କୁ କରଇ ସଂହାର ।
ମନ୍ତ୍ରୀର ବଚନେ ରାଜା ତ୍ୟାଗ କଲା ରଥ
ନିଶସ୍ତ୍ର ହୋଇ ବିନୟେ କଲା ପ୍ରଣିପାତ ।
ଦୁଇ ହସ୍ତରେ ଚାମର ଧରି ସ୍ତୁତି ବୋଲି
ନିଉଛାଳି ହୋଇ ରାଜା ଶୁଏ ଗଡ଼ଘାଲି ।
ଆନନ୍ଦେ ବେନି ନୟନୁ ବହେ ଅଶ୍ରୁଜଳ
ଦଶନଖ ମୁଖେ ଭରି ନମେ ପାଦତଳ ।
ଜୟ ସୁରସୁନ୍ଦର ତୁ ପାଣ୍ଡବ ମାରୁତି
ତୋର ଆଶ୍ରା ନେଲେ ଯମ ଦଣ୍ଡେ ନାହିଁ ଭୀତି
ତୁହି କାଳ ଗଦାଧାରୀ ଯମଦର୍ପ ଭଞ୍ଜା
ଶରଣ ଉଦ୍ଧାରଣ ତୁ ଦୁଷ୍ଟ ଦର୍ପଗଞ୍ଜା ।
ମୁହିଁ ତୋହର ଶରଣ ନେଲି ବୃକୋଦର
ଦାସର ଦୋଷକୁ ଦେବ ତୁହି କ୍ଷମାକର ।
ଦନ୍ତେ କୁଟା ଧରି ତୃଣ ପୁଣ ନିଉଛାଳି
ଝାଳେ କନ୍ଦର୍ପ ଶରୀର ତହିଁ ଲାଗେ ଧୂଳି ।
ଶରଣପଞ୍ଜର ନାଥ ଭକତବତ୍ସଳ
ପଶ୍ଚିମ ରାଜା ନିମନ୍ତେ ତୋର ଅନୁକୂଳ ।
ମୁଁ ପାପୀ ନ ଦେଖି ପ୍ରଭୁ ଦୋଷ ଅରଜିଲି
ଅକାରଣେ ମୋର ବହୁ ସୈନ୍ୟ ମରାଇଲି ।
ମୁହିଁ ଏହି ଦୋଷ ଦେବ କରିଲି ଅଜ୍ଞାନେ
ହୋଇଲି ମୁକତ ଦେବ ତୋର ଦରଶନେ ।
ସଙ୍ଗେ ସହସ୍ରେକ ସୁତ ସହସ୍ରେ ଯୁବତୀ
ଆଁସିଣ ସେମାନେ ପୁଣି କଲେ ବହୁ ସ୍ତୁତି ।
ମରୁତ ସାରଥି ବୋଲେ ଭୀମଙ୍କ ଆଗରେ
ଶବରୀ ନାରାୟଣଙ୍କୁ ଆଜ୍ଞା କର ବାରେ ।
ତୁହି ଯେ ଅନାଥ ତୁହି ଅନାଥଙ୍କ ବନ୍ଧୁ
ଶରଣ ରକ୍ଷଣ ତୋର ମହିମାଟି ସାଧୁ ।

ଆମ୍ଭେ ଏହାର ରାଜ୍ୟକୁ ନିମନ୍ତ୍ରିଣ ଆସି
ଆମ୍ଭର କାର୍ଯ୍ୟେ ଏହାର ବହୁ ସୈନ୍ୟ ନାଶି ।
ଅନେକ ସୈନ୍ୟକୁ ତୁହି କରିଲୁ ବିନାଶ
ତହିଁକି ମନରେ ତାର ନାହିଁ ଟିକି ରୋଷ ।
ସେ ଅଧମ ଆସି ଏବେ ଭକ୍ତି କରେ ତୋର
ବହୁ ଅପରାଧ ଥିଲେ ତୁହି କ୍ଷମାକର ।
ସାରଥି ବଚନେ ଭୀମ କୋପ ହେଲେ ଶାନ୍ତି
ବୋଇଲେ ଉଠ ନରେଶ ତେଜ ମନୁଭ୍ରାନ୍ତି ।
ଆଜ୍ଞା ପ୍ରମାଣେ ଉଠିଲା ତଳୁ ନୃପମଣି
ସ୍ନେହେ କୋଳକଲେ ତାକୁ କାଳଦଣ୍ଡ ପାଣି ।
ନିମନ୍ତ୍ରଣ ପ୍ରଜାକ୍ଷତ ଦେଇଣ ପାଣ୍ଡବନି
ବୋଇଲେ ଇନ୍ଦ୍ରପ୍ରସ୍ଥେ ଯା ତୋର ଥାଟଘେନି ।
କରିବେକ ରାଜସୂୟ ଯଜ୍ଞ ଧର୍ମସୁତ
ଆମ୍ଭର ଦିଗବିଜୟ ସେହି କାରଣ ତ ।
ଦରଶନୀ ଧନ ଘେନି ଚଳ ତୁ ନୃପତି
ମୁହିଁ ଯାଉଛି ଆବର ରାଜାଙ୍କୁ ନିମନ୍ତ୍ରି ।
ଆଜ୍ଞାମାତ୍ରେ ସେ ଶବରୀନାରାୟଣ ଗଲା
ଦଣ୍ଡ ଘେନି ଭୀମସେନ ପ୍ରୟାଣ କରିଲା ।
କନାଉଜ ଦେଶ ଜିଣି ଗଲେ ଭୀମସେନ
ବିନ୍ଧ୍ୟମାଳରେ ପ୍ରବେଶ ହୋଇଲେ ଯାଇଣ ।
ମନ୍ଦର ଉଦକ ନାମେ ଏକ ନଦୀଗୋଟି
ରଙ୍ଗବର୍ଣ୍ଣ ବିନ୍ଧ୍ୟଗିରି ପରୁ ଆସେ ଫୁଟି ।
ଭୀମସେନ ବିଜେକଲେ ସେ ଗିରି ଉପରେ
ମହାତୀର୍ଥ ଦେଖି ସ୍ନାନ କରିଲେ ତହିଁରେ ।
ନିତ୍ୟକର୍ମ ସାରିଣ ସେ ଦେବୀ ନଦୀକୂଳେ
ଭେଟିଲେ ବିଶ୍ୱାବସୁକୁ ଗିରିର ମଣ୍ଡଳେ ।
ହେ ଗୋବିନ୍ଦ ଦୟାମୟ ରାଜୀବଲୋଚନ
ସିନ୍ଧୁସୁତା ପ୍ରାଣଧନ ଭକତ ଜୀବନ ।
ଦୟାକରି କୃପାସିନ୍ଧୁ ମୋହଠାରେ ବାରେ
ଭବଭୟ ନାଶଯାଉ ଜଣାଏ ପାଦରେ ।
ଶାରଳା ଦାସର ସଦା ଏତିକି ମାଗୁଣି
କେବେଁ ପାଶୋରି ନ ଦେବ ଆହେ ଚକ୍ରପାଣି



## ଶ୍ରୀକୃଷ୍ଣ ସ୍ୱର୍ଗରୁ ସୁଧର୍ମା ସଭା ଆନୟନ

ପୁଣି ମନୁ ପୁଚ୍ଛାକଲେ ଅଗସ୍ତି ମୁନିଙ୍କି
କହ ମହାତମା ମୋତେ ଅମୃତ ବାଣୀକି ।
ରାଜାମାନେ ଯାଆନ୍ତି ଯେ ସେ ଇନ୍ଦ୍ରପ୍ରଶସ୍ତେ
କାହିଁ ଯାଇ ବିଶ୍ରାମ ଏ କରନ୍ତି ସମସ୍ତେ ।
ଏହାଙ୍କ ଚରଚାମାନ କରେ କିଏ ପୁଣି
କେମନ୍ତେ ସମ୍ଭର୍ବେ ଛନ୍ତି ଧର୍ମ ନୃପମଣି ।
ଏଥିର ବାରତା ମୋତେ କହିବା ମହାତ୍ମା
ସାତ୍ତ୍ୱିକ ପୁରୁଷ ତୁହି ସ୍ୱୟଂ ଦ୍ୱିତୀବ୍ରହ୍ମା ।
ବେଦଶାସ୍ତ୍ରେ ନାହିଁ ତୋତେ ଦେବାକୁ ଉପମା
ଭାଗ୍ୟବନ୍ତ ପୁରୁଷ ତୁ ଅଟୁ ଧର୍ମଆତ୍ମା ।
ରାଜା ବଚନେ ବୋଲନ୍ତି କୁମ୍ଭଋଷି ବଳା
ଶୁଣ ରାଜା ତୁମ୍ଭଠାରେ ଅଛି ବିଷ୍ଣୁକଳା ।
ରାଜାମାନେ ଦଣ୍ଡ ସାଜି ସେଠାକୁ ଯାଆନ୍ତି
ଯମୁନା କୂଳେ ବାରୁଣାବନ୍ତରେ ରହନ୍ତି ।
ହସ୍ତିନା ରାଜ୍ୟ ଆସ୍ଥାନେ ବିଜେ ଧର୍ମସୁତ
ସମଦଣ୍ଡ ଘେନି ବିଜେ କୌରବ ସମସ୍ତ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ ଭୂରିଶ୍ରବା
ଖଟିଛନ୍ତି ଇନ୍ଦ୍ରେ ଯଥା ଋଷି ଆଉ ଦେବା ।
ଏମନ୍ତ ଦେଖି କହିଲେ ଯାଇ ଚାରଗଣ
ରାଜାଏ ବିଜେ କଲେଣି ବାରୁଣାବନ୍ତେଣ ।
ରାଜାମାନଙ୍କ ଆସିବା ଶୁଣି ଯୁଧିଷ୍ଠିର
ମନେ ମନେ ହୋଇଲେକ ଆନନ୍ଦ ଅପାର ।
କୃଷ୍ଣ ରାଜାସୈନ୍ୟଙ୍କର ଚରଚା ବୁଝିଲେ
ତାଙ୍କୁ ଯତନେ ଯମୁନା କୂଳରେ ରଖିଲେ ।
ରାଜାଙ୍କ ଆସିବା ଦେଖି ଦେବ ଦଇତ୍ୟାରି
ଖଗେ ବିଜେ କରିଗଲେ ଅମର ନଗରୀ ।
ଦେଖିଲେ ଶ୍ରୀକୃଷ୍ଣ ଲାଗିଛନ୍ତି ବିଶ୍ୱକର୍ମା
ଅମରପୁର ମୋହର ସେ ସଭା ସୁଧର୍ମା ।
ନିଜେ ମଣ୍ଡିଲେ ସେ ସଭା ପ୍ରଭୁ ଜନାର୍ଦ୍ଦନ
ସେ ସଭାର ଆୟତନ ଦ୍ୱାଦଶ ଯୋଜନ ।
ତାହାକୁ ପୁଣି କୁବେର କରିଲେ ମଣ୍ଡଣି
ଗରୁଡ଼ ପୃଷ୍ଠରେ ସଭା ରଖି ଚକ୍ରପାଣି ।
ସ୍ୱର୍ଗ ଭୁବନୁ ଅଇଲେ ନିଶି ଅଛି ହୋଇ
ଇନ୍ଦ୍ରପ୍ରସ୍ଥେ ବସାଇଲେ ନ ଜାଣିଲେ କେହି ।
ଯେଉଁ ସଭାରେ ବସନ୍ତି ନିତି ଦେବଗଣ
ସେ ସଭାକୁ ହରି ମର୍ତ୍ତ୍ୟେ କଲେ ଆନୟନ ।
ଯେ ସଭାରେ ଥିଲେ ଭବଚିନ୍ତା ନ ବାଧଇ
କ୍ଷୁଧା ତୃଷା ନ ଲାଗଇ ଯମଦଣ୍ଡ ନାହିଁ ।
ତ୍ରୈଲୋକ୍ୟ ମଧରେ ଯେଉଁ ସଭା ଶୋଭାବନ
ମଞ୍ଚପୁରେ ସ୍ଥାପନ ତା କଲେ ଭଗବାନ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ସେ ମାନଗୋବିନ୍ଦ
ପଞ୍ଚରାଜ୍ୟ ଲୋକେ ଦେଖି ହୁଅନ୍ତି ସାନନ୍ଦ ।
ସୁବର୍ଣ୍ଣ ଯୋଗାଡ଼ ଆଣିଦେଲେକ କୁବେର
ରାଜାମାନଙ୍କୁ ଅଣ୍ଟିବ ଯେତେ ଅଳଙ୍କାର ।

ଯୁଧିଷ୍ଠି ଦେବ ବୋଇଲେ ଶୁଣ ଚକ୍ରଧାରୀ
ସ୍ୱର୍ଗରୁ ଏହି ସଭାକୁ ଆଣିଲ କିପରି ।
ନ ପୁଣ ବାସବ ଦେବ ମୋତେ କରେ କୋପ
ସେ ରାଗିଲେ ପଣ୍ଡୁଙ୍କ ନ ଯିବ ହତ୍ୟାପାପ ।
ଗୋବିନ୍ଦ ବୋଇଲେ ଶୁଣ ରାଜରାଜେଶ୍ୱର
ନିଜେ ଯା ନିର୍ଭା କରିଛି ଦେବ ସୁନାସୀର ।
ଚୌଷଠି କୋଟି ଅମର ନବ ବିଳାସିନୀ
ତୋହର ଛାମୁକୁ ଦେବ ଆସିବେ ଏକ୍ଷଣି ।
ଇନ୍ଦ୍ରଙ୍କ ଚୌଷଠିକୋଟି ବିଦ୍ୟାଧର ପୁତ୍ରେ
ତାଙ୍କୁ ପେଷିବେ ଏକ୍ଷଣି ତୋ ଇନ୍ଦ୍ର ପ୍ରଶସ୍ତେ ।
ନିଜେ ବିଜୟ କରିବେ ଦେବ ମଘବାନ
ବ୍ରହ୍ମା ସହିତେ ଆସିବେ ବୃନ୍ଦାରକଗଣ ।
ବରୁଣ ରାଜା ଆସିବ ସପ୍ତସିନ୍ଧୁ ତେଜି
ବାସୁକୀ ସହ ଆସିବେ ତୋତେ ଭାବେ ଭଜି ।
ପ୍ରସ୍ତାବ ବାକ୍ୟରେ ବୋଧି କହନ୍ତେ ମାଧବ
ଅନେକ ସାନନ୍ଦ ହେଲେ ଶୁଣି ଧର୍ମଦେବ ।
ଏଣେ ପୁରୋହିତ ଡ଼ାକି ପୁଛେ ଧୃତରାଷ୍ଟ୍ର
ରାଜମାନେ ଆସିଣ ଯେ ମିଳିଲେ ନିକଟ ।
ସଭାର ଭିଆଣ ତହିଁ ହୋଇଛି କେମନ୍ତ
ପୁରୋଧା ବୋଇଲେ ଶୁଣ ଅମ୍ବିକାର ସୁତ ।
ସଭାର ମହିମା ମୁଖେ କହିତ ନ ପାରି
ପାତକୀ ଜୀବନ ଗୋଟି ଅଟଇ ତୋହରି ।
ପଣ୍ଡୁ ନନ୍ଦନମାନଙ୍କ ଅପାର ସମ୍ପଦ
ଦେଖିଥାନ୍ତୁ ବିହି କଲା ବେନିଚକ୍ଷୁ ଅନ୍ଧ ।
ମହାଯାଗ ସଭା ଏକ ହେବ ନୃପମଣି
ଲକ୍ଷେରାଜା ଆସୁଛନ୍ତି ଥାଟକୁ ପଲାଣି ।
ଏ ରୂପେ ବୁଝାଇ ଯହୁଁ କହିଲେ ପୁରୋଧା
ଶୁଣି ଧୃତରାଷ୍ଟ୍ର ମନେ ହେଲା ଗରୁବାଧା ।
ଜୟ ଜୟ କୃପାସିନ୍ଧୁ ସିନ୍ଧୁସୁତା ପତି
ଜୟ ଜୟ ଦୀନବନ୍ଧୁ ଅଗତିର ଗତି ।
ତୁମ୍ଭେ ଯାକୁ ଦୟାକର ଆତଙ୍କ ନାଶନ
ତାକୁ ନ ବାଧଇ ଭବକୂପର କଷଣ ।
ଏହି ଭିକ୍ଷା ତୁମ୍ଭ ପାଦେ ମାଗୁଛି ହେ ପ୍ରଭୁ
ଶାରଳା ଦାସକୁ ତାର ଏହି ମାୟାଭବୁ ।



## ଉତ୍ତର ଦିଗ ରାଜାଗଣ ନିମନ୍ତ୍ରଣେ ପାର୍ଥଙ୍କ ଗମନ

ମନୁରାଜା ପୁଚ୍ଛାକଲେ ଅଗସ୍ତି ମୁନିଙ୍କୁ
ଅର୍ଜ୍ଜୁନ ବିଜୟ କଲେ ଉତ୍ତର ଦିଗକୁ ।
ଉତ୍ତରଦିଗ ରାଜାଏ କ୍ଷତ୍ରୀ ମହାଯୋଧି
କେମନ୍ତେ ପାର୍ଥ ଆଣିଲେ ସେମାନଙ୍କୁ ସାଧି ।
ଏଥିର ଚରିତ ମୋତେ କହ ତପୋନିଷ୍ଠ
ତୋହର ବଚନେ ମୋର ତୁଟୁ ଭ୍ରାନ୍ତି କଷ୍ଟ ।
କହନ୍ତି ଅଗସ୍ତି ମୁନି ଶୁଣ ବ୍ରହ୍ମବେତ୍ତା
ଯୋଗାଧି ଯୋଗେଶ୍ୱର ଯେ ବୈବସ୍ୱତ ଶ୍ରୋତା
କାର୍ତ୍ତିକ ଶୁକଳ ପକ୍ଷେ ବୃହସ୍ପତି ବାର
ଉତ୍ତରଭାଦ୍ର ନକ୍ଷତ୍ର ଭୋଗ ଅଟେ ସେ ଦିନର
ବାଣିଜ୍ୟ ନାମେ କରଣ ଯୋଗ ବଇଧୃତି
ରୋହିଣୀ ବେଳ ଚନ୍ଦ୍ର ତାର ଗୃହେସ୍ଥିତି ।
ଏପରି ଯୋଗେ ବାହାର ହେଲେ ଫାଲଗୁନି
ଉତ୍ତରକୁ ମୁଖକରି ହେଲେ ପଥଗାମୀ ।
ଗରୁଡ଼ ପିଠିରେ ବସି ସେ ଦେବ ଅଚ୍ୟୁତ
ଅର୍ଜ୍ଜୁନ ପଠାଇ ପଥୁ ଫେରିଲେ ତୁରିତ ।
ଯମୁନା ନଦୀର ତୀରେ ଥାଟକୁ ଚଳାଇ
ଦଧିମୁଖ ପର୍ବତରେ ବିଜେ କଲେ ଯାଇ ।
ଅରୁଣ ଉଲ୍ଲୋଳ ବୋଲି ଏକଇ ବନସ୍ତ
କୀଚକ ଭୟରେ ତହିଁ ଲୁଚିଛି ତ୍ରିଗର୍ତ୍ତ ।
ଚାରି ଅଇବ୍ରୁତ ରଥ। ତ୍ରିଂଶକୋଟି ହସ୍ତୀ
ନବ କୋଟି ତୁରଙ୍ଗମ ତ୍ରିକ୍ଷୌଣୀ ପଦାତି ।
ରାଜ୍ୟ ଭ୍ରଷ୍ଟ ହୋଇଣ ସେ ଅତି ଦୁଃଖ ମନେ
କନ୍ଦମୂଳ ଖାଇ ରାଜା ବୁଲେ ବନେ ବନେ ।
ପାର୍ଥ ଆସିବାର ବାର୍ତ୍ତା ଶୁଣିଣ ତ୍ରିଗର୍ତ୍ତ
ଛାମୁକୁ ଆନନ୍ଦେ ରାଜା ଅଇଲା ତୁରିତ ।
ଗଣ୍ଡା ଚାରିଗୋଟି ରାଜା ଚଳାଇଣ ଆଗେ
ପାର୍ଥକୁ ଦର୍ଶନ କଲା ଅମୃତର ଯୋଗେ ।
ପୁଚ୍ଛିଲେ ପାର୍ଥ ତାହାକୁ କେଉଁଦେଶ ରାୟେ
ବୁଲୁଅଛ ବନଗାମୀ ହୋଇ କାହା ଭୟେ ।
ବୋଇଲେ ତ୍ରିଗର୍ତ୍ତ ଯହୁଁ ତାଙ୍କୁ ଯୋଡ଼ହସ୍ତେ
ଶୁଣ ଦେବ କହୁଅଛି ମୋ ଅବସ୍ଥା ଯେତେ ।
ସ୍ୱାମୀ ମଘ ଦେଶ ବୋଲି ଥିଲା ମୋର ରାଜ୍ୟ
ସୁରସେନ ନୃପତିର ମୁଁ ଅଟେ ତନୁଜ ।
ସ୍ୱାମୀ ମୋ ଦେଶ ପଡ଼ିଶା ଅଟେ ମତ୍ସ୍ୟଦେଶ
କର୍ଣ୍ଣକେଶରୀ ହୋଇଲା ଇଚ୍ଛାନନ୍ଦ ଶିଷ୍ୟ ।
ଇଚ୍ଛାନନ୍ଦର ନନ୍ଦନ ନୃପତି ସୌରାଷ୍ଟ୍ର
ଅନୁବ୍ରତେ ଦ୍ୱନ୍ଦେ ରାଜା ମଣ୍ଡିଥାଇ ଥାଟ ।
କିରାତ ରାଜାର ତୁଲେ ବହୁତ ବିବାଦୀ
ସେହେତୁ ଅନୁବ୍ରତେ ସେ ସୈନ୍ୟଙ୍କୁ ସମ୍ପାଦି ।
ବୈରାଷ୍ଟ୍ର କିରାତର ଯେ ହୋଇଲା ସଂଗ୍ରାମ
ଶତେକ ଦିବସ ଯୁଦ୍ଧ ହେଲା ଅବିଶ୍ରାମ ।

ବହୁତ ଯୁଦ୍ଧ କରିଣ ନୃପତି କିରାତ
ଗଦା ପିଟନ୍ତେ ଭାଙ୍ଗିଲା ବୈରାଷ୍ଟ୍ରର ରଥ ।
ବିରଥୀ ହୋଇ ପଳାଏ ଭୟେ ନୃପମଣି
କିରାତ ରାଜା ତାହାର କେଶ ଧରିଆଣି ।
ରାଗରେ ନୃପତି କରେ ଧରି ତୀକ୍ଷଣ ଖଣ୍ଡା
ବୈରାଷ୍ଟ୍ର ରାଜାକୁ ହାଣି କଲା ମସି ଗୁଣ୍ଡା ।
ଶ୍ରୀବସ୍ତୀ ବୋଲି ନାମେଣ ବୈରାଷ୍ଟ୍ରର ରାଣୀ
ସ୍ୱାମୀର ଅଭାବେ ସେହୁ ପଳାଇ ସେକ୍ଷଣି ।
ମହ୍ଲାର ଦେଶର ରାଜା ଅଟେ ସଂକୋଚନ
ତାହାର ରାଜ୍ୟରେ ରାଣୀ ହୋଇଲା ଗୋପନ
ରାଜପତ୍ନୀ ବୋଲି ଦୟା କଲା ନୃପମଣି
ଭିନ୍ନ ନବରେ ରଖିଲେ ବୈରାଷ୍ଟ୍ରର ରାଣୀ ।
ଯେତେବେଳେ ସଂକୋଚନ ପୁରେ ରାଣୀଗଲା
ତେତେବେଳେ ତିନିମାସ ଗର୍ଭ ହୋଇଥିଲା ।
ସଂକୋଚନ ରାଜା ତାକୁ ସମ୍ଭାଳିଲା ଯତ୍ନେ
ପୁତ୍ରେ ଜନ୍ମିଲା ଶ୍ରାବଣ ଚତୁର୍ଥୀତ ଦିନେ ।
ଦେଖି ସଂକୋଚନ ରାଜା ଆନନ୍ଦିତ ମନେ
ବିରାଟ ନାମ ତା ହେଲା ଏକବିଂଶ ଦିନେ ।
ବୈରାଷ୍ଟ୍ର ରାଜାର ପୁତ୍ର ବିରାଟ ତା ନାମ
ରୂପଗୁଣେ ସୁନ୍ଦର ସେ ଯେସନେକ କାମ ।
ସଂକୋଚନ ନରେଶର ହେଲା ଦୁହିତାଏ
ସୁଦେଷ୍ଣା ନାମ ତାହାର ଦେଲା ମହାରାୟେ ।
ଭାଳେ ସଂକୋଚନ ନିଜ ପୁତ୍ରକୁ ବସାଇ
ବାବୁ କୀଚକ ରେ ତୋତେ ପଚାରୁଛି ମୁହିଁ ।
ମଘ ଦେଶର ରାଜା ଯେ ଅଟଇ ବୈରାଷ୍ଟ୍ର
କିରାତ ବିବାଦେ ସେହୁ ହୋଇଗଲା ନଷ୍ଟ ।
ତା ଭାର୍ଯ୍ୟା ଗର୍ଭରେ ଥିଲା ପଳାଇ ଅଇଲା
ଆମ୍ଭ ଘରେ ଥିଲା ସେହୁ ପୁତ୍ରେ ଜାତ କଲା ।
ବୈରାଷ୍ଟ୍ରେ ଛାଡ଼ିଲା ଯହୁଁ ରାଣୀ ସଉରାଷ୍ଟ୍ର
ତେଣୁ ସେ ପୁତ୍ରର ନାମ ଦେଲି ମୁଁ ବିରାଟ ।
ଆରେ ବାବୁ ତାକୁ ମୁହିଁ ପାଳିଲି ଯତନେ
ତା ପଛରେ ଉପୁଜିଲ ପୁଣି ତୁମ୍ଭେମାନେ ।
ଏବେ ମନମଧ୍ୟେ ମୁହିଁ ଏହା ଅଛି ଭାବି
ସେହି ବିରାଟକୁ ମୋର ଝିଅ ବିଭାଦେବି ।
ଯେବେ ଯୋଗାଉଛି ବାବୁ ତୋର ବିଚାରକୁ
ସୁଦେଷ୍ଣା ବିବାହ ଦେବା ସେ ପୋଷ୍ୟପୁତ୍ରକୁ ।
ସଂସିଦ୍ଧ ବଂଶରେ ସେହି ଅଟେ ଅଧିକାରୀ
ଏମନ୍ତ ଭାବିଛି ତୁହି କହ କି ବିଚାରି ।
ମତ୍ସ୍ୟଦେଶ ହୋଇଅଛି ଏବେ ଅରାଜକ
ତୋ ବଳରେ ଯାକୁ ତହିଁ କର ଅଭିଷେକ ।
କୀଚକ ବୋଲେ ପାଇଲା ଏ କଥା ମନକୁ
ନିଶ୍ଚେ ଏ ରାଜ୍ୟେ ରାଜନ କରିବଇଁ ତାକୁ ।
ପୁତ୍ରକୁ ମଣାଇ କରି ରାଜା ସଂକୋଚନ
ବିରାଟକୁ ସୁଦେଷ୍ଣା ଯେ କରିଲା ପ୍ରଦାନ ।
ତ୍ରିଗର୍ତ୍ତ କହଇ ଶୁଣ ଆରେ ଫାଲଗୁନେ
ସମୟେ ବିରାଟ ଥିଲା ସଂକୋଚ ଭୁବନେ ।
କୀଚକ ଯହୁଁ ମହିମା ଅର୍ଜିଲା ବହୁତ
ଅନେକ ରାଜ୍ୟ ଜିଣିଲା ହୋଇ ବଳବନ୍ତ ।
ସ୍ୱାମୀ ମର୍ତ୍ତ୍ୟପୁର ମଧ୍ୟେ ନାହିଁ ତାକୁ ଯୋଧି
ବହୁତ ବଳିଷ୍ଠ ରାଜା ଅଇଲା ସେ ସାଧି ।
ଦିନେକ ପ୍ରତିଜ୍ଞା ସେହୁ କଲାକ ଆସ୍ଥାନେ
ଆଉ ରାଜା ନ ରଖିବି ଏ ମଧ୍ୟ ଭୁବନେ ।
ସଂକୋଚନ ବୋଲେ ତୋର ଅପାର ମହିମା
ବିରାଟ ସ୍ୱାମୀ ରହିଲେ ରହିବ ଗାରିମା ।
ଦୁହିତା ଗୋଟିକ ତାକୁ କରିଲି ପ୍ରଦାନ
ରାଜ୍ୟେକ ଦେଇ ତାହାକୁ କର ତୁ ରାଜନ ।
ଏହା ଶୁଣିଣ କୀଚକ ଅତ୍ୟନ୍ତ ରାଗରେ
ସୈନ୍ୟ ଚଳାଇ ମିଳିଲା ମୋହର ରାଜ୍ୟରେ ।
ଅନେକ ସଂଗ୍ରାମ ହେଲା ତାହାର ମୋହର
ମୋ ସାହା ହୋଇ ଯୁଝିଲା କିରାତ ଈଶ୍ୱର ।
କିରାତ ଶବର ମୁହିଁ ଦୁଇ ନରନାଥ
କୀଚକର ତୁଲେ ଯୁଦ୍ଧ କଲୁ ଅପ୍ରମିତ ।
ଶତସିଂହ ବଳ ଧରେ ସଂକୋଚନ ବାଳ
ଅନେଶ୍ୱତ ଭାଇ ଘେନି ଜିଣିଲା ମଣ୍ଡଳ ।
କେ ଯୋଦ୍ଧା ହୋଇ ପୃଥ୍ୱୀରେ ତାକୁ ସରିନାହିଁ
ତିନିପୁର ଜିଣିବାକୁ ଶକ୍ତିବାନ ସେହି ।
କୀଚକର ମୋର ଯୁଦ୍ଧ ହେଲା ଏହିମତେ
ଚୌଦବାର ଯୁଦ୍ଧ କଲା ଆସି ମୋ ସଙ୍ଗତେ ।
ଶେଷେ କୌଣସି ଉପାୟେ ତାହାକୁ ନ ପାରି
ରାଜ୍ୟ ଛାଡ଼ି ଅଇଲି ମୁଁ ତହିଁ ଅପସରି ।
ମଘଦେଶ କିରାତର ଠାରୁ ଜିଣିନେଲା
ମୋ ମତ୍ସ୍ୟଦେଶକୁ ପୁଣି ଅଧିକାର କଲା ।
ବିରାଟକୁ ମତ୍ସ୍ୟ ମଘଦେଶ ଚକ୍ରବର୍ତ୍ତୀ
କରି ଆପଣେ ହୋଇଲା ତାର ସେନାପତି ।
ବରଡ଼ିଆ ବାରଲକ୍ଷ ଦ୍ୱିପଦ୍ମ ଦୁହାଁଳ
କୀଚକ ଯୋଗେ ଭୋଗଇ ବିରାଟ ଭୂପାଳ ।
ବଳାତ୍କାରେ ବିରାଟ ଯେ ମୋ ରାଜ୍ୟ ଭୋଗଇ
ବୁଲୁଅଛି ବନରେ ମୁଁ ଫଳମୂଳ ଖାଇ ।
ସ୍ୱାମୀ ତୁ ଭକ୍ତବତ୍ସଳ କରୁଣାସାଗର
ନିଅନ୍ତା ରାଜ୍ୟକୁ ମୋର ମୋତେ ଦାନକର ।

ଅର୍ଜ୍ଜୁନ ବୋଇଲେ ଶୁଣ ହେ ତ୍ରିଗର୍ତ୍ତ ରାଜା
ସମଦଣ୍ଡ ଘେନି ତୁହି ଇନ୍ଦ୍ରପ୍ରସ୍ଥେ ଯା ଯା ।
ବିରାଟ ହିଁ ଆସିବ ଏ ରାଜସି ସଭାକୁ
ତୋ ପାଇଁ ବୋଲିବା ଆମ୍ଭେ ସେହି କୀଚକକୁ ।
ଯେଉଁପରି ନିଜ ରାଜ୍ୟ ପାଉ ତୁ ତୋହର
ସେହିପରି ଉପାୟ ମୁଁ କରିବି ନିକର ।
ପାର୍ଥର ଚରଣେ ରାଜା ଓଳଗି ମେଲାଇ
ବାହାରିଲା ତ୍ରିଗର୍ତ୍ତ ଯେ ଥାଟକୁ ଚଳାଇ ।
ତହୁଁ ବିଜୟ କରିଲେ ପାର୍ଥ ବୀରମଣି
ଉତ୍ତର ଦିଗେ ଚଳାଇ ଥାଟର ପଲାଣି ।
ପ୍ରାଞ୍ଜଳଦେଶେ ପ୍ରବେଶ ହେଲେ ଫାଲଗୁନି
ପୃଥିବୀ କମ୍ପୁଛି ବୀରତୂର ଶବ୍ଦ ଶୁଣି ।
ପ୍ରାଞ୍ଜଳ ଦେଶର ରାଜା ଗୋପାଳ ନୃପତି
ଚାରିଶତ ପାରିଦଣ୍ଡ ତାହାକୁ ଖଟନ୍ତି ।
ପାଞ୍ଚକୋଟି ରଥ ପାଞ୍ଚକୋଟି ଯେ ତୁରଙ୍ଗ
ବହୁ ପଦାତି ଚଉଦ ଅବୁର୍ଦ ମାତଙ୍ଗ ।
ଅର୍ଜ୍ଜୁନ ପ୍ରବେଶ ହେଲେ ସେ ରାଜ୍ୟର ରାଜ୍ୟେ
ବୀରତୂର ଟମକ ଯେ ବାଦ୍ୟମାନ ବାଜେ ।
ଆସ୍ଥାନରେ କରିଛନ୍ତି ବିଜେ ନରଈଶ
ମହାଗହଳ ଶୁଭିଲା ବୀରତୂର ଘୋଷ ।
ମନ୍ତ୍ରୀର ବଦନ ଚାହିଁ ନୃପତି ପୁଛଇ
ଏ କିସ ଶବ୍ଦ ଆମ୍ଭର ରାଜ୍ୟରେ ଶୁଭଇ ।
ଏକାଳେ ଆସ୍ଥାନ ତଳେ ଜଣାଇଲା ଚାର
ଭୋଦେବ ଶୁଣିମା ହେଉ ପ୍ରାଞ୍ଜଳ ଈଶ୍ୱର ।
ବନ ଡ଼ିଙ୍ଗର ଜିଣିଣ ରାଜାଏ ଆସୁଛି
ରଥ ଗଜ ଅଶ୍ୱ ସୈନ୍ୟ ଅନ୍ତ ତାର ଅଛି ।
କେବଣ ଦେଶରୁ ଦେବ ଆସୁଛି ସେ ବାହି
ରାଜା ହୋଇ ଛାମୁରେ ତା ମିଳନ୍ତା କେ ନାହିଁ ।
ଏହା ଶୁଣିଣ ବିରସ ହେଲା ନରପତି
ଛାମୁରେ ଜଣାଇଲାକ ସୁରେଶ୍ୱର ମନ୍ତ୍ରୀ ।
ସ୍ୱାମୀ ହସ୍ତିନା ଠାକୁର ଯୁଧିଷ୍ଠିର ରାୟେ
ତାହାଙ୍କର ସାନୁଜ ଏ ବୀର ଧନଞ୍ଜୟେ ।
ଦିଗ ବିଜୟ କରନ୍ତି ରାଜସୂୟ ଅର୍ଥେ
ଲକ୍ଷେ ରାଜାଙ୍କୁ ନିମନ୍ତ୍ରି ନେବେ ସେ ସଙ୍ଗତେ ।
ମନ୍ତ୍ରୀମୁଖୁଁ ଏ ବାରତା ଶୁଣି ନରନାଥ
ସାଜିଲା ତାହାର ଅଶ୍ୱ ଗଜ ମହାରଥ ।
ବହୁତର ସଇନଙ୍କୁ ଘେନି ନୃପମଣି
ବିଜେକଲେ ମହାରାଜା ଥାଟର ପଲାଣି ।
ସକଳ ସୈନ୍ୟ ଘେନିଣ ବିଜେ ମହାରାଜ
ଦ୍ୱିତୀକୃଷ୍ଣଙ୍କୁ ଦେଖିବି କି ସୁଭାଗ୍ୟ ଆଜ ।
ଦର୍ଶନେ ସୁଫଳ ଆଜି ହୋଇବ ଜୀବନ
ପ୍ରାଞ୍ଜଳ ମଣ୍ଡଳାଧିପ ଭାଳିଲା ଏସନ ।
କଟକ ଭିତରେ ବିଜେ କଲେ ଫାଲଗୁନି
ଦର୍ଶନ କଲେ ଛାମୁରେ ରାଜାଥାଟ ସେନି ।
ଅର୍ଜ୍ଜୁନଙ୍କର ଚରଣେ କଲେ ପ୍ରଣିପାତ୍ୟ
ଦେଖିଣ ସାନନ୍ଦ ହେଲେ ବାସବଙ୍କ ସୁତ ।
ଦୁର୍ବାକ୍ଷତ ଦେଇ ତାକୁ କଲେ ନିମନ୍ତ୍ରଣ
ସମଦଣ୍ଡ ଘେନି ରାଜା ଯାଅ ଏହିକ୍ଷଣ ।
ରାଜସୂୟ ଯଜ୍ଞହେବ ଇନ୍ଦ୍ରପ୍ରଶସ୍ତରେ
ତୁମ୍ଭେ ଯାଇ ରହିବ ହେ ବାରୁଣାବନ୍ତରେ ।
ଚାଳିଶସସ୍ର ରାଜାଙ୍କୁ ଏ ଦିଗୁ ମୁଁ ନେବି
ତେବେ ଯାଇଁ ଯୁଧିଷ୍ଠିଙ୍କୁ ଦର୍ଶନ କରିବି ।
ଏହି ଜ୍ଞାନ ତାକୁ ଦେଇ ଚଳିଲେ ଶ୍ରୀବତ୍ସ
ଶୂନ୍ୟ ଦିଗପାଳ ପ୍ରାୟେ ରୂପ ବିରାଜୁଛି ।
ଗମନ୍ତେ ତୁରଙ୍ଗମାନ ଶୂନ୍ୟେ ଉଡ଼େ ଧୂଳି
ବରଷା ଋତୁରେ ଯେହ୍ନେ ଝଟକେ ବିଜୁଳି ।
ସେ ରଥେ ବେଗେ ଗମନ୍ତି ରଥ ହୟ ଚାରି
ମାତଳି ସାରଥି ରଥ ବାହେ ବେଗକରି ।
ମାଳବ ଦେଶରେ ଯାଇ ପ୍ରବେଶ ଅର୍ଜ୍ଜୁନ
ଯମୁନା କୂଳରେ ରାଜ୍ୟ ପାଏ ଶୋଭାବନ ।
ସେ ଦେଶର ବୀରବର ନାମେ ନରପତି
ବହୁତର ପାରିଦଣ୍ଡ ରାଜାକୁ ଖଟନ୍ତି ।
କୁବେର ସମ୍ପଦ ପରି ତା ଭଣ୍ଡାର ଧନ
ତା ରାଜ୍ୟେ ପ୍ରବେଶ ହେଲେ ଯାଇଣ ଅର୍ଜ୍ଜୁନ ।
ନାନା ବାଦ୍ୟ ବୀରତୂର କଲେ ଘୋରଧ୍ୱନି
ଇନ୍ଦ୍ରବିଜେ କଲା ପ୍ରାୟ ଗମନ୍ତି ଫାଲ୍‌ଗୁନି ।
ରାଜ୍ୟେ ପଶୁଁ ଓଗାଳିଲେ ଆସି ଚାରଗଣ
ଆମ୍ଭ ରାଜ୍ୟେ ପଶ ଆହେ କେବଣ କାରଣ ।
ନ ଜାଣ କି ବୀରବର ଏ ଦେଶ ନୃପତି
ଉତ୍ତର କୋଶଳେ ଯାର ମହିମା ବିଖ୍ୟାତି ।
ଧାର୍ମିକ ବିବେକ ଏହୁ ମହାବଳବନ୍ତା
ଏହି ପୃଥିବୀରେ ନାହିଁ କେ ତାକୁ ଜିଣନ୍ତା ।
ଜୟ ବିଜୟ ପାର୍ଥର ବେନି ସେନାପତି
ଅଶ୍ୱେ ଅଶ୍ୱ ଚଢ଼ି ଯେହି ଆଗରେ ଚାଲନ୍ତି ।
ଚାରଙ୍କ କଥା ନ ଶୁଣି ସେନାପତି ଦୁଇ
ସେହି ରାଜ୍ୟରେ ପଶିଲେ ସକଳେ ଧସାଇ ।
ଏମାନେ ଯିବାର ଜାଣି ରାଜା ବୀରବର
ଏକସସ୍ର ରଥୀଙ୍କୁ ଯେ ଡାକିଣ ସତ୍ୱର ।
ବୋଇଲା ରେ ତୁମ୍ଭେମାନେ ଯାଅ ଏହିକ୍ଷଣ
ପ୍ରାଣେ ନ ମାରି ତାହାକୁ ଧରିକରି ଆଣ ।

ରାଜାଙ୍କ ଆଜ୍ଞା ପାଇଣ ଗଲେ ସସ୍ତ୍ରରଥୀ
ବାଣ ପୂରାଇ ଧାଇଁଲେ ହୋଇ କୋପମୂର୍ତ୍ତି ।
ମୁକୁଟବନ୍ଧା ଅଟନ୍ତି ସେ ସହସ୍ର ରଥୀ
ଚୋଖାର ଶ୍ୱେତଅଶ୍ୱ ସେ ରଥେ ଯୋଚିଛନ୍ତି ।
ତର୍ଜନ୍ତି ଗର୍ଜନ୍ତି ସେହୁ ସନ୍ଧି ତୀକ୍ଷ୍ଣମୁନା
ନିକଟ ହୋନ୍ତେ ମିଳିଲେ ମାଳବର ସେନା ।
ଦେଖି କୋପାନଳ ହେଲା ପାର୍ଥ ସେନାପତି
ପରିଘ ବୁଲାଇ ସେହୁ ଉଠିଲାକ ଧାତି ।
ମାଳବ ଯୋଦ୍ଧାଙ୍କ ପରେ କରନ୍ତେ ପ୍ରହାର
ଅନେକ ମରି ପଡ଼ିଲେ ଧରଣୀ ଉପର ।
ପଡ଼ନ୍ତି ଉଠନ୍ତି ସେହୁ ଗର୍ଜନ୍ତି କୋପରେ
କେତେ ଯୋଦ୍ଧା ନ ଘୁଞ୍ଚିଲେ ପାଦେକ ସମରେ
ଯାଠି କୁନ୍ତ ଧରି ସେହୁ ମଲ୍ଲଯୁଦ୍ଧ କଲେ
ପାର୍ଥଙ୍କୁ ସୈନ୍ୟେ ଆଗରୁ ଉବୁରି ନ ଗଲେ ।
ଆଗୁଆଣି ଥାଟେ ଥିଲେ ସହସ୍ରେକ ବଳ
କେହି ନ ବର୍ତ୍ତିଲେ ଯୁଦ୍ଧେ ପଡ଼ିଲେ ସକଳ ।
ଧାଇଁଣ ସେ ଚାରଗଣ କହିଲେ ରାଜାଙ୍କୁ
ସ୍ୱାମୀ ବଡ଼ ଦୁରାପଦ ପଡ଼ିଲା ତୁମ୍ଭଙ୍କୁ ।
ସହସ୍ରେକ ରଥୀ ଆଗେ ଉଗାଳିଣ ଥିଲେ
ସେ ସମସ୍ତ ଯୋଦ୍ଧା ତୋର ଯୁଦ୍ଧରେ ପଡ଼ିଲେ ।
ଏତେକ ମାରିଣ ଦେବ ନୋହିଲାକ ଶାନ୍ତି
କଟକ ଭିତରେ ପଶେ ହୋଇଣ ନିଭ୍ରାନ୍ତି ।
ଆହେ ମହାରାଜା ଏବେ ସମ୍ଭାଳ ତୋ ରାଜ୍ୟ
ଜନଜନ୍ତୁ ନାଶ ଗଲେ ହୋଇବ ଅକାର୍ଯ୍ୟ ।
ଚରଗର ମୁଖୁ ବାରତା ପାଇ ବୀରବର
ଆପଣେ ବିଜେ କଲା ସେ ଚୌଦୋଳି ଉପର
ରାଜାର ବିଜେ ଦେଖିଣ ଧାଇଁଲେ ସଇନି
ଯେ ଯାହାର ଅସ୍ତ୍ରମାନ ନିଜେ ନିଜେ ଘେନି ।
ମହାଥାଟ ଦେଖିକରି ସେ ଜୟ ବିଜୟ
ଏହୁ ବେନି ସେନାପତି ଧୁଆଁଇଲେ ହୟ ।
ମାର ମାର ବୋଲିକରି ପକାଇଲେ ବୋବି
ଯୋଗ୍ନୀବୃନ୍ଦ ଘେନି ଯେହ୍ନେ ଡାକନ୍ତି ଭୈରବୀ ।
ସଂଗ୍ରାମେ ଅଜୟ ଅଟେ ଯାହାର ବୀରଧୁ
ସେନାପତିଙ୍କ ମହିମା ତେହ୍ନେ ଅଟେ ସାଧୁ ।
ଧନୁ ଆମଞ୍ଚିଲେ ସେହି ଜୟ ଯେ ବିଜୟ
ଆଗେ ଓଗାଳିଲେ ରାଜ୍ୟ ପାରିଦଣ୍ଡ ଚୟ ।
ସାତଖର୍ବ ରଥ ଆଉ ଆଠଖର୍ବ ହସ୍ତୀ
ଚାରିଶତ ହୟବର କ୍ଷଉଣୀ ପଦାତି ।
ଏତେ ସୈନ୍ୟ ବୀରବର ଘେନି ଚକ୍ରବର୍ତ୍ତୀ
ରଣ ହାନ୍ଦୋଳନ କଲା କଉଶିକ ଗୋତ୍ରୀ ।
ହସ୍ତିନାର ବୀରମାନେ କରିଲେ ସମର
ଡାକ ହାକେ କମ୍ପୁଅଛି ପର୍ବତ ଡିଙ୍ଗର ।
ଗର୍ଜିଣ ଉଠିଲେ ଯହୁଁ ମାଳବର ବଳ
ଦୁଇ ସୈନ୍ୟ ମିଶିକଲେ ତହିଁ ମହା ଗୋଳ ।
ବାରଣ ନ ଗଲା କେହି ପର କେ ଆପଣା
ହଣାହଣି ହେଲେ ତେଜି ଉପ୍ରୋଧ ଧାରଣା ।
ମାତଳି ସେଠାକୁ ରଥ ବାହିଲା ସତ୍ୱର
ଗୁଣ ଟଙ୍କାରି ଉଠିଲା ପାର୍ଥ ଧନୁର୍ଦ୍ଧର ।
ଅର୍ଜୁନର ସେନାପତି ଜୟ ଯେ ବିଜୟ
ତାଙ୍କୁ ଓଗାଳିଲେ ଆସି ମାଳବର ରାୟ ।
ବୀରବର ସୁନ୍ଦର ସେ କ୍ଷତ୍ରୀ ଅନର୍ଗଳା
ସମରେ ଅଭୟ ସେହି କ୍ଷତ୍ରୀ ମହାଖଳା ।
ମାଳବର ସେନାଏ ଯେ ଅଇଲେକ ଧାଇଁ
ବୁଲାଅନ୍ତି ଲାଙ୍ଗିଆ ଯେ ସିଂହନାଦ ଦେଇ ।
ଧାଆଁରେ ମାରରେ ରୋଷେ ପ୍ରତିଜ୍ଞାରେ ବୋଲି
ଗାଲତୂର ଶବଦରେ ପକାନ୍ତି କୁରୁଳି ।
ଜୟ ବିଜୟ ଏ ଦୁହେଁ ବୁଲାଇ ପରିଘ
ଗର୍ଜନ୍ତି ବର୍ଷାକାଳର ସମ କଳାମେଘ ।
ସୈନ୍ୟଙ୍କ ଉପରେ ଯହୁଁ ପ୍ରହାରିଲେ ଗଦା
ଭାଙ୍ଗିଲେ ଯବନବଳ ପିଟି କଲେ ପଦା ।
ରଥୀ ସାରଥି ପଡ଼ିଲେ ସୈନ୍ୟ ଭୂମିଲୋଟି
ରଥେ ବିଜେ କରିଛନ୍ତି ପାଣ୍ଡବ କିରୀଟୀ ।
ଅରଜୁନ ଆଜ୍ଞାଦେଲେ ଡାକି ସାରଥିକି
ମୋର ରଥ ବାହାବେଗେ ରାଜାର କତିକି ।
ପବନ ବେଗରେ ରଥ ବାହିଲା ମାତଳି
ମାଳବ ରାଜାର ପାଶେ ଶୀଘ୍ର ଗଲେ ମିଳି ।
ବୀରବର ରାଜାର ଯେ ଦେହ ବଜ୍ରସେହ୍ନା
ପାର୍ଥଙ୍କୁ ଦେଖି ବିନ୍ଧିଲା ଶର ଅଗଣନା ।
ରଥ ଉପରେ ଥାଇଣ କହନ୍ତି ଅର୍ଜୁନ
କିହୋ ବୀରବର ତୁହି ନିତାନ୍ତ ଅଜ୍ଞାନ ।
କାହାର ତୁଲେ ବିବାଦ କରୁ ରାଗଚିତ୍ତେ
ଦେଶାଉରେ ବାରତା କି ନ କହିଲେ ତୋତେ ।
ଉତ୍ତରଦିଗେ ବିଜେ ମୁଁ କରିବି ଫାଲଗୁନି
ରାଜାଙ୍କୁ ନିମନ୍ତ୍ରି ରାଜସୂୟେ ଯିବି ଘେନି ।
ନ ଜାଣିଣ ବୃଥା ତୁହି କରୁଛୁ ସମର
ଅକାରଣେ ସୈନ୍ୟ କିପାଁ କରୁ ଅପହାର ।
ଏତେବଡ଼ ରାଜା ହୋଇ ଅପଣ୍ଡିତ ପଣେ
ମରାଇଲୁ ସଇନ୍ୟଙ୍କୁ ତୁହି ଅକାରଣେ ।
ଧନଞ୍ଜୟ ବାକ୍ୟ ଯହୁଁ କହିଲେ ଏମନ୍ତ
ଶୁଣିଣ ରଥରୁ ଡ଼େଇଁ ସେହି ନରନାଥ ।

ଅର୍ଜ୍ଜୁନର ରଥତଳେ ହୋଇଣ ପ୍ରଣମି
ବୋଲେ ଦାସ ଦୋଷ କ୍ଷମାକର ଦେବସ୍ୱାମୀ
ଅର୍ଜ୍ଜୁନ ବୋଇଲେ ତୁହି ଉଠ ଉଠ ବାବୁ
କ୍ରୋଧ ପରମ ଚଣ୍ଡାଳ ତୁ କିସ କରିବୁ ।
ସଇନିଙ୍କି ଡ଼ାକଦେଲା ରୁହ ହୋ ସଭିଏଁ
ନ ଜାଣି ନାଶ ହେଉଛ ସର୍ବେ ହୁଅ ଥୟେ ।
ଭକତବତ୍ସଳ ଦୋଷ କଲେଣି ଉପେକ୍ଷା
ସେ ଯେ ନାଶ ଗଲେ ତୁମ୍ଭେ ହୁଅ ରକ୍ଷା
ସମସ୍ତ ପଳାଇଥିଲେ ମହାଭୟ କରି
ରାଜାର ମଧୁର ବାକ୍ୟେ ଅଇଲେ ସେ ଫେରି ।
ନିମନ୍ତ୍ରଣ ଯୋଗାଡ଼କୁ ସବ୍ୟସାଚୀ ଦେଲେ
ଇନ୍ଦ୍ରପ୍ରସ୍ଥେ ଯାଅ ବୋଲି ଏ ଆଜ୍ଞା କରିଲେ ।
ଶୁଣି ସାନନ୍ଦେ ବୋଇଲେ ସେହି ନରମଣି
ସ୍ୱାମୀ ଆଜ୍ଞା ପ୍ରମାଣେ ମୁଁ ଯିବି ଏହିକ୍ଷଣି ।
ମାଳବ ରାଜା ନମିଲେ ପାର୍ଥ ପଦ୍ମପାଦେ
ଲଭିଲି ଅନେକ ପୁଣ୍ୟ ତୁମ୍ଭର ପ୍ରସାଦେ ।
ସ୍ୱାମୀ ମଣୋହି ଯୋଗାଡ କରିବି ବିଧାନ
ଏତେ ବେଳ ହୋଇଲାଣି ଆସିଣ ମଧ୍ୟାହ୍ନ ।
ଅର୍ଜ୍ଜୁନ ବୋଇଲେ ତୁହୋ ଶୁଣ ବୀରବର
ମଣୋହିକି ବେଳ କାହିଁ ଅଛିଟି ମୋହର ।
ଚାଳିଶ ସହସ୍ର ରାଜା ନଉଦିନ ମଧ୍ୟେ
ନିମନ୍ତ୍ରିବି କାହିଁ ଅବା ସାଧ ହେବ ଯୁଦ୍ଧେ ।
ଦଣ୍ଡଘେନି ବାହାର ତୁ ହୁଅ ଏହିକ୍ଷଣ
ଦିବାରାତ୍ରି ଅନୁବ୍ରତେ କରିବୁ ପ୍ରୟାଣ ।
ଯେଉଁ ରାଜା ନ ଯାଇଣ ବିଳମ୍ବ କରିବ
ନିଶ୍ଚେ ଯଜ୍ଞଦ୍ରୋହୀ ହୋଇ ସେହି ନାଶଯିବ ।
ଆମ୍ଭେ ଯେ କହିଲୁ ଏହା ନିରାଧାର କରି
ଅନୁକୂଳ କର ରାଜା ଲଗ୍ନକୁ ବିଚାରି ।
ମାଳବ ଦେଶରୁ ବିଜେ କଲେ ଫାଲ୍‌ଗୁନି
ବହୁ ସମ୍ଭର୍ବେ ଚଳିଲେ ଥାଟ ସୈନ୍ୟ ଘେନି ।
ମାଳବଦେଶ ଅନ୍ତରେ ଜାମ୍ଭୁକ ଯେ ବନ
ହିରଣାକ୍ଷୀ ବୋଲି ନଦୀ କରଇ ପ୍ରୟାଣ ।
ସେ ନଦୀର କୂଳେ ଅଛି ସୌରଭି ପର୍ବତ
ସେ ଗିରି ଉପରେ ଯାଇ ବିଜେକଲେ ପାର୍ଥ ।
ଏରଡ଼ଙ୍ଗ ବୋଲି ତହିଁ ରାଜ୍ୟ ଯେ ଗୋଟିଏ
ତହିଁ ରାଜ୍ୟ କରେ ଭାନୁମନ୍ତ ନରରାୟେ ।
ପାର୍ଥ ଡାକିଲେ ବିଜୟ ଜୟ ସେନାପତି
ଆଦିତ୍ୟ ଅସ୍ତ ଯାଇଣ ହେଲା ନିଶାରାତି ।
ରାତ୍ରରେ ପଶିବା କିପାଁ ଆମ୍ଭେ ପରରାଷ୍ଟ୍ରେ
ରାଜାଙ୍କୁ ପରତେ ନାହିଁ ରହୁ ଏଥେଁ ଥାଟ ।

ରହିଲେ ସଇନି ସହ ସେହି ପରବତେ
ରାନ୍ଧଣା ସାମଗ୍ରୀମାନ ଆଣିଦେଲେ ଦୂତେ ।
ସୂପକାରମାନେ ତହିଁ କରିଲେ ରନ୍ଧନ
ସମସ୍ତେ ନଦୀରେ ପଶି ସାରି ନିତ୍ୟକର୍ମ ।
ପାର୍ଥ ସହିତେ ଅମୃତ ଯୋଗାଡ଼ ଭୁଞ୍ଜିଲେ
ଆଚମନ କରି ତହିଁ ସୁଖରେ ବସିଲେ ।
ଏ ସମୟେ ଅଷ୍ଟକନ୍ୟା ପ୍ରଧାନ ନର୍ତ୍ତକୀ
ବାସବ ନିଜେ ତାହାଙ୍କୁ ଡକାଇ କତିକି ।
ସୁଧର୍ମା ସଭାରେ ଥିଲେ ଅଷ୍ଟ ବିଦ୍ୟାଧର
ଏମାନଙ୍କୁ ପାର୍ଥ ପାଶେ ପେଷିଲେ ସତ୍ୱର ।
ପୁଷ୍ପକଯାନ ଆରୋହି ଅର୍ଜ୍ଜୁନଙ୍କୁ ଭେଟି
ଅମର ବିଳାସିନୀଏ ନୃତ୍ୟରସେ ଖଟି ।
କୁତୂହଳେ ରାତ୍ରଗୋଟି ହୋଇଲା ପାହାନ୍ତି
ବାର୍ତ୍ତା ପାଇଲେକ ଏରଡ଼ଙ୍ଗ ଚକ୍ରବର୍ତ୍ତୀ ।
ଧାର୍ମିକ ପଣ୍ଡିତ ଭାନୁମନ୍ତ ନରରାୟ
ଶୁଣିଲା ପର୍ବତେ ଛନ୍ତି ବୀର ଧନଞ୍ଜୟ ।
ଘେନିକରି ଶତଭାଇ ସେହି ମତ୍ତହସ୍ତୀ
ପାର୍ଥଙ୍କୁ ଦର୍ଶନ କଲା ରଜନୀ ପାହାନ୍ତି ।
ଦେଖିଣ ଦରହସିତ ସୁଭଦ୍ରାର ନାହା
ସମଦଣ୍ଡ ଘେନି ରାଜସୂୟକୁ ତୁ ଯାଆ ।
ସେ ବୋଲେ ଦେଖିଲି ନେତ୍ରେ ଦ୍ୱିତୀନାରାୟଣ
ଜୀବନ ସୁଫଳ ହେଲା ଲଭିଲି କାରଣ ।
ଶ୍ରବଣେ ଯାହା ଶୁଣିଲି ଦେଖିଲି ନୟନେ
ପ୍ରତ୍ୟକ୍ଷେ ଦିଶୁଛୁ ତୁହି ନାରାୟଣ ସମେ ।
ତହିଁ ଶତସସ୍ର ହୋଇ ଦଣ୍ଡ ପରଣାମି
ମୋର କଟକ ଭିତରେ ବିଜେକର ସ୍ୱାମୀ ।
ମୋ ରାଜ୍ୟରେ ନରନାରୀ ସମସ୍ତେ ଦେଖନ୍ତୁ
ଗତ ଜନ୍ମର ପାତକମାନ ଉପେଖନ୍ତୁ ।
ଶୁଣିଣ ଭାନୁମନ୍ତର ଏମନ୍ତ ବିନୟ
ତାର ରାଜ୍ୟେ ବିଜେକଲେ ବୀର ଧନଞ୍ଜୟ ।
ପୁରମାନଙ୍କେ ଉତ୍ସବ କଲା ରାଜଦେବ
ମଣୋହି ଯୋଗାଡ଼ କଲା ବହୁତ ସମ୍ଭର୍ବ ।
ପାଏଡ଼ା ପାଡିଣ ରାଜା କଲାକ ବିନତି
ତେଜେ ଦିଶୁଛନ୍ତି ପାର୍ଥ ଯେହ୍ନେ ଶଚୀପତି ।
ଗମନ କଲେକ ପାର୍ଥ କଟକ ଭିତରେ
ଦର୍ଶନ କରନ୍ତି ସର୍ବେ ବେନି ପାରୁଶରେ ।
କଟକ ବୁଲି ରାଜାଙ୍କୁ ବୋଲେ ଫାଲଗୁନି
ରାଜୁସି ଯାଗକୁ ଯା ସମଦଣ୍ଡ ଘେନି ।
ବାରୁଣାବନ୍ତରେ ହେବ ତୁମ୍ଭେ ଉପସ୍ଥିତ
ରାଜାମାନେ ସେହିଠାରେ ହେବେ ଏକତ୍ରିତ ।

ଏରଡ଼ଙ୍ଗ ନୃପତିକୁ ଚଳାଇ ଫାଲ୍‌ଗୁନି
ବଙ୍ଗଦେଶରେ ପ୍ରବେଶ ହେଲେ ସେହିକ୍ଷଣି ।
ସେ ବଙ୍ଗଦେଶ ରାଜାର ନାମ ଯେ ଚିତ୍ରାଙ୍ଗ
ଶତକ୍ଷୌଣୀ ବଳ ତାର ଅଟେ ମହାଭାଗ ।
ଆସ୍ଥାନ ତଳେ କହିଲେ ଯାଇ ଚାରଗଣ
ସ୍ୱାମୀ ଯୁଧିଷ୍ଠିର ଭାଇ ବୀର ଅରଜୁନ ।
ଉତ୍ତରଦିଗୁ ନିମନ୍ତି ନେବେ ରାଜଗଣ
ପ୍ରତିଜ୍ଞା ସାମର୍ଥ ସେ ତ ପାଣ୍ଡବ ଅର୍ଜୁନ ।
ରାଜୁସି ଯାଗ ବୋଲିଣ ହେବ ମହାସଭା
ସମଦଣ୍ଡ ଘେନି ଚାଲ ସେ ସଭାକୁ ଯିବା ।
ସ୍ୱାମୀ ଦୁଷ୍ଟ ହେଲେ ନାଶେ ସନ୍ତେ ପ୍ରତିପାଳି
ଗର୍ବ ଦର୍ପଗଞ୍ଜ ସେହି ଅଟେ ମହାବଳୀ ।
ଶୁଣିଣ ଆନନ୍ଦ ହେଲା ଚିତ୍ରାଙ୍ଗ ନୃପତି
ଆସ୍ଥାନ ତେଜିଣ ରାଜା ଅଇଲା ଝଟତି ।
ଦେଖା ଦରଶନୀ ସେହି ଶତେଭାର ଧନ
ଅର୍ଜୁନ ଛାମୁରେ ରାଜା କଲା ଦରଶନ ।
ଭକତି ଦେଖିଣ ଶାନ୍ତ ହେଲେ ଫାଲଗୁନି
ମାଳାଗୋଟି ନେଲେ ପାର୍ଥ ଶ୍ରୀହସ୍ତରେ ଘେନି
ରାଜୁସିଯାଗ କରିବେ ଧରମ ଯୁଧିଷ୍ଠି
ପଣ୍ଡୁ ମହାରାଜାଙ୍କର ଖଣ୍ଡିବେ ଅରିଷ୍ଟି ।
ଲକ୍ଷେକ ନୃପତି ତହିଁ ହୋଇବେକ ରୁଣ୍ଡ
ଯେବଣ ରାଜାର ଯେତେ ସୈନ୍ୟ ପାରିଦଣ୍ଡ ।
ଘେନି ସକଳେ ସେଠାରେ ହୋଇବେ ପ୍ରବେଶ
ତୋର ସୈନ୍ୟ ଘେନି ଏଥୁ ଯାଅ ନରଈଶ ।
ତୋର ଇଚ୍ଛାମତେ ଘେନି ଦେଖା ଦରଶନି
ଅବିଳମ୍ୱେ ଏ ସ୍ଥାନରୁ ଯାଅ ନରମଣି ।
ଅକ୍ଷତ ଗୁବାକ ତାକୁଁ ଦେଇଣ ଶ୍ରୀହସ୍ତେ
ବୋଇଲେ ଏକ୍ଷଣି ତୁହି ଯାଅ ଇନ୍ଦ୍ରପ୍ରସ୍ଥେ ।
ଆଜ୍ଞା ପ୍ରମାଣେ ଯେ ବଙ୍ଗଦେଶ ଅଧିକାରୀ
ଦଣ୍ଡଘେନି ବାହାରିଲା ମନ୍ତ୍ରୀକି ବିଚାରି ।
ପାଳନ କରତା ଅଟ ଆହେ ଜଗନ୍ନାଥ
ଶାରଳାଦାସେ ଦେଖାଅ ପ୍ରଭୁ ମୁକ୍ତିପଥ ।

## ମଙ୍ଗଳ ସେନ ରାଜା ସହିତ ଅର୍ଜୁନଙ୍କ ଯୁଦ୍ଧ

ଅଗସ୍ତିଙ୍କ ପାଦେ ନମି ମନୁ ଦଣ୍ଡଧର
ପୁନରପି ପୁଚ୍ଛାକଲେ କହ ମୁନିବର ।
ବଙ୍ଗଦେଶ ଜିଣି ପାର୍ଥ ତହୁଁ କାହିଁଗଲେ
ଏ କଥା ବିସ୍ତାରି ବେଗେ କହ ମୋର ତୁଲେ ।
ରାଜାର ବଚନ ଶୁଣି ବୋଇଲେ ଅଗସ୍ତି
ତୁହି ଯାହା ପୁଚ୍ଛା କଲୁ ଶୁଣ ମହାଯତି ।
ଚଳିଗଲେ ଫାଲଗୁନି ବଙ୍ଗଦେଶୁ ପୁଣି
ଅତିଶୀଘ୍ର ଯାଉଛନ୍ତି ବନଗିରି ଜିଣି ।
କର୍ଣ୍ଣାଟ ଦେଶକୁ ନେଲେ ଥାଟକୁ ଚଳାଇ
ମହାଆନନ୍ଦରେ ବୀରବାଦ୍ୟକୁ ବଜାଇ ।
ସିଦ୍ଧ ବୋଲିଣ ଅଛଇ ଏକ ପରବତ
ତହିଁ ଯାଇ ବିଜେ କଲେ ବୀରବର ପାର୍ଥ ।
ସୂପକାର ରାଇ ଆଜ୍ଞାଦେଲେ ଫାଲଗୁନି
ରାନ୍ଧଣା ଯୋଗାଡ଼ ତୁମ୍ଭେ କର ଏହିକ୍ଷଣି ।
ଲାଗିଲେ ସେ ସୂପକାରେ ରାନ୍ଧଣା ବିଧାନେ
ଭୁଞ୍ଜିଲେ ସଇନ୍ୟମାନେ ଅନ୍ନ ସୁବିଧାନେ ।
ଆପଣେ ମଣୋହି ସାରି ବୀର ଫାଲଗୁନି
ଗୋବିନ୍ଦ ଧ୍ୟାୟି ବାହାର ହେଲେକ ସଇନି ।
କର୍ଣ୍ଣାଟ ଦେଶରେ ଯହୁଁ ମିଳିଲେକ ଥାଟ
ମଙ୍ଗଳସେନ ନୃପତି ଜାତ ମହାରାଷ୍ଟ୍ର ।
ଦେଶାଉରେ ଜଣାଇଲେ ଶୁଣ ନରନାଥ
ପରରାଷ୍ଟ୍ର ଥାଟ ଆସି ହେଲା ଉପଗତ ।
ସହସ୍ରେକ ରଥ ତାର ଦୁଇସସ୍ର ହସ୍ତୀ
ପଞ୍ଚସସ୍ର ଅଶ୍ୱ ଦୁଇଲକ୍ଷଉଣି ପଦାତି ।
ଟମକ ନିଶାଣ ବିଜିଘୋଷ ଯେ ଦାଉଣ୍ଡି
ଘୋର ବାଦ୍ୟ ଶବଦରେ କମ୍ପେ ମହୀଖଣ୍ଡି ।
ପରରାଷ୍ଟ୍ରେ ପଶୁଅଛି ନାହିଁ ତାର ଡର
କେଉଁ ଦେଶ ନୃପତି ସେ ନ ଜାଣୁ ତା ଘର ।
କିବା ଅଙ୍ଗାରପନଗ କରିଲେ କି ବିଜେ
ଦେବବାଦ୍ୟ ଦୁନ୍ଦୁଭି ଯେ ଅନୁକ୍ଷଣେ ବାଜେ ।
ଚାରଙ୍କ ମୁଖରୁ ରାଜା ପାଇଣ ବାରତା
ଅଧରପୁଷ୍ଟ କରିଣ ହୋଇ କୋପଚେତା ।
ପ୍ରତିଜ୍ଞା କଲା ସେକ୍ଷଣି ନିଶେ ହସ୍ତ ଦେଇ
ପୃଥିବୀରେ ସମସରି ମୋତେ କେ ଅଛଇ ।
ଯଦ୍ୟପି ହୋଇବ ବ୍ରହ୍ମା ରୁଦ୍ର ଦଇବତ
ନିଶ୍ଚୟ ମୃତ୍ୟୁ ତାହାକୁ ହେବ ପରାପତ ।
ଏପରି ବହୁ ପ୍ରତିଜ୍ଞା କରି ନରମଣି
ବୋଲେ ସାଜ ଅଶ୍ୱ ଗଜ ଥାଟର ପଲାଣି ।
ସମଦଣ୍ଡ ଥାଟ ସାଜି ସେ ମଙ୍ଗଳସେନ
ଚାରିଶତ ଅଶ୍ୱ ରଥେ ଯୋଚିଲା ବହନ ।
ବହୁତ ସଇନ ତାର କେ ପାରିବ କଳି
ଆକାଶେ ବ୍ୟାପିଲା କ୍ଷତ୍ରୀଙ୍କର ପାଦଧୂଳି ।
ବହୁତ ବଳ ଚଞ୍ଚଳ କ୍ଷତ୍ରୀ ମହାବୀର
ମେଦିନୀ ନ ସହଇ ଯେ ତାଙ୍କ ପାଦଭାର ।

ପଚିଶ ମେବଚ୍ଛ ରଥ ପାଞ୍ଚକ୍ଷୌଣୀ ହସ୍ତୀ
ଅର୍ବୁଦେ ଅଶ୍ୱ ଏଗାର କ୍ଷଉଣୀ ପଦାତି ।
ସମରେ ସୈନ୍ୟମାନଙ୍କୁ ଚଳାଇଲେ ବଡ଼େ
ରାଜ୍ୟରୁ ବାହାର ହେଲା ରାଜା ତଡ଼ବଡ଼େ ।
ଏବେଳେ ରାଜ୍ୟେ ପ୍ରବେଶ କଲେ ସବ୍ୟସାଚୀ
ଉଡ଼ନ୍ତି ତୁରଙ୍ଗ ଯେହ୍ନେ ଶୂନ୍ୟେ ଉଡ଼େ ପକ୍ଷୀ ।
ଜୟ ବିଜୟ ପାର୍ଥର ବେନି ସେନାପତି
ଆଗୁଆଣି ଥାଟେ ଯାନ୍ତି ହୋଇଣ ନିଭ୍ରାନ୍ତି ।
ବଡ଼ ଦୁରାପଦ ସେହୁ ପ୍ରତିଜ୍ଞା ଅଭୂତ
କାହାକୁ ବଳରେ ସେ ନ କରନ୍ତି ଗଣିତ ।
ଯୁଦ୍ଧେ ପ୍ରବେଶ ହୋଇଲେ ଯହୁଁ ବେନିବଳ
ସମଥାଟ ପରଥାଟ ମିଶି କଲେ ଗୋଳ ।
ବଢ଼ିଲା ସମର ଯହୁଁ ପଦାତି ମଧରେ
ପିଟାପିଟି ହଣାହଣି ହେଲେ ପରସ୍ପରେ ।
ରଥ ଚଢ଼ି ବିଜେ ଯହୁଁ ସେ ମଙ୍ଗଳସେନ
ତାହାକୁ ଦେଖି କ୍ରୋଧରେ ବୀର ଅରଜୁନ ।
କରେ ଘେନିଣ ଗାଣ୍ଡୀବ ଚିନ୍ତେ ଦ୍ରୋଣଗୁରୁ
ସୈନ୍ୟ ଘୁଞ୍ଚିଲେ ଅର୍ଜ୍ଜୁନ ତୀକ୍ଷ୍ଣ ଅସ୍ତ୍ର ମାରୁ ।
ବିନ୍ଧନ୍ତେ ନାରାଚମାନ ପାର୍ଥ ମହାମତି
ଭୂମିରେ ତହୁଁ ପଡ଼ିଲେ ବହୁତ ପଦାତି ।
ପୁଣି ସହସ୍ର ନାରାଚ ସନ୍ଧି କଲେ ବୃଷ୍ଟି
ହସ୍ତୀଙ୍କର କୁମ୍ଭସ୍ଥଳେ ଶର ଗଲା ଫୁଟି ।
ଗର୍ଜ୍ଜନ ଦେଇ ଲୋଟନ୍ତେ ତହିଁ ହସ୍ତୀଗଣ
ରକତେ କର୍ଦ୍ଦମ ହେଲା ସେ ରଣପ୍ରାଙ୍ଗଣ ।
ପୁଣ ପୁଣ ଶରମାରେ ବୀର ଧନଞ୍ଜୟେ
ପଡ଼ିଲେକ ଶତ ଶତ ଅଶ୍ୱ ତାର ଘାଏ ।
ମହାରାଗରେ ନାରାଚ ବିନ୍ଧନ୍ତେ କିରୀଟି
ବାତାଘାତେ ଚୂତଫଳ ଯେହ୍ନେ ଭୂମି ଲୋଟି ।
ସେହିପରି ଶିରମାନ ପଡ଼ିଲେ ସେ ଯୁଦ୍ଧେ
ଭୂଚର ପ୍ରାୟେ ନାଚିଲେ ଶିର ନାହିଁ କନ୍ଧେ ।
ଲକ୍ଷେ ଯୋଦ୍ଧା ଘେନି ଉଠି ସେ ମଙ୍ଗଳସେନ
ଅନେକ ନାରାଚ କଲେ ପାର୍ଥକୁ ସନ୍ଧାନ ।
ଦେଖି ପାର୍ଥ ଧନୁ କରେ ଯୋଖି ତୀକ୍ଷ୍ଣ ଶର
ରାଜା ବିନ୍ଧିବା ଅସ୍ତ୍ରକୁ କଲେ ଛାରଖାର ।
ବରଷା ଋତୁରେ ଯେହ୍ନେ ମେଘ ବରଷନ୍ତି
ସେପରି ବାଣ ବିନ୍ଧଲେ ହୋଇ କୋପମୂର୍ତ୍ତି ।
କର୍ଣ୍ଣାଟ ରାଜାର ଥିଲେ ଯେତେ ସୈନ୍ୟବଳ
ରକତରେ ଜରଜର ହୋଇଲେ ସକଳ ।
ଲକ୍ଷେକ ରଥ ଆବର ବେନିଲକ୍ଷ ହସ୍ତୀ
ପାଞ୍ଚଲକ୍ଷ ଅଶ୍ୱ ବେନି କ୍ଷଉଣୀ ପଦାତି ।

ପଡ଼ିଲେ ତିନି ଯୋଜନ ଭୂମି ପରିଯନ୍ତେ
ଏହା ଦେଖିଣ ବିଷାଦ ହେଲା ମହୀପତେ ।
ମରିଲେ ସଇନି କେହି ନ ରହିଲେ ଜଣେ
ପାଏଡ଼ା ପଡ଼ିଲା ନବଯୋଜନ ପ୍ରମାଣେ ।
ଧାଇଁଲେ ପିଶାଚଗଣ ରକ୍ତମାଂସ ଖେଦି
ରକତେ କର୍ଦ୍ଦମ ହୋଇ ବହିଯାଏ ନଦୀ ।
ସମରେ ପାଇଲା ରାଜା ଯହୁଁ ଅପମାନ
ପଳାଏ ସମର କ୍ଷେତ୍ରୁ ସେ ମଙ୍ଗଳସେନ ।
ଅନ୍ତରୀକ୍ଷେ ପାର୍ଥ ରଥ ବାହିଲା ମାତଳି
ମଙ୍ଗଳସେନକୁ ପାର୍ଥ ଯାଇଣ ଉଗାଳି ।
କହ ହୋ ମଙ୍ଗଳସେନ ପଳାଉ କାହିଁକି
ଅନେକ ପ୍ରତିଜ୍ଞା କଲୁ ଆଜ କେହୁ ରଖି !
ପ୍ରିୟ ବଚନେ କହନ୍ତି ତାକୁ ଅରଜୁନ
ପ୍ରତିଜ୍ଞା ଦେଖାଇ ଏବେ ପଳାଉ ରାଜନ ।
ଜରା ବଧ କଲୁ ଆମ୍ଭେ ରାଜସୂୟ ଅର୍ଥେ
ଚାରଗଣ ବାରତା କି ନ କହିଲେ ତୋତେ ।
ପ୍ରକୃତ ବାରତା ଯହୁଁ ପାଇଲା ନୃପତି
ଶରୀରୁ ଭୟ ଛାଡ଼ିଣ ହୋଇଲା ନିଭ୍ରାନ୍ତି ।
ରଥରୁ ଡେଇଁ ମଙ୍ଗଳସେନ ନରପତି
ବୋଇଲା ମୋହର ଦୋଷ କ୍ଷମ ମହାମତି ।
ତୁ ଦେବ ଅଟୁ ଅଜୟୀ କ୍ଷତ୍ରୀ ଦର୍ପଗଞ୍ଜା
ରାଧାଚକ୍ର କାଟିଅଛୁ ଶିବ ଦର୍ପଭଞ୍ଜା ।
ସ୍ୱାମୀ ଏ ସ୍ୱର୍ଗ ମଧରେ ଯା ଚରଣ ବନ୍ଦି
ନ ଜାଣି ପାମର ତାରେ ହେଲେ ପ୍ରତିଦ୍ୱନ୍ଦୀ ।
ପାଞ୍ଚାଳୀର ସ୍ୱାମୀ ତୁହି ସୁଭଦ୍ରା ବଲ୍ଲଭ
ମୋର ଅପରାଧ କ୍ଷମ ବହି ଦୟାଭାବ ।
ଶରଣପଞ୍ଜର ତୁହି କୃଷ୍ଣ ପ୍ରାଣସଖା
ଦର୍ଶନେ ମୁକତି ହେଲି ମୋତେକର ରକ୍ଷା ।
ବହୁତ ସ୍ତୁତି କରିଣ ସେ ମଙ୍ଗଳରାୟେ
ଘଡ଼ିଏକ ବେଳଯାଏ ପ୍ରଣିପାତ ହୁଏ ।
ଶ୍ରୀ ହସ୍ତେ ଅକ୍ଷତ ଗୁଆ ଦେଇ ପାର୍ଥ କହି
ଅଜ୍ଞାନେ ଯା କଲୁ ତୋରେ ଆମ୍ଭ ଦୋଷନାହିଁ ।
ମୂର୍ଖ ହୋଇଣ ଯଦ୍ୟପି ହୁଏ ଦୋଷକାରୀ
ପଣ୍ଡିତେ ତାହାରି ଦୋଷ ମନରେ ନ ଧରି ।
ମୂର୍ଖ ଦୋଷ କଲେ ଜ୍ଞାନୀ କରନ୍ତି ଉପେକ୍ଷା
ଧର୍ମଶାସ୍ତ୍ରମାନଙ୍କରେ ଏହା ଅଛି ଲେଖା ।
ମୂର୍ଖଲୋକ ଯେବେ ପାପ କରିବେ ଅଜ୍ଞାନେ
ତାକୁ ଉଦ୍ଧାରିଣ ନେବ ଜ୍ଞାନୀଜନମାନେ ।
ହେ ରାଜନ ମନମଧେ ଭ୍ରାନ୍ତି ତୁ ନ କର
ବାରୁଣାବନ୍ତକୁ ସୈନ୍ୟ ଚଳାଅ ସତ୍ୱର ।

ଅର୍ଜୁନ ବାକ୍ୟେ ଛାଡ଼ିଲା ରାଜାମନୁ ଭ୍ରାନ୍ତି
ସମଦଣ୍ଡ ସାଜି ରାୟେ ଚଳିଲା ତଡ଼ତି ।
ସେ ରାଜ୍ୟରୁ ଚଳିଗଲେ ବୀର ଅରଜୁନ
କାଶୀରେ ପ୍ରବେଶ ତୁଳା ପୂର୍ଣ୍ଣିମାର ଦିନ ।
ଗୋପନ ଭୂମି ସେ ତୀର୍ଥ ଯେ ମଣିକର୍ଣ୍ଣିକା
ମହା ପୁଣ୍ୟତୀର୍ଥ ସେହୁ ପାପ ନାଶେ ଏକା ।
ତହିଁରେ ସ୍ନାନ ତର୍ପଣ କରି ବୀରପାର୍ଥ
ଗିରିଜା ପ୍ରାଣପତିଙ୍କି ଚିନ୍ତେ ହୃଦଗତ ।
ନମସ୍ତେ ଶ୍ରୀ ତ୍ରିଲୋଚନ ନମୋ ମହାଦେବ
ନମସ୍ତେ ହେ ବିରୂପାକ୍ଷ ନମେ ସଦାଶିବ ।
ନମସ୍ତେ ଦେବ ସୌରଭ ବିଭୂତି ସର୍ବାଙ୍ଗ
ନମସ୍ତେ ଦେବ ଗଉରୀ ବଲ୍ଲଭ ଶ୍ରୀଲିଙ୍ଗ ।
ନମସ୍ତେ ଶିବ ଅନଙ୍ଗ ନେତ୍ରାନଳେ ଧ୍ୱଂସ
ନମସ୍ତେ ଶଶାଙ୍କଧାରୀ ବିଭୋଳ ମହେଶ ।
ନମସ୍ତେ ଆଦି ଈଶାନ ଜଗତର ଗୁରୁ
ନମସ୍ତେ ତୁ ମହାଦେବ ପୃଥ୍ୱୀ ରକ୍ଷାକରୁ ।
ନମସ୍ତେ ତୁ ସଦାଶିବ ମହାଲିଙ୍ଗ ଗୋଟା
ନମସ୍ତେ ଶ୍ରୀ ମହେଶ୍ୱର ଗୌରୀ ଆଖିଫୁଟା ।
ଅର୍ଜ୍ଜୁନର ମୁଖୁ ଏହି ବଚନକୁ ଶୁଣି
ଲିଙ୍ଗ ବିଦାରି ବାହାର ହେଲେ ଶୂଳପାଣି ।
ଟହ ଟହ ହସିଣ ଯେ ଦେବ ବିଶ୍ୱନାଥ
ଗୌରୀ ଆଖିଫୁଟା ମୋତେ ବୋଇଲୁ କେମନ୍ତ ।
କରପତ୍ର ଯୋଡ଼ିକରି କହେ ଧନଞ୍ଜୟ
କୋପ ନ କଲେ କହି ମୁଁ ପାରେ ଦେବରାୟ ।
ମହେଶ ବୋଇଲେ ଯେବେ ହୋଇବ ସ୍ୱରୂପ
ପ୍ରକୃତ କଥାକୁ କିପାଁ କରିବା ହେ କୋପ ।
ପାର୍ଥ ବୋଇଲେ ପ୍ରଥମ ଅବତାରେ ଉମା
ଦକ୍ଷଯଜ୍ଞେ ସେ ଦହନ ହେଲେ ତୋର ବାମା ।
ସେହି ମାହେଶ୍ୱରୀ ପୁଣି ଦ୍ୱିତୀ ଅବତାରେ
ହୈମବତୀ ନାମେ ଜାତ ଶୈଳରାଜା ଘରେ ।
ଦୁହିତା ଦେଖି ଆନନ୍ଦ ହେଲେ ଶୈଳରାଜା
ଶ୍ରଦ୍ଧାରେ ତାଙ୍କର ନାମ ଦେଲେକ ଗିରିଜା ।
ବାଳକାଳେ ବାପଘରେ ଖେଳଇ କୁମାରୀ
ଆକାଶ ଗଙ୍ଗା କୂଳରେ ଧୂଳିଘର କରି ।
ଦିଗମ୍ବର ପୁରୁଷ ତୁ ଗଲୁ ତାହା ଦେଖି
ଉମାଙ୍କର ଶରୀରକୁ ଚିହ୍ନିଲା ତୋ ଆଖି ।
ଧୂଳି ଘର ଧୂଳି ଭାତ ତୁଣ କରି ଖେଳି
ଏମନ୍ତ ସମୟେ ତୁହି ତହିଁ ଯାଇ ମିଳି ।
ବାଳୁତ ରୂପ ହୋଇଲୁ ତାଙ୍କର ସମାନ
ଡ଼ମ୍ବରୁ ବାଦ୍ୟ ବାଇଲୁ ତହିଁ ଘନ ଘନ ।

ବିଭୂତି ଭୂଷଣ ଶିରେ ଅକଳିତ ଜଟା
ଶିରେ ଗଙ୍ଗା ଲଲାଟରେ ଅର୍ଦ୍ଧଚନ୍ଦ୍ର ଫୁଟା ।
ଶୁକ୍ଳଗର୍ଗଡ଼ ଗଳାରେ ସର୍ପ ହାଡ଼ମାଳ
ଯାମଳ ଲାଉଯନ୍ତ୍ର ତୋ କରରେ ତ୍ରିଶୂଳ ।
ଡିବି ଡିବି ଡମ୍ବରୁ ଯେ ବଜାଇଲୁ ଡାକି
ସେହି କୁମାରୀମାନେ ଯେ ହସିଲେ ତା ଦେଖି
ଦେଖିକରି ଉପହାସ କଲେ ସର୍ବବାଳୀ
ମିଛ ଖେଳ ଘରକୁ ଯେ ଯୋଗୀ ପୁଣି ମିଳି ।
ଭାଷନ୍ତି କୁମାରୀମାନେ କିସ ଆମ୍ଭେ ଦେବା
ଦେଖୁଛ ଧୂଳି ଖେଳୁଛୁ ଆଉ କି କହିବା ।
ଗଉରୀ ବୋଇଲେ ସଖି ନାସ୍ତି କିପାଁ କଲ
ବୁଝାଇ କହିବା ତାଙ୍କୁ ସର୍ବେ ଏବେ ଚାଲ ।
ଯାଇ ଗଉରୀ କହିଲେ ତାଙ୍କୁ କୁତୂହଳେ
ଦେଖ ଚାଉଳ ଅଛି କି ଆମ୍ଭର ଏ ଖେଳେ ।
ଭିକ୍ଷା ନ ପାଇଲେ ତୁମ୍ଭେ ହେବ ମହାରାଗୀ
ଡ଼ମ୍ବରୁକୁ ବଜାଉଛ କିପାଁ ଆହେ ଯୋଗୀ ।
ଅପୂର୍ବ ମଣି ତୋ ପାଶେ ଗୌରୀ ଗଲେ ଦେଖି
ଡମ୍ବରୁ ଗଣ୍ଠି ବାଜିଲା ଦେବୀଙ୍କର ଆଖି ।
ସେହି ଗଣ୍ଠି ବାଜନ୍ତେଣ ନେତ୍ରରେ ତାଙ୍କରି
ତେଣୁ ବାମଚକ୍ଷୁ ଟେରୀ ହୋଇଲେ ଗଉରୀ ।
ସ୍ୱାମୀ ତୁହି ନ ଜାଣୁ କି ଏ କଥା ଯୁକତେ
ଲୋକନାଥ ପୁରୁଷ ତୁ ପାଶୋରିଲୁ ଏତେ ।
ଅର୍ଜ୍ଜୁନ ମୁଖରୁ ଏହି ବଚନକୁ ଶୁଣି
ପାର୍ବତୀ ମୁଖ ଚାହିଁଲେ ଦେବ ଶୂଳପାଣି ।
ଯାହା ସେ ପ୍ରସ୍ତାବେ ବୋଲିଗଲା ଅରଜୁନ
ସତ ଅଟେ କି ଗଉରୀ ପାର୍ଥର ବଚନ ।
ପାର୍ବତୀ ବୋଇଲେ ପାର୍ଥ ଅଟେ ଶ୍ରୁତିଧର
ହରିପରି ବହୁ କଥା ଅଛି ତା ମନର ।
ଯଥାର୍ଥ ଅଟଇ ସ୍ୱାମୀ ଅର୍ଜ୍ଜୁନର କଥା
ଏହାକୁ ମିଥ୍ୟା ନ ମଣ କଇଳାସ କର୍ତ୍ତା ।
ଗିରିଜା ମୁଖରୁ ହର ଏସନକ ଶୁଣି
ସଦୟ ସାନନ୍ଦ ହେଲେ ଦେବ ଶୂଳପାଣି ।
ବୋଇଲେ ଧନ୍ୟ ପାଣ୍ଡବ ତୋ ଜୀବନ ଧନୀ
ତୋ କନ୍ଧରୁ ନ ଛାଡ଼ନ୍ତୁ ଦେବୀ କମଳିନୀ ।
ସଦାଶିବ ପଦ୍ମପାଦେ ଅର୍ଜ୍ଜୁନ ବିନୟେ
ବୋଇଲେ ହେ ଭୂତନାଥ ଦେବାକ ଅଭୟେ ।
ଶରଣ ରକ୍ଷଣ ନାଥ ଗଉରୀବଲ୍ଲଭ
ଶ୍ରୀହରିର ପ୍ରିୟବନ୍ଧୁ ଜୟ ସଦାଶିବ ।
ଯୋଗବଳେ ଧାରଣା ତୁ ପର ଦୁଃଖେ ଦୁଃଖୀ
ଯେ ତୋତେ ସେବା କରଇ ବହୁ ଭୋଗେ ସୁଖୀ ।

ସେବକ ଲୋକେ ଈଶ୍ୱର ପଦ ଅଛୁ ଦେଇ
ଆପଣେ ଯେ ବୁଲୁଅଛୁ ଦିଗମ୍ବର ହୋଇ ।
ଦଣ୍ଡଛତ୍ର ସିଂହାସନ ଦେଇ ସେବକକୁ
ବାହନ କରିଲ ପ୍ରଭୁ ବୃଦ୍ଧ ବଳଦକୁ ।
ସେବକକୁ ଦେଇ ଅଷ୍ଟରତ୍ନ ଚଉସାରେ
ହାଡ଼ମାଳ ଲମ୍ବାଇଲ ଆପଣା ହୃଦରେ ।
ଦେବତାଙ୍କ ମଧ୍ୟେ ତୁହି ଯେ ପରମ ସାଧୁ
ପରଦୁଃଖରେ କାତର ତୁ ପରମ ବନ୍ଧୁ ।
ବାରାଣସୀ ପୁର ବିଶ୍ୱନାଥ ମହାଦେବା
ତୁମ୍ଭ ଶ୍ରୀଚରଣ ଯୁଗେ ରହୁ ମୋର ସେବା ।
ସ୍ୱାମୀ ବ୍ରହ୍ମହତ୍ୟା ଦୋଷ ମୁକ୍ତ ଯେଉଁ ତୀର୍ଥେ
ହେ ନାଥ ତୁମ୍ଭ ଚରଣେ ରହୁ ଅନୁବ୍ରତେ ।
ହେ ନାଥ ତୁମ୍ଭ ଚରଣେ ସଦା ରହୁ ମନ
ଶୂଦ୍ର ଶାରଳା ଦାସର ଏହା କର ପୂର୍ଣ୍ଣ ।



## ଅର୍ଜ୍ଜୁନର କ୍ଷେତ୍ରପାଳ ନୃପତିକି ନିମନ୍ତ୍ରଣ ଓ ମାହେଶ୍ୱର ରାଜା ସହିତ ଯୁଦ୍ଧ

ଏଥୁଅନ୍ତେ ମନୁରାଜା ବେନିକର ଯୋଡ଼ି
କୁମ୍ଭଋଷି କୁମରଙ୍କ ଚରଣରେ ପଡ଼ି ।
ପଚାରିଲେ କହ ମୁନି ଶିବ କି କହିଲେ
ସେହିଠାରୁ ପାର୍ଥ ପୁଣି କେଉଁ ରାଜ୍ୟେ ଗଲେ ।
ଅଗସ୍ତି କହିଲେ ରାଜା କରହେ ଶ୍ରବଣ
ଏହା ଉତ୍ତାରୁ ହୋଇଲା ଯେ ଘଟଣାମାନ ।
ଅରଜୁନ ଜଣାଇଲେ ତୁଷ୍ଟ ମୃତ୍ୟୁଞ୍ଜୟ
ଅତିଭୋଳେ ପାର୍ଥକୁ ଯେ ଦେଲେକ ଅଭୟ ।
ଆବର ଯେ ନାନା ବିଦ୍ୟାମନ୍ତ୍ର ତାକୁ ଦେଲେ
ଅର୍ଜ୍ଜୁନ ସେ ସବୁ ପାଇ ସାନନ୍ଦେ ଘୋଷିଲେ ।
ସକଳ କାର୍ଯ୍ୟ ସୁବିଧା ହେବ ତୋର ବାବୁ
ଶିବଗଣ ଘେନି ଆମ୍ଭେ ରାଜସୂୟେ ଯିବୁ ।
ବାରାଣସିପୁରେ କ୍ଷେତ୍ରପାଳ ନରପତି
ବହୁ ସମ୍ଭର୍ବେ ଅଇଲା ସେହୁ ଲିଙ୍ଗ କତି ।
ଅକ୍ଷତ ଯୋଗାଡ଼ି ଦେଲେ ଧନଞ୍ଜୟ ତାକୁ
ସମଦଣ୍ଡ ଘେନି ଚଳ ରାଜସୁ ଯାଗକୁ ।
ବାରୁଣାବନ୍ତେ ଉତ୍ତର ଦ୍ୱାରେ ସେ ପ୍ରଶସ୍ତ
ମୋର ଯିବାଯାଏ ରୁଣ୍ଡ ହୋଇବ ସମସ୍ତ ।
ଆହେ କ୍ଷେତ୍ରପାଳ ତୋର ଯେତେକ ସଇନି
ଏହିକ୍ଷଣି ଚଳ ଦେଖା ଦରଶନୀ ଘେନି ।
ପାର୍ଥଙ୍କ ବଚନେ କ୍ଷେତ୍ରପାଳ ଅଧିପତି
ସମଦଣ୍ଡ ଘେନି ରାଜ୍ୟୁ ବାହାର ତଡ଼ତି ।

କାଶୀପୁର ପ୍ରଦକ୍ଷିଣ କରି ଅରଜୁନ
ଯମୁନାପୁରେ ପ୍ରବେଶ ହୋଇଲେ ବହନ ।
ସେ ଯମୁନାରେ ମାହେଶ୍ୱର ନରପତି
ସେ ରାଜ୍ୟେ ବିଜେ ବିଚିତ୍ରବୀର୍ଯ୍ୟଙ୍କର ନାତି ।
ଆଲମ୍ବ ଉଦଣ୍ଡ ପାଟଛତ୍ର ପାଞ୍ଚଲକ୍ଷ
ହୀରାର ସ୍ୱର୍ଣ୍ଣ ମୁକୁଟ କେକୀପୁଚ୍ଛ ପକ୍ଷ ।
ଅଷ୍ଟ ରତନରେ ରାଜା ରଥ ଅଛି ମଣ୍ଡି
ବଜାନ୍ତି ଯେ ବିଜିଘୋଷ ଦୁନ୍ଦୁଭି ଦାଉଣ୍ଡି ।
ଏହିପରି ରାଜା ଚାରେ ସର୍ବଦା ଭ୍ରମନ୍ତି
ଶତ୍ରୁ ଆଗମ ବାରତା ରାଜାଙ୍କୁ ଦିଅନ୍ତି ।
ପାର୍ଥ ପଶନ୍ତେ ରାଜ୍ୟରେ ଆସି କଟୁଆଳି
ଉଗାଳି ଚାରିଶ ଯୋଦ୍ଧା ଏକୁଁ ଏକ ବଳୀ ।
ବୋଲେ ନ ଜାଣୁ ଯମୁନା ନଗ୍ର ଏହି ବୋଲି
ନ ପଚାରି ସୈନ୍ୟସହ କିପାଁ ପଶୁ ପେଲି ।
ରେରେକାର ଶବ୍ଦକରି ପଡ଼ିଲେ କୁରୁଳି
ଧାଇଁଲେ ସର୍ବେ ଅନେକ କଟୁବାକ୍ୟ ବୋଲି ।
ଜୟ ବିଜୟ ଏ ଦୁଇ ପାର୍ଥ ସେନାପତି
କୃତାନ୍ତ ରୂପ ପରାୟ ଦିଶେ ତାଙ୍କ ମୂର୍ତ୍ତି ।
ହସ୍ତେ ବେନି ବେନି ଗଦା ଅଛନ୍ତି ସେ ଘେନି
ପୃଥ୍ୱୀ କମ୍ପି ଉଠେ ଶୁଣି ତାଙ୍କ ମୁଖଧ୍ୱନି ।
ଗଦା ବୁଲାଇ ରଥରୁ ପଡ଼ିଲେ ସେ ଡେଇଁ
ପିଟିଲେକ କୋପାନଳେ ଗଦାକୁ ବୁଲାଇ ।
ବିଶେଷରେ ଅନ୍ଧକାର ରଜନୀ ପାଆନ୍ତି
ଗୋଡ଼ାଇ ସେ ଦୁଇବୀର ମାଇଲେ ବିକୋଡି ।
ପଳାଇ ବୋଇଲେ ଜୟଦାସ ମନ୍ତ୍ରୀ ଦ୍ୱାରେ
ଆସି ଅଭୂତେ ଯୋଦ୍ଧାଏ ପଶିଲେ ରାଜ୍ୟରେ ।
ନଗ୍ରରେ ପଶନ୍ତେ ଆମ୍ଭେ ଉଗାଳିଲୁ ପଥ
ଅଣ ଉପ୍ରୋଧେ ମାରନ୍ତି କରି ଗଦାଘାତ ।
ରାଜା ମନ୍ତ୍ରୀ ମହାଗୋଳ ଶୁଣିଣ ଶବଦ
ଧାଡିକାରେ ବାହାରିଲା ହୋଇ ମହାକ୍ରୁଦ୍ଧ ।
ସୈନ୍ୟ ସାମନ୍ତ ଆବର ପାତ୍ରାଦି ଅମାତ୍ୟେ
ଅସମ୍ଭାଳେ ଧାଇଁଲେ ସେ ବାହନ ସହିତେ ।
କରେ କରବାଳ ଆଉ କୁନ୍ତ ଖଡ୍‌ଗ ଯାଠି
ମାର ମାର ବୋଲି କହି ଧାମନ୍ତି ଲେଉଟି ।
ବେଗରେ ଅଶ୍ୱ ସାଜନ୍ତି ଧାଇଁ ବାରୁଆଳେ
କାଦମ୍ବରୀ ପାନେ କେଶ ବାସ ଅସମ୍ଭାଳେ ।
ଅମାତ୍ୟମାନେ ସଜାନ୍ତି ଯାଇ ମତ୍ତହସ୍ତୀ
କରେ ଅଙ୍କୁଶ ଘେନିଣ ଗଜ ଉଭାରନ୍ତି ।
କଟକେ ପଶନ୍ତେ ସର୍ବେ ଆସି ଉଗାଳିଲେ
ସୈନ୍ୟମାନଙ୍କୁ ରୁହାଇ ଅର୍ଜ୍ଜୁନ ବୋଇଲେ ।

ଆହେ ସମସ୍ତେ ଏଠାରେ ରହ ଲୋଚି ହୋଇ
ରଜନୀ ପାହିବା ଯାଏ ଥାଅ ଦୁଃଖ ସହି ।
ରାତ୍ରକାଳେ ସୈନ୍ୟ ମଧ୍ୟେ ହେବ ମହାଗୋଳ
ସ୍ଥିର ଭାବେ ରହି ତୁମ୍ଭେ ଜୋପନ୍ତୁ ସମ୍ଭାଳ ।
ଆମ୍ଭେ ଦିଗ ବିଜେ କଲୁ ରାଜସୂୟ ଅର୍ଥେ
ପିତା ବ୍ରହ୍ମହତ୍ୟା ଦୋଷ ଖଣ୍ଡିବା ନିମନ୍ତେ ।
ଧର୍ମ ଅର୍ଜିବାକୁ ଆସି କରିବା କି ପାପ
ହତ୍ୟା ବିବାଦ ହୋଇଲେ ନ ରହଇ ପାପ ।
ଧର୍ମ ବିଚାର ରୁହାଇ ଆପଣାର ଥାଟ
ମାହେଶ୍ୱର ରାଜାସୈନ୍ୟ ହେଲେ ଯାଇ ଭେଟ ।
ବହୁ ପ୍ରତିଜ୍ଞା କରନ୍ତି ବୀରମାନେ ଡାକି
ବିନ୍ଧିଲେ ନାରାଚ ସର୍ବେ ପରଥାଟ ଦେଖି ।
କାହିଁରେ ତୁରେ ପଶିଲୁ ଆସି ଅନିମିଷେ
ଯା ଭୟେ ଡ଼ରନ୍ତି ହିମାଳୟ ପର୍ଯ୍ୟନ୍ତେ ।
ଶୁଣି ନାହୁଁ କି ଯମୁନା ନଗ୍ର ଅଧିକାରୀ
ଚତୁର୍ଦ୍ଦଶ ରାଜାମାନେ ଯା କୋପକୁ ଡରି ।
ଶିବ ଦେଇଛନ୍ତି ତାକୁ ମାହେଶ୍ୱର ନାମ
କିଞ୍ଚିତ ମାତ୍ରେ ସାଧିଲା ଯେହୁ ଚାରିଧର୍ମ ।
ଚାଳିଶସସ୍ର ରାଜାଙ୍କ ଯେ ମଉଡ଼ମଣି
ଉତ୍ତର ଦିଗେ କମ୍ପନ୍ତି ଯା ପ୍ରତିଜ୍ଞା ଶୁଣି ।
କେଡ଼େ ଦମ୍ଭରେ ପଶିଲ ପଥ ତୁମ୍ଭେ ହୁଡ଼ି
ଜୀବନକୁ ଆଶା ଥିଲେ ଯାଅ ଯା ବାହୁଡ଼ି ।
ଆପଣା ପ୍ରତିଜ୍ଞାମାନ କରନ୍ତି ସେ ବୀରେ
ବାହୁଲ୍ୟ ଭୟେ କହିଲୁ ସଂକ୍ଷେପି ଏଠାରେ ।
ଅନେକ ପହିଜ ସେହୁ କରନ୍ତି ମତ୍ତରେ
ଏଣେ ସହି ନ ପାରିଣ ଗର୍ଜୁଛନ୍ତି ବୀରେ ।
ଅର୍ଜୁନ ବୋଇଲେ ରହିଥାଅ ହେ ସଭିଏଁ
ରଜନୀ ପାହିଣ ହେଉ ଅରୁଣ ଉଦୟେ ।
ବୁଝିବ ପ୍ରତିଜ୍ଞା ଆଜ ରଜନୀ ପାହିଲେ
ଫଳଶ୍ରୁତି ହୁଅଇ କି କଥା ବଖାଣିଲେ ।
ଘୋର ଅନ୍ଧକାର ପୁଣି ଅନେକ ତୁଷାର
ଭାନୁ ଉଦେ ହେଲେ ଯାହା ହୋଇବ ବିଚାର ।
ବହୁସର୍ପ ଗର୍ଜୁଥାନ୍ତି ଯେହ୍ନେ ଫେଣ୍ଟୁ ଧରି
ଖଗେଶ୍ୱର ଦରଶନେ ପଳାନ୍ତି ଯେପରି ।
ସେହିପରି ରାଜଥାଟ ପାର୍ଥକୁ ବେଢ଼ିଲେ
ନାନା ଅସ୍ତ୍ରମାନ ଘେନି ତାହାକୁ ବିନ୍ଧିଲେ ।
ଅର୍ଜୁନ ସଇନି ଗଲା ଉହାଡ଼ରେ ରହି
ବଞ୍ଚାନ୍ତି ନାରାଚମାନ ବସି ତୁନି ହୋଇ ।
ବିନ୍ଧନ୍ତି ସଇନିମାନେ ଶର ଅପ୍ରମେୟ
ରାଗେ ରହି ନ ପାରିଲେ ସେ ଜୟ ବିଜୟ ।
ରାତ୍ର ବେନିଘଡ଼ି ଥାଉଁ ଡାକିଲେ ସଇନି
ଶର ଆଘାତେ ନିରେଖ ହେଲୁ ଫାଲଗୁନି ।
ବିକଳେ ସଇନି ଯହୁଁ ଡ଼ାକିଲେ ଏପରି
ଜୟ ବିଜୟ ଏ କଷ୍ଟ ଦେଖିଣ ନ ପାରି ।
ଅର୍ଜୁନ ବଚନକୁ ସେ କରିଣ ଅବଜ୍ଞା
ଗର୍ଜି ଉଠିଲେ କରିଣ ଦୁଃସହ ପ୍ରତିଜ୍ଞା ।
ଗଦା ବୁଲାଇଣ ସେହୁ କୋପେ ନେଇ ପିଟି
ଭାଜି ଗଜ କୁମ୍ଭସ୍ଥଳ ଭୂମିପରେ ଲୋଟି ।
ଧରିଣ ବୁଲନ୍ତି ହସ୍ତୀଙ୍କର ଥୋରହସ୍ତ
ଆକର୍ଷିଣ କଚାଡ଼ନ୍ତି ଜାଣି ବଜ୍ରାଘାତ ।
ଚାଉତେ ଚୂର୍ଣ୍ଣ ହୁଅନ୍ତି ପଡ଼ି ବଜ୍ରସେହ୍ନା
ରଥ ମହାରଥ ପଡ଼ି ହେଉଛନ୍ତି ଚୂନା ।
ମହା ତେଜୋବନ୍ତ ଉଠନ୍ତେଣ ଗଜଗାଜି
ମାହେଶ୍ୱର ସେନା ତହୁଁ ପଳାଇଲେ ଭାଜି ।
ସଂଗ୍ରାମରେ ବିମୁଖ ଯେ ହୋଇଲେ ସଇନି
ବାହାନାଦେ ଦୁଇବୀରେ କରେ ଧନୁ ଘେନି ।
ବିନ୍ଧନ୍ତେ ନାରାଚ ଝଲକନ୍ତି ତୀକ୍ଷ୍ଣ ମୁନା
ରାଉତଙ୍କ ହୃଦେ ପଡ଼ି କାଟି ବଜ୍ରସେହ୍ନା ।
ହୃଦ ମଧ୍ୟରେ ପଶିଣ ପିଠିକି ନିକିଳି
ରୁଧିରେ କର୍ଦ୍ଦମ ହୋଇ ପଡ଼ୁଛନ୍ତି ଢ଼ଳି ।
ଅସିପତ୍ର ପ୍ରହାର ସେ କରନ୍ତି ତା ପରେ
ପଡ଼ନ୍ତି ଦ୍ୱିଖଣ୍ଡ ହୋଇ ଗଡ଼ନ୍ତି ରୁଧିରେ ।
ଏକବାର ପ୍ରହାରନ୍ତେ ଦଶବିଂଶ କରି
ମଉଭୋଳେ ନ ଘୁଞ୍ଚନ୍ତି ନ ଯାନ୍ତି ସେ ମରି ।
ନାଚନ୍ତି ସେ ରଣରଙ୍ଗେ କରି ସିଂହନାଦ
ମର୍ଦ୍ଦଳେ ବଜାନ୍ତି କଡ଼ା ଘୁମୁରା ଯେ ବାଦ୍ୟ ।
ପାର୍ଥକୁ ସୈନ୍ୟ କରନ୍ତି ବହୁ ଶସ୍ତ୍ରାଘାତ
ରହିଲେ ସଇନି ଘେନି ଯୋଜନ ପର୍ଯ୍ୟନ୍ତ ।
ରକତରେ କରଦମ ହେଲା ମହୀଆଳୀ
ପଳାଇଲେ ସଇନିଏ ଦେଇଣ ବୋବାଳି ।
ଦନ୍ତରେ ତିରଣ କେହୁ ମୁଖରେ ଅଙ୍ଗୁଷ୍ଠି
ରଥ ଗଜ ତେଜି କେହୁ ଚରଣରେ ଲୋଟି ।
ଭଗ୍ନବଳ ଦେଖି ଡାକଦେଲେ ଫାଲଗୁନି
ରହରେ ଆମ୍ଭର ବଳ ନ ମୀ ସଇନି ।
ନିସତ ଥାଟକୁ କେବେ ମାରି ନ ଯୋଗାଇ
କ୍ଷତ୍ରୀଧର୍ମ ନୁହେଁ କଲେ ଧର୍ମନାଶ ଯାଇ ।
ରହିଲେ ସଇନି ଶୁଣି ପାର୍ଥର ଭାରତୀ
ଯମୁନା ପୁରକୁ ଥାଟ ଗଲେ ପାଇ ଶାନ୍ତି ।
ମନ୍ଦାରପୁଷ୍ପ ପରାୟେ ବିକଶଇ ଅଙ୍ଗ
ଅବଧାରି ହୋଇଲେ ଯେ ମାହେଶ୍ୱର ଆଗ ।

ସ୍ୱାମୀ ରଣଭଙ୍ଗ ହୋଇ ପାଇଲୁ ଯେ ଶାସ୍ତି
ଅମରପୁର ତେଜିକି ବିଜେ ସୁରପତି ।
ମାନବ ହୋଇ କେ ତାକୁ ଜୟ କରିବାକୁ
ମହୀସ୍ଥଳେ ଏପରି କେ ନ ଦେଖୁ କାହାକୁ ।
ସ୍ୱାମୀ ତା ବହୁ ପ୍ରତିଜ୍ଞା ମହାକ୍ଷତ୍ରୀ ବଳା
ରାଜ୍ୟ ଛାଡ଼ିଣ ହେ ଦେବ ବହନରେ ପଳା ।
ରାଜ୍ୟ ରକ୍ଷିବାକୁ ହେବ ଯେହ୍ନେ କରୁ ବୁଦ୍ଧି
ଶରଣ ପଶିଲେ ଦେବ ସର୍ବ କାର୍ଯ୍ୟସିଦ୍ଧି ।
ଶୁଭବନ୍ତ ସୁନ୍ଦର ସେ ଦୟାବନ୍ତ ରଥୀ
ଶରଣ ବୋଇଲେ ସେହି ରଣ ନ କରନ୍ତି ।
ସୁରେଶ୍ୱର ନାମେ ଥିଲେ ପାର୍ଥ ପୁରୋହିତ
ଧୌମ୍ୟ ପୁରୋହିତଙ୍କର ସେହି ନିଜ ସୁତ ।
ସେ ପ୍ରୋହିତ ରହିଥିଲେ ଅର୍ଜୁନଙ୍କ ତୁଲେ
ଛାମୁରେ ଉଭା ହୋଇଣ ଏପରି କହିଲେ ।
ଆହେ ପାର୍ଥ ଯିବି ମୁଁ କି ରାଜାର ତହିଁକି
ସମାଧାନ କରି ତାକୁ ଆଣିବି ଏଥିକି ।
ଅର୍ଜୁନ ତୁନି ହୋଇଲେ କାର୍ଯ୍ୟର ନିମନ୍ତେ
ଯମୁନା ନଗ୍ରେ ପଶିଲେ ବେଗେ ପୁରୋହିତେ ।
ଦିବ୍ୟ ସୁଖାସନେ ଚଢ଼ି ପାଟଛତ୍ର ଘେନି
ଛାମୁରେ ଯେ ହେଉଅଛି ଶତେ ଶଙ୍ଖଧ୍ୱନି ।
ଦଣ୍ଡଘେନି ଆସୁଅଛି ଥାଟର ପଲାଣି
ପ୍ରୋହିତ ବୋଲେ ଅଜ୍ଞାନ ହେଲୁ ନରମଣି ।
ମୁନେହି ବାରତା କି ନ କହିଲା ତୁମ୍ଭଙ୍କୁ
ଅକାରଣେ ଦ୍ୱନ୍ଦ କରୁ ତୁହି ମରିବାକୁ ।
ନ ଜାଣୁ କି ପଞ୍ଚାଳେ ସେ ରାଧାଚକ୍ର ବିନ୍ଧି
ଲକ୍ଷେ ରାଜାଙ୍କର ମାନ ଥିଲେ ଯେ ମରଦି ।
ହସ୍ତିନାର ଠାକୁର ଯେ ଅଟନ୍ତି ଯୁଧିଷ୍ଠି
ଭୀମଙ୍କ ସାନୁଜ ଏହି ପାଣ୍ଡବ କିରୀଟି ।
ନ ଜାଣୁ କି ଦହିଥିଲେ ଯେ ଖାଣ୍ଡବ ବନ
ବହୁ ସମରେ ହାରିଲେ ଯାକୁ ମଘବାନ ।
ଜାଣୁ ତ ଅଗ୍ନିକୁ ଦେଲେ ଯେହୁ ମହୌଷଧି
ତାହାଙ୍କର ପାରଗଲା ଲୁଦୁବୁଦୁ ବ୍ୟାଧି ।
ସେ ପାଣ୍ଡବ ଜାଣ ଏହି ବୀର ଫାଲଗୁନି
ଏକଶରେ ଜିଣିପାରେ ସ୍ୱର୍ଗ ମର୍ତ୍ତ୍ୟ ତିନି ।
ନ ଜାଣୁ କି ଦ୍ୱାରକାରେ ସୁଭଦ୍ରା ହରିଲେ
ବହୁ ସମରେ ଯାହାକୁ ରାମ ହାରିଗଲେ ।
ନ ଜାଣୁ ଉତ୍ତରଦିଗେ ବସିଛନ୍ତି ସାଧି
ଅଜ୍ଞାନପଣରେ କିପାଁ ତାର ତୁମ୍ଭେ ବାଦୀ ।
ନ ଜାଣୁ କି ଏହି ସେହି ପାର୍ଥ ଧନୁର୍ଦ୍ଧର
ପର ଦୁଃଖେ ଦୁଃଖୀ ଆଉ ଶରଣ ସୋଦର ।

ଆହୋ ରାଜା ତୋ କୁଟୁମ୍ବ ଆଣ ଚାଲ ଯିବା
ରାଜ୍ୟ ରକ୍ଷା ହେବ ତୋତେ ଦେଖା କରାଇବା
ଦୁର୍ଭାର ବଳୀଙ୍କ ସେହୁ ଅଟେ ଦର୍ପଭଞ୍ଜା
ଦୁଃଖୀଜନ ରକ୍ଷଣ ସେ କଉଣପ ଗଞ୍ଜା ।
ପୁରୋହିତଙ୍କ ମୁଖରୁ ଏହି ବାକ୍ୟ ଶୁଣି
ହସ୍ତୀରୁ ପଡ଼ିଲା ରାଜା ବଜ୍ରାଘାତ ଜାଣି ।
ଉଠି ବୋଇଲା ଆଦ୍ୟରୁ ନ ଜାଣିଲି ଏହା
ଅବିବେକପଣେ ମୁହିଁ ହୋଇଲି ଦୋରେହା ।
ଅକାରଣେ ନାଶ କଲି ଅନେକ ସଇନି
ନ ପୁଣ ନାଶ କରନ୍ତି ମୋତେ ଫାଲଗୁନି ।
ପ୍ରୋହିତ ବୋଇଲେ ରାଜା ନୁହଁ ଅସାକ୍ଷମ
ତୋତେ ଦୟା କରିବେ ସେ ପୁରୁଷ ଉତ୍ତମ ।
ଏହା କହି ପୁରୋହିତ ଧରି ରାଜା ହାତ
ବୋଲେ ମୋର ସଙ୍ଗେ ଆସ କୁଟୁମ୍ବ ସହିତ ।
ଦ୍ୱିତୀ ନାରାୟଣଙ୍କର ଦେଖି ରୂପ ରେଖ
ଯାଉ ହୋ ରାଜା ତୋହର ଦୁର୍ଭାର ପାତକ ।
ସଙ୍ଗରେ ଘେନିଣ ଆସ ପୁତ୍ର ଯେ ଭାରିଯା
ପାଦ ଗତିରେ ଗମନ କର ଆହେ ରାଜା ।
ଗଜ ବାଜୀ ରଥ ଆଦି ଦେଖ ଏ ସକଳ
ସଙ୍ଗରେ ନ ନେଇ ତାର ନିଜ ସୈନ୍ୟବଳ ।
ଦରଶନୀ ଘେନିଗଲା ଲକ୍ଷେ ଭାର ମୁକ୍ତା
ଚଉସରା ଜରୀ ଅମ୍ବରନ୍ତେ ଅଗଣିତା ।
ସଙ୍ଗେ ଅଷ୍ଟୋତ୍ତର ଚାରିଶତ ଯେ ଭାରିଯା
ଶତେକ କୁମାରୀ ତିନିଶତ ଯେ ଆତ୍ମଜା ।
ସମସ୍ତେ ଯେ ଧରିଛନ୍ତି ଆଲଟ ଚାମର
ଡାକନ୍ତି ଭୋ ଦେବ ଦେବ ପ୍ରତିକାର କର ।
ପାର୍ଥଙ୍କ ଆସନ ଦୃଶ୍ୟହେଲା ଯେତେ ଦୂରୁ
ଦେହୁଁ ଝାଳ ବହେ ରାଜା ନିଉଛାଳି କରୁଁ ।
ପାଶେ ଆସି ରାଜା ଶତସହସ୍ର ପ୍ରଣମି
ବୋଲେ ଭକ୍ତବତ୍ସଳ ମୋ ପ୍ରାଣରଖ ସ୍ୱାମୀ ।
ଏହା କହି ପୁଣ ପୁଣ ପ୍ରଣାମ କରଇ
କାର୍ପଣ୍ୟ ହୋଇଣ ରାଜା ଭୂମିରେ ଲୋଟଇ ।
ଛାମୁରେ ଯାଇଣ ବାର୍ତ୍ତା ଦେଲେ ପୁରୋହିତ
ଅବିବେକ ଦୋଷ ବଳା ନ ପାଇ ଉକତ ।
ଆପଣଙ୍କ ଆଜ୍ଞାହେଲେ ଉଠିବ ସେ ରାୟ
ଶୁଣିଣ ଦରହସିତ ହେଲେ ଧନଞ୍ଜୟ ।
ପ୍ରୋହିତେ ବୋଇଲେ ଉଠ ଯମୁନାଧିକାରୀ
ଦୟା ଅନୁଗ୍ରହ ତୋତେ ହେଲା ତାହାଙ୍କରି ।
ଉଠି ପୁଣ ପୁଣ ରାଜା କରେ ପ୍ରଣିପାତ
ପୁତ୍ର ଦୁହିତା ଭାରିଯା କୁଟୁମ୍ବ ସହିତ ।

ଅର୍ଜୁନ ବୋଇଲେ ତୋର କିସ ଅବା ଦୋଷ
ଅଜ୍ଞାନରେ ତୋର ସୈନ୍ୟ କରାଇଲୁ ଧ୍ୱଂସ ।
ଆଜ୍ଞୁଁ ଅନୁଗ୍ରହ ତୋତେ ହେଲା ଆହୋ ରାୟ
କୋଳାଗ୍ରତ କଲେ ତାକୁ ବୀର ଧନଞ୍ଜୟ ।
ତୁହି ମୋହର ବାନ୍ଧବ ହେଲୁଟି ଆଜହୁଁ
ହରଷ ହୋଇଲା ମନ ତୋତେ କଥା କହୁଁ ।
ତୋର ସମଦଣ୍ଡ ଘେନି ଆହେ ମହାରାଜା
ବାରୁଣାବନ୍ତକୁ ତୁହି ବହନ ଚଳିଯା ।
ଏ ଅଶ୍ୱମାନ ଦେବୁଟି ହରିଙ୍କ ଗୋଚରେ
ଦର୍ଶନୀ ଧନ ରଖାଇ ଦେବୁ ତୁ ଭଣ୍ଡାରେ ।
ପାରିଦଣ୍ଡ ଆଦିକରି ଯେତେକ ଘେଇନି
ମହାଯଜ୍ଞ ଦେଖିଯାଅ କୁଟୁମ୍ବକୁ ଘେନି ।
ରାଜା ବୋଲେ ତୋ ଦର୍ଶନେ ପାପଗଲା କ୍ଷୟ
ଜଗଜ୍ଜିତା ହେଲି ଯମଦଣ୍ଡ ନାହିଁ ଭୟ ।
ପାର୍ଥ ବୋଲେ ମୋ ଦେଶନ୍ତା ଘେନିତୋରସୈନି
ଶୁଭ ଅନୁକୂଳେ ରାଜା ଚଳ ଏହିକ୍ଷଣି ।
ଅର୍ଜୁନ ଆଜ୍ଞାକୁ ରାଜା ନିବେଶିଣ ଶିର
ଯମୁନାକୁ ତେଜି କରି ହୋଇଲା ବାହାର ।
ଜୟ ନୀଳାଦ୍ରି ବିହାରୀ ଶଙ୍ଖଚକ୍ରଧାରୀ
ଦୁଷ୍ଟଗର୍ବ ଖର୍ବକାରୀ ଦଇତଙ୍କ ଅରି ।
ଦୟାକର ଦୀନବନ୍ଧୁ ଶାରଳା ଦାସକୁ
ନ ଭୁଲୁ କୌଣସି ବେଳେ ତୁମ୍ଭର ନାମକୁ ।



## ଅର୍ଜୁନଙ୍କର ବରୁଣ, ଜଳନ୍ଧର, ବ୍ୟୋମକେଶ ରାଜାଙ୍କୁ ନିମନ୍ତ୍ରଣ ଓ ମନ୍ମଥ ରାଜାଙ୍କ ସହିତ ଯୁଦ୍ଧ ଏବଂ ଜୟ

ଏଥୁ ଅନନ୍ତରେ ପୁଣି ବିଲଙ୍କ ଈଶ୍ୱର
ଅଗସ୍ତିଙ୍କୁ ପୁଚ୍ଛାକଲେ ଯୋଡ଼ି ବେନିକର ।
ଯମୁନାପୁର ରାଜ୍ୟକୁ ଚଳାଇ ଅର୍ଜୁନ
କେଉଁ ରାଜ୍ୟକୁ ସେ ପୁଣି କରିଲେ ଗମନ ।
ଏକଥା ବିସ୍ତାର କରି ମୋର ଆଗେ କହ
ତାହା ଶୁଣି ମୋ ମନରୁ ଯାଉ ସେ ସନ୍ଦେହ ।
ଅଗସ୍ତି କହିଲେ ତାହା ଶୁଣ ଏବେ ତୁହି
ଯମୁନାପୁର ରାଜାଙ୍କୁ ଗୁବାକ୍ଷତ ଦେଇ ।
ଅତି ହରଷରେ ଥାଟ ଚଳାଇଣ ଗଲେ
ବୀରବର ସେ ରାଜ୍ୟରେ ପ୍ରବେଶ ହୋଇଲେ
ଯମୁନାପୁରୁ ଉଚ୍ଛନ୍ନ ପାଇଣ ସନ୍ଦେଶ
ଉଡ଼ଙ୍ଗ ରାଜା ସାଜିଲା ରଥ ଗଜ ଅଶ୍ୱ ।
ସେ ଉଡ଼ଙ୍ଗ ଦେଶ ରାଜା ଅଟଇ ବରୁଣ
ତୁଳେ ଘେନିଛି ତିନିଶ ପାରିଦଣ୍ଡ ଗଣ ।
ଦେଶାଉରେ ବାର୍ତ୍ତା ଦେଲେ ଛାମୁକୁ ଯାଇଣ
ଧନୁଶର ପରବତେ ବିଜେ ଅରଜୁନ ।
ଯମୁନା ଦେଶ ଜିଣିଣ ଆସନ୍ତି ଏ ପୁରେ
ଯାହା ଶୁଣି ଅଇଲୁ ତ କହିଲୁ ଛାମୁରେ ।
ଏହା ଶୁଣିଣ ନରପତି ଅତ୍ୟନ୍ତ ହରଷେ
ସମଦଣ୍ଡ ଘେନି ରାଜା ସମ୍ମୁଖରେ ଆସେ ।
ଅନେକ ଉଦଣ୍ଡ ଆଉ ପାଟଛତ୍ରମାନ
ଛାମୁକୁ ଘେନିଛି ଚାରିଶତ ଭାର ଧନ ।
ଚାରେ ଯାଇଣ ବାରତା କହିଲେ ପାର୍ଥକୁ
ସ୍ୱାମୀ ଉଡ଼ଙ୍ଗର ରାଜା ଆସୁଛି ଛାମୁକୁ ।
ତିନିକୋଶରୁ ବାହନ ତେଜିକରି ରାୟ
ଦଶନଖ ମୁଖେ ଭରି ଶରଣାର୍ତ୍ତ ପ୍ରାୟ ।
ଅର୍ଜୁନ ବିଜେ ଚନ୍ଦନ ବୃକ୍ଷର ତଳର
ପାଶେ ଯାଇ ନିଉଛାଳି କଲା ନୃପବର ।
ଅନେକ ଝୀନବସନ ଦେବାଙ୍ଗ ପଟନୀ
ନିଉଛାଳି କଲା ରାଜା ବହୁବସ୍ତ୍ର ଘେନି ।
ସନ୍ନିଧିରେ ପ୍ରଣିପାତ୍ୟ ହୋଇ ଦଣ୍ଡଧର
ସ୍ତବ ପାଠକଲେ ଜୟ ପାଣ୍ଡବ ସୁନ୍ଦର ।
ତୁହି ଦେବ ଯୋଗେଶ୍ୱର ଦୁଃଖୀଜନ ବନ୍ଧୁ
ଶରଣ ସୋଦର ଦେବ ଜଗତରେ ସାଧୁ ।
ତୁ ଦେବ ବାସବ ଆଉ ଦ୍ୱିତୀନାରାୟଣ
ସ୍ୱାମୀ ତବ ପାଦେ ଜନ୍ମେ ଜନ୍ମେ ମୁଁ ଶରଣ ।
ତା ଭକ୍ତିରେ ପରସନ୍ନ ହେଲେ ଫାଲଗୁନି
ପ୍ରଣମନ୍ତି ତ୍ରାହି ତ୍ରାହି ବୋଲିଣ ସଇନି ।
ଦେଖିଣ ସାନନ୍ଦ ହେଲେ ବାସବର ବଳା
ଉଡ଼ଙ୍ଗ ରାଜା ଗଳାରେ ଦେଲେ ରତ୍ନମାଳା ।
ଆହେ ବରୁଣ ତୁ ଅଟୁ ବଡ଼ ଜ୍ଞାନବନ୍ତ
ତୋ ସମ ବିବେକୀ ଆଉ ନାହିଁ ଏ ଜଗତ ।
ଶ୍ରୀ ହସ୍ତେ ଅର୍ଜୁନ ଦେଲେ ଯଜ୍ଞ ନିମନ୍ତ୍ରଣ
ରାଜସୂୟ ଯଜ୍ଞକୁ ରାଜା ଯାଅ ହେ ବହନ ।
ବରୁଣ ବୋଇଲେ ଦେବ ମୋର ବହୁଭାଗ୍ୟ
ଆଜ୍ଞା ପ୍ରମାଣେ ଯିବି ମୁଁ ଏହିକ୍ଷଣି ବେଗ ।
ଦଣ୍ଡଘେନି ମହାରାଜା ହୋଇଲା ବାହାର
ତହୁଁ ପାର୍ଥ ଦିଗ୍‌ବିଜେ କଲେକ ସତ୍ୱର ।
ବୀରବେଣୁ ବୋଲିକରି ରାଜ୍ୟ ଯେ ଗୋଟିଏ
ତହିଁ ଯାଇ ପରବେଶ ହେଲେ ଧନଞ୍ଜୟେ ।
ବିଚ୍ଛାମାସ କୃଷ୍ଣପକ୍ଷ ଦ୍ୱିତୀୟାର ତିଥି
ରବିବାର ଶୁକ୍ଳପକ୍ଷ ଶୁଭବେଳା ଶାନ୍ତି ।

ବାଳକ ନାମେ କରଣ ପ୍ରୀତିନାମେ ଯୋଗ
ତୁଳା ସଂକ୍ରାନ୍ତିକି ଉନତ୍ରିଂଶ ଦିନ ଭୋଗ ।
ଅର୍ଜ୍ଜୁନ ବିଜେ ଗଣ୍ଡକୀ ନଦୀର ତୀରରେ
ବୈଦୁର୍ଯ୍ୟ ନାମରେ ଏକ ପର୍ବତ ଉପରେ ।
ସୁରେଶ୍ୱର ପୁରୋହିତ କହିଲେ ବୃତ୍ତାନ୍ତ
ବାବୁ ଗଣ୍ଡକୀ ନଦୀ ଏ ଚାରିଯୁଗେ ତୀର୍ଥ ।
ଆକାଶମାର୍ଗ ଏହି ଯେ ମେରୁର ମେଖଳି
ବ୍ରହ୍ମା ସ୍ନାନ କରନ୍ତି ଯେ ଏଥେ ତିନିଓଳି ।
ତ୍ରି ସନ୍ଧ୍ୟା କରନ୍ତି ଏଥେ ଦେବ ବେଦବର
ଉଦକ ଗଣ୍ଡୁଷ କରେ ଯେ ପ୍ରତିଦିନର ।
ବ୍ରହ୍ମାର ଗଣ୍ଡୁଷ ହେତୁ ଅଟେ ଏ ଉଦକୀ
ତେଣୁକରି ଏହାନାମ ଅଟଇ ଗଣ୍ଡକୀ ।
ବ୍ରହ୍ମା କର୍ଣ୍ଣରୁ କାଢ଼ିଲା କାନକୁଟ ମଳି
କର୍ଣ୍ଣକୁଟ ପର୍ବତୁ ଏ ଆସଇ ନିକିଳି ।
ବଜ୍ରକୀଟ ଅଛି ସେହି ପର୍ବତ ଭିତରେ
ସେ ପୋକ ଶରୀର ଦିଶେ ବୈଦୁର୍ଯ୍ୟ ଆକାରେ
ନୀଳାର ତେଜ ପରାୟେ ଦିଶେ ରୋମାବଳୀ
ଚଉଦ ନେତ୍ର ମାଣିକ୍ୟ ସମାନରେ ଝଳି ।
ହୀରାତେଜ ବିକାଶଇ ଦନ୍ତ ବେନିଗୋଟି
ମର୍କତ ତେଜ ପରାୟେ ତା ପାଦ ଚାରୋଟି ।
ଶୁଦ୍ଧସ୍ଫଟିକ ପ୍ରାୟେକ ଦିଶେ ଚାରିଭୁଜ
ଅମୋଘ ମଣି ପ୍ରାୟକ ନଖ ଯେ ବିରାଜ ।
କାଳାନଳ ଅଗ୍ନିପ୍ରାୟେ ତା ଜିହ୍ୱା ବିକାଶି
ମନୁ କଳ୍ପେକ ବଞ୍ଚିଲା ଏ ପର୍ବତେ ବସି ।
ପରମ ଯୋଗୀ ଅଟଇ ଏହି ବଜ୍ରପୋକ
ସହସ୍ର ବର୍ଷ କାଟଇ ଶିଳା ଗୋଟିଏକ ।
ବ୍ରହ୍ମା ରୁଦ୍ର ନାରାୟଣ ଏ ତିନି ମୂରତି
ଏହା ବିନୁ ଅନ୍ୟ କିଛି କୀଟ ନ ଜାଣନ୍ତି ।
ଆକାଶ ଗଙ୍ଗା ଏହି ଯେ ମେରୁର ମେଖଳା
ଏଥିରୁ ଜାତ ହୁଅଇ ଶାଳଗ୍ରାମ ଶିଳା ।
ପ୍ରୋହିତ ବାକ୍ୟେ ସାନନ୍ଦ ହେଲେ ଧନଞ୍ଜୟେ
ଗଣ୍ଡକୀ ନଦୀକୁ ପାର୍ଥ ସ୍ନାନକରି ଯାଏ ।
ପ୍ରାତଃସ୍ନାନ ସନ୍ଧ୍ୟାସାରି ଆହ୍ନିକ ଯେ କରି
ମଣୋହି ସକାଶେ ସୂପକାରେ ଅବଧାରି ।
ପାର୍ଥର ବାକ୍ୟେ ସାନନ୍ଦ ସର୍ବ ସୂପକାର
ରାନ୍ଧଣା ବିଧି କରନ୍ତି ହୋଇ ତତପର ।
ଏମନ୍ତ ସମୟେ ବୀରଦେଶ ମହାରାଜା
ଲୋକେଶ୍ୱର ଜଳନ୍ଧର ପାର୍ଥେ କଲା ପୂଜା ।
ମସ୍ତକରେ ଜଟା ତାର ତାମ୍ରମୁଦ୍ରା କର୍ଣ୍ଣେ
କଷାବସ୍ତ୍ର ପରିଧାନେ ତପୋଧନ ବର୍ଣ୍ଣେ ।
ଲକ୍ଷେଯୋଦ୍ଧା ସର୍ବେ ଚୋଖା ତୁରଙ୍ଗ ଆରୋହି
ପାର୍ଥ ଆଗେ ଉଭାହେଲେ ଅଶ୍ୱରୁ ଓହ୍ଲାଇ ।
ବିରୂପାକ୍ଷେ ସେବି ରାଜା ସେ ପରମଯୋଗୀ
ଯୋଗବଳେ ହୋଇଅଛି ମହାସୁଖ ଭୋଗୀ ।
ପାର୍ଥଙ୍କୁ ଦର୍ଶନ କଲା କାଳକୂଟ ନଗ୍ରେ
ବିରୂପାକ୍ଷ ବିବୃତି ଯେ ଦେଲା ତାର ଆଗେ ।
ବାବୁ ସାଧୁ ପାଣ୍ଡବ ତୁ ପୃଥ୍ୱୀ କଲୁ ରକ୍ଷା
ଉତ୍ତର କୋଶଳେ ତୋର ନୋହିଲା ଯେ କକ୍ଷା
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ସର୍ବଗୁରୁ
ରାଜସୂୟ ଯଜ୍ଞେ ଯାଅ ଆମ୍ଭ ବାଞ୍ଛା ପୂରୁ ।
ରାମମୁଦ୍ରା ଶିଳା ବିଷ୍ଣୁ ନାରାୟଣ ମୂର୍ତ୍ତି
ମହାରୁଦ୍ର ଶିଳା ଜାଣି ସେ ପିଙ୍ଗଳଜ୍ୟୋତି ।
ଏହାସବୁ ଘେନିକରି ଯାଅ ରାୟେଯୋଗୀ
ପାର୍ଥ ଆଜ୍ଞା ପ୍ରମାଣରେ ଚଳିଗଲେ ବେଗି ।
ଗଣ୍ଡକୀ ପଶ୍ଚିମ ଭାଗେ ଭଙ୍ଗବୋଲି ଦେଶ
ତହିଁର ନରପତି ଯେ ଅଟେ ବ୍ୟୋମକେଶ ।
ପଞ୍ଚାକ୍ଷଉଣୀ ତାହାର ପଦାତି ସଇନି
ରଥ ଚାରିଖର୍ବ ଆଉ ଅଶ୍ୱ କୋଟି ତିନି ।
ତିନିଶତ ପାରିଦଣ୍ଡ ଘେନିଣ ନୃପତି
ପାର୍ଥଙ୍କୁ ଦର୍ଶନ କଲା ହୋଇ ହୃଷ୍ଟମତି ।
ଚାରିଶତ ଭାର ସ୍ୱର୍ଣ୍ଣ ଦରଶନୀ ଧନ
ଆଚର ଯେ ଶ୍ୱେତହସ୍ତୀ ସହସ୍ର ପ୍ରମାଣ ।
ଏତେକ ବୋଲିଣ ସେବା କଲା ସେ ନୃପତି
ବହୁ ବିନୟ ହୋଇଣ କଲାକ ଭକତି ।
କରପତ୍ର ଯୋଡ଼ିକରି ବୋଲେ ବ୍ୟୋମକେଶ
ସ୍ୱାମୀ ଏହୁ ନଦୀତୀରେ ମୋହର ଯେ ଦେଶ ।
ମୋହର ପୁରକୁ ସ୍ୱାମୀ ବିଜେକରି ଯିବ
ଏହିକ୍ଷଣି ନାବ ଆଣି ପ୍ରବେଶ ହୋଇବ ।
ଆଜକ ମୋହର ପୁରେ ରହନ୍ତୁ ଗୋସାଇଁ
ମୋ ରାଜ୍ୟ ସୁଫଳ ହେବ କଲେକ ମଣୋହି ।
ଅର୍ଜ୍ଜୁନ ବୋଇଲେ ବ୍ୟୋମକେଶର ବଚନେ
ପରାନ୍ନ ଭୋଜନ ମୁହିଁ କରିବି କେସନେ ।
ଆମ୍ଭେ ଯେ ଭୋଜନ ଦାନ ଦେବୁଁ ଅପ୍ରମିତ
ପରାନ୍ନ ଭୁଞ୍ଜିଲେ ଧର୍ମ ରହିବ କେମନ୍ତ ।
ବାହୁଡ଼ି ହସ୍ତିନାରାଜ୍ୟ ପ୍ରବେଶ ପର୍ଯ୍ୟନ୍ତେ
ପରଗୃହେ ଭୋଜନ ମୋ ନାହିଁ କଦାଚିତେ ।
ଯେତେକ ନୃପତିମାନେ ଆମ୍ଭ ହିତକାରୀ
ହସ୍ତିନା ରାଜସୂୟଯୋଗ ଯାଅ ବିଜେ କରି ।
ଅକ୍ଷତ ଗୁବାକ ତାଙ୍କୁ ଦେଲେ ଆଖଣ୍ଡଳି
ବ୍ୟୋମକେଶ ନରପତି ଦଣ୍ଡ ଘେନି ଚଳି ।

ଗଣ୍ଡୁକୀ ନଦୀରେ ପାର୍ଥ ଆହ୍ନିକାଦି ସାରି
ଆପଣେ ମଣୋହିଠାରେ ଯାଇ ବିଜେକରି ।
ଭୋଜନ ସାରିଣ ତହିଁ କଲେ ଆଚମନ
ରଥ ସାଜନ୍ତେ ବାଜିଲା ବୀରତୂରମାନ ।
ରଥେ ବିଜେକଲେ ପାର୍ଥ ଶୁଭଲଗ୍ନ ଘେନି
ସମଦଣ୍ଡ ଘେନିକରି ଚଳାଇ ସଇନି ।
ସମଦଣ୍ଡ ସହିତରେ ଥାଟକୁ ଚଳାଇ
ଭୂପାଳ ଦେଶେ ପ୍ରବେଶ ହୋଇନେ ଯେ ଯାଇ
ବାଜେ ବିଜିଘୋଷ ବେଦବାକ୍ୟ ଯେ ଦୁନ୍ଦୁଭି
ଶବଦରେ କମ୍ପମାନ ହୁଅଇ ପୃଥିବୀ ।
ଭୂପାଳର ରାଜଚକ୍ରବର୍ତ୍ତୀ ମନମଥ
ବଡ଼ ସମ୍ପଦେ ସେ ରାଜା ରାଜ୍ୟରେ ବିଖ୍ୟାତ ।
ବେଣୀଗଙ୍ଗାନଦୀତୀରେ କଟକ ତାହାର
ବୈଲୋଚନ ପର୍ବତରେ ବିଜେ ପାର୍ଥବୀର ।
ସମଦଣ୍ଡ ଘେନି ରାଜା ମୃଗୟା ବିନୋଦେ
ବିହରନ୍ତେ ଯୋଦ୍ଧାମାନେ ପରମ ସାନନ୍ଦେ ।
ଦୁନ୍ଦୁଭି ନାଦ ଶୁଣିଣ ପୁଚ୍ଛଇ ନୃପତି
ଏ କି ଶବଦ ଶୁଭଇ ଏ ଆମ୍ଭର ପୃଥ୍ୱୀ ।
କରପତ୍ର ଯୋଡ଼ିକରି କହିଲେ ମୁନେହି
ଏକ ରାଜା ବୈଲୋଚନ ନଗ୍ରେ ଅଛି ରହି ।
ରଥ ଗଜ ଅଶ୍ୱ ତାର ଅଳପ ପଦାତି
ଦଣ୍ଡଘେନି ହୋଇଅଛି ଉତ୍ତମ ମୂରତି ।
ଦୂତମୁଖୁଁ ଶୁଣି ରାଜା ହୋଇ କୋପଭର
ସାରଥିକି ବୋଇଲା ହେ ବାହ ରଥ ମୋର ।
କାହୁଁ ଆଗମ ହୋଇଛି କାହିଁଯିବ ଥାଟ
ନ ପୁଣ ବଳେ ପଶଇ ଏ ମୋହର ରାଷ୍ଟ୍ର
ରାଜା ଆଜ୍ଞାରେ ବାହିଲା କଣୟ ସାରଥି
ଦକ୍ଷିଣକୁ ଚଳାଇଲା ଥାଟ ଚକ୍ରବର୍ତ୍ତୀ ।
ବଇଲୋଚନ ପର୍ବତ ପାର୍ଶ୍ୱେ ରାଜା ହୋଇ
ଶତେପୁର କରି ସୈନ୍ୟ ବେଢ଼ାଇଲା ତହିଁ ।
ଗିରି ଉପରକୁ ରାଜା ବିଜେ ବାଣ ଘେନି
ଝଲକନ୍ତି ତୀକ୍ଷ୍ଣ ମୁନା ଅଗ୍ନିତେଜ ଜାଣି
ପାର୍ଥ ସଇନ୍ୟ ଦେଖିଲେ ଥାଇ ଗିରିପର
ନାରାଚମାନ ବିନ୍ଧିଲେ ହୋଇ କୋପଭର ।
ଅସ୍ତ୍ରଘାତେ ଗିରି ଭାଙ୍ଗି ପଡୁଅଛି ଝଡ଼ି
ଝଲକଇ ଯୋଦ୍ଧାଙ୍କର ପରେ ଶର ପଡ଼ି ।
ସେହ୍ନା ଟୋପର ବାହୁଟି ଆଉ ଜଗଦ୍‌ବଳା
ଫୁଟନ୍ତେ ସେହ୍ନା ଦିଶଇ ଯେହ୍ନେ ରଙ୍ଗମାଳା ।
ଗଜ ଅଶ୍ୱ ଫୁଟି ଶର ପଡୁଛନ୍ତି ରଥେ
ଚୂର ହେଉଛନ୍ତି ଯେହ୍ନେ ବଜ୍ରର ବିଘାତେ ।

ଭାଙ୍ଗିଲେ ସଇନିମାନେ ଆକୁଳିତ ହୋଇ
ପର୍ବତୁଁ ଜୟ ବିଜୟ ପଡ଼ିଲେକ ଡେଇଁ ।
ରଣେ କାତର ହୋଇଲେ ମନ୍ମଥର ଥାଟ
ପଳାବନ୍ତି ସଇନି ଯେ ନ ଦିଶଇ ବାଟ ।
ସମରେ ଅନିବାରଣ ପାଣ୍ଡବଙ୍କ ଯୋଦ୍ଧା
ବହୁତ ନାରାଚ ବୀରେ ଧନୁଶରେ ବିନ୍ଧି ।
ରଣରଙ୍ଗ ଧାନ୍ଦୋଳାରେ ବଢ଼ିଲା ସମର
ପଡ଼ନ୍ତେ ନାରାଚ ଶୂନ୍ୟ ହୋଇ ଅତିଖର ।
ଏକ ନାରାଚକେ ପଞ୍ଚଶତ ବୀର ଫୁଟି
ନାଚନ୍ତି କବନ୍ଧମାନେ ରକ୍ତ ହୁଏ ବୃଷ୍ଟି ।
ଦଣ୍ଡଭଗ୍ନ ଦେଖି ମନମଥ ଚକ୍ରବର୍ତ୍ତୀ
ମୁକୁଟ ବନ୍ଧା ସେଠାରୁ ଲକ୍ଷେ ଘେନି ସାଥି ।
ରଣ କରିବା ପାଇଁକି ଯାଆନ୍ତେ ଚପଳେ
ବୁଲାଇ କୁନ୍ତ ମାଇଲେ ବୀର ତତକାଳେ ।
ଜୟ ବିଜୟ ଉଠିଲେ ଗଦାକୁ ବୁଲାଇ
ପିଟିଲେକ ଗଜଙ୍କର ଉପରକୁ ଧାଇଁ ।
ଅଭଙ୍ଗ ଯୋଦ୍ଧା ଅଟନ୍ତି ପାଣ୍ଡବ ସଇନି
ପୁଣ ପ୍ରହାର କରିଲେ ଅସ୍ତ୍ରମାନ ଘେନି ।
ଉଭୟ ବଳ ସମର ଦେଖି ଫାଲଗୁନି
ବାହିଲା ସାରଥି ଅମରାଧି ଅଶ୍ୱ ଘେନି ।
ଲକ୍ଷେଶର ପେଶିଲେକ ବୀର ଧନଞ୍ଜୟେ
ଲକ୍ଷେ ଯୋଦ୍ଧା ପଡ଼ିଲେ ସେହି ଶରଘାଏ ।
ରାଜା ଦେଖନ୍ତେ ପଡ଼ିଲେ ବହୁତର ହସ୍ତୀ
ନାଚନ୍ତି କବନ୍ଧେ ହେଲା ରକ୍ତମୟ ପୃଥ୍ୱୀ ।
ସେନାମାନେ ପଡ଼ିବାର ଦେଖି ମନମଥ
ସାରଥିକି ବୋଇଲା ତୁ ବାହା ମୋର ରଥ ।
ବିଜେ ସାରଥି ବାହିଲା ରଥ ବେଗକରି
ପାର୍ଥ ଛାମୁରେ ମିଳିଲା ରାଜା ଚାପଧରୀ ।
ବୋଇଲା ରେ ଶୁଣ ତୁହି କେଉଁଦେଶ ରଥୀ
ଅଦୋଷେ ମୋ ସୈନ୍ୟନାଶି ମୋର ରାଜ୍ୟ ମନ୍ତ୍ରୀ
କେଉଁ ଦେଶ ରାଜା ଅବା କେଉଁ ଦେଶସେନା
ପର ରାଜ୍ୟେ ପଶି କିପାଁ ଦେଖାଉ ଗାରିମା ।
ପ୍ରାଣୀଙ୍କୁ ନାଶ କରନ୍ତି ଯେ ବିନା ଦୋଷରେ
ବହୁଶାସ୍ତି ପାନ୍ତି ସେହୁ ଜନ୍ତୁପତି ପୁରେ ।
ଏପରି କହିଲା ଯହୁଁ ମନ୍ମଥ ନୃପତି
ରଥେ ଥାଇଣ କହିଲେ ପାର୍ଥ ମହାମତି ।
ରଥେ ଅର୍ଜ୍ଜୁନ ଗାଣ୍ଡୀବଧାରୀ ଦୀକ୍ଷାଗୁରୁ
ରାଜୁସିଯାଗ ନିମନ୍ତେ ଦିଗବିଜେ କରୁ ।
ଯୁଧିଷ୍ଠି ଦେବ କରିବେ ମହାଯଜ୍ଞ ସଭା
ସମସ୍ତ ରାଜା କରିବେ ତାଙ୍କ ପାଦସେବା ।

ଶୁଣିଣ ବୋଲେ ମନ୍ମଥ ଦ୍ରୋହକର୍ମ କଲି
ଅଜ୍ଞାନପଣେ ଅନେକ ପ୍ରମାଦ ଅର୍ଜିଲି ।
ମୁହିଁ ପାମର ନ ଜାଣି କଲି ବହୁ ଦ୍ରୋହ
ନାରାୟଣ ଅଙ୍ଗ ତୁହି ଶାନ୍ତଭାବ ବହ ।
ଅନେକ କାର୍ପଣ୍ୟ ଯହୁଁ ହେଲା ନରେଶ୍ୱର
ପାର୍ଥ ବୋଇଲେ ହେ ରାଜା ଭୟ ତୁ ନ କର ।
ଅଜ୍ଞାନ ପ୍ରାଣୀର ଦୋଷ ଆମ୍ଭେ ଯେ ନ ଧରି
ଅଜ୍ଞାନ ପ୍ରାଣୀ ନାଶିଲେ ବ୍ରହ୍ମହତ୍ୟା ସରି ।
ଏବେ ଛାଡ଼ ମନୁଭ୍ରାନ୍ତି ବୋଲେ ସବ୍ୟସାଚୀ
ଆମ୍ଭେ କହୁଅଛୁ ତୋର ଦୋଷ ନାହିଁ କିଛି ।
ଆପଣେ ଅକ୍ଷତ ଗୁଆ ଶ୍ରୀହସ୍ତେ ଘେନିଣ
ମନମଥ ରାଜା କରେ କଲେ ସମର୍ପଣ ।
ତାହାର କଣ୍ଠରେ ଦେଲେ ନୀଳୋତ୍ପଳ ମାଳି
ବୋଇଲେ ଏକ୍ଷଣି ରାଜା ଯାଅ ତୁହି ଚଳି ।
ଦିବାରାତ୍ର ଯିବ ପଥେ ନ ରହିବ କାହିଁ
ଅତି ବେଗେ ବାରୁଣାରେ ପହଞ୍ଚିବ ଯାଇ ।
ଶୁଭ ଅନୁକୂଳେ ରାଜା ପାର୍ଥ ଆଜ୍ଞା ଘେନି
ବାରୁଣାବନ୍ତକୁ ଗଲା ଚଳାଇ ସଇନି ।
ଜୟ ଜୟ ଦୀନବନ୍ଧୁ ଜଗତ କରତା
ତୁମ୍ଭେ ପ୍ରଭୁ ପ୍ରାଣୀଙ୍କର ଗତି ମୁକ୍ତି ଦାତା ।
ତୁମ୍ଭ ଛଡ଼ା ତ୍ରାଣକର୍ତ୍ତା ନାହଁ ଏ ସଂସାରେ
ଶାରଳା ଦାସ ଶରଣ ମାଗେ ଏ ହେତୁରେ ।



## ବୈଲୋଚନ ସହିତ ପାର୍ଥଙ୍କ ଯୁଦ୍ଧ ଓ ନିମନ୍ତ୍ରଣ

ଏଥୁଅନ୍ତେ ପୁଚ୍ଛାକଲେ ବିଳଙ୍କ ରାଜନ
ଭୂପାଳ ଦେଶରୁ କାହିଁ ଗଲେ ଅରଜୁନ ।
ଏ କଥା ବିସ୍ତାର କରି କହ ମୋର ଆଗ
ଶୁଣିବାପାଇଁକି ଚିତ୍ତେ ଅତ୍ୟନ୍ତ ଉଦ୍‌ବେଗ ।
ଅଗସ୍ତି କହିଲେ ଶୁଣ ବିଳଙ୍କାଧିପତି
ଯାହା ପୁଚ୍ଛାକଲୁ ଶୁଣ ସ୍ଥିରକରି ମତି ।
ଭୂପାଳ ଦେଶକୁ ତେଜି ବୀର ଅରଜୁନ
ଉଜାଣକାନ୍ତି ରାଜ୍ୟକୁ କରିଲେ ପ୍ରୟାଣ ।
ସେ ମହାନଗ୍ର ବିଶାଳ ସରିତର କୂଳେ
ବେନି ଯୋଜନ ବିସ୍ତାର ନଗ୍ର ପରିମଳେ ।
ସେ ଉଜାଣ ନଗ୍ର ବେନିଯୂଣ ଆୟତନ
ସେ ରାଜ୍ୟର ପୁରମାନ ସୁବର୍ଣ୍ଣେ ନିର୍ମାଣ ।
ଯାହାର ଘରେ ପୁରୁଷେ ଅଛନ୍ତି ଯେ ଯେତେ
ସମସ୍ତେ ଯୁଦ୍ଧେ ନିପୁଣ ମହାବଳବନ୍ତେ ।
ସେହି ରାଜ୍ୟରେ ପଦାତି ନାହିଁ ଯେ ତାଙ୍କର
ସମସ୍ତେ ମୁକୁଟବନ୍ଧା ମହା ଧନୁର୍ଦ୍ଧର ।
ନାରାଚେ ମାଛି ଚକ୍ଷୁକୁ ପାରନ୍ତି ସେ ବିନ୍ଧି
ନାରାଚେ ଅଚଳଗିରି ପାରନ୍ତି ସେ ଭେଦି ।
ଏସନକ ବଳବନ୍ତ ଅଟନ୍ତି ସେ ବୀରେ
ଶ୍ୟେନପକ୍ଷୀ ପ୍ରାୟେ ସେହୁ ପଶନ୍ତି ସମରେ ।
ଅଶ୍ୱପରେ ଥିଲେ ତାଙ୍କୁ କେ ଜିଣିବ ରଣେ
ତାଙ୍କ ଶସ୍ତ୍ର ବାଜୁଁ ରକ୍ତ ଉଦ୍‌ଗାରନ୍ତି ଜନେ ।
କନକଧାରୀ ପର୍ବତ ବଳଙ୍ଗୀର କୂଳେ
ବରଷକେ ଦଣ୍ଡେ ସ୍ୱର୍ଣ୍ଣ ବର୍ଷେ ଆଖଣ୍ଡଳେ ।
ସେ ପର୍ବତେ ତ୍ରେତା ଯୁଗେ ରାମଚନ୍ଦ୍ର ସ୍ୱାମୀ
ସୀତା ଲକ୍ଷ୍ମଣ ସହିତେ ଥିଲେ ସେ ବିଶ୍ରାମି ।
ବୈଶାଖ ଶୁକ୍ଳପଞ୍ଚମୀ ବୃହସ୍ପତିବାର
ପୁନର୍ବସୁ ନକ୍ଷତ୍ର ଯେ ଅଟେ ସେ ଦିନର ।
ସେହି ପର୍ବତ ଉପରେ ବସି ଦେବୀ ସୀତା
ବାଲୁକା ଲିଙ୍ଗ ପୂଜିଲେ ହୋଇ ହରଷିତା ।
ଚମ୍ପକପୁଷ୍ପ ଗୋଟିଏ ଦେଇ ଲିଙ୍ଗପରେ
ବହୁସ୍ତୁତି କରିଲେକ ତାହାଙ୍କୁ ଭକ୍ତିରେ ।
ସୀତାଙ୍କ ଭକ୍ତିରେ ତୁଷ୍ଟ ହୋଇ ଦେବ କାଶୀ
ଜାନକୀଙ୍କ ନିକଟରେ ବିଜେ କଲେ ଆସି ।
ବୋଇଲେ ତୁମ୍ଭ ଭକ୍ତିରେ ତୁଷ୍ଟ ହେଲୁ ଆମ୍ଭେ
ତୁମ୍ଭର କି ବାଞ୍ଛା ଅଛି ତାହା ମାଗ ଏବେ ।
ସୀତା ବୋଇଲେ କାହିଁରେ ଇଚ୍ଛା ନାହିଁ ମୋର
ତୁମ୍ଭେ ତ ସବୁ ଦେଇଛ ଆଉ କି ପଚାର ।
କେବଳ କଥାଏ କହେ ଶୁଣ ହେ ଧୂର୍ଜଟି
ବର୍ଷକେ ଥରେ ଏଠାରେ ହେବ ସ୍ୱର୍ଣ୍ଣବୃଷ୍ଟି ।
ଶିବ ବୋଇଲେ ଏ କଥା ନାହିଁ ଆମ୍ଭହସ୍ତେ
ତୁମ୍ଭ ଆଜ୍ଞାକୁ ପାଳିବେ ବାସବ ନିଶ୍ଚିନ୍ତେ ।
ଏହାକହି ବିଶ୍ୱନାଥ ଅନ୍ତର୍ଦ୍ଧାନ ହେଲେ
ସୀତା ଇନ୍ଦ୍ରଙ୍କୁ ସ୍ମରନ୍ତେ ସେଠାରେ ମିଳିଲେ ।
ତାହାଙ୍କୁ ଦେଖି ବୋଇଲେ ସୀତା ଠାକୁରାଣୀ
ବର୍ଷକେ ରତ୍ନ ବର୍ଷିବ ଏଥେ ବଜ୍ରପାଣି ।
ଜାନକୀର ବଚନରେ ସେ ପାକଶାସନ
ବରଷକେ ସ୍ୱର୍ଣ୍ଣ ବର୍ଷେ ଏ ଲିଙ୍ଗ ପରେଣ ।
ସେ ବଳାଙ୍ଗୀ ନଦୀରେ ସେ ସ୍ନାନ କରି ପାର୍ଥ
କନକଲିଙ୍ଗ ଦେଶରେ କନକ ପର୍ବତ ।
ପାର୍ଥ ବିଜେ ମାର୍ଗଶିର କୃଷ୍ଣ ଚତୁର୍ଥୀର
ପୁନର୍ବସୁ ନକ୍ଷତ୍ର ଯେ ଅଟେ ଅର୍କବାର ।
ସେହି ଦିନ ହୋଇଥିଲା ଯେ ବିଛା ସଂକ୍ରାନ୍ତି
ଇନ୍ଦ୍ରବୃଷ୍ଟି କଲେ ରତ୍ନ ସୀତା କଥା ଚିନ୍ତି ।

ସେ ରାଜ୍ୟ ଜନେ ଅଇଲେ ତହିଁକି ସାଉଁଟି
ଅର୍ଜୁନ ଭୟେ ପର୍ବତେ ନ ପାରିଲେ ଉଠି ।
ସେ ରତ୍ନକୁ ରୁଣ୍ଡ କଲେ ଅର୍ଜୁନ ସଇନି
ଚାରିଶ ରଥେ ଭରିଲେ ସର୍ବ ବୀର ଆଣି ।
ରତ୍ନ ନେଉ ରାଜାଆଗେ କହିଲେ ମୂନେହି
ଗଲା ବୈଲୋଚନ ରାଜା ଅତି କ୍ରୁଦ୍ଧ ହୋଇ ।
ରଥ ଗଜ ଅଶ୍ୱ ଆଉ ପଦାତି ଗହଣ
କଣୟ ଗିରି ବେଢ଼ିଲେ ଯାଇ ସର୍ବ ସୈନ୍ୟ ।
ଦେଖିଲେକ ସେ ପର୍ବତ ପରେ ରଣଦଣ୍ଡ
ଘୋର ବାଦ୍ୟ ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ଇନ୍ଦ୍ରଦେବ କରିଅଛି କଣୟ ଯେ ବୃଷ୍ଟି
ବୈଲୋଚନ ସେନା ସେହି ପର୍ବତକୁ ଉଠି ।
ଡାକନ୍ତି ସେନାଏ ଆରେ କେଉଁଦେଶ ବୀର
ପରଧନ ନିଅ ତୁମ୍ଭେ କାହିଁର ରେ ଚୋର ।
ଏ ଚୋରକୁ ମାର କହି ଧାଇଁଲେ ସେ ରଥୀ
ଅଶ୍ୱ ଆରୋହି ଚୌଦିଗୁ ବାଣ ସେ ବିନ୍ଧନ୍ତି ।
ପାର୍ଥ ସୈନ୍ୟ ନ ସହନ୍ତି ରେ ରେକାର କଥା
ପ୍ରତିଜ୍ଞାରେ ସାମରଥ ବହୁ ବଳବନ୍ତା ।
ପର୍ବତେ ଥାଇ ସକଳେ କଲେ ଶରବୃଷ୍ଟି
ବୈଲୋଚନ ସୈନ୍ୟଗଣ ପଡ଼ିଲେକ ଫୁଟି ।
ହସ୍ତୀଙ୍କ ଉପରେ ଥିଲେ ଯେତେ ଯୋଦ୍ଧାମାନେ
ସେହ୍ନା ଫୁଟନ୍ତେ ଅଜ୍ଞାନ ହେଲେ ସେହି କ୍ଷଣେ
ହାବୁଡ଼ା ଶର ପଡ଼ନ୍ତେ ଗଲେ ମହୀଲୋଟି
ଗିରି ଉପରକୁ କେହି ନ ପାରିଲେ ଉଠି ।
ଲାଙ୍ଗିଆ କୁନ୍ତ ପରିଘ ଯାଠି ଯେ ମୂଷଳି
ପର୍ବତେ ଥାଇ ମାରନ୍ତେ ସୈନ୍ୟ ଦେହେ ଗଳି ।
ଗଜ ଅଶ୍ୱମାନେ ଭାଜିଗଲେ ଅସମ୍ଭାଳେ
ଏକ ଉପରେ ଆରେକ ପଡ଼ି ମହୀସ୍ଥଳେ ।
ସଇନିଙ୍କର ନିହତ ଦେଖି ମହୀପତେ
ଦଶଲକ୍ଷ ଯୋଦ୍ଧା ଘେନି ଉଠିଲା ପର୍ବତେ ।
ତିନିଯୂଣ ଆୟତନ ସେ କଣୟଗିରି
ଦୁଇବଳ ମିଶି ହେଲେ ଉବୁରା ଉବୁରି ।
ବିନ୍ଧନ୍ତି ଶର ଗହଳେ ଘୋର ତୀକ୍ଷ୍ଣମୁନା
କବଚ କୁଣ୍ଡଳ ମଣି ତୁଟଇ ଯେ ସେହ୍ନା ।
ପାଣ୍ଡବ ସଇନି କଲେ ବହୁ ଶରାଘାତ
ଭାଙ୍ଗିଲେ ଯହୁଁ ଯୋଦ୍ଧାଏ ବିଜେକଲେ ପାର୍ଥ ।
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ର ପରକାଶି
ସେମାନଙ୍କ ମଧ୍ୟେ ପାର୍ଥ ସେହିପରି ଦିଶି ।
ଆପଣେ ବାଣ ବିନ୍ଧିଲେ କୋପକରି ଅତି
ପଡ଼ିଲେ ବାତେ ଯେସନେ ରମ୍ଭା ସୈନ୍ୟକ୍ଷିତି ।
ରଥକେ ଶତଶର ଯେ ଗଜେ ଶତ ଶର
ଅଶ୍ୱ ଯୋଦ୍ଧାଙ୍କୁ ପଞ୍ଚାଶ ସୈନ୍ୟଙ୍କୁ ପନ୍ଦର ।
ମନଭେଦୀ ବୋଲିକରି ଯେଉଁ ଶର ଗୋଟି
ମନେ ଯେତେ ଭାଳି ତେତେ ହୋଏ ଶରବୃଷ୍ଟି
ଏକାବେଳକେ ମାଇଲେ ସର୍ବସୈନ୍ୟ ଘୋଟି
ବେନିଯୂଣ ପରିଯନ୍ତେ ପଡ଼ିଲେକ ଲୋଟି ।
ନବଲକ୍ଷ ଯୋଦ୍ଧା ଅଶୀଲକ୍ଷ ଯେ ମାତଙ୍ଗ
ସାତଖର୍ବ ସୈନ୍ୟ ତେର କ୍ଷଉଣୀ ତୁରଙ୍ଗ ।
ବାସବୀଙ୍କର ମହିମାକୁ ଦେଖ ହେ ସମରେ
ଏକ ଶରାଘାତେ ସର୍ବେ ଲୋଟିଲେ ମହୀରେ ।
ତିନିଶତ ଯୋଦ୍ଧା ତହୁଁ ଉବୁରି ରହିଲେ
ତା ଦେଖି ରାଜା ଅର୍ଜୁନେ ତ୍ରାହି ତ୍ରାହି ବୋଲେ
ବାତଘାତେ ଯେସନେକ କଦଳୀର ବନ
ସୈନ୍ୟ ପଡ଼ିବା ଦେଖିଣ ବ୍ୟାକୁଳ ରାଜନ ।
ବାଣେ ନିସ୍ୱତ ହୋଇଲେ ତହୁଁ ତାର ବଳ
ବାହନ ତେଜି ପ୍ରଣାମ କରେ ମହୀପାଳ ।
ପୁଣ ପୁଣ ନରପତି ହୋଏ ପରଣାମି
ଅଦୋଷେ ମୋ ସୈନ୍ୟ କିମ୍ପା ନାଶକର ସ୍ୱାମୀ
ଅର୍ଜୁନ ବୋଇଲେ ଆରେ ନାହିଁ ତୋର ଜ୍ଞାନ
ମୁହିଁ ଯେ ଅର୍ଜୁନ ମୋତେ କିମ୍ପାଇ ନ ଚିହ୍ନ ।
ରାଜସୂୟ ମହାଯାଗ କରିବା ନିମିତ୍ତେ
ଉତ୍ତରେ ଆସିଛୁ ରାଜା ନିମନ୍ତ୍ରିବା ଅର୍ଥେ ।
ସକଳ ମହୀପତି ଯେ ହେବେ ତହିଁ ରୁଣ୍ଡ
ଯାଆନ୍ତି ରାଜାଏ ଘେନି ଯେ ଯାହାର ଦଣ୍ଡ ।
ଏସନ ବଚନ ଶୁଣି ଉଜାଣର ସାଇଁ
ବିନୟେ ବାକ୍ୟ କହଇ ଅର୍ଜୁନକୁ ଚାହିଁ ।
ଆହେ ମହାବାହୁ ତୁମ୍ଭେ ସର୍ବଜ୍ଞ ପଣ୍ଡିତ
ଏଡ଼େ ପ୍ରଭୁ ହୋଇ ତୁମ୍ଭେ ନ ଦେଲ ବାରତ ।
ଆମେ ବଣ ପଶୁ ସମ ସର୍ବ ମହୀକ୍ଷତ
ମତ୍ତଗର୍ବେ ସଦା ଥାଉଁ ମୂର୍ଖ ଅପଣ୍ଡିତ ।
ମୋର ସମ ଯୋଦ୍ଧା ନାହିଁ ମନେ ମୁଁ କରଇ
ସେ ହେତୁରୁ ଧାତା ଦୁଃଖ ଦେଲାକ ଗୋସାଇଁ
ନ ଜାଣିଣ ସମର ମୁଁ କଲି ଅନିମିତ୍ତେ
ଏ ଯୁଦ୍ଧରେ ସଇନଙ୍କୁ ସଂହାରିଲି ଯେତେ ।
କୁଟୁମ୍ବଯାକ ତାଙ୍କର ହୋଇଲେ ନିର୍ମାକ୍ଷୀ
ଶରୀର ମୋର ଦହୁଛି ଯାଙ୍କ କଷ୍ଟ ଦେଖି ।
ତୋତେ ଜିଣିବାକୁ ମୁହିଁ ନୋହିଲି ସମର୍ଥ
ଯାଠାରୁ ମରିବା ଶ୍ରେୟ ଅଟଇ ଯଥାର୍ଥ ।
କ୍ରୋଧ ବିନୟେ କହିଲା କଣୟ ରାଜନ
ଅପରାଧୀ ହେଲୁ ମାରି ଏ ଦୋଷେ ମୋ ସୈନ୍ୟ ।

ଏହା କହି ନରପତି ଭୂମିଷ୍ଟେ ନମିଲେ
ଦେଖିକରି ଧନଞ୍ଜୟ ରାଜାକୁ ବୋଇଲେ ।
ଉଠ ଉଠ ନରପତି ନାହିଁ ତୋର ଦୋଷ
ତୋର ପ୍ରତିଜ୍ଞା ନ ସହି ସୈନ୍ୟ କଲି ନାଶ ।
କରପତ୍ର ଯୋଡ଼ି କହେ ବୈଲୋଚନ ସାଇଁ
ନାଶକଲୁ ମୋର ସୈନ୍ୟ ଏବେ କର ତ୍ରାହି ।
ଯଦ୍ୟପି ଅର୍ଜ୍ଜୁନ ତୁହି ବାସୁଦେବ ଆତ୍ମା
ତୋତେ କି ଉପମା ଦେବି ତୁହି ମହାତମା ।
ସ୍ୱାମୀ ସମସ୍ତ ରାଜାଏ ଯିବେ ଯେ ହରଷେ
ମୁହିଁ ଅଳ୍ପ ସୈନ୍ୟେ ଯିବି ମନର ବିରସେ ।
ରାଜାର ବଚନ ଶୁଣି ଅର୍ଜ୍ଜୁନ ବୋଇଲେ
ମୃତପ୍ରାଣୀ ବଞ୍ଚଇ କି କଉଣସି କାଳେ ।
ରାଜାବୋଲେ ମୋ ସୈନ୍ୟଙ୍କୁ ନଜ୍ୟାଇଁବୁ ଯେବେ
ଶରମାରି ମୋତେ ସ୍ୱାମୀ ନାଶକର ତେବେ ।
କୁଟୁମ୍ବ ମରାଇ କରି ବର୍ତ୍ତନ୍ତି ଯେ ପ୍ରାଣୀ
ଅଲକ୍ଷଣା ମଧ୍ୟେ ସେହି ପୁରୁଷକୁ ଗଣି ।
ପଦ୍ମାସନରେ ବସିଲା ସେ ନୃପତିମଣି
ମୋତେ ମୁକ୍ତକର କାଟ ମୋ ଶିର ଏକ୍ଷଣି ।
ଏ ଭାରତେ ମହାମଲ୍ଲ ଦ୍ୱିତୀ ନାରାୟଣ
ତବହସ୍ତେ ମଲେ ମୁହିଁ ପାଇବି କାରଣ ।
ସ୍ୱାମୀ ତୁମ୍ଭେ ତ ହୋଇଲ ମୋ ଇଷ୍ଟଦେବତା
ଆବର ମୋହର ଅଟୁ ମାତା ଆଉ ପିତା ।
ବୈଲୋଚନ ଏହିରୂପେ କହନ୍ତେ ବିନୟେ
ମାତ୍ରଳି ବୋଇଲା ରକ୍ଷାକର ଧନଞ୍ଜୟେ ।
ଜୀବନ୍ୟାସ ଶର ଯହୁଁ ଅର୍ଜ୍ଜୁନ ପେଷିଲେ
ଅମର ଭୁବନୁ ସୁଧା ବୃଷ୍ଟି କରାଇଲେ ।
ଚେତନା ପାଇ ଉଠିଲେ ସକଳ ସଇନି
ତ୍ରାହି ଅର୍ଜ୍ଜୁନ ବୋଲିଣ କଲେ ଘୋରଧ୍ୱନି ।
ନିମନ୍ତ୍ରଣ ଦ୍ରବ୍ୟଦେଲେ ସୁଭଦ୍ରାର ନାହା
ସମଦଣ୍ଡ ଘେନି ରାଜା ରାଜସୂୟେ ଯାଆ ।
ଅନେକ ସ୍ୱାନନ୍ଦେ ରାଜା ହେଲା ପରଣାମି
ମୋର ରାଜ୍ୟରେ ଆଜକ ରହ ଦେବ ସ୍ୱାମୀ ।
ମଣୋହି ଯୋଗାଡ଼ ଦେବି ଯେତେକ ପାରଇ
ମୋର ରାଜ୍ୟକୁ ସୁଲଭ ହୋଇବ ଗୋସାଇଁ ।
ପାର୍ଥ ବୋଇଲେ କା ରାଜ୍ୟେ ନାହିଁ ମୋ ଭୋଜନ
ପିତାଙ୍କ କାର୍ଯ୍ୟ ହେତୁରେ ପରେ ଦେବୁ ଅନ୍ନ ।
ଆହେ ବୈଲୋଚନ ଚଳ ତୋର ସୈନ୍ୟ ଘେନି
ଅପୂର୍ବ ଦ୍ରବ୍ୟ ନେବୁଟି ଦେଖା ଦରଶନି ।
ପାର୍ଥ ଆଜ୍ଞାରେ ସମ୍ମତ ମଦନର ବାଳ
ସେକ୍ଷଣି ଥାଟ ଚଳାଇ ତେଜିଲା ମଣ୍ଡଳ ।
ଜୟ ହେ କେଶବ କେଶୀ ବକା ତୃଣା ହରା
ଜୟ ହେ ମାଧବ ଗୋପୀ ଗୋପ ଚିତ୍ତଚୋରା
ତୁମ୍ଭ ପାଦେ ନିରନ୍ତର ରହୁ ମୋର ଆଶ
ଶାରଳା ଦାସର ସଦା ଏହି ଅଭିଳାଷ ।



## ବର୍ଣ୍ଣାନିକ ରାଜା, ବିଷ୍ଣୁକର ପଣ୍ଡା, ବେଦଶ୍ରବଣପଣ୍ଡା, ଅଙ୍ଗାରପନ୍ନଗ ଓ ଦ୍ରୁପଦରାଜାଙ୍କୁ ଅର୍ଜ୍ଜୁନଙ୍କ ନିମନ୍ତ୍ରଣ

ଏଥୁଅନ୍ତେ ମନୁରାଜା ଯୋଡ଼ି ବେନିକର
ଅଗସ୍ତିଙ୍କ ଶ୍ରୀଚରଣେ କଲେ ନମସ୍କାର ।
ଭକ୍ତିଭରେ ପୁଚ୍ଛାକଲେ କହ ତପୋବନ୍ତ
ସେହିଠାରୁ କାହିଁଗଲେ ପୁଣି ବୀର ପାର୍ଥ ।
ରାଜାର ଭକତି ଦେଖି କହିଲେ ଅଗସ୍ତି
ଯାହା ପୁଚ୍ଛାକଲ ତାହା ଶୁଣ ନରପତି ।
ଉଜାଣ ନଗ୍ର ତେଜିଣ ବୀର ଅରଜୁନ
ସମଦଣ୍ଡ ସାଜି ତହୁଁ କରିଲେ ଗମନ ।
ସୁବର୍ଣ୍ଣପୁର ବୋଲିଣ ଅଛଇ ନଗର
ତହୁଁ ପ୍ରବେଶିଲେ ପାର୍ଥ ଭଦ୍ରାନଦୀ ତୀର ।
ସେ ରାଜ୍ୟର ରାଜା ବର୍ଣ୍ଣାନିକ ଚକ୍ରବର୍ତ୍ତୀ
ତାହାର ଦୂତେ ଦେଖିଣ ଧାଇଁଗଲେ ଧାତି ।
ବିଜୟ ନରେନ୍ଦ୍ର ଚନ୍ଦ୍ରଶାଳାର ମନ୍ଦିରେ
ପ୍ରଣିପାତ ହୋଇ ପାଶେ ଜଣାଇଲେ ତାରେ ।
ସ୍ୱାମୀ ଯୁଧିଷ୍ଠି ରାଜସି ଯଜ୍ଞର ନିମନ୍ତେ
ଅର୍ଜ୍ଜୁନ ଦିଗ ବିଜୟେ ଉତ୍ତର ପ୍ରଶସ୍ତେ ।
ଏକ ଏକ ରାଜ୍ୟ ଦେବ ଦେଉଛି ଉଜାଡ଼ି
ଯେହୁ ଦୁଷ୍ଟ ହୁଏ ସେହୁ ମହାକଷ୍ଟେ ପଡ଼ି ।
ସମଦଣ୍ଡ ଘେନି ଚାଲ ଯିବା ହୋ ପାଛୋଟି
ଭକ୍ତଜନେ ଅନୁଗ୍ରହ କରଇ କିରୀଟି ।
ଭାଗ୍ୟବନ୍ତ ରାଜା ସେହୁ ସ୍ୱର୍ଣ୍ଣପୁର ପତି
ଶୁଣି ସାନନ୍ଦ ହୋଇଣ ଉଠିଲା ଝଟତି ।
ସୈନ୍ୟ ସାମନ୍ତ ଯେତେକ ତାର ବଳ ଥିଲେ
ଆଜ୍ଞା ଦ୍ୟନ୍ତେ ସଜହୋଇ ସମସ୍ତେ ଅଇଲେ ।
ନଦୀତୀରେ ଅର୍ଜ୍ଜୁନର ଆହାନିକ ବେଳେ
ସମ୍ପର୍କେ ମିଳିଣ ସ୍ୱର୍ଣ୍ଣପୁର ମହୀପାଳେ ।
ପାର୍ଥକୁ ପ୍ରଣାମକଲା ତହିଁ ନରେଶ୍ୱର
ଦେଖି ପ୍ରସନ୍ନ ହୋଇଲେ ପାଣ୍ଡବ ସୁନ୍ଦର ।
ଅକ୍ଷତ ଗୁବାକ ଦେଇ କଲେ ନିମନ୍ତ୍ରଣ
ଦଣ୍ଡଘେନି ବାହାରିଲା ରାଜା ସେହିକ୍ଷଣ ।
ନିମନ୍ତ୍ରଣ ଘେନିଣ ଯେ ଚଳେ ମହୀପତି
ତହୁଁ ଅର୍ଜ୍ଜୁନ ଚଳିଲେ ତାହାକୁ ନିମନ୍ତ୍ରି ।

ଶିବପୁର ଅଗ୍ରେ ପାର୍ଥ ପ୍ରବେଶିଲେ ଯାଇ
ବୀର ତୂର ଶବ୍ଦରେ ସିନ୍ଧୁ ଉଚ୍ଛୁଳଇ ।
ବିଷ୍ଣୁକର ପଣ୍ଡା ସେହି ରାଜ୍ୟ ଅଧିପତି
ବ୍ରାହ୍ମଣ ରାଜା ସେହି ଯେ ଶାସ୍ତ୍ରମତେ ବୃତ୍ତି ।
ମୁନେହି ବୋଇଲେ ଯାଇ ତାଙ୍କ ସନ୍ନିଧାନେ
ଉତ୍ତର ଦଗକୁ ବିଜେକଲେ ଫାଲଗୁନେ ।
ସେ ବିଷ୍ଣୁକର ବ୍ରାହ୍ମଣ ବାରତା ପାଇଣ
ବୋଲେ ରାଜ୍ୟରେ ପାଏଡ଼ା ପାର ଏହିକ୍ଷଣ ।
ଶୁଣି ସକଳେ ସେ ନଗ୍ରମଣ୍ଡନ କରିଲେ
ଯେ ଯାହାର ଘର ଦ୍ୱାରେ ପାଏଡ଼ା ପାରିଲେ ।
ବିଷ୍ଣୁକର ଭାର୍ଯ୍ୟା ନାମ ଅଟେ ଚାରୁମତି
ଅମୃତ ଯୋଗାଡ଼ କଲା ଯେହ୍ନେ ହେବ ପ୍ରୀତି ।
ବିଷ୍ଣୁଗଣ ସଙ୍ଗେ ଘେନି ଗଲା ବିଷ୍ଣୁକର
ଅର୍ଜ୍ଜୁନ ଯେ ରହିଥିଲେ ନଗ୍ରର ବାହାର ।
ପଞ୍ଚାଶଭାର ମୁକୁତା ଘେନିକରି ଧନ
ଯାଇ ଅର୍ଜ୍ଜୁନ ଛାମୁରେ କଲା ଦରଶନ ।
ବିଷ୍ଣୁକର ପଣ୍ଡା ଯାଇ କରୁ ନିଉଛାଳି
କୋଳ କରିଣ ପଣ୍ଡାକୁ ପାର୍ଥ ବେଗେ ଟେକି ।
ଚାମରାଳଟ ଢାଳନ୍ତି ତହିଁ ସର୍ବେ ମିଳି
ନଗ୍ରେ ପଶନ୍ତେ ଶୁଭଇ ଧ୍ୱନି ହୁଳହୁଳି ।
ବହୁ ଉତ୍ସବ କରନ୍ତି ତହିଁ ବିଦ୍ୱଜ୍ଜନେ
ବିଜେକଲେ ପାର୍ଥ ଇନ୍ଦ୍ରଶାଳାର ଭବନେ ।
ସର୍ବ ଅଳଙ୍କାର ପିନ୍ଧି ବିଷ୍ଣୁକର ରାଣୀ
ବନ୍ଦାପନା କଲା ପାର୍ଥେ ଅର୍ଘଥାଳି ଘେନି ।
ପାର୍ଥ ମୁଖ ଚାହିଁ ବୋଲେ ବହୁତ ପ୍ରଶଂସି
ଶୁଣ ମୁହିଁ ଏ ନଗ୍ରର ଅଟଇ ଭିକ୍ଷାସୀ ।
ବିଜୟ କରିଲ ଦେବ ମୋହର ଭବନେ
କୃତଦୋଷ ଗଲା ମୋର ତୁମ୍ଭ ଦରଶନେ ।
ଅପୁତ୍ରିକ ଥିଲି କିଛି ଦିବସ ପର୍ଯ୍ୟନ୍ତେ
ଅପୁତ୍ରକ ବୋଲି ଘୃଣା କରୁଥିଲେ ମୋତେ ।
ସ୍ୱାମୀ ମୋର ଘରେ ଆସି କଲ ଭିକ୍ଷାପାତ୍ର
ଧର୍ମବଳେ ମୁଁ ତୁମ୍ଭର ହୋଇଲି ଭକତ ।
ଦେଖି ଦୟା କଲେ ତୁମ୍ଭ ମାତା ମହାରାଣୀ
ବୋଇଲେ ପୁତ୍ରେ ଉପୁଜୁ ବିଜ୍ଞବନ୍ତ ଜାଣି ।
ଏସନକ ଆଜ୍ଞା ଯହୁଁ ଦେଲେ ଦେବୀ କୁନ୍ତୀ
ସେହିମାସ ମଧ୍ୟେ ମୁହିଁ ହେଲି ଗର୍ଭବତୀ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣସି ଗୋ ମାୟେ
କେମନ୍ତେ ଚିହ୍ନିଲ ମୋତେ ବୋଲି ଧନଞ୍ଜୟେ ।
ପଣ୍ଡାଏ ବୋଇଲେ ଦେବ ଚାଣ୍ଡାଳଙ୍କୁ ମାରି
ମୋତେ ଏ ରାଜ୍ୟରେ ଭୀମ କଲେ ଅଧିକାରୀ
ବାହାର ହୋଇ ରାଜ୍ୟରୁ ଗଲେ ଯେତେବେଳେ
ବାମଦେବ ପ୍ରୋହିତଙ୍କୁ କହିଲେ ସେକାଳେ ।
ବୋଇଲେ ହେ ବିଷ୍ଣୁକର ନ ପାରିଲୁ ଚିହ୍ନି
ପାଣ୍ଡବେ ଥିଲେ ତୋ ପୁରେ ଗୁପ୍ତରୂପ ଘେନି ।
ଚାଣ୍ଡାଳବଳଙ୍କୁ ସେହି ସଂଗ୍ରାମେ ମାଇଲେ
ପଣ୍ଡୁ ପୁତ୍ର ଭୀମ ଏହି ବୋଲି ସେ କହିଲେ ।
ପ୍ରୋହିତ ବାକ୍ୟେ ତୁମ୍ଭଙ୍କୁ ବହୁତ ଖୋଜିଲି
ଦିବାରାତ୍ର ଗିରିବନ କାହିଁ ନ ପାଇଲି ।
ତୁମ୍ଭ ଦର୍ଶନ ପାଇଲି ମୁହିଁ ଏତେକାଳେ
ଜଗନ୍ନାଥଙ୍କ କୃପାରୁ ଦେଖିଲି ଯେ ଡୋଳେ ।
ସ୍ନାନ ଆହ୍ନିକ ସାରିଣ ବୀର ଧନଞ୍ଜୟେ
ପଣ୍ଡାଘରେ ମଣୋହିକି କରିଲେ ବିଜୟେ ।
ସର୍ବ ସଇନି ଭୁଞ୍ଜିଲେ ଅତି ତୁଷ୍ଟ ମନେ
ପଣ୍ଡାଙ୍କ ଭାବେ ତୃପତ ହୋଇଲେ ଅର୍ଜ୍ଜୁନେ ।
ଆଚମନ ସାରି ଆସି ତାମ୍ବୁଳ ଭୁଞ୍ଜନ୍ତି
ପଣ୍ଡାଙ୍କ ପୁତ୍ରକୁ ଦେଖି ସାନନ୍ଦ ହୁଅନ୍ତି ।
ପୁତ୍ର କୋଳେ ଦେଲେ ବିଷ୍ଣୁ ଦାସର ଯୁବତୀ
ତୁମ୍ଭ ମାତାଯୋଗେ ମୁହିଁ ହେଲି ପୁତ୍ରବତୀ ।
ବହୁ ଅଳଙ୍କାର ତାକୁ ଦେଲେ ଦ୍ୱିତୀ ହରି
ପଣ୍ଡାଙ୍କୁ ବୋଇଲେ ଯାଅ ହସ୍ତିନା ନଗରୀ ।
ନିମନ୍ତ୍ରଣ ଯୋଗାଡ଼କୁ ଘେନି ବିଷ୍ଣୁକର
ଶିବପୁର ନଗ୍ର ତେଜି ହୋଇଲେ ବାହାର ।
ସେଠାବରୁ ଫାଲଗୁନି ଥାଟକୁ ଚଳାଇ
ଏକଚକ୍ରୀ ନଗ୍ରେ ପରବେଶ ହେଲେ ଯାଇ ।
ବୀରତୂର ବିଜିଘୋଷ ମର୍ଦ୍ଦଳ ଦାଉଣ୍ଡି
ବଜାଇ ଯାଆନ୍ତି ରଥେ ଅଷ୍ଟରତ୍ନେ ମଣ୍ଡି ।
ବକାସୁର ପରବତେ ବିଜେ ଧନଞ୍ଜୟେ
ଘୋର ବାଦ୍ୟ ଶବ୍ଦେ ଗିରି କମ୍ପମାନ ହୁଏ ।
ଏହା ଶୁଣି ଧାଇଁଗଲେ ସତ୍ୱରେ ମୁନେହିଁ
ବେଦଶ୍ରବଣ ପଣ୍ଡାଙ୍କ ଆଗେ ଯାଇ କହି ।
ସ୍ୱାମୀ କେବଣ ଦେଶରୁ ପ୍ରବେଶିଲା ଥାଟ
ଅପୁଚ୍ଛା ଅଚିହ୍ନା ଦେବ ପଶେ ପରରାଷ୍ଟ୍ର ।
ଶୁଣି କୋପ ହେଲା ବେଦ ଶରବଣ ପଣ୍ଡା
ଆସ୍ଥାନୁ ଉଠିଲା ବେଗେ ହସ୍ତେ ଧରି ଖଣ୍ଡା ।
ସାଜ ଆହେ ଦ୍ୱିଜବର ମୋର ସୈନ୍ୟଥାଟ
ପରଦେଶୀ ଯୋଦ୍ଧାଙ୍କର ଶିର ବେଗେ କାଟ ।
ରାଜା ଆଜ୍ଞାରେ ଧାଇଁଲେ ବୀରେ ଗଳଗାଜି
ପଂଖାଉଜ ସଙ୍ଗେ ଢୋଲ ବୀରତୂର ବାଜି ।
ହସ୍ତୀ ଏକ ଚଢ଼ି ବେଦଶ୍ରବଣ ପଣ୍ଡାଏ
ଦୁର୍ଦ୍ଧାରବଳ ଘେନିଣ କରିଲା ବିଜୟେ ।

ବେନିଲକ୍ଷ ପାଟଛତ୍ର ଆଲମ୍ୱ ଉଦଣ୍ଡ
ଢ଼ାଳୁଛନ୍ତି ଚାମର ଯେ ମୋହନ୍ତି ବ୍ରହ୍ମାଣ୍ଡ ।
ଗଜ ଅଶ୍ୱ ପଦାତି ସେ ଛନ୍ତି ଅକଳନା
ବହୁତ ଦଣ୍ଡ ଘେନିଣ ସେ ବେଦଶର୍ମଣା ।
ଅର୍ଜ୍ଜୁନ ସେନାଙ୍କ ପାଶେ ହେଲେ ଯାଇ ଭେଟ
ବିହରନ୍ତି ଦ୍ୱିଜମାନେ ସେ ମହାବଳିଷ୍ଠ ।
ଶ୍ରୀବତ୍ସ ଅଙ୍କିତ ଦିଶେ ସର୍ବ ଥାଟଯାକେ
ବ୍ରହ୍ମାଣ୍ଡ ଉଛୁଳିଅଛି ମାର ଶବ୍ଦ ଡାକେ ।
ବହୁ ପ୍ରତିଜ୍ଞା କରନ୍ତି କହିତ କେ ପାରି
ରାଗେ ବିପ୍ରବଳ ଲୁଟିବେ କି ସ୍ୱର୍ଗଶିରୀ ।
ଛେଲ ଚକ୍ର କୁନ୍ତ ଖଡ଼୍ଗ ମୁଦ୍ଗର ଯାଠି
ବିନ୍ଧିଲେକ ବିପ୍ରମାନେ ଏକମୁଖେ ଉଠି ।
ବାଣ ପୂରାଇ ଉଠିଲେ ଏକମୁଖ କରି
ବିନ୍ଧିଲେ ନାରାଚମାନ ଅତି କୋପକରି ।
ଅର୍ଜ୍ଜୁନଙ୍କୁ ସମ୍ଭାଳିଲେ ନିଜ ସଇନିଙ୍କି
କଦାଚିତେ କୋପ ତୁମ୍ଭେ ନ କର ତହିଁକି ।
ନ ଜାଣି କୋପ କରନ୍ତି ବ୍ରାହ୍ମଣେ ଯଦ୍ୟପି
ଏ ରାଜ୍ୟରେ ବ୍ରାହ୍ମଣଙ୍କୁ ଅଛୁ ଆମ୍ଭେ ସ୍ଥାପି ।
ମାତଳି ସାରଥିକି ଯେ ବୋଇଲେକ ପାର୍ଥ
ସେ ବିପ୍ର ରାଜା ଛାମୁକୁ ବାହା ମୋର ରଥ ।
ନ ଜାଣି ନ ଶୁଣି ସେହୁ ଥାଟ ଚଳାଇଲେ
ଅଜ୍ଞାନେ ସେ ପରଥାଟ ବୋଲିଣ ଅଇଲେ ।
ସମାଧାନ ହୋଇବ ସେ ବାରତା ପାଇଲେ
ଏ ପାଇଁ ତୁମ୍ଭେ ଭାବନା ନ କର ଯେ ତିଳେ ।
ଅରଜୁନ ଆଜ୍ଞାରେ ଯେ ମାତଳି ସାରଥି
ପବନୁ ବେଗରେ ଅଶ୍ୱ ଚାଲିଲା ସେ ଧାତି ।
ସେହିକ୍ଷଣି ଅଶ୍ୱମାନେ ଦଉଡ଼ିଲେ ବେଗେ
ପ୍ରବେଶ ହୋଇଲେ ଯାଇ ବେଦଶର୍ମା ଆଗେ ।
ଦେଖି କରି ବିପ୍ରରାଜା କରେ ଧନୁ ଧରି
ଅର୍ଜ୍ଜୁନକୁ ବିନ୍ଧିଲେକ ଶର ଗୋଟା ଚାରି ।
ପାର୍ଥ ଶରୀରେ ଭେଦିବ କାହୁଁ ସେହି ଶର
ବୋଇଲେ ଅର୍ଜ୍ଜୁନ ରହ ରହ ଦ୍ୱିଜବର ।
ପୁନଶ୍ଚ ବୋଇଲେ ତୁମ୍ଭେ ଭିକ୍ଷାଜୀବୀ ଦ୍ୱିଜ
କେଉଁ ପ୍ରକାରେ ପାଇଲ ତୁମ୍ଭେ ଏହି ରାଜ୍ୟ ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ ଧନୁର୍ଦ୍ଧାରୀ
ତୁମ୍ଭେ ଯା ପୁଛିଲ ଶୁଣ ଆଦିଅନ୍ତ କରି ।
ବଜ୍ରକବଚ ବୋଲିଣ ଥିଲା ଯେ ରାଜାଏ
ଚାରିପୁତ୍ର ଏକଝିଅ ଉତ୍ପତ୍ତି ତା ହୁଏ ।
ବକ ହିଡ଼ିମ୍ବିକ ଆଉ କୁମ୍ଭୀର କିନ୍ନର
କୁମ୍ଭୀର ଯେ ଜ୍ୟେଷ୍ଠପୁତ୍ର ନଦୀ ଅଧୀଶ୍ୱର ।

କିନ୍ନର ବୋଲି କରିଣ ତାହାର କନିଷ୍ଠ
ତାହାର ଯେ ନିଜ ରାଜ୍ୟ ମଧୁବନ ଶ୍ରେଷ୍ଠ ।
ହିଡ଼ିମ୍ବକ ବୋଲିଣ ଯେ ତାହାର ସାନୁଜ
ହିଡ଼ିମ୍ବକ ବନେ ସେହି କରେ ନିଜ ରାଜ୍ୟ ।
ତାହାର ସଙ୍ଗତେ ଥାଏ ଭଗ୍ନୀ ହିଡ଼ିମ୍ବିକୀ
କ୍ଷଣେ କୋପ କଲେ ସେହି ପୃଥ୍ୱୀ ପାରେ ଭକ୍ଷି
ହିଡ଼ିମ୍ବ ଅନୁଜ ଅଟେ ବକ ଯେ ରାକ୍ଷସ
ଯମଦଣ୍ଡ ଅବଧ ଯେ କାରେ ନାହିଁ ତ୍ରାସ ।
ଏକଚକ୍ରା ନଗ୍ରେ ସେହି ଅଟଇ ଠାକୁର
ମହା ପ୍ରତାପୀ ଅଟଇ ଜାଣ ସେ ଅସୁର ।
ସେ ରାକ୍ଷସ ଦର୍ପ ମୁହିଁ କପଟେ ନିବାରି
ତେଣୁ ଭୁଜଦଣ୍ଡେ ଏହି ରାଜ୍ୟ ଅଧିକାରୀ ।
ଅର୍ଜ୍ଜୁନ ପୁଚ୍ଛିଲେ ତୁହି ମାଇଲୁକି ବକ
କିବା ଅନ୍ୟ କେ ବଧିଲା କହ କରି ଠିକ ।
ବେଦ ଶ୍ରବଣ କହଇ ଶୁଣ କ୍ଷତ୍ରୀ ତଥ୍ୟ
ତୁ ଯେବେ ପୁଚ୍ଛିଲୁ ତାହା କହିବା ଯଥାର୍ଥ ।
ବକ ଦଇତ ବୋଲିଣ ଯେବଣ ରାକ୍ଷସ
ଯମକୁ ନ ଡରେ ସେହି ଆଉ କାକୁ ତ୍ରାସ ।
ଏକଚକ୍ରା ନଗ୍ରରେ ସେ ଅଟେ ଅଧିପତି
ତା ଭୟେ ଯମ ଏ ରାଜ୍ୟେ ନ କରେ ଅନୀତି ।
ଜଳବୃଷ୍ଟି ହେବାକୁ ସେ ଯେବେ କରେ ଇଚ୍ଛା
ଇନ୍ଦ୍ର ବୃଷ୍ଟିକଲେ ନଗ୍ରେ ପୁରେ ତାର ବାଞ୍ଛା ।
ନାନାରୋଗ ଜରାବସ୍ଥା ତାର ଭୟ ନାହିଁ
ପରରାଷ୍ଟ୍ର ଅଇଲେ ସେ ଦୂରରୁ ସାଧଇ ।
ଅସଂଖ୍ୟ ଫଳ ଫଳଇ ବସୁନ୍ଧରୀ ଏଥି
ଏପରି ସୁବିଧା ଏହି ଏକଚକ୍ରା ପୃଥ୍ୱୀ ।
ଯେ ଯେତେ ଅରଜେ ଭୋଗ କରେ ଦୁଇରାଶି
ଅଚିନ୍ତେ ପ୍ରଜାଏ ବହୁ ଉପୁଜାନ୍ତି କୃଷି ।
ଏଗାରସହସ୍ର ନଅଶ ଷାଠିଏ ଯେ ଘର
ଏକଚକ୍ର ନଗ୍ରେ ଅଛି ଜାଣ ଆହେ ବୀର ।
ତେତ୍ରିଶ ବରଷ ଦୁଇମାସ ବିଂଶଦିନେ
ପାଳି ପଡ଼ଇ ରାଜାର ଗୋଟିକ ସଦନେ ।
ଭାତ ପିଠା ଦ୍ୱିଶଗଡ଼ ପଣା ହଳବେନି
ନରବଳି ସହ ଦ୍ରବ୍ୟ ବନେ ଯିବ ଘେନି ।
ଏହି ନଗ୍ରେ ମୋର ବାସ ଶୁଣ ମହାରଥୀ
ଏଡ଼େ ବଡ଼ରାଜ୍ୟେ ମୁହିଁ କରେ ଭିକ୍ଷାବୃତ୍ତି ।
ଏମନ୍ତେ ଭିକ୍ଷା କରି ମୁଁ କାଟଇ ସମୟ
ଦିନେ ଏକମାତା ତାର ପାଞ୍ଚଟି ତନୟ ।
ଆସି ଭିକ୍ଷା କରୁଥିଲେ ଏହି ରାଜ୍ୟେ ପଶି
ବେଳଶେଷେ ମୋର ଦ୍ୱାରେ ମାଗିଲେକ ଆସି ।

ମୋ ଘରେ ରହିଲେ ସେହି ପାଞ୍ଚପୁତ୍ର ଘେନି
ଏମନ୍ତ ବଞ୍ଚିଲେ ସାତ ଦିବସ ରଜନୀ ।
ଯେଉଁ ଦିନ ମୋର ଘରେ ପଡ଼ିଲାକ ପାଳି
ପୁତ୍ର କନ୍ୟା ସହ ପତି ପତ୍ନୀ ଆମ୍ଭେ ଭାଳି ।
ଭାତ ପିଠା ଆଦି ଦୁଇଗାଡ଼ି ଭିଆଇଲୁ
ନରବଳି କେହୁ ହେବ ବିକଳେ ଭାଳିଲୁ ।
ମହାତ୍ମାଣୀ ଦୟାକଲେ ଆମ୍ଭ କଷ୍ଟ ଦେଖି
ବୋଇଲେ ମୋ ପୁତ୍ରଦେବି ନୁହଁ ତୁମ୍ଭେ ଦୁଃଖୀ
ଅଜୟ ବୋଲିଣ ତାର ଏକ ପୁତ୍ରଥିଲା
ତାକୁ ପେଷନ୍ତେ ଶକ୍ଟ ସେହି ଘେନିଗଲା ।
ପ୍ରବେଶିଲା ଆସି ସେହି ଏହି ପରବତେ
ବକ ଦୈତ୍ୟକୁ ମାଇଲା ସେହି କେଉଁମତେ ।
ମାରି ତାହାକୁ ପୁଣ ସେ ଧାରଣାରୁ ଡୋଳି
ଡେରି ଠିଆ କରିଗଲା ସେହି ମହାବଳୀ ।
ରଜନୀ ଶେଷେ ଡରିଲେ ଦେଖି ସର୍ବଜନ
ଭୟେ ପଳାଇଲେ ଦେଖି ବିକଟ ନୟନ ।
ସର୍ବେ ବିଚାରିଲେ ଥିଲା କାଲି କାହା ପାଳି
ଠାକୁରଙ୍କର ନୋହିଲା ଅବା ନରବଳୀ ।
ଆସିକରି ବେଢ଼ିଲେ ଯେ ମୋତେ ସର୍ବଜନେ
ନଗ୍ର ନାଶଗଲା ଏବେ ତୋ ଘର ଭୋଜନେ ।
ଅପଖ୍ୟାତି ଦେଇ କରି ସମସ୍ତେ ଆମ୍ଭଙ୍କୁ
ବୋଇଲେ ଯାଅ ତୁ ଏବେ ଠାକୁର ଭକ୍ଷକୁ ।
ମୁହିଁ ଯାଇକରି ହେଲି ଦୈତ୍ୟ ସନ୍ନିଧାନେ
ଭୟରେ କର ଧରନ୍ତେ ପଡ଼ିଲା ତକ୍ଷଣେ ।
ନଗ୍ରଲୋକ ଦେଖି କରି ପରମ ସାନନ୍ଦେ
ସାଧୁ ସାଧୁ ଧ୍ୱନି ଏକ ଦେଲେକ ଆନନ୍ଦେ ।
ସେ ମହାତ୍ମାଙ୍କୁ ବସାରେ ଆସିଣ ଲୋଡ଼ିଲୁ
କେଉଁଆଡ଼େ ଗଲେ ତାଙ୍କୁ ଆଉ ନ ପାଇଲୁ ।
ମୋତେ ସେ ସମସ୍ତେ କଲେ ରାଜ୍ୟ ଅଧିକାରୀ
ମହତେ ଭେଟିଲୁ ସାଧୁ ଜୀବନ ତୋହରି ।
ସେ ଯେବେ ଥାଆନ୍ତେ ତାଙ୍କୁ କରିଥାନ୍ତୁ ରାଜା
ଏବେ ତୋ ଚରଣେ ସର୍ବେ କରିବାକ ପୂଜା ।
ଶୁଣିଲୁ କିହୋ ମହାତ୍ମା ମୋହର ଚରିତ
ଏହିପରି ରାଜ୍ୟମୋତେ ହେଲା ପରାପତ ।
ଅର୍ଜ୍ଜୁନ ହସିଲେ ବିପ୍ର ବାକ୍ୟ ଶୁଣିକରି
ଯେ ଦୈତ୍ୟକୁ ମାଇଲେ ସେ ଭାଇଟି ଆମ୍ଭରି ।
ଆମ୍ଭେ ଚାରିଭାଇ ଯେବେ ଭିକ୍ଷା କରିଯାଉ
ସେହି ଭାଇ ଦୁଷ୍ଟ ବୋଲି ସଙ୍ଗରେ ନ ନେଉ ।
ତୁଳ କୃଷ୍ଣ ଅମାବାସ୍ୟା ଦିନ ଚନ୍ଦ୍ରବାର
ସ୍ୱାତୀ ନକ୍ଷତ୍ରକୁ ଭୋଗ ଅଟେ ସେଦିନର ।
ସେଦିନ ହେ ବିପ୍ର ତୁମ୍ଭେ ଭିକ୍ଷାକୁ ନ ଗଲ
ପାଦବ୍ୟଥା ହୋଇବାରୁ ଗୃହରେ ରହିଲ ।
ସେ ଦିନ ରାତି ପାହାନ୍ତେ ତୁମ୍ଭ ଘରେ ପାଳି
ନରବଳି ନ ପାଇଲୁ ବୋଲି ମନେ ଭାଳି ।
ତୁମ୍ଭେ ଯେ ବୋଇଲ ମୁହିଁ ଯିବି ଗୋ ବ୍ରାହ୍ମଣୀ
ପିଲାଙ୍କୁ ସମ୍ଭାଳ କହି କଲ ଶୋକବାଣୀ ।
ବିକଳ ଦେଖି ବୋଇଲା ତୁମ୍ଭ ଭାରିଯାଏ
ଏଘାନ୍ତି ଯିବି ମୁଁ ତୁମ୍ଭେ ଥାଅ ହୋ ପଣ୍ଡାଏ ।
ତୁମ୍ଭ ପୁତ୍ର ତୁମ୍ଭ କଷ୍ଟ ଦେଖିଣ ବୋଇଲା
ଏ ଘାନ୍ତିକ ପାଳି ତାତ ମୋହର ହୋଇଲା ।
ଦୁହିତା ବୋଇଲା ତୁମ୍ଭେ ନ ହୁଅ ବିମନ
ମୋତେ ତ ପରକୁ ନିଶ୍ଚେ କରିବ ପ୍ରଦାନ ।
ଏ ଘାନ୍ତିକି ପାଳି ତାତ ମୋତେ ଦେଇ ଶୁଝ
ଏହା ହେଲେ ଭଲ ହେବ ତୁମ୍ଭେ ମନେ ବୁଝ ।
ତୁମ୍ଭର ବିକଳ ଶୁଣୁଥିଲେ ଆମ୍ଭ ମାଏ
ତୁମ୍ଭପାଇଁ ଦେବି ମୋର ଏକଗୋଟି ପୋଏ ।
ରାତ୍ର ପାହିଲେ କାର୍ତ୍ତିକ ଶୁକ୍ଳ ଭୃଗୁବାର
ବିଶାଖା ନକ୍ଷତ୍ର ଜାଣ ଭୋଗ ସେ ଦିନର ।
ଭୀମସେନ ଅଇଲେ ଯେ ଏହି ପରବତେ
ଦୈତ୍ୟକୁ ମାରିଲେ ମାଲଯୁଦ୍ଧ ମୁଥିଘାତେ ।
ମାତା ଯେ ଆମ୍ଭର କୋନ୍ତିଭୋଜର ଦୁଲ୍ଲାଳୀ
ଜୟନ୍ତ ନାମ ବହିଲେ ଧର୍ମ ଦଣ୍ଡଧାରୀ ।
ଅଜୟନ୍ତ ବୋଲି ନାମ ସେ ଭୀମଠାକୁର
ହିଡ଼ିମ୍ବ କିନ୍ନର ଆଦି ଦୈତ୍ୟ କଲେ ଚୁର ।
ହିଡ଼ିମ୍ବିକୀ ବିଭାହେଲେ ହିଡ଼ିମ୍ବକ ବନେ
ଘଟଉତ୍କଚ ଉତ୍ପନ୍ନ ହେଲା ସେ ଉଦ୍ୟାନେ ।
ଅଜେୟ ବୋଲି କରିଣ ଯେଉଁ ପୁତ୍ରଗୋଟି
ମୁଁ ସେହି ଅର୍ଜ୍ଜୁନ ଗୁପ୍ତ ନାମ ଆମ୍ଭରଟି ।
ଜୟସେନ ଜୟରାଷ୍ଟ୍ର ଏ ଆମ୍ଭ ସାନୁଜ
ନକୁଳ ସହଦେବ ଯେ ମାଦ୍ରୀଙ୍କ ଆତ୍ମଜ ।
ତୋହର ଘରୁ ବାହାର ହେଲୁ ଯେଉଁ ଦିନେ
ଅଙ୍ଗାରପନ୍ନଗ ଜିଣିଲୁ ସୁରଭୀ ବନେ ।
ଦ୍ରୁପଦର ରାଜ୍ୟେ ଯାଇ ରହିଲୁ ଗୁପତେ
ରାଧାଚକ୍ର ବିନ୍ଧିଲୁ ଯେ ରାଜାଙ୍କଙ୍କୁ ଦେଖନ୍ତେ ।
ଶୁଣିଣ ବେଦଶ୍ରବଣ ତେଜି ମତ୍ତହସ୍ତୀ
ଅର୍ଜ୍ଜୁନଙ୍କ ପାଦତଳେ ହୋଇଲା ଭକତି ।
ଅଜଣାରେ ପଶିଲ ମୋ ରାଜ୍ୟେ କି ନିମନ୍ତେ
ଭଲ ହୋଇଛି ଭର୍ତ୍ସନା ନ କରିଛି ତୋତେ ।
ବହୁ ଉତ୍ସବ କରାଇ ସେ ବେଦଶ୍ରବଣ
ପାର୍ଥ ଚରଣେ ଭକତି କଲା ଅନୁକ୍ଷଣ ।

ପ୍ରବେଶ ହୋଇଲେ ଯାଇ ଏକଚକ୍ର ଦେଶେ
ଆପଣା ଗୃହେ ବ୍ରାହ୍ମଣ ପ୍ରବେଶ ହରଷେ ।
ତାର ଭାରିଯାର ନାମ ଅଟଇ ମାଳତୀ
ଉଷା ସମାନରେ ତାର ଦିଶେ ଜ୍ୟୋତି କାନ୍ତି ।
ତାହାର ନବର ଦିଶେ ସୁରପୁର ପ୍ରାୟେ
ଦେଖିଣ ସାନନ୍ଦ ହେଲେ ବୀର ଧନଞ୍ଜୟେ ।
ବେଦ ଶ୍ରବଣ କହଇ ଭାରିଯା ଆଗରେ
ଏ ସମ୍ପଦ ପ୍ରାପ୍ତ ମୋତେ ଏହାଙ୍କ କୃପାରେ ।
ଭିକ୍ଷାସୀ ରୂପେ ରହିଣ ଥିଲେ ଆମ୍ଭ ଗୃହେ
ବକ ରାକ୍ଷସ ବଧିଲେ ଆମ୍ଭର ସେନେହେ ।
ବେଦଶ୍ରବଣ ମୁଖରୁ ଉଦ୍ଧକଥା ଶୁଣି
ପୁତ୍ରକୁ ଘେନି ପ୍ରଣାମ କଲାକ ବ୍ରାହ୍ମଣୀ ।
ମଣୋହି ଯୋଗାଡ଼ମାନ କଲା ଦ୍ୱିଜବର
ମଣୋହି କଲେକ ପାର୍ଥ ବେଦଶର୍ମା ଘର ।
ଅନେକ ଯୋଗାଡ଼ ଦେଲା ପାର୍ଥ ସଇନିଙ୍କି
ବହୁ ସମାଦର କଲା ଯୋଦ୍ଧାଙ୍କୁ ସେ ଦେଖି ।
ଆଚମନ ସାରିଣ ସେ ପାଣ୍ଡବ ସୁନ୍ଦର
ନିମନ୍ତ୍ରଣ ବିଧି ଦେଲେ ବେଦଶର୍ମା କର ।
ବୋଇଲେ ତୁହି ଯେ ଅଟୁ ଆମ୍ଭ ଉପକାରୀ
ଆପଣା ଘରରୁ ଅଧେ ଦେଲୁ ଖାଲିକରି ।
ପ୍ରାଣୀକି ଧର୍ମ ପ୍ରାପତ ହୋଏ ଯେତେବେଳେ
ସୁବୁଦ୍ଧି ଉଦେ ହୁଅଇ ତାର ତେତେବେଳେ ।
ସବୁବେଳେ ପ୍ରାଣୀମାନେ ନ ହୁଅନ୍ତି ଦୁଃଖୀ
କିବା ପ୍ରାଣୀଏ ସର୍ବଦା ନୁହନ୍ତି ଯେ ସୁଖୀ ।
ଏହି ପୁରେ ପଡ଼ିଥିଲା ଦୁଃଖ ଯେ ସମୟେ
କର୍ମାଦରି ରହିଥିଲୁ ତୋହରି ଆଳୟେ ।
ତୁ ପୁଣି ଭିକ୍ଷାସୀ ଥିଲୁ ଆହେ ଦ୍ୱିଜବର
କର୍ମ ଫିଟନ୍ତେ ଏ ରାଜ୍ୟେ ହେଲୁ ନରବର ।
ବେଦଶର୍ମା ପ୍ରଣିପାତ ପାର୍ଥଙ୍କର ପାଦେ
ଏ ସମ୍ପଦ ପାଇଲି ମୁଁ ତୁମ୍ଭର ପ୍ରସାଦେ ।
ରାଜସୂ ଯଜ୍ଞକୁ ପଣ୍ଡା ଚଳ ଏହିକ୍ଷଣ
ପାଶୋରି ନ ପାରୁ ତୋର ଅମାୟିକ ଗୁଣ ।
ଆଜ୍ଞା ପ୍ରମାଣରେ ବେଦଶର୍ମା ସୈନ୍ୟ ଘେନି
ବାରୁଣା ଚଳିଲା ଶୁଭ ଅନୁକୂଳେ ପୁଣି ।
ସେଠାରୁ ବିଜୟ କଲେ ପାର୍ଥ ମହାମତି
ଅନ୍ୟ ଦେଶରେ ପ୍ରବେଶ ହୋଇଲେ ସେଧାତି
ନନ୍ଦାବର୍ତ୍ତୀ ବୋଲି କରି ଅଛି ନଦୀଗୋଟି
ପୁଷ୍କର ବିଜେ ଘେନିଣ ତୀର୍ଥ ନବକୋଟି ।
ନନ୍ଦାବର୍ତ୍ତକ ପର୍ବତୁ ବହେ ଧବଳାଙ୍ଗୀ
କୃଷ୍ଣ ଶୁକଳ ଅଙ୍ଗୁ ଯେ ବହଇ ବଳାଙ୍ଗୀ ।

କୃଷ୍ଣ ଶୁକ୍ଳାମ୍ବରୀ ନଦୀ ବହେ ଦୁଇ ଓଳି
ସେ ନଦୀର ସନ୍ନିଧାନେ ପାର୍ଥ ଯାଇ ମିଳି ।
ସେହି ନଦୀରେ ସ୍ନାହାନ କଲେ ଧନଞ୍ଜୟେ
ଆଦିତ୍ୟ ଅସ୍ତ ପର୍ଯ୍ୟନ୍ତ ରହିଲେ ସେଠାଏ ।
ଧୌମ୍ୟଙ୍କର ସୁତେ ସୁରେଶ୍ୱର ପୁରୋହିତ
ବିଷ୍ଣୁପୁରାଣ ଶୁଣାନ୍ତି ସେହି ଅନୁବ୍ରତ ।
ସେ ନନ୍ଦାବର୍ତ୍ତୀ ମାହାତ୍ମ୍ୟ ଅନେକ ଶୁଣାନ୍ତି
ଧର୍ମ ପୁରାଣ କହନ୍ତେ ପ୍ରବେଶିଲା ରାତି ।
ସହସ୍ର କନ୍ୟାକୁ ଘେନି ଗର୍ନ୍ଧବ ଆକାଶୁ
ଦୂରୁ ଚିହ୍ନିଲେ ପାର୍ଥଙ୍କୁ ପଥେ ଆସୁ ଆସୁ ।
ପାର୍ଥ ଚିହ୍ନି ପାଦଅର୍ଘ୍ୟେ ତାଙ୍କୁ ପୂଜାକଲେ
ଦ୍ୱିତୀୟ ଇନ୍ଦ୍ର ବୋଲିଣ ପ୍ରଣାମ କରିଲେ ।
ଗନ୍ଧ ପୁଷ୍ପରେ ଅଙ୍ଗାରପନ୍ନଗାଦି ଶେଷେ
ପାର୍ଥଙ୍କୁ ପୂଜା କରିଲେ ଅତ୍ୟନ୍ତ ହରଷେ ।
ଦୁର୍ବାକ୍ଷତ ହସ୍ତେ ଧରି ବୀର ଅରଜୁନ
ଅଙ୍ଗାରପନ୍ନଗ ହସ୍ତେ କରିଲେ ଅର୍ପଣ ।
ରାଜସୂୟାଗ ବାରତା କହିଲେ ଫାଲଗୁନି
ବହୁ ସମ୍ଭାରେ ଚଳିବ ଦେବଗଣ ଘେନି ।
ଏସନକ କଥା ଶୁଣି ବୋଇଲେ ଗର୍ନ୍ଧବ
ବାବୁରେ ସଭା ସହିତେ ଗଲେଣି ବାସବ ।
ବହୁ ଅଳଙ୍କାର ନେଇ ଅଛନ୍ତି ସଙ୍ଗତେ
ମୁହିଁ ଅଇଲି ରେ ତୋତେ ଦେଖିବା ନିମନ୍ତେ ।
ଅଙ୍ଗାରପନ୍ନଗ ବହୁ ସମାଦର କଲେ
ପାର୍ଥଙ୍କୁ ଚଳାଇ ଜଳକ୍ରୀଡ଼ାରେ ପଶିଲେ ।
ବନ ଡ଼ିଙ୍ଗର ଜିଣିଣ ଚଳିଲେ ହରଷେ
ବିଜୟ କରିଲେ ପାର୍ଥ ପାଞ୍ଚାଳର ଦେଶେ ।
ସେ ରାଜ୍ୟର ରାଜା ନାମ ଦ୍ରୁପଦ ନୃପତି
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନମନ ତା ବେନି ସନ୍ତତି ।
ଦ୍ରୌପଦୀର ପିଅର ସେ ବିପ୍ରକୁଳେ ଜାତ
ଅପମାନ ନ ସହଇ ଅଟେ ସତ୍ୟବ୍ରତ ।
ଧାର୍ମିକ ବିବେକୀ ପୁଣି ଅଟେ ମହାବିଜ୍ଞ
ବେଦଶାସ୍ତ୍ର ପୁରାଣରେ ଅଟଇ ଅଭିଜ୍ଞ ।
ଚାରିବୃନ୍ଦ ରଥ ତାର ବିଂଶବୃନ୍ଦ ହସ୍ତୀ
ନଉବୃନ୍ଦ ବାଜୀ ଦଶଲକ୍ଷଉଣୀ ପଦାତି ।
ପଞ୍ଚାଶ ରାଜା ଅଟନ୍ତି ତାଙ୍କ ପାରିଦଣ୍ଡ
ଛଅଶ ଯୋଜନ ମାଡ଼ିଅଛି ରାଜ୍ୟଖଣ୍ଡ ।
ପୁତ୍ରସମ ପ୍ରଜାପାଳେ ପୀଡ଼ା ନ ଦିଅଇ
ମାଡ଼କରୁ ଚିନାଏ ଯେ କର ସେ ଘେନଇ ।
ଦେବ ବ୍ରାହ୍ମଣେ ଭକତି ପୂଜେ ନିରନ୍ତର
ପ୍ରତ୍ୟେହ ଶାସ୍ତ୍ର ଶ୍ରବଣ କରେ ଦ୍ୱିଜବର ।

ଗଉଡ଼ ଗିରିରେ ଯାଇ ରହିଲେ ଫାଲ୍‌ଗୁନି
ସଇନି ରହିଲେ ରୁଦ୍ରବେଣୀ କୂଳ ଘେନି ।
ଆସ୍ଥାନେ ବିଜେ କରିଣ ଅଛଇ ଶିଖଣ୍ଡୀ
ଅର୍ଜୁନ ବାରତା ପାଇ ନିଜ ରାଜ୍ୟ ମଣ୍ଡିଷ୍ଟ
ସ୍ୱର୍ଣ୍ଣଘଟ ପରେ ଅଷ୍ଟରତ୍ନର କଳସ
ନେତ ପତାକା ଉଡ଼ାଇ ତାର ଚାରିପାଶ ।
ସବୁ ଦ୍ୱାରେ ରମ୍ଭା ତରୁ କୁମ୍ଭ ଯୋଡ଼ା ଯୋଡ଼ା
ଦାଣ୍ଡରେ ଛେରା ପହଁରା ପାଡ଼ନ୍ତି ପାଏଡ଼ା ।
ଏହିବେଳେ ଦେଶାଉରେ ଯାଇକରି ବେଗେ
ଜଣାଇଲେ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀର ଆଗେ ।
ସ୍ୱାମୀ ଗଉଡ଼ ପର୍ବତେ ପାର୍ଥ ବିଜେ କଲେ
ଦ୍ରୁପଦର ପୁତ୍ରେ ଶୁଣି ଆନନ୍ଦିତ ହେଲେ ।
ବଜାଇ ସେ ବୀରତୂର ଟମକ ଦାଉଣ୍ଡି
ଅନେକ ସାନନ୍ଦେ ଯାଇ ସର୍ବେ ରଥ ମଣ୍ଡି ।
ବେନିଲକ୍ଷ ପାଟଛତ୍ର ଆଲମ୍ବ ଉଦ୍ଦଣ୍ଡ
ସଜାଉଲାଗି ହୋଇଣ ଆସନ୍ତି ଯେ ଦାଣ୍ଡ ।
ବାଜେ ତହିଁ ବିକିଘୋଷ ମର୍ଦ୍ଦଳ କାହାଳୀ
ଆନନ୍ଦରେ ବଜାନ୍ତି ସେ କରି ନାଟକେଳି ।
ଭାର୍ଯ୍ୟା ପୁତ୍ର କନ୍ୟା ଆଦି କୁଟୁମ୍ବ ସହିତେ
ଉଭା ହୋଇଲେ ସମସ୍ତେ ଅର୍ଘ୍ୟ ଘେନି ହସ୍ତେ
ବସନ୍ତ ଉତ୍ସବେ ଯେହ୍ନେ ବିଜେ ବାସୁଦେବ
ତେହ୍ନେ ଆନନ୍ଦିତ ହୋଇ କଲେ ଜୟଶବ୍ଦ ।
ହସ୍ତେ ଆଲଟ ଚାମର ଯୋଦ୍ଧାମାନେ ଘେନି
ଖେଦାଇ ଅଶ୍ୱମାନଙ୍କୁ ବୁଲାନ୍ତି ସଇନି ।
ଏମନ୍ତବେଳେ ଦ୍ରୁପଦ ରାଜା ବେନିପୁତ୍ରେ
ପାଛୋଟି ଚଳନ୍ତି ସର୍ବେ ସୈନ୍ୟଙ୍କ ସଙ୍ଗତେ ।
ଅର୍ଜୁନ ବିଜେ ଗଉଡ଼ ନାମେ ଯେଉଁ ଗିରି
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ତହିଁ ବିଜେ କରି ।
ପର୍ବତ ପରେ ଉଠିଲେ ଯାଇ ବେନି ଭାଇ
ଅର୍ଜୁନର ପାଦେ ଦୁହେଁ ପ୍ରଣମିତ ହୋଇ ।
ଆସ୍ଥାନରେ ବସିଥିଲେ ବୀର ଧନଞ୍ଜୟେ
ଦୂରରେ ରହିଲେ ଘୁଞ୍ଚି ଦ୍ରୁପଦର ପୋଏ ।
ଆସ୍ଥାନର ତଳେ ଯାଇ କଲେ ନିଉଛାଳି
ଅନେକ ବିନୟ ଭାବେ ହୋଇ କୃତାଞ୍ଜଳି ।
ବୋଇଲେ ଆଜ ଦିନଟି ସୁଭାଗ୍ୟ କପାଳ
ଦ୍ୱିତୀକୃଷ୍ଣଙ୍କୁ ଦେଖିଲୁ ନୟନ ଯୁଗଳ ।
ଉତ୍ତର କୋଶଳେ ଛନ୍ତି ଯେତେକ ନୃପତି
ସବୁରି ସାଧୁ କପାଳ ସାଧୁ ସେ ଜୀବତି ।
ଅନେକ କାର୍ପଣ୍ୟ ହୋଇ ଶିଖଣ୍ଡୀ ଦ୍ୟୁମନ
ସ୍ତୁତି କରିଣ ଶୁତିଲେ ପାର୍ଥଙ୍କ ଚରଣ ।

ବହୁ କାକୁସ୍ଥ ହୋଇଣ ଦ୍ରୁପଦ କୁମରେ
ପାର୍ଥେ ବିଜେ କରାଇଲେ ରାଜ୍ୟର ଭିତରେ ।
ହାଟବାଟ ଦେଉଳ ଯେ ମଣ୍ଡପ ଜଗତୀ
ସବୁଠାରେ ଲୋକେ ରହି ପାର୍ଥଙ୍କୁ ଦେଖନ୍ତି ।
ଇନ୍ଦ୍ର ବିଜୟ କଲେକି ଆସି ମଧ୍ୟସ୍ୱର୍ଗେ
ଦେଖଣାହାରୀ ଦେଖିଲେ ତାଙ୍କୁ ସେହିବାଗେ
ସମସ୍ତେ କରରେ ଅର୍ଘ୍ୟଥାଳିମାନ ଧରି
ସର୍ବ ଗଣିକା ମଙ୍ଗଳ ଧ୍ୱନିକୁ ଉଚ୍ଚାରି ।
ଖଟି ଅଛନ୍ତି ତାହାଙ୍କୁ ଯେ ଅଷ୍ଟ ନାୟିକା
ସ୍ୱର୍ଗ ବିଳାସିନୀ ପରି ଦିଶନ୍ତି ସେ ଏକା ।
ବାଜଇ ପଖୋଳମାନ ବିବିଧ ତାଳରେ
ଜଗଜ୍ଜନଙ୍କ ମାନସ ମୋହନ୍ତି ନୃତ୍ୟରେ ।
ପଞ୍ଚାଳ ଦାଣ୍ଡରେ ଚଳିଯାନ୍ତି ସର୍ବବାଳୀ
ପାଏଡ଼ା ବସନମାନ ହୋଇଥାଏ ଧୂଳି ।
ପାଟହସ୍ତୀରେ ଚଢ଼ିଣ ଥିଲେ ଧନଞ୍ଜୟ
ଭିତର ଭବନେ ଯାଇ କରିଲେ ବିଜୟ ।
ସେବତୀ ପାଖୁଡ଼ା ବହୁ ବୃଷ୍ଟି ହେଉଅଛି
କର୍ପୂର ରଜ ଧୂଳିର ପରାଏ ହୋଇଛି ।
ଅର୍ଜୁନଙ୍କୁ ଦେଖିକରି ପଞ୍ଚାଳର ରାଜା
ବେନି ଚରଣ ପଖାଳି କଲା ପାଦପୂଜା ।
ବେନି ଲକ୍ଷ ସୁବର୍ଣ୍ଣ ଯେ ପାଦତଳେ ଥୋଇ
ଶ୍ରୀଛାମୁରେ ଉଭାହେଲା ନମ୍ରଭାବ ହୋଇ ।
ଦ୍ରୁପଦଙ୍କୁ ନମସ୍କାର କଲେ ଫାଲଗୁନି
ଜୟ ମଙ୍ଗଳ ଶବଦ ଶୁଭେ ଶଙ୍ଖଧ୍ୱନି ।
ପୁଣି ପାର୍ଥେ ନେଲେ ଚନ୍ଦ୍ରଶାଳାର ଭବନେ
ବସାଇଲେ ନେଇ ତାଙ୍କୁ ସ୍ୱର୍ଣ୍ଣ ସିଂହାସନେ ।
ଏମନ୍ତ ସମୟେ ଦ୍ରୁପଦର ପାଟରାଣୀ
ବ୍ରହ୍ମାବତୀ ନାମ ବ୍ରହ୍ମରାଜ୍ୟର ଦୁଲ୍ଲଣୀ ।
ଲକ୍ଷେକ ଯୁବତୀ ଧରି ଲକ୍ଷେ ଦୀପାବଳି
ଅର୍ଜୁନଙ୍କୁ ବନ୍ଦାଇଣ ଦେଲେ ଅର୍ଘ୍ୟ ତୋଳି ।
ଅର୍ଜୁନଙ୍କୁ ଭକ୍ତିଭାବେ ପୂଜନ୍ତେ ଦ୍ରୁପଦ
କୁଟୁମ୍ବଯାକ ତାହାର ହୋଇଲେ ସାନନ୍ଦ ।
ମଣୋହି ଯୋଗାଡ଼ମାନ ହୋଇଲା ସମ୍ପୂର୍ଣ୍ଣ
ଆହ୍ନିକ ସାରି ବିଜୟ ବାସବ ନନ୍ଦନ ।
ସମ୍ଭର୍ବେ ସଇନିଗଣ ଘେନି ବୀରପାର୍ଥ
କରନ୍ତି ମଣୋହି ସେହି ନାନାଦି ପଦାର୍ଥ ।
ରାଜେଶ୍ୱର ମହାବୀର ଆବର ଜାମାତା
ଭୋଜନ ସାରି ହରଷ ହେଲେ ଅପ୍ରମିତା ।
ମଣୋହି ସାରି ବିଜୟ କଲେ ଆଚମନେ
ବଟିକା ଚର୍ବଣ କଲେ ଯେ ବିଧି ବିଧାନେ ।

ଦିବ୍ୟ ଭବନେ ବିଜୟ ବାସବ ନନ୍ଦନ
ପାଶରେ ଖଟି ଅଛନ୍ତି ବିଳାସିନୀଗଣ ।
ସେ ଦିନକ ରୁହାଇଲେ ତାହାଙ୍କୁ ଦ୍ରୁପଦ
ରାଜ୍ୟଯାକରେ ହୋଇଲା ଅଶେଷ ପ୍ରମୋଦ ।
ନିମନ୍ତ୍ରଣ ବିଧି ତାଙ୍କୁ ଦେଲେ ଫାଲଗୁନି
ରାଜସୂୟଯାଗକୁ ଚଳ ଥାଟ ସୈନ୍ୟ ଘେନି ।
ଶୁଣିକରି ସାନନ୍ଦ ଯେ ପଞ୍ଚାଳ ନୃପତି
ହରଷେ ବୋଲେ ବାବୁ ରେ ଯିବି ମୁଁ ଝଟତି ।
ଶୁଭ ଅନୁକୂଳେ ରାଜ୍ୟୁ ବାହାର ନୃବର
ସଙ୍ଗତରେ ନେଲା ତାର ଦୁଇଟି କୁମର ।
ସମଦଣ୍ଡ ଘେନି ତହୁଁ ଚଳେ ବୀରପାର୍ଥ
ପଞ୍ଚାଳ ଦେଶୁ ବାହାରି ଯାଇ କିଛି ପଥ ।
ବୋଇଲେ ଆହେ ଶିଖଣ୍ଡୀ ହେ ଧୃଷ୍ଟଦ୍ୟୁମନ
ଉତ୍ତର କୋଶଳୁ ଯାଉଛନ୍ତି ରାଜାଗଣ ।
ସବୁ ମଣ୍ଡଳକୁ ମାଡ଼ିଯିବ ବେନିଭାଇ
ସାଧ ଅସାଧ ରାଜାଙ୍କୁ ଯିବ ସଙ୍ଗେ ନେଇ ।
ପୁଣି କହିଲେକ ଯାଇ ବାରୁଣାରେ ଥିବ
ମୋର ଯିବା ଯାଏ ରାଜାଗଣ ସମ୍ଭାଳିବ ।
ଅର୍ଜୁନଙ୍କ ଆଜ୍ଞାପାଇ କୁମାର ଶିଖଣ୍ଡୀ
ଯେ ଆଜ୍ଞା କହି ବଜାଇ ଟମକ ଦାଉଣ୍ଡି ।
ଦକ୍ଷିଣ ମୁଖ ହୋଇଣ କଲେକ ଗମନ
ତହୁଁ ପ୍ରୟାଣ କରିଲେ ବୀର ଅରଜୁନ ।
ଜୟ ଜଗନ୍ନାଥ ବାରାନିଧିକୂଳବାସୀ
ନୀଳଭୂଧରେ ବସିଛୁ ତୁହି ହୃଷିକେଶୀ ।
ବାରିଧି ମନ୍ଥନେ ଦେବ ପାଇଲୁ ଚଞ୍ଚଳା
ପଡ଼ିଦାତ୍ରୀ ହୋଇ ହେଲେ ତୋର ଗଳାମାଳା
ଯମେଶ୍ୱର ମହାଲିଙ୍ଗ ତୋର ପାଦ ପୂଜି
ବଟତଳେ ରହି ତୋତେ ଏକଲୟେ ଭଜି ।
ଅତ୍ୟନ୍ତ ସୁନ୍ଦର ମୁଖ ତୋ ଚକାନୟନ
ବେଦ ହେତୁ ଶଙ୍ଖାସୁର କରିଲୁ ନିଧନ ।
କୋଟି ତୀର୍ଥବାରି ଘେନି ଦେବତା ପୁଷ୍କର
ନିତି ଅଭିଷେକ କରେ ତୋହର ପୟର ।
ସକଳ ଅମର ତୋର ପାଶେ ଆସି ନିତି
ଭକ୍ତିଭାବେ ମଜ୍ଜି ଯୁଗ୍ମଚରଣ ପୂଜନ୍ତି ।
ଗନ୍ଧର୍ବ କିନ୍ନର ଯକ୍ଷ ସୁର ସିଦ୍ଧମୁନି
ସାଦରେ ପୂଜା କରନ୍ତି ତୋର ପାଦବେନି ।
ସ୍ୱାମୀ ଅଶୁଭକୁ ଶୁଭ କରୁ ଦେବ ତୁହି
ଯୁଗାନ୍ତରେ ତୁହି ଏକମାତ୍ର ଥାଉ ରହି ।
ସତ୍ୟରେ ହଳଧରଙ୍କ ହୋଇଲୁ ସାନୁଜ
ସଦା ପ୍ରସନ୍ନ ବଦନ ତୋର ଦେବରାଜ ।
ଭକ୍ତଙ୍କ ହୃଦକମଳେ ସଦା ତୋର ବାସ
ଯେ ତୋତେ ଧିଆଏ ତାର ପୂରାଉ ମାନସ ।
ରୁଦ୍ରଦେବତା ଦହିଲା ଯହୁଁ ପଞ୍ଚଶର
କାଳେ ତାକୁ ଜାତକଲୁ କରି ତୋ କୁମର ।
ତୁଳସୀବଲ୍ଲଭ ଯୁଗ୍ମ ପାଦକମଳରେ
ଶାରଳାଦାସର ମନ ରହୁ ନିରନ୍ତରେ ।



## ଅର୍ଜୁନଙ୍କର ଦୃଢଦସେନ ରାଜା ଓ ଜମାଗୋଷ୍ଠ ରାଜାଙ୍କ ସହିତ ଯୁଦ୍ଧ ଓ ଜୟ ଏବଂ ଜମାଗୋଷ୍ଠ ରାଜାର ବନ୍ଧନ

ପୁନରପି ପୁଚ୍ଛାକଲେ ମନୁ ଦଣ୍ଡଧର
ଏଥୁଅନ୍ତେ କିସ ହେଲା କହ ମୁନିବର ।
ଦ୍ରୁପଦ ବେନି ପୁତ୍ରଙ୍କୁ ପେଷି ଧନଞ୍ଜୟ
ପୁନଶ୍ଚ କେଉଁ ରାଜ୍ୟକୁ କରିଲେ ବିଜୟ ।
ଏହି କଥା ଶୁଣିବାକୁ ଶ୍ରଦ୍ଧା ହୁଏ ମୋର
ତୁମ୍ଭ ମୁଖରୁ ଶୁଣିଲେ ଚିତ୍ତ ହେବ ସ୍ଥିର ।
ଅଗସ୍ତି କହିଲେ ଶୁଣ ମନୁ ଦଣ୍ଡଧର
ଶାଳକେ ବିଦାୟ କରି ପାର୍ଥ ଧନୁର୍ଦ୍ଧର ।
ତହୁଁ ପ୍ରୟାଣ କରିଣ ଦଣ୍ଡ ବାହିଗଲେ
ଭରତ ମଣ୍ଡଳେ ଯାଇ ପ୍ରବେଶ ହୋଇଲେ ।
ଭ୍ରାତ ବୋଲି କରିଣ ଯେ ତହିଁର ନୃପତି
ଦ୍ରୁପଦ ରାଜାର ସେହି ପୁତୁରା ଅଟନ୍ତି ।
ପାର୍ଥ ଦିଗବିଜେ ଚରଗଣେ ଯେ ଜଣାଇ
ଦଣ୍ଡଘେନି ପାଛୋଟିଣ ଆସେ ନରସାଇଁ ।
ଅର୍ଜୁନକୁ ଦରଶନ କଲା ବେଗେ ଆସି
ନିମନ୍ତ୍ରଣ କଲା ପାର୍ଥ ତା ରାଜ୍ୟେ ନ ପଶି ।
ରାଜସୂୟ ଯାଗ ବୋଲିଣ ହେବ ମହାସଭା
ସମଦଣ୍ଡ ଘେନିକରି ବହନରେ ଯିବା ।
ଯେତେ ପାରୁ ସୈନ୍ୟଆଦି ଦରଶନୀ ଧନ
ଘେନି ଚଳ ବିଳମ୍ବ ନ କରି ତୁ ରାଜନ ।
ଅର୍ଜୁନ ବଚନେ ଚଳିଗଲେ ଦଣ୍ଡପତି
ଦିଗବିଜେକୁ ଅର୍ଜୁନ ଚଳିଲେ ଝଟତି ।
ଶଙ୍ଖପୁର ବୋଲିକରି ନଗର ଗୋଟିଏ
ତହିଁରେ ନୃପତି ଅଟେ ଜମାଗୋଷ୍ଠ ରାୟେ ।
ସେହି ରାଜା ଅଟଇ ଯେ ବଡଇ ଧାର୍ମିକ
ପର୍ଶୁ ଏକ ଧରିଥାଏ ଅତ୍ୟନ୍ତ ବିବେକ ।
ହିରଣ୍ୟକ ବଂଶେ ସେହୁ ହୁଏ ଉତପତ୍ତି
ଯମ ଦେବତାହୁଁ ତାର ଆନେ ନାହିଁ ଭକ୍ତି ।

ଲୁହାର ଯମ ପ୍ରତିମା ଏକ କରିଥାଇ
ମହିଷ ବାହନେ ତାଙ୍କୁ ବିଶ୍ରାମ କରାଇ ।
ମନ୍ଦାର ପୁଷ୍ପ ଦେଇଣ କରଇ ସେ ପୂଜା
ରୁଧିର ପୋଡ଼ାମାଂସକୁ ଦେଇଥାଇ ଭୋଜା ।
ବାଳକକାଳରୁ ସେହି ଯମରେ ଭକତି
ଆୟୁଷ ପାଇଲା ସେହି ଦ୍ୱାପରନ୍ତ ପ୍ରତି ।
ତିନିଲକ୍ଷ ତେୟାଶୋଇ ସହସ୍ର ବରଷେ
ପ୍ରସନ୍ନେ ଧର୍ମ ଦେବତା ମିଳିଲେ ତା ପାଶେ ।
ବୋଇଲେ ତାହାକୁ ଏହା ନରଜନ୍ମ ହୋଇ
ଯମ ଦେବତାଙ୍କ ପୂଜା ନ କରନ୍ତି କେହି ।
ତୁହି କିପାଁ ଆରାଧନା କଲୁ ମୋତେ ରାଜା
କେଶବ ମନ୍ତ୍ରରେ ମୋତେ କରୁଥିଲୁ ପୂଜା ।
ମହାକାଳ ଶାନ୍ତିକାଳ ଏହି ବେନି ମନ୍ତ୍ରେ
ଆପଣଙ୍କୁ ପୂଜା ମୁହିଁ କରୁଥାଇ ନିତ୍ୟେ ।
ମୃତ୍ତିକା ମନ୍ତ୍ର ଆବର ଗୁଣମନ୍ତ୍ର ପାଠେ
ତୁମ୍ଭଙ୍କୁ ସେବଇ ପ୍ରଭୁ ଥାଇ ମୋର ରାଷ୍ଟ୍ରେ ।
ଯମଦେବ ବୋଇଲେ ତୁ ଜନ୍ମେଣ ମାନବ
ଯମ ସେବା ପୂଜାକରି ଜନ୍ମାଇଲୁ ଭାବ ।
ଥାଅ ଏବେ ରାଜା ତୁହି ଏହି ମଧସ୍ୱର୍ଗ
ମୋତେ ପୂଜାକରି ଚିର ମହୀ କର ଭୋଗ ।
ପୁଣି ସାନନ୍ଦେ ପ୍ରସନ୍ନ ହୋଇଣ ଶମନ
ତା ଦକ୍ଷକରେ ଲେଖିଲେ କାଳଚକ୍ର ଚିହ୍ନ ।
ଯେବା ମଧସ୍ୱର୍ଗ ତୋତେ ହୋଇବ ଅସାଧ
ନାମ ଲେଖି ପୋଛିଲେ ଯେ ନିଶ୍ଚେ ହେବ ବଧ
ଶମନ ପ୍ରସନ୍ନେ ତାର ମହିମା ଏସନ
ମହୀରେ ନୃପତି କେହି ତାକୁ ନାହିଁ ସମ ।
ଶଙ୍ଖମଣ୍ଡଳରେ ସେହୁ ଅଟେ ଅଧିପତି
ଯମଦେବକୁ ଭକତି କରେ ଦିବାରାତି ।
ଯମ କାଳଚକ୍ର ଚିହ୍ନ ବହେ ଦକ୍ଷପାଣି
ଇହଲୋକ ରାଜାକୁ ସେ ନଜରେ ନ ଗଣି ।
ବଡ଼ ଧାର୍ମିକ ଅଟଇ ସେହି ରାଜା ମର୍ତ୍ତ୍ୟେ
ମୃତ୍ୟୁ ଚିହ୍ନ ବହଇ ସେ ତାର ବ ମହାତେ ।
ଏସନ ମହିମା ଶୁଣି ସେ ଦରଦସେନ
ଭାଖାମଣ୍ଡଳର ସେହୁ ଅଟଇ ରାଜନ ।
କର ମାଗିଲା ଦରଦସେନ ନରପତି
ଚାର ପେଷିଲା ସେ ଜମାଗୋଷ୍ଠ ରାଜା କତି ।
ଦରଦସେନ ଆଜ୍ଞାରେ ଚଳିଲେ ମୁନେହି
ଜମାଗୋଷ୍ଠ ରାଜା ଆଗେ ବାର୍ତ୍ତା ଯାଇଁ କହି ।
ଦରଦସେନ ଶ୍ରୀମୁଖ ଦେଇଅଛି ତୋତେ
କର ଦେବୁ ଦେଇଥିଲୁ ପୂର୍ବେ ତୁହି ମୋତେ ।
ଏହିପରି ଆଜ୍ଞାଦେଲେ ସେ ଦରଦସେନ
ଆମ୍ଭର ହସ୍ତରେ ରାଜା ଦିଅ ସେହି ଧନ ।
ଜମାଗୋଷ୍ଠ ବୋଲେ କିରେ ତୁମ୍ଭ ଜ୍ଞାନ ନାହିଁ
କି କର ଦେବି ସେ ଆସୁ ତାର ଦଣ୍ଡ ବାହି ।
ବାହୁଡ଼ିଣ ଦେଶାଉର ଗଲେ ନିଜ ଦେଶ
ବାର୍ତ୍ତା କହିଲେ ଦରଦସେନ ରାଜା ପାଶ ।
ସ୍ୱାମୀ ଜମାଗୋଷ୍ଠ ତୋତେ କଲା ଅପମାନ
ବୋଇଲା ନ ଦେବି କର ଆସୁ ଘେନି ସୈନ୍ୟ ।
ଚାରମୁଖୁଁ ବାର୍ତ୍ତା ପାଇ ସେ ଦରଦରାଜ
ମନ୍ତ୍ରୀକି ବୋଇଲା ବେଗେ ମୋର ଦଣ୍ଡସାଜ ।
ସାଜ ବୋଲିଣ କହନ୍ତେ ବାଜିଲା ଟମକ
ମଣ୍ଡିଲେ ଯେ ରଥ ଗଜ ମାହୁନ୍ତ ଯେତେକ ।
ତିନିପଦ୍ମ ରଥୀ ତାର ପାଞ୍ଚପଦ୍ମ ହସ୍ତୀ
ଦଶପଦ୍ମ ହୟ ଶତକ୍ଷଉଣୀ ପଦାତି ।
ଦଣ୍ଡ ଘେନିଣ ବାହାର ହେଲେ ମହାରାୟ
ଆକାଶ ଦିଶିଲା ଘୋର ଅନ୍ଧକାର ପ୍ରାୟ ।
ପୃଥ୍ୱୀ କମ୍ପିଲା ଦରଦସେନ ସୈନ୍ୟଯାନ୍ତେ
ଉତ୍ତରଦିଗ ରାଜାଏ ପଳାଇଲେ ତ୍ରସ୍ତେ ।
ବନେ ପଶିଲେ ରାଜାଏ ଭୟ ପାଇକରି
କି ଜାଣି ରାଜ୍ୟ ନ ନିଏ ଆମ୍ଭଙ୍କୁ ନ ମାରି ।
ଏପରି ସକଳ ରାଜ୍ୟେ ପଡ଼ିଲା ଚମକ
ଆକାଶ ଉଛୁଳି ପଡ଼େ ଘୋର ବାଦ୍ୟ ଡାକ ।
ସମଦଣ୍ଡ ଘେନି ଭାଖାମଣ୍ଡଳାଧିକାରୀ
ଶଙ୍ଖମଣ୍ଡଳକୁ ଆସି କରିଦେଲେ ଜୁରି ।
କାର୍ତ୍ତିକ ଶୁକ୍ଳପକ୍ଷ ଚୌଠି ରବିବାର
ଜ୍ୟେଷ୍ଠାନକ୍ଷତ୍ର ଯେ ନବଘଡ଼ି ସେ ଦିନର ।
ଶଙ୍ଖନବର ବେଢ଼ିଲା ସେ ଦରଦସେନ
ଚତୁର୍ଦ୍ଦିଗେ ଉଲ୍‌କାପାତ ହେଲା ଘନ ଘନ ।
ଆସ୍ଥାନେ ବିଜେ କରିଛି ନୃପ ଜମାଗୋଷ୍ଠ
ଦେଶାଉରେ ଜଣାଇଲେ ପଡ଼ିଲା ସଙ୍କଟ ।
ବଡ଼ ଆକଟେ ବାହିଲା ଦରଦ ନୃପତି
ତୁମ୍ଭ ନବର ବେଢ଼ିଲେ ଦେବ ନିଶାରାତି ।
ଏକ ଏକ ଯୋଦ୍ଧା ପୃଥ୍ୱୀ ପାରନ୍ତି ସେ ଜିଣି
ସମୁଦ୍ର ପ୍ରାୟେ ଶୁଭୁଛି ତାଙ୍କ ମୁଖଧ୍ୱନି ।
ଜଗତୀରେ ଉଠି ରାଜା ଚାହିଁଲେକ ଥାଟ
ଚାରିଆଡ଼େ ବେଢ଼ିଛନ୍ତି ନାହିଁ ଆଉ ବାଟ ।
ଲଙ୍କାପୁରକୁ ବେଢ଼ିଛି ଯେସନେ ବାରିଧି
ସେହିପରି ରହିଛନ୍ତି ବେଢ଼ି ସର୍ବଯୋଧୀ ।
ଗଡ଼ର ବାହାରେ ଥିଲାଯେତେ ନଗ୍ରଦେଶ
ସେ ସମସ୍ତ ଜୁରକରି ନେଲା ଧନକୋଷ ।

ବନ ଜନ୍ତୁଗଣ ସବୁ ପକାଇଲେ ମାରି-
ମୁଣ୍ଡମାଳ ରୁଣ୍ଡ କଲେ ଗିରିସମ କରି ।
ତାହା ଦେଖି ବୋଲେ ମନ୍ତ୍ରୀ ଶୁଣ ଜମାଗୋଷ୍ଠ
ତୋତେ ବେଢ଼ିଲାଣି ଆସି ଦରଦର ଥାଟ ।
ଆମ୍ଭ ଯୋଦ୍ଧା ସୈନ୍ୟ ତାଙ୍କୁ ନୋହିବେ ସମାନ
ପ୍ରଚଣ୍ଡ ବ୍ରହ୍ମସାହୀକି କଲା ସେ ନିଧନ ।
ଆଉ ରାଜା ତାକୁ ସମ ନାହିଁ ରବିତଳେ
କ୍ଷତ୍ରିବର ବୋଲାଏ ସେ ଉତ୍ତର କୋଶଳେ ।
ଶୁଣି ରାଜା ସହସ୍ରେକ ଚାରଙ୍କୁ ରାଇଲା
ସେମାନଙ୍କୁ ଏହିପରି ଆଦେଶ ବିହିଲା ।
ତୁମ୍ଭେମାନେ ଆଜରାତ୍ରେ ଗୁପ୍ତଭାବେ ଯିବ
ଦରଦ ଥାଟର ମଧ୍ୟେ ପ୍ରବେଶ ହୋଇବ ।
ତାଙ୍କ ମଧ୍ୟେ ରହିଥିବ ମାୟା ରୂପ ଧରି
ଅଶ୍ୱ ଗଜ ସୈନ୍ୟ କେତେ ବୁଝ ତଥ୍ୟକରି ।
ବହନ ଯାଇଣ ତାର ଦଣ୍ଡ କଲି ଆସ
ଦେଖିଣ ପୋଛିବି ତାର ସର୍ବେ ହେବେ ନାଶ ।
ରାଜାର ବଚନେ ଗୁପ୍ତେ ଗଲେ ଚାରଗଣ
କପଟେ ହୋଇଲେ ସେହୁ ଭିକ୍ଷୁକ ବ୍ରାହ୍ମଣ ।
ଥାଟ ଭିତରେ ପଶିଲେ ସେ ମହା ନିଶାରେ
ଥାଟ ମଧ୍ୟେ ମାଗନ୍ତି ସେ ଭିକ୍ଷା କପଟରେ ।
ରାତ୍ର ଦିବସରେ ଚାରେ ବୁଲି ଅନୁବ୍ରତେ
କଳନା ନ ପାନ୍ତି ତାର ସୈନ୍ୟ ଛନ୍ତି କେତେ ।
ଭିକ୍ଷୁକବେଶେ ଭ୍ରମିଣ ତଣ୍ଡୁଳ ମାଗନ୍ତି
ମନେ ମନେ ଦରଦର ସୈନ୍ୟ କଳୁଥାନ୍ତି ।
ରାତ୍ର ହୁଅନ୍ତେ ସକଳେ ଯେଝା ବାସେ ଯାଇ
ଅନ୍ନ ଭୁଞ୍ଜିଣ ଆସନ୍ତି ଗୃହରେ ନ ଶୋଇ ।
କକ୍ଷାବନ୍ତ ରାଜା ସେହୁ ରହିଛି ସମ୍ଭାରେ
ସପ୍ତପୁର କରି ବେଢ଼ିଛନ୍ତି ଗଡ଼ଦ୍ୱାରେ ।
ଜମାଗୋଷ୍ଠ ରଣ ତାକୁ ନ ଦିଏ ସମ୍ମୁଖେ
ଗଡ଼ରୁ ବାହାର ନୁହେ ରହିଥାଏ ସୁଖେ ।
ସଂଗ୍ରାମ ନ ଦିଏ କିମ୍ବା ନ ଦିଅଇ ଧନ
ଆସୁ ରଣ କରୁ ବୋଲି ସେ ଦରଦସେନ ।
ଡ଼ଗରଙ୍କ ମୁଖବାର୍ତ୍ତା ପାଇବା ନିମନ୍ତେ
ନବର ବେଢ଼ିଛି ରାଜା ଛବର୍ଷ ପର୍ଯ୍ୟନ୍ତେ ।
ସସ୍ତଚାର ପେଶିଛନ୍ତି ତହିଁ ଦିବାରାତି
କଳି ନ ପାରନ୍ତି କେତେ ରଥୀ ଯେ ପଦାତି ।
ସମର ନ ପାଇଲେ ନ ଘୁଞ୍ଚେ ନୃପମଣି
ଆପଣା ରାଜ୍ୟରୁ ଅନ୍ନ ବହନ୍ତି ପଲାଣି ।
ଜମାଗୋଷ୍ଠ ବାହାରକୁ ବାହାର ନୁହଇ
ନବବର୍ଷ ହେଲା ଗଡ଼ ବେଢ଼ି ରହିଛଇଁ ।

କର ନ ପାଇଲେ ଯେହୁ କେଭେ ନ ଫେରଇ
ଦରଦସେନ ରହିଲା କୃଷି ଉପୁଜାଇ ।
ଆପଣାର ରାଜ୍ୟପ୍ରାୟ କଲା ତାର ରାଷ୍ଟ୍ର
ନିର୍ଭୟରେ ରହିଲା ସେ ଦରଦର ଥାଟ ।
ଦ୍ୱାଦଶବର୍ଷ ବେଢ଼ିଲା ଦରଦ ନୃପତି
ଗୁପ୍ତେ ଚାର ପେଷେ ଜମା ଗୋଷ୍ଠ ନରପତି ।
ଦ୍ୱାଦଶ ବରଷ ବୁଲି ବୁଲି ଚାରଗଣ
ରାଜାକୁ ବୋଇଲେ କଳି ନ ପାରିଲୁ ସୈନ୍ୟ ।
ସାଧୁ ମହିମା ଦରଦସେନ ନରପତି
ସାଧୁ ଜମାଗୋଷ୍ଠ ତାକୁ ନ କରଇ ଭୀତି ।
ଗଡ଼ର ଭିତରେ ରାଜା ସର୍ବ ଥିଲା ସଞ୍ଚି
ଦ୍ୱାଦଶବର୍ଷ ହୋଇଲା ସମ୍ଭାରେ ରହିଛି ।
ଜମାଗୋଷ୍ଠକୁ ଦରଦ ବେଢ଼ିଥିବା କାଳେ
ଶାଖା ନଗ୍ରେ ଧନଞ୍ଜୟ ଯାଇ ବିଜେ କଲେ ।
ପାର୍ଥ ଆଗେ ଜଣାଇଲେ ଯାଇଁ ଦେଶାଉର
ଜମାଗୋଷ୍ଠ ଦରଦର ହୋଇବ ସମର ।
ବାରବର୍ଷ ହୋଇଲାଣି ଦରଦ ଯାଇଣ
ଜମାଗୋଷ୍ଠ ନଗରକୁ ରହିଛି ବେଢ଼ିଣ ।
ଜମାଗୋଷ୍ଠ ରାଜା ତାକୁ ସଂଗ୍ରାମ ନ ଦିଏ
ତେଣୁକରି ଛାଡ଼ିକରି ଦରଦ ନ ଯାଏ ।
ଅମରଚୂଡ଼ ପର୍ବତେ ବିଜେ ଫାଲଗୁନି
ପାଶେ ଜଣାଇଲେ ଜୟ ବିଜୟ ଯେ ବେନି ।
ସ୍ୱାମୀ ଦୁଇ ରାଜାଙ୍କର ସମର ହୋଇବ
ମଧ୍ୟେ ରହି ମିଶାଇବା ଚାଲ ଆମ୍ଭେ ଦେବ ।
ଅର୍ଜୁନ ବୋଇଲେ ଆହେ ନୁହଇ ଏମନ୍ତ
ଅଜାଣେ ଗଲେ ପ୍ରମାଦ ହୋଇବ ବହୁତ ।
ସୁରେଶ୍ୱର ପ୍ରୋହିତଙ୍କୁ ଆଜ୍ଞାଦେଲେ ପାର୍ଥ
ଦରଦସେନ ପାଶକୁ ଲେଖ ଖଣ୍ଡେ ପତ୍ର ।
ଆଜ୍ଞା ପରମାଣେ ସେହୁ ସୁରେଶ୍ୱର ମୁନି
ଲେଖନ ଧରି ଲେଖିଲେ ତାଳପତ୍ର ଘେନି ।
ଶ୍ରୀ ଆଦି ଅନାଦିଙ୍କର ଚରଣେ ଶରଣ
ଶ୍ରୀମୁଖ ଲେଖୁଛ ଆମ୍ଭେ ବୁଝିବା କାରଣ ।
ଚନ୍ଦ୍ର ଦେବଙ୍କର ବୁଧ ଅଟନ୍ତି ଯେ ସୁତ
ବୁଧପୁତ୍ର ପୁରୁରବା ଜଗତେ ବିଖ୍ୟାତ ।
ସସାଗରା ପୃଥିବୀରେ ସେହି ଅଧିପତି
ସପ୍ତସିନ୍ଧୁ ନବଦ୍ୱୀପ ନାମ ଦେଇଛନ୍ତି ।
ପୁରୁରବାର ନନ୍ଦନ ଆୟ ମହୀପାଳ
ସମଗ୍ର ପୃଥ୍ୱୀ ହୋଇଲା ଯାଙ୍କ କରତଳ ।
ଆୟର ନନ୍ଦନ ହେଲେ ନୃପତି ନହୁଷ
ଇନ୍ଦ୍ରପଦେ ବସିଲେ ଏ ଅମରଙ୍କ ପାଶ ।

ନହୁଷଙ୍କର ନନ୍ଦନ ହୋଇଲେ ଯଯାତି
ଯଯାତିଙ୍କର ନନ୍ଦନ ପ୍ରବୀର ନୃପତି ।
ପ୍ରବୀର ନନ୍ଦନ ହେଲେ ମନୁ ନାମେ ବୀର
ଅନୁପମ ଚକ୍ରବର୍ତ୍ତୀ ଏହାଙ୍କ କୁମର ।
ଅନୁପମଙ୍କ ନନ୍ଦନ ଅଟଇ ସମୀର
ଦୁଷ୍ମନ୍ତ ନାମେ କୁମର ହୋଇଲେ ତାଙ୍କର ।
ଏହାଙ୍କର ମହିମା ଯେ ନ ଯାଇ କଳନ
ସମୁଦ୍ର ଘୁଞ୍ଚାଇଦେଲେ ଅଶୀସସ୍ର ଯୁଣ ।
ସମୁଦ୍ର ଭିତରେ ସେହୁ ଖମ୍ଭେକ ପୋତିଲେ
ସେ ଖମ୍ଭ ଲଙ୍ଘି ସମୁଦ୍ର ଆଉ ନ ଅଇଲେ ।
ଦୁଷ୍ମନ୍ତଙ୍କର ନନ୍ଦନ ହୋଇଲେ ଭରତ
ଆପଣାର ନାମେ ଦେଲେ ଏ ଭୂମି ଭାରତ ।
ଭୂମନ୍ୟୁ ନାମରେ ହେଲେ ଭରତ କୁମର
ଏ ରାଜା ମହାବଳିଷ୍ଠ ଆଉ ଧନୁର୍ଦ୍ଧର ।
ମହାବୁଦ୍ଧିମନ୍ତ ହେଲେ ଏହି ଯେ ଭୂମନ୍ୟୁ
ସବୁଶାସ୍ତ୍ର ସାଧି ଭୂତ ଭିବିଷ୍ୟତ ଜ୍ଞାନୁ ।
ଏ ପୃଥ୍ୱୀର ପୁଣ ସ୍ଥାନମାନ ଠୂଳକଲେ
ପ୍ରଜାଙ୍କୁ ବସାଇ ନବସୃଷ୍ଟି ନାମ ଦେଲେ ।
ସୁହୋତ୍ର ନାମରେ ହେଲେ ଭୂମନ୍ୟୁ କୁମର
ଏହାଙ୍କ ନନ୍ଦନ ହେଲେ ହସ୍ତି ନାମେ ବୀର ।
ହସ୍ତିନା ନଗ୍ରକୁ ଏହି ରାଜା ବସାଇଲେ
ଅଜାମିଳ ଏହାଙ୍କର କୁମର ହୋଇଲେ ।
ଅଜାମିଳଙ୍କ ନନ୍ଦନ ହେଲେ ସମ୍ବରଣ
ବିଶାପଳ ମାଡ଼ କକ୍ଷ କଲେ ଏ ଭିଆଣ ।
ବିଭା ହେଲେ ଏ ସୂର୍ଯ୍ୟଙ୍କ ଦୁହିତା ତପତୀ
ସୂର୍ଯ୍ୟଙ୍କୁ ପୂଜା କରନ୍ତି ଏହି ନିତିପ୍ରତି ।
ସମ୍ବରଣ ବୀର୍ଯ୍ୟେ କୁରୁ ନାମେ ହେଲେ ପୁତ୍ର
ଏହାଙ୍କର ପୁତ୍ର ହେଲେ ପୃଥୁ ନରନାଥ ।
ପୃଥୁଙ୍କ ପ୍ରତୀପ ନାମେ ଏକପୁତ୍ର ହେଲା
ପ୍ରତୀପଙ୍କ ଅଉରସେ ଶାନ୍ତନୁ ଜନ୍ମିଲା ।
ଏ ରାଜା ଗଙ୍ଗାଦେବୀଙ୍କୁ ବିବାହ ହୋଇଲେ
ଜାହ୍ନବୀ ଦେବୀଙ୍କଠାରୁ ଭୀଷ୍ମ ଜାତ ହେଲେ ।
ଯୁଦ୍ଧେ ପର୍ଶୁରାମଙ୍କୁ ଏ କଲେ ପରାଜୟ
ମହୀରେ କ୍ଷତ୍ରିୟ ନାହିଁ ଏହାଙ୍କ ପରାୟ ।
ପୁନଶ୍ଚ ସତ୍ୟବତୀଙ୍କି ଶାନ୍ତନୁ ନୃବର
ବିବାହ ହୁଅନ୍ତେ ହେଲେ ଦୁଇଟି କୁମର ।
ଚିତ୍ରାଙ୍ଗଦ ଯେ ବିଚିତ୍ରବୀର୍ଯ୍ୟ ଦୁଇଗୋଟି
ଯୁବାକାଳେ ନାଶ ଗଲେ ଏ ଦୁଇଭାଇଟି ।
ଦୁଇ ଭାଇଙ୍କର ହେଲେ ଦୁଇଟି କୁମର
ଧୃତରାଷ୍ଟ୍ର ଆବର ଯେ ପଣ୍ଡୁ ଧନୁର୍ଦ୍ଧର ।

ପଣ୍ଡୁଙ୍କର ହୋଇଲେକ ପାଞ୍ଚୋଟି ନନ୍ଦନ
ଜ୍ୟେଷ୍ଠ ପୁତ୍ର ଅଟନ୍ତି ଯେ ଯୁଧିଷ୍ଠି ରାଜନ ।
ଏହାଙ୍କ ସାନୁଜ ହେଲେ ଭୀମ ମହାବଳ
ଗଦା ମଲ୍ଲଯୁଦ୍ଧେ ସମ ନାହିଁ ରବିତଳ ।
ଏହାଙ୍କ ସାନୁଜ ଆମ୍ଭେ ଆମ୍ଭ ନା ଅର୍ଜ୍ଜୁନ
ଶ୍ରୀକୃଷ୍ଣ ଆମ୍ଭର ସଖା ଜାଣନ୍ତି ଯେ ଜନ ।
ଭାରତ ବର୍ଷରେ ରାଜା ବୋଲାଉ ଯେ ଆମ୍ଭେ
ଚାରମୁଖୁ ଆମ୍ଭକଥା ଶୁଣିଥିବ ତୁମ୍ଭେ ।
ପଶୁପତିଙ୍କୁ ସମରେ ଆମ୍ଭେ ଯେ ଜିଣିଲୁ
ତାଙ୍କଠାରୁ ପାଶୁପତ ଶର ଯେ ପାଇଲୁ ।
ଅଙ୍ଗାରପନ୍ନଗ ରଣେ ଜିଣିଅଛୁ ଆମ୍ଭେ
ନାନାବିଦ୍ୟା ଆମ୍ଭଙ୍କୁ ସେ ଦେଲେ ତୋଷ ମନେ
ଲୁଦୁବୁଦୁ ବ୍ୟାଧିହେଲା ଅଗ୍ନିଦେବତାଙ୍କୁ
ଖାଣ୍ଡବ ବନ ତାହାଙ୍କୁ ଦେଲୁ ଖାଇବାକୁ ।
ସେ ହେତୁରୁ ଇନ୍ଦ୍ର ଆସି ବହୁ ରଣ କଲେ
ପରାଜୟ ପାଇ ପୁଣି ବାହୁଡ଼ିଣ ଗଲେ ।
ଗୋସିଂହ ଦୈତ୍ୟକୁ ଆମ୍ଭେ କରିଲୁ ନିଧନ
ଶତଧନୁକୁ ପାଖରେ ରଖିଲୁ ଶରଣ ।
ଆମ୍ଭେ କ୍ଷତ୍ରିୟମାନଙ୍କ ଅଟୁ ଶିରୋମଣି
ଆମ୍ଭଦ୍ୱାରା ନାଶ ଗଲା ମଗଧ ନୃମଣି ।
ଗାଣ୍ଡୀବ ଧନୁ ଦୀକ୍ଷା ଯେ ଅଟଇ ଆମ୍ଭର
ଭରଦ୍ୱାଜଙ୍କ ନନ୍ଦନ ଅସ୍ତ୍ରଗୁରୁ ମୋର ।
ରାମକୃଷ୍ଣ ଅଟନ୍ତି ଯେ ଆମ୍ଭର ବାନ୍ଧବ
ତାଙ୍କ ଭଗ୍ନୀ ସୁଭଦ୍ରାର ମୁହିଁଟି ବଲ୍ଲଭ ।
ବଳରାମ ହାରିଛନ୍ତି ଆମ୍ଭଙ୍କୁ ସମରେ
ପାଣ୍ଡବାସୁରକୁ ଆମ୍ଭେ ବଧିଲୁ ରାଗରେ ।
ପାଞ୍ଚାଳ ରାଜ୍ୟରେ ହେଲା ଯେଉଁ ସ୍ୱୟମ୍ବର
ସେ ସ୍ଥାନକୁ ଯାଇଥିଲେ ଯେଉଁ ନରବର ।
ଦ୍ରୌପଦୀଙ୍କ ହେତୁ ରାଜା କରିଥିଲେ ପଣ
ଯେ ବିନ୍ଧିବ ଲାଖ ନେବ ସେ କନ୍ୟାରତନ ।
ଲକ୍ଷେରାଜା ସେ ଲାଖକୁ ନ ପାରିଲେ ବିନ୍ଧି
ଆମ୍ଭେ ସେ ଲାଖ ବିନ୍ଧିଲୁ ଗୁଣେ ଶର ସନ୍ଧି ।
ତୁମ୍ଭେ ଏହା ଦେଖିଥିବ ଅବଶ୍ୟ ନେତ୍ରରେ
କିପରି ଦଶା ଲଭିଲେ ତହିଁ ନରବରେ ।
ହସ୍ତିନା ବାରୁଣା ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ
ଜୟନ୍ତା ଏ ପଞ୍ଚରାଜ୍ୟେ ଆମ୍ଭେ ନରନାଥ ।
ଲକ୍ଷେ ରାଜାଙ୍କ ଉପରେ ଆମ୍ଭ ଅଧିକାର
ପ୍ରାଣରେ ମାଇଲୁ ଆମ୍ଭେ ଦୁଷ୍ଟ ମୂଢ଼ାସୁର ।
ଯେ ଦୁଷ୍ଟ ହୁଏ ତାହାକୁ କରୁ ନିସୂଦନ
ଅନାଥ ଜନଙ୍କୁ ଆମ୍ଭେ କରୁ ଯେ ପାଳନ ।

ଯୁଧିଷ୍ଠିର ଠାକୁର ଯେ କରୁଛନ୍ତି ଯାଗ
ସେ ହେତୁ ଆମ୍ଭେ ଆସିଛୁ ଏ ଉତ୍ତର ଦିଗ ।
ଚାଳିଶସସ୍ର ରାଜଙ୍କୁ କରିଣ ବରଣ
ସେଠାବକୁ ଯିବ ତୁମ୍ଭେ ହେ ଦରଦସେନ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିବର୍ଣ୍ଣ
ଏ ରାଜାମାନଙ୍କୁ ଆମ୍ଭେ କରିବୁ ବରଣ ।
ଯୁଧିଷ୍ଠିର ଠାକୁରଙ୍କ ଏହିପରି ଆଜ୍ଞା
ଏ ଆଜ୍ଞାକୁ ତୁମ୍ଭେ ଯେବେ କରିବ ଅବଜ୍ଞା ।
ତୋର ସୈନ୍ୟ ବିନାଶିଣ ତୋତେ ବାନ୍ଧିକରି
ନିଶ୍ଚେ ଘେନିଯିବୁ ଏହା ଜାଣ ହେତୁକରି ।
ଯେବେ ଡରୁ ତେବେ ଏହି ଶ୍ରୀମୁଖକୁ ନେଇ
ଦେଖା ଦରଶନୀ ଘେନି ଆସ ବେଗ ହୋଇ ।
ଯେବେ ତୋହର ପ୍ରାଣକୁ ନିଶ୍ଚେ ଅଛି ଆଶ
ଏହା ପଢ଼ି ଆମ୍ଭ ପାଦେ ଶରଣ ତୁ ପଶ ।
ଦୂତ ହସ୍ତେ ଏହିପତ୍ର କରିଲୁ ପ୍ରେରଣ
ତାହାଠାରୁ ନେଇ ତୁହି ବୁଝିବା କାରଣ ।
ଏମନ୍ତ ପ୍ରକାରେ ଲେଖି ସୁରେଶ୍ୱର ମନ୍ତ୍ରୀ
ଧନଞ୍ଜୟକୁ ଶୁଣାଇ କହିଲା ସେ ଇତି ।
ଶ୍ରୀମୁଦ ସନ୍ତକ ନେଇ ପତ୍ର କରେ ଘେନି
ଅରୁଣ ଅଞ୍ଜନ ନାମ ସେନାପତି ବେନି ।
ତାହାଙ୍କୁ ଡ଼କାଇ ତାଙ୍କ କରେ ପତ୍ର ଦେଲେ
ଦରଦସେନକୁ ଏହା ଦେବ ଯେ ବୋଇଲେ ।
ଶଙ୍ଖମଣ୍ଡଳକୁ ସେହି ରହିଅଛି ଘେରି
ସେ ରାଜାକୁ ପତ୍ର ଦେଇ ଆସ ବୁଝିକରି ।
ଶ୍ରୀମୁଖ ଘେନିଣ ତହୁଁ ଚଳିଗଲେ ଦୂତେ
ଶଙ୍ଖ ମଣ୍ଡଳରେ ଯାଇ ମିଳିଲେ ତୁରିତେ ।
ଦେଖିଲେ ମହାସମ୍ଭର୍ବେ ଦରଦ ନୃପତି
ବିଜୟ କରିଅଛନ୍ତି ଆସ୍ଥାନ ଜଗତୀ ।
ତହୁଁ ଯାଇଣ ପ୍ରବେଶ ହେଲେ ଦୁଇ ଦୂତେ
ରାଜାଙ୍କୁ ଚାହିଁ ବଚନ କହିଲେ ଏମନ୍ତେ ।
ଏହି ଶ୍ରୀମୁଖକୁ ଘେନ ଆଜ୍ଞା ଅବଧାରୀ
କାହାର ଶ୍ରୀମୁଖ ବୋଲି ନୃପତି ପଚାରି ।
ରାଜା ଏପରି କହନ୍ତେ କହିଲେ ଡଗର
ପାର୍ଥ ବିଜେ କରିଛନ୍ତି ଉତ୍ତର ଦିଗର ।
ଜିଣିବେ ଚାଳିଶସସ୍ର ରାଜା ନିମନ୍ତଣ
ପାଏଡ଼ା ପଢ଼ି ଶ୍ରୀମୁଖ ଘେନସି ବହନ ।
ଅକସ୍ମାତେ ଏ ବାରତା ପାଇଣ ଦରଦ
କାହାର ଶ୍ରୀମୁଖ ବୋଲି ନ କହୁ ସମ୍ବାଦ ।
ମନ୍ତ୍ରୀ ବୋଇଲେ ରାଜନ ଶୁଣ ସାବଧାନେ
ସ୍ତମ୍ଭୀଭୂତ ହୋଇ କିମ୍ପା ବସିଲେ ମଉନେ ।

ପାଣ୍ଡବ ସୁନ୍ଦର ସେହି ପାର୍ଥ ବୀରମଣି
ତାହାର ମହିମା ଦେବ ନାହୁଁ କି ତୁ ଶୁଣି ।
ସଜ୍ଜନ ପାଳକ ସେହି ଦୁଷ୍ଟ ଦର୍ପଗଞ୍ଜା
କକ୍ଷା ଜଗଜ୍ଜେଠି କଉଣପ ଦର୍ପଭଞ୍ଜା ।
ଘେନ ଶ୍ରୀମୁଖ ରାଜନ କ କରିଣ ହେଳା
ଜଗଦର୍ପ ଗଞ୍ଜିପାରେ ବାସବର ବଳା ।
ଖାଣ୍ଡବ ଦହନ ଇନ୍ଦ୍ର ସଙ୍ଗରେ ବିବାଦେ
ଅଗ୍ନିର ବ୍ୟାଧି ଘୁଞ୍ଚିଲା ସେ ବୀର ପ୍ରସାଦେ ।
ଜଗନ୍ନାଥଠାରେ ପ୍ରୀତି ବାସବେ ବିବାଦୀ
ନାରାୟଣ ପ୍ରସନ୍ନେ ସେ ପାରେ ସର୍ବ ସାଧି ।
ମନ୍ତ୍ରୀର ବଚନେ ଭ ଖାମଣ୍ଡଳାଧିପତି
ବାମ ଆଣ୍ଠୁ ମାଡ଼ିଣ ସେ ହେଲା କୋପମୂର୍ତ୍ତି ।
ଅଧର ପୁଷ୍ଟ କରିଣ ଓଷ୍ଠେ ଦନ୍ତ ଚାପି
ଦିଶିଲା ନିଦାଘକାଳ ତପନ ସ୍ୱରୂପୀ ।
ଉତ୍ତରକୋଶଳେ ମମ ପ୍ରତିଜ୍ଞା ଯେ ସିଦ୍ଧ
ଦୈତ୍ୟ ଦାନବ କାହାକୁ ନ କଲି ମୁଁ ବଧ ।
ଆଦିତ୍ୟ ଲୁଚିଲାଯାଏ ଯା ସୈନ୍ୟ ଗମନ୍ତେ
ସିନ୍ଧୁ ଗର୍ଜ୍ଜନ ନ ଶୁଭେ ଯାଙ୍କ ରଡ଼ିଘାତେ ।
ଯେଉଁରାଜା ଦେବଦୈତ୍ୟେ କେବେନୋହେ ନାଶ
ହେଲେ ନାଶିଲି ଅସୁର ନାମ ମହୀଦାସ ।
କେତେ ଦୁଷ୍ଟ ଧ୍ୱଂସିଲି ମୁଁ ଏହି ମହୀସ୍ଥଳେ
ଅରୁଣଗିରି ଧ୍ୱଂସିଲି ମୋର କରତଳେ ।
ମୁଁ କ୍ଷତ୍ରି ପଣ୍ଡିତ ଭାଗ୍ୟବର ପରସାଦେ
ଦ୍ୱାପରଯୁଗ ସାଧିଲି ହରିଙ୍କ ପ୍ରସାଦେ ।
ଉତ୍ତରଦିଗ ରାଜାଙ୍କୁ ଦେଲି କେତେ ଦୁଃଖ
କେବଣ ପାମର ମୋତେ ଦିଅଇ ଶ୍ରୀମୁଖ ।
ଆସୁ ସେହି ତାହାର ଯେ ସମଦଣ୍ଡ ସାଜି
ପ୍ରତିଜ୍ଞା କରି ଉଠିଲା ସେହି ଗଳଗାଜି ।
ଦୁଃସହ ପ୍ରତିଜ୍ଞା ରାଜା କରେ ପୁଣ ପୁଣ
ଆସୁ ଦଣ୍ଡ ସାଜିରେ ସେ କେତେ କରେ ଟାଣ
ସାଜ ସାଜ ବୋଲି ଆଜ୍ଞା ଦେଲେଜ ଦରଦ
ତିନି ଭୁବନ କମ୍ପିଲା ବୀର ତୂର ନାଦ ।
ଶ୍ରୀମୁଖ ନିନ୍ଦା ଶୁଣିଣ ଗଲେ ଦେଶାଉରେ
ପ୍ରବେଶ ହୋଇଲେ ଯାଇ ଅର୍ଜ୍ଜୁନ ଛାମୁରେ ।
ବୋଇଲେ ସେ ଦୁଷ୍ଟ ରାଜା ଅଟେ ବଡ଼ ମନ୍ଦ
ନ ଘେନିଲାକ ଶ୍ରୀମୁଖ କଲା ବହୁ ନିନ୍ଦ୍ୟ ।
ବହୁ ପ୍ରତିଜ୍ଞା କଲାକ ହୋଇ ମହାରାଗ
ରଥ ସାଜ ସାଜ ବୋଲି ଆଜ୍ଞାଦେଲା ବେଗ ।
ବଡ଼ ଅସମ୍ଭବ ଦେବ ଅସଂଖ୍ୟ ତା ଦଣ୍ଡ
ମୁଖରବ ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।

ଆଦିତ୍ୟ ଭୟ କରିଣ ଲୁଚିଯାଏ ସିନ୍ଧୁ
ଉତ୍ତର କୋଶଳେ ଦେବ ତା ପ୍ରତିଜ୍ଞା ସାଧୁ ।
ଦେବତା ଗନ୍ଧର୍ବେ ସେହି ଅଟଇ ନିର୍ଭୟା
ଦୈତ୍ୟକଳାରେ ତା ଜନ୍ମ କ୍ଷଣେ କ୍ଷଣେ ମାୟା
ମୂନେହି ମୂଖୁ ଏପରି ବାରତାକୁ ଶୁଣି
ଜମ୍ପିଣ ଉଠିଲେ ପାର୍ଥ ନିଜ ଶିର ଝୁଣି ।
ଶୂରବର ସୁନ୍ଦର ସେ ପାର୍ଥ ମହ ରାଗୀ
ରଥ ଉପରେ ଧାଇଁଣ ବିଜେ କଲେ ବେଗି ।
ଅକ୍ଷୟ ତୂଣୀର ଜନ୍ଦେ ଗାଣ୍ଡୀବର ଧନୁ
କରେ ଧରିଣ ବସିଲେ ସୁରନାଥ ସୂନୁ ।
ଗୁଣ ଟଙ୍କାର କରିଣ ସୁଭଦ୍ରାର ନାହା
ମାତଳିକି ବୋଇଲେ ତୁ ରଥ ବେଗେ ବାହା ।
ଆଗୁଆଣି ସେନାପତି ଜୟ ଯେ ବିଜୟ
କ୍ଷେପନ୍ତି ତୁରଗମାନ ଶ୍ୟେନପକ୍ଷୀ ପ୍ରାୟ ।
ଦେବଦତ୍ତ ଶଙ୍ଖଶବ୍ଦ କଲେ ସବ୍ୟସାଚୀ
ଗାଣ୍ଡୀବ ଧନୁରେ ଗୁଣ ଦେଇଣ ଆମଞ୍ଚି ।
ପ୍ରତିଜ୍ଞା ସାମରଥ ସେ ପାଣ୍ଡବ କିରୀଟୀ
ଅଳ୍ପ ସୈନ୍ୟଙ୍କୁ ଦରଦ ବହୁସୈନ୍ୟ ଘୋଟି ।
ଶ୍ୱେତ ଗୋକ୍ଷୀର ଆଦି ଯେ ଏହି ଚାରି ହୟ
ଉଡ଼ନ୍ତି ଗଗନେ ଯେହ୍ନେ ଶ୍ୟେନପକ୍ଷୀ ପ୍ରାୟ ।
ଆସ୍ଥାନେ ଥାଇ ଦେଖଇ ସେ ଦରଦସେନ
ସୁରସାହି ମନ୍ତ୍ରୀକି ସେ ପୁଚ୍ଛଇ ବଚନ ।
ଆହେ ମନ୍ତ୍ରୀ ରଥ ଏକ ଆସେ ଅନ୍ତରୀକ୍ଷେ
ଗଜ ଅଶ୍ୱ ସୈନ୍ୟ ସଖା ନାହିଁ ତାର ପାଖେ ।
ରାଜା ଆଗେ ଜଣାଇଲା ମନ୍ତ୍ରୀ ସୁରସାହି
ଦ୍ୱିତୀକୃଷ୍ଣ ଅରଜୁନ ଅଟଇଟି ଏହି ।
ବାସବ ନନ୍ଦନ ରଥେ ମାତଳି ବାହିନୀ
ଚାରି ଅଶ୍ୱେ ପାରନ୍ତି ଯେ ଭ୍ରମି ପୁର ତିନି ।
ମନ୍ତ୍ରୀବାକ୍ୟେ ସେ ଦରଦସେନ ମହାରାଜ
ସୁନ୍ଦର ଦେଖି ଚଢ଼ିଲା ସେହୁ ଏକ ଗଜ ।
ତା ଉପରେ ରଖିଲାକ ଅନେକ ଆୟୁଧ
ରଣେ ନିର୍ଭୟ ନ ଘୁଞ୍ଚେ କରେ ବହୁ ଯୁଦ୍ଧ ।
ଦକ୍ଷିଣ କରେ ପରିଘ ଖଡ଼୍‌ଗ ବାମକରେ
ଅନ୍ଧକ ବଧେ ଯେସନେ ହେଲେ କାଶୀଶ୍ୱରେ ।
ଲୁହାରେ ଲକ୍ଷେକ ଶର ତୂଣେ ଅଛି କଷି
ସେ ଶର ଗୁଡ଼ିକ ମୁନ ଜକ ଜକ ଦିଶି ।
ଗଦା ମୁଦୁଗର ଧନୁ ଅସି କୁନ୍ତ ଶର
ବିଜୟ ଦରଦସେନ ହସ୍ତୀର ପିଠିର ।
ବୀର ତୂର ମର୍ଦ୍ଦଳ ଯେ ଟମକହିଁ ବାଜେ
ରେ ରେକାର ଶବ୍ଦ କରି ରାଜା କଲା ବିଜେ ।

ତିନି ସାଗର ରଥ ଦ୍ୱିଷୋଳ କ୍ଷୌଣୀ ନାଗ
ପଞ୍ଚଷଠିଶତ ଅଛି ଚୋଖାର ତୁରଙ୍ଗ ।
ଆଲଟ ପାତ୍ରର ଛତ୍ର ଢ଼େକୀ ଝାଲି ଛତା
ଆକାଶେ ଅଦୃଶ୍ୟ ହେଲେ ସବିତା ଦେବତା ।
ରାଜାର ଆଜ୍ଞା ପାଇଣ ଧାଇଁଣ ତା ବଳ
ମୁଖଗୋଳ ଶବଦରେ କମ୍ପେ ଭୂମଣ୍ଡଳ ।
ଡାକହାକ ଉଠିଲା ଯେ ଦୁଇବଳ ସୈନି
ବିନ୍ଧନ୍ତି ନାରାଚ ସର୍ବେ ବାୟୁବେଗ ଘେନି ।
ଭୟଙ୍କର ଗରଜନ ଘଣ୍ଟିର ଶବଦେ
ମହୀ ଉଚ୍ଛୁଳିଲା କଥା ନ ଶୁଭିଲା ହ୍ରାଦେ ।
ଦରଦ ସୈନ୍ୟ ଆସନ୍ତେ ପାର୍ଥ ସୈନ୍ୟ ଉଠି
ଦୁଇବଳଙ୍କର ସୈନ୍ୟ ହେଲେ ଭେଟାଭେଟି ।
ସର୍ବେ ଚାରି ଅଇବ୍ରତ ପାର୍ଥର ସଇନି
ଦରଦ ବେଢ଼ିଲା ତ୍ରିଂଶ କ୍ଷୌଣୀ ବଳ ଘେନି ।
ସମୁଦ୍ର ମଧ୍ୟେ ପଶନ୍ତି ଯେହ୍ନେ ମୀନଗଣ
ସେହିରୂପେ ଦେଖାଗଲେ ପାର୍ଥଙ୍କର ସୈନ୍ୟ ।
ବହୁସୈନ୍ୟ ଦେଖି ପାର୍ଥ ସୈନ୍ୟଗଲେ ଲୁଚି
ତା ଦେଖି ଅର୍ଜ୍ଜୁନଙ୍କର ନ ସ୍ଫୁରିଲା କିଛି ।
ସୈନ୍ୟଙ୍କର ଏପରି ରୀତି ଦେଖିଣ ବିଜୟୀ
ସେମାନଙ୍କୁ ବୋଧକଲେ ଭୟ କରନାହିଁ ।
ଦ୍ରୋଣ କଷଣିରୁ କାଢ଼ି ଶର ତୀକ୍ଷ୍ଣମୂନା
ବିନ୍ଧନ୍ତେ ସେ ନିକିଳିଲା ସେନାଙ୍କର ସେହ୍ନା ।
ଗିରିବର ଫାଟିଯାଏ ଯାର ଶରଘାଏ
ତା ଶରକୁ କେତେମାତ୍ର ରହି ସେନାଚୟେ ।
ପାର୍ଥେ ବେଢ଼ିଲେ ବତ୍ରିଶ ମରଭୁତ ରଥୀ
ଅକମ୍ପ ଅର୍ଜ୍ଜୁନ ଏକା ବାଣେ ଥାଟ ମଥି ।
ଦରଦସେନର ସୈନ୍ୟ ସସ୍ର ସସ୍ର ବାଣ
ଚାରିଆଡ଼େ ଘେନିକରି କଲେ ବରଷଣ ।
ସହସ୍ର ନାରାଚ ବିନ୍ଧି ପାର୍ଥ କୋପାନଳେ
ମନଭେଦୀକି ଧନୁରେ ଯୋଚି କୁତୂହଳେ ।
ଆଜ୍ଞାଦେଲେ ସେ ଶରକୁ ବେଗେ ତୁହି ଯିବୁ
ଦରଦସେନର ସୈନ୍ୟ ବିନାଶ କରିବୁ ।
କୁତୂହଳେ ଯୁଦ୍ଧକୁ ମୋ ବେଳ ଅଛିକାହିଁ
ନଉଦିନରେ ନ ଗଲେ ନ ବର୍ତ୍ତିବି ମୁହିଁ ।
ଅର୍ଜ୍ଜୁନଙ୍କ ଆଜ୍ଞାରେ ସେ ଶର ମନଭେଦୀ
ବାଇଶିକ୍ଷଉଣୀ ବଳ ସବୁ ହୃଦେ ଭେଦି ।
ସେ ଶର ଭେଦନ୍ତେ ଯାଇ ସୈନ୍ୟଙ୍କର ଦେହେ
ପଡ଼ିଲେ ସଇନିଗଣ ବ୍ରହ୍ମଶର ଘାଏ ।
ପ୍ରବଳ ବତାସେ ଯଥା ଲୋଟେ ରମ୍ଭାବନ
ତିନି ଯୋଜନ ମାଡ଼ିଣ ପଡ଼ିଲେ ତା ସୈନ୍ୟ ।

ପଡ଼ନ୍ତେ ସକଳ ସୈନ୍ୟ ହୋଇଲେ ନିହତ
ତା ଦେଖି କୋପେ ଦରଦସେନ ନରନାଥ ।
ସହସ୍ରେ ଶର ପୂରାଇ ଧରି ଲୌହ ଧନୁ
ଅର୍ଜ୍ଜୁନକୁ ବିନ୍ଧିଲା ସେ ଅର୍କରାଜ ସୂନୁ ।
ପାର୍ଥ କୋପେ ଦରଦକୁ ବିନ୍ଧି ପାଞ୍ଚଶର
ତା ଶର ଧନୁ ରଥକୁ କଲେ ଶତେଚୂର ।
ରଥ ଭାଙ୍ଗନ୍ତେ ରାଜନ ହେଲା ପାଦଗତି
ଧାତିକାରେ ଆରୋହିଲା ଏକ ମତ୍ତହସ୍ତୀ ।
ବଜ୍ର ପରିଘ ବୁଲାଇ ହସ୍ତୀକି ଧୁଆଇଁ
ପ୍ରହାର କରିଲା ରାଜା ପାର୍ଥ ରଥେ ନେଇ ।
ବାବଲ ଶର ପେଷିଣ ଦ୍ୱିତୀ ବନମାଳୀ
ହସ୍ତୀ କୁମ୍ଭସ୍ଥଳେ ପଶି ସେ ଆସେ ନିକିଳି ।
ସେ ଆଘାତେ ମହାନାଗ ପଡ଼ିଲା ଗରଜି
ପୁଣି ମହାକୋପେ ରାଜା ଚଢ଼ି ବେଗେ ବାଜି ।
ତାକୁ ଧୁଆଇଁଲେ ବେଗେ ବସି ତାର ପିଠି
ପାର୍ଥକୁ ମାଇଲା ନବନାଶିକୁନ୍ତ ଯାଠି ।
ମାତଳି ସାରଥି ରଥ ନେଲାକ ବଞ୍ଚାଇ
ପାଶୁପତ ନାରାଚକୁ ବିନ୍ଧିଲେ ବିଜୟୀ ।
ସେ ଶର ପଡ଼ନ୍ତେ ଅଶ୍ୱ ହେଲା ବେନି ଖଣ୍ଡ
ଗୁଣଘୋଷ ଶବଦରେ କମ୍ପିଲା ବ୍ରହ୍ମାଣ୍ଡ ।
ପାଦଗତିରେ ପଳାଏ ସେ ଦରଦରାୟ
ପଛଆଡୁ ଗୋଡ଼ାଇଲେ ବୀର ଧନଞ୍ଜୟ ।
ଏଡ଼େକ ଆରମ୍ଭ କିମ୍ପା କରୁରେ ଦରଦ
କାଳେ ପୁଣି ତୁହି ନାଶ ହେଲୁ ଆରେ ମନ୍ଦ ।
ବିକ୍ରମକେଶରୀ ଆଗୁ ପଳାଇ କି ଯିବୁ
ନିସତ ହେଲି ବୋଲିଣ କହ ତୁ ବର୍ତ୍ତିବୁ ।
କମ୍ପାଇ ରଥ ବାହିଲା ମାତଳି ସାରଥି
ପାର୍ଥ ବୋଲେ ନିଜଧର୍ମ ହେବ ବିନଶ୍ୟତି ।
ଦରଦସେନ ପଳାଇ ପଶେ ଶଙ୍ଖନଗ୍ରେ
ଦୂତ ଦେଖି ଜଣାଇଲେ ଜମାଗୋଷ୍ଠ ଆଗେ ।
ସ୍ୱାମୀ ବେଢ଼ିଥିଲେ ଆମ୍ଭ ରାଜ୍ୟ ଯେ ଦରଦ
ଅଭୂତେ ଯୋଦ୍ଧାଏ ତାକୁ ଚିନ୍ତିଲା ପ୍ରମାଦ ।
ସେହି ଏକା ରଥୀ ଦେବ ଶର କଲା ବୃଷ୍ଟି
ବାଇଶି କ୍ଷଉଣୀ ବଳ ସର୍ବେ ଗଲେ ଲୋଟି ।
ଏକ ନରପତି ତହୁଁ ପଳାଇ ଆସିଣ
ଆମ୍ଭର ରାଜ୍ୟେ ପଶିଲା ନେବ ସେ ଶରଣ ।
ଜମାଗୋଷ୍ଠ ବୋଲେ ଯେବେ ଦରଦସେନକୁ
ବିପତ୍ତି ପଡ଼ିଲା ଆଣ ଗୌରବେ ତାହାକୁ ।
ଜମାଗୋଷ୍ଠ ବିଜେ କରି ଅଛଇ ଜଗତୀ
ସନ୍ନିଧେ ପ୍ରବେଶ ହେଲେ ଦରଦ ନୃପତି ।
ଆସ୍ଥାନୁ ଓହ୍ଲାଇକରି ରାଜା ଜମାଗୋଷ୍ଠ
ପ୍ରଣାମ କଲା ଦରଦସେନ ପାଦପୃଷ୍ଠ ।
କୋଳାଗ୍ରତ କଲା ତହୁଁ ସେ ଦରଦସେନ
ଅନ୍ତଃପୁରେ ବିଜେକଲେ ରାଜା ବେନିଜଣ ।
ବହୁ ବିକଳେ କହଇ ଦରଦ ନୃପତି
ଅକାରଣେ ମରାଇଲି ରଥୀ ଯେ ପଦାତି ।
ଏ ରବିମଣ୍ଡଳେ ତାର ଅସଂଖ୍ୟ ମହିମା
ପ୍ରତ୍ୟକ୍ଷେ ନାରାୟଣ କି ଅଟେ ବେଦବ୍ରହ୍ମା ।
ଅସ୍ତ୍ର ଶସ୍ତ୍ର ତା ଶରୀରେ ନ ପାରଇ ଭେଦି
ଅଲେଖ ପୁରୁଷ ସେହି ବୃଥା ହେଲି ଧନ୍ଦି ।
ଏଡ଼େ ବଡ଼ ରାଜ୍ୟ ମୋର କ୍ଷଣେ ନାଶଗଲା
ଅବଶେଷେ ଦେଖ ମୋର ଏ ଦଶା ଘଟିଲା ।
ଜଗତୀରେ ବସି କଥା ହୁନ୍ତି ବେନି ରାୟ
ରତୁଧ୍ୱଜ ପର୍ବତରେ ବିଜେ ଧନଞ୍ଜୟ ।
ଜମାଗୋଷ୍ଠ ହକାରିଲା ଏକାନ୍ତେ ମୁନେହି
ଆରେ ଦେବ କି ଦାନବ ବୁଝ ତୁମ୍ଭେ ଯାଇ ।
ରଥ ଗଜ ଅଶ୍ୱ ଆଉ କେତେକ ପଦାତି
ସଂଖ୍ୟା କରିଣ କହିବ ମୋତେ ନିଶାରାତି ।
ରାଜାର ଆଜ୍ଞାରେ ଦୂତେ ଚଳିଲେ ଗୋପନେ
ରାତ୍ରକାଳେ ପଶିଲେ ସେ ରତୁକା କାନନେ ।
ଗୁପତେ ମିଳିଲେ ଯାଇ ଅର୍ଜ୍ଜୁନର ଥାଟେ
କଳିଲେ ତାଙ୍କର ସୈନ୍ୟ ବୁଲିଣ କପଟେ ।
ପାର୍ଥ ଆଜ୍ଞା ଦେଲେ ଦୂତମାନଙ୍କୁ ହକାରି
ଶ୍ରୀମୁଖ ଘେନିଣ ଯାଅ ଶଙ୍ଖନଗ୍ରପୁରୀ ।
କହିବୁ ଦରଦେ ଘେନି ଜମାଗୋଷ୍ଠ ରାୟ
ବହନରେ ଆସ ଦୁହେଁ ଆଜ୍ଞା ଧନଞ୍ଜୟ ।
ଯେ ଆଜ୍ଞା କହିଣ ଦୂତେ ହୋଇଲେ ବିଦାୟ
ବାଛି ବାଛି ଚଢ଼ିଲେ ସେ ବେଗଗାମୀ ହୟ ।
ଶ୍ରୀମୁଖ ଘେନିଣ ବେଗେ ଗଲେ ଦୂତପତି
ଭିଡ଼ିକରି ତୁରଙ୍ଗମେ ଶୂନ୍ୟେ ଉଡ଼ିଯାନ୍ତି ।
ଜମାଗୋଷ୍ଠ ରାଜା ପୁର ଅଭିମୁଖେ ଗଲେ
ନଗ୍ରଠାରେ ଅଶ୍ୱରୁ ସେ ଧୀରେ ଓହ୍ଲାଇଲେ ।
ଦରଦକୁ ଘେନି ଜମାଗୋଷ୍ଠ ନରପତି
ଜଗତୀରେ ବସି କଥା ବାରତା ହୁଅନ୍ତି ।
ଜଗତୀରେ ଥାଇକରି ସେ ଦରଦ ଦେଖି
ବୋଲନ୍ତି ଏ ଦୂତେ ଆସନ୍ତି ଦେଖ ଯେ କାହିଁକି
ଏ ସମୟେ ତହିଁ ଯାଇଁ ପ୍ରବେଶିଲେ ଦୂତେ
ଦେଖିଣ ଆଶ୍ଚର୍ଯ୍ୟ ହେଲେ ଜମାଗୋଷ୍ଠ ନେତ୍ରେ
ଅଶ୍ୱରୁ ଓହ୍ଲାଇ ତହିଁ ବୋଇଲେ ଯା ଦୂତେ
ହେ ଜମାଗୋଷ୍ଠ ପାଏଡା ପାଡ଼ି ଘେନ ପତ୍ର ।

ମନ୍ତ୍ରୀବର ପଚାରଇ ଶୁଣ ଦୂତେ ଚାରି
କାହାର ଶ୍ରୀମୁଖ ବୋଲି ରାଜାହିଁ ପଚାରି ।
ଚାରଗଣ ବୋଇଲେକ ଶୁଣ ନରବର
ଅମରାଧିନାଥ ଯେହୁ ଦେବ ପୁରନ୍ଦର ।
ତାହାଙ୍କ ପୁତ୍ର ଅର୍ଜ୍ଜୁନ ବିଜୟ ଏଥିକି
ଖାଣ୍ଡବ ଦହି ଔଷଧ ଦେଲେ ଯେ ଅଗ୍ନିଙ୍କି ।
ଅଭୟ ସୋମବଂଶରେ ଏହି ଯୋ ପ୍ରଧାନ
ଶରେ ସାଗର ବାନ୍ଧିଲେ ସେତୁର ସମାନ ।
ହନୂ ଦରପ ଗଞ୍ଜିଲେ କରି ଯେହୁ ବୁଦ୍ଧି
ସାତବଂଶ ଯାଦବଙ୍କୁ ରଣେ ଛନ୍ତି ସାଧି ।
ନିଜେ କୃଷ୍ଣ ଯା ଭାଇଙ୍କ ଚରଣେ ପ୍ରଣମି
ଯେହୁ ଧର୍ମ ନିରଞ୍ଜନ ଯୁଧିଷ୍ଠିର ସ୍ୱାମୀ ।
ତାହାଙ୍କ ସାନୁଜ ଅଟେ କାଳେବର ପାଣି
ସେ ଭୀମଙ୍କ ଅନୁଜ ଏ ପାର୍ଥ ବୀରମଣି ।
ସୋମବଂଶ ଅଧିପତି ପଣ୍ଡୁଙ୍କର କାର୍ଯ୍ୟେ
ଉତ୍ତର ଦିଗକୁ ଏହି କରିଛନ୍ତି ବିଜେ ।
ଚାଳିଶସହସ୍ର ରାଜାଙ୍କୁ ସାଧିବେ ଏ ଜଣେ
ଦୁଷ୍ଟହେଲେ ନ ବର୍ତ୍ତିବେ କେହି ରାଜଗଣେ ।
ବହନ ଶ୍ରୀମୁଖ ଘେନି ଶଙ୍କ ଅଧିକାରୀ
ନିଉଛାଳି କରି ଘେନ ପାଏଡାକୁ ପାରି ।
ଶୁଣିଣ କୋପ କରିଲା ନୃପ ଜମାଗୋଷ୍ଠ
ଉତ୍ତର କୋଶଳେ ରାଜା ମୁହିଁ ମହାଶ୍ରେଷ୍ଠ ।
ମୁଁ ଆନେ ଦିଏ ଶ୍ରୀମୁଖ ଉତ୍ତର ଦିଗରେ
ଏ ଦିଗେ କେ ନାହିଁ ମୋତେ ଜିଣିବ ସମରେ ।
କହୁଁ କହୁଁ ନରପତି ବୋଲେ ଅତି ରାଗେ
କେଉଁ ପାମର ପ୍ରତିଜ୍ଞା କରିବ ମୋ ଆଗେ ।
ଆସୁକିନା ମୋ ଛାମୁକୁ ସେହି ବେଗେ ବାହି
ଦିଅରେ ଶ୍ରୀମୁଖ ତାର ଏଥୁ ବାହୁଡ଼ାଇ ।
ଅଧର କମ୍ପାଇ ରାଜା କହେ ଅତି କୋପେ
ଲୁହାର କୃପାଣ ଏକ ଧଇଲା ପ୍ରତାପେ ।
ଯେତେ ପ୍ରତିଜ୍ଞା ମୋ ଆଗେ କହିଲ ବିଖଣ୍ଡ
ଦୂତ ନୋହିଥିଲେ ଆଜି କାଟିଥାନ୍ତି ମୁଣ୍ଡ ।
ମୋହର ଛାମୁରୁ ତୁମ୍ଭେ ପଳାଇଣ ଯା ଯା
କରୁ ସେ ସମର ଆସି ବୋଲେ ମହାରାଜା ।
ରାଜାର ଆଗେ କହଇ କାଳିଞ୍ଜନ ଦୂତ
ସଞ୍ଚିତ ସମ୍ପଦ ତୋର ଏବେ ହେବ ହୃତ ।
ନାଶକାଳେ ପ୍ରାଣୀକୁ ଯେ ଘୋଟେ ମନ୍ଦବୁଦ୍ଧି
କିଞ୍ଚିତ ଦୋଷରେ ଯିବ ତୋର ଏତେ ଆଧି ।
ଏପରି ପ୍ରତିଜ୍ଞା କରୁଥିଲା ଯେ ଦରଦ
କିଞ୍ଚିତ ଦୋଷେ ନାଶିଲା ତା କେତେ ସମ୍ପଦ ।

ପ୍ରତିଜ୍ଞା ସାର୍ଥକ ସେହି କକ୍ଷା ଜଗଜ୍ଜେଠି
ତ୍ରିପୁର ଚମକ ପଡ଼େ ଯାର ନାମଗୋଟି ।
ଦୁର୍ଭାର ପ୍ରତିଜ୍ଞା ତାଠୁ ଶୁଣି ନୃପମଣି
ପାତ୍ରଙ୍କୁ କହିଲା ଯାଙ୍କୁ ପକାଅରେ ହାଣି ।
ରାଜାଙ୍କର ଆଜ୍ଞାପାଇ ବେଗେ କଟୁଆଳ
ଧାଡିକାରେ ଧଇଲା ସେ ଦୁହିଁଙ୍କର ବାଳ ।
ନଗ୍ରରୁ ବାହାର କରି ନେଲେ ବାଳ ଧରି
ହସ୍ତେ ଘେନିଗଲେ ଏକ ସୁତୀକ୍ଷ୍ଣ କଟାରୀ ।
ଅନନ୍ତ ଯେ ଅବଧୂତ ମଧୁ ମଧୁବନ୍ତ
ସୁରନ ଅଞ୍ଜନକେତୁ ଏହି ସପ୍ତଦୂତ ।
ଏ ସାତ ଦୂତଙ୍କୁ ନଗ୍ର ବାହାରକୁ ଆଣି
ରାଜା ଆଜ୍ଞା ପ୍ରମାଣରେ ପକାଇଲେ ହାଣି ।
ଗୁପ୍ତଚାରେ ଯାଇଥିଲା ଅର୍ଜ୍ଜୁନ ଥାଟକୁ
ବାର୍ତ୍ତାଦେଲେ ଆସି ଜମାଗୋଷ୍ଠ ରାଜନକୁ ।
ସ୍ୱାମୀ ସହସ୍ରେକ ରଥ ଚାରିସହସ୍ର ରଥୀ
ପାଞ୍ଚ ଅଇରାବତ ଅଶ୍ୱ ନ ଲକ୍ଷ ପଦାତି ।
ବୀର ତୂର ଯେ ଦାଉଣ୍ଡି ଟମକ ନିଶାଣ
ପାଟଛତ୍ର ଉଦଣ୍ଡ ଯେ ବେନି ଲକ୍ଷ ଜାଣ ।
ଚାର କହନ୍ତେ ଲେଖିଲା ରାଜା ଭୂମିଗତେ
ନାମଲେଖନ କରିଲା ଅର୍ଜ୍ଜୁନ ସହିତେ ।
କାଳଚକ୍ର ଯିବ ଘେନି ପୋଛୁ ଦଣ୍ଡଧାରୀ
ଗଜାଶ୍ୱ ପଦାତି ଯୋଦ୍ଧା ଗଲେ ତେଣେ ମରି ।
ଏକ ରଥରେ ରହିଲା ବୀର ଫାଲଗୁନି
ପାର୍ଥର ଦେଖନ୍ତେ ଛିଡ଼ି ପଡ଼ିଲେ ସଇନି ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ସବ୍ୟସାଚୀ
ସ୍ତମ୍ଭୀଭୂତ ରହିଲେ ସେ ନ ସ୍ଫୁରିଲା କିଛି ।
ସୁମରିଲେ ମନେ ପାର୍ଥ ତୁଳସୀର ନାହା
କେବଣ ଦୋଷରୁ ସ୍ୱାମୀ ହୋଇଲେ ଅସାହା ।
ସବୁକାଳେ ରକ୍ଷାକରୁ ହରି ତୁ ଆମ୍ଭଙ୍କୁ
ସଂସାରେ ବୋଲନ୍ତି ହରି ସାହା ପାଣ୍ଡବଙ୍କୁ ।
ଏଡ଼େ ବଡ଼ ଥାଟ ମୋର ହେଲା ବିନଶ୍ୟତି
କିପରି ରାଜାଗଣଙ୍କୁ ଯିବି ମୁଁ ନିମନ୍ତି ।
ଶୋକକରି ବୋଲଇ ଯେ ସୁଭଦ୍ରାର ନାହା
ଧିକ ପ୍ରତିଜ୍ଞା ମୋହର ଧିକ ବେନିବାହା ।
କାନ୍ଦନ୍ତି ଅର୍ଜ୍ଜୁନବୀର ସୈନ୍ୟଙ୍କର ହତେ
ବାଛି ଜଗନ୍ନାଥ ଏହି ଦଶା ଦେଲେ ମୋତେ ।
ହେ ସୈନ୍ୟସୋଦର ମୋର ଦୁଃଖେ ତୁମ୍ଭେ ଦୁଃଖୀ
ଶରୀର ନ ତୁଟେ କିପାଁ ତୁମ୍ଭ ଦଶା ଦେଖି ।
ସ୍ୱଭାବ ସୁନ୍ଦର ତୁମ୍ଭେ କ୍ଷତ୍ରୀ ଗୁଣବନ୍ତ
ବିନା ଯୁଦ୍ଧେ ନାଶଗଲା ଅଥୟ ମୋ ଚିତ୍ତ ।

ମୋ ସଙ୍ଗେ ଦୁର୍ଗମ ଗିରି କାନନ ବୁଲିଣ
ମୋହ ପାଇଁକି ଲଭିଲ ତୁମ୍ଭେ ଏ କଷଣ ।
ତୁମ୍ଭପରି ବଳବନ୍ତ ନାହିଁ ତିନିପୁର
ତୁମ୍ଭେମାନେ ଏକେ ଏକେ ପୃଥ୍ୱୀ ଜିଣିପାର ।
ଯେ ଜୟ ବିଜୟ ଜୟସେନ ଚକ୍ରଧ୍ୱଜ
ହସ୍ତିନା ରାଜ୍ୟେ କରିଲେ ଦ୍ୱିତୀୟ ଐଶ୍ୱର୍ଯ୍ୟ ।
ବଳବନ୍ତ କରି ହରି ଦେଲେ ଯୋଦ୍ଧା ଚାରି
ମୋ ହୀନକର୍ମକୁ ତୁମ୍ଭେ ସର୍ବ ଗଲ ମରି ।
ଧିକ ଧିକ ମୁହିଁ କ୍ଷତ୍ରି କୁଳେ ଦେଲି ଲାଜ
ଉପହାସ କରିବେ ଯେ କଉରବ ରାଜ ।
ହସ୍ତିନା ରାଜ୍ୟେ ଚାହିଁବି ମୁହିଁ କାହା ମୁଖ
ଧିକ ମୋ ଜୀବନ ଥାଇ ହେବ କେଉଁ ସୁଖ ।
ସୈନ୍ୟଙ୍କର ଗୁଣମାନ ସୁମରି କିରୀଟୀ
ରଥ ଠେଳି କାନ୍ଦଇ ସେ ଭୂମିପରେ ଲୋଟି ।
ଅମାତ୍ୟ ସଖା ସୈନ୍ୟ ସର୍ବ ହତ ଦେଖି
କେଣିକି ଯିବି ମୁଁ ଏକା ହୋଇଲି ନିର୍ମାକ୍ଷୀ ।
ରେ ରେ ଜମାଗୋଷ୍ଠ ତୋର ମହିମାଟି ଧନ୍ୟ
ମୋତେ କିପାଁ ଏକା ରଖି ନାଶିଲୁ ମୋ ସୈନ୍ୟ ।
ମାନହୀନେ ବଞ୍ଚିବାର ମୋର କିସ କାର୍ଯ୍ୟ
କ୍ଷତ୍ରି କୁଳକୁ ହୋଇଲା ଏହା ବହୁଲାଜ ।
ମୋର ନାମ ନ ପୁଚ୍ଛିଲୁ କିପାଁ ଜମାଗୋଷ୍ଠ
ଜୀବନ ଥିବା ପର୍ଯ୍ୟନ୍ତେ ଦେଲୁ ମହାକଷ୍ଟ ।
ଯାଇ କିସ କରିବି ମୁଁ ସଖାଙ୍କ ଅଭାବେ
ନିଶ୍ଚୟ ମୋର ଶରୀର ନାଶିବି ଏଠାବେ ।
ଦଶଦିଗ ଅନ୍ଧକାର ମୋତେ ଦିଶୁଅଛି
ନିର୍ଲ୍ଲଜ ଆତ୍ମା ମୋହର କିମ୍ପାଇ ରହିଛି ।
ଏତେକ ବିଚାରି ପାର୍ଥ ମହାଦୁଃଖେ ବସି
ସୁମରଇ ମନ ମଧ୍ୟେ ଦେବ ହୃଷୀକେଶୀ ।
ଭକତ ବତ୍ସଳନାଥ ଦୟାର ସାଗର
ଦୁଃସହ ସଙ୍କଟୁ ମୋତେ ଉଦ୍ଧରିଣ ଧର ।
ନୀଳେନ୍ଦ୍ରିଦଳ ଲୋଚନ ହେ ମଧୁସୂଦନ
ତବପାଦେ ନିବେଶିଲି ମୋର ପଞ୍ଚମନ ।
ସବୁବେଳେ ତୁମ୍ଭେ ମୋତେ ଥାଅ ସାହାପକ୍ଷ
ବିପଦକାଳ ଜାଣିଣ ହେଲ କି ବିପକ୍ଷ ।
ଜଗତ ଜୀବନ ନାଥ ତ୍ରିପୁରାଧିକାରୀ
ଆସି ପ୍ରଭୁ ଏ ସଂକଟୁ କର ମୋତେ ପାରି ।
ବିକଳେ ଏହା ଚିନ୍ତନ୍ତେ ପାର୍ଥ ହୃଦଗତେ
ଆସନ କମ୍ପେ ହରିଙ୍କ ନନ୍ଦନ ବନସ୍ତେ ।
ପରିବ୍ୟାଫଳ ବୁହାଇ ନବରେ ପୁରାଇ
ଗଙ୍ଗାନଦୀରେ ସେ ନାବ ଦିଅନ୍ତି ଚଳାଇ ।

ଜାଣି ପାରିଲେ ଶ୍ରୀହରି ଅବସ୍ଥା ପାର୍ଥର
ମନଦୁଃଖେ ପ୍ରାଣତ୍ୟାଗ କରିବ ନିକର ।
ଖଗବର ପୃଷ୍ଠେ ବିଜେକରି ମଧୁହାରି
ଅର୍ଜ୍ଜୁନ ପାଶକୁ ଗଲେ ଶଙ୍ଖନଗ୍ରପୁରୀ ।
ଆକାଶ ପଥରେ ଦେବ ବହନ ଚଳିଲେ
ଅର୍ଜ୍ଜୁନ ଛାମୁରେ ଯାଇ ପ୍ରବେଶ ହୋଇଲେ ।
ଜଗନ୍ନାଥଙ୍କ ଚରଣ ଅର୍ଜ୍ଜୁନ ବନ୍ଦିଲେ
ସୈନ୍ୟଙ୍କ ଅବସ୍ଥା କହି ବିକଳେ କାନ୍ଦିଲେ ।
ଗୋବିନ୍ଦ ବୋଇଲେ ପାର୍ଥ ହେଲୁକି ଅଜ୍ଞାନ
ସଂଗ୍ରାମେ ପଶିଣ ଯେବେ ନାଶଗଲେ ସୈନ୍ୟ
ହାରିବା ଜିଣିବା ଅଟେ କ୍ଷତ୍ରୀଙ୍କ ଧରମ
ଏ ଛାର କଥାପାଇଁକି କରୁଛୁ କାରୁଣ୍ୟ ।
ରଣେ ପରାଜୟ କିମ୍ବା ପ୍ରାପ୍ତ ହୁଏ ଜୟ
ତହିଁକି ବିମନା କିପାଁ ହେଉ ଧନଞ୍ଜୟ ।
ଆପେ ଭଲ ଥିଲେ ଜାଣ ସକଳ ସୁଲଭ
ଜ୍ଞାନୀ ହୋଇ ଅଜ୍ଞାନୀଙ୍କ ସମ କରୁ ଭାବ ।
କରପତ୍ର ଯୋଡ଼ିକରି କହେ ଫାଲଗୁନି
ସ୍ୱାମୀ ସଂଗ୍ରାମେ ପଡ଼ିଲେ ମୋହର ସଇନି ।
ବିନାଯୁଦ୍ଧେ ନାଶଗଲେ ମୋର ସୈନ୍ୟଗଣ
ଏହା ଦେଖି ନ ସହଇ ପ୍ରଭୁ ମୋର ପ୍ରାଣ ।
ଶରୀର ମୋର ଦହୁଛି ଅବିଚାର ଧର୍ମେ
ଏଥିର ଚରିତ କହ ପୁରୁଷ ଉତ୍ତମେ ।
ଗୋବିନ୍ଦ ବୋଇଲେ ଜମାଗୋଷ୍ଠ ଯେଉଁ ରାଜା
ଅନେକକାଳୁଁ ଯମକୁ ସେହି କରେ ପୂଜା ।
କରେ ନାଶଚିହ୍ନ ଅଛି ସେ ନରବରର
ପୁଣି କାଳ ଚକ୍ରଚିହ୍ନ ଅଛି ତା କରର ।
ଦକ୍ଷକରେ ଲିହି ଯେବେ ବାମକରେ ପୋଛି
ଛିଡ଼ିବେ ସକଳ ପ୍ରାଣୀ ଜାଣ ହେ ଶ୍ରୀବତ୍ସି ।
ମାତଲି ସାରଥି ମଞ୍ଚପୁରକୁ ଅଦୃଶ୍ୟ
ତେଣୁକରି ରକ୍ଷା ହେଲା ନୋହିଲା ବିନାଶ ।
ତୋ ନାମ ଲେଖି ଯୋଛିଲା ଜାଣିଣ ଗୋଟିଏ
ଦଶନାମ ନ ଜାଣିଲା ଜମାଗୋଷ୍ଠ ରାୟେ ।
ଦଶନାମଯାକ ଯେବେ ତୋର ଜାଣିଥାନ୍ତା
ତେବେ ତ ଅର୍ଜ୍ଜୁନ ତୋର ପ୍ରାଣ ନ ରହନ୍ତା ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଆଉ କାମପାଳ
ଏ ଆମ୍ଭ ଅଶ୍ୱ ଥିବାରୁ ନ ପୂରିଲା କାଳ ।
ବେନିକର ଯୋଡ଼ି କହେ ବୀର ଫାଲଗୁନି
ତୋ ଆଜ୍ଞାକାରୀ ହୋଇ ମୁଁ ହେଲି ମାନହାନି ।
ରାଜା ନ ମାରିବା ବୋଲି ଦେଇଥିଲ ଆଜ୍ଞା
ତୁମ୍ଭର ବଚନ କେହ୍ନେ କରନ୍ତି ଅବଜ୍ଞା ।

ତେଣୁକରି ତ୍ରାସ ଦେବ ଲାଗିଲାକ ମୋତେ
ନୋହିଲେ କି ଜମାଗୋଷ୍ଠ ଥାନ୍ତା ଏ ପର୍ଯ୍ୟନ୍ତେ
ମାରିବି ଜମାଗୋଷ୍ଠକୁ ତୁମ୍ଭ ଆଗସରି
ସ୍ୱର୍ଣ୍ଣରାଜା ଗଡ଼ାଇବି ଥାଟ ସୈନ୍ୟକରି ।
ପାର୍ଥ ବଚନେ କହନ୍ତି ଦେବ ଚକ୍ରପାଣି
ଅଜ୍ଞାନରେ କରିଥାନ୍ତି ଦୋଷ ନୃପମଣି ।
ଦୋଷ ଧରି ମାରୁ ଯେବେ ସର୍ବ ନରବର
ବ୍ରହ୍ମହତ୍ୟା ଦୋଷ ଯିବ କି ପଣ୍ଡୁ ରାଜାର ।
ପୁଣି କହିଲେକ ଜମାଗୋଷ୍ଠ ଛାଡ଼ କୋପ
କ୍ରୁଦ୍ଧ ହୋଇ ମାରି ଶେଷେ ଲଭିବୁ ସନ୍ତାପ ।
ଯଦି ଦୋଷ କଲା ଜମାଗୋଷ୍ଠ ନରପତି
ରାଜସୂୟଯାଗ ଶେଷରେ ତାକୁ ଦେବ ଶାସ୍ତି ।
ଗୋଟିଏ ରାଜା ମାରିଲେ ଦୋଷକୁ ବିଚାରି
ସର୍ବରାଜା ପଳାଇବେ ତୋତେ ଭୟ କରି ।
କାର୍ଯ୍ୟର ନିମନ୍ତେ ସିନା ସହିଲୁ ତୁ କ୍ଳେଶ
କାର୍ଯ୍ୟ ନ ଥିଲେ କିମ୍ପା ତୁ ଆସନ୍ତୁ ଏ ଦେଶ ।
ସମସ୍ତେ ମୂର୍ଖ ତୁହି ତ ଅଟୁରେ ପଣ୍ଡିତ
ତୁହି ପୁଣ ରାଗୀ ହେଲେ ସରିବ ସୁକୃତ ।
କ୍ଷଣକେ ବିଶ୍ରାମ କର ତୁ ଦିବା ରଜନୀ
ବହନ ପ୍ରବେଶ ହୁଅ ରାଜାଗଣ ଘେନି ।
ପଶ୍ଚିମ କୋଶଳ ଦିଗୁ ବିଜେ ନୃପରାଣ
ଯାଇଥିଲା ବୃକୋଦର କରି ନିମନ୍ତ୍ରଣ ।
ପଡ଼ିଲା ସୈନ୍ୟଙ୍କପାଇଁ କିମ୍ପା ହେଉ ରାଗୀ
ପୃଥିବୀ ଭାରା ଉଶ୍ୱାସ କରିବା ନା ବେଗି ।
ଜମାଗୋଷ୍ଠ ରାଜାଠାରୁ କୋପ ଶାନ୍ତ କର
ମୋହର ଶପଥ ତୋତେ ରାଣ ଯୁଧିଷ୍ଠିର ।
ତୁ ବେଗେ ଯିବୁ ଆମ୍ଭେ ଯାଉଛୁ ଆମ୍ଭେ ବର୍ତ୍ତମାନ
ଦୁଃସହ କାର୍ଯ୍ୟେ ପଶିଲୁ ଆମ୍ଭେ ଛଅଜଣ ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ମୁଁ କି ତା ନ ଜାଣେ
ରାଜସୂୟଯଜ୍ଞ କିପରି ଶୁଣି ନାହିଁ କର୍ଣ୍ଣେ ।
ତୋର ପ୍ରସାଦେ ଆମ୍ଭଙ୍କୁ ଜଗତରେ ପୂଜା
ଅଭକ୍ତେ ଆମ୍ଭଙ୍କୁ ପ୍ରାପ୍ତ ହେଲୁ ଦେବରାଜା ।
ବହୁତର ତିଆରିଣ ଦେବ ଜଗନ୍ନାଥେ
ଖଗପୃଷ୍ଠେ ବସିଗଲେ ଯେ ବାଟୁଣାବନ୍ତେ ।
ମାତଳିକୁ ଡାକିକରି ବୋଲେ ଫାଲଗୁନି
ଜମାଗୋଷ୍ଠର ଛାମୁକୁ ଚାଲ ରଥ ଘେନି ।
ଅର୍ଜ୍ଜୁନଙ୍କ ଆଜ୍ଞାପାଇ ମାତଳି ସାରଥି
ଉଡ଼ାଇଲା ତୁରଙ୍ଗମ ପବନୁଁ ଝଟତି ।
ଆସ୍ଥାନେ ବିଜେ କରିଛି ଜମାଗୋଷ୍ଠ ରାୟେ
ଅର୍ଜ୍ଜୁନ ରଥ ଯାଇଣ ତହିଁ ଭେଟ ହୁଏ ।

ଅକସ୍ମାତେ ଭେଟିଲାକ ଯହୁଁ ପାର୍ଥ ରଥ
ଦେଖିକରି ଅତ୍ୟାଶ୍ଚର୍ଯ୍ୟ ହେଲା ନରନାଥ ।
ଅଦଭୂତେ ପାର୍ଥ ଦେଖି ଜମାଗୋଷ୍ଠ ରାୟେ
ଆସ୍ଥାନ ତେଜି ପଳାଇ ଗଲା କରି ଭୟେ ।
କୁମ୍ଭ ନିକୁମ୍ଭ ତା ବେନିପୁତ୍ର ଥିଲେ କତି
ଶୀଘ୍ର ତାଙ୍କ କେଶ ଧରେ ବାସବ ସନ୍ତତି ।
ବେନି ପୁତ୍ରଙ୍କର କେଶ ଧରି ବାମକରେ
କଟାରି ପ୍ରହାର କଲେ ଦୁହିଙ୍କ ଗଳାରେ ।
ବେନିପୁତ୍ର ପଡ଼ିଗଲେ ତହିଁ ଶିର ଛିଡ଼ି
ପଳାଇଁ ଆସ୍ଥାନୁ ରାଜା ପଡ଼େ ମୁହଁ ମାଡ଼ି ।
ରଥରୁ ଡେଇଁ ପଡ଼ିଲେ ବାସବ ନନ୍ଦନ
ଜମାଗୋଷ୍ଠର କେଶକୁ ଧଇଲେ ବହନ ।
ବାମକେଶ ଧଇଲେ ସେ ରାଗେ ପରଚଣ୍ଡା
ଦକ୍ଷିଣ କରେ ଧଇଲେ ଯହୁଁ ତୀକ୍ଷ୍ଣ ଖଣ୍ଡା ।
ପ୍ରହାର କରିବାକାଳେ ମାତଳି ସତ୍ୱର
ରଥରୁ ଡେଇଁ ଧଇଲା ପାର୍ଥଙ୍କର କର ।
ବୋଇଲା ହେ ଅରଜୁନ କିମ୍ପା କୋପ କର
ଶ୍ରୀକୃଷ୍ଣଙ୍କ ଆଜ୍ଞାକୁ ଯେ ମନେ ନ ସୁମର ।
ବିଶେଷେ ତୁମ୍ଭର ପିତା ପଣ୍ଡୁଙ୍କର କାର୍ଯ୍ୟ
ଅନେକ ତିଆରି ଥିଲେ ପରା ଦେବରାଜ ।
ମାତଳି ବାକ୍ୟେ ଅର୍ଜ୍ଜୁନ ଶାନ୍ତିକୁ ଭଜିଲେ
ଜମାଗୋଷ୍ଠ କେଶ ଧରି ରଥରେ ଉଠିଲେ ।
ପାଟଡୋର ଘେନି ତାକୁ ବାନ୍ଧିଲେକ ରଥେ
ତ୍ରାସେ ପଳାଇଲେ ତାର ପାତ୍ର ଯେ ଅମାତ୍ୟେ
ନାଶକର ନାମେ ଜମାଗୋଷ୍ଠର ମନ୍ତ୍ରୀଏ
ବୋଲେ ଆମ୍ଭେ ପଳାଇବା କି ନିମନ୍ତେ ଭୟେ
ପଳାନ୍ତେ ସୈନ୍ୟ ସକଳ ରାଜା ଛାଡ଼ିକରି
ସର୍ବ ପାରିଦଣ୍ଡ ଡାକି ଏକରୁଣ୍ଡ କରି ।
ମନ୍ତ୍ରୀବର ତିଆରଇ ସମାର୍ଜ୍ଜନା କରି
ଶୁଣ ସର୍ବେ ରାଜା ବନ୍ଦୀ ପଡ଼ିଲେ ଆମ୍ଭରି ।
ଆମ୍ଭର ପଳାଇବାର କେବଣ କାରଣ
ଯେବେ ବନ୍ଦୀ ହୋଇଲେଣି ଆମ୍ଭର ରାଜନ ।
ଦୟାଭାବ ଉପୁଜାଇ ପାରିଲେ ଉଦ୍ଧାରି
ନାହିଁତ କୋପେ ସକଳ ଦେବ ଶେଷକରି ।
ରାଜ୍ୟକୁ କାରଣ ରାଜପୁତ୍ର ନାଶଗଲା
ଏଡ଼େ ବଡ଼ ରାଜା ହୋଇ ଆପେ ବନ୍ଦୀ ହେଲା ।
ମନ୍ତ୍ରୀର ବଚନ ମାନି ପାରିଦଣ୍ଡଗଣ
ଗଳାରେ କୁଠାର ଦନ୍ତେ ଧରିଣ ତିରଣ ।
ଦଶନଖ ମୁଖେ ଭରି ସମସ୍ତ ସଇନି
ତ୍ରାହି ତ୍ରାହି ବୋଲି ତହିଁ ସର୍ବେ କଲେ ଧ୍ୱନି ।

ଏ ରାଜା ଅଟେ ଜନକ ଭୁବନାଧିକାରୀ
ମୂର୍ଖପଣେ ନ ଜାଣିଲା ତୋତେ ଦ୍ରୋହକରି ।
ଭୋ ଦେବ ଜଗତେଶ୍ୱର ପରଲୋକ ବନ୍ଧୁ
ଏ ତିନିଭୁବନ ମଧ୍ୟେ ତୋ ମହିମା ସାଧୁ ।
ଶରଣ ପଞ୍ଜର ନାମ କ୍ଷତ୍ରୀ ଚୂଡ଼ାମଣି
ବହୁଦ୍ରୋହ କଲୁ ତୋତେ ଆମ୍ଭେ ମୂଢ଼ପ୍ରାଣୀ ।
କେବଣ ଦେଶର ତୁମ୍ଭେ ଅଟ ମହାତମା
ଆମ୍ଭର ସକଳ ଦୋଷ କର ତୁମ୍ଭେ କ୍ଷମା ।
ରୋଦନ୍ତି ସୈନ୍ୟ ଅଙ୍ଗୁଳି ଭରିକରି ମୁଖେ
ଶରଣ ଶରଣ ବୋଲି ଫୁକାରନ୍ତି ଦୁଃଖେ ।
ଏ ଦୋଷମାନ ଆମ୍ଭଙ୍କୁ ଦାନ ଦେବା ସ୍ୱାମୀ
ଥାଟଯାକ ଅଶ୍ରୁନେତ୍ରେ ଶୁତିଲେ ପ୍ରଣମି ।
ସୈନ୍ୟକଷ୍ଟ ଦେଖି ପାର୍ଥ ଡିଆରି ମାତଳି
ଶରଣ ପଞ୍ଜର ତୁହି ଭକ୍ତେ ପ୍ରତିପାଳି ।
ରାଗ କରିଣ କିମ୍ପାଇ ରହିଛୁ ମଉନେ
ଜନଙ୍କୁ କଷ୍ଟ ଦେବାକୁ ଭାବୁଛୁ କି ମନେ ।
ସାରଥି ବଚନ ଶୁଣି ବୋଲେ ଧନଞ୍ଜୟ
ସୋମବଂଶ ଅଧିପତି ପଣ୍ଡୁ ମହାରାୟ ।
ତାଙ୍କର ପୁତ୍ର ଯୁଧିଷ୍ଠି ଦେବ ନରପତି
ରାଜସୂୟଯାଗେ ତାଙ୍କର ବଳିଲାକ ମତି ।
ଲକ୍ଷେ ରାଜା ନିମନ୍ତ୍ରଣ କରିବା ନିମନ୍ତେ
ଜରାସନ୍ଧ ବଧକଲୁ ମଗଧ ପ୍ରଶସ୍ତେ ।
ଛୟାଣୋଇସସ୍ର ରାଜା ଥିଲେ ବନ୍ଦୀ ହୋଇ
ଜରାସନ୍ଧ ବଧକରି ରାଜା ମୁକୁଳାଇ ।
କହିଲୁକି ତୁମ୍ଭେମାନେ ଯାଗକୁ ଆସିବ
ସକଳେ କହିଲେ ତୁମ୍ଭେ ନିମନ୍ତଣ ଦେବ ।
ନିମନ୍ତ୍ରଣ ଦେବାପାଇଁ ଆସିଲୁ ଏ ସ୍ଥାନ
ମୋର ସୈନ୍ୟନାଶ କଲା କିମ୍ପା ଅକାରଣ ।
କି ଅବା ଆମ୍ଭେ ଏହାର ଅଟୁ କି ବଇରି
ପୂର୍ବେ ଏହାର କାହାକୁ ଥିଲୁ କିବା ମାରି ।
ଏମାନଙ୍କର ଆମ୍ଭେ ତ ନୋହୁ ଯେ ବିବାଦୀ
ଅଦଭୂତେ ଯୁଦ୍ଧକରି ବୃଥା ହୁନ୍ତି ବନ୍ଦୀ ।
ଦରଦସେନ ଯେ ମୋତେ ନ ପାରିଲା ଚିହ୍ନି
ଅଦୋଷରେ ନାଶ ଗଲେ ତାର ସର୍ବସୈନି ।
ମୋର ସୈନ୍ୟ ଏ ମାଇଲା କିପାଁ ଅନିମିତ୍ତେ
ଏ ଜମାଗୋଷ୍ଠ ରାଜାକୁ ଛାଡ଼ିବି କେମନ୍ତେ ।
ଦରଦସେନ ନରେଶ ଗଲାକ ପଳାଇ
ତାହାକୁ ଛାମୁକୁ ଆଣ ସେ ଲୁଚିଛି କାହିଁ ।
ଅର୍ଜ୍ଜୁନ ବଚନ ଶୁଣି କହନ୍ତି ମୁନେହି
ଏକ୍ଷଣି ପାଶେ ଆସିବ ଦରଶନୀ ନେଇ ।

ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଜାଣ ସର୍ବସିଦ୍ଧି
ଆଦ୍ୟରୁ ରାଜାକୁ କିମ୍ପା ନ ଦେଲ ଏ ବୁଦ୍ଧି ।
ଆଜ୍ଞା ପ୍ରମାଣେ ଚଳନ୍ତି ପାତ୍ର ଯେ ଅମାତ୍ୟେ
ଦରଦେ ଘେନି ଅଇଲେ ଅର୍ଜ୍ଜୁନ ଅଗ୍ରତେ ।
ଶତଭାର ପାଣିଦ୍ରବ୍ୟ ରତ୍ନମାନ ଘେନି
ଛାମୁକୁ ଆଣିଲା ରାଜା ଦେଖା ଦରଶନୀ ।
ବହୁ ବିନୟେ ଦରଦସେନ ନରପତି
ନିଉଛାଳି କରି ପ୍ରଣିପତ୍ୟ ହେଲା ଧାତି ।
ଦଶନଖ ମୁଖେ ଭରି ସେହି ଭାଖାସାଇଁ
ବୋଇଲେକ ଦେବ ମୋତେ ତୁମ୍ଭେ କରତ୍ରାହି ।
ପାର୍ଥ ବୋଇଲେ ତୁମ୍ଭର ନାହିଁ କିଛି ଦୋଷ
ବିନା ଅପରାଧେ ତୋର ସୈନ୍ୟ କଲି ନାଶ ।
ଦରଦ ବୋଇଲେ ତୁହି କର୍ତ୍ତା ଜଗଜ୍ଜେଠି
ତୋର ଅନୁଗ୍ରହ ଥିଲେ ମୋ ଦୁର୍ଗତି ଫିଟି ।
ପ୍ରତ୍ୟକ୍ଷ କରତାଙ୍କୁ ମୁଁ ଦେଖିଲି ନେତ୍ରରେ
ସ୍ୱାମୀ ତୋତେ ଦ୍ରୋହ କଲି ମନ୍ଦ ପ୍ରକୃତିରେ ।
ତେଣୁ ଅଦୟା କରି ମୋ ସୈନ୍ୟ କଲୁ ନାଶ
ଅନୁଗ୍ରହ କରି ନାଥ କ୍ଷମା କର ଦୋଷ ।
ପାର୍ଥ ବୋଇଲେ ନିମନ୍ତ୍ରି ଯୋଗାଡକୁ ଦେଇ
ରାଜସୂୟଯାଗ ସଭାକୁ ଯାଅ ବେଗ ହୋଇ ।
ଦରଦ ବୋଇଲା ମୁହିଁ ବିବାଦୀ ଜଗତେ
ଥାଟ ସୈନ୍ୟ ସଖା ନାହିଁ ଯିବଇଁ କେମନ୍ତେ ।
ପାର୍ଥ ବୋଇଲେ ତୋତେ ନ ଉଗାଳିବେ ପଥେ
ସମସ୍ତେ ତ୍ରାସିବେ ତୋତେ ମୋ ନାମ ଧରନ୍ତେ ।
ଯେ ଅବା ଆସି ଘେରିବ ପଥେ ଯାନ୍ତେ ରାୟେ
ଶିରଚ୍ଛେଦ ହେବ ତାର ମୋର ଶରଘାଏ ।
ଦରଦ ବୋଇଲେ ସ୍ୱାମୀ ମୋ ଜୀବ ସଫଳ
ଜଗତନାଥଙ୍କୁ ଭେଟି ହେଲି ମୁଁ ନିର୍ମଳ ।
ଯେତେକ ସୈନ୍ୟ ମୋହର ମାଇଲୁ ଅର୍ଜ୍ଜୁନ
ମୋ ଭକ୍ତି ଘେନିଣ ତାଙ୍କୁ ଦିଅ ଜୀବଦାନ ।
ପାର୍ଥ ବୋଇଲେ ପଡ଼ିଲେ ବହୁତ ତୋ ସୈନି
କାହୁଁ ତାଙ୍କୁ ଜୀଆଇଁବି ମହାମନ୍ତ୍ର ଘେନି ।
ଦରଦ ବୋଲେ ସ୍ୱାମୀ ତୁ ପରସନ୍ନ ହେଲେ
ମୋହର ସକଳ ସୈନ୍ୟ ବଞ୍ଚିବେ ତୋ ବୋଲେ
ମଞ୍ଚମଣ୍ଡଳେ ବୋଲିବେ ତୋତେ ଧନ୍ୟ ଧନ୍ୟ
ଅମୃତ ଦୃଷ୍ଟିରେ ଚାହିଁ ବର୍ତ୍ତନ୍ତୁ ମୋ ସୈନ୍ୟ ।
ରାଜାର କଟାଳ ଦେଖି ପାଣ୍ଡବ ଅର୍ଜ୍ଜୁନ
ଯହୁଁ ଚାହିଁଲେ ମାତଳି ସାରଥି ବଦନ ।
ମାତଳି ବୋଇଲା ଜାଣୁ ଜୀବନ୍ୟାସ ଶର
ଖାଣ୍ଡବ ଦହନ କାଳେ ଦେଲେ ବୈଶ୍ୱାନର ।

ହାବୋଡ଼ା ଶର ବାଜିଣ ପଡ଼ିଛନ୍ତି ସୈନି
ଏଥିପାଇଁ ଏ ଦରଦ କରୁଛି ଦଇନୀ ।
ସାରଥି ବଚନେ ପାର୍ଥ ହୋଇଲେକ ଶାନ୍ତି
ଜୀବନ୍ୟାସ ଶରକୁ ଯେ କାଢ଼ିଲେ ଝଟତି ।
ଦରଦସେନ ରାଜାର ସଇନିଙ୍କୁ ବିନ୍ଧି
ଅବିକ୍ଷଣେ ସୁଧାବୃଷ୍ଟି ହେଲା ମହୌଷଧି ।
ମୋହନାଶରେ ପଡ଼ିଣ ଥିଲେ ସର୍ବସୈନି
ଚେତନା ପାଇଣ ନିଜ ନିଜ ପ୍ରାଣ ଘେନି ।
ଉଠିଲେକ ବାହାନାଦ କରି ସର୍ବବଳ
ମୁଖରାବ ଶବଦରେ ପୂରିଲା ମଣ୍ଡଳ ।
ବାଇଶି କ୍ଷଉଣୀ ବଳ ତହିଁ ପଡ଼ିଥିଲେ
ଚେତନା ଶରରେ ପାର୍ଥ ସର୍ବ ଜାଆଇଁଲେ ।
ଦନ୍ତରେ ତିରଣ ଘେନି ସର୍ବପାତ୍ର ମନ୍ତ୍ରୀ
ତ୍ରାହି ତ୍ରାହି ବୋଲି ଦଣ୍ଡ ପ୍ରଣାମ କରନ୍ତି ।
ଭକ୍ତତାରଣ ଗାଣ୍ଡିବ ଦୀକ୍ଷାଗୁରୁ ତୁତ
ଅଭକ୍ତ ଶରଣ ନେଲେ ରକ୍ଷା କରୁ ନାଥ ।
ଜୟ ଜୟ ବୋଲି କରି ଶୁଭିଲାକ ଧ୍ୱନି
ଦରଦସେନ ପ୍ରଣମେ ପାତ୍ର ମନ୍ତ୍ରୀ ଘେନି ।
ବିନୟେ ହୋଇଲା ଭାଖା ମଣ୍ଡଳାଧିକାରୀ
ପୁଣି ବୋଲେ ନମ୍ରଭାବେ ପ୍ରଣିପାତ କରି ।
ଭକତ ବତ୍ସଳନାଥ ଶରଣ ସୋଦର
ମୁହିଁ ଗୁହାରି କରୁଛି ତୋହର ପୟର ।
ଜମାଗୋଷ୍ଠର ବନ୍ଧନ ଫେଡ଼ି କର ରକ୍ଷା
ଏ ପୃଥ୍ୱୀ ମଧରେ ସ୍ୱାମୀ ରହିବ ତୋ କକ୍ଷା ।
ଅର୍ଜ୍ଜୁନ ବୋଇଲେ ଯାକୁ ବନ୍ଧନରେ ନେବି
ଭୀମସେନ ଠାକୁରଙ୍କ ଗୋଚରରେ ଦେବି ।
ସେ ବିଚାର କରି ଯାଙ୍କୁ ଛାଡ଼ନ୍ତୁ ସଭାରେ
ଏ ବଡ଼ ଦୁଷ୍ଟ ଯାକୁ ନ ଛାଡ଼ିବି ଏଠାରେ ।
ଜମ୍ବାଗୋଷ୍ଠ ରାଜାର ଯେ ମନ୍ତ୍ରୀ ଥିଲା ରହି
ଅକ୍ଷତ ଦେଇ ଯଜ୍ଞକୁ ପେଷିଲେ ବିଜୟୀ ।
ଦରଦ ଘେନିଣ ଗଲା ଅନେକ ସଇନି
ସେ ନଗ୍ରତେଜିଣ ବିଜେକଲେ ଫାଲଗୁନି ।
ଶର୍ଦ୍ଧଭାଗ ପୁର ଜିଣି ଗଲେ ସବ୍ୟସାଚି
ହିରଣ୍ୟ ପର୍ବତେ ବିଜେ ଯହିଁ ହିରଣାକ୍ଷୀ ।
ଶୁମ୍ଭ ନିଶୁମ୍ଭ ବୋଲିଣ ପର୍ବତ ଦୁଇଟି
ସେ ପର୍ବତ ମଧୁ ଆସେ ସରସ୍ୱତୀ ଫୁଟି ।
ସେ ନଦୀରେ ପଶି ସ୍ନାନ ନିତ୍ୟକର୍ମ ସାରି
ବିଜୟ କଲେ ବିବସ୍ତ ଶୁମ୍ଭ ନାମେ ଗିରି ।
ସେହି ପର୍ବତ ଶିଖରେ ବିଜେ ହିରଣାକ୍ଷୀ
ଦର୍ଶନ କରି ଅର୍ଜ୍ଜୁନ ବୋଲେ କାମାକ୍ଷୀଙ୍କି ।

ଚଣ୍ଡମୁଣ୍ଡନାଶିନୀ ଗୋ ରଣ କୁତୂହଳେ
ଶୁମ୍ଭ ନିଶୁମ୍ଭ ବଧିଲୁ ନିତ୍ୟ ରଙ୍ଗ ଖେଳେ ।
ପଡ଼ିଲେ ସେହି ଦାନବେ ତୋ କଥା ଭାଙ୍ଗିରେ
ମୋହିନୀ ରୂପରେ ତାଙ୍କୁ ମାଇଲୁ ରଙ୍ଗରେ ।
ଶୁମ୍ଭ ନିଶୁମ୍ଭ ଦଇତ କୁଳକୁ ବିନାଶି
ସେ ବେନି ଦୈତ୍ୟଙ୍କ ବକ୍ଷେ ମାଡ଼ିଅଛୁ ବସି ।
ଶୁମ୍ଭ ନିଶୁମ୍ଭ ଦଇତ ବେନି ପରବତ
ବିସ୍ତାର ଅଟଇ ଯାର ଯୋଜନ ଯେ ସାତ ।
କାଳେ ଉଠିବ ବୋଲି ସେ ଦୈତ୍ୟ ମହାବଳୀ
ଦୁଇପାଦେ ମାଡ଼ିଅଛୁ ଦୁହିଁଙ୍କ ମଉଳି ।
ଆପଣେ ଦୁଃଖ ସହୁ ଦେବତାଙ୍କ କାର୍ଯ୍ୟେ
ତୋ ନାମ ଧରନ୍ତେ ଭୟେ ପଳାନ୍ତି ଦନୁଜେ ।
ଦେବଙ୍କୁ ନିର୍ଭୟ କଲୁ ଦାନବଙ୍କୁ ନାଶି
ଭକତ ବତ୍ସଳା ମାଗୋ ଯମଦର୍ପ ଧ୍ୱଂସି ।
ପାତକ ନାଶନ୍ତି ନରେ ତୁମ୍ଭ ନାମ ଭଜି
ଦୁର୍ଗତି ନ ଥାଇ ତୁମ୍ଭ ଧ୍ୟାନେ ଥିଲେ ମଜ୍ଜି ।
ଡ଼ିବି ଡ଼ିବି ଡ଼ମ୍ବରୁ ଗୋ ଶ୍ରୀହସ୍ତେ ବଜାଉ
ଶ୍ମଶାନେ କ୍ଷେପିଣ ମାଗୋ ସୁଖେ ଗୀତ ଗାଉ
କଣ୍ଠେ ମୁଣ୍ଡମାଳ ତୁମ୍ଭ ଜବା ପୁଷ୍ପେ ପୂଜା
ରଣରଙ୍ଗେ ବିଚକ୍ଷଣା ଅଭୟା ଶୈଳଜା ।
ରକ୍ତବସ୍ତ୍ର ପରିଧାନୀ ଏକ ପାଦ କ୍ଷେପି
ତୁ ପ୍ରସନ୍ନ ହିଙ୍ଗୁଳା ଗୋ ଅଟୁ କାମରୂପୀ ।
କଂସାଳ ମର୍ଦ୍ଦଳ ମାଗୋ କାହାଳୀର ନାଦ
ଚଞ୍ଚୁପୁଟ ନାଦ ପୁଣି ମନ୍ଦିରା ଶବଦ ।
ରୁଧିର ଲେପନ ମାଗୋ ପୋଡ଼ାମାଂସଭୋଗୀ
ପ୍ରେତ ପିଶାଚୁଣୀ ଭୂତ ସଙ୍ଗତରେ ସଙ୍ଗୀ ।
ଲହ ଲହ ରସନା ଗୋ କରେ ଅସିଖଣ୍ଡ
ସ୍ୱର୍ଗ ମର୍ତ୍ତ୍ୟ ଭୁବନକୁ ଘୋଟେ ତୋର ତୁଣ୍ଡ
ସୁରବର ସୁନ୍ଦର ଗୋ ମଧୁ ପିଙ୍ଗଳାକ୍ଷୀ
ହାହା ନାଦରେ ହରଷ ଦନୁଜକୁ ଭକ୍ଷି ।
ରେ ରେ କାର୍ ଶବଦ ଗୋ କୁହୁ କୁହୁ ଭାଷି
ଝମ ଝମ ଝମ୍ପାଣ ଗୋ ଝଙ୍କାର ପାଶି ।
ଦଳଦଳିତ ମେଦିନୀ ଟଳଇ ଅଚଳ
ଅଙ୍ଗ ଅଙ୍ଗହାସିନୀ ଗୋ ନାନାରଙ୍ଗେ ଭୋଳ ।
ସ୍ୱରୂପ ଅର୍ଦ୍ଧାଙ୍ଗୀ ମାଗେ କାମାକ୍ଷୀ ସୁଭାଗୀ
ସୁଷୁମ୍ନା ଦେବ ସାଧିନୀ ସୁରଙ୍ଗା ମାତଙ୍ଗୀ ।
ବିହିତ କୁତୂହଳି ଗୋ ଅର୍ଦ୍ଧପାଦ ରେତା
ଜାତକଲେ କୃପାଜଳ ମୁନି ବ୍ରହ୍ମବେତ୍ତା ।
ଯାଯା ଥାଥା ଧାଧା ଧର ଧର ମାର ମାର
ଭକ୍ଷ ଭକ୍ଷ ଉଚ୍ଚ ବାକ୍ୟେ କିଳିକିଳା ସ୍ୱର ।

ଶଙ୍କର ସଦାବିହାରୀ ତୋର ସିଦ୍ଧ ମୁଦ୍ରା
କାମରସ ଉଦ୍ଧାରିଣୀ ଘୋର ଯୋଗନିଦ୍ରା ।
ଭବାନୀ ଭୈରବୀ ମାଗୋ ଭୟଙ୍କରୀ ରୂପା
ତ୍ରିନେତ୍ରଧାରିଣୀ ଘଟ ଘଟ ମହାତପା ।
ପଚିଶ ଶକତି ମାଗୋ କୃପାଣ ମୁଦ୍‌ଗର
ଛେଲ ଚକ୍ର ତୁଲେ ବିଜେ କର୍ଣ୍ଣ ଯେ କଟାର ।
ଅକ୍ଷୟ ତୂଣ କଷିଣ କୋଦଣ୍ଡ ପିନାକୀ
କ୍ଷଣେ ତ୍ରୈଲୋକ୍ୟ ମୋହନ୍ତି ବ୍ୟାପି ପୃଥିବୀକି
ରଣେ ରଣେ କୁତୂହଳେ ବକ୍ଷେ ମୁଣ୍ଡ ମାଳା
ରୁଧିରରେ ସ୍ନାନ ମାଗୋ ଶବ୍ଦ କିଳିକିଳା ।
କମଳା ଚଞ୍ଚଳା ଗୋ ଡାକିନୀ ଡାକେଶ୍ୱରୀ
ଭକତବତ୍ସଳା ମାଗୋ ଦୁଷ୍କୃତାପହାରୀ ।
ମାନିନି ମାତଙ୍ଗୀ ମାଗୋ ମାୟାବୀ କୁଣ୍ଡଳୀ
ମହାନିଶାରେ ଭ୍ରମିଣ ଦେଉ ହୁଳହୁଳି ।
ଅଭୟା ବରଦାୟିନୀ ଶ୍ରୀ ସର୍ବମଙ୍ଗଳେ
ଶରଣ ଉଦ୍ଧାରିଣୀ ଗୋ ତାରୁ ସର୍ବକାଳେ ।
ସକଳେ ମାଧବୀ ମାଗୋ ତୋର ଛେଦ ପୂଜା
ଭକ୍ତିଭାବ ଘେନି ପୂଜା କଲେ ଦେବରାଜା ।
ମଙ୍ଗଳା ସର୍ବମଙ୍ଗଳା କରୁ ସର୍ବସିଦ୍ଧି
ମଙ୍ଗଳ ସର୍ବେଶ୍ୱରୀ ଗୋ ଭବନିଦ୍ରା ରୁନ୍ଧି ।
ପ୍ରସନ୍ନ ଯୋଗେଶ୍ୱରୀ ଗୋ କପିଳାସବାସୀ
ଲୌକିକ ଲୋକେଶ୍ୱରୀ ଗୋ ଗିରିରାଜରଷି ।
ବ୍ରହ୍ମସ୍ୱରୂପିଣୀ ତୁ ଗୋ କରୁ ପୃଥ୍ୱୀଚିନ୍ତା
ଦୁଃଖୀଜନଙ୍କର ତୁହି ଅଟୁ ଉଦ୍ଧାରନ୍ତା ।
ସର୍ବ ସମ୍ପଦଦାୟିନୀ ତୁ ସର୍ବ ମଙ୍ଗଳେ
ଶ୍ରୀଚଣ୍ଡୀଙ୍କୁ ଭାବେ ସଦା ମୋର ହୃଦସ୍ଥଳେ ।
ଅପର୍ଣ୍ଣା ଅନ୍ନପୂର୍ଣ୍ଣା ଯେ ଜଗତର ଧାତ୍ରୀ
କାଳ କୃତାନ୍ତ ତାରିଣୀ ନମୋ କାଳୀମୂର୍ତ୍ତି ।
ଟହ ଟହ ହାସିନୀ ଗୋ ପୂର୍ଣ୍ଣଚନ୍ଦ୍ରାନନୀ
ଦୁଷ୍କୃତ ମେଣ୍ଟଣି ମାଗୋ ସଖୀ ତୋ କାନ୍ତାନି ।
ଅନିତ୍ୟ ସଂସାର ଏ ଗୋ ଲୋଭ ମୋହାଦିରୁ
ଧନହାନି ଶୋକ ଦୁଃଖ ସବୁ ପାରିକରୁ ।
ଇତି ଶ୍ରୀ ମହାଭାରତ ପବିତ୍ର ପୁରାଣ
ସଂସାର ଜନଙ୍କ ହିତେ କଲି ମୁଁ ବଖାଣ ।
ସଦା ଭକତି ମୋହର ଭାରତ ମଣ୍ଡଳେ
ନରରୂପେ ଜନ୍ମି ବୃଦ୍ଧି ହେଲି ନରମେଳେ ।
କିଞ୍ଚିତ ପ୍ରସନ୍ନ ମୋତେ ହୁଅ ଗୋ ଅଭୟା
ଝଙ୍କଡ଼ପୁରବାସିନୀ କର ତୁ ସୁଦୟା ।
ପରଲୋକ ସାହା ତୁ ଗୋ ଅହୋ ବରଦାତ୍ରୀ
ଇହଲୋକେ ପରଲୋକେ ସର୍ବତ୍ର ତୋ ସ୍ଥିତି ।
ଶ୍ରୀଚଣ୍ଡୀ ଶାରଳାଦେବୀ ଚରଣେ ବିନୟେ
ଶୂଦ୍ରମୁନି ଶାରଳା ଯେ କହେ ଏକଲୟେ ।



## ଅର୍ଜ୍ଜୁନଙ୍କର ମୃତସୈନ୍ୟ ଜୀବିତ ଓ ସଂକଳ୍ପ ଭୈରବ ଉଦୟଗିରି, ଉତ୍ତରକୋଶଳ ଓ ନନ୍ଦିଗ୍ରାମ ରାଜାମାନଙ୍କୁ ନିମନ୍ତ୍ରଣ ଓ କଚ୍ଛରାଜା ସହିତ ଯୁଦ୍ଧ

କହୁଛନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ତୁମ୍ଭ ମହିମା ଅପାର ।
କ୍ଷୀରାବ୍ଧି ଗଣ୍ଡୁଷ ଜଳ ତୁମ୍ଭେ ଅବହେଳେ
କୋଟି ପ୍ରଣିପାତ ମୋର ତୁମ୍ଭ ପାଦତଳେ ।
ତୁମ୍ଭ ପ୍ରସାଦରେ ବିଷ୍ଣୁ ପୁରାଣକୁ ଶୁଣି
ଦୂରନ୍ତ ପାପ ନାଶନ କଲି ମୁନିମଣି ।
କଳିକାଳ ଧ୍ୱଂସିବାକୁ ସୁଧା କଲେ ବୃଷ୍ଟି
ସଂସାର ସାଗରକୁ ଯେ ଦେଲ ନାବଗୋଟି ।
ଯମାର୍ଗଳ ଭାଙ୍ଗିବାକୁ ତୁମ୍ଭେ କରି ସଞ୍ଚା
ଖଣ୍ଡିଲ ଯମ ଅର୍ଗଳ ଯୁଗାନ୍ତର ବଞ୍ଚା ।
ହେ ଅଗସ୍ତି ମୁନି ଏବେ ଶୁଣ ମୋ ବଚନ
ଏଥିଅନ୍ତେ କେଉଁକୃତ୍ୟ କରିଲେ ଅର୍ଜ୍ଜୁନ ।
ଏହିକଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ସେ ଦେବୀଙ୍କୁ ସ୍ତୁତି ଯହୁଁ କରିଲା ଅର୍ଜ୍ଜୁନ
ତହୁଁ କାମାକ୍ଷୀ ହୋଇଲେ ତାହାକୁ ପ୍ରସନ୍ନ ।
ସିଂହବାହନରେ ବିଜେ ହେଲେ ଶାକମ୍ଭରୀ
ପ୍ରଣିପାତ ହେଲା ପାର୍ଥ ତାଙ୍କୁ ଦେଖିକରି ।
ବୋଇଲେ ଯେବେ ପ୍ରସନ୍ନ ହେଲ ଗୋ ହିଙ୍ଗୁଳେ
ତେବେ ମୋର ବାଞ୍ଛାସିଦ୍ଧି ହେଉ ତତକାଳେ ।
ଜମାଗୋଷ୍ଠ ବୋଲି ମାଗୋ ଶାଖା ଅଧିକାରୀ
ସେ ମୋହର ସଇନ୍ୟଙ୍କୁ ପକାଇଲା ମାରି ।
ଲେଖି ପୋଛନ୍ତେ ମୋହର ସୈନ୍ୟଗଲେ ନାଶ
ଏକା ବୁଲଇ ମାତ ଗୋ ହୋଇଣ ନିରାଶ ।
ବାଛିକରି ସୈନ୍ୟ ମୋତେ ବାସୁଦେବ ଦେଲେ
କେମନ୍ତେ ରକ୍ଷା ପାଇବି ଭୀମ କୋପକଲେ ।
ତିନିଭାଇ ଆସିବେ ଯେ ଯାହା ଥାଟ ଘେନି
ମୁହିଁ ଏକା ଯିବି ମାଗୋ ମରାଇ ସଇନି ।
ଯେବେ ତୁ ସର୍ବମଙ୍ଗଳା ମହିମା ତୋ ସତ
ମୃତ ସଇନି ଜୀଅନ୍ତୁ ଆଜ୍ଞା ଦିଅ ମାତ ।
ଏମନ୍ତ ଶୁଣି ସୁଦୟା ବହିଣ କାମାକ୍ଷୀ
ବୋଇଲେ ଆରେ ଅର୍ଜ୍ଜୁନ ବର ମାଗ ବାଛି ।

ଅର୍ଜ୍ଜୁନ ବୋଇଲେ ମାତ ତୁହି ସିଦ୍ଧିଦାୟୀ
ମୃତସଞ୍ଜୀବନୀ କେଉଁ ବିଚିତ୍ର ଅଟଇ ।
ଶୁଣି ଦେବୀ ବୋଇଲେ ତୁ ଶୁଣ ଧନଞ୍ଜୟେ
ତୋ ସଇନି ସଦୃଶରେ ଲେଖ ପଟଟିଏ ।
ତହୁଁ ଶ୍ରୀକରେ ଲେଖନ ଘେନିଣ ଅର୍ଜ୍ଜୁନ
ଚିତ୍ରପଟ ଏକଗୋଟି କରିଲେ ଲିଖନ ।
ସହସ୍ରେକ ରଥ ଦୁଇ ଅଇବ୍ରତ ହସ୍ତୀ
ଆଠ ଅଇବ୍ରତ ଅଶ୍ୱ ଦ୍ୱିଲକ୍ଷ ପଦାତି ।
ଚିତ୍ରଲେଖିଣ ଦେବୀଙ୍କୁ ଦେଲା ସବ୍ୟସାଚୀ
ଚିତ୍ର ଉପରେ ଔଷଧି ଦେଲେ ପିଙ୍ଗଳାକ୍ଷୀ ।
ମନ୍ତ୍ର ପଢ଼ି ଉଠ ବୋଲି ବୋଲନ୍ତେ ଈଶ୍ୱରୀ
ଜୀବନ ପାଇ ଉଠିଲେ ବାହାନାଦ କରି ।
ଧନଞ୍ଜୟକୁ ଚିହ୍ନିଲେ ସକଳ ସଇନି
ଗୁରୁଶିଷ୍ୟ ଭାବେ ତାଙ୍କୁ କରିଲେ ଦଇନୀ ।
ଅର୍ଜ୍ଜୁନ ଦେଖିଲା ଯହୁଁ ଯାହାର ସ୍ୱରୂପ
ପ୍ରିୟଭାବ କୁଟୁମ୍ବିତା ପୂର୍ବ ଅନୁରୂପ ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ଯାନବାହାନ କମ୍ପାଇ
ଯେ ଯାହାର ଅସ୍ତ୍ର ବୀରେ ଧରିଛନ୍ତି ରହି ।
ଆପଣାର ସୈଇନ୍ୟଙ୍କୁ ପାଇଲା ଅର୍ଜ୍ଜୁନ
ଧାତିକାରେ ଗୋସାମଣୀ ହେଲେ ଅନ୍ତର୍ଦ୍ଧାନ ।
ଆପଣା ସଇନି ଘେନି ବୀରବର ପାର୍ଥ
ବିଜୟ କରିଲେ ତହୁଁ ସଂକଳ୍ପ ବନସ୍ତ ।
ସର୍ବେଶ୍ୱର ବୋଲି ଅଛି ଏକଇ ପର୍ବତ
ଶାକଲ୍ୟ ଦେଶ ସେଠାରେ ଅଛି ଅବସ୍ଥିତ ।
ସେହି ଦେଶକୁ ବିଜୟେ କଲେ ଫାଲଗୁନି
ରଥ ଗଜ ଚମକାଇ ପଶିଲେ ସଇନି ।
ସେ ଦେଶର ରାଜା ଶାଲୁ ନାମେ ନରପତି
ଗଜ ଅଶ୍ୱ ନାହିଁ ତାର ସଇନି ପଦାତି ।
ଏକଗୋଟି ରଥେ ଶାଲୁ ଚଳେ ଅନ୍ତରୀକ୍ଷେ
ଗନ୍ଧର୍ବ ରାଜା ଅଟଇ ସେହୁ ଯେ ପ୍ରତ୍ୟକ୍ଷେ ।
ଅର୍ଜ୍ଜୁନ ବିଜୟ କଲେ ସେ ଶାଲୁର ରାଜ୍ୟେ
ବୀର ଟମକ ନିଶାଣ ଢୋଲ ଆଦି ବାଜେ ।
କାହିଁରେ ଶବଦ ଏହୁ ଉଲ୍‌କାପାତ ଜାଣି
ସାରାଧ ନାମ ମନ୍ତ୍ରୀକି ପୁଚ୍ଛେ ନୃପମଣି ।
ସାରାଧ ବୋଇଲା ରାଜସୂୟ ଯଜ୍ଞ ଅର୍ଥେ
ପାଣ୍ଡବ ଅର୍ଜ୍ଜୁନ ଆସେ ଏହି ଦିଗ ପଥେ ।
ଆଜ୍ଞା ଦେଇଛନ୍ତି ତାକୁ ଚଞ୍ଚଳାବଲ୍ଲଭ
ମୁଁ ଜାଣେ ପାର୍ଥ ପ୍ରତ୍ୟକ୍ଷେ ଅଟେ ବାସୁଦେବ ।
ମନ୍ତ୍ରୀ ବୋଲଇ ତାହାର ଅଶେଷ ମହିମା
ଧନୁର୍ଦ୍ଧର ଶିରୋମଣି ଅଭୟା ମହାତ୍ମା ।

ରାଜାରାଜେଶ୍ୱର ସେହୁ ଉତ୍ତରର ମଧ୍ୟେ
ଜମାଗୋଷ୍ଠକୁ ଜିଣନ୍ତା ନାହିଁ କେହି ଯୁଦ୍ଧେ ।
ତାହାକୁ ବନ୍ଧନ କରି ରଖିଅଛି ରଥେ
ଅନ୍ୟ ରାଜା କି ବର୍ତ୍ତିବେ ତାର ଅଭକତେ ।
ସମଦଣ୍ଡ ଘେନି ଦେବ ପାଛୋଟିଣ ଯିବା
ବିନୟ ଭକତି କରି ପାର୍ଥଙ୍କୁ ଆଣିବା ।
ମନ୍ତ୍ରୀର ବଚନ ଶୁଣି ସାନନ୍ଦ ସେ ରାୟେ
ସମଦଣ୍ଡ ଘେନିକରି ପାଛୋଟିଣ ଯାଏ ।
ବହୁ ସମ୍ଭର୍ବ ସହିତ ଶାଲୁ ମହାରାଜା
ଅର୍ଜ୍ଜୁନର ପାଦପଦ୍ମେ କଲା ଯାଇ ପୂଜା ।
ପୁତ୍ର କୁଟୁମ୍ବ ଘେନିଣ ଶାଲୁ ନରପତି
ପୁଣି ପୁଣି ନିଉଛାଳି ହୋଇ ତୋଷମତି ।
ରାଜାର ଭକତି ଦେଖି ବୀରବର ପାର୍ଥ
ରଥରୁ ଓହ୍ଲାଇ ତାକୁ କଲା କୋଳାଗ୍ରତ ।
ଅନେକ ଭାବେ ପାର୍ଥର କରାଇ ପୀରତି
ପୁରେ ଉତ୍ସବ କରିଲା ଶାଲୁ ନରପତି ।
ଅର୍ଜ୍ଜୁନ ବିଜେ କରିଲେ ଚନ୍ଦ୍ରଶାଳା ପୁରେ
ଶାଲୁକୁ ଯେ ନିମନ୍ତ୍ରଣ କରିଲେ ସ୍ନେହରେ ।
ବୋଇଲେ ବାରୁଣାପୁରେ ଯାଅ ଥାଟ ଘେନି
ବହନ ହୋଇଣ ଚଳି ଦିବସ ରଜନୀ ।
ଶାଲୁ ବୋଇଲା ଅଭୟ ତୁହି ନିରାକାର
ଆଜକ ମୋହର ରାଜ୍ୟେ ରହ ବୀରବର ।
ଅର୍ଜ୍ଜୁନ ବୋଇଲେ ମୁହିଁ ନ ପାରିବି ରହି
ବିଳମ୍ବ ହୋଇବ ମୋତେ ଆଉ ଦିନ ନାହିଁ ।
ପଞ୍ଚାଶ ଦିବସ ମାତ୍ର ବାକୀ ଅଛି ଦିନ
ଦୁଷ୍ଟ ରାଜାଏ ଅଛନ୍ତି କରିବି ସାଧନ ।
ଶୁଣି ଶାଲୁ ପ୍ରଣିପାତ ହୋଇ ପାଦତଳେ
ସ୍ୱାମୀ ଜମାଗୋଷ୍ଠ ବନ୍ଧା ମନ୍ଦ ବୁଦ୍ଧି ବଳେ ।
ଯାହା ଅରଜିଲା ସେହୁ ପାଇଲା ଯୁକତେ
ଏହାକୁ ବନ୍ଧନୁ ମୁକ୍ତ କର ମୋ ଅଗ୍ରତେ ।
ମୁଁ ଏହାକୁ ଘେନି ଯିବି ହସ୍ତିନା ପୁରକୁ
ଏହାର ଅନୀତି ଯେତେ ଲାଗଇ ଆମ୍ଭଙ୍କୁ ।
ପାର୍ଥ ବୋଲେ ମହାରାଜା ଅଟୁ ତୁହି ଶାଲୁ
ଜମାଗୋଷ୍ଠ ରାଜାପାଇଁ କିପାଁ ତୁହି ବୋଲୁ ।
ଏ ମୋହର ସୈନ୍ୟଙ୍କୁ ମାଇଲା ଅନିମିତ୍ତେ
ଏହାର ବନ୍ଧନକୁ ମୁହିଁ ଫେଡ଼ିବି କେମନ୍ତେ ।
ତୁହି ଏବେ ଚଳିଯାଅ ବାରୁଣାବନ୍ତକୁ
ଅବଶ୍ୟ ଏ ଅବସ୍ଥାରେ ନେବି ହସ୍ତିନାକୁ ।
ଶାଲୁକୁ ଚଳାଇଦେଲେ ବୀର ଧନଞ୍ଜୟେ
ଦଣ୍ଡଘେନି ଶାଲୁରାଜା ହସ୍ତିନାକୁ ଯାଏ ।

ତହୁଁ ବୀର ଅରଜୁନ ଥାଟକୁ ଚଳାଇ
ଭଇରବ ଦେଶେ ବିଜେ କରିଲାକ ଯାଇ ।
ଭଇରବ ଦେଶେ ମହା ଭୈରବ ନୃପତି
ରୁଦ୍ର ଦେବତାଙ୍କୁ ପୂଜି ବୋଲାଏ ସେ ଯତି ।
ଯେତେ ରାଜା ବସନ୍ତି ସେ ଭଇରବ ରାଜ୍ୟେ
ସବୁଙ୍କୁ ଏକା ପ୍ରସନ୍ନ ଦେବ ଦେବରାଜେ ।
ଶୁକ୍ଳାମ୍ବର ଶରୀର ଯେ ଶିରେ ଜଟାଭାର
ଭସ୍ମ ବିଲେପନ ଅଙ୍ଗେ ସର୍ବେ ଶୂଳଧର ।
କଟିରେ କାଛେଟି ତାଙ୍କ କଣ୍ଠେ ଚୀରକୁଟି
ସାଧନ୍ତି ଯୋଗ ଲୟରେ ରୁଦ୍ରମନ୍ତ୍ର ଗୋଟି ।
ଶିବ ସ୍ୱରୂପେ ଅଟନ୍ତି ମହାଯୋଗୀ ତେଜି
ଚତୁର୍ଭୁଜ ଡମ୍ବରୁ ଯେ ଘନ ଘନ ବାଜି ।
ରଥ ଗଜାଶ୍ୱ ବାହାନ ତାଙ୍କ ନାହିଁ କିଛି
ଏକପାଦେ ଚଳନ୍ତି ସେ କନ୍ଦମୂଳ ଭକ୍ଷି ।
ଅର୍ଜ୍ଜୁନ ପ୍ରବେଶ ହେଲେ ସେ ଭୈରବ ଦେଶେ
ଚାରଗଣଙ୍କ ଜଣାଇଲେ ନରପତି ପାଶେ ।
ଶୁଣ ଦେବ ସାବଧାନେ ଚଳାଅ ତୁ ରାଷ୍ଟ୍ର
କେଉଁ ଦେଶରୁ ପଶିଲା ଆସି ପରଥାଟ ।
ଚାରଗଣଙ୍କ ମୁଖରୁ ହୋଇ ଅବଗତ
ଦଣ୍ଡଘେନି ଭଇରବ କଟକୁ ଆଗତ ।
ଆସନ୍ତେ ପାର୍ଥ ଥାଟକୁ ଭେଟିଲେ ଭୈରବ
ଅର୍ଜ୍ଜୁନ ଥାଟ କ୍ଷେପିଲେ କରି ଘୋରରାବ ।
ଭଇରବ ଡାକଦେଲା ନିଜରଥେ ବସି
ଅଦଭୂତେ ମୋ କଟକେ କିପାଁ ପଶୁ ଆସି ।
ପ୍ରୀତି କି ଅପ୍ରୀତିପଣେ ଥାଟ ଘେନି ଆସୁ
ଉତପାତ କରି କିପାଁ ମୋ କଟକେ ପଶୁ ।
ଆଗରେ ଜୟ ବିଜୟ ଥିଲେ ସୈନ୍ୟାଧ୍ୟକ୍ଷ
ବୋଇଲେ ଭୈରବ ତୁହି ଶୁଣ ହେ ପ୍ରତ୍ୟକ୍ଷ ।
ସୋମବଂଶରେ ପାଣ୍ଡବ ଯୁଧିଷ୍ଠିର ରାୟ
ତାଙ୍କ କନିଷ୍ଠ ସୋଦର ନାମ ଧନଞ୍ଜୟ ।
ରାଜସୂ ଯାଗ କରିବେ ପଣ୍ଡୁରାଜା କାର୍ଯ୍ୟେ
ରାଜା ନିମନ୍ତ୍ରଣେ ପାର୍ଥ ଉତ୍ତରକୁ ବିଜେ ।
ଶୁଣି ଭଇରବ ଯାଇ ହେଲା ପରଣାମି
ଭୟ କରିଣ ବୋଇଲା ନିସ୍ତରିଲି ସ୍ୱାମୀ ।
ରଥରେ ଦେଖିଲା ଜମାଗୋଷ୍ଠ ରାଜା ବନ୍ଦୀ
ଦେଖିଣ ବିସ୍ମୟାପନ୍ନ ହେଲେ ସର୍ବ ଯୋଧୀ ।
ଏହୁ ଅଟେ ଜମାଗୋଷ୍ଠେ ଅତି ମହାବଳୀ
ବାନ୍ଧେ ଯାକୁ କିସ ଆମ୍ଭେ ଛାର ମନେଭାଳି ।
ତହୁଁ ରାୟ ପ୍ରଣିପାତ ପାର୍ଥ ପାଦତଳେ
ଭୈରବର ଏହି ଭାବ ଦେଖିଲେ ସକଳେ ।

ତହୁ ଆନନ୍ଦିତ ହୋଇ ଦୁଇ ସେନାପତି
ଅର୍ଜ୍ଜୁନ ଛାମୁରେ ନେଇ ଶୀଘ୍ରରେ ଭେଟାନ୍ତି ।
ତାହା ଦେଖିଣ ବାସବୀ ଘେନି ରତ୍ନମାଳେ
ଲମ୍ବାଇଲେ ଭଇରବ ନୃପତିର ଗଳେ ।
ନିମନ୍ତ୍ରଣ ଯୋଗାଡ଼ ଦେଇ ଧନଞ୍ଜୟ
ବୋଇଲେ ରାଜସୂୟଯାଗେ ଯାଅ ନୃପରାୟ ।
ଶୁଣି ଭୈରବ ବୋଇଲା ଯିବି ଏହିକ୍ଷଣି
ଆଜକ ମୋର କଟକେ ରହ ବୀରମଣି ।
ମଣୋହି ଯୋଗାଡ଼ ଦେବି ଯେତେକ ପାଇବି
ବନ୍ଧୁ କୁଟୁମ୍ବ ସହିତେ ତୋ ସେବା କରିବି ।
ଅର୍ଜ୍ଜୁନ ବୋଇଲେ କାର୍ଯ୍ୟ ଅତି ଗୁରୁତର
ନିମନ୍ତ୍ରଣ ଶେଷଯାଏ ନୋହିବ ଆହାର ।
ତୁହି ଏବେ ଦଣ୍ଡଘେନି ଚଳ ହସ୍ତିନାକୁ
ଦଣ୍ଡେ ହେଁ ବିଶ୍ରାମ ନାହିଁ ଏଥେ ରହିବାକୁ ।
ପାର୍ଥବାକ୍ୟେ ନିମନ୍ତ୍ରଣେ ଯୋଗାଡ଼ାଦି ଘେନି
ଅଶୀସସ୍ର ବଳ ସହ ନେଲା ଦରଶନୀ ।
ଚଳିଯାଏ ନରପତି ଥାଟର ସହିତ
ବୀରବାଦ୍ୟ ଶବଦରେ କମ୍ପଇ ଜଗତ ।
ଭୈରବକୁ ଚଳାଇଣ ଚଳିଲେ ଅର୍ଜ୍ଜୁନ
ଉଦୟମଣ୍ଡଳେ ଯାଇ ପ୍ରବେଶ ବହନ ।
ଉଦୟଗିରି ବୋଲିଣ ପର୍ବତ ଗୋଟିଏ
ସେ ପର୍ବତେ ବିଜେ କଲେ ଯାଇ ଧନଞ୍ଜୟେ ।
ବାଜେ ବୀରତୂର ଦେବଗଣଙ୍କ ଦୁନ୍ଦୁଭି
ଆକାଶ କମ୍ପିଲା ପୁଣି ଟଳିଲା ପୃଥିବୀ ।
ଉଦୟ ମଣ୍ଡଳ ରାଜା ସୁମନ୍ତ୍ର ନୃପତି
ବେଣ୍ଟ ବିନୋଦରେ ସେହି ବୁଲୁଥିଲା ରାତି ।
ତରଣୀ ନଦୀ କୂଳରେ ଜଗି ପାଣିଘାଟି
ଦେଖନ୍ତି ଯୋଦ୍ଧାଏ ତହିଁ ମାରେ ଜୀବଗୋଟି ।
ବୀରତୂର ଦାଉଣ୍ଡି ଯେ ଶିଖକୁ ଶୁଭଇ
ଶୁଣି ନୃପତି ରହିଲା ସ୍ତମ୍ଭୀଭୂତ ହୋଇ ।
ମନ୍ତ୍ରୀକୁ ରାଇ ପଚାରେ ତହୁଁ ନୃପମଣି
ବନସ୍ତେ କିସ ଶୁଭଇ ଉଲ୍‌କାପାତ ଜାଣି ।
ନୃପ ଆଜ୍ଞାରେ ଧାଇଁଲେ ଯହୁଁ ଚାରଗଣ
ଭେଟିଲେ ବନସ୍ତେ ଯାଇ ପାଣ୍ଡବ ପଞ୍ଚାଣ ।
ଚାରଗଣ ପଚାରିଲେ କେଉଁ ଦେଶ ରାଜା
ପରରାଜ୍ୟେ ବଜାଉଛ କିପାଁ ବୀରବାଜା ।
ଶୁଣ ଚାରଗଣ ବୋଲି ବୋଲେ ସେନାପତି
ଏହି ରେ ପାଣ୍ଡବ ପାର୍ଥ କ୍ଷତ୍ରୀ ମହାରଥୀ ।
ଉତ୍ତର ଦିଗକୁ ବିଜେ ରାଜା ନିମନ୍ତ୍ରଣେ
ଉତ୍ତର କୋଶଳେ ଯିବେ ସର୍ବ ରାଜାଗଣେ ।

ରାଜସୂୟ ଯାଗରେ ଥିବେ ଷୋଳଦିନଯାଏ
ଉତ୍ସବ ସାରି ଆସିବେ ଜାଣ ପୁନରାୟେ ।
ସେନାପତିର ମୁଖରୁ ଏସନକ ଶୁଣି
ଚାର ଜଣାଇଲେ ଯାଇ ନୃପତିଙ୍କୁ ପୁଣି ।
ଶୁଣ ସାବଧାନେ ଉଦେ ମଣ୍ଡଳାଧିକାରୀ
ପାର୍ଥ ବିଜେ ରାଜାଗଣ ନିମନ୍ତ୍ରଣ କରି ।
ସ୍ୱାମୀ ଜମାଗୋଷ୍ଠ ରାଜା ବନ୍ଧା ଅଛି ରଥେ
ରାଜା ନିମନ୍ତ୍ରଣ କରେ ରାଜସୂୟ ଯାଗାର୍ଥେ ।
ଏ ବଚନ ଶୁଣି ଉଦେ ମଣ୍ଡଳାଧିକାରୀ
ବୋଲେ ପରରାଷ୍ଟ୍ରେ ପଶେ କିମ୍ପା ନ ବିଚାରି ।
ରାଜାର ବଚନ ଶୁଣି କହେ ଆନ ଚାର
ସ୍ୱାମୀ ଦ୍ୱିତୀକୃଷ୍ଣ ସେହୁ ସ୍ୱୟଂ ଦାମୋଦର ।
ପ୍ରୀତି କରିଲେ ତାଠାରେ ପାଇବା କାରଣ
ଦୁଷ୍ଟ ବୁଦ୍ଧି କଲେ ନିଶ୍ଚେ ହୋଇବ ମରଣ ।
ସମ୍ମାନ ଯୋଗାଡ଼ ଘେନି ଚାଲ ମହୀପତେ
ରାଜ୍ୟଧ୍ୱଂସ ନ କରାଅ ଅର୍ଜ୍ଜୁନର ହସ୍ତେ ।
ଦର୍ଶନେ ପ୍ରସନ୍ନ ହୋଇଲେ ପାଇବାକ ଗତି
ଅସାଧ ହେଲେ ଅବଶ୍ୟ ସାଧିବ ସବୁନ୍ତି ।
ଦୂତର ବଚନେ ରାଜା ପରମ ଆନନ୍ଦେ
ଚଳିଲେ ନୃପତି ଘେନି ପାରିଷଦବୃନ୍ଦେ ।
ସହସ୍ରେକ ଭାର ସଙ୍ଗେ ଘେନି ପାଣିଦ୍ରବ୍ୟ
ଅର୍ଜ୍ଜୁନ ଛାମୁକୁ ଆସେ ସେ ନୃପତି ଦେବ ।
ଦର୍ଶନ କରିଲା ଆସି ଉଦୟ ପର୍ବତ
ଆହ୍ନିକ ସାରିଲାବେଳେ ହେଲା ପ୍ରଣିପାତ ।
ଦୂତ ବରଗିଲା ଦଣ୍ଡେ ରୁହ ଦଣ୍ଡଧରେ
ଦରଶନ କର ଆସି ମଣୋହି ଉତ୍ତାରେ ।
ଅନ୍ତର ହୋଇଣ ତହୁଁ ରହେ ନୃପମଣି
ଆହ୍ନିକ ସାରି ଅର୍ଜ୍ଜୁନ ଦ୍ୱିତୀଚକ୍ରପାଣି ।
ମଣୋହିକୁ ବିଜେକଲେ ତହୁଁ ଅରଜୁନ
ବେଗକରି ସାରିଲେ ସେ ଅମୃତ ଭୋଜନ ।
ମଣୋହି ସାରିଣ ଆଚମନ କଲେ ବିଜେ
ବିଜିଘୋଷ ଦେବଦତ୍ତ ଶଙ୍ଖ ତହିଁ ବାଜେ ।
ଆଚମନ ସାରି ଯାଇ ବିଜେ ସିଂହାସନେ
ଜମାଗୋଷ୍ଠ ମଣୋହି ଯେ କଲା ତା ବିଧାନେ
ବାସବସୁତ ସନ୍ନିଧେ ବସି ଜମାଗୋଷ୍ଠ
କର୍ପୂର ବିଡ଼ିଆ ଭୁଞ୍ଜେ ହୋଇଣ ସନ୍ତୁଷ୍ଟ ।
ସିଂହାସନେ ବିଜେ ଦ୍ୱିତୀକୃଷ୍ଣ ଅବତାର
ଦେଖାପାଇ ସୁମନ୍ତକ ବୋଲେ ବାରମ୍ବାର ।
ଛାମୁରେ ଜଣାନ୍ତି ଯାଇ ଜୟ ଯେ ବିଜୟେ
ଦର୍ଶନ କରୁଅଛଇ ଉଦେପୁର ରାୟେ ।
ଆସନରେ ବସି ଦେବ ଆଜ୍ଞା ଅବଧାରୀ
ରାଜସୂୟଯାଗକୁ ଚଳ ସୈନ୍ୟ ଘେନିକରି ।
ନିରାଧାର ବଚନକୁ କହେ ଫାଲଗୁନି
ରାଜସୂୟଯାଗକୁ ଚଳ ତୁ ଦିବା ରଜନୀ ।
ଅକ୍ଷତ ଗୁବାକ ଦେଲେ ଶ୍ରୀଗାଣ୍ଡିବଧାରୀ
ରାଜସୂୟଯାଗକୁ ଚଳ ଆଜ୍ଞା ଅବଧାରୀ ।
ରାଜାଙ୍କର ମେଳେଥିବୁ ବାରୁଣା ନଗ୍ରରେ
ବାହୁଡ଼ି ରାଜାଙ୍କୁ ଘେନିଯିବା ପର୍ଯ୍ୟନ୍ତରେ ।
ସୁମନ୍ତକ ବୋଲେ ସ୍ୱାମୀ ମୋ ଅନେକ ଭାଗ୍ୟ
ଯେଉଁ ମହାଯଜ୍ଞ ଦେଖି ପ୍ରାପ୍ତହୁଏ ସ୍ୱର୍ଗ ।
ପୂର୍ବରୁ ତପ ଯାହାର ଅଛଇ ଅର୍ଜ୍ଜିଲା
ଦର୍ଶନେ ଇହଜନ୍ମର ପାପ ନାଶଗଲା ।
ଶୁଣନ୍ତେ ଅନେକ ଜନ୍ମ ପାପ ହୁଏ ହତ
ଦେଖନ୍ତେ ବୈକୁଣ୍ଠପୁର ହୁଏ ପରାପତ ।
ବହୁତୋଷ ସୁମନ୍ତକ ନୃପତି ଶେଖର
ବହୁତ ସମ୍ଭର୍ବେ ଚଳେ ଘେନି ସୈନ୍ୟବଳ ।
ସେଠାରୁ ପ୍ରୟାଣ କଲେ ପାର୍ଥ ବୀରବର
ବିଜୟମଣ୍ଡଳ ବୋଲି ଏକଇ ନଗର ।
ସେ ରାଜ୍ୟ ଭିତରେ ଯାଇ ପଶିଲେ ସଇନି
ବାରତା ପାଇଣ ରାଜା ଆସେ ସୈନ୍ୟ ଘେନି ।
ବିଜୟ କେତନ ବୋଲି ସେ ନୃପତି ନାମ
ଅର୍ଜ୍ଜୁନ ଛାମୁରେ ଆସି କରଇ ପ୍ରଣାମ ।
ବୋଲେ ସ୍ୱାମୀ ଧନ୍ୟ ଧନ୍ୟ ମୋର ବେନି ଆଖି
କର୍ଣ୍ଣେ ଶୁଣିଥିଲି ଏବେ କୃତାର୍ଥ ମୁଁ ଦେଖି ।
ଦ୍ୱିତୀନିରଞ୍ଜନ ଆସି ବିଜେ ମୋର ପୁରୀ
ଜନ୍ମାନ୍ତ ପାପ ନାଶିଲେ ଦେଖି ନରନାରୀ ।
ଆପଣେ ଚାମର ଧରି ଢ଼ାଳଇ ନୃପତି
କୃତକୃତ୍ୟ ହୋଇ ପାର୍ଥ କଟକେ ପଶନ୍ତି ।
ବିଜୟମଣ୍ଡଳ ରାଜ୍ୟେ ପଶନ୍ତେ ଶୋଭିଲା
ଆକାଶ ତେଜି କି ଇନ୍ଦ୍ର ଆସି ବିଜେ କଲା ।
କେଶବାସ ଅସମ୍ଭାଳେ ନାରୀଏ ଧାଁମନ୍ତି
ଗୁରୁଜନଙ୍କୁ ନ ମାନି ଦେଖିଣ ଯାଆନ୍ତି ।
ମୋହବଶ ହେଲେ ଦ୍ୱିତୀକୃଷ୍ଣ ମୁଖ ଚାହିଁ
ବୋଲନ୍ତି ଅନଙ୍ଗ ଯାକୁ ପଟାନ୍ତର ନାହିଁ ।
ଅର୍ଜ୍ଜୁନ ବିଜୟ କଲେ ଜଗତୀ ଉପରେ
ଶତଭାର୍ଯ୍ୟା ଘେନି ରାଜା ଖଟଇ ପୟରେ ।
ଆଲଟ ଚାମର ଘେନି ଢାଳଇ ରାଜନ
ବୋଲେ ଅନୁଗ୍ରହ ମୋର ଥାଉ ହେ ଅର୍ଜ୍ଜୁନ ।
ଶୁଦ୍ଧ ସୁବର୍ଣ୍ଣ କଳସ ପତାକାର ଚିହ୍ନ
ଉତ୍ସବ କରାଏ ରାଜା ଆପଣା ଭୁବନ ।

ନିମନ୍ତ୍ରଣ କଲେ ତାକୁ ସୁଭଦ୍ରାର ନାହା
ହସ୍ତିନା ରାଜ୍ୟକୁ ରାଜା ବେଗହୋଇ ଯାଆ ।
ସେ ସ୍ୱାମୀଙ୍କର ଆଜ୍ଞାକୁ ନିରାଧାର ଘେନି
ଅନୁକୂଳ କରି ରାଜା ସାଜିଲା ସଇନି ।
ଆପଣେ ଥାଟ ଚଳାଇ ଦେଲେକ ଅର୍ଜ୍ଜୁନ
ଦଣ୍ଡ ଘେନିଣ ବାହାର ବିଜୟକେତନ ।
ତହୁଁ ଚଳାଇ ଅର୍ଜ୍ଜୁନ ସାଜି ନିଜ ଥାଟ
ପ୍ରବେଶ ହୋଇଲେ ଯାଇ ଦେଶ ସଉରାଷ୍ଟ୍ର ।
କୃତକେଶରୀ ନାମରେ ତହିଁ ନୃପବର
ବହୁଦେଶ ସାଧି ସେହୁ ରାଜ୍ୟର ଈଶ୍ୱର ।
ଅନେକ ରାଜାଙ୍କ ତୁଲେ ହୁଏ ସେ ବିବାଦୀ
ପ୍ରତାପ କେଶରୀ ନାମେ ବହୁରାଜ୍ୟ ସାଧି ।
ଅବିରତରେ ପଳାଣ କରୁଥାଏ ଥାଟ
ଉତ୍ତର କୋଶଳେ ସେହି ଅଟେ ନୃପଶ୍ରେଷ୍ଠ ।
ଗଙ୍ଗା ଯମୁନା ନଦୀର ମଧ୍ୟରେ ତା ରାଜ୍ୟ
ବଡ଼ ଧର୍ମବନ୍ତ ଅଟେ ସେ ନୃପତି ଆର୍ଯ୍ୟ ।
ଧନଧାନ୍ୟେ ପରିପୂର୍ଣ୍ଣ ଅଟଇ ତା କୋଷ
ରାଜା ମଧ ଧନଶାଳୀ ଧାର୍ମିକ ପୁରୁଷ ।
ପନ୍ଦର କ୍ଷୌହଣୀ ସୈନ୍ୟ ତାହାକୁ ଖଟଇ
ପଞ୍ଚଧାରା ପର୍ବତରେ ତା ରାଜ୍ୟ ଅଟଇ ।
ପଞ୍ଚଶତ ପାରିଦଣ୍ଡ ନୃପତି ଖଟନ୍ତି
ଉତ୍ତର କୋଶଳେ ତାର ଅଛଇ ସୁଖ୍ୟାତି ।
ଅର୍ଜ୍ଜୁନ ଯାଇ ପ୍ରବେଶ ହେଲେ ତାର ରାଜ୍ୟେ
ବୀରତୂର ନାଦେ ଢ଼ୋଲ ଚହଳରେ ବାଜେ ।
ଦେଶାଉର ବାର୍ତ୍ତା ଦେଲା ନୃପତିଙ୍କୁ ଆଣି
ଅର୍ଜ୍ଜୁନ ତୋ ରାଜ୍ୟେ ଥାଟ କଲାଣି ପଳାଣି ।
ସକଳ ରାଜ୍ୟକୁ ସେହୁ ଆସୁଅଛି ସାଧି
ଜମାଗୋଷ୍ଠ ନୃପତିକୁ ରଥେ ଅଛି ବାନ୍ଧି ।
କ୍ଷତ୍ରିୟବର ସୁନ୍ଦର ବଡ଼ଇ ପ୍ରତାପୀ
ସଂଗ୍ରାମେ ଜଗତଜିଣା ପୁଣି ମହାକୋପୀ ।
ଚାରଠାରୁ ଶୁଣି ନୃପ ହୋଇ ପରଚଣ୍ଡ
ସନ୍ନିଧିକୁ ହକାରିଲା ଶତେ ପରିଦଣ୍ଡ ।
ଆରେ କିଏ ପଶିଲା ମୋ ରାଜ୍ୟେ ନ ବିଚାରି
ବେଗକରି ମୋ ଛାମୁକୁ ଆଣ ତାକୁ ଧରି ।
ପ୍ରାଣେ ତାହାକୁ ନ ମାରି ବାନ୍ଧିକରି ଅଣା
କେବଣ ଦେଶୁ କାହିଁକି ଆସିଛି ତା ଜଣା ।
ନୃପତି ବଚନେ ପାରିଦଣ୍ଡ ରାଜାମାନେ
ସମଦଣ୍ଡ ସାଜି ବେଗେ ଗଲେ କୋପମନେ ।
ରଥଗଜ ପଦାତିକ ନ ଯାଇ କଳନ
ବେଢ଼ିଣ ସଇନିଯାଇ ପ୍ରହାରିଲେ ବାଣ ।

ଆଗୁଆଣି ଥାଟେ ବୀର ଅର୍ଜ୍ଜୁନକୁ ଦେଖି
ତହୁଁ ସଇନି ଭାଜିଲେ ସଂଗ୍ରାମ ଉପେକ୍ଷି ।
ଥାଟ ଭାଜନ୍ତେ ବିଜୟ ଜୟ ସେନାପତି
ଧନୁ ଧରି ଓଗାଳିଲେ ହୋଇ କୋପମୂର୍ତ୍ତି ।
ଦେଖି କୋପାନଳେ କୃତକେଶରୀ ସଇନି
ଆକର୍ଷି ଶର ବିନ୍ଧିଲେ ଶରାସନ ଘେନି ।
ଅସ୍ତ୍ରମାନ ପ୍ରହାରିଲେ ଜଳବୃଷ୍ଟି ପ୍ରାୟେ
ଶର ବିଘାତେ ଗଗନ ଅନ୍ଧକାରମୟେ ।
ଅବିଚ୍ଛିନ୍ନ ନାରାଚକେ ବହୁ ପରିମାଣି
ଗଗନେ ଅଦୃଶ୍ୟ ହେଲେ ଦିନମଣି ।
ଘୋର ଯୁଦ୍ଧ ଦେଖିକରି ଉଠିଲେ ଅର୍ଜ୍ଜୁନ
ଲକ୍ଷବଳ ଧନୁ ହସ୍ତେ ଦିଶିଲା ଶୋଭନ ।
ଅକ୍ଷୟ ତୂଣ ନାରାଚ ଧନୁରେ ପୂରାଇ
ସର୍ବ ସୈନ୍ୟଙ୍କୁ ବିନ୍ଧିଲେ କୋପଭର ହୋଇ ।
ସୈନ୍ୟମାନଙ୍କ ଉପରେ ଶରମାନ ପଡ଼ି
କବଚ କୁଣ୍ଡଳ ସେନା ପଡ଼ିଲେକ ଛିଡ଼ି ।
ଗଜ କୁମ୍ଭସ୍ଥଳେ ପଡ଼ି ନାରାଚ ନିକିଳି
ମହାମତ୍ତ ଗଜମାନେ ପଡୁଛନ୍ତି ଢ଼ଳି ।
କୃତକେଶୀ ସୈନ୍ୟ ମହାବନସ୍ତର ପ୍ରାୟେ
କାଳାନଳର ପବନ ଅଟେ ଧନଞ୍ଜୟେ ।
ପବନ ବିଘାତେ ଯେହ୍ନେ ତରୁ ତଳେ ଲୋଟି
ତେହ୍ନେ କାଳାନଳ ଶର ପାର୍ଥ କରେ ବୃଷ୍ଟି ।
ଶରଘାତେ ସକଳଙ୍କୁ ବିନ୍ଧେ ସବ୍ୟସାଚୀ
ଯେସନେ ଅଗ୍ନି ବନସ୍ତ ଦହନ କରୁଛି ।
ପଡ଼ିଲେ ସଇନି କୁଳ ପାର୍ଥ ଶରାଘାତେ
ଭାଜି ଚୂର୍ଣ୍ଣ ହେଲା ରଥ ଗଜାଦି ସହିତେ ।
ନୃପତି ଆଗେ କହିଲେ ଯାଇଁ ଯୂଥପତି
ଅର୍ଜ୍ଜୁନ ଶରେ ତୋ ସୈନ୍ୟ ହେଲେ ବିନଶ୍ୟତି
ଯୂଥପତିର ବଚନେ କୃତକେଶୀ ରାୟେ
କୋପରେ ଗର୍ଜ୍ଜନ କଲା କାଳ ସର୍ପ ପ୍ରାୟେ ।
ଅଧର ପୁଷ୍ଟ କରିଣ ଓଷ୍ଠେ ଦନ୍ତଚାପି
ଆହ୍ୱାନ ଭୂମିକୁ ସେହି ପଡିଲାକ କ୍ଷେପି ।
ଲୌହସାର ବେନିଗଦା ଘେନି ରାଜା ହସ୍ତେ
ରେରେକାର କରି ତହୁଁ ଧାଏଁ ପାଦଗତେ ।
ମହାବଳବନ୍ତ ରାଜା ପ୍ରତିଜ୍ଞା ତା ଗୁରୁ
କାଳସର୍ପ ଗର୍ଜେ ଯେହ୍ନେ ଟେକିକରି ଫେରୁ ।
ଧାଇଁଲା ନୃପତି ଯହୁଁ ଗୋଡ଼ାଇଲେ ଯୋଧୀ
ରେରେକାର କରି ଶର ବିନ୍ଧିଲେକ ସନ୍ଧି ।
ରାଜାକୁ ଦେଖି ବିଜୟ ଜୟ ସେନାପତି
ରଥକମ୍ପାଇ ଉଠିଲେ ହୋଇ କୋପମୂର୍ତ୍ତି ।

ସୈନ୍ୟ ଧାମନ୍ତେ ଅର୍ଜ୍ଜୁନ କରେ ସମାର୍ଜନି
ରହ ରହ ସଇନି ହୋ ବୋଲି କରେ ଧ୍ୱନି ।
ଅର୍ଜ୍ଜୁନ ବୋଲେ ଅଜ୍ଞାନୀ ଆରେ ନୃପମଣି
ସମ୍ପଦଣ୍ଡ ହରାଇବୁ ବାରତା ନ ଜାଣି ।
ମାତଲିକି ଆଜ୍ଞାକଲେ ସୁଭଦ୍ରାର ନାହା
ନୃପତି ଛାମୁକୁ ବେଗେ ରଥ ମୋର ବାହା ।
ଅର୍ଜ୍ଜୁନ ବଚନେ ରଥ ଚଳାଇ ସାରଥି
କୃତକେଶୀ ଆଗେ ରଥ କରିଲା ଝଟତି ।
ରଥ ଦେଖି ଧାତିକାରେ ଗଦାକୁ ବୁଲାଇ
ଅର୍ଜ୍ଜୁନ ରଥେ ତାହା ପ୍ରହାର କରଇ ।
ଅର୍ଜ୍ଜୁନ ବୋଇଲେ ଆରେ ଅଜ୍ଞାନୀ ତୁ ଭୂପ
କାହା ଉପରେ ପ୍ରତିଜ୍ଞା କରୁଛୁ ଏ ରୂପ ।
କାଳସର୍ପ ମୁଖେ କେବେ ନ ବର୍ତ୍ତଇ ପ୍ରାଣୀ
ରାଜସୂୟଯାଗ ବାରତା ତୁ ନାହୁଁ କି ଜାଣି ।
ଚାରିସହସ୍ର ରାଜାଙ୍କୁ ବରିବି କୌଶଳେ
ସକଳ ଦେଶରୁ ଜାଣ ଯିବେ ମହୀପାଳେ ।
ଆମ୍ଭେ ତ ନୋହୁ ତୋହର ବଇରୀ ବିବାଦୀ
କାହାର ସଙ୍ଗତେ ନୋହୁ ଆମ୍ଭେ ଦ୍ୱନ୍ଦବାଦୀ ।
ନିମନ୍ତ୍ରଣ ଦେବା ପାଇଁ ଆସିଅଛୁ ଆମ୍ଭେ
ଅଜ୍ଞାନେ ସୈନ୍ୟ କିପାଇଁ ମରାଉଛ ତୁମ୍ଭେ ।
ଉତ୍ତର ଦିଗର ରାଜା ଏଡ଼ିକି ମୂର୍ଖକି
ବିଚାର ନ କର ଜମାଗୋଷ୍ଠ ବନ୍ଧୀ ଦେଖି ।
ଜରାସନ୍ଧ ବଧ ହେଲା ସେ ଯଜ୍ଞ ନିମନ୍ତେ
ତାହାର ବାର୍ତ୍ତାକି ତୋତେ ନ କହିଲେ ଦୂତେ ।
ଆମ୍ଭର ତୁଲେ ତୁ କିମ୍ପା ସମର କରିବୁ
ଏଡ଼େ ସମ୍ପଦ ହରାଇ ବୃଥାରେ ମରିବୁ ।
ଅର୍ଜ୍ଜୁନ ବଚନ ଶୁଣି ରାଜା କୃତକେଶୀ
ପ୍ରଣାମ କରିଲା ପାର୍ଥ ପାଦତଳେ ଆସି ।
ପୁଣିହିଁ ସେ ରାଜ ଦେଖେ ଅର୍ଜ୍ଜୁନର ତେଜ
ରଥରେ ବସି ଅଛଇ ହୋଇ ଚତୁର୍ଭୁଜ ।
ଆପଣାର ରଥ ତେଜ୍ୟା କରି ନୃପମଣି
ବୋଲେ ତୁହି ନାରାୟଣ ଅଟୁ ଫାଲଗୁନି ।
ମୁଁ ହୀନ ପାମର ଦେବ ନ ପାରିଲି ଚିହ୍ନି
ମନ୍ଦପଣ କରି ତୋତେ ପୁଚ୍ଛିଲି ନ ଜାଣି ।
ସ୍ୱାମୀ ଅଜ୍ଞାନ ଲୋକର ଭକତି ଘେନିବା
ଦୋଷୀ ଲୋକର ଦୋଷକୁ କ୍ଷମା କରିଦେବା ।
ଅର୍ଜ୍ଜୁନ ବୋଇଲେ ଉଠ କୃତକେଶୀ ରାୟେ
ବାଞ୍ଛା ସିଦ୍ଧି ହେଉଥାଉ ତୋର ସର୍ବଦାୟେ ।
ତୁ ଯେ ବିଜେ ମଣ୍ଡଳର ଅଟୁ ଅଧିପତି
ଧାର୍ମିକରାଜା ଜଗତେ ତୋ ନାମ ବିଖ୍ୟାତି ।

ଅକାରଣେ ମରାଇଲୁ ସଇନି ଲୋଚାଏ
ବସାଇଣ ତିଆରନ୍ତି ପାଶେ ଧନଞ୍ଜୟେ ।
କଟକେ ଉତ୍ସବ ତହୁଁ କରାଇ ନୃପତି
ଅର୍ଜ୍ଜୁନ ବିଜୟ କଲେ ଉତ୍ତର ଜଗତୀ ।
ଅକ୍ଷତ ଯୋଗାଡ଼ ନେଇ ଦେଲେ ଫାଲଗୁନି
ରାଜସୂୟଯାଗକୁ ଯାଯା ତୋର ସୈନ୍ୟଘେନି ।
ନୃପ ବହୁ ଧନ ନେଲା ଦେଖା ଦରଶନୀ
କଟକୁ ବାହାର ହୁଏ ଶୁଭଲଗ୍ନ ଘେନି ।
ତହୁଁ ଥାଟ ଚଳାଇଲେ ବୀରବର ପାର୍ଥ
ପଶିଲେ ସେ ଯାଇକରି ଅସ୍କନ୍ଦ ବନସ୍ତ ।
ଅସ୍କନ୍ଦ ବନେ ଅରୁଣ ଉଦୟ ପର୍ବତ
ନନ୍ଦୀ ବୋଲି ଗ୍ରାମ ତହିଁ ବଡ଼ାଇ ପ୍ରଶସ୍ତ ।
ବେନିଶତ ଯୋଜନ ସେ ନଗ୍ର ଆୟତନ
କଟକ ମାଡ଼ି ବସିଛି ଏକାଦଶ ଯୂଣ ।
ନନ୍ଦିକେଶରୀ ପ୍ରସନ୍ନେ ସେ ରାଜା ଅଜେୟ
ସେହୁ ରାଜ୍ୟେ ପ୍ରବେଶିଲେ ବୀର ଧନଞ୍ଜୟ ।
ରାଜାଙ୍କର ଅଟଇ ସେ ସୁବର୍ଣ୍ଣ ଉଆସ
ସବୁ ପ୍ରଜାଙ୍କ ଗୃହରେ ସୁବର୍ଣ୍ଣ କଳସ ।
ଅଣୀ ମର୍ଭୁତ ବସନ୍ତି କଟକ ଭିତର
ସୁବର୍ଣ୍ଣ ନିର୍ମାଣ ଅଟେ ସଭିଙ୍କର ଘର ।
ପରରାଷ୍ଟ୍ରର ବିବାଦୀ ନୁହେଁ ମହାରାଜା
କୁବେର ସମାନ ତାର ନନ୍ଦିକେଶ ପୂଜା ।
ଶତ୍ରୁ ଉପଗତ ତାକୁ ନାହିଁ ଚତୁର୍ଦ୍ଦଶେ
ତାହାର ରଣକୁ ଦେବେ ତ୍ରାସନ୍ତି ଆକାଶେ ।
ଦିଗବିଜେ କରିବାକୁ ବାସବ ଆତ୍ମଜ
ଦଣ୍ଡ ଘେନିଣ ପଶନ୍ତେ ଯାଇ ତାହା ରାଜ୍ୟ ।
ନନ୍ଦିସଦନ ବୋଲିଣ ତହିଁ ନଦୀଟିଏ
ସେ ନଦୀ ଦକ୍ଷିଣେ ବହେ ସ୍ୱର୍ଣ୍ଣ ରଜୋମୟେ ।
ସେ ନଦୀରେ ସ୍ନାନ କଲେ ବୀର ଫାଲଗୁନି
ସୁବର୍ଣ୍ଣ କାନ୍ତି ପରାୟେ ଦିଶିଲେ ସଇନି ।
ନିତ୍ୟକର୍ମ ସାରି ଯାଇ ରାଜ୍ୟରେ ପ୍ରବେଶ
ବାଜେ ଦୁନ୍ଦୁଭି ଦାଉଣ୍ଡି ପୁଣି ବିଜିଘୋଷ ।
ରାଜା ଆସ୍ଥାନକୁ ଶୁଭେ ବାଦ୍ୟଘୋଷ ନାଦ
ନୃପତିକି ଜଣାଇଲେ ମନ୍ତ୍ରୀ ଶିବପାଦ ।
ସ୍ୱାମୀ ରଥ ଗଜ ସହ ପଦାତି ସଇନି
ଘେନି ରାଜ୍ୟେ ପଶେ କେହୁ କାହାକୁ ନ ମାନି
ମନ୍ତ୍ରୀ ବଚନେ ବୋଇଲ ସେ ନନ୍ଦିକେଶ୍ୱର
ଆରେ କେଉଁ ଦେଶ ରାଜା ତା ତଦନ୍ତ କର ।
ପର ଥାଟ ହେଲେ ଆଣ ମୋ ଛାମୁକୁ ଧରି
ବନ୍ଧୁ ହୋଇଥିଲେ ଆଣ ଗଉରବ କରି ।

ରାଜାର ବଚନ ଶୁଣି ମନ୍ତ୍ରୀ ଶିବପାଦ
ଅର୍ଜ୍ଜୁନ ଛାମୁକୁ ଚଳେ ଘେନିଣ ସମ୍ବାଦ ।
ଅର୍ଜ୍ଜୁନ ପଶିଲେ ନନ୍ଦିକେଶ୍ୱର ଦେଉଳେ
ବିନୟ ଭାବେ ସେବଇ ତାଙ୍କ ପାଦତଳେ ।
ଶୁଦ୍ଧସ୍ଫଟିକର ପ୍ରାୟ ତାଙ୍କର ମୂରତି
ମର୍କତ ରସାଣ ପ୍ରାୟ ଦିଶେ ଲିଙ୍ଗ ମୂର୍ତ୍ତି ।
ଜୟ ଜୟ ଦ୍ୱିତୀରୁଦ୍ର ନନ୍ଦିକେଶ ସ୍ୱାମୀ
ଦୀନାଙ୍ଗ ମୁରୁଧୂନା ପାଦରେ ପ୍ରଣମି ।
କର୍ମାଙ୍ଗ ପୁରୁଷ ତୁହି ଜୟ ତୁ ଧବଳା
ସର୍ବଦା ପ୍ରସନ୍ନ ମୋତେ ହୁଅ ଆହେ ଭୋଳା ।
ଡାହାଣେ କର୍ଣ୍ଣେ କଟାରୀ ବାମରେ ଉଦଣ୍ଡ
ଲଲାଟପାଟ ତୋହର ଚନ୍ଦନେ ତ୍ରିପୁଣ୍ଡ୍ର ।
ଦୁଃସହ ଦୂରନ୍ତକକୁ ହର ମୋର ଶୂଳି
ନୃତ୍ୟରଙ୍ଗେ ଭୋଳାତୋତେ ହୋଇଲେ କପାଳୀ ।
ପିତା କୁଣ୍ଡଳୀ ତୋହର ଶ୍ରୀକରେ ଅଧାଟି
ସପତ ସ୍ୱରରେ ବୀଣା ତାଳ ତୋତେ ଖଟି ।
କ୍ଷଣକରେ ନୃତ୍ୟକରି କ୍ଷଣେ ଗୀତ ଗାଇ
ପାଇଲୁ ଅଭୟ ପଦ ଶିବଙ୍କୁ ମନାଇ ।
ବିଘ୍ନ ବିନାଶନ ନାଥ ଯୋଗଧ୍ୟାନମତ୍ତା
ଭକତବତ୍ସଳ ତୁହି ପରଲୋକ ଚିନ୍ତା ।
କଇଳାସ ସ୍ୱର୍ଗ ତୁହି ସିଂହଦ୍ୱାର ପାଳ
ତୋର ଭୟେ ନ ପଶନ୍ତି ଦୈତ୍ୟ ଦିଗପାଳ ।
ଦଣ୍ଡେକ ରହ ବୋଲିଣ ବୋଲୁ ଦେବତାଙ୍କୁ
ସତ୍ୟରେ ସତର ଲକ୍ଷ ହୋଇଲା ତୁମ୍ଭଙ୍କୁ ।
ତୁ ଦେବ ପରମାନନ୍ଦ ଅଟୁ ମହାଯୋଗୀ
ଯାହାର ନାମ ଧରନ୍ତେ ଯମଦର୍ପ ଗଞ୍ଜି ।
ତବ ଚରଣେ ମୋହର ସଦା ଭକ୍ତି ସେବା
ଭଇରବ ନାଥ ମୋତେ ପ୍ରସନ୍ନ ହୋଇବା ।
ଶରଣ ଉଦ୍ଧାରଣ ତୁ ଦେବ ସର୍ବକାଳେ
ଜନ୍ମେ ଜନ୍ମେ ସେବା ଥାଉ ତୁମ୍ଭ ପାଦତଳେ ।
ସଦାନନ୍ଦର ନନ୍ଦନ କହ୍ନି କନ୍ଦଜିତ
ଏ ଭବସାଗରୁ ମୋତେ ଉଦ୍ଧର ତୁରିତ ।
ଶ୍ରୀନନ୍ଦିକେଶ୍ୱର ସ୍ୱାମୀ ନମସ୍ତେ ନମସ୍ତେ
ଶାରଳା ଦାସ ତୁମ୍ଭଙ୍କୁ ଚିନ୍ତଇ ନିରତେ ।
ଅନେକ ବିନୟ ଯହୁଁ ହେଲେ ଫାଲଗୁନି
ଭକତେ ପ୍ରସନ୍ନ ହେଲେ ତହୁଁ ମହାଜ୍ଞାନୀ ।
ବିଜେ ରୁଦ୍ରଦେବ ଘେନି ଶ୍ରୀରୁଦ୍ରଦେବତା
ଦେଖି ପାର୍ଥ ତାଙ୍କ ପାଦେ ହୋଇଲା ପ୍ରଣିତା
ହସ୍ତେ ଏକ ମାଳା ଧରି ଗିରିଜାର ବଳା
ଅର୍ଜ୍ଜୁନର କଣ୍ଠେ ନେଇ ଦେଲେ ଜୟମାଳା ।
ପ୍ରସନ୍ନରେ ଆଜ୍ଞା ଦେଲେ ଦ୍ୱିତୀ ବିଶ୍ୱବାସୀ
ବାଞ୍ଛା ସିଦ୍ଧ ହେଉ ତୋର କଲ୍ୟାଣ ପାଆସି ।
ଏ ନନ୍ଦି ଗ୍ରାମରେ ରାଜା ନନ୍ଦନ ନୃପତି
ତୋହରି ପାଦପଦ୍ମରେ କରୁ ସେ ଭକତି ।
ନନ୍ଦିକେଶ୍ୱର ପ୍ରସନ୍ନେ ନନ୍ଦିକେଶ ରାଜା
ଅର୍ଜ୍ଜୁନ ପାଦ ପଦ୍ମରେ ଯାଇ କଲା ପୂଜା ।
ଦେଖି ସାନନ୍ଦ ହୋଇଲା ତହୁଁ ଫାଲଗୁନି
ନିମନ୍ତ୍ରଣ କଲା ତାକୁ କରେ ଅର୍ଘ୍ୟଘେନି ।
ବାବୁ ଦଣ୍ଡ ଘେନିଯାଅ ତୁ ପରମ ଯୋଗୀ
ବରୁଣାବନ୍ତ ସଭାକୁ ଚଳ ବେଗି ବେଗି ।
ଅର୍ଜ୍ଜୁନର ପାଦତଳେ ତହୁଁ ସେ ପ୍ରଣମି
ବୋଲେ ଆଜ୍ଞା ପରମାଣେ ଯିବି ଦେବସ୍ୱାମୀ
ଯେବେ ଅନୁଗ୍ରହ କଲୁ ଦେବ ଫାଲଗୁନି
ଭକ୍ତିଭାବରେ ମାଗିବି ଘେନିବୁ ଦଇନୀ ।
ଅର୍ଜ୍ଜୁନ ବୋଇଲା ମାଗ ଯେମନ୍ତ ତୋ ଇଚ୍ଛା
ଜମାଗୋଷ୍ଠ ଛାଡ଼ି ମାଗ ଯେମନ୍ତ ତୋ ବାଞ୍ଛା ।
ଶୁଣିଣ ନୃପତି ତହୁଁ ହେଲା ମୌନବ୍ରତ
ଦଣ୍ଡଘେନି ବାହାରିଲା ଶିରେ ଦେଇ ହାତ ।
ଅର୍ଜ୍ଜୁନ ବୋଲଇ ତୁହି ଚଳ ଦିବାରାତ୍ରେ
ମୋର ଯିବାଯାଏ ଥିବୁ ସେ ବାରୁଣାବନ୍ତେ ।
ତହୁଁ ଅର୍ଜ୍ଜୁନ ଚଳିଲେ ନନ୍ଦିଗ୍ରାମ ଜିଣି
କଳପ ରାଜ୍ୟେ ପ୍ରବେଶ ହୋଇଲେ ତକ୍ଷଣି ।
ଚାଣୁରସେନ ବୋଲିଣ ତହିଁ ନରପତି
ଛାମୁରେ ଡଗର ଯାଇ କହିଲା ଝଟତି ।
କେବଣ ଦେଶର ରାଜା ଆସେ ଦଣ୍ଡଘେନି
ରଥ ଗଜ ସହ ଅଛି ପଦାତି ସଇନି ।
ଦେବଗଣଙ୍କ ଦୁନ୍ଦୁଭି ବାଜେ ଅପ୍ରମିତ
ବହୁ ରାଜ୍ୟ ଜିଣିଛି ସେ ପ୍ରତିଜ୍ଞା ବହୁତ ।
ଏମନ୍ତେ ପ୍ରତିଜ୍ଞା ଶୁଣି କହନ୍ତେ ଡଗର
ଶୁଣିକରି କୋପାନଳ ହୋଇଲା ଚାଣୁର ।
ଯମଅର୍ଗଳକୁ ଭାଙ୍ଗି ପାରେ ମୁହିଁ ରଣେ
ଆଦିତ୍ୟ ଲୁଚିଯାଏ ମୋ ଥାଟର ପଲାଣେ ।
କୁବେର ଠାବରୁ ମୁହିଁ ପାଇଛି ସମ୍ମାନ
ଭୟେ ନାଗଲୋକ ଦ୍ୟନ୍ତି ଶତଭାର ଧନ ।
ଉତ୍ତର କୋଶଳେ ରହି ଅଟେ ରଣଜିତା
ସଂଗ୍ରାମେ କ୍ଷତ୍ରିୟ ନାହିଁ ମୋତେ ଯେ ଜିଣନ୍ତା ।
ରାଜାର ପ୍ରତିଜ୍ଞା କରି ଅର୍ଜ୍ଜୁନ ସଇନି
କଟକେ ପଶିଲେ ଯାଇ କରି ଘୋରଧ୍ୱନି ।
ଜଗତୀରେ ଥାଇ ରାଜା ଦେଖେ ସମଦଣ୍ଡ
କୋପରେ ନୃପତି କରେ ଧଇଲା କୋଦଣ୍ଡ ।

ଦଶ ଅଇବ୍ରତ ମଲ୍ଲ ଘେନି ମହାବୀରା
ଜଗତୀ ଉପରୁ ସେହି ମାଇଲାକ ଚିରା ।
ଧାମନ୍ତେ ଦୁର୍ଦ୍ଦଣ୍ଡ ବଳ ବାହାନାଦ ତେଜି
ରେ ରେ ଶବଦେ ଉଠିଲେ ସର୍ବେ ଗଳଗାଜି ।
ଯେସନେ ପର୍ବତ ଆସେ ସ୍ଥାନ ତେଜ୍ୟାକରି
ଗିରି ସଦୃଶ ଶରୀର ଦିଶଇ ତାଙ୍କରି ।
କରେ ଘେନିଛନ୍ତି ଲୁହା ବେନି ଗଦାବର
ସେହି ଏକ ଏକ ଗଦା ଅଶୀ ଅଶୀ ଭାର ।
ସୈନ୍ୟ ମଣ୍ଡଳ ଘେନିଣ ବାହେ ବୀରବାହୁ
ଅଧରକୁ ବିକାଶନ୍ତି ଯେହ୍ନେ ଦିଶେ ରାହୁ ।
ବିଜୟ ଘୋଷ ମର୍ଦ୍ଦଳ ଦାଉଣ୍ଡି ବଜାଇ
ବୀରନାଦ ଘୋରଘଣ୍ଟ କାହାଳି ବଜାଇ ।
ଆରେରେ ବୋଲି ଧାଇଁଲେ ସକଳ ସେ ବୀରେ
ପାର୍ଥ ଥାଟ ଓଗାଳିଲେ କଟକ ବାହାରେ ।
ଗଦା ବୁଲାଇ ପ୍ରହାର କଲେ ବଜ୍ରପାଣି
ଶବଦେ ଉଲୁକାପାତେ କମ୍ପିଲା ଧରଣୀ ।
ଦୁର୍ଭାର ସଇନି ଦେଖି ପାର୍ଥ ସେନାପତି
ଆଗେ ଓଗାଳିଲେ ଯାଇ ହୋଇ କୋପମୂର୍ତ୍ତି ।
ମହାକ୍ଷତ୍ରୀ ବଳବନ୍ତା ଅଟେ ଦର୍ପୀରାଜା
ସମରେ ଅଭୟ ଅଟେ ଯମଦର୍ପ ଗଞ୍ଜା ।
ସମରେ ସମ୍ପର୍ବେ ଦୁଇବଳ ହେଲେ କଛ
ଦୁହେଁ ସମ୍ଭାଳି ନୋହିଲେ ରହିବାକୁ ପଛ ।
ଧାଇଁ ଉପରେ ପଡ଼ିଲେ ଚାଣୁର ସଇନ୍ୟେ
ପାର୍ଥ ସୈନ୍ୟ ନ ଘୁଞ୍ଚିଲେ ରହି ସେହି ସ୍ଥାନେ ।
କାର୍ମୁକମାନ ତାଙ୍କର ଶରୀରରେ ପଡ଼ି
ନ କାଟଇ ତାଙ୍କ ଅଙ୍ଗେ ପଡ଼ଇ ଉପୁଡ଼ି ।
ଯହୁଁ ଶର ନ ଭେଦିଲା ତାହାଙ୍କର ସେହ୍ନା
କୋପେ ବାସବ ବିନ୍ଧିଲା ଧରି ତୀକ୍ଷ୍ଣ ମୁନା ।
ହୃଦେ ନାରାଚ ବହୁତ ଯହୁଁ ଗଲା ଫୁଟି
ଲୋମେ ଲୋମେ ଶରବାଜି ହେଲା ରକ୍ତବୃଷ୍ଟି
ରୁଧିର ତ୍ରିପଣ୍ଡ ହେଲା ସମସ୍ତଙ୍କ କାୟ
ସ୍ୱାଭାବେ ଦିଶନ୍ତି ସେହୁ ଅଗ୍ନିବଳ ପ୍ରାୟ ।
ଏକ ଉପରେ ଆରେକ ପଡ଼ଇ ଗରଜି
କେହୁ ନିସତ ହୋଇଣ ରଣୁ ଯାଏ ଭାଜି ।
ଏରୂପେ ବିନ୍ଧନ୍ତେ ପାର୍ଥେ ନାରାଚ ଅନେକ
ଦନ୍ତେ ତିରଣ ଧରିଣ ବୋଲନ୍ତି ହେ ରଖ ।
ପ୍ରଚଣ୍ଡ ମାଲ ବୋଲିଣ ଏକ ମହାବୀରା
ପୃଥ୍ୱୀ ନ ସହଇ ସେହି ଦୁଷ୍ଟ ମଲ୍ଲଭାରା ।
ବଜ୍ରାବଳୀ ବେନି ଗଦା ବୁଲାଇ ସେ ଉଠି
ପାର୍ଥଶରେ ତା ମସ୍ତକୁଁ ରକ୍ତ ହୁଏ ବୃଷ୍ଟି ।
ଲୋମ ଲୋମକେ ନାରାଚ ପଡ଼ଇ ତା କାୟେ
ଶରବୃଷ୍ଟି ହୁଏ ଯେହ୍ନେ ଝିଙ୍କପକ୍ଷୀ ପ୍ରାୟେ ।
ଲକ୍ଷ ଲକ୍ଷ ବାଣ ଘେନି ବିନ୍ଧେ ଫାଲଗୁନୀ
ତଥାପିହିଁ ନ କମ୍ପଇ ସେ ବୀର ଅମାନି ।
କରେ ଚକ୍ର ଘେନି ପାର୍ଥ ମାରନ୍ତେ ତୁରିତେ
ମୁଣ୍ଡ ଛିଡ଼ିପଡ଼େ ଯାଇ ଚାଣୁର ଅଗ୍ରତେ ।
ଦେଖି ମୂର୍ଚ୍ଛାଗତ ହୋଇ ରାଜା ମହାମଲ୍ଲ
ଅସାଷ୍ଟମ ହୋଇ ତହୁଁ ପଡ଼େ ଭୂମିତଳ ।
ତା ଦେଖି ରଥୁ ଓହ୍ଲାଇ ବାସବ ଦୁଲ୍ଲାଳ
ପାଦଗତି କରି ଧରେ ଚାଣୁରର ବାଳ ।
ଆକର୍ଷି ଧରନ୍ତି ଖଣ୍ଡା ମାରିବ ବିବସ
ଏକାଳେ ମୁଖେ ଭରିଲା ସେହୁ ଦଶନଖ ।
ଅର୍ଜ୍ଜୁନ ଦୟା କରିଲେ ତା ଅବସ୍ଥା ଦେଖି
ଛାଡ଼ି ଦେଲେ ତାର କେଶ କୋପକୁ ଉପେକ୍ଷି ।
ଶରଣ ରକ୍ଷଣ ପାର୍ଥ ପରଦୁଃଖେ ଦୁଃଖୀ
ଶରଣ ବୋଇଲେ ତାକୁ ନ ମାରେ ଉପେକ୍ଷି ।
ବିରଥୀ ବିଅସ୍ତ୍ର ଯେହୁ ନ କରେ ସଂହାର
ଛାଡ଼ି କେଶ ସଂହାରିଲା ତେଣୁ ଅସୀବର ।
ପ୍ରଣିପାତ କରି ଶୁଏ ପାର୍ଥ ପାଦତଳେ
ଅନେକ ବିନୟ ହୋଇ କହଇ ବିକଳେ ।
ଅର୍ଜ୍ଜୁନକୁ ପ୍ରଣିପାତ୍ୟ ହେଲେ ଯୋଦ୍ଧାଗଣେ
ପାଞ୍ଚ ଅଇବ୍ରତ ମଲେ ସମର ପ୍ରାଙ୍ଗଣେ ।
ଅର୍ଜ୍ଜୁନ ବୋଇଲେ ମନ୍ତ୍ରୀ ନ କହିଲା ତୋତେ
ଏତେ ଉପଦ୍ରବ ରାଜା କରିଲୁ କେମନ୍ତେ ।
ଚାଣୁର ବୋଲେ ଉତ୍ତରେ ମୁହିଁ ମହାବୀର
ତୁହି ମର୍ଦ୍ଦନ କରିଲୁ ଦର୍ପକୁ ମୋହର ।
ମନ୍ତ୍ରୀ ଡଗର କହିଲେ ସବୁକଥା ଶୁଣି
ଏଡ଼େ ମହିମା ତୋହରି ନ ପାରିଲି ଜାଣି ।
ମୁଁ ହୀନ ପାମର ପଣେ ହରାଇଲି ବୁଦ୍ଧି
ଆଗେ ହରାଇଲି ଦେବ ଅର୍ଜ୍ଜିଲା ସମୃଦ୍ଧି ।
ସ୍ୱାମୀ ଜମାଗୋଷ୍ଠ ରାଜା ବାନ୍ଧିଅଛ ରଥେ
ଅନ୍ୟ ରାଜାମାନେ ଆଉ ବର୍ତ୍ତିବେ କେମନ୍ତେ ।
ଅର୍ଜ୍ଜୁନ ବୋଇଲେ ତୁହି ମୋର ହିତକାରୀ
ନାଶଗଲା ସଇନ୍ୟଙ୍କୁ ଦେଇ ତ ନ ପାରି ।
ପୁରୁଷାର୍ଥ କରିବି ମୁଁ ତୋତେ ମହାଯାଗେ
ତୋର ମହିମା କହିବି ଭୀମଙ୍କର ଆଗେ ।
ଆହେ ଚାଣୁର ମଲ୍ଲ ତୋ ଯେତେକ ସଇନି
ବାରୁଣାବନ୍ତକୁ ଚଳ ପାରିଦଣ୍ଡ ଘେନି ।
ସେ ଚାଣୁର ମଲ୍ଲ କରି ବହୁତର ସେବା
ଆଜକ ସ୍ୱାମୀ ମୋହର ଭୁବନେ ରହିବା ।

ଏ ମୋର ରାଜ୍ୟରେ ବୀରେ କେଡ଼େ ମହାଯୋଧି
ଆବର ଦେଖ ମୋ ରାଜ୍ୟ ଭୁବନ ପ୍ରସିଦ୍ଧି ।
ଅର୍ଜୁନ ବୋଇଲେ ବାବୁ ଦେଖିଲି ତୋ ରାଜ୍ୟ
ଅଳକା ଭୁବନ ଜିଣି କରଇ ବିରାଜ ।
ଉତ୍ତର କୋଶଳେ ମହାପ୍ରସିଦ୍ଧ ତୁ ରାଜା
ଏବେ ବହନ ହୋଇ ତୁ ବାରୁଣାକୁ ଯା ଯା ।
ଏହାକହି ନିମନ୍ତ୍ରଣ ଦେଲେ ସବ୍ୟସାଚି
ବୋଇଲେ ତୋ ଧନଦ୍ରବ୍ୟ ଘେନ ଯାହାବାଛି ।
ପଞ୍ଚାଶଭାର ଘେନିଣ ବାଛି ପାଣିଦ୍ରବ୍ୟ
ତିନିପଦ୍ମ ମାଳ ସହ ଚଳେ ରାଜଦେବ ।
ଜୟ ଗୋ ମାତ ଶାରଳା ଝଙ୍କଡ଼ବାସିନୀ
ତୋ ପାଦପଦ୍ମେ ସର୍ବଦା ମୋହର ଦଇନୀ ।
ତୁହି ଶୈଳରାଜସୁତା ଶମ୍ଭୁ ମନୋହାରୀ
ଅସୁର ଧ୍ୱଂସକାରିଣୀ ଜୟ ଶାକମ୍ଭରୀ ।
ମାଗୋ କଳିକାଳେ ତୁହି ପ୍ରତ୍ୟକ୍ଷ ରୂପିଣୀ
ତୋତେ ଦୃଢ଼ମନେ ଲୟ କରେ ଯେଉଁ ପ୍ରାଣୀ ।
ମନୋରଥ ସିଦ୍ଧକରି ଦେଉ ତୁ ଅଭୟ
ଶାରଳା ଦାସ ତୋ ପାଦେ କରିଛି ଆଶ୍ରୟ ।



## ରୁଦ୍ରପୁର, ନିଶ୍ଚଳପୁର, ସିନ୍ଧୁ ମହାଦେଶ ପ୍ରଭୃତି ରାଜାମାନଙ୍କୁ ନିମନ୍ତ୍ରଣ ଏବଂ ପଶୁପାଳ ରାଜ୍ୟେ ଅର୍ଜୁନଙ୍କର ଶିବ ଦର୍ଶନ

ପୁଣିହିଁ ପୁଚ୍ଛା କରିଲେ ମନୁ ମହାରାୟ
ଏଥୁଅନ୍ତେ କେଉଁଦିଗେ ଗଲେ ଧନଞ୍ଜୟ ।
ସେ କଥା କହ ହେ ମୁନି ମନ କର ତୋଷ
କହନ୍ତି ଅଗସ୍ତି ତୁମ୍ଭେ ଶୁଣ ହେ ନରେଶ ।
ଚଳିଗଲେ ଧନଞ୍ଜୟ କଞ୍ଚିରାଜ୍ୟ ଜିଣି
ରୁଦ୍ରପୁରରେ ପ୍ରବେଶ ହେଲେ ଫାଲଗୁନି ।
ବୈତରଣୀ ନଦୀକୂଳେ ସେ ରାଜ୍ୟର ରାଜ୍ୟେ
ମହାବାତ ନାମେ ତହିଁ ପର୍ବତ ବିରାଜେ ।
ସେ ପର୍ବତୁ ବହୁଅଛି ମଳୟର ବାତ
ସଧୀର ସଧୀର ବହେ ହୋଇ ଅପ୍ରମିତ ।
ଅର୍ଜୁନ ବିଜେ କରିଲେ ସେହି ପରବତେ
ବାଜିଲା ଦେବ ଦୁନ୍ଦୁଭି ତହିଁ ଅପ୍ରମିତେ ।
ସେ ରୁଦ୍ରପୁରର ରାଜା ଅଟେ କର୍ଣ୍ଣକେଶୀ
ଧୃଷ୍ଟଦ୍ୟୁମ୍ନର ଶ୍ୱଶୁର ଜଙ୍ଗମ ତପସ୍ୱୀ ।
ପରରାଷ୍ଟ୍ର ବୀରତୂର ବାଦ୍ୟଘୋଷ ଶୁଣି
ଧାଇଁଲେ ସଇନି ତାର ବାହାର ପଲାଣି ।
ତୋଖାର ତୁରଙ୍ଗମାନ ଚଳାଇଲେ ବେଗେ
ସଇନି ଭେଟିଲେ ଆସି ଅର୍ଜୁନର ଆଗେ ।
କାହାର ଆଟ ଆସିଣ ପଶେ ଆମ୍ଭଦେଶେ
ନ ପୁଚ୍ଛି ନ ବିଚାରିଣ ପରରାଷ୍ଟ୍ର ପାଶେ ।
ପ୍ରାଣୀଙ୍କୁ ଦୁର୍ବୁଦ୍ଧି ଘଟେ ମରିବାର କାଳେ
ମରଣ କଢ଼ାଇ ଆଣେ ତାହାକୁ କୌଶଳେ ।
ଅଜ୍ଞାନ ଭାବରେ କାଳସର୍ପ ଖେଳୁଥାଳି
କାଟିଣ ମାଂସ ତୁମ୍ଭର ଦେବୁ ବିଶାବଳି ।
ଶୁଣି ନାହିଁ କି କିଏ ସେ ଶ୍ରୀକର୍ଣ୍ଣ କେଶରୀ
ବିରୂପାକ୍ଷ ପ୍ରସନ୍ନେ ଅଭୟ ବ୍ରହ୍ମଚାରୀ ।
ଅର୍ଜୁନ ବୋଇଲେ ସୁରେଶ୍ୱର ପ୍ରୋହିତଙ୍କୁ
ଦ୍ରୌପଦୀ ବିବାହେ ଦେଲେ ଯୌତୁକ ଆମ୍ଭଙ୍କୁ
ଦ୍ରୁପଦ ରାଜାଙ୍କର ଏ ଅଟନ୍ତି ସମ୍ବୁଧି
ଯାଅ ପୁରୋହିତ ତାଙ୍କୁ କହିବ ସମ୍ବୋଧି ।
ପାର୍ଥ ବଚନ ଶୁଣିଣ ଗଲେ ପୁରୋହିତେ
ଯାଇ ଆଟ ଆଶ୍ୱାସନା କରିଲେ ତୁରିତେ ।
ରହ ରହ ସୈନ୍ୟ ବୋଲି କଲେ ସମ୍ବୋଧନେ
ପାତ୍ରକୁ ହକାରି ଆଣ ଆମ୍ଭ ସନ୍ନିଧାନେ ।
ନୋହୁ ଯେ ଅପରରାଷ୍ଟ୍ର ନୋହୁ ଦ୍ୱନ୍ଦ୍ୱକାରୀ
ବାନ୍ଧବ ଗୁଣ ଅଛଇ ତୁମ୍ଭରି ଆମ୍ଭରି ।
ପ୍ରୋହିତ କହିଲେ ଯହୁଁ ପୀରତି ସଂହିତା
ପାତ୍ର ଆଗେ ଦେଶାଉରେ କହିଲେ ବାରତା ।
ପାତ୍ର ପ୍ରବେଶ ହୋଇଲେ ପ୍ରୋହିତଙ୍କ ଆଗେ
ପ୍ରୋହିତ ବୋଲେ ରାଜାଙ୍କୁ ବାର୍ତ୍ତା କହବେଗେ
ସୋମବଂଶେ ହସ୍ତିନାର ରାଜଚକ୍ରବର୍ତ୍ତୀ
ପଣ୍ଡୁରାଜାର ନନ୍ଦନ ଯୁଧିଷ୍ଠି ନୃପତି ।
ତାହାଙ୍କ ସାନୁଜ ଅଟେ ବୀର ବୃକୋଦର
ରାଜସୂୟଯାଗାର୍ଥେ ଜରା କରିଲେ ସଂହାର ।
ଭୀମସେନ ଠାକୁରଙ୍କ ଏ ଅଟେ ସାନୁଜ
ଏହି ଅର୍ଜୁନ କୋଇନ୍ତା ଦେବୀଙ୍କ ଆତ୍ମଜ ।
ଉତ୍ତର ଦିଗକୁ ବିଜେ ପଣ୍ଡୁଙ୍କର କାର୍ଯ୍ୟେ
ରାଜା ନିମନ୍ତ୍ରଣ ପାଇଁ ଉତ୍ତରକୁ ବିଜେ ।
ରାଧାଚକ୍ର ବିନ୍ଧିଲେ ଏ ପଞ୍ଚାଳ ନଗରେ
ଲକ୍ଷେ ରାଜା ଜିଣିଲେ ଦ୍ରୌପଦୀ ସ୍ୱୟମ୍ବରେ ।
ପୁରୋହିତଙ୍କ ବଚନେ ମନ୍ତ୍ରୀ ଯାଇ ମିଳି
ଅର୍ଜୁନ ଅଗ୍ରତେ ଯାଇ ଭକ୍ତିଭାବ ପାଳି ।
ବୋଲେ ଲାଖବିନ୍ଧି ବିଭାହେଲେ ଯାଜ୍ଞସେନୀ
ଆମ୍ଭେ ଗଲୁ ଯଉତୁକ ଯୋଗାଡାଦି ଘେନି ।
ବାହୁଡ଼ି ଯାଇଣ ମନ୍ତ୍ରୀ କହିଲା ରାଜାଙ୍କୁ
ବିଜୟେ କରି ନରେନ୍ଦ୍ର ନିଏ କଟକକୁ ।

ବହୁ ଉତ୍ସବ କରାଇ କର୍ଣ୍ଣବେଶୀ ବୀର
ରାଜ୍ୟେ ଧନଞ୍ଜୟ ବିଜେ କରିବାରୁ ତାର ।
ଧନଞ୍ଜୟଙ୍କୁ ଭକତି ହୋଇଲା ନୃପତି
ବହୁତ ସାନନ୍ଦ ରାଜା ଅନେକ ତୃପତି ।
ମୋହର ଦୁହିତା ନାମ ଅଟଇ କମଳା
ଧୃଷ୍ଟଦ୍ୟୁମ୍ନଙ୍କୁ ପ୍ରଦାନ କଲି ସେ ଅବଳା ।
ସ୍ୱାମୀ ଧୃଷ୍ଟଦ୍ୟୁମନ ଯେ ମୋହର ଜୁଆଇଁ
ବନ୍ଧୁପଣେ ପାଳି ରାଜା ଅନେକ ବିନୟୀ ।
ନିମନ୍ତ୍ରଣର ଯୋଗାଡ଼ ଦେଲେ ଫାଲଗୁନି
ବୋଲେ ବାରୁଣାଙ୍କୁ ଯାଅ ତୁମ୍ଭ ସୈନ୍ୟଘେନି ।
କର୍ଣ୍ଣକେଶରୀ ବୋଇଲା ମୋର ପୁରେ ତୁହି
ମୋ ରାଜ୍ୟ ପ୍ରତିଷ୍ଠା ହେଉ କରିବା ମଣୋହି ।
ଅର୍ଜ୍ଜୁନ ବୋଇଲା ପିତା ପାତକ ନିମନ୍ତେ
ଆମ୍ଭେ ଅନ୍ନଦାନ ଦେବୁ ତାହାଙ୍କର ଅର୍ଥେ ।
ତୁମ୍ଭର ରାଜ୍ୟରେ ମୋର ନୋହିବ ଭୋଜନ
ଥାଟ ସୈନ୍ୟ ଘେନି ତୁମ୍ଭେ ଯାଅ ଯା ବହନ ।
ନିମନ୍ତ୍ରଣ ପାଇକରି ବୀର ଚକ୍ରବର୍ତ୍ତୀ
ଦଣ୍ଡ ପଲାଣି କରିଣ ଚଳେ ଦିବାରାତି ।
ତହୁଁ ରୁଦ୍ର ପୁର ଚଳି ବୀର ଅରଜୁନ
ଅନ୍ୟ ଏକରାଜ୍ୟେ ଯାଇ ପ୍ରବେଶ ବହନ ।
ନୀଳଚକ୍ରପୁର ବୋଲି ନାମ ସେ ନଗ୍ରର
ବସଇ ଯେ ମହାନଗ୍ର ପୁଣ୍ୟ ନଦୀ ତୀର ।
ନବଲକ୍ଷ ଘର ଏକା ନଗରେ ବସଇ
ସୁରବ୍ରହ୍ମା ବୋଲିରାଜା ନାମ ଯେ ଅଟଇ ।
ଅର୍ଜୁର୍ନ ବିଜୟ କଲେ ସେହି ନଦୀକୂଳେ
ପ୍ରାତଃସ୍ନାନ ସାରିଲେ ସେ ସମସ୍ତଙ୍କ ମେଳେ ।
ଦୁନ୍ଦୁଭିଦେବବାଦ୍ୟ ଯେ ବାଜେ ଘୋରନାଦେ
ପୃଥିବୀ ଉଲ୍ଲସି ପଡ଼େ ମଧୁର ସୁଶବ୍ଦେ ।
ଧନୁ କୃଷ୍ଣ ଦ୍ୱିତୀୟା ଯେ ଅଟେ ଚନ୍ଦ୍ରବାର
ପୁନର୍ବସୁ ନକ୍ଷତ୍ରଠି ଭୋଗ ସେ ଦିନର ।
ନାଗ ନାମରେ କରଣ ଶୁକ୍ଳ ନାମେ ଯୋଗ
ବିଛା ସଂକ୍ରାନ୍ତିକୁ ଅଶତ୍ରିଂଶଦିନ ଭୋଗ ।
ଅର୍ଜ୍ଜୁନ ବିଜୟ କଲେ ନୀଳଚକ୍ର ଦେଶେ
ଜଳକ୍ରୀଡା କରନ୍ତି ଯେ ପରମ ହରଷେ ।
ସମଦଣ୍ଡ ଘେନି ସୁରବ୍ରହ୍ମା ନରପତି
ସେ ମଧ ଜଳେ କ୍ରୀଡ଼ଇ ଆସି ନିତିପ୍ରତି ।
ଅର୍ଜ୍ଜୁନ ସ୍ନାହାନଠାରୁ ବହି ଆସେ ପାଣି
ବୋଇଲା ପାଣି ବାସଇ କସ୍ତୁରୀକୁ ଜିଣି ।
ମନ୍ତ୍ରୀକୁ ପୁଚ୍ଛଇ ତହୁଁ ବ୍ରହ୍ମା ନୃପମଣି
ସୁବାସ ହୁଅଇ ଆଜି ପୁଷ୍ୟାନଦୀ ପାଣି ।
କେବଣ ଆଶ୍ଚର୍ଯ୍ୟ କଥା ବଡ଼ଇ ଦୁର୍ଲ୍ଲଭ
ଆନ ଦିନମାନଙ୍କରେ ନଥାଏ ଏ ଭାବ ।
ଏସନ ସମୟେ ଆସି ଜଣାଏ ଡଗର
ଉତ୍ତର ଦିଗେ ବିଜୟ ପାଣ୍ଡବ ସୁନ୍ଦର ।
ଦ୍ୱିତୀକୃଷ୍ଣ ଅବତାର ଅଟେ ଫାଲଗୁନି
କମାଗୋଷ୍ଠକୁ ବାନ୍ଧିଛି ପାଟଡୋର ଘେନି ।
ନ ଜାଣି ଯୁଦ୍ଧ କରନ୍ତି ଯେଉଁ ରାଜାଗଣେ
ବହୁରାଜ୍ୟ ଧ୍ୱଂସ ହେଲା ଉତ୍ତର ବରଣେ ।
ସବୁ ରାଜା ଯାଉଛନ୍ତି ଦରଶନା ଘେନି
ପ୍ରତାପୀ ପାଣ୍ଡବ ସେହୁ କ୍ଷତ୍ରୀ ମହାଜ୍ଞାନୀ ।
ଡଗର ମୁଖରୁ ବାର୍ତ୍ତା ପାଇଣ ଉଦନ୍ତ
ବୋଇଲାକ ଦଣ୍ଡ ସାଜ ସଇନି ସମସ୍ତ ।
ପ୍ରସନ୍ନ ନାରାୟଣ ସେ ବାସବ ତନୟ
ଦର୍ଶନେ ପାପ କଳୁଷ ଯାଉ ମୋର କ୍ଷୟ ।
ନଗରେ ଉତ୍ସବମାନ କଲେ ଦଣ୍ଡଧାରୀ
ଦାଣ୍ଡେ ପାଏଡା ପଡ଼ିଲା ନବବସ୍ତ୍ର ଶାଢୀ ।
ତହିଁ ସେ ଶତେକ ରତ୍ନ ହୀରା ରତ୍ନ ଘେନି
ଶ୍ରୀୟା ଗୌରୀ ନାମ ଘେନି ଦୁଇ ପାଟରାଣୀ ।
ଆପଣେ ପାଟଛତ୍ରକୁ ଧରେ ନୃପମଣି
ଦୁଇ ଭାରିଯା ଚାମର ଘେନିଛନ୍ତି ପୁଣି ।
ଉଦଣ୍ଡ ଆଳଯ଼ ଘେନି ପାତ୍ର ଅମାତ୍ୟେ
ଦର୍ଶନ କରିଲେ ତପୋଧନ ପରବତେ ।
ପାଦେ ନିଉଛାଳି କଲେ ସେ ନୃପତି ଯାଇ
ସାଷ୍ଟାଙ୍ଗରେ ଗଡ଼ଘାଲି ଶୋଇଲେକ ଭୂଇଁ ।
ଅର୍ଜ୍ଜୁନଙ୍କୁ ଜଣାଇଲେ ଦୁଇ ସେନାପତି
ଦର୍ଶନ କରୁଛି ସୁରବ୍ରହ୍ମା ନରପତି ।
ଆଜ୍ଞା କରିଲେ ପାଣ୍ଡବ ପାର୍ଥ ବୀରମଣି
ଆପଣାଭୁଜେ ରାଜାକୁ କୋଳକଲେ ଆଣି ।
କଟକେ ବିଜୟ କଲେ ତହିଁ ବୀର ପାର୍ଥ
ଅକ୍ଷତ ନିମନ୍ତ୍ରଣ ଯେ ଦେଲେ ରାଜା ହସ୍ତ ।
ବୋଇଲେ ରାଜସୂ ଯାଗ ହେଉଛି ଆମ୍ଭର
ତୋର ଦଣ୍ଡ ଘେନିଯାଅ ବାରୁଣାବନ୍ତର ।
ପାର୍ଥ ବଚନେ ସାନନ୍ଦ ହେଲା ନୃପମଣି
ବୋଲେ ସମଦଣ୍ଡ ଘେନିଯିବି ଏହିକ୍ଷଣି ।
ସାଜିଲେ ସକଳ ସୈନ୍ୟ ରଥ ଅଶ୍ୱ ଗଜ
ସାତକ୍ଷୌଣୀ ବଳ ଘେନି ଚଳେ ମହାରାଜ ।
ବଜାଇ ଯେ ବୀରତୂର ଟମକ ନିଶାଣ
ସବୁ ରଥ ନାନା ରତ୍ନେ ହୋଇଛି ମଣ୍ଡନ ।
ରଥ ଉପରେ ଡାଳିମ୍ବ ନେତ ଶୋଭାପାଏ
ଚଳନ୍ତି ଯେ ତୁରଙ୍ଗମ ହଂସପନ୍ତି ପ୍ରାୟେ ।

ସୁରବ୍ରହ୍ମାଙ୍କୁ ଚଳାଇ ଅର୍ଜୁନ ହରଷେ
ବିଜୟ କରିଲେ ସିନ୍ଧୁ ମଳୟର ଦେଶେ ।
ମନ୍ଦାଗ୍ନି ବୋଲିଣ ତହିଁ ଅଛି ନଦୀଟିଏ
ମନ୍ଦର ପର୍ବତୁ ଆସି ଉତ୍ତରକୁ ବହେ ।
ଅନନ୍ତ ବିଜୟ ତିନିଧାର ଅଶ୍ବ କ୍ରମେ
ଉତ୍ତରପୂର୍ବ ବହଇ ସାଗର ସଙ୍ଗମେ ।
ଅର୍ଜୁନ ବିଜୟ ସେହି ତ୍ରିବେଣୀର କୂଳେ
କଉସ୍ତୁଭ ପର୍ବତ ବିକ୍ରମ ବଟ ତଳେ ।
ସେ ସିନ୍ଧୁ ମନ୍ଦାରେ ଜାନୁଘଣ୍ଟ ନରପତି
ପାଞ୍ଚଶତ ପାରିଦଣ୍ଡ ରାଜାଙ୍କୁ ଖଟନ୍ତି ।
ପନ୍ଦର କ୍ଷଉଣୀ ତାର ସଇନି ଅଟଇ
ସିନ୍ଧୁ ମନ୍ଦାର ଦେଶର ଠାକୁର ବୋଲାଇ ।
ଦ୍ୱାପର ଯୁଗରେ ସେବା କଲା ଆଦିତ୍ୟଙ୍କୁ
ନବସସ୍ର ବର୍ଷେ ଦୟାକରିଲେ ତାହାକୁ ।
ବର ମାଗ ସିନ୍ଧୁରାଜା ସତ୍ୟଟି ମୋହର
ଯେବଣ କାମନା କଲୁ ପ୍ରାପ୍ତ ହେବ ତୋର ।
ପ୍ରଣିପାତ ହୋଇ ପୁଚ୍ଛା କରଇ ନୃପତି
ସତ୍ୟଯୁଗେ ଥିଲା ଜାନୁଘଣ୍ଟ ନରପତି ।
ଧର୍ମରେ ପାଳନ କଲା ସେ ପରମ ଯୋଗୀ
ଧାର୍ମିକ ପଣରେ ସତ୍ୟଯୁଗ ହେଲା ଭୋଗୀ ।
ମୋତେ ସୁପ୍ରସନ୍ନ ହୋଇ ଦେବ କି ଅଭୟ
ଦ୍ୱାପର ଭୋଗ କରିବ ଏ ମୋହର କାୟ ।
ଶ୍ରୀବିରଞ୍ଚି ନାରାୟଣ ହୋଇଲେ ପ୍ରସନ୍ନ
ସୁଖେ ଦ୍ୱାପର ତୁ ଭୋଗ ନ ପଡ଼ିବ ବିଘ୍ନ ।
ଜାନୁଘଣ୍ଟ ପଦ କରୁ ଯେବେ ତୁହି ଇଚ୍ଛା
ତୋର ନାମ ଜାନୁଘଣ୍ଟ ଖାଅ କରି ଭିକ୍ଷା ।
ଦିନକର ବଚନରେ ସିନ୍ଧୁରାଜ ତନୁ
ସେ ଦିନୁ ଘଣ୍ଟ ବାନ୍ଧିଲା ଆପଣାର ଜାନୁ ।
ମହାକ୍ଷତ୍ରୀ ବିଦ୍ୟାରେ ସେ ରାଜ୍ୟ କରେ ରକ୍ଷା
ଜନ ପ୍ରଜା ପାଳି ସେହୁ ମାଗିଯାଏ ଭିକ୍ଷା ।
ଘଣ୍ଟର ଶବଦ କରି କରେ ଖଡ଼୍ଗ ଧରି
ପ୍ରଜାଙ୍କ ହିତେ ବୁଲଇ ହୋଇ ଦିଗମ୍ବରୀ ।
ସେ ସିନ୍ଧୁ ମନ୍ଦାର ଦେଶେ ଅର୍ଜୁନ ପ୍ରବେଶ
କଟକେ ପଶି କରିଲା ବୀରବାଦ୍ୟ ଘୋଷ ।
ନିକେ ବିଜେକଲେ ନୃପ ବୀରବାଦ୍ୟ ଶୁଣି
ଆଗେ ଓଗାଳିଲା ଯାଇକରି ଘଣ୍ଟଧ୍ୱନି ।
ମାନବ ଜନମ ପାଇ ଏତେକ ଭରସୁ
କେବଣ ଦର୍ପରେ ତୁହି ମୋ ରଜ୍ୟରେ ପଶୁ ।
ଦିବାକର ପ୍ରସନ୍ନରେ ହେଲେ ରାଜ୍ୟ କଲି
ନ ଜାଣୁ କି ତୁହି ମୋତେ ଜାନୁଘଣ୍ଟ ବୋଲି ।
ସିନ୍ଧୁ କୂଳେ ଛଡାଇଲି ମୋର ବାହୁବଳେ
ମନ୍ଦିର ଉପାଡ଼ି ଆଣି ରଖେ ସିନ୍ଧୁକୂଳେ ।
ସିନ୍ଧୁ ମନ୍ଦିରକୁ ଜିଣି ଏ ମୋହର ରାଜ୍ୟ
ତ୍ରୈଲୋକ୍ୟ ଯାକରେ ମୋର ବିରାଜୁଛି ତେଜ
ପରହତ୍ୟାକାରୀ ନୁହେଁ ନୁହେଁ ପରବାଦୀ
ଦ୍ୱାପର ଭୋଗ କରୁଛି ମହାଯୋଗ ସାଧି ।
ଧାର୍ମିକେ ଧାର୍ମିକ ମୁହିଁ ଦୁଷ୍ଟେ ଅନର୍ଗଳା
ପ୍ରାଣେ ତୋର ଆଶା ଥିଲେ ଏଥୁ ବେଗେପଳା
ଅନେକ ପ୍ରତିଜ୍ଞା କରି କହେ ଜାନୁଘଣ୍ଟ
ଶୁଣିକରି ଅର୍ଜୁନର ଜଳିଲା ମୁକୁଟ ।
ରାଗେ ପ୍ରଚଣ୍ଡ ତାଣ୍ଡବ ଧନୁ ଦୀକ୍ଷାଗୁରୁ
ଯେଉଁରୂପେ କାଳସର୍ପ ଗର୍ଜେ ଟେକି ଫେରୁ ।
ଅର୍ଜୁନ ବୋଲେ ବିରୋଧ କିମ୍ପା ଜାନୁଘଣ୍ଟ
ମୋହର ତୁମ୍ଭେ କି କେବେ ବୈରୀପକ୍ଷ ଅଟ ।
ପ୍ରତିଜ୍ଞା ସାମରଥ ତୁ ଅଟୁ ମହାଯୋଧୀ
ତୋର ପଦ ଘେନିବାକୁ ଆସିନାହିଁ ସାଧି ।
ରାଜସୁ ଯାଗ କରିବେ ଦେବ ଯୁଧିଷ୍ଠିର
ରାଜା ନିମନ୍ତ୍ରଣେ ସିନା ଆଗମନ ମୋର ।
ତାରିଉଣା ଲକ୍ଷେ ରାଜା ତହିଁ ହେବେ ରୁଣ୍ଡ
ଦେବତାମାନେ ଆସିବେ ଟେକି ସ୍ୱର୍ଗଦାଣ୍ଡ ।
ଯେ ଯାହାର ଭେଟିଦ୍ରବ୍ୟ ନେବେ ରାଜାମାନେ
ଷୋଳଦିନ ପରିଯନ୍ତେ ଥିବେ ଯାଗସ୍ଥାନେ ।
ଯେତେ ତୋର ପାରିଦଣ୍ଡ ଅଛଇ ସଇନି
ବାରୁଣୀବନ୍ତକୁ ଚଳ ଅନୁକୂଳ ଘେନି ।
ବାସବ ବଚନେ ସିନ୍ଧୁ ମନ୍ଦରାଧିପତି
ବୋଲେ ତୁହି କି ଅର୍ଜୁନ ପଣ୍ଡୁର ସନ୍ତତି ।
ତୋର ପିତା ଏହି ଶତଶୃଙ୍ଗେ ପରବତେ
ତାର ମୋର ଏକତ୍ରରେ ଥିଲୁ ଦିବାରାତ୍ରେ ।
ଯେଉଁଦିନ ଶରବିନ୍ଧେ ଅଗ୍ନିକା ଋଷିଙ୍କି
ଶବ୍ଦଭେଦୀକି ବିନ୍ଧିଲା ନ ଚାହିଁ ନ ଦେଖି ।
ଦୁହେଁଯାକ ଧାଇଁଗଲୁ ଗଣ୍ଡାଘାତ ବୋଲି
ଅଗ୍ନିକା ଋଷିକୁ ଯାଇ ସେ ସ୍ଥାନେ ଦେଖିଲି ।
ଋଷି ନାଶଗଲା ଶର ତା ଠାରୁ କାଢିଲେ
ପଣ୍ଡୁକୁ ଛାଡ଼ିଲେ ଯହୁଁ ବ୍ରହ୍ମହତ୍ୟା କଲେ ।
ରାଗଭରେ ମହାମୁନି ତାଙ୍କୁ ଦେଲେ ଶାପ
ଶୋଚନା କ କଲେ ସେହୁ ବ୍ରହ୍ମହତ୍ୟା ପାପ ।
ବହୁ କାଳରେ ଅର୍ଜୁନ ମୁଁ ତୋତେ ଦେଖିଲି
ଭୁଜେ ଅର୍ଜୁନକୁ କୋଳ କଲା ଏତେ ବୋଲି ।
ତହୁଁ ଅର୍ଜୁନକୁ ଘେନିଗଲା ମହାରାୟ
ଆପଣାର ଜଗତୀରେ କଲାକ ବିଜୟ ।

ମଣୋହି ନିମନ୍ତେ କଲା ବହୁତ ଆକଟ
ପାର୍ଥ ବୋଲେ ଯଜ୍ଞ ମୋର ହୋଇଲା ନିକଟ ।
ଭୋଜନ ଶୟନକୁ ଯେ ନାହିଁ ମୋର ଇଚ୍ଛା
ରାଜାଏ ଗଲେ ପୂରିବ ମୋର ମନୋବାଞ୍ଛା ।
ତୁହିତ ବିଜ୍ଞ ପଣ୍ଡିତ ଅଟୁ ମହାରାଜା
ସମଦଣ୍ଡ ଘେନି ଏବେ ବହନ ତୁ ଯା ଯା ।
ଅର୍ଜ୍ଜୁନ ବଚନ ଶୁଣି ରାୟେ ଜାନୁଘଣ୍ଟ
କଟକୁ ବାହାର ହେଲା ଘେନି ତାର ଥାଟ ।
ତହୁଁ ସେଠାରୁ ଚଳିଲେ ବୀର ଫାଲଗୁନି
ବିଜୟ ବନେ ପଶିଲେ ଦିବସ ରଜନୀ ।
ଯହିଁ ବଳାଙ୍ଗୀ ବୋଲିଣ ଅଛି ନଦୀଟିଏ
ମହାବାସ ପର୍ବତୁ ସେ ଉତ୍ତରକୁ ଯାଏ ।
ଚାରୁମଣ୍ଡଳ ବୋଲିଣ ଅଛି ରାଜ୍ୟଟିଏ
କୁଣ୍ଡଳୀବ୍ରହ୍ମ ବୋଲିଣ ତହିଁର ଯେ ରାୟେ ।
ପାର୍ଥ ଦିଗବିଜେ ବାର୍ତ୍ତା କହିଲେ ଡଗରେ
ଦଣ୍ଡଘେନି ଯାଉଅଛି ତାର ପଟୁଆରେ ।
କଟକ ଛାଡ଼ିଲାଣି ସେ ଚତୁର୍ଦ୍ଦଶ ଦିନ
ମହାଦାସରେ ସେ ପାର୍ଥ କଲା ଦରଶନ ।
ଶତଭାର ପାଣିଦ୍ରବ୍ୟ ନେଇ ଦରଶନୀ
ଚଉଦ ଭାର୍ଯ୍ୟା ତୁଲେ ବତ୍ରିଶ ସୁତ ଘେନି ।
ଦର୍ଶନ କରିଲା ଆସି ଅର୍ଜ୍ଜୁନ ଅଗ୍ରତ
ଶତଦଣ୍ଡ ପ୍ରଣିପାତ ହୁଏ ନରନାଥ ।
ବୋଲେ ସାଧୁମୋର ପୁତ୍ର ସାଧୁ ମୋରଡୋଳ
ପ୍ରତ୍ୟକ୍ଷ ନାରାୟଣଙ୍କୁ ଦେଖି ମୁଁ ସଫଳ ।
ଶ୍ରବଣେ ଯାହା ଶୁଣିଥିଲି ଦେଖିଲି ପ୍ରତ୍ୟକ୍ଷେ
ତୁ ଯା ଖାଣ୍ଡବ ଦହିଲୁ ଜିଣି ସହସ୍ରାକ୍ଷେ ।
ବହୁ ସ୍ତୁତି କରେ ସେ କୁଣ୍ଡଳୀବ୍ରହ୍ମ ରାୟ
ପୁଣ ପୁଣ ନିଉଛାଳି କରେ ସେ ବିନୟ ।
ଶ୍ରୀକରେ ଶାଢ଼ୀ ଘେନିଣ ବାସବ ନନ୍ଦନ
ବୋଲେ ରାଜୁସିଯାଗକୁ ଯାଅ ଯା ବହନ ।
ଅର୍ଜ୍ଜୁନ ବଚନେ ହସ୍ତ ନିବେଶିଲେ ଶିରେ
ଶୁଭ ଅନୁକୂଳ ଘେନି ନବରୁ ବାହାରେ ।
ଶତେ ପାରିଦଣ୍ଡ ତିନିକ୍ଷଉଣୀ ପଦାତି
ନାନା ଭେଟିଦ୍ରବ୍ୟ ଘେନି ଚଳେ ନରପତି ।
ତହୁଁ ଧନଞ୍ଜୟ କଲେ ଉତ୍ତରକୁ ବିଜେ
ଦିବାରାତ୍ରେ ପ୍ରବେଶିଲେ କାଳିଞ୍ଜନ ରାଜ୍ୟେ ।
କମଳସେନ ବୋଲିଣ ଏକ ନରପତି
ତିନିଶତ ଦଣ୍ଡ ତାର ନ ଲକ୍ଷ ପଦାତି ।
ଚାର ଜଣାଇଲେ ଦେବ ଶୁଣ ସାବଧାନେ
କେଉଁ ରାଜା ଆସିଅଛି କାଳେବର ବନେ ।
ଡଗର ମୁଖରୁ ଏହି ବାରତାକୁ ଶୁଣି
ମନ୍ତ୍ରୀବର ବଦନକୁ ଚାହେଁ ନୃପମଣି ।
ମନ୍ତ୍ରୀ ବୋଇଲେ ଭୋଦେବ ଶୁଣ ରାଜେଶ୍ୱର
ଯାଗ କରଇ ପାଣ୍ଡବ ଶ୍ରେଷ୍ଠ ଯୁଧିଷ୍ଠିର ।
ଚତୁର୍ଦ୍ଦିଗ ରାଜାଙ୍କୁ ସେ କରେ ଆମନ୍ତ୍ରଣ
ପାର୍ଥ ଆସିଛି ଉତ୍ତରେ କରିବ ବରଣ ।
ସ୍ୱାମୀ ଯହିଁର ନିମନ୍ତେ ନାଶଗଲା ଜରା
ଜମାଗୋଷ୍ଠକୁ ବାନ୍ଧିଲା ଯେହୁ ମହାବୀରା ।
ବହୁରାଜ୍ୟ ନାଶଗଲା ହୋଇଣ ବିବାଦୀ
ଶରଣ ପଶିଲେ ହୁଏ ସର୍ବକାର୍ଯ୍ୟ ସିଦ୍ଧି ।
ବହନ ଉତ୍ସବମାନ କରାଇବା ରାଜ୍ୟେ
କଟକରେ ପ୍ରବେଶିବ ବୀରତୂର ବାଜେ ।
ମନ୍ତ୍ରୀର ବଚନେ ରାଜା ହୋଇଲେ ତୃପତି
ଦଣ୍ଡସାଜ ବୋଲି ତହୁଁ ଦେଲେ ଅନୁମତି ।
କଟକେ ପାଏଡ଼ା ରାଜା ପାଡ଼ିଲା ହରଷେ
ପୁତ୍ର ବନ୍ଧୁ ଅମନାତ୍ୟ ଘେନି ସଙ୍ଗେ ଆସେ ।
ଅର୍ଜ୍ଜୁନ ଦର୍ଶନ କଲା ବଳାଙ୍ଗୀର କୂଳେ
ବହୁ ଧନରତ୍ନ ଭେଟେ ପାର୍ଥ ପାଦତଳେ ।
ଦର୍ଶନ କରେ ନୃପତି ବହୁତ ସମ୍ଭାରେ
ନିଉଛାଳି କରି ପାଦେ ଶୁତିଲା ଅନ୍ତରେ ।
ଆଜ୍ଞା ହୋଇଲାକ ଉଠ ଉଠ ମହାରାୟେ
କୋଳାଗ୍ରତ କରି ତାକୁ ନେଲେ ଧନଞ୍ଜୟେ ।
ଅକ୍ଷତ ଗୁବାକ ନେଇ ଦେଲେକ ଶ୍ରୀହସ୍ତେ
ବୋଲେ ସୈନ୍ୟସହ ଚଳ ବାରୁଣାର ପ୍ରସ୍ଥେ ।
ଅର୍ଜ୍ଜୁନ ବଚନ ଶୁଣି ବୋଲେ ଦ୍ୱିଜବର
କାଳେବର ବନେ ଦେବ ରାଜ୍ୟଟି ମୋହର ।
ଅନେକ ବିନୟୀ ହୋଇ କରଇ ସେ ସେବା
ବୋଲେ ମୋର ପୁରେ ଆଜ ମଣୋହି କରିବା
ଅର୍ଜ୍ଜୁନ ବୋଇଲେ ମୋତେ କାହୁଁ ଦେବୁ ଭୋଜି
ଅନେକ ନୃପତି ଯିବେ ନଉଦିନ ମଝି ।
ଭୋଜନ ଶୟନ ସୁଖଭୋଗେ ନାହିଁ ଇଚ୍ଛା
କେମନ୍ତେ ପୂରିବ ପଣ୍ଡୁ ରାଜାଙ୍କର ବାଞ୍ଛା ।
ନିମନ୍ତ୍ରଣ କରି ସେହୁ ନୃପତି ପଠାଇ
ତହୁଁ ଅର୍ଜ୍ଜୁନ ଉତ୍ତର କୋଶଳକୁ ଯାଇ ।
ଉତ୍ତର ପଶ୍ଚିମ କୋଣେ ଅଛି ଲକ୍ଷ୍ମୀପୁର
କମଳାସିନୀ ବୋଲିଣ ନଦୀ ପୂର୍ବ ତୀର ।
ଲକ୍ଷ୍ମୀପୁର ବୋଲି ଯେଉଁ ନଗର ଅଟଇ
ପଞ୍ଚାଶ ଲକ୍ଷ ବସତି ସେଠାରେ ବସଇ ।
ଅତିଶୟ ପରିମଳ ଅଟଇ ଭୁବନ
ଘରେ ଘରେ ସୁବର୍ଣ୍ଣର ପାଚେରୀ ଶୋଭନ ।

ବଡ ସୁସଙ୍ଗ ହୋଇଣ ରହିଛନ୍ତି ପ୍ରଜା
ଭାଗ୍ୟବନ୍ତ ପଣେ ସମ ନୁହେଁ ମହାରାଜା ।
ଯେ ଯାହାର ଚଷି କରି ଉପୁଜାନ୍ତି କୃଷି
ସୁଖେ ଆୟକରି ନ୍ୟନ୍ତି ତହିଁ ଦୁଇରାଶି ।
ଏମନ୍ତେ ସମ୍ପଦେ ପୂର୍ଣ୍ଣ ସେହୁ ଲକ୍ଷ୍ମୀଗ୍ରାମ
ଦେବତା ପ୍ରାୟେ ଦିଶନ୍ତି ରୂପେ ଯେହ୍ନେ କାମ ।
ପର ରାଜ୍ୟକୁ ନୃପତି ନୁହଇ ବିବାଦୀ
ଯାତ୍ରା ସୁବିଧାନେ ରାଜା ଧର୍ମ କର୍ମ ସାଧି ।
ନ ଯାଏ ପର ରାଜ୍ୟକୁ ନ କରଇ ହତ୍ୟା
ସରବେ ପୂଜନ୍ତି ଦଧିବାମନ ଦେବତା ।
ବିଷ୍ଣୁ ପୁରାଣ ପଢ଼ନ୍ତି ଜନେ ଦିନେ ଦିନେ
ନ ଛାଡ଼ନ୍ତି ଲକ୍ଷ୍ମୀଦେବୀ ଥାନ୍ତି ଅନୁକ୍ଷଣେ ।
ସେ ରାଜା ରାଜ୍ୟ ବିଜୟ କରିଲେ ଅର୍ଜ୍ଜୁନ
ଲକ୍ଷ୍ମୀବେଣୀ ନଦୀଜଳେ କରିଣ ସ୍ନାହାନ ।
ଦେବବାଦ୍ୟ ଦୁନ୍ଦୁଭିର ଶବଦ ଘୋଷଣେ
କମ୍ପଇ ବ୍ରହ୍ମାଣ୍ଡ ଘୋର ବାଦ୍ୟ ଅତି ଟାଣେ ।
ବଡ ସମ୍ପଦେ ବଞ୍ଚଇ ସେହି ମହାରାଜ
ତାହାର ନାମ ଅଟଇ ରାଜା ଚନ୍ଦ୍ରଧ୍ୱଜ ।
ମନ୍ତ୍ରୀ କହିଲା ବହୁତ ମହିମା ତା ଆଗେ
ଆସନ ଛାଡ଼ି ନୃପତି ଆସେ ବେଗେ ବେଗେ ।
ଲକ୍ଷେଭାର ହୀରାସହ ଘେନି ସୁଧାରସ
ଅର୍ଜ୍ଜୁନ ଛାମୁରେ ରାଜା ହୋଇଲା ପ୍ରବେଶ ।
ପାଦେ ପଡ଼ି ନରପତି କରି ନିଉଛାଳି
ଛାମୁରେ ଉଭା ହୋଇଲା ହୋଇ କୃତାଞ୍ଜଳି ।
ଅର୍ଜ୍ଜୁନ ପାଦପଖାଳ କରେ ମହାରାଜା
ବହୁତ ରତନ ଘେନି କରେ ପାଦପୂଜା ।
ସନ୍ନିଧେ ନୃପତି କରେ କଣୟର ବୃଷ୍ଟି
ଚନ୍ଦ୍ରଧ୍ୱଜେ କୋଳକଲେ ଆପଣେ କିରୀଟୀ ।
ବହୁ କୃତକୃତ୍ୟ ହୋଇ ଜମ୍ବୁମାଳି ବଳା
ଅର୍ଜ୍ଜୁନର ସଇନିଙ୍କୁ ଦେଲା ରତ୍ନମାଳା ।
ଦେବାଙ୍ଗ ବସନ ଦିଏ ଝୀନ ଯେ ପଟନି
ବହୁ ସମାର୍ଜନା କରି କରଇ ଦଇନି ।
ବୋଇଲେ ବହୁ ପ୍ରକାରେ ଅଟଇ ମୁଁ ଦୋଷୀ
ଗୁଣସାଗର ନାଥ ହେ ଉଦ୍ଧାର କରସି ।
ଯହ୍ନେ ଯାହା ଲୋଡ଼ୁଥିଲି ଦେଖିଲି ନୟନେ
ଖଣ୍ଡିଲା ପାତକ ମୋର ମୁକ୍ତ ପିତୃମାନେ ।
ସ୍ୱାମୀ ମୋ ଉପରବଂଶେ ଶ୍ୱେତ ମହାରାଜ
ସତ୍ୟ ପୁରୁଷଙ୍କର ସେ ଅଟଇ ତନୁଜ ।
ସେହି ଶ୍ୱେତ ସତ୍ୟଯୁଗେ ଏହି ରାଜ୍ୟ କଲା
ଏ କମଳା ନଦୀକୂଳେ ଯଜ୍ଞ ଆରମ୍ଭିଲା ।

ସ୍ୱାମୀ ବ୍ରହ୍ମାଙ୍କୁ ମାଗିଲା ପୁରୋହିତ ଜଣେ
ପିତାମହ ଆଜ୍ଞା ଦେଲେ ବଶିଷ୍ଠ ବ୍ରାହ୍ମଣେ ।
ଯାଗନିକ ହୁଅ ତୁହି ଶ୍ୱେତରାଜା ଯାଗେ
ବ୍ରହ୍ମା ବଚନେ ବଶିଷ୍ଠ ଚଳିଗଲେ ବେଗେ ।
ଶ୍ୱେତକୁ ବସାଇଲେ ସେ ଗଙ୍ଗାନଦୀ ତଟେ
କହନ୍ତି ଯଜ୍ଞ କରିବୁ ଏହି ବାଞ୍ଛାବଟେ ।
ତୁ ଆମ୍ଭଙ୍କୁ ଯାଗନିକେ କରିଲୁ ବରଣ
ଯାଗକୁଣ୍ଡ ଆୟତନ ମୋର ବାରଯୂଣ ।
ଚାରିମେଘ ମୋର ରତ୍ନ ପାବକର ସୁରା
ଯାଗ ପରୀକ୍ଷା ମୋହର ପିଙ୍ଗଳ ହୋଇଲା ।
ମୋତେ ବରଣ କଲୁ ହେ ମହାରାଜା ଶ୍ୱେତ
ଉପାୟ କରି ନୃପତି ସଞ୍ଚ ଯାଇ ଘୃତ ।
ଯେତେ ଦିନଯାଏ ଯଜ୍ଞ କରିବୁ ନୃମଣି
ସମ୍ବର୍ତ୍ତକ ବୃଷ୍ଟି ପ୍ରାୟ ଘୃତ ଦେବୁ ଆଣି ।
ଏତେ ଘୃତ ଆଣିପାରୁ ଯେବେ ତୁହି ରାଜା
ଯଜ୍ଞ ତୁହି ବାଞ୍ଛା କରି ବହନରେ ଯା ଯା ।
ଶୁଣ ଦେବ ଧନଞ୍ଜୟ ବୋଲେ ଚନ୍ଦ୍ରଧ୍ୱଜ
ଘୃତ ସିନ୍ଧୁକୁ ବତ୍ରିଶ ବର୍ଷ ସେବେ ରାଜା ।
ଘୃତ ସମୁଦ୍ର ବୋଇଲା ମୋତେ କିମ୍ପା ସେବୁ
ରଜା ବୋଲେ ମୋ ଯଜ୍ଞକୁ ଘୃତ ତୁହି ଦେବୁ
ନ ଜାଣି ମୁଁ ବଶିଷ୍ଠଙ୍କୁ କରିଲି ସ୍ୱୀକୃତେ
ଘୃତ ତୁ ଦେବୁ ଚବିଶ ବର୍ଷ ପରିଯନ୍ତେ ।
ରାଜା ବଚନରେ ଘୃତସିନ୍ଧୁ ବୋଲେ ଦେବା
ଯେତେକାଳଯାଏ ଯଜ୍ଞ କରିବୁରେ ବାବା ।
ମହାଯାଗ କରିଲେ ସେ ଏହି ନଦୀକୂଳେ
ହିରଣ୍ୟଗର୍ଭ ପର୍ବତ ବାଞ୍ଛାବଟ ତଳେ ।
ଦେଖ ଏହି ଯଜ୍ଞକୁଣ୍ଡ ବାରଯୁଣ ସ୍ଥଳୀ
ଯଜ୍ଞଶାଳ ବିଂଶଯୂଣ କୋଡ଼ିଏ ଆଙ୍ଗୁଳି ।
ଚବିଶ ଯୋଜନ ଅଟେ ଗୃହର ଉତ୍ସର୍ଗ
ଅଗ୍ନିର ତେଜ ଲାଗିଲା ଯାଇ ଅଧାସ୍ୱର୍ଗ ।
ସମ୍ବର୍ତ୍ତକ ମେଘ ସୁରା ହୋଇଣ ପ୍ରୋକ୍ଷଣି
ମୂଷଳଧାରା ପ୍ରମାଣେ ଘୃତ ବର୍ଷେ ଆଣି ।
ଚବିଶ ବରଷଯାଏ ବରଷିଲା ଘୃତ
ଲୋଭଗ୍ରସ୍ତରେ ଭକ୍ଷିଲେ ପିଙ୍ଗଳ ଦୈବତ ।
ଲୋଭରେ ବହୁତ ଘୃତ ଖାଆନ୍ତେ ବହନି
ଲୁଦୁବୁଦୁ ବ୍ୟାଧିଗ୍ରସ୍ତ ହେଲା ଜ୍ୱାଳାଅଗ୍ନି ।
ଅଗ୍ନି ଦେବତା ନିମନ୍ତେ ସିନା ଚରାଚର
ନିସ୍ତେଜ ହୋଇ ରହିଲା ଜଗତ ସଂସାର ।
ଯାଇଥିଲି ପ୍ରୟାଗକୁ ମୁହିଁ ତୀର୍ଥକରି
କହିଲେ ସିନା ବଶିଷ୍ଠ ମୁନି ତପଚାରୀ ।

ଗାଣ୍ଡିବର ଦୀକ୍ଷାଗୁରୁ କ୍ଷତ୍ରି ଚୂଡ଼ାମଣି
ଖାଣ୍ଡବ ଦହି ଅଗ୍ନିକୁ ରଖିଲୁ ତୁ ଜାଣି ।
ଖାଣ୍ଡବ ଦହନେ ହେଲା ବାସବ ବିବାଦୀ
ଅଗ୍ନିକୁ ନିରୋଗୀ କଲୁ ଦେଇ ମହୌଷଧି ।
ସ୍ୱାମୀ ଶ୍ୱେତରାଜାର ଯେ ହେଲା ଏକ ସୁତ
ଜଳନିଧି ନାମେ ସେହି ହୋଇଲା ବିଖ୍ୟାତ ।
ସେ ଜଳନିଧିର ହେଲା ଗୋଟିଏ କୁମର
ମଳୟ ବସନ୍ତ ନାମ ଜାଣନ୍ତି ତାହାର ।
ସେହୁ ହୋଇଲା ପ୍ରତାପଶାଳୀ ମହାରାଜା
କାଳେ ରକ୍ଷାକରି ସ୍ୱର୍ଗେ ହୋଇଲା ବିଡ଼ୋଜା ।
ମଳୟ ବସନ୍ତ ପୁତ୍ର ନାମ ବିଶ୍ୱାବସୁ
ବିଶ୍ୱାବସୁ ପୁତ୍ର ହେଲା କୃତପରବସୁ ।
ପରବସୁ ସୁତ ଅଟେ ସୁଜାଣ ନୃପତି
ତାହାର ପୁତ୍ର ହୋଇଲା ନୃପତି ଅତିଥି ।
ଅତିଥିର ପୁତ୍ର ପୁଣି କଣୟ କେଶରୀ
ମହେନ୍ଦ୍ରସେନ ବୋଲିଣ ପୁତ୍ରେକ ତାହାରି ।
ମହେନ୍ଦ୍ରସେନର ପୁତ୍ର ନୃପ ବିରୂପାକ୍ଷ
ଏହାର ପୁତ୍ର ହୋଇଲା ରାଜା ଦଧିମୁଖ ।
ଦଧିମୁଖ ପୂଜେ ଦଧିବାବନ ପ୍ରତିମା
ମନଲାଗି ବୋଲିକରି ତାହାର ଯେ ବାମା ।
ଦଧିମୁଖର ହୋଇଲା ଯେବଣ ଆତ୍ମଜ
ସେ ପୁତ୍ର ମୁହିଁ ମୋ ନାମ ଅଟେ ଚନ୍ଦ୍ରଧ୍ୱଜ ।
ବଂଶାବଳୀ କହିଲାକ ଦଧିମୁଖ ବଳା
ରାଜସୂୟଯାଗ ଦେଖିବା ଏବେ ମହାଖଳା ।
ଦେବଙ୍କୁ ଦୁର୍ଲ୍ଲଭ ଏହୁ ନରେ ଅଗୋଚର
ଏ ରାଜସି ଯାଗ ଦେବ ପୁଣ୍ୟର ସାଗର ।
ଅର୍ଜ୍ଜୁନ କୋଳ କରିଲା ତହୁଁ ସେ ରାଜାକୁ
ବୋଲେ ସମଦଣ୍ଡ ଘେନି ଯାଅ ବାରୁଣାକୁ ।
ତୁ ମହାବଂଶିକ ନୃପ ଅଟୁ ମହାତ୍ମବନ୍ତା
କୋଟିବଂଶ ଅଣପାପୀ ଗତି ମୁକ୍ତି ଦାତା ।
କରପତ୍ର ଯୋଡ଼ି ଚନ୍ଦ୍ରଧ୍ୱଜ ଯେ ବୋଇଲା
ନାଥ ଯେବେ ଅନୁଗ୍ରହ ତୋହର ହୋଇଲା
ଆଜକ ରାଜ୍ୟରେ ରହି କର ମଢ଼ିଫୁଲି
ଭକତବତ୍ସଳ ନାଥ ପ୍ରସାଦ ମାଗିଲି ।
ଗୋଟିଏ ଦିବସ ମାତ୍ର ମୋ ରାଜ୍ୟରେ ରହି
ପୁରକୁ ପ୍ରତିଷ୍ଠା କର କରିଣ ମଣୋହି ।
ଅର୍ଜ୍ଜୁନ ବୋଇଲା ଏହୁ ପୂର୍ବ ଯକ୍ଷାସ୍ଥାନ
ବହଇ ଏ ଲକ୍ଷ୍ମୀବେଣୀ ଅନ୍ତର୍ଦ୍ଧାଭୁବନ ।
ଏହି ବିଚାର କରିଣ ସେ ରାଜ୍ୟରେ ରହି
ସୂପକାର ପରିଯୋଗ କରିବା ମଣୋହି
ତହୁଁ ସ୍ନାହାନ ଆହ୍ନିକ ସାରି ସବ୍ୟସାଚୀ
ସୂର୍ଯ୍ୟବେଳରେ ମଣୋହି ନୀତି ଯାହା ଅଛି ।
ପାଦୋଦକ ଆଚମନ ସାରି ଫାଲଗୁନି
ବିଜିଘୋଷ ଶଙ୍ଖ ଆଦି ବାଦ୍ୟ କରି ଧ୍ୱନି ।
ପରଷନ୍ତି ସୂପକାର ଶୁଭଇ ବ୍ରାହ୍ମଣ
ସୁରେଶ୍ୱର ଦ୍ୱିଜକରେ ଛାମୁରେ ପୁରାଣ ।
ଷଡ଼ରସରେ ଭୋଜନ କରିଣ ଅର୍ଜ୍ଜୁନ
ନୃପତି ଭୋଜନ ସାରି କଲେ ଆଚମନ ।
କର୍ପୂର ତାମ୍ବୁଳ ଭୁଞ୍ଜି ବିଜେ ସିଂହାସନେ
ଅମୃତ ପାନ ଭୋଜନ କଲେ ସୈନ୍ୟମାନେ ।
ତୃପ୍ତେ ଭୁଞ୍ଜନ୍ତି ସଇନି ଯେତେ ଯାର ଇଚ୍ଛା
ଷଡ଼ରସର ଭୋଜନେ ତୃପ୍ତ ମନୋବାଞ୍ଛା ।
ତାଣ୍ଡବରସେ ଗାବନ୍ତି ସପ୍ତସ୍ୱର ଘେନି
ତାଳ ମର୍ଦ୍ଦଳ ଘେନିଣ ଖଟନ୍ତି ଗାଏଣି ।
ଅମର ବିଳାସିନୀଙ୍କ ତାଣ୍ଡବର ନୃତ୍ୟ
ଦେଖନ୍ତି ଯେ ପୁରଜନ ହୋଇ ତୋଷଚିତ୍ତ
ଦିନକର ନାଥ ଗଲେ ମେରୁର ପ୍ରଦେଶ
ଦଣ୍ଡ ସାଜ ସାଜ ବୋଲି ବାଜେ ବିଜିଘୋଷ ।
ଲାଗିଲା ଦିହୁଡ଼ିମାନ ଜଳିଲାକ ହୁଳା
ରଥେ ବିଜେ କଲେ ଯାଇ ବାସବର ବଳା ।
ଚନ୍ଦ୍ରଧ୍ୱଜ ନୃପତିକୁ ଚଳାଇ ଅର୍ଜ୍ଜୁନ
ଚଳଇ ସେ ରାଜେଶ୍ୱର ଘେନିଣ ସଇନ୍ୟ
ସେ ରାଜ୍ୟରେ ଥାଇ ପାର୍ଥ ବରଗିଲାଦୂତ
ଚଉବିଂଶ ରାଜ୍ୟ ଅଛି କଟକ ହେମନ୍ତ ।
ନେପାଳ ପଶୁପାଳକ ବେନି ରାଜ୍ୟ ଅଛି
ସେହି ରାଜ୍ୟକୁ ବିଜୟ କଲେ ସବ୍ୟସାଚୀ ।
ପଶୁପାଳ ବୋଲିକରି ଯେଉଁ ରାଜ୍ୟ ଗୋଟି
ପଶୁଜଗନ୍ନାଥ ନାମେ ବିଜୟ ଧୂର୍ଜ୍ଜଟି ।
ସେ ରାଜ୍ୟ ରାଜାର ନାମ ଅଟେ ପଶୁପତି
ରୁଦ୍ର ଚିହ୍ନ ବହଇ ସେ ଶାନ୍ତ ମହାଯତି ।
ମଥାରେ ଜଟାରଭାର ଚର୍ମ ପରିଧାରି
ବୃଷଭ ବାହନେ ରାଜା ବିଚରଣ କରି ।
ବାମକରରେ ଖର୍ପର ଦକ୍ଷେ ଶୂଳପାଣି
କର୍ଣ୍ଣେ ତମ୍ବାପତ୍ର ତାର ନିଶାରେ ଭ୍ରମଣି ।
ଚଉଦକୋଟି ସଇନ୍ୟ ସଙ୍ଗେ ଥାନ୍ତି ନିତ୍ୟ
ତାଙ୍କ ସଙ୍ଗେ ବିହରନ୍ତି ଦେବ ବିଶ୍ୱନାଥ ।
ଅଙ୍ଗେ ଆଭରଣ ଅଟେ ଉରଗର ଫେରୁ
ଅନ୍ତରୀକ୍ଷରେ ବଜାଇ ଲକ୍ଷେକ ଡମ୍ବରୁ ।
ମାନବ ରୂପରେ ତହିଁ ଖେଳୁଥାନ୍ତି କାଶୀ
ସେହି ପଶୁପତି ରାଜ୍ୟେ ପାର୍ଥ ଯାଇ ପଶି ।

ଆଗନ୍ତେ ଦେବ ଦୁନ୍ଦୁଭି ଆବର ଦାଉଣ୍ଡି
ବାଳ ଆଦିତ୍ୟ ପରାୟେ ରଥ ସଦା ମଣ୍ଡି ।
ଅର୍ଜ୍ଜୁନ ଗମନ୍ତେ ଗଣନାୟକ ବହନେ
ଶୂଳ ବୁଲାଇ ଆକଟ କଲେ ସନ୍ନିଧାନେ ।
କାହିଁର ତୁହି ବୋଲିଣ ଉର୍ଦ୍ଧ୍ୱମୁଖେ ହାକ
ସିଂହରଡ଼ି ପରାୟେକ ଶୁଭେ ସେହି ଡ଼ାକ ।
ଆରେ ତୁ ମାନବ ହୋଇ କାହିଁକି ଭରସୁ
କାଳସର୍ପର ବିବରେ କିମ୍ପା ଆସି ପଶୁ ।
ରୁଦ୍ରବଳହିଁ କେବଳ ପାର୍ଥ ଦେଖି ଡୋଳେ
ରୁଦ୍ର କୋପ ନ କରନ୍ତି ମନେ ମନେ ଭାଳେ ।
ସ୍ୱାମୀଙ୍କର ଚିହ୍ନ ସବୁ ବହିଛନ୍ତି କାୟେ
ସର୍ବେ ଚଢିଛନ୍ତି ବୃଷ ଗୋଟିଏ ଗୋଟିଏ ।
ଗୋହତ୍ୟା ହୋଇବ କାଳେ ଯେବେମାରେ ଶର
ବ୍ରହ୍ମହତ୍ୟା ହେବ ଉର୍ଦ୍ଧ୍ୱେ କରିଲେ ପ୍ରହାର ।
କିଳିକିଳା ନାଦ କରି ସର୍ବ ଶିବଗଣ
ପାର୍ଥ ସୈନ୍ୟଙ୍କ ଉପରେ ପ୍ରହାରିଲେ ବାଣ ।
ଅନ୍ୟେ ଅନ୍ୟେ ଘୋରରଣ ଲାଗିଲାକ ଯହୁଁ
ଅର୍ଜ୍ଜୁନ ଡାକ ଛାଡ଼ିଲା ରହ ରହ ତହୁଁ ।
ଅର୍ଜ୍ଜୁନ ଡାକନ୍ତେ ସ୍ତମ୍ଭୀଭୂତ ସୈନ୍ୟମାନେ
ନାରାଚକୁ ସଂହରିଲେ ବିଷାଦିତ ମନେ ।
ତହୁଁ ଶିବଗଣ ଦେଖି ଏମନ୍ତ ବିଧାନ
ଶୂଳ ବୁଲାଇ ପିଟିଲେ ହୋଇ କୋପମନ ।
ଦେଖି ପ୍ରକୋପ ହୋଇଲେ ବାସବ କୁମର
ଧନୁମଧେ ପୂରାଇଲେ ହାବୋଡ଼ାର ଶର ।
କୋପଭରେ ପେଶିଲେ ପଣ୍ଡୁର ଦୁଲ୍ଲାଳେ
ଶିବଗଣ ଲୋଟିଗଲେ ବାସ ଅସମ୍ଭାଳେ ।
ଯେସନେ କଦଳୀବନ ପଡେ ବାତଘାୟେ
ଏକ ଉପରେ ଆରେକ ପଡ଼ିଗଲେ ଘାଏ ।
ଯେହୁ ଉବୁରିଲେ ଗଲେ ପଳାଇ ବିକଳେ
ପଶୁପତିଙ୍କ ଛାମୁରେ କହିଲେ ଆକୁଳେ ।
ପ୍ରସନ୍ନେ ପଶୁପତିଙ୍କୁ ସ୍ୱାମୀ ଦେବରାଜ
ତୋହର ପ୍ରସନ୍ନେ ସିନା ଆମ୍ଭର ଏ ରାଜ୍ୟ ।
ଗଣନାୟକ ବିକଳେ ବିକେ ପଶୁପତି
ବୃଷ ଚଢ଼ି ବିଜେକଲେ ଧରଣୀ ଶକତି ।
ଅର୍ଜ୍ଜୁନ ଛାମୁରେ ଯାଇ ବିଜୟ କପାଳୀ
ନାଚନ୍ତି ଯେ ଶିବଗଣ ଡମ୍ବରୁ ହାମ୍ଫୋଳି ।
ପଶୁପତି ନରପତି କରନ୍ତେ ବିଜୟେ
ଚିହ୍ନି ନ ପାରିଲେ ତାଙ୍କୁ ବୀର ଧନଞ୍ଜୟେ ।
ସମସ୍ତଙ୍କ ଶିରେ ଜଟା ସର୍ବେ ଧଳା କାୟ
ଶରୀର ଦିଶଇ ରୁଦ୍ର ଦେବତାର ପ୍ରାୟ ।
ଗଣନାୟକ ବିଚାରି କୋପେ ଫାଲଗୁନି
ସଦାଶିବଙ୍କୁ ବିନ୍ଧିଲେ ଶରଗୋଟି ତିନି ।
ଶରମାନ ପଡ଼ିବାର ଦେଖିଣ କପାଳି
ରହ ରହ ବୋଲିକରି ଛାଡ଼ିଲେ ବୋବାଳି ।
ମୁହିଁ ଅଟେ ପଶୁପତି ଶୈଳରାଜ ବନ୍ଧୁ
ରହ ରହ ଅର୍ଜ୍ଜୁନ ତୁ ଶର କାରେ ବିନ୍ଧୁ ।
ଏହା ଶୁଣି ସଂହାରିଲେ ଶର ଧନଞ୍ଜୟ
ବୋଲେ ଯେବେ ପଶୁପତି ଦେଖା ନିଜକାୟ ।
ଅର୍ଜ୍ଜୁନ ବଚନେ ନିଜ କାୟା ତ୍ରିଲୋଚନ
ପ୍ରତ୍ୟକ୍ଷେ ଦିଶିଲା ତାଙ୍କ ପାଞ୍ଚଟି ବଦନ ।
ସାକ୍ଷାତ ଈଶ୍ୱର ଦେବ ଶ୍ରୀତତ୍ତ୍ୱ ପୁରୁଷେ
ମସ୍ତକରେ ପଞ୍ଚଜଟା ଶୋଭଇ ଆକାଶେ ।
ଆରକ୍ତ କୁମୁଦ ଜିଣି ପଞ୍ଚଦଶ ନେତ୍ର
ଜଳଦ ନୀଳଦ ଅଗ୍ନି ଆଉ ଛାୟାନାଥ ।
ଶ୍ରୀଖଣ୍ଡ ଭାଳେ ଶୋଭଇ ଲଲାଟର ଚିତା
ବିରାଜମାନ ହୋଇଣ ଦିଶୁଛି ଶୋଭିତା ।
ଶିରେ ସୀମନ୍ତକ କଣ୍ଠେ କୁଣ୍ଡଳର ହାର
କର୍ଣ୍ଣେ ସ୍ଫଟିକର ମୁଦ୍ରା ଦିଶଇ ସୁନ୍ଦର ।
ଶୁକ୍ଳାମ୍ବର ଶରୀର ଯେ କଣ୍ଠେ ନୀଳକଣ୍ଠ
ଗଙ୍ଗା ବହଇ ଅମଳ ପିଙ୍ଗଳ ଯେ ଜଟ ।
ହୃଦେ ଶୋଭଇ ବାସୁକୀବଳା ମହାନାଗ
କଟି ପରିଧାନ ପୁଣି ହୋଇଛି ଉରଗ ।
ତ୍ରିଶୂଳ ଯେ ପାଶୁପତ ନାମରେ ପିନାକୀ
ଅନ୍ତରୀକ୍ଷରେ ବାଜୁଛି ନବଲକ୍ଷ ଡାକି ।
ରୁଦ୍ରଙ୍କର ଅସ୍ତ୍ର ସବୁ ନିଜ କରେ ଧରି
ନିଜରୂପ ଦେଖାଇଲେ ଦେବ ତ୍ରିପୁରାରି ।
ସଂସାର ସୁନ୍ଦର ସେହୁ ପୋଡ଼ିଲା ମଦନ
ତାର ତହୁଁ ସୁନ୍ଦର ଏ ସହସ୍ରେକ ଗୁଣ ।
ଶିରେ ଗଙ୍ଗା ବହିଛନ୍ତି ହୃଦେ ଦେବୀ ଉମା
ନାଭିରେ ବାରାହୀ ପାଦେ ବସୁଧାଦି ବାମା ।
କର୍କୋଟ କୁଳିକ ପୁଣି ମହାପଦ୍ମ ଶଙ୍ଖ
ବାହୁଟି ନୂପୁରାଦିରେ ଶୋହେ ତ୍ରିଅମ୍ବକ ।
ଡିବି ଡିବି ଡମ୍ବରୁ ବାଜଇ ହାମ୍ଫୋଳି
ତାଣ୍ଡବ ନୃତ୍ୟ କରନ୍ତି ହରଷେ କପାଳୀ ।
ଜଗତ ଜନମୋହନ ରୂପରେ କନ୍ଦର୍ପ
ବୃଷଭ ଆରୋହି ଦେବ ଦେଖାଇଲେ ରୂପ ।
କୁଣ୍ଡଳି କମଣ୍ଡଳାଦି ଜଟାଜୁଟ ଲୋଟି
ଖର୍ପର ଧରିଛନ୍ତି ଯେ ବ୍ରହ୍ମଶିର ଗୋଟି ।
କୁଶ ଭକ୍ଷଣ କରନ୍ତେ ହୋଇ ମହାରାଗୀ
କପିଳାସ ଗଣ୍ଡସ୍ଥଳ ମୋଡ଼ିଲେକ ବେଗି ।

ତହୁଁ ସେ କପିଳା ଅଙ୍ଗ ଭୈରବ ରୂପରେ
ଲାଗି ରହିଅଛି ସେହି ଖର୍ପର ଉପରେ ।
ଉମା ଶୋକେ ଦକ୍ଷଯଜ୍ଞ କୋପେ ଦେଲେନାଶି
ପୁଣି ପ୍ରସନ୍ନେ ଅଭୟ ଦେଲେ ଦେବକାଶୀ ।
ନୂପୁର କଙ୍କଣ ମଣି ଉଡ଼ଙ୍ଗାଦି ହୀରା
ଗଚ୍ଛିତ ରୋମାବଳି ଯେ କୋଟି କୋଟି ତାରା
ବିଜୟ ରୁଦ୍ରପୁରରୁ ବହୁଜନ ଜପା
ଶ୍ରୀନେପାଳ ପଶୁପତି ବିଜୟେ ଏତ୍ୟପା ।
ଶ୍ରୀନେପାଳ ପଶୁପତି ଚରଣରେ ସେବି
ସଜ୍ଜନଜନଙ୍କ ହିତ ହୃଦଗତେ ଭ ବି ।
ପ୍ରସନ୍ନ ବିଶ୍ୱବାସୀ ଯା ଦେଖିଲ ପ୍ରତ୍ୟକ୍ଷେ
ଗିରିଜା ପ୍ରସନ୍ନେ ମୁହିଁ ରଖେ ବ୍ୟାସମୁଖେ ।
ଅନୁଗ୍ରହ ପଶୁପତି ନେପାଳ ଭବାନୀ
ବିନୟେ ବୋଲେ ଶାରଳା ଦାସ ଶୂଦ୍ରମୁନି ।



## ପଶୁପତି ରାଜାଙ୍କ ସୈନ୍ୟମାନଙ୍କର ପୁନର୍ଜ୍ଜୀବନ ଓ ରଣସ୍ତମ୍ଭ ରାଜ୍ୟରେ ବୀରବର ରାଜା ସହିତ ଯୁଦ୍ଧ ଏବଂ ଅର୍ଜ୍ଜୁନଙ୍କର ହିଙ୍ଗୁଳାଙ୍କଠାରୁ ବରପ୍ରାପ୍ତି

ବଦନ୍ତି ଯେ ବୈବସ୍ୱତ ମନୁ ନୃପବର
କ୍ଷୀରାବ୍ଧି ଗଣ୍ଡୁଷ କଲ ହେ କୁମ୍ଭ କୁମର ।
ତୁମ୍ଭ ମୁଖରୁ ଗଳିତ ଯେଉଁ ସୁଧାରସ
ପାନ କରୁଛନ୍ତି ଜ୍ଞାନୀ ନରେ ହୋଇ ତୋଷ ।
ଏହି ସଭାପର୍ବ ବାଣୀ ଅତୀବ ମଧୁର
ଯାହା ଶୁଣିବାକୁ ସଦା ଅଭିଳାଷ ମୋର ।
ଅର୍ଜ୍ଜୁନ ତ ଶିବଙ୍କର ପାଇଲେ ଦର୍ଶନ
ଏଥୁଅନ୍ତେ କିସ ପୁଣି ହୋଇଲା ବିଧାନ ।
ସେହି ସବୁ କଥା କହି ତୋଷ ମୋର ମତି
କହନ୍ତି ଅଗସ୍ତି ମୁନି ଶୁଣ ନରପତି ।
ମୁଁ ଏହାଙ୍କୁ ବଖାଣିଲି ସୁଜନଙ୍କ ହିତେ
ମୁକତି ଇଚ୍ଛା କରନ୍ତି ପରମ ପଣ୍ଡିତେ ।
ରୁଦ୍ରଗଣ ଘେନି ଦେବ ବୃଷଭରେ ବିଜେ
ସ୍ୱରୂପ ଦେଖି ଅର୍ଜ୍ଜୁନ ରଥ ବେଗେ ତେଜେ ।
ଶ୍ରୀପଶୁପତି ଦେବଙ୍କ ଚରଣେ ନମାମି
ଶ୍ରୀଦୁର୍ଗା ଦେବୀଙ୍କ ପାଦେ ସହସ୍ର ପ୍ରଣାମି ।
ଭକତବତ୍ସଳ ନାଥ ପ୍ରସନ୍ନ ଧୂର୍ଜ୍ଜଟି
ଭକ୍ତେ ନିଷ୍ଫଳ ନୁହନ୍ତି ତୋ ପାଦରେ ଖଟି ।
ଶ୍ରୀସଦାନନ୍ଦ ବୋଇଲେ ଉଠ ଫାଲଗୁନି
କିପାଇଁ ମାଇଲୁ ମୋର ଶିବଗଣ ସୈନି ।

ଜାଣୁନା କି ନେପାଳର ପଶୁପତି ହାଥେ
ରାବଣ ଭୟରେ ଗୋପ୍ୟ ହୋଇଥିଲୁ ଏତେ
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ମୋର ନାହିଁ ଜାଣେ
ଶିବ ବୋଇଲେ ଏ ତୀର୍ଥେ କର ଆସି ସ୍ନାନ
ପ୍ରତ୍ୟକ୍ଷରେ ଶିବପୁର ପ୍ରାପ୍ତ ହେବୁ ବାବୁ
କଳିକାଳ ଧ୍ୱଂସିବାକୁ ମୁକ୍ତି ଏଥୁ ସବୁ ।
ବିଶ୍ୱନାଥ ଦେଖାଇଲେ ସେହି ଶିବପୁରୀ
ଗୋପନରେ ଧନଞ୍ଜୟ ତହିଁ ସ୍ନାନକରି ।
ନିତ୍ୟକର୍ମ ସାରି ରୁଦ୍ରକୁଣ୍ଡେ ଶ୍ରାଦ୍ଧ କଲେ
ବାଲ୍ୟକାଳେ ପିତୃଗଣ ଆସି ଦୃଶ୍ୟ ହେଲେ ।
ଅର୍ଜ୍ଜୁନ ପିଣ୍ଡ ଦିଅନ୍ତେ ପାତିଲେ ସେ ହସ୍ତ
ସମସ୍ତଙ୍କ ହସ୍ତେ ଯାଇ ହେଲା ଉପଗତ ।
ଯେବଣ ଅକ୍ଷୟ ପିଣ୍ଡ ଦେଲେ ସବ୍ୟସାଚୀ
ପଞ୍ଚତିରିଶ ପୁରୁଷ ବାଣ୍ଟି ତାହା ଭକ୍ଷି ।
ପୂର୍ବର ପାତକମାନ ସର୍ବ ହେଲା ଧ୍ୱଂସ
ଲଭିଲେକ କ୍ଷୟ ଭାବେ ତହୁଁ ସ୍ୱର୍ଗବାସ ।
ତହୁଁ ବିଶ୍ୱମ୍ଭର ଦେବ ହେଲେ ଅନ୍ତର୍ଦ୍ଧାନ
ନିମନ୍ତ୍ରଣ କଲେ ପଶୁପତିଙ୍କୁ ଅର୍ଜ୍ଜୁନ ।
ଅକ୍ଷତ ଗୁବାକ ଦେଇ କଲେ ନିମନ୍ତ୍ରଣ
ବୋଇଲେ ଯାଅ ତୁ ବେଗେ ଘେନିଣ ସଇନ୍ୟ
ବାରୁଣାବନ୍ତରେ ଯାଇ ପ୍ରବେଶ ହୋଇବୁ
ପାରିଦଣ୍ଡ ସବୁ ରାଜା ସଙ୍ଗେ ଘେନିଯିବୁ ।
ପାର୍ଥ ହାବୋଡ଼ା ଶରରେ ସୈନ୍ୟଥିଲେ ଲୋଟି
ଜୀବନ୍ୟାସ ଶର ଘେନି କରିବାରୁ ବୃଷ୍ଟି ।
ଉଠିଲେ ଗଣନାୟକ ନିଜ ପ୍ରାଣ ପାଇ
ଅର୍ଜ୍ଜୁନଙ୍କୁ ପ୍ରଣିପାତ ହୁଏ ନରସାଇଁ ।
ସମଦଣ୍ଡ ସଇନଙ୍କୁ ସାଜିଲା ହରଷେ
କରଇ ପ୍ରୟାଣ ତହୁଁ ବାରୁଣା ପ୍ରଦେଶେ ।
ତହୁଁ ପାର୍ଥ ବୀରତୁର ବାଦ୍ୟନାଦ କରି
ପଶ୍ଚିମ ମୂରତି ହେଲେ ସୈନ୍ୟଙ୍କୁ ସେ ଧରି ।
ରୁଦ୍ରପତି ଗଙ୍ଗାତୀରେ ଶୁକ୍ଳ ନଗରୀ
ବିରଞ୍ଚିରୁଦ୍ର ବୋଲିଣ ତହିଁ ଦଣ୍ଡଧାରୀ ।
ବାଇଶ ଅର୍ବୁଦ ହସ୍ତୀ ଛପ୍ପନକୋଟି ରଥୀ
ଏଗାର ମେବଛ ଅଶ୍ୱ କ୍ଷଉଣୀ ପଦାତି ।
ଅର୍ଜ୍ଜୁନ ପ୍ରବେଶ କୁଶମଣ୍ଡଳର ରାଜ୍ୟେ
ସ୍ନାନପାଇଁ ରୁଦ୍ରଗଙ୍ଗା ପାଶେ ହେଲେ ବିଜେ ।
ନିତ୍ୟକର୍ମ ସାରି ତହୁଁ କଟକେ ପ୍ରବେଶ
ଦେଶାଉରେ ଜଣାଇଲେ ଯାଇ ରାଜା ପାଶ ।
ସ୍ୱାମୀ କେବଣ ଦେଶର ଏକ ମହାଯୋଧି
ଉତ୍ତର ଦିଗ ରାଜାଙ୍କୁ ଆସୁଅଛି ସାଧି ।

ଦୁର୍ଦ୍ଧାର ହୋଇଲେ ଦେବ ନ ବର୍ତ୍ତନ୍ତି କେହି
ଶରଣ ପଶିଲେ ଶତ୍ରୁ ରକ୍ଷା ସେ କରଇ ।
କ୍ଷତ୍ରିୟ ଅନର୍ଗଳ ସେ ଅଟେ ମହାଯୋଦ୍ଧା
ଜମାଗୋଷ୍ଟ ରାଜାକୁ ସେ ରଥେ ଅଛି ବାନ୍ଧି ।
ଜମାଗୋଷ୍ଟର ବନ୍ଧନ ଶୁଣିକରି ରାୟେ
ସମଦଣ୍ଡ ଘେନିଣ ସେ ପାଛୋଟିଣ ଯାଏ ।
ଭାରିଯା ପୁତ୍ର ବନ୍ଧୁ ସେ ଘେନି ଇଷ୍ଟଜନ
ସକଳେ ଧରିଅଛନ୍ତି ପାଟଛତ୍ରମାନ ।
ନଗରେ ପାଏଡ଼ା ପାରି ନୃପ ମଣ୍ଡଳାଧି
ଅର୍ଜ୍ଜୁନକୁ ପ୍ରଣିପାତ କରେ କରି ବିଧି ।
ବହୁତ ବିନୟ ଭାବେ ବହୁ ସ୍ତୁତି କରି
ଶତସହସ୍ର ପ୍ରଣାମ କରେ ଦଣ୍ଡଧାରୀ ।
ରାଜାର ବିନୟ ଦେଖି ବୀର ଅରଜୁନ
ରଥରୁ ଓହ୍ଲାଇ ତାକୁ କଲେ ସମାଧାନ ।
ଅର୍ଜ୍ଜୁନ ବୋଇଲେ ତୁହୋ ଜାଣିଲୁ ସନ୍ଦେହ
ନିଶ୍ଚିନ୍ତ ହୋଇଣ ଏବେ ତୋ ରାଜ୍ୟରେ ରହ ।
ଏହା କହି ନିମନ୍ତ୍ରଣ ଦେଇ ସବ୍ୟସାଚୀ
ରାଜସୂ ଯାଗକୁ ଚଳ ସବୁ ସୈନ୍ୟ ବାଛି ।
ଆଜ୍ଞାପ୍ରମାଣେ ବିରଞ୍ଚି ରୁଦ୍ର ଦେବ ରାୟେ
ସମଦଣ୍ଡେ ବାରୁଣାକୁ ବେଗେ ଚଳିଯାଏ ।
ତହୁଁ ଚଳେ ଧନଞ୍ଜୟ ଗଙ୍ଗାତୀରେ ତୀରେ
ପ୍ରବେଶିଲେ ଯାଇ ରଣସ୍ତମ୍ଭର ରାଜ୍ୟରେ ।
ବୀରତୂର ବାଦ୍ୟ ବାଇ ବୀର ଫାଲଗୁନି
ରଣସ୍ତମ୍ଭ ଦେଶଗଡ଼େ ବିଜୟ ରଜନୀ ।
ସେ ରାଜାର ନାମ ବୀରବର ଚକ୍ରବର୍ତ୍ତୀ
ବଡ଼ ପ୍ରତାପୀ ଉତ୍ତର କୋଶଳ ସେ କ୍ଷତ୍ରୀ ।
ସେହି ଗଡ଼ର ଭିତରେ ବିଜୟ ହିଙ୍ଗୁଳା
ଯୋଗମାତଙ୍ଗିନୀ ସେହୁ ସିଦ୍ଧ ମହାଖଳା ।
ମାନବୀ ରୂପରେ ତହିଁ ବିଜେ ଜଗନ୍ମାତା
ତାହାର ପ୍ରସାଦେ ରାଜ୍ୟେ ନାହିଁ କିଛି ଚିନ୍ତା ।
ଜ୍ୱାଳାମୁଖୀ ଅଭୟା ଯେ ଅଗ୍ନି ହିଙ୍ଗୁଳାକ୍ଷୀ
କୌଣପବଳ ଧ୍ୱଂସିନୀ ମାତା ବିରୂପାକ୍ଷୀ ।
ଅର୍ଜ୍ଜୁନ ବିଜୟ ରଣଘାଟି ପରବତେ
ବହଇ କୌଶିକୀ ନଦୀ ଗିରି ହେମବନ୍ତେ ।
ଧନୁମାସ କୃଷ୍ଣପକ୍ଷ ଷଷ୍ଠୀ ଶୌରୀବାରେ
ପୂର୍ବାଫାଲ୍‌ଗୁନୀ ନକ୍ଷତ୍ର ଭୋଗ ସେ ଦିନରେ ।
ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
ଧନୁ ସଂକ୍ରାନ୍ତି ବାଇଶି ଦିନ ଥିଲା ଭୋଗ ।
ନୈଋତକୋଣରେ ଯୋଗ୍ମୀ ଥିଲେ ସୁବିଧାନେ
ସକଳ ଶୁଭ ମାହେନ୍ଦ୍ର ବେଳେ ବିଦ୍ୟମାନେ ।

ଅମୃତ ଯୋଗକରଣ ମାହେନ୍ଦ୍ରକୁ ଘେନି
କଉଶିକ ଗଙ୍ଗାତୀରେ ବିଜେ ଫାଲଗୁନି ।
ସେ ନଦୀ ରକ୍ଷା କରନ୍ତି ଯୋଦ୍ଧା ପାଞ୍ଚଲକ୍ଷ
ଅର୍ଜ୍ଜୁନକୁ ଓଗାଳିଲେ ହୋଇଣ ବିପକ୍ଷ ।
କେବଣ ଦେଶର ରାଜା ଚଳାଉଛି ଥାଟ
ଏ ହାଦେ ଅଟଇ କ୍ଷେତ୍ର ମହାତୀର୍ଥ ଶ୍ରେଷ୍ଠ ।
ବିଜେ କାତ୍ୟାୟିନୀ ମାତା ପ୍ରତ୍ୟକ୍ଷେ ହିଙ୍ଗୁଳା
ଜନ୍ମାନ୍ତର ଦରିଦ୍ରତା ଫିଟେ ଏକବେଳା ।
ଜ୍ୱାଳା ମାହେଶ୍ୱରୀ ଦେବୀ ରାଜା କରେ ରକ୍ଷା
ଅଭୟା ହିଙ୍ଗୁଳା ତାର ପୂର୍ଣ୍ଣକରେ ବାଞ୍ଛା ।
ତେଣୁ ଏଠାକୁ ଆସନ୍ତି ପିଶାଚାଦିମାନେ
ଶୁଭଲଗ୍ନବେଳ ଜାଣି ମାହେନ୍ଦ୍ର ବିଧାନେ ।
ଆମ୍ଭେ ରକ୍ଷାକାରୀ ଅଟୁ ଏ ଜଳଉଦ୍ୟାନେ
କେଉଁ ଗର୍ବେଶ୍ୱର ରାଜା ଆସୁ ତୁ ଏ ସ୍ଥାନେ ।
ପ୍ରମାଦରେ ନ ପଶି ତୁ ବାହୁଡ଼ିଣ ଯା ଯା
ଶୁଣିଲେ କୋପ କରିବେ ତୋତେ ମହାରାଜା
ଯଦି ଆସନ୍ତି ଦେବତା କି ଅବା ଗନ୍ଧର୍ବେ
ଜଳେ ପଶି ନ ପାରନ୍ତି ଆମ୍ଭର ପ୍ରଭାବେ ।
ପାର୍ଥ ବୋଇଲେ ଆମ୍ଭର ହେବ ମହାଯାଗ
ରାଜା ନିମନ୍ତ୍ରଣ କରି ଆମ୍ଭେ ନେବୁ ବେଗ ।
ଏହି ଉତ୍ତର ଦିଗରେ ଯେତେକ ନୃପତି
ଦଣ୍ଡ ଘେନିଣ ସମସ୍ତେ ତହିଁ ଯାଇଛନ୍ତି ।
ତୁମ୍ଭର ରାଜା ଆଗରେ କହ ଯାଇ ବେଗ
ଦଣ୍ଡ ଘେନିଣ ବାରୁଣା ଯାଉ ଆମ୍ଭ ଯାଗ ।
ଅର୍ଜ୍ଜୁନ ବଚନ ଶୁଣି କଲେ ଉପହାସି
ଜୀବନ ଘେନିଣ ଏଥୁଁ ବେଗେ ତୁ ଯାଆସି ।
ମହା ମହା ରାଜାଏ ଯେ ଆସି ଦଣ୍ଡ ଘେନି
ପାରି ହୋଇ ନ ପାରନ୍ତି ତାଙ୍କର ସଇନି ।
ଆଗୁଆଣି ଥିଲେ ଜୟ ବିଜୟ ସେ ବୀରେ
ଗୋଳ କରିଣ ପଶିଲେ ରାଜାର ଥାଟରେ ।
କୁରୁଳି ନାଦ କରିଣ ପଶିଲେ ସେ ମାଡ଼ି
ଅର୍ଜ୍ଜୁନ ଶର ବିନ୍ଧିଲେ ଉପରୋଧ ଛାଡ଼ି ।
ପାଞ୍ଚଲକ୍ଷ ଯୋଦ୍ଧା ବୀର ସେ ରାଜାର ଥିଲେ
ଲୁହା ଧନୁ ଧରି ପାର୍ଥ ସୈନ୍ୟକୁ ବିନ୍ଧିଲେ ।
ବାସବିର ସୈନ୍ୟମାନେ ପ୍ରତିଜ୍ଞା ସାମର୍ଥ
ପରରାଷ୍ଟ୍ର ଜିଣିବାକୁ ସେହି ବଳବନ୍ତ ।
ଧନୁରେ ପୂରାଇ ଶର ବିନ୍ଧିଲେ ଆକର୍ଷି
ଶତ୍ରୁ ସଇନ୍ୟରେ ଯାଇ ନାରାଚ ବରଷି ।
ପଙ୍କକୁ ମାଇଲେ ଯେହ୍ନେ ପଶିଯାଏ କିଳା
ତେହ୍ନେ ପଡ଼େ ତୀକ୍ଷଣମୁନା ଶର ଅନର୍ଗଳା

ଅଶ୍ୱ ଯୋଦ୍ଧାଙ୍କର ସେହ୍ନା ଭେଦ ହୋଇ ଫୁଟି
ପଦାତିକ ସୈନ୍ୟ ହେଲେ ରୁଧିରରେ ଘାଣ୍ଟି ।
ନଦୀ ଭିତରେ ଅଛନ୍ତି ରାଜା ଅମାକିନୀ
ଉପରେ ଥାଇ ବିନ୍ଧନ୍ତି ଅର୍ଜୁନ ସଇନି ।
ରାଜାର ସୈନ୍ୟ ଉପରେ ହୁଏ ଶର ବୃଷ୍ଟି
ନିର୍ଘାତେ ବନ ପୋଡ଼ିଲେ ଯେହ୍ନେ ମହୀଘୋଟି
ରୁଧିରରେ ବିଲେପନ ହେଲା ସର୍ବକାୟ
କଉଶିକୀ ନଦୀପାଣି ବହେ ରକ୍ତ ପ୍ରାୟ ।
ଆଣ୍ଟକରି ଚାପେ ଶର ବିନ୍ଧେ ଫାଲଗୁନି
ବେନିବଳ ସଇନି ଯେ ହେଲେ ଅନ୍ୟାଅନି ।
ପାଣ୍ଡବ ବଳ ଅଟନ୍ତି ନାରାୟଣ ଭକ୍ତ
ସଂଗ୍ରାମେ ପଶନ୍ତେ ବିଷ୍ଣୁବଳ ଅପ୍ରମିତ ।
ନାରାୟଣଙ୍କର ନାମ ଅତୁଟ ଆରଶି
ଅସୁରବଳ ଖଦ୍ୟୋତ ଅଟେ କୃଷ୍ଣଶଶୀ ।
ଯେତେ ଅର୍ଜୁନ ନାରାଚ ଥାଟେ ଆସି ପଡ଼ି
ସେହି ସମସ୍ତେ ପଡ଼ନ୍ତି ଭୂମିରେ ଉପୁଡ଼ି ।
ଅର୍ଜୁନର ସୈନ୍ୟମାନେ ଆକର୍ଷିଣ ବିନ୍ଧି
ଶର ଗୋଟିକେ କୋଟିଏ ପକାଉନ୍ତି ଛେଦି ।
ପଡ଼ିଲେ ସେ ବୀରବର ରାଜାସୈନ୍ୟ ଯେତେ
ପାଞ୍ଚଲକ୍ଷ ଯୋଦ୍ଧା କେହି ନ ଗଲେ ଜୀବିତେ ।
ତହୁଁ କୌଶିକୀ ନଦୀରେ ପଡ଼ିଲେ ସେ ଝାସି
କରନ୍ତି ସ୍ନାହାନ ସର୍ବେ ପୁଣ୍ୟଜଳେ ପଶି ।
ଦେବଗଣେ ପିତୃଗଣେ ଦେଲେ ପିଣ୍ଡଦାନ
ଇଛାରେ ପାଣ୍ଡବ ବଳ ରହିଲେ ସେ ସ୍ଥାନ ।
ବାଲି ମାଡ଼ି ମାଡ଼ି ତହୁଁ ରହିଲେ ସଇନି
ରଣସ୍ତମ୍ଭ ଗଡ଼କୁ ସେ ଯୋଜନ ଯେ ତିନି ।
ଆସ୍ଥାନେ ବିଜେ କରିଛି ବୀର ଚକ୍ରବର୍ତ୍ତୀ
ଛାମୁରେ ଉଭାରିଛନ୍ତି ତ୍ରିଲକ୍ଷ ପଦାତି ।
ପୁଣ୍ୟତୋୟା ତୀର୍ଥେ ପାଞ୍ଚଲକ୍ଷ ଯୋଦ୍ଧା ଥିଲେ
ଚଉବିଂଶ ଯୂଣ ତହୁଁ ପଳାଇଣ ଗଲେ ।
ପଞ୍ଜରାମାନଙ୍କରେ ସେ ଶର ଅଛି ଫୁଟି
ଶରୀରଯାକ ତାଙ୍କର ରୁଧିରରେ ବୃଷ୍ଟି ।
ଜୀବନ ଘେନି ସେମାନେ ପଳାଇଲେ ବେଗେ
ଯାଇ ଜଣାଇଲେ ବୀରବର ରାଜାଆଗେ ।
ସ୍ୱାମୀ ମହେଶ୍ୱର ଦେବ ଆମ୍ଭ ଦୁଃଖ ଦେଖ
ପାଞ୍ଚଲକ୍ଷ ଯୋଦ୍ଧା ମଲେ ଆମ୍ଭ ରାଜ୍ୟ ରଖ ।
ଅଦଭୁତେ ଯୋଦ୍ଧା ଏକ ଅଇଲାକ କାହୁଁ
ମାଇଲା ସମସ୍ତ ଯୋଦ୍ଧା କଥା କହୁଁ କହୁଁ ।
ବିଚାରିଣ ଆଜ୍ଞା ଦେବା ମାହେଶ୍ୱରୀ ବଳା
ପଡ଼ିଲାଣି ଅପଚୟ ବେଗେ ହୋଇ ପଳା ।
ମହାସଂଗ୍ରାମଜିତା ସେ ଅଟେ ଧନୁର୍ଦ୍ଧର
ଅକ୍ଷୟ ଗଡ ଭିତରୁ ନୁହ ତୁ ବାହାର ।
ଚାରଗଣଙ୍କ ମୁଖରୁ ଏ ବାରତା ପାଇ
ରାଗରେ ଉଠିଲା ରାଜା ନୟନ ବୁଲାଇ ।
ସାଜରେ ସାଜରେ ବୋଲି ପଡ଼େ ଘୋଷଣାକ
ବିଜେ ତୁରୀ ବାଇ ଗଡ଼ୁ ବାହାର ହେଲାକ ।
ଅଇଲେ ତାହାର ବଳ ବାହାର ପଲାଣି
କାହାଳିର ଉଦବେଗ ଶବଦକୁ ଶୁଣି ।
ପାରିଦଣ୍ଡମାନେ ଉଦବେଗ ନାଦ ଶୁଣି
କିସ ବିପଦ ବୋଲିଣ କମ୍ପିଲେ ପୁଣି ।
ଗଡ଼ଦ୍ୱାରେ ଉଭାହେଲେ ଆସିଣ ରାଉତ
ଅଶ୍ୱ ଚଢ଼ିକରି ସେହୁ ବୁଲାବନ୍ତି କୁନ୍ତ ।
ବିନ୍ଧନ୍ତି ସେ ବଜ୍ରବାଣ ଦୃଢ଼ ବଜ୍ରମୁଠୀ
ପୁଣ୍ୟତୋୟା ତୀରେ ଥାଇ ଶୁଣେ ସବ୍ୟସାଚୀ ।
ମଣୋହି ସାଜିଣ ନାବେ ବିଜେ ଫାଲଗୁନି
ନାବେ ପାରି ହେଉଛନ୍ତି ପାଣ୍ଡବ ସଇନି ।
ରଣସ୍ତମ୍ଭ ରାଜ୍ୟେ ପରଥାଟ ବାର୍ତ୍ତା ପାଇ
ଅନେକ ଦେଶର ରାଜା ଆସୁଛନ୍ତି ବାହି ।
ପ୍ରବେଶ ହୁଅନ୍ତି ରଣସ୍ତମ୍ଭର ଗଡ଼ରେ
ମହାଯୋଦ୍ଧାଏ ମିଳିଲେ ମହାଗର୍ବରେ ।
ବାଜେ ବୀରତୂର ବାଜା ନିଶାଣ ଦାଉଣ୍ଡି
ଦାଣ୍ଡେ ବିଞ୍ଚୁଛନ୍ତି ପୁଷ୍ପ କର୍ପୂରର ଗୁଣ୍ଡି ।
ରହିଛନ୍ତି ଯୋଦ୍ଧା ସୈନ୍ୟ ଆଡ଼ମ୍ବର କରି
ପୁଣ୍ୟତୋୟାକୁ ଅର୍ଜୁନ ସୈନ୍ୟ ହେଲେ ପାରି ।
ବାହାନ୍ତି ଯେ ତୁରଙ୍ଗମ ମାତଲି ସାରଥି
ଶଙ୍ଖ ଶ୍ୱେତ କାମପାଳ ଗୋକ୍ଷୀର ଉଡନ୍ତି ।
ନେତର ଚିରାଳ ଉଡ଼େ ରଥର ଉପରେ
ହୀରାମଣି ଝଟକଇ ସୂର୍ଯ୍ୟର ତେଜରେ ।
ସିଂହଦ୍ୱାରେ ନବତାଳ ଉସର୍ଗ ଜଗତୀ
ତହିଁ ପାତ୍ର ମନ୍ତ୍ରୀ ଛନ୍ତି ଆବର ନୃପତି ।
ଅଦଭୁତେ ରଥ ଏକ ଦେଖିଲେ ଆକାଶେ
ବିଚାରନ୍ତି ଇନ୍ଦ୍ରଦେବ ଯାନ୍ତି ଶୂନ୍ୟବାସେ ।
ମନ୍ତ୍ରୀବର ବୋଇଲା ଏ ନୁହେଁ ସୁରନାଥ
ଇନ୍ଦ୍ରଦେବ ହୋଇଥିଲେ ଥାନ୍ତା ଐରାବତ ।
କେ ବୋଲେ ଅଳକାନାଥ କୁବେର ଏ ଅବା
କିବା ଅଶ୍ୱିନୀକୁମାର କିବା ମହାଦେବା ।
ଆନ କାହାର ରଥ କି ଚଳେ ଅନ୍ତରୀକ୍ଷ
ବେଦବିଜ୍ଞ ପୁରୁଷ ବା ହେବେ ଚତୁର୍ମୁଖ ।
ଏସନେକ ବିଚାରନ୍ତି ପାତ୍ର ଅମାତ୍ୟେ
ବାସବ ଅଗ୍ରତେ ଯାଇ ପ୍ରବେଶ ସମସ୍ତେ ।

ଗଡ଼ର ଚାରିକତିରେ ବେଢ଼ଇ ପାଚେରୀ
ତିନି କ୍ରୋଶ ବହଳ ଉତ୍ସର୍ଗ ଯୁଣ ଚାରି ।
ପାଚେରୀ ଉପରେ ଅଶ୍ୱ ଚଢ଼ି ସର୍ବ ଯୋଧୀ
କୁନ୍ତ ଅସି ବୁଲାଇଣ କାଣ୍ଡମାନ ବିନ୍ଧି ।
ମେଢ଼ ମଣ୍ଡପ ଦେଉଳ ଅଟ୍ଟାଳି ଜଗତୀ
ପାଚେରୀ ଉପରେ ଚଢ଼ି ସମସ୍ତେ ଚାହାଁନ୍ତି ।
ଅର୍ଜ୍ଜୁନ ଚଳାଉଛନ୍ତି ଆପଣାର ଥାଟ
ସଇନି ହୋଇଲେ ଯାଇ ଗଡ଼ର ନିକଟ ।
ନଧରନ୍ତି ନ ମାରନ୍ତି କିଛି ନ ବିଚାରି
ଯେ ଯାହାର ସ୍ଥାନେ ଥାନ୍ତି ଆଜ୍ଞା ଅବଧାରୀ ।
ଦେଖନ୍ତି ରହି ସକଳେ ଅପୂର୍ବ ପରାୟେ
ଆକାଶ ତେଜି କି ବିଜେକଲେ ସୁରରାୟେ ।
ନାରାୟଣୀ କରିଛନ୍ତି ବିଜେ ଯେଉଁଠାର
ଦିବ୍ୟପୁର ଅଟେ ନରେ ଅତ୍ୟନ୍ତ ସୁନ୍ଦର ।
ଏସନକ ସୁନ୍ଦର ସେ ରଣସ୍ତମ୍ଭ ଦେଶ
ସୈନ୍ୟ ହାବୋଡ଼ିଲେ ଯାଇ ଗଡ଼ଦ୍ୱାର ପାଶ ।
ଦ୍ୱିକୋଶ ଓସାର କୋଶେ ଅଟଇ ଗଭୀର
ଖଣା ବେଢ଼ିଛି ଗଡ଼କୁ ନବଯୁଣ ଦୂର ।
ଅର୍ଜ୍ଜୁନର ରଥ ଗଲା ଅନ୍ତରୀକ୍ଷ ପଥେ
ବାହାର ଗଡ଼ ଜଗତୀ ପ୍ରବେଶ ତ୍ୱରିତେ ।
ସୈନ୍ୟଙ୍କୁ ସେ ଆଜ୍ଞା ଦେଲା ରଣସ୍ତମ୍ଭ ପତି
ତେଜ୍ୟାକରି ବେଗେ ଆସ ବାହାର ଜଗତୀ ।
ଜାଣିବା କେଉଁ ଦେଶର ଅଟଇ ଏ ଥାଟ
କାହିଁକି ଆସିଛି କେଉଁ ଦେଶର ଏ ରାଟ ।
ବାହାର ଗଡ଼ ପାଚେରୀ ବେଢ଼ିଥିଲେ ବୀରେ
ଛାଡ଼ି ଅଇଲେ ସେଠାରୁ ଗଡର ଭିତରେ ।
ଏହିରୂପେ ତିନିଖଞ୍ଜା ତିନୋଟି ପାଚେରୀ
କୋଶେ ବହଳ ଉତ୍ସର୍ଗ ଅଟେ କ୍ରୋଶ ଚାରି ।
ତହିଁର ତଳେ ଖଣାଏ ଅତ୍ୟନ୍ତ ବିସ୍ତାର
ମହାନଦୀ ପ୍ରାୟେ ସେହି ଅଟଇ ଗଭୀର ।
ରହିଲେ ଯେ ସୈନ୍ୟ ଦୁଇଗଡ଼କୁ ଆବୋରି
ଅର୍ଜ୍ଜୁନ ସୈନ୍ୟଉଠିଲେ ବାହାନାଦ କରି ।
ବାହାର ଗଡ଼ ଖଣାର ପ୍ରସ୍ଥ କ୍ରୋଶ ତିନି
ପାଦଗତିରେ ରାଉତେ ନ୍ୟନ୍ତି ଅଶ୍ୱ ଘେନି ।
ବାହାର ଗଡ଼ ପ୍ରାଚୀରେ ବିଜେ ସବ୍ୟସାଚୀ
ଚାରଗଣ ମୁଖେ ଯାଇ କହଇ ଯେ ବାଚି ।
ପାର୍ଥ ବୋଇଲେ ପୁରୋଧା ବ୍ରାହ୍ମଣ ହକାରି
ତୁମ୍ଭେ ପୁଷ୍ପକ-ବିମାନେ ଯାଅ ଚଢ଼ିକରି ।
ବୀରବରକୁ ତିଆର ଯାଇ ବହୁମତେ
ଆମ୍ଭେ ଆସିଅଛୁ ରାଜା ନିମନ୍ତ୍ରଣ ଅର୍ଥେ ।
ତାର ଆମ୍ଭର ବିବାଦ ନାହିଁ କିଛି ପୂର୍ବେ
ଆମ୍ଭର ତୁଲେ ପୀରତି ସେହୁ କରୁ ଏବେ ।
ଆମ୍ଭେ ଯେ ଅନେକ ଦୂରୁ ଅଇଲୁ ଦୁସ୍ତରୁ
ହିଙ୍ଗୁଳା ପ୍ରତ୍ୟକ୍ଷ କରି ବିରୋଧ ନ କରୁ ।
ଅର୍ଜ୍ଜୁନ ବଚନ ଶୁଣି ଗଲେ ପୁରୋହିତ
ପୁଷ୍ପକ ରଥରେ ଯାଇ ବସିଲେ ତ୍ୱରିତ ।
ଚଳିଲେ ଆକାଶେ ରଣସ୍ତମ୍ଭର ଗଡ଼ରେ
ପ୍ରବେଶ ହୋଇଲେ ବୀରବର ଆସ୍ଥାନରେ ।
ରାଜାର ଅଗ୍ରତେ ଉଭା ହୋଇ ଦ୍ୱିଜବର
କଲ୍ୟାଣ କଲେ ରାଜାକୁ ଉଚିତ ପ୍ରକାର ।
ଆସନରେ ବସିବାକୁ ରାଜା ନ କହିଲେ
କୁଶହସ୍ତେ ପୁରୋହିତେ ତାହାଙ୍କୁ ବୋଇଲେ ।
ହେ ମହାରାଜା ଯୁଧିଷ୍ଠିରଦେବ ନରସ୍ୱାମୀ
ଅଷ୍ଟାଦଶ ବଂଶ ରାଜାମାନଙ୍କ ଉତ୍ତମୀ ।
ରାଜସୂୟ ଯାଗେ ତହିଁ ହେବ ମହାସଭା
ସମଦଣ୍ଡ ଘେନି ଚାଲ ବହନରେ ଯିବା ।
ପୁରୋହିତ ବାକ୍ୟେ ମଧୁମୟ ମହାମନ୍ତ୍ରୀ
ସୁରେଶ୍ୱରକୁ କହିଲା କଥା ଏହିମତି ।
ଆହେ ଦ୍ୱିଜବର ତୁମ୍ଭେ ବୋଲୁଛ ଏମନ୍ତ
ରାଜାଧିରାଜ ଉତ୍ତର ଦିଗେ ଏକଛତ୍ର ।
ଦେଖ ଦେଖ ମହାଦେବୀ ପ୍ରତ୍ୟକ୍ଷେ ହିଙ୍ଗୁଳା
ଅକ୍ଷୟ ପ୍ରସନ୍ନ ଦେବୀ ଅଟେ ମହାଖଳା ।
ଆକାଶରେ ଲାଗୁଅଛି ଯାହାଙ୍କର ମାଥ
ପାଦୁକା ମନ୍ତ୍ରେ ଗମନ୍ତି ଯେହ୍ନୁ ବହୁ ତୀର୍ଥ ।
ଏ ରଣସ୍ତମ୍ଭ ଗଡ଼ ସେ ଦେବୀ ଛନ୍ତି ସଞ୍ଚି
ଆମ୍ଭେ କ୍ଷେତ୍ର ଅଧିପତି ତୀର୍ଥ ଅଛୁ ରଖି ।
ଏ ତୀର୍ଥକୁ ଛାଡ଼ି କିମ୍ପା ତହିଁ ଯିବୁ ଆମ୍ଭେ
ଆମ୍ଭର ରାଜାଙ୍କୁ ଘେନି ଚଳିଯାଅ ତୁମ୍ଭେ ।
ପୁରୋହିତ ବୋଲେ ଆମ୍ଭେ ଅଇଲୁ ଏ ସ୍ଥାନେ
ତୁମ୍ଭେ ନ ଗଲେ କି ଯିବେ ଅନ୍ୟ ରାଜାମାନେ ।
ରାଜାର ଅଗ୍ରତେ କହେ ମନ୍ତ୍ରୀ ଚୂଡ଼ାମଣି
ଅର୍ଜ୍ଜୁନ ଛାମୁକୁ କିହୋ ଆସ ଏହିକ୍ଷଣି ।
ପୁରୋହିତଙ୍କ ବଚନେ ନୃପ ବୀରବର
ବୋଇଲେ ମୁହିଁ ତ ବଶ ନୁହଇ କାହାର ।
ସେହି ନ ଜାଣେ କି ରଣସ୍ତମ୍ଭ ଗଡ଼ ବୋଲି
ଏ ମହୀମଣ୍ଡଳେ ଥାଇ କାରେ ନ ସାଧିଲି ।
ଆମ୍ଭେ ନ ଯାଉ କା ପୁରେ କେବଣ ପୁରୁଷେ
ମୋ ପୁରରେ ନ ପଶନ୍ତି ତ୍ରାସରେ ତ୍ରିଦଶେ ।
ଆକାଶରେ ଗତି ତାର ନୟନେ ଦେଖିଲି
ଇନ୍ଦ୍ରମଣି ବାହାରର ଜଗତୀ ଛାଡ଼ିଲି ।

କିଏ ଜାଣଇ ଅର୍ଜ୍ଜୁନ ଅଥବା ଯୁଧିଷ୍ଠି
କିଏ ସେ କେଶବ କିଏ ଅଟଇ ଧୂର୍ଜ୍ଜଟୀ ।
କିଏ ଜାଣଇ ତାହାର ବ୍ରହ୍ମ ବଜ୍ରପାଣି
ଏକମାତ୍ରକ ହିଙ୍ଗୁଳା ମୋର ଗୋସାମଣି ।
କେଉଁ ଦେବତା ତୁମ୍ଭର କିସ କରେ କାମ
ଈଶ୍ୱର ଅର୍ଦ୍ଧାଙ୍ଗୀ ଅଟେ ହିଙ୍ଗୁଳା ଯା ନାମ ।
ତପୋଧନ ହେଲେ ମାଡ଼ିପାରି ସେହି ତୀର୍ଥ
ବଳାତ୍କାରେ ପଶିବାକୁ କାର କ୍ଷତ୍ରିବୃତ୍ତ ।
ତାହାର ଯାଗ ଯଜ୍ଞରେ ମୋର କିସ କାର୍ଯ୍ୟ
ଜୀବନ ଘେନି ବାହୁଡ଼ି ପଶୁ ଅନ୍ୟ ରାଜ୍ୟ ।
ପୁରୋଧା କହିଲେ ତୁହି କହିଲୁ ନା ଦର୍ପେ
ତିନିଲୋକ କମ୍ପୁଅଛି ଯାହାର ପ୍ରତାପେ ।
ଖାଣ୍ଡବବନ ଦହନେ ବାସବ ବିବାଦୀ
ଅଗ୍ନିର ନାଶ କରିଲା ଲୁଦୁବୁଦୁ ବ୍ୟାଧି ।
କିରାତ ଦେଶରେ ଯାଇ ଈଶ୍ୱରଙ୍କୁ ଜିଣି
ଅକ୍ଷତୂଣ ପାଶୁପତ ଦେଲେ ଶୂଳପାଣି ।
ଦ୍ୱାରକା ପଶି ସୁଭଦ୍ରା କରିଲେ ହରଣ
ବହୁତ ସମର କଲେ ହରି ଶଙ୍କର୍ଷଣ ।
ଏଡେ ବଡ଼ ରାଜ୍ୟ ନାଶ ନ କର ତୁ ହାଦେ
ତୋତେ କେବଳ ଉପ୍ରୋଧ ହିଙ୍ଗୁଳା ପ୍ରସାଦେ ।
ସୈନ୍ୟ ନାଶଯିବେ ତୋର ଅକାରଣେ ଯୁଦ୍ଧେ
ଏଡ଼େକ ପ୍ରମାଦ ତୁହି କରୁଅଛୁ ହାଦେ ।
ସମ୍ଭାର ରାଜ୍ୟଟି ତୋର ବଡଇ ସୁମଞ୍ଚ
ସ୍ୱର୍ଗଭୁବନ କି ଆସି ରହିଅଛି ମଞ୍ଚ ।
ତୁହି ମହାରାଜା ତୋର କିଛି ନାହିଁ ଦୋଷ
ଏ ବଡ଼ ରାଜ୍ୟ କିଞ୍ଚିତେ ନ କର ତୁ ନାଶ ।
ଶୁଣିଣ ନୃପତି କହେ ଗରଜନ କରି
ଦ୍ୱିତିପୁତ୍ର ନୋହିଥିଲେ ପକାନ୍ତି ମୁଁ ମାରି ।
ଆରେ ବ୍ରାହ୍ମଣ କିମ୍ପାଇ ପାଉନାହୁଁ ଲଜ୍ଜା
ଏହିକ୍ଷଣି ନାଶଯିବୁ ବହନ ତୁ ଯା ଯା ।
ହିଙ୍ଗୁଳା ଗୋସାମଣୀ ମୋ ସବୁବେଳେ ସାହା
ଆସୁ ତୋହର ଅର୍ଜ୍ଜୁନ କେ ଲେଖଇ ତାହା ।
ବୀରବର ପ୍ରତିଜ୍ଞା ସେ କଲା ଅପ୍ରମିତେ
ତାର ଦୁଷ୍ଟପଣ ଦେଖି ଉଠିଲେ ପ୍ରୋହିତେ ।
ଦଣ୍ଡସାଜ ବୋଲି ବୋଲେ ବୀର ଚକ୍ରବର୍ତ୍ତୀ
ସାଜିଲେ ସକଳ ଯୋଦ୍ଧା ମହା ମହା କ୍ଷତ୍ରୀ ।
ରଥେ କେହି ଗଜେ କେହି ଚଢି ଅଶ୍ୱପିଠି
ସାଜି ସର୍ବ ସୈନ୍ୟ ତହୁଁ ଗଳଗାଜି ଉଠି ।
ପୁରୋହିତ ପଛେ ପଛେ ରାଜାର ପଲାଣି
ଯାବଡ଼େ ଉଠିଲେ ସିନ୍ଧୁ ଲହରୀକି ଜିଣି ।
ଫରହର ନେତ ଉଡ଼େ ଶୁକଳ ପତନୀ
ବୁଲାନ୍ତି ଲାଙ୍ଗିଆ ଛେଲ ପୁଣି ଚକ୍ର ଘେନି ।
ପୁରୋହିତ ପ୍ରବେଶିଲେ ଅର୍ଜ୍ଜୁନ ଅଗ୍ରତ
ଛାମୁରେ କହନ୍ତି ଯାଇ ସମସ୍ତ ବୃତ୍ତାନ୍ତ ।
ବାବୁ ବହୁତ କହିଲୁଁ ବୀରବର ଆଗେ
ଅନେକ ପ୍ରତିଜ୍ଞା କରି କହିଲାକ ରାଗେ ।
ବୋଇଲା ହିଙ୍ଗୁଳା ଯେବେ ଅଛନ୍ତି ସଦୟେ
ଆସୁ ସେହି କେଡ଼େ ବୀର ତାକୁ ନାହିଁ ଭୟେ ।
ଦେଖ ଆହେ ପାର୍ଥ କେଡ଼େ ଦୁଷ୍ଟ ମହାବୀର
ସମରକୁ ସଜ ହୋଇ ଆସନ୍ତି ପାମର ।
ଚିଆଇଁ ଶୁଣନ୍ତି ତାହା ପାର୍ଥ ମହାତମା
ମନ୍ଦ ବୁଦ୍ଧିରେ କରିଲା ବହୁତ ଗାରିମା ।
ଏହିପରି ହେଉଥିଲେ କଥୋପକଥନ
ପ୍ରବେଶ ହୋଇଲେ ଆସି ବୀରବର ସୈନ୍ୟ ।
ରେ ରେ କାର ଶବଦରେ କରି ଘୋରନାଦ
ସମୁଦ୍ର ଉଛୁଳେ କିବା ଗରଜେ ଜଳଦ ।
ଦୁର୍ବହ ସୈନ୍ୟ ପଛରେ ଆସୁଛନ୍ତି ଉଠି
ରଥର ଉପରେ ଥାଇ ଦେଖିଲେ କିରୀଟୀ ।
ସୈନ୍ୟଙ୍କର ଗର୍ବ ଦେଖି ଇନ୍ଦ୍ରଙ୍କର ବଳା
ବିଚାରଇ ଆଜି ରକ୍ତ ଖାଇବ ହିଙ୍ଗୁଳା ।
ଆଗୁଆଣି ଥାଟେ ଥିଲେ ଜୟ ଯେ ବିଜୟ
ଗଦା ବୁଲାଇ ଉଠନ୍ତି ସିଂହଗତି ପ୍ରାୟ ।
ବିଶେଷ ଅନଳ ପ୍ରାୟ ପାଣ୍ଡବ ସଇନି
ତହିଁକି ପବନ ଅଟେ ବୀର ଫାଲଗୁନି ।
ପବନ ବହନ୍ତେ ଯେହ୍ନେ ଉଠଇ ଅନଳ
ତେହ୍ନେ ଦ୍ୱିତୀୟ ଦ୍ୱାରକୁ ଆବୋରିଲେ ବଳ ।
ତମ୍ବା କବାଟ ଉପରେ ସୁବର୍ଣ୍ଣ ରସାଣି
ଆଦିତ୍ୟ କିରଣେ ତାହା ଝଲକଇଁ ପୁଣି ।
ଜୟ ବିଜୟ କରିଲେ ଗଦାର ପ୍ରହାର
ଭାଜିଣ ସେହି କବାଟ ହେଲା ଶତେଚୂର ।
ପୁଣି ପ୍ରହାର କରିଲେ କରି ଗଳଗାଜି
ଜଗତୀର ବାଡ଼ଆଦି ପକାଇଲେ ଭାଜି ।
ବୀରବରର ସଇନି ଉଠି ଜଗତୀରେ
ବିନ୍ଧନ୍ତି ନାରାଚମାନ ଫୁଟାନ୍ତି କୁନ୍ତରେ ।
ପାର୍ଥ ସଇନି ବିନ୍ଧନ୍ତି ଧରି ତୀକ୍ଷ୍ଣ ମୁନା
ନିକିଳି ନାରାଚମାନ ଫୁଟେ ବଜ୍ରସେହ୍ନା ।
ମାତଳିକୁ ଆଜ୍ଞାକଲେ ସୁଭଦ୍ରାର ନାହା
ତୃତୀୟ ଜଗତୀକୁ ମୋ ରଥ ବେଗେ ବାହା ।
ଆଜ୍ଞା ପରମାଣେ ସେହୁ ଅମର ସାରଥି
ଉଡ଼ାଏ ରଥକୁ ନେଇ ପବନର ଗତି ।

ତୃତୀୟ ଗଡ଼କୁ ରଥ କରେ ଆଗସରି
ଦେବଦତ୍ତ ଶଙ୍ଖ ପାର୍ଥ ଘନ ଘନ ସ୍ଫୁରି ।
ଶଙ୍ଖର ଶବଦ ହୁଏ ଉଲ୍‌କାପାତ ଜାଣି
କ୍ଷତ୍ରୀ ହୃଦୟ କମ୍ପଇ ସେହି ନାଦ ଶୁଣି ।
ଅଦଭୂତେ ଶସ୍ତ୍ର ଝଡ଼ି ପଡ଼ଇ ହସ୍ତରୁ
ନିଶସ୍ତ୍ର ହୋଇ ସଇନି ପଳାନ୍ତି ସେଠାରୁ ।
ହିଙ୍ଗୁଳା ରଖ ବୋଲିଣ ସୈନ୍ୟ ଦେଲେ ଡାକ
ତୋହର ଥାଆନ୍ତେ ମାଗୋ ହୋଇଲୁ ନିରେଖ
କରେ ଧନୁକୁ ଧରିଣ କଲେ ଶରବୃଷ୍ଟି
ପାର୍ଥ ନାରାଚ ମାରନ୍ତେ ଶର ଯାଏ ଫୁଟି ।
ଜଗତୀକୁ ଛାଡ଼ିକରି ପଳାଇଲେ ବୀରେ
ଧାଇଁ ଉଠିଲେ ଯାଇଣ ଅନ୍ୟ ଜଗତୀରେ ।
ଆକର୍ଷି ଶର ବିନ୍ଧିଲେ ସକଳ ସଇନି
ଶରଜାଳେ ଦିନକର ନ ଦିଶେ ଧରଣୀ ।
ନିର୍ଘାତ ଅଗ୍ନିର ବାଣ ବଜ୍ରମୁନା ଶର
ଆପଣେ ଦଣ୍ଡ ସାଜିଣ ବିନ୍ଧେ ବୀରବର ।
ବହେ ରକ୍ତ ଝରଝର ଦେହୁଁ ଅବିଛିନ୍ନ
ଜୁଳୁଜୁଳା ପୋକ ଯେହ୍ନେ ଉଡ଼ନ୍ତି ଗଗନ ।
ପାଚେରୀ ଉପରେ ଥାଇ ଶର ଉହାଡ଼ଇ
ବାସବ ସୈନ୍ୟ ବିନ୍ଧିଲେ ତହିଁ ବେଗେ ଯାଇ ।
ଅର୍ଜ୍ଜୁନ ବିନ୍ଧନ୍ତି ଶର ବେଗେ ଆଗବଢ଼ି
କନ୍ଧରୁ ମସ୍ତକ ଛିଡ଼ି ପଡୁଛନ୍ତି ଝଡ଼ି ।
କାହାର ଭୁଜ ଛିଡ଼ଇ କାର ବକ୍ଷସ୍ଥଳ
ରୁଧିରରେ ବିଲେପନ ହେଲେ ସର୍ବବଳ ।
ନିଜ ଗଡ଼ରେ ସମର ହୁଏ ଅପ୍ରମିତ
ନଲକ୍ଷ ମୁକୁଟଯୋଦ୍ଧା ପଡ଼ି ହେଲେ ହତ ।
ବାତ ବିଘାତେ କଦଳୀବନ ଯେହ୍ନେ ଭାଜି
ଏକ ଉପରେ ଆରେକ ପଡ଼ନ୍ତି ନିମଜ୍ଜି ।
ରକ୍ତ ସ୍ରୋତରେ କର୍ଦ୍ଦମ ହେଲା ବସୁନ୍ଧରା
ଲୋଟନ୍ତି ମଣିମାଣିକ୍ୟ ମୁକୁତାର ଝରା ।
ଜଗତୀରେ ଥାଇ ଡାକଦ୍ୟନ୍ତି ପଣ୍ଡୁବଳା
ସୁଖରେ ବଳି ଭକ୍ଷଣ କର ଗୋ ହିଙ୍ଗୁଳା ।
ବଜ୍ର ବିଘାତ ପରାୟ ପାର୍ଥ ଶର ପଡ଼ି
ବକ୍ଷସ୍ଥଳ ଭେଦ କରେ ସ୍ନେହାମାନ ଛିଡ଼ି ।
ସିଂହରଡ଼ି ଶବଦରେ ଧାମନ୍ତି ସଇନି
ବାଡ଼ ଭାଙ୍ଗିଣ ତୃତୀୟ ଗଡ଼େ ଫାଲଗୁନି ।
ଅର୍ଜ୍ଜୁନ ପ୍ରବେଶ ଯହୁଁ ତୃତୀୟ ଜଗତୀ
ସୈନ୍ୟ ଘେନି ପଳାଇଲେ ବୀର ଚକ୍ରବର୍ତ୍ତୀ ।
ଯହିଁ ବିଜେ କରିଛନ୍ତି ପ୍ରସନ୍ନ ହିଙ୍ଗୁଳେ
ବୀରବର ପ୍ରଣିପାତ ହୁଅଇ ବିକଳେ ।

ସହସ୍ର ପ୍ରଣାମ କରି ହିଙ୍ଗୁଳାଙ୍କୁ ବନ୍ଦି
ଦୁଃଖୀଜନକୁ ଛାଡ଼ିଲୁ ବୋଲେ ଶୋକେ କାନ୍ଦି ।
ତୋ ପାଦେ ମୋ ପଞ୍ଚଭୂତ ପ୍ରସନ୍ନ ହିଙ୍ଗୁଳେ
ଗଡ଼ ରକ୍ଷା କରିଥାଉ ତୁହି ସର୍ବକାଳେ ।
ତୋହର ପ୍ରସନ୍ନେ ମାଗୋ ନାହିଁ ପରରାଷ୍ଟ୍ର
ଅଦଭୂତରେ ମାତ ଗୋ ପଡ଼ିଲା ଏ କଷ୍ଟ ।
ରଥ ଗଜ ଅଶ୍ୱ ମୋର ନାହାନ୍ତି ପଦାତି
ସିଂହଘରେ ଶୃଗାଳ ଯେ ପଶି ଗଲା ଜିତି ।
ମୁହିଁ ଅବା ତୋହଠାରେ ହେଲି ଦୋଷକାରୀ
କେଉଁ ଅଭକତେ ମୋତେ କଲୁ ଏହିପରି ।
ମାତ ଗୋ ଅକ୍ଷୟ ଗଡ଼ ହେଲେ ଜୟ କଲେ
ବଳୀ ବେଣୁ ମାନଧାତା ଜାନୁଘଣ୍ଟ ତୁଲେ ।
ପର୍ଶୁରାମ ପୁରୁରବା ଥିଲେ ଚକ୍ରବର୍ତ୍ତୀ
ଏମାନେ ପାରି ନାହାନ୍ତି ଏ ଗଡ଼କୁ ଜିତି ।
ମୁହି ହୀନ ପାମର ଗୋ ନ ଜାଣିଲି ସେବା
ଅଭକତ ଦେଖି ମୋତେ କୋପ କଲୁ ଅବା ।
କି ଅବା ଚହଳ ହେଲା ବନ୍ଧୁବର୍ଗ ମୋର
ସେଥିପାଇଁକି ମାତ ଗୋ କଲୁ ଏ ପ୍ରକାର ।
କି ଅବା କୌତୁକଘର ତୋର ମହୀସ୍ଥଳି
କୁତୂହଳେ ଉଲ୍‌କାପାତେ କଲୁ ଭକ୍ତକେଳି ।
ବନ୍ଧୁବର୍ଗାଦି କୁଟୁମ୍ବ ସର୍ବେ ଗଲେ ନାଶ
ନିସତେ ପଳାଇ ଆସି କରିବଇଁ କିସ ।
କେଉଁ ଭୁବନେ ମାତ ଗୋ ପଶିବି ମୁଁ ଯାଇ
ତୋର ଥାନ୍ତେ ବଞ୍ଚିବାକୁ ମୋର ଠାବ ନାହିଁ ।
ଦନ୍ତରେ ତିରଣ ଧରି ରୋଦଇ ବିକଳେ
ଶୋକେ ପ୍ରଣିପାତ କଲା ଦେବୀ ପାଦତଳେ ।
ମୁଖେ ଦଶନଖ ଭଟି ଦନ୍ତେ କୁଟା ଧରି
ତ୍ରାହି ତ୍ରାହି ବୋଲି ଡାକେ ମୁଖରାବ କରି ।
ପୁରଜନେ ମିଶି ସର୍ବେ କାନ୍ଦିଲେ ବିକଳେ
ରାଜାକୁ ପ୍ରତିଆଦେଶ ଦେଲେକ ହିଙ୍ଗୁଳେ ।
ବିଜୟ କଲେ କାନ୍ତାନୀ ଦେବୀ ମାହେଶ୍ୱରୀ
ପାଷାଣୁ ବାହାର ହେଲେ ତେଜକୁ ବିସ୍ତାରି ।
ହିଙ୍ଗୁଳା ବୋଇଲେ ଏବେ କିମ୍ପା କରୁ କ୍ରୋଧ
ଆଗହୁଁ ତୁ ନ କହିଲୁ ପଡ଼ିଲା ବିରୋଧ ।
ନିଶ୍ଚିନ୍ତରେ ରହିଥାଅ ଏବେ ମୋର ଆଳେ
ସମାଧାନ କରିବି ମୁଁ ତୋହର ବିକଳେ ।
ଏତେକ ବୋଲିଣ ତହୁଁ ଜଗତର ମାଏ
ଖେଚରୀ ବିମାନେ ଦେବୀ କରିଲେ ବିଜୟେ ।
ହସ୍ତରେ ଅମ୍ଳାନପୁଷ୍ପ ଏକ ଗୋଟି ଘେନି
ଜଗତୀ ଉପରେ ବିଜେ କରିଲେ କାନ୍ତାନୀ ।

ନିର୍ଦ୍ଧୂମ ବହନ ଜିଣି ତେଜକୁ ବିକାଶି
ମହାତେଜୋମୟରୂପୀ ଶୂନ୍ୟପୁରବାସୀ ।
ରଙ୍ଗବସ୍ତ୍ର ପରିଧାନ ରଙ୍ଗବର୍ଣ୍ଣ କାୟେ
ଆସ୍ଥାନ ଉପରେ ଥାଇ ଦେଖେ ଧନଞ୍ଜୟେ ।
ବାସବ ନନ୍ଦନ ଦେଖି ପଚାରଇ ବାଣୀ
କେବଣ ଦେଶରୁ ବିଜେ କଲୁ ଗୋସାମଣି ।
ମାନିନୀ କାମିନୀ ଜିଣି ଦିଶଇ ମୂରତି
ବିପୁଳପୁର ଅଭୟ ମାଗୋ ବରଦାତ୍ରୀ ।
ଡାଳିମ୍ବ ପୁଷ୍ପକୁ ଜିଣି ଦିଶେ ତୋର କାୟେ
ସ୍ୱରୂପ ଦିଶଇ ମଧ ସ୍ୱର୍ଗପୁର ପ୍ରାୟେ ।
ଅର୍ଜ୍ଜୁନ ବଚନେ ଦେବୀ କହନ୍ତି ଧ୍ୟାକ୍ଷି
ତୁରେ ଅର୍ଜ୍ଜୁନ ଉତ୍ତରେ ବିଜେ କଲୁ ଆସି ।
ଅନେକ ରାଜ୍ୟକୁ ସାଧ କରିଲୁ ଉତ୍ତରେ
ଏଡ଼େ ଉପଦ୍ରବ କଲୁ କେବଣ ଦେଶରେ ।
ମୁହିଁ ବିଜେ କରିଅଛି ଏଥେ ଦୟାଶୀଳା
ଅଭୟା ମାହେଶ୍ୱରୀ ମୁଁ ମୋ ନାମ ହିଙ୍ଗୁଳା ।
ଖଡ଼୍ଗବଂଶୀ ରାଜା ମୋତେ ଜନ୍ମେ ଜନ୍ମେ ଖଟି
ମୋହର ସଞ୍ଚିଲା ରଣସ୍ତମ୍ଭ ଗଡ଼ଗୋଟି ।
ବନ୍ଧୁ କୁଟୁମ୍ବ ଘେନିଣ ମୋତେ କରେ ସେବା
ଅଜ୍ଞାନେ ଅର୍ଜ୍ଜୁନ ତୋତେ ଦୋଷୀ କଲା ଅବା ।
ଏହା ସୈନ୍ୟ ନାଶକଲୁ ତୁହି ଅନିମିତ୍ତେ
ରକ୍ଷାକର ବାବୁ ତୁହି ମୋହର ଦେଖନ୍ତେ ।
ତୁହି ଗୋଟିଏକ ଗଣ୍ଡା ମାଇଲୁ ଯେକାଳେ
ଶିବ ଶୋଇଥିଲେ ବିରୂପାକ୍ଷ ବଟତଳେ ।
ଗଣ୍ଡାବଧେ ସଦାନନ୍ଦ ହୋଇ ବଇରାଗୀ
ତୋ ସଙ୍ଗେ ସମର କଲେ ସେ ପରମଯୋଗୀ ।
ଶିବଙ୍କ ଗଳେ ପୂରାଇ ଏ ଗାଣ୍ଡୀବ ଧନୁ
ଶୂନ୍ୟେ ବୁଲାନ୍ତେ ପ୍ରସନ୍ନ ହେଲେ ପଞ୍ଚମନୁ ।
ବିଷମଯୁଦ୍ଧ ଦେଖିଣ ଶିବ ବର ଯାଚି
ମୁହିଁ ଯେ ବାରତା ତୋତେ ଦେଲି ସବ୍ୟସାଚୀ ।
ଈଶ୍ୱରଙ୍କୁ ମାଗିଲୁ ତୁ ପାଶୁପତ ବାଣ
ମୋତେ ମାଗନ୍ତେ ମୁଁ ଦେଲି ଅକ୍ଷୟ ଯେ ତୂଣ ।
ସଦାନନ୍ଦଙ୍କ ବଚନେ ହେଲି ମୁଁ ବିରାଗୀ
ବୋଇଲି କୋଟି ଈଶ୍ୱର ନ ହୋଇବେ ଭୋଗୀ ।
ସଂଗ୍ରାମେ ସରି ନୋହିଲେ ଯାକୁ ତ୍ରିଲୋଚନ
ଇହଲୋକେ କେଉଁ ରାଜା ହୋଇବ ସମାନ ।
ଜଗଜ୍ଜିତା ପୁରୁଷ ତୁ ଏଡ଼େ କିମ୍ପା ରାଗୀ
କିଞ୍ଚିତ ଦୋଷେ ରାଜାଙ୍କୁ ଦେଉଅଛୁ ଭାଙ୍ଗି ।
ହିଙ୍ଗୁଳା ବଚନ ଶୁଣି ବାସବସନ୍ତତି
ଦେବୀଙ୍କର ପାଦତଳେ ପ୍ରଣାମ କରନ୍ତି ।
ଅର୍ଜ୍ଜୁନଙ୍କୁ କୋଳକରି ଦେବୀ ମାହେଶ୍ୱରୀ
ଖେଚରୀ ବିମାନେ ନେଇ ବସାଇଲେ ଧରି ।
ତହୁଁ ବିଜୟ କରିଲେ ନିଜ ଭୁବନକୁ
ଅର୍ଜ୍ଜୁନକୁ ନେଲେ ତ୍ରିପୁରାନ୍ତ ପର୍ବତକୁ ।
ଅର୍ଜ୍ଜୁନକୁ ଘେନି ଦେବୀ ବିଜୟ ଆସ୍ଥାନେ
ଶତ ଶତ ପ୍ରଣିପାତ ହେଲେ ସର୍ବଜନେ ।
କରେ ଅର୍ଘ୍ୟ ଘେନି ବୀରବର ଚକ୍ରବର୍ତ୍ତୀ
ଅର୍ଜ୍ଜୁନର ପାଦତଳେ କରଇ ଭକତି ।
ହିଙ୍ଗୁଳା ବୋଇଲେ ବାବୁ ଶୁଣ ଧନଞ୍ଜୟେ
ଦଣ୍ଡମରାଇ ନୃପତି ହେଉଛି ବିନୟେ ।
ଏହାକୁ ପ୍ରସନ୍ନ ତୁହି ହୁଅ ଫାଲଗୁନି
ମୋର ପୁତ୍ର ତୋରଠାରେ କରଇ ଦଇନୀ ।
ତୋର ପ୍ରସାଦରେ ଏହୁ ପାଇବ କାରଣ
ଏବେ ଉପଗତ ହେଲା ତୋହର ଚରଣ ।
ହିଙ୍ଗୁଳାଙ୍କୁ ପ୍ରଣିପାତ କରିଣ କିରୀଟୀ
ବୋଲେ ତ୍ରିଲୋକରେ ଖ୍ୟାତ ତୋର ନାମ ଗୋଟି ।
ତୁ ପରମ ଯୋଗେଶ୍ୱର ଅଟୁ ଲୋହିତାକ୍ଷି
ଅଭୟା ସ୍ୱରୂପିଣୀ ଗୋ ତୁହି ପିଙ୍ଗଳାକ୍ଷି ।
ତୁହି ମାହେଶ୍ୱରୀ ମାଗୋ ଅଟୁ ପୀତବର୍ଣ୍ଣା
କୋଟି କଳ୍ପ ଆସନି ଗୋ ଭବାନୀ ଅପର୍ଣ୍ଣା ।
ମାତଃ ହିଙ୍ଗୁଳା ବୋଲିଣ ଯେଉଁ ନାମ ଭାଷି
କିଞ୍ଚିତ ଯୋଗଲୟେ ତୁ ତେଜ ପରକାଶି ।
କାଳାନଳ ବୈଶ୍ୱାନର ଜ୍ୱାଳା ଯେ ପିଙ୍ଗଳା
ଜାତ ଅନଳ ତୋ ନାମ ଶୟଳେ ମେଖଳା ।
ଶରୀର ସମ୍ଭାଷଣ ଗୋ ତୋ ନାମ ଦହତି
ତୁହି ଅନ୍ତ କରାଉ ଗୋ ସର୍ବ ଦେବମୂର୍ତ୍ତି ।
ଜାତବେଳେ ମାତା ତୁହି ଭାର୍ଯ୍ୟା ରତିକାଳେ
ଅନ୍ତକାଳେ କାଳିକା ଗୋ ଶେଷକୁ ହିଙ୍ଗୁଳେ ।
ଅଭୟା ବ୍ରହ୍ମରୂପିଣୀ ନାମ ତୋର ସତୀ
ଚଣ୍ଡିକା ରୂପକୁ ଧରି ଅନ୍ତ କରୁ ପୃଥ୍ୱୀ ।
ଆଦି ଅନ୍ତକାଳରେ ଗୋ ଅବସାନ ତୁହି
ଜାତ ଅନ୍ତସ୍ଥିତ ତୋର ବିନା ଆନ ନାହିଁ ।
ତପନ ତପତି ମାଗୋ ଦଇନୀ ଭବାନୀ
ତୋ ପାଦେ ଲୟ କରନ୍ତି ସୁର ସିଦ୍ଧ ମୁନି ।
ଯୁଗାନ୍ତକ ଭୋଗ ମାଗୋ ପ୍ରଳେ ଗର୍ଭ ସୃଷ୍ଟି
ତୁ ମାହେଶ୍ୱରୀ ହିଙ୍ଗୁଳା ତୋର ନାମଗୋଟି ।
ପରମ ବୈଷ୍ଣବୀ ଅଟୁ ତୋର ସିଦ୍ଧ ମୁଦ୍ରା
ଅଷ୍ଟାଙ୍ଗ ସାଧବୀ ମାଗୋ ହୃଦେ ଯୋଗନିଦ୍ରା ।
ଭକ୍ତଜନ ବତ୍ସଳା ଗୋ ପୃଥ୍ୱୀଜନ ଚିନ୍ତା
ଦୁଃଖୀଜନୋଦ୍ଧାରିଣୀ ଗୋ ଭକ୍ତ ଉଦ୍ଧାରନ୍ତା ।

ଦୁସ୍ତର ତାରିଣୀ ତୁ ଗୋ ସର୍ବ ଦୁଃଖ ମେଣ୍ଟି
ସର୍ବତ୍ର ପ୍ରତିଷ୍ଠା ତୋର ହିଙ୍ଗୁଳା ନାମଟି ।
ଅଗତି ଜନଙ୍କ ତୁ ଗୋ ତାରିଣୀ ଧାରିଣୀ
ରୁଦ୍ଧ ସିଦ୍ଧ ବିଧି ତୁ ପ୍ରସନ୍ନ ଗୋସାମଣି ।
ସର୍ବଦା ହୃଦୟେ ତୋର ରୁଦ୍ରର ପାଦୁକା
ଡାକ ଶବଦ ମାତା ଗୋ ତୋର ଶୁଭେ ଏକା ।
ଡାକିନୀ ଶବଦେ ମାଗୋ ଡମ୍ବରୁର ବାଦ୍ୟେ
ନାଚୁ ତୁ ଆନନ୍ଦମୟୀ କଳିକିଳା ନାଦେ ।
ମାଗୋ ଯାବତ ଜୀବଙ୍କ ଅଟୁ ଜନ୍ମକର୍ତ୍ତ୍ରୀ
ଏ ତୋର ଷୋହଳ ରୂପ ଜାତ ରୂପବତୀ ।
ସ୍ୱାହା ସ୍ୱଧା ତୋହର ଗୋ ଅଟେ ରୂପଶାଖା
ଡାକ ଶବ୍ଦେ ଶୁଭେ ତୋର ଭୟେ ସ୍ୱର୍ଗେ ଏକା
ପାତାଳ ତୁ ସ୍ୱର୍ଗ ତୁହି ପୃଥିବୀ ଆପ ତୁ
ତେଜ ତୁହି ବାୟୁ ଶୂନ୍ୟେ ତୁହି ପଞ୍ଚଧାତୁ ।
ଅଦୃଶ୍ୟ ଦୃଶ୍ୟ ତୁହି ତୋ ନାହିଁ ବର୍ଣ୍ଣ ଚିହ୍ନ
ସାତଗୋଟି ଅବତାରେ ରୂପ ଭିନ୍ନ ଭିନ୍ନ ।
ଭକ୍ତଜନ ଉଦ୍ଧାରିଣୀ ଶାପ ବିମୋକ୍ଷଣୀ
ଦୁର୍ଗତି ନାଶିନୀ ମାଗୋ ଶରଣ ରକ୍ଷଣୀ ।
ରୁଦ୍ର ଅବତାରେ ତୁହି ମହା ବ୍ରହ୍ମ ସାଧି
ଏମନ୍ତ ମହିମା ତୋର ଅଛଇ ଯେ ବିଧି ।
ଅକ୍ଷୋଉରଶତ ବର୍ଷ ମନୁଷ୍ୟ ଆୟୁଷ
ସନକାଦିଙ୍କୁ ହୁଅଇ ଗୋଟିଏ ଦିବସ ।
ଏହିରୂପେ ଶତେ ଅଷ୍ଟ ଉତ୍ତର ବର୍ଷରେ
ସନକ ନାଶ ହୁଅନ୍ତି ସମ୍ପୂର୍ଣ୍ଣ ରୂପରେ ।
ଏହି ଅନୁକ୍ରମେ ବିଶ୍ୱଦେବଙ୍କୁ ବରଷେ
ଅକ୍ଷୋଉରଶତ ବର୍ଷେ ମରଣ ପ୍ରବେଶେ ।
ଯହୁଁ ବିଶ୍ୱଦେବମାନେ ହୋଇଗଲେ ଲୀନ
ବିଦ୍ୟା ପୁରୁଷଙ୍କୁ ତହୁଁ ହେଲା ଏକଦିନ ।
ଅକ୍ଷୋଉରଶତ ବର୍ଷେ ସେ ହୁଅଇ ନାଶ
ଗ୍ରହଙ୍କୁ ହୁଅଇ ତହୁଁ ଗୋଟିଏ ଦିବସ ।
ଅକ୍ଷୋଉର ଶତବର୍ଷେ ସେ ହେଲେ ନିଧନ
ଚନ୍ଦ୍ରକୁ ହୁଅଇ ତେଣେ ଜାଣ ଏକଦିନ ।
ନିଧନ ହେଲେ ରୋହିଣୀନାଥ ପ୍ରାଣ ଗୁରୁ
ନଷ୍ଟ ଅମାବାସ୍ୟା ଏକ ଦିନକ ପୂର୍ବରୁ ।
ତିଥିଖଣ୍ଡି କାଳକ୍ରମେ ଏହୁ ସେ ଉଦୟେ
ନକ୍ଷତ୍ର ପରାୟେ ହୋଇ ବିକାଶଇ କାୟେ ।
ଏରୂପେ ଚନ୍ଦ୍ରର ଶତଅକ୍ଷୋଉର ବର୍ଷ
ବ୍ରହ୍ମାଙ୍କୁ ହୁଅଇ ତହୁଁ ଏକଇ ଦିବସ ।
ଏତେକ ସମ୍ପୂର୍ଣ୍ଣେ ସେହୁ ହୁଅଇ ନିଧନ
ତହୁଁ ଜାଣ ବିଷ୍ଣୁଙ୍କର ହୁଏ ଏକଦିନ ।

ବିଷ୍ଣୁଙ୍କର ଅକ୍ଷୋଉରଶତ ବର୍ଷ ପୂର୍ଣ୍ଣେ
ରୁଦ୍ରଙ୍କୁ ହୁଅଇ ଜାଣ ତେବେ ଯାଇ ଦିନେ ।
ରୁଦ୍ରଙ୍କର ଅକ୍ଷୋଉରଶତ ହେଲେ ଶେଷ
ପୂର୍ଣ୍ଣ ହୁଅନ୍ତେ ବରଷ ସେ ହୁଏ ବିନାଶ ।
ରୁଦ୍ର ଯହୁଁ ପ୍ରାଣନାଶ ହେଲେ ତୋରକାଳେ
ତୁ ତାଙ୍କର ପିଣ୍ଡଗୋଟି ଧରିଥାଉ କୋଳେ ।
ଯେତେ କାଳରେ ଆୟୁଷ ପାଆନ୍ତି ଧୂର୍ଜ୍ଜଟି
ତେତେ କାଳ ଧରିଥାଉ ମୃତପିଣ୍ଡ ଗୋଟି ।
ନିଜ ଦେହରୁ ଆୟୁଷ ତାଙ୍କୁ କାଢ଼ିଦେଉ
ତୋର ତହୁଁ ପ୍ରାଣ ଦେଇ ରୁଦ୍ରଙ୍କୁ ବଞ୍ଚାଉ ।
ଶୟନ ଉଚ୍ଚାଟ ଯନ୍ତ୍ରେ ବଞ୍ଚେ ଶମ୍ବରାରି
ତେଣୁ ଈଶ୍ୱରର ନାମ ଅଟେ ଅର୍ଦ୍ଧନାରୀ ।
ମାଗୋ ଯୁଗ ଯୁଗାନ୍ତରେ ଯୁବା ନିରନ୍ତର
ଶତବର୍ଷେ ନ କଟିଲା ବାଲ୍ୟାବସ୍ଥା ତୋର ।
ମାତ ଗୋ ଏକଲୟକୁ ମୁହୂର୍ତ୍ତେକ ବୋଲି
ଷାଠିଏ ନିଃଶ୍ୱାସରେ ଯେ ମୁହୂର୍ତ୍ତେ କହିଲି ।
ଷାଠିଏ ଲିତାରେ ଜାଣ ଦଣ୍ଡ ଏକ ବୋଲି
ବିଶାଶଏ ଲିତାରେ ଯେ ଘଡ଼ିଏ କହିଲି ।
ନଅଶ ଷାଠି ଲିତାରେ ହୁଏ ଅର୍ଦ୍ଧଦିନ
ସୂର୍ଯ୍ୟଦେବ ମଧ୍ୟେ ଥିଲେ ବୋଲନ୍ତି ମଧ୍ୟାହ୍ନ ।
ଚଉଦଚାଳିଶ ଲିତା ବାରଘଡ଼ି ଲେଖା
ଆହ୍ନିକକାଳେ ପୁରୁଷେ ଦେଲୁ ଖାଦ୍ୟଦୀକ୍ଷା ।
ନବସସ୍ର ନବଶତ କୋଟିଏ ଲିତାରେ
ଚତୁର୍ଥ ପ୍ରହର ଦିନ ସୂର୍ଯ୍ୟାସ୍ତ ମେରୁରେ ।
ଦିବସ ହରଣ କଲା ଯେ କାଳପୁରୁଷ
ଅନ୍ଧକାର ହୋଇଲା ଗୋ ରଜନୀ ପ୍ରବେଶ ।
ମାଗୋ ରଜନୀ ଦିବସେ ଏହି ପରିମାଣେ
ଏହା କି ନ ଜାଣୁ ଦିନ ଏବେ ଗଲା କେଣେ ।
ମାଗୋ ଅନାଦି ପ୍ରତ୍ୟକ୍ଷ ଅପର୍ଣ୍ଣା ହିଙ୍ଗୁଳା
ସିଦ୍ଧ କାତ୍ୟାୟନୀ ତୁ ଗୋ ଅଟୁ ଦିଗପାଳା ।
ମାତ ଗୋ ଉଦ୍ଧରି ଧରୁ ତୁହି ଜନ୍ମେ ଜନ୍ମେ
କଳିକାଳଧ୍ୱଂସିନୀ ଗୋ ମୁକ୍ତ ପୂର୍ବଜନ୍ମେ ।
ନମୋ ହିଙ୍ଗୁଳା କାମାକ୍ଷୀ ନମଃ ହିରଣାକ୍ଷି
ଜାତ ଅନ୍ତଃକାଳକୁ ଗୋ ତୁହି ରକ୍ଷି ଭକ୍ଷି ।
ବାହାରବାହିନୀ ମାଗୋ ଗର୍ଭ ମଧ ଛାପି
ଅପ୍ରାଧଭଞ୍ଜନୀ ମାଗୋ କଉତୁକ ରୂପୀ ।
ମାତ ଗୋ ଅଭେଦ୍ୟ ଜ୍ୟୋତି ସୁଷୁମ୍ନାଯନ୍ତ୍ରେ
ଉଜାଣ ଉଜାଇଲୁ ଅଜପା କୂଟମନ୍ତ୍ରେ ।
ବାସ୍ତରିନାଡ଼ୀ ନ କୋଟି ପ୍ରାଣ ପୁରୁଷକୁ
ସୁଷୁମ୍ନା ସାଧିବାକୁ ଯା ବହନ୍ତି ମନ୍ତ୍ରକୁ ।

ବ୍ରହ୍ମ କର୍ମ ମହୀ ଅଠଚାଳିଶ ସଙ୍ଗତେ
ଚାରିଖାନି ଯେ ଉଦୟ ତୋର ମନ୍ତ୍ରଗତେ ।
ବାହ୍ୟାଭ୍ୟନ୍ତରେ ମାତୃକା ତୁହି ଆଦିମୂଳ
ପାକ ସାଧ କାଳକୁ ଗୋ ତୋର ସର୍ବଠୁଳ ।
ହେ ବୁଧଜନେ ହିଙ୍ଗୁଳା ନାମ ସଦା ଧର
ପ୍ରସନ୍ନ ହିଙ୍ଗୁଳା ବୋଲି ପଞ୍ଚମନେ ସ୍ମର ।
ବ୍ରହ୍ମରାକ୍ଷସ ନାମରେ ଆତାପି ବାତାପି
ଅନେକ ବ୍ରହ୍ମହତ୍ୟା ସେ କଲେ ମହାପାପୀ ।
ତାଙ୍କ ମାଂସକୁ ଅଗସ୍ତି କରି ଗର୍ଭଗତ
ହିଙ୍ଗୁଳା ନାମେ ସେ ମାଂସ ହେଲା ଭସ୍ମୀଭୂତ ।
ହିଙ୍ଗୁଳା ନାମକୁ ସଦା ହୃଦୟରେ ଘୋଷ
ବଂଶ ଦାରିଦ୍ର୍ୟ ତୁଟଇ ହେବ ପଉରୁଷ ।
ହିଙ୍ଗୁଳା ନାମ ଧରନ୍ତି ଯେହୁ ହୃଦଗତେ
ଧନ ସନ୍ତାନ ବର୍ଦ୍ଧିତ ହୁଏ ତାର ନିତ୍ୟେ ।
ଆୟୁଷ କ୍ଷୀଣ ନୁହଇ ନ ଛୁଅଇଁ ବ୍ୟାଧି
ହିଙ୍ଗୁଳା ନାମ ଧରନ୍ତେ ହୁଏ ସର୍ବ ସିଦ୍ଧି ।
ମାତଃ ହିଙ୍ଗୁଳା ପ୍ରସନ୍ନ ହୁଅ କିନା ମୋତେ
ଶାରଳା ଦାସର ବାଞ୍ଛା ପୂରାଅ ତୁରିତେ ।
ଅଗସ୍ତି ମୁନି ଯେ କୁମ୍ଭରଷିଙ୍କ ସନ୍ତତି
ଯାହାଙ୍କ ମନ୍ତ୍ରେ ଉତ୍ପତ୍ତି ସପ୍ତଦ୍ୱୀପା ପୃଥ୍ୱୀ ।
ଭୂତ ଭବିଷ୍ୟତ କଥା ଯାକୁ ହୁଏ ଦୃଶ୍ୟ
ସେ ବ୍ରହ୍ମରଷିର ପାଦେ ସଦା ମୋର ଆଶ ।
ଶ୍ରୀ ମହାଭାରତ ବିଷ୍ଣୁ ପୁରାଣ କଥନେ
ସଦା ତୃପତ ହୁଏ ମୁଁ ସେ ଅମୃତ ପାନେ ।
ହିଙ୍ଗୁଳାଙ୍କୁ ବିନୟୀ ଯେ କଲେ ଫାଲଗୁନି
ପ୍ରସନ୍ନରେ ବର ଦେଲେ ତାଙ୍କୁ ଗୋସାମଣି ।
ମହାମାୟା ଘେନିଲେ ହେ ଅର୍ଜ୍ଜୁନ ଭକତି
ପ୍ରସନ୍ନରେ ବର ଦେଲେ ହୋଇ ଶାନ୍ତମୂର୍ତ୍ତି ।
ବୋଇଲେ ରାଜୁସିଯାଗ ଆରମ୍ଭ କରିଲ
ପୃଥ୍ୱୀରେ ସମସ୍ତ ରାଜା ନିମନ୍ତ୍ରଣ କଲ ।
ଅନ୍ନ କେମନ୍ତେ ମିଳିବ ଏତେ ସଇନିଙ୍କି
ଆମ୍ଭେ ବିଜେ କରୁଅଛୁଁ ତୁମ୍ଭର ଟହିଁକି ।
ରାନ୍ଧଣା ଖନ୍ଦା ତୁମ୍ଭର ହେବ ଯେତେବେଳେ
ଆମ୍ଭ ନାମରେ ରାନ୍ଧିଲେ ସୁପକାରକୁଳେ ।
ନାନା ପ୍ରକାରେ ରାନ୍ଧଣା କରିନେ କିଞ୍ଚିତେ
ଅମୃତ ପାକ ରାନ୍ଧଣା ହେବ ଅନ୍ନବ୍ରତେ ।
ସୁପକ୍ୱ ଅନ୍ନ ସର୍ବଦା ହେଉଥିବ ପାକ
ଭୁଞ୍ଜି ମନେ କରୁଥିବେ ଜୀବ ଥିବାଯାକ ।
ଗଉରୀ ଶଉରୀ ନାନାବିଧ ନିତ ପ୍ରୀତି
ଅଦଭୂତରେ ରାନ୍ଧଣା ହେଉଥିବ ନିତି ।

ପ୍ରସନ୍ନେ ଅଭୟ ବର ଦେଲେକ ହିଙ୍ଗୁଳା
କୁଢ଼େଇ ଅନ୍ନ ଭୁଞ୍ଜିବେ ଗୋଟି ଅନର୍ଗଳା ।
ଆନନ୍ଦେ ଅନ୍ନ ଭୁଞ୍ଜିବେ ଯାର ଯେତେ ଇଚ୍ଛା
ନିଶ୍ଚୟ ପ୍ରାପତ ହେବ ଜାଣ ମନୋବାଞ୍ଛା ।
ଏହି ବୀରବର ଚକ୍ରବର୍ତ୍ତୀ ମହାତମା
ଏହାର ଯେ ଦୋଷାଦୋଷ ଏବେ କର କ୍ଷମା ।
ବହୁତ ଭକତି କରେ ବୀର ଚକ୍ରବର୍ତ୍ତୀ
ପ୍ରସନ୍ନ ନାରାୟଣ ତୁ ଫେଡ଼ ମୋ ଦୁର୍ଗତି ।
ଅର୍ଜ୍ଜୁନ ବୋଇଲେ ତୁହି ହେଲୁ ମତିଭ୍ରଷ୍ଟ
କିଞ୍ଚିତ ଦୋଷରେ ତୋତେ ହେଲା ବଡ଼ କଷ୍ଟ ।
ଅଜେୟ ଗଡ଼କୁ ଧ୍ୱଂସି ମାଇଲି ସଇନି
ଏବେ କ୍ଷମା କଲି ତୋତେ କରିଲୁ ଦଇନୀ ।
ତୁହୋ ବାନ୍ଧବ ମୋହର ହେଲୁ ସର୍ବକାଳେ
ହିଙ୍ଗୁଳାଙ୍କୁ ଭେଟିଲି ମୁଁ ତୋର ପୁଣ୍ୟ ବଳେ ।
ଏ ମହୀରେ ଥିବି ଯେତେକାଳ ପରିଯନ୍ତେ
ତୁହି ମୋହର ବାନ୍ଧବ ହେଲୁ ଅଦଭୂତେ ।
ଏହା କହିଣ ଅକ୍ଷତ ଦେଲେ ଫାଲଗୁନି
ରାଜୁସି ଯାଗକୁ ଯାଅ ତୋର ଥାଟ ଘେନି ।
ବହୁ ସମ୍ମର୍ବରେ ତୁହି ଯିବୁଟି ସଭାକୁ
ରାଜାମାନଙ୍କର ଶ୍ରଦ୍ଧା ତୋତେ ଦେଖିବାକୁ ।
ମହାକ୍ଷତ୍ରୀ ମଣ୍ଡଳକୁ କ୍ଷେତ୍ର ଅଧିକାରୀ
ମଞ୍ଚଭୁବନକୁ ଅଟୁ ତୁ ଦେବତା ପରି ।
ଧନଞ୍ଜୟର ଛାମୁରେ କହେ ବୀରବର
ସ୍ୱାମୀ ଜୀବନ ସଫଳ ହୋଇଲା ମୋହର ।
ତୁହି ମହାକ୍ଷତ୍ରିୟ ସୋମବଂଶେ ଅବତଂଶ
ପ୍ରତ୍ୟକ୍ଷେ ନାରାୟଣ ତୁ ଅଟୁ ହୃଷୀକେଶ ।
ଅନେକ ବିନୟୀ ହୋଇ କହେ ନୃପସାଇଁ
ମାହେନ୍ଦ୍ର ବେଳାରେ ରାଜା ଗଡୁ ବାହାରଇ ।
ପୁଣ୍ୟତୋୟା କିଣି ପାର୍ଥ ପଶି ଘୋରବନେ
ପ୍ରବେଶିଲେ ହେମଗିରି କେଦାର ଭୁବନେ ।
ହେମବନ୍ତ ନିକଟରେ ମହେନ୍ଦ୍ରର ଗିରି
ଗିରିରାଜ ହେମବନ୍ତ ଛନ୍ତି ବିଜେ କରି ।
ଅନେକ ପର୍ବତ ଗିରିରାଜେ ଛନ୍ତି ଘେରି
ସେ ଗିରି ସବୁରେ ହେମବନ୍ତ ଅଧିକାରୀ ।
ମଇନାବତୀ ବୋଲିଣ ହେମବନ୍ତ ଭାର୍ଯ୍ୟା
ତାର ଠହୁଁ ଉତପତ୍ତି ହୋଇଲେ ଗିରିଜା ।
ତହିଁ ଶୋହେ ଗିରିଜାଙ୍କ ଉତପତ୍ତି ସ୍ଥାନ
ଗଉରୀଙ୍କୁ ବିଭାହେବେ ତହୁଁ ତ୍ରିଲୋଚନ ।
ଦ୍ୱିତୀୟ ସ୍ୱୟମ୍ବର ଯେ ହେମବନ୍ତ ସ୍ଥାନେ
ଭକତିଭାବେ ରହିଲେ ତହୁଁ ତ୍ରିଲୋଚନେ ।

ହେମକେଦାର ବୋଲିଣ ଅଛି ତା ଉତ୍ତରେ
ଚାଲି ନ ପାରନ୍ତି ସୈନ୍ୟ ସେ ମହାହେମରେ ।
ତହିଁ ଅର୍ଜ୍ଜୁନ ବୋଲିଣ ସୈନ୍ୟମାନେ ବୋଲି
ଅତି ଆକୁଳେ ସେ ସ୍ଥାନେ ହେଲେ ପେଲାପେଲି
ସୈନ୍ୟମାନଙ୍କ ବିକଳ ଦେଖି ସବ୍ୟସାଚୀ
ଅଗ୍ନି ଶରକୁ ଘେନିଣ ବିନ୍ଧିଲା ଆମଞ୍ଚି ।
ଆଗେ ଅଗ୍ନିଶର ପଛେ ଚାଲନ୍ତି ସଇନି
ନନ୍ଦିଘୋଷେ ଅଗ୍ରସର ହେଲେ ଫାଲଗୁନି ।
ମହାଅଗ୍ନି ତେଜେ ମହାହିମ ଗଲା ଫାଟି
ମହେନ୍ଦ୍ର ମାଳ ପର୍ବତେ ପାର୍ଥ ଯାଇ ଉଠି ।
ବହଇ କୃଶାଙ୍ଗୀ ହେମକେଦାର କାବେରୀ
ତହିଁ ମଧ୍ୟରେ ବିଜୟ ଦେବ ତ୍ରିପୁରାରି ।
ପ୍ରସଙ୍ଗ ଲିଙ୍ଗ କେଦାର ସର୍ବଜନ ଚିନ୍ତା
ଭକତ ବତ୍ସଳ ଦେବ ହସ୍ତେ ବରଦାତା ।
ଏହି ପରକାରେ ସ୍ତୁତି କରି ଧନଞ୍ଜୟ
ପ୍ରଣିପାତ ହେଲା କରି ବହୁତ ବିନୟ ।
ଅର୍ଜ୍ଜୁନ ଭକତି ଦେଖି ଦେବ ତ୍ରିପୁରାରି
ଜୟ ତୁ ଭକ୍ତ ବତ୍ସଳ ଦେବ କାମ ଅରି ।
ଅଭୟ ପରମାନନ୍ଦ ତୁ ପରମ ଯୋଗୀ
ଆପଣେ ଦୁଃଖରେ ପଡ଼ି ପରେ କରୁ ଭୋଗୀ ।
ପାର୍ଥ ପ୍ରସନ୍ନେ ବଦନ୍ତି ଦେବ ତ୍ରିପୁରାରି
ଦେବେ ନିମନ୍ତ୍ରଣ କର ଯାଇ ସ୍ୱର୍ଗପୁରୀ ।
ତେତିଶକୋଟି ଦେବତା ଯିବେଟି ସଭାକୁ
ସକଳେ ଅଭୟ ବର ଦେବେଟି ତୁମ୍ଭଙ୍କୁ ।
ପାର୍ଥକୁ ଅଭୟ ବର ଦେଲେ ପଞ୍ଚମୁଖେ
ବୃଷରେ ଚଢ଼ି ବିଜୟ କଲେ ଅନ୍ତରୀକ୍ଷେ ।
ଅନ୍ତରୀକ୍ଷରେ ଦୁନ୍ଦୁଭି ବାଜେ ଘନ ଘନ
ଆକାଶ ଦିଗେ ବିଜୟ କରିଲେ ଅର୍ଜ୍ଜୁନ ।
ଜୟ ନର ନାରାୟଣ ଜୟ କୃଷ୍ଣାର୍ଜ୍ଜୁନ
ଶାରଳାଦାସ ପଶିଲା ଚରଣେ ଶରଣ ।



## ସଭାଗୃହ ନିର୍ମାଣ ଓ ଦୁର୍ଯ୍ୟୋଧନର ମନଦୁଃଖ

ଅଗସ୍ତିଙ୍କି ପଚାରିଲେ ମନୁ ନୃପମଣି
କହମହାମୁନି ମୋତେ ଏ ଅମୃତ ବାଣୀ ।
ପୃଥିବୀର ରାଜାମାନେ କରନ୍ତି ଗମନ
ଯେବଣଠାରେ ରହିବେ ସମସ୍ତ ରାଜନ ।
ଏଥିର ଚରିତ ମୋତେ କହ ତପୋନିଷ୍ଠି
ଏ ବିଷ୍ଣୁ ପୁରାଣ ଶୁଣି ଖଣ୍ଡିବ ଅରିଷ୍ଟି ।
କହନ୍ତି ଅଗସ୍ତି କୁମ୍ଭ ମୁନିଙ୍କର ବସି
ଶୁଣ ସାବଧାନେ ରାଜା ତା ବିଚାରି ଅଛି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମାଦି ଦିଗ
ଚାରିଗୁଣା ଲକ୍ଷେ ରାଜା ବସେ ପୃଥ୍ୱୀଭାଗ ।
ଜମ୍ବୁଦ୍ୱୀପ ଏକ ଲକ୍ଷ ଯୋଜନର ସ୍ଥଳୀ
ଚାରିଗୁଣା ଲକ୍ଷେ ରାଜା ଛନ୍ତି ମହାବଳୀ ।
ପାତ୍ର ଅମାତ୍ୟ ମୁକୁଟବନ୍ଧା ଯୋଦ୍ଧାମାନ
କଳି ନୁହଇ ଏ ସବୁ ଅକଳିତ ସୈନ୍ୟ ।
ବାଦ୍ୟ ଘୋଷର ଶବଦ ସିନ୍ଧୁଘୋଷ ଜିଣି
ବାରୁଣାବନ୍ତେ ରହିବ ଉତ୍ତର ସଇନି ।
ବାରୁଣାବନ୍ତ ବୋଲିଣ ଯେବଣ ବନସ୍ତ
ଅଟଇ କୋଶେ ଅଯୁତ ପୁଣ ବେନିଶତ ।
ତହିଁ ଆସି ପ୍ରବେଶିଲେ ସର୍ବ ରାଜାମାନେ
ରଥ ଗଜ ଅଶ୍ୱ ପୁଣି ପଦାତି ଗହଣେ ।
ପଶ୍ଚିମରେ ଯେତେ ରାଜା ବିଜେ ଦଣ୍ଡ ଚଢ଼ି
ଇନ୍ଦ୍ରପ୍ରସ୍ଥେ ରହିଲେ ଯମୁନାକୂଳ ମାଡ଼ି ।
ଗଙ୍ଗା ଯମୁନା ଏ ନଦୀ ବେନିଙ୍କର କୂଳେ
ଶ୍ରୀକୁରୁକ୍ଷେତ୍ର ମଣ୍ଡଳ ଅଟେ ମଧ୍ୟସ୍ଥଳେ ।
ଶୂନ୍ୟମଣ୍ଡପ ସୁଧର୍ମା ହେବ ସଭାସ୍ଥଳୀ
ସ୍ୱର୍ଗୁଁ ଆଣିଲେ ତାହାକୁ ଦେବ ବନମାଳୀ ।
ସଭା ଆୟତନ ଅଟେ ଦ୍ୱାଦଶ ଯୋଜନ
ଅମର ଘେନି ବିଜୟେ ତହିଁ ମଘବାନ ।
ସେହି ସଭା ରଚିଛନ୍ତି ଦେବ ନରହରି
କନକ ଘଟଣ ଅଟେ ବେଢ଼ାର ପାଚେରୀ ।
ସୁବର୍ଣ୍ଣର ଲକ୍ଷେ ସ୍ତମ୍ଭ ସଭାର ମଧ୍ୟରେ
ଲକ୍ଷେ ସିଂହାସନ ତହିଁ ଅତି ଶୋଭାକରେ ।
ସ୍ତମ୍ଭକେ ସୁବର୍ଣ୍ଣ ବୁଣା ଏକ ଏକ ଟାଣି
ଯହିଁ ଲମ୍ବାଇଲେ ମୁକ୍ତା ନାନା ରତ୍ନମଣି ।
ନେତର ଚନ୍ଦ୍ରାତପ ଯେ ଗୋଟିଏ ଗୋଟିଏ
ଲମ୍ବନ୍ତି ମଣି ରତନ ଅର୍କଜ୍ୟୋତି ପ୍ରାୟେ ।
ଏସନକ ଶୋଭାବନ ଲକ୍ଷେକ ରାଜାଙ୍କୁ
ସୁବର୍ଣ୍ଣ ପାବଚ୍ଛ ଅଛି ଉର୍ଦ୍ଧ୍ୱେ ଉଠିବାକୁ ।
ଏହି ରୂପରେ ନିର୍ମିତ ସଭା ଆୟତନ
ବାଳ ଆଦିତ୍ୟକୁ ଜିଣି ଦିଶେ ଶୋଭାବନ ।
ସଭାର ପଛ ଭାଗରେ ତୋଳି ଯଜ୍ଞଶାଳ
କୋଶେ ଲମ୍ବ ଓସାର ସେ ଉଚ୍ଚ ବେନିତାଳ ।
ନବତଳ ଉଚ୍ଚ ପୁଣି ଅଟଇ ଜଗତୀ
ସେ ଜଗତୀ ମଣି ରତ୍ନ ଝଟକଇ ଅତି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମାଦି ଦ୍ୱାର
ଚାରି ତାଳ ଉଚ୍ଚ ଦୁଇ ତାଳ ତା ଓସାର ।

ସୁନାକଳସରେ ମୁକ୍ତାହାର ଫେରେ ଫେରେ
ନେତର ପତାଙ୍ଗ ପୁଣି ଉଡ଼େ ତା ଉପରେ ।
ସହସ୍ରେ କଳସ ନେତ ଉଡ଼େ ଫରହରେ
ଡାଳିମ୍ବା ଚାମର ଉଡ଼େ ତହିଁର ପାଶରେ ।
ଜଗତୀର ଆସ୍ଥାନ ମୁଁ ବର୍ଣ୍ଣିବଇଁ କିସ
ସହସ୍ରେ ପାବଚ୍ଛ ତହିଁ ଉଠିବାକୁ ତ୍ରାସ ।
କରସ୍ଥଳର ପ୍ରସାର ଚଉପଟ ହୀରା
ସହସ୍ର ସହସ୍ର ଅଛି କମଳର ଶିରା ।
ଲମ୍ବିଅଛି ଚାରିସରି ଗଜର ମୁକୁତା
ମାଣିକ୍ୟର ପୁଞ୍ଜି ପୁଞ୍ଜି ଗୁଛି ପାଟସୂତା ।
ଶୁଦ୍ଧ ଜଣୟ ଉପରେ ନୀଳାର ବୈଦୁର୍ଯ୍ୟ
ପାବଚ୍ଛରେ ଶତପନ୍ତି ଝଟକେ ବିରାଜ ।
ଲକ୍ଷେ ଶକଟେ ଆସଇ ଯେତେ ଧନ ରତ୍ନ
ଏକା ଜଗତୀକେ ଲାଗେ ତାହାର ସମାନ ।
ଏ ରୂପେ ବାହାରେ ଅଛି ଚବିଶ ଜଗତୀ
ଅଷ୍ଟରତ୍ନରେ ମଣ୍ଡଣି ହୁଏ ପନ୍ତି ପନ୍ତି ।
ଦେଖୁ ଦିନ ନ ଅଣ୍ଟିବ ନ ଲାଗିବ କ୍ଷୁଧା
ରୋଗ ପୀଡ଼ା ଆଦିକରି ନ ଲାଗିବ ବାଧା ।
ଦେଖନ୍ତେ ନିର୍ମଳ ହେବ ତହିଁ ଦେନି ନେତ୍ର
ବସନ୍ତେ ଶରୀର ଜାଣ ହୋଇବ ପବିତ୍ର ।
ମଳୟ ବସନ୍ତ ଧାତୁ ବାଦ୍ୟ ଜୀବନ୍ୟାସ
ବହେ ସମୀର ସୁଗନ୍ଧେ ଆମୋଦ ଚୌପାଶ ।
ସଭାର ଆୟତନ ଯେ କହିତ ନ ପାରି
ଆକାଶରୁ ଆଣିଥିଲେ ଯାହା ଦେବହରି ।
ନିଜେ ବିଶ୍ୱକର୍ମା ରୂପ ଧରି ନାରାୟଣ
ପାଞ୍ଚଦିନେ ସଭାଗୃହ କରିଲେ ନିର୍ମାଣ ।
ପଚାଶ ହାତରେ ଯେଉଁ ଏକକାଠି ବୋଲି
ଏମନ୍ତ ବଖରାକରେ ଚାରି ଚାଟି ଚୁଲୀ ।
ସେହି ଚୁଲୀର ଆକାର ଅତ୍ୟନ୍ତ ବୃହତ
ଏକ ଚୁଲୀ ପାଖ ଅଟେ ଅଷ୍ଟୋତ୍ତର ଶତ ।
ଏ ରୂପେ ଶତ ଚୁଲୀରେ ବଖରାଏ ଗୋଟି
ଚୁଲୀ ପାଞ୍ଚ ମରବୁଦ ଚଉଦ ଯେ କୋଟି ।
ଏସନ ପ୍ରକାରେ ଛତ୍ରଘରକୁ ନିର୍ମାଣି
ଅଷ୍ଟରତ୍ନରେ ମଣ୍ଡିଲେ ପୁଣ ଚକ୍ରପାଣି ।
ଲକ୍ଷେ ରାଜାଙ୍କ ନିମନ୍ତେ ଲକ୍ଷେକ ଭୁବନ
ଟଞ୍ଚଲେ ନିର୍ମାଣ କଲେ ଖଞ୍ଜି ଅଷ୍ଟରତ୍ନ ।
ତହିଁକି ସୁବର୍ଣ୍ଣ ବେଢ଼ା ଆବର ପାଚେରୀ
ପାଚେରୀର ଚାରିଦ୍ୱାରେ ଜଗତୀ ଯେ ଚାରି ।
ଚନ୍ଦ୍ରଶାଳା ପୁର କ୍ରୀଡ଼ାରଙ୍ଗର ଭୁବନ
ଏରୂପେ ଲକ୍ଷେ ରାଜାଙ୍କ ଗୃହ ଶୋଭାବନ ।

ଏସନକ କଥା କଲେ ଦେବ ଜଗନ୍ନାଥ
ମୁହିଁ ତାହା କହିବାକୁ ଅଟେ ଅସମର୍ଥ ।
ଗଜ ଅଶ୍ୱଶାଳ ଉଠେ ବାରୁଣା ଭୁବନ
ଏକା ଗଜଶାଳ ଶଏକାଠି ଆୟତନ ।
ଗଜଶାଳମାନଙ୍କର କେ କରେ ଗଣିତା
ତିନିଶ ପରାର୍ଦ୍ଧ ଘର ଘଡ଼ିକେ ନିର୍ମିତା ।
ଏହିରୂପେ ଲକ୍ଷପନ୍ତି ଉଠେ ଗଜଶାଳ
ବାରୁଣାବନ୍ତରୁ ଯାଇ ଲାଗେ ଗଙ୍ଗାକୂଳ ।
ଏକ ପନ୍ତି ଅଶ୍ୱଶାଳ ନବକୋଟି ଘର
ବତ୍ରିଶ ଅର୍ବୁଦ ଅଶୀସ୍ୱସ୍ର ସୈନ୍ୟଙ୍କର ।
ବାଦ୍ୟକାରଙ୍କର ଘର ପଞ୍ଚାବନ କୋଟି
ତାହା ଉପରେ ଜଡ଼ାନ୍ତି ନେଇ ରତ୍ନପାଟି ।
ଓଟଶାଳାମାନ ଚାରି ମେବଚ୍ଛ ଯେ ଲକ୍ଷ
ପୁଣିହିଁ ଚାରିଶକୋଟି ଅଛି ଅଶୀଲକ୍ଷ ।
ସମସ୍ତ ଗୃହ ସୁସଜ୍ଜ ସୁବର୍ଣ୍ଣେ ନିର୍ମାଣି
ଏକଗୃହ ନାହିଁ ତହିଁ ତିରିଣ ଛାଉଣି ।
ସଭା ଆୟତନ ଦେଖି ଶ୍ରୀମାନ୍‌ଗୋବିନ୍ଦ
ଭିତର ମନେ ବିଷାଦ ବାହାରେ ଆନନ୍ଦ ।
ପାପବୁଦ୍ଧିକୁ ନୃପତି ଧରେ ହୃଦଗତେ
ଶତ୍ରୁର ସମ୍ପଦ ମୁହିଁ ଦେଖିବି କେମନ୍ତେ ।
ଏମନ୍ତ ବିଚାରି କଲା ପାଣ୍ଡବ ବୈରତା
ଦୁଷ୍ଟ ରାଜାଙ୍କର ଦଳେ ନୋହିବ ଭାଙ୍ଗନ୍ତା ।
ଶକୁନିକୁ ଘେନି ରାଜା ଭାଳଇ ଏକାନ୍ତେ
ମନ୍ତ୍ରୀ ବୋଲେ ସବୁ ସାଧ କରାର ମରନ୍ତେ ।
ଚାରିଭାଇ ଗଲେ ଚାରିଦିଗକୁ ବରଣେ
ଲକ୍ଷେ ରାଜାଙ୍କୁ ସେ ସାଧ କଲେ ଜଣେ ଜଣେ
ଧାର୍ମିକ ବିବେକୀ ପୁଣି କ୍ଷତ୍ରି ବଳବନ୍ତା
ବେଦଶାସ୍ତ୍ର ମନ୍ତ୍ରେ ସେହୁ ହୋଇଲେ ନିର୍ଜିତା ।
ପୁଣ ସଖା ପାଇଛନ୍ତି ସେହୁ ଜଗନ୍ନାଥେ
ଆବର ଯେ ଏକଆତ୍ମା ଅଟେ ଧନଞ୍ଜୟେ ।
ଚିତ୍ତ କଳଙ୍କ ନ ଧର ଆହେ କୁରୁପତି
ପାଣ୍ଡବେ ଅଭାବ ହେଲେ ସରିବ ବିଭୂତି ।
ଦେଖ ତୁହି ଦ୍ୱାରେ ଥାଇ ସର୍ବ ବୃନ୍ଦାରକେ
ଅଳକାପୁରେ ବୁହନ୍ତି ରତ୍ନ ମର୍ତ୍ତ୍ୟଲୋକେ ।
ଦେଖ ତ ବରୁଣ ନିଧି ଆଣି ଦିଏ କୂଳେ
ତହୁଁ ଭାରେ ଆଣିଛନ୍ତି ଦେବତା ସକଳେ ।
ସ୍ୱର୍ଗର ଆୟତନରେ ଦେଖ ଏହି ସଭା
ଭୃତ୍ୟପଣେ ଖଟିଛନ୍ତି ସର୍ବ ରାଜଦେବା ।
ଶ୍ରବଣେ କେବଳ ମାତ୍ର କଥା ଥିଲୁ ଶୁଣି
ପ୍ରତ୍ୟକ୍ଷେ ଦେଖିଲୁ ତାହା ଏବେ ନୃପମଣି ।

କିମ୍ବା ଦୁର୍ଯ୍ୟୋଧନ କରୁ ତୋ ଚିତ୍ତ ବିକୃତ
ପୁଣ୍ୟ ଥିଲାର ପ୍ରାଣୀକି ହୁଏ ଉପଗତ ।
ରାଗ ମୋହ ଅହଙ୍କାର ସର୍ବ ପରିହରି
ଖଟିଥିବୁ ଯୁଧିଷ୍ଠିଙ୍କୁ ମାନ୍ୟ ଧର୍ମ କରି ।
ତାଙ୍କର ସଞ୍ଚିତ ଯାହା ତୋର ଅଛି ଭାଗ
ସୋଦର ଭାଇଙ୍କୁ କିମ୍ବା ହେଉ ତୁ ବିରାଗ ।
ଅନେକ ବାଗେ ମଣାଇ କହିଲା ଶକୁନି
ଶୁଣିଣ ମାନଗୋବିନ୍ଦ ହୋଇଲାକ ତୁନି ।
ଶ୍ରୀଦେବୀ ଶାରଳା ମାଗୋ ଝଙ୍କଡ଼ବାସିନୀ
ତୋ ପାଦେ ସର୍ବଦା ମୁହିଁ କରୁଛି ଦଇନୀ ।
ଏହି ସଭାପର୍ବ କଥା ଅଟେ ଅକୂପାର
ତୋର କୃପାହିଁ କେବଳ ବୁଦ୍ଧିବଳ ମୋର ।
ଏହାକୁ କରିବି ଶେଷ ମୁହିଁ କି ପ୍ରକାରେ
ପଦମାନ କହିଦିଅ ବସି ମୋ କଣ୍ଠରେ ।
ଏହି ଚିନ୍ତା ସବୁବେଳେ ମନରେ ରହିଛି
ଶରଳାଦାସ ସର୍ବଦା ଏ ଭିକ୍ଷା ମାଗୁଛି ।



## ନକୁଳଙ୍କର ଦକ୍ଷିଣକୋଶଳ ରାଜାମାନଙ୍କୁ ନିମନ୍ତ୍ରଣ ନିମନ୍ତେ ଗମନ, କଳିଙ୍ଗସେନ ଯମନିକ ରାଜା ପ୍ରଭୃତିଙ୍କ ସହିତ ଖଣ୍ଡଯୁଦ୍ଧ

ଅଗସ୍ତିଙ୍କୁ ପଚାରିଲେ ବୈବସ୍ୱତ ମନୁ
ଦକ୍ଷିଣ ଦିଗେ ବିଜୟ ମାଦ୍ରୀଦେବୀ ସୂନୁ ।
ରାଜାଙ୍କୁ ସାଧ କରିଲେ କେମନ୍ତେ ଯେ ସ୍ଥଳେ
ଏହିକଥା କୁହ ମୋତେ ଆହେ ଦେବପାଳେ ।
କହନ୍ତି ଅଗସ୍ତି କୁମ୍ଭରଷିଙ୍କର ବଳା
ନକୁଳ ମହିମା ସବୁ ଅଟେ ଅନର୍ଗଳା ।
ରାଜାନିମନ୍ତ୍ରଣ କରି ଗମିଲା କୁମର
ଅଶୀସହସ୍ର ରାଉତ ଘେନି କୋନ୍ତକାର ।
ଗନ୍ଧମଳୟ ନାମରେ ଏକ ପରବତ
ତହିଁ ଯାଇଁ ବିଜେ କଲା ମାଦ୍ରୀଦେବୀ ସୁତ ।
ତୁଳମାସ କୃଷ୍ଣପକ୍ଷ ଚଉଠିର ଦିନ
ଗୁରୁବାର ରୋହିଣୀ ନକ୍ଷତ୍ର ବିଦ୍ୟମାନ ।
ବାଳକ ନାମେ କରଣ ବରିୟାନ ଯୋଗ
ତୁଳ ସଂକ୍ରାନ୍ତି ବାଇଶିଦିନ ହେଲା ଭୋଗ ।
ଅମୃତଯୋଗ ବେଳରେ ଶୁଭ ଅନୁକୂଳ
ଦକ୍ଷିଣ ଦିଗକୁ ବିଜେ କୁମାର ନକୁଳ ।
ଗନ୍ଧମଳୟ ପର୍ବତ ବିଜେ ସର୍ବରଥୀ
ମଙ୍ଗଳ ବାଦ୍ୟଧ୍ୱନିରେ ଦକ୍ଷିଣ ମୂରତି ।

ଆକାଶରେ ଉଚ୍ଛୁଳିଲା ଜୟଶଙ୍ଖ ଧ୍ୱନି
ସୂର୍ଯ୍ୟ ରଥେ ଥାଇ ଦେଖେ କୁମାର ଅଶ୍ୱିନୀ ।
ରୋହନ୍ତ ନାମକ ଅଟେ ତାଙ୍କର ଅନୁଜ
ଡାକି ଆଜ୍ଞାଦେଲେ ସେବ୍ୟାଦେବୀର ଆତ୍ମଜ ।
ନକୁଳ ତହିଁକି ତୁହି ଯାଅ ରେ ତ୍ୱରିତ
ସାରଥି ହୋଇଣ ବାହା ସେ କୁମାର ରଥ ।
ଦକ୍ଷିଣ ଦିଗକୁ ସେହୁ ଅଇଲା ବରଣେ
ସାତସହସ୍ର ରାଜାଙ୍କୁ ସାଧିବାକୁ ଜଣେ ।
ତାହାର ସାରଥି ହୋଇ ଦେଉଥିବୁ ବୁଦ୍ଧି
ଯେମନ୍ତେ ରାଜାମାନଙ୍କୁ ପାରିବ ସେ ସାଧି ।
ଆଜ୍ଞା ପ୍ରମାଣେ ଅଇଲେ ରୋହନ୍ତ ସାରଥି
ଚାରି ଅଶ୍ୱକୁ ଆଣିଲେ ଅନଳର ଜ୍ୟୋତି ।
ଧନୁ ଚକ୍ର ବାଣ ଗଦା ପୁଣି ମୁଦ୍ଗର
ପରିଘ ଭୂଷଣ୍ଡୀ ଆଉ ଛେଲ ଅସୀବର ।
ଅମର ବିମାନ ପୁଣି ଆଣିଲେ ଆକାଶୁ
କୁମର କରିଲେ ଆଜ୍ଞା ସୂତ ଏଥେ ବସୁ ।
ଆଜ୍ଞା ପ୍ରମାଣେ ଅଇଲେ ସାରଥି ରୋହନ୍ତ
ନକୁଳ ଭେଟିଲେ ଗନ୍ଧମଳୟ ପର୍ବତ ।
ରୋହନ୍ତେ ଦେଖି କୁମାର ହୋଇ ପରଣାମି
ବୋଲେ କିଅର୍ଥେ ଆକାଶୁ ବିଜେକଲ ସ୍ୱାମୀ ।
ନକୁଳକୁ କୋଳକରି ବୋଲନ୍ତି ରୋହନ୍ତ
ଅଶ୍ୱିନୀକୁମାର ଦେଲେ ଅସ୍ତ୍ର ସହ ରଥ ।
ଆମ୍ଭେ ତୋହର ରଥରେ ସାରଥି ହୋଇବୁ
ଯେବଣ ଭୁବନେ ଯିବୁ ଧାଡିକାରେ ନେବୁ ।
ଅନେକ କରିଲେ ପୂଜା ସେ ଚାରିଅଶ୍ୱଙ୍କୁ
ସ୍ୱର୍ଗୀୟ ଅଳଙ୍କାରାଦି ଦେଲେ ନକୁଳକୁ ।
ଶିରରେ ମୁକୁଟ ଦେଲେ ପୁଣି ସୀମନ୍ତିନୀ
ହୃଦରେ ଭୂଷଣ ଦେଲେ ନେଇ ରତ୍ନମଣି ।
ସର୍ବ ଅଳଂକୃତ ହୋଇ ମାଦ୍ରୀର କୁମର
ମଙ୍ଗଳ ଧ୍ୱନି କରିଣ ବସିଲା ରଥର ।
ବାଜେ ବିଜିଘୋଷ ଶଙ୍ଖ ମଙ୍ଗଳ ମହୁରୀ
କଳିଙ୍ଗ ଦେଶେ ବିଜୟ କଲେ ଦଣ୍ଡଧାରୀ ।
ସେ ଦେଶ ରାଜା କଳିଙ୍ଗ ଦେଶ ନରପତି
ନବଲକ୍ଷ କୁଞ୍ଜର ତା କୋଟିଏକ ରଥୀ ।
ସାଗର ପ୍ରମାଣ ତାର ଚୋଖାର ତୁରଙ୍ଗ
ସାଦକ୍ଷୌଣୀ ବଳ ତିନିଶତ ପାରିଦଣ୍ଡ ।
ମହା ଧନବନ୍ତ ସେହୁ କୁବେରକୁ ଜିଣି
ସେ ରାଜ୍ୟେ ପ୍ରବେଶ ହୁଏ ବୀର ଚୂଡ଼ାମଣି ।
ସମଦଣ୍ଡ ଘେନିରାଜା ବିଜୟେ ଆସ୍ଥାନେ
ଡଗର ବାରତା ନେଇ କହେ ସନ୍ନିଧାନେ ।

ସ୍ୱାମୀ ସାବଧାନେ ଶୁଣ ଆହେ ଦଣ୍ଡଧାରୀ
ରାଜ୍ୟେ ପଶିବେଟି ଯେଉଁ ରାଜା ଦଣ୍ଡଧରି ।
ଅୟୁତେକ ରଥ ଚାରି ଅଇବ୍ରତ ନାଗ
ଦଶଲକ୍ଷ ଚୋଖାର ତା ଅଟଇ ତୁରଙ୍ଗ ।
ରୂପ ଗୁଣେ ସୁନ୍ଦର ସେ ଅତି ପରାକ୍ରମୀ
ସ୍ୱରାଷ୍ଟ୍ର ପରାୟେ ମଣି ଆସେ ଭ୍ରମି ଭ୍ରମି ।
ଚରଗ ମୁଖରୁ ଏହି ବାରତାକୁ ଶୁଣି
ଧାଇଁଲା କଳିଙ୍ଗ ଥାଟ କରିଣ ପଲାଣି ।
ପ୍ରଥମେ ବାହାର ହେଲେ ସର୍ବ ପାରିଦଣ୍ଡେ
ଆରେ ରହ ରହ ବୋଲି ଡାକନ୍ତି ପ୍ରଚଣ୍ଡେ ।
କିରେ ତୁମ୍ଭମାନଙ୍କର ପୂରିଲା ନିୟତି
ମୋ ରାଜ୍ୟେ ପଶିଲ ମୃତ୍ୟୁ ନ କରିଣ ଭୀତି ।
ପାରିଦଣ୍ଡ ରାଜା କଲେ ବହୁତ ପ୍ରତିଜ୍ଞା
ବୋଇଲେ ତୁମ୍ଭର ବୋଲେ ହେବ କି ଅବଜ୍ଞା ।
ଜୟନିକ ବଳାନିକ ଦୁଇ ସେନାପତି
ବିନ୍ଧିଲେ ନାରାଚ ହୋଇ କାଳାନଳ ମୂର୍ତ୍ତି ।
କକଡ଼ାର ବର୍ଷା ପ୍ରାୟ ଶର କଲେ ବୃଷ୍ଟି
ସେହ୍ନା ଭେଦି ରାଜାଙ୍କର ଅଙ୍ଗେ ବାଣ ଫୁଟି ।
ରକତେ କର୍ଦ୍ଦମ ହେଲା ସମସ୍ତଙ୍କ ଅଙ୍ଗ
ପିନ୍ଧିଲା ବସନ ଭେଦି ଦିଶେ ପାଟରଙ୍ଗ ।
ନକୁଳ ସୈନ୍ୟ ଉଠିଲେ କ୍ରୋଧେ ଗଳଗାଜି
କଳିଙ୍ଗସେନର ସୈନ୍ୟ ପଳାଇଲେ ଭାଜି ।
ଦଣ୍ଡଭଗ୍ନ ଦେଖିକରି ସେ କଳିଙ୍ଗ ବୀରା
ଆପଣେ ଉଠିଲା ରାଜା ହୋଇ ଅତି ତ୍ୱରା ।
ପଞ୍ଚାଶ କୋଟି ସଙ୍ଗତେ ଘେନିଣ ଯେ ଯୋଧୀ
ସହସ୍ରେ ସହସ୍ରେ ଶର ଆକ୍ରୋଶିଣ ବିନ୍ଧି ।
ରାଜାକୁ ଦେଖି ନକୁଳ ବୀର ମହାରଥୀ
କୁନ୍ତ ବୁଲାଇଣ ନେଇ ତହୁଁ ବଳବନ୍ତା ।
ରେରେକାରରେ ଉଠିଲେ କଳିଙ୍ଗର ବଳ
ସିନ୍ଧୁଘୋଷ ପରାୟେକ ଶୁଭିଲା ଚହଳ ।
କୁନ୍ତ ବୁଲାଇ ନକୁଳ ପ୍ରହାର କରନ୍ତେ
ହସ୍ତୀ ଗଣ୍ଡସ୍ଥଳ ଫୁଟି ପଡ଼ିଲେ ମାହୁନ୍ତେ ।
ସେହ୍ନା ଟୋପର ମୁକୁଟ ପୁଣି ଶିରଭୂଷା
ରକ୍ତରେ କର୍ଦ୍ଦମ ହୋଇ ହେଲେ ଧୂଳିମିଶା ।
ପର ଆପଣା ବୋଲି ନ ପାରିଲେ ଚିହ୍ନି
ସମୟ ସମ୍ପର୍କରେ ହୋଇଲା ରଜନୀ ।
ଅନ୍ଧାର ଦେଖିଣ ରାଜା ତହୁଁ ଘୁଞ୍ଚିଗଲା
ନିଜ କଟକେ ବିମର୍ଷେ ପ୍ରବେଶ ହୋଇଲା ।
ଦିବସେ ଭାଳଇ ରାଜା ଭଗ୍ନବଳ ଘେନି
ଶ୍ରୀନରସିଂହଙ୍କୁ ଯାଇ କରଇ ଦରନୀ ।

ନମସ୍ତେ ନୃସିଂହ ଦେବ ନମୋ ନରହରି
ପ୍ରହଲାଦ ପାଇଁ ଦୈତ୍ୟ ହିରଣ୍ୟ ବିଦାରି ।
ଆକାଶେ ଲାଗଇ ଚୂଡ଼ା ଲୋହିତ ନୟନ
ଦୁଷ୍ଟଙ୍କୁ ସଂହାର କରି ରଖୁ ଭକ୍ତଜନ ।
ଜୟ ଜୟ ମହାବାହୁ ଚତୁର୍ଦ୍ଧା ମୂରତି
ପ୍ରହଲାଦକୁ ଦେଖାଇ କଲୁ ମୁକ୍ତି ଗତି ।
ନମୋ ନମୋ ନରସିଂହ ଭୟାବହ ମୂର୍ତ୍ତି
ଶାନ୍ତ ହେଲୁ ପ୍ରହଲାଦ କରିବାରୁ ସ୍ତୁତି ।
ନମୋ ନରସିଂହ ମୂର୍ତ୍ତି ତୋ ପାଦେ ମୁଁ ଭୃତ୍ୟ
ନମୋ ନରସିଂହ ଦୈତ୍ୟ କଲୁ ତୁ ନିପାତ ।
ସ୍ୱାମୀ ତୋହର ଆଶ୍ରାରେ ବର୍ତ୍ତେ ସବୁକାଳେ
କେଉଁ ଅଭାଗ୍ୟରେ ମୋତେ ଛାଡ଼ିଲୁ ତୁ ହେଳେ
ଶ୍ରୀନୃସିଂହଦେବଙ୍କର ଚରଣରେ ଭୃତ୍ୟ
ବଦନ୍ତି ଶାରଳା ଦାସ ମୂର୍ଖ ଅପଣ୍ଡିତ ।
ଅନେକ ଭକତି ଯହୁଁ କରିଲା କଳିଙ୍ଗ
ପ୍ରସନ୍ନେ ଅଭୟ ବର ଦେଲେ ନରସିଂହ ।
ଚିନ୍ତାମଣି ନାଥ ତହୁଁ ବଚନ ପ୍ରକାଶି
ଅଜ୍ଞାନେ ନୃପତି ତୁହି ଦ୍ୱନ୍ଦ୍ୱ ବାଦେ ପଶି ।
ନ ଜାଣୁ କି ସୋମବଂଶେ ନୃପତି ଯୁଧିଷ୍ଠି
ତାଙ୍କ ପିତା ପଣ୍ଡୁ ବ୍ରହ୍ମହତ୍ୟା ଦୋଷେ କଷ୍ଟି ।
ରାସୁସି ଯାଗ କରନ୍ତି ତହିଁର ନିମନ୍ତେ
ଲକ୍ଷେରାଜା ରୁଣ୍ଡ ଷୋଳ ଦିବସ ପର୍ଯ୍ୟନ୍ତେ ।
ପଶ୍ଚିମକୁ ଭୀମସେନ ଉତ୍ତରେ ଅର୍ଜ୍ଜୁନ
ଦକ୍ଷିଣେ ନକୁଳ ସହଦେବ ଅଇଶାନ୍ୟ ।
ଏ ନକୁଳ ବିଜେ କଲେ ଦକ୍ଷିଣ ଦିଗକୁ
ସାତସସ୍ର ରାଜା ସାଧ କରିଣ ନେବାକୁ ।
ସଚରାଚରର ରାଜା ଯା ଚରଣ ବନ୍ଦି
ତୁହିରେ କଳିଙ୍ଗସେନ ତାରେ ହେଲୁ ଦ୍ୱନ୍ଦ୍ୱି ।
ମନ୍ତ୍ରୀ ପଠାଇଣ ଏବେ କର ସମାଧାନ
ବିବାଦରେ ଆସିନାହିଁ ମାଦ୍ରୀର ନନ୍ଦନ ।
ଶ୍ରୀ ନୃସିଂହ ବଚନରେ କଳିଙ୍ଗ ନୃପତି
ମନ୍ତ୍ରୀ ଅମାନାତ୍ୟେ ଘେନି ଆସଇ ଯେ ରାତି ।
ଯହିଁ ବିଜେ କରିଛନ୍ତି ନକୁଳ କୁମର
ସମଦଣ୍ଡ ଘେନି ରାଜା କଲା ପଟୁଆର ।
ଆଗେ ମନ୍ତ୍ରୀକି ଚାଳିଲା ନକୁଳ ଛାମୁକୁ
ଅନେକ ଉପହାର ଯେ ଦେଲେ କୁମରକୁ ।
ଅନେକ ବିନୟେ କଲେ ଛାମୁରେ ପ୍ରଣମି
ନ ଜାଣିଣ ତୋର ଦ୍ରୋହ କଲି ଦେବସ୍ୱାମୀ ।
ଏମନ୍ତ ସମୟରେ ଯେ କଳିଙ୍ଗ ନୃପତି
ଆସି ପାଦଅର୍ଘ୍ୟ ଦେଇ କରଇ ଭକତି ।

ଅକ୍ଷତ ଗୁଆ ନେଇଣ ଦେଲେକ ନକୁଳ
ବୋଇଲେ ସେ ଦଣ୍ଡଘେନି ଇନ୍ଦ୍ରପ୍ରସ୍ଥେ ଚଳ ।
ଅନେକ ଭକ୍ତି କରିଣ କଳିଙ୍ଗ ନୃପତି
ଦଣ୍ଡ ଘେନିଣ ଚଳିଲା ସେ ରାତି ପାହାନ୍ତି ।
ତହୁଁ ଦଣ୍ଡ ଘେନିଣ ଯେ ଚଳେ ବୀରମଣି
ଭେଟିଲେ ଯାଇ ନିର୍ମଳନାଥ ଶୂଳପାଣି ।
କାଶୀକୁଣ୍ଡେ ସ୍ନାନକରି ନିତ୍ୟକର୍ମ ସାରି
ନିର୍ମଳନାଥଙ୍କୁ ଯାଇ ଦରଶନ କରି ।
ତ୍ରିକେଶ୍ୱର ବୋଲିକରି ତହିଁ ନୃପରାୟେ
ଭକ୍ତିରେ ଖଟେ ନିର୍ମଳନାଥଙ୍କର ପାୟେ ।
ତ୍ରିକେଶ୍ୱର ଅଶୀଲକ୍ଷ ସଙ୍ଗେ ଘେନି ଯୋଦ୍ଧା
ଯାଇ ଓଗାଳିଲା ସେହୁ ପଥକୁ ନିରୋଧି ।
ବୋଲେ କେଉଁ ଗର୍ବେ ତୁମ୍ଭ ଏଡ଼େକ ସାହସ
ନ ଜାଣ କି ତ୍ରିଅମ୍ବକ ତୀର୍ଥ ଏଥେ ପଶ ।
ତ୍ରିଅମ୍ବକ ନାଥ ଯେହୁ ଶୁଦ୍ଧ ମହାଦେବା
ପୃଥ୍ୱୀ ସତ୍ୟକ୍ରିୟା ଜନେ କରିଆନ୍ତି ସେବା ।
ଯାହାର ନାମ ଧରନ୍ତେ ତୁଟେ ମୋହମାୟା
ସେ ଭୁବନେ ପଶିବାକୁ କେଡ଼େ ତୁ ନିର୍ଭୟା ।
ରେ ରେକାର ଶବଦରେ ପର୍ବତରେ ଉଠି
ନକୁଳବୀର ଥାଟକୁ କଲା ଶରବୃଷ୍ଟି ।
ଉପରେ ଥାଇଣ ରାଜା ବିନ୍ଧେ ତୀକ୍ଷ୍ଣମୁନା
ବାହାର ନିକିଳି ଶର ଫୁଟି ବଜ୍ରସେହ୍ନା ।
ଘାଏ ଘୁମାଇ ପଡ଼ିଲେ ପାଣ୍ଡବଙ୍କ ବଳ
ରୋହନ୍ତ ସାରଥି ଚାହିଁ ବୋଲନ୍ତି ନକୁଳ ।
ବଡ଼ ଦୁରାପଦ ମୋତେ ପଡ଼ିଲାକ ସ୍ୱାମୀ
ବାହା ମୋର ତୁରଙ୍ଗମ କରି ଶୂନ୍ୟଗାମୀ ।
ନକୁଳ ବଚନେ ରଥ ଚଳାଏ ରୋହନ୍ତ
ପର୍ବତ ଉପରେ ନେଇ ଟେକିଲାକ ରଥ ।
କରେ ବଜ୍ରକୋନ୍ତ ଧରି ନକୁଳ କୁମର
ଆକ୍ରୋଶି ମାଇଲା କୋପେ ସୈନ୍ୟଙ୍କ ଉପର
ରୋହନ୍ତ କମ୍ପାଇ ପୁଣ ରଥ ଗଲା ବାହି
ଗଡ଼ ଭିତରେ ପ୍ରବେଶ ହୋଇଲାକ ଯାଇ ।
ଦେଖିଣ ପ୍ରତିଜ୍ଞା ତହୁଁ କରେ ତ୍ରିକେଶ୍ୱରୀ
ପାଞ୍ଚଲକ୍ଷ ଯୋଦ୍ଧା ଘେନି ହେଲା ଆଗସରି ।
କୋପେ କାଳାନଳ ସମ ମାଦ୍ରୀଦେବୀ ବଳା
ଯେସନେକ ମତ୍ତଗଜ ଧାଇଁଲା ମୁକୁଳା ।
ସମର ସମ୍ପର୍କେ ପରେ କରି ରଣରଙ୍ଗ
ତିନି ଅଇବ୍ରତ ଯୋଦ୍ଧା ଓଗାଳିଲେ ଆଗ ।
ତ୍ରିକେଶ୍ୱରୀ ବୁଲାଇଣ କୋନ୍ତେ ଆଉ ଯାଠି
କରନ୍ତେ ପ୍ରହାର ସୈନ୍ୟ ସେହ୍ନା ଯାଏ ଫାଟି ।

ଅନେକ ସୈନ୍ୟ ପଡ଼ିଲେ ସେହି ରଣ ମଧ୍ୟେ
ରଣ ଛାଡ଼ି ପଳାଇଲେ ମହା ମହା ଯୋଧେ ।
ଗୋଡ଼ାଇ ନକୁଳ ମାରେ ଚକ୍ର ଆଉ କୋନ୍ତ
ଘାଏ ଢଳିପଡ଼େ ରଥୀ ପଦାତି ସହିତ ।
ବିରଥୀ ହୋଇ ନୃପତି ପଳାଏ ଚଞ୍ଚଳ
ଗୋଡାଇ ନକୁଳ ଯାଇ ଧରି ତାର ବାଳ ।
ଭୁଜ ଧରି ନିଜ ରଥେ ବସାଇଲେ ନେଇ
କୋନ୍ତ ଧରି ମାରିବାକୁ ଗର୍ଜ୍ଜନ କରଇ ।
ନୃପତିର ବନ୍ଦୀ ଦେଖି ସକଳ ସଇନି
ଦନ୍ତରେ ତିରଣ ଧରି କରନ୍ତି ଦଇନି ।
ନ ଜାଣି ଆମ୍ଭ ନୃପତି କରିଲାକ ଦୋଷ
ତୁହି ରକ୍ଷାକର ଦେବ ପରମ ପୁରୁଷ ।
ନକୁଳ ହୋଇଲା ଶାନ୍ତ ମଧୁର ବଚନେ
ଏତେ ସୈନ୍ୟ ନାଶକଲୁ ତୋହର ଅଜ୍ଞାନେ ।
ମୁହିଁ କେବେ ନୁହେ ତାଙ୍କମାନଙ୍କର ବୈରୀ
ରାଜୁସି ଯଜ୍ଞାର୍ଥେ ମୁହିଁ ଆସିଥିଲି ବରି ।
ହେ ରାଜା ଯଜ୍ଞ କରିବା ଯହୁଁ ସ୍ଥିର ହେଲା
ତହିଁପାଇଁ ଜରାସନ୍ଧ ଆଗେ ନାଶଗଲା ।
ନକୁଳ ବଚନେ ରାଜା ହୋଇ ପରଣାମି
ବୋଇଲା ମୋ ଅପରାଧ କ୍ଷମାକର ସ୍ୱାମୀ ।
ଦକ୍ଷିଣ ଦିଗକୁ ବିଜେ ନ ପାରିଲି ଜାଣି
ସମର କରିଲି ମୁହିଁ ପରରାଷ୍ଟ୍ର ମଣି ।
ନିମନ୍ତ୍ରଣ ଯୋଗାଡ଼ ସେ ଦେଲେକ ନକୁଳ
ସମଦଣ୍ଡ ଘେନି ଚଳ ଇନ୍ଦ୍ରପ୍ରସ୍ଥ ସ୍ଥଳ ।
ରାଜା ନିମନ୍ତ୍ରଣ କରି ଆସିବା ପର୍ଯ୍ୟନ୍ତେ
ଦକ୍ଷିଣରେ ରାଜା ଥିବ ଦକ୍ଷିଣର ପ୍ରସ୍ଥେ ।
ନିରାଧାର ଆଜ୍ଞା ପାଇ ରାଜା ତ୍ରିକେଶରୀ
ଅମୃତ ଯୋଗେ ବାହାର ହେଲା ଦଣ୍ଡଧାରୀ ।
ସେ ନଦୀରେ ସ୍ନାନକରି ମାଦ୍ରୀର ନନ୍ଦନ
ତ୍ରିଅମ୍ବକ ନାଥଙ୍କୁ ଯେ କଲେ ଦରଶନ ।
ଜୟ ତୁ ଜୟ ତୁ ଦେବ ଜଗଜ୍ଜନ ପାଳି
ସର୍ବଜନଙ୍କ ରଞ୍ଜନ ଜୟ ତୁ କପାଳୀ ।
ତ୍ରେତୟା ଯୁଗେ ଶ୍ରୀରାମ କଲେ ତୋତେ ପୂଜା
ସଦୟେ ଅଭୟବର ଦେଲୁ ଦେବରାଜା ।
ରାମ ଆଜ୍ଞାରେ ଲକ୍ଷ୍ମଣ କଲା ପର୍ଣ୍ଣକୁଟୀ
ଶ୍ରୀରାମଙ୍କୁ ଭଣ୍ଡିଲେ ସେ ପୋତି ଶିଳାଗୋଟି ।
ଅନେକମତେ ସ୍ଥାପିଲା କରିଣ ଯତନ
ଶ୍ରୀରାମ ଜାଣିଲେ ତାହା କରିଣ ଦର୍ଶନ ।
ରାମ ପ୍ରଣିପତ୍ୟ ହେଲେ କରି ବହୁସ୍ତୁତି
ତହୁଁ ବିଜେକଲୁ ହୋଇ ତ୍ରିଅମ୍ବକ ମୂର୍ତ୍ତି ।

ମହାଶମ୍ଭୁ ହେଲା ନାଥ ଚିତ୍ରକୂଟ ଫୁଟି
ପାତାଳପୁରକୁ ଗଲା ଲକ୍ଷେଯୂଣ କଣ୍ଟି ।
ମହାଶମ୍ଭୁ ପରସନ୍ନ ନାଥ ତ୍ରିଅମ୍ବକ
ତ୍ରିଅମ୍ବକ ନାଥ ସ୍ୱାମୀ ମୋତେ ସଦା ରଖ ।
ଆପଣେ ମୃଗୟାରେ ତ ସଦା କୂତୂହଳ
ବନଜନ୍ତୁ ମାରି ହେଉ ଆନନ୍ଦରେ ଭୋଳ ।
ମାଦ୍ରୀର ନନ୍ଦନ ବହୁ କରନ୍ତେ ବିନୟ
ଭକତି ଦେଖି ବିଜୟ କଲେ ଦେବରାୟ ।
ବାମକରରେ କମାଣ ଦକ୍ଷେ ତୀରଗୋଟି
ପାଦରେ ରତ୍ନ କଠାଉ ଶିରେ ଏକଜଟି ।
ଶିରେ ସୀମନ୍ତିନୀ ହୃଦେ ଲମ୍ବେ ରତ୍ନମାଳ
କରରେ କଙ୍କଣ ବାହେ ବାହୁଟି ସୁଢଳ ।
ଏସନକ ଶୋଭାବନ ଦେବ ଶୂଳଧାରୀ
ସନ୍ନିଧେ କାନ୍ତାନୀ ବାମ ଜାନୁରେ ଗଉରୀ ।
ନକୁଳ ଦେଖିଲେ ଯହୁଁ ଏ ସ୍ୱରୂପ ଗୋଟି
ଅନେକ ବିନୟୀହୋଇ ପାଦତଳେ ଲୋଟି ।
ଶିବ ବୋଇଲେ ନକୁଳ ତୋ ଜୀବନ ଧନୀ
ବହୁଛଳେ ଜାତ ତୋତେ କଲା ତୋ ଜନନୀ ।
ସମରେ ନିର୍ଭର ତୁହି ଟିକେ ନାହିଁ ଶଙ୍କା
ଏତେବେଡ଼ ଦିନକୁ ତୁ ସାଧିଅଛୁ ଏକା ।
ଆମ୍ଭଙ୍କୁ ଦେଖିଲୁ ହେଲା ତୋ ଜୀବ ସଫଳ
ଏକ ମହାମନ୍ତ୍ର ତୋତେ ଦେବିରେ ନକୁଳ ।
ସେ ମନ୍ତ୍ରକୁ ସୁମରିବୁ ତୁହି ତିନିକାଳେ
ଆହାର ମୈଥୁନ ନିଦ୍ରା ନ ମାଡ଼ିବ ହେଳେ ।
ଏ ରାଜାମାନଙ୍କୁ ସାଧ କରିବା ପର୍ଯ୍ୟନ୍ତେ
କ୍ଷୁଧା ତୃଷା ନିଦ୍ରାଆଦି ନ ମାଡ଼ିବ ତୋତେ ।
ଆବର ଦେଉଛି ଘେନ ଏହି ଶରଟିଏ
ଏ ଶର ଯୋଚିଲେ ସାଧ ହେବେ ସର୍ବରାୟେ ।
ବାବୁ ଯେବେ ହୋଇଥିବ ଗିରିବର ସେଟି
ଏ ଶର ବାଜିଲାକ୍ଷଣି ତାହା ଯିବ ଫୁଟି ।
ଏମନ୍ତ ଆଜ୍ଞା ପ୍ରସନ୍ନେ ଦେବ ଅବଧାରୀ
ବରଦେଇ ଅନ୍ତରୀକ୍ଷେ ଗଲେ ତ୍ରିପୁରାରୀ ।
ତହୁଁ ସେ ନକୁଳ ବୀରତୂର ବାଦ୍ୟ ବାଇ
ଚୂଡ଼ଙ୍ଗ ଦେଶେ ପ୍ରବେଶ ହୋଇଲେକ ଯାଇ ।
ସେ ରାଜ୍ୟେ ରାଜା ଚୂଡ଼ଙ୍ଗ ଚକ୍ରବର୍ତ୍ତୀ ରାୟେ
ନକୁଳ ତାର ରାଜ୍ୟରେ କରିଲେ ବିଜୟେ ।
ଦୂତ ଜଣାଇଲେ ଯାଇ ରାଜାର ଅଗ୍ରତେ
ସ୍ୱାମୀ କଟକରେ କିଏ ପଶେ ଅଦଭୂତେ ।
ଉଲୁକାପାତ ପରାୟେ ଦିଶନ୍ତି ସଇନି
ବୁଲାଉଛନ୍ତି ଲାଙ୍ଗିଆ ଅସ୍ତ୍ରମାନ ଘେନି ।
ଶୁଣି କୋପିଲା ଚୂଡ଼ଙ୍ଗ ବୀର ଚକ୍ରବର୍ତ୍ତୀ
କୃତାନ୍ତକବଂଶୀ ମୁହିଁ ପ୍ରତାପ ନୃପତି ।
ମୁହିଁ ଅନୁବ୍ରତେ ପରରାଜ୍ୟେ ବାହେ ଥାଟ
ମୋର ଉପରକୁ ପୁଣି ଆସେ କେଉଁ ଦୁଷ୍ଟ ।
ଦକ୍ଷିଣ କୋଶଳେ ମୁହିଁ ଅଟେ ଏକ ଯୋଧି
ଜରାସନ୍ଧ ରାଜା ମୋତେ ନ ପାରିଲା ସାଧି ।
ମୁହିଁ ସର୍ବ ଯୋଦ୍ଧାଙ୍କର ଅଟେ ଅରିଶୂଳ
ମୋହର ଉପରେ ପୁଣି କିଏ ମହାମଲ୍ଲ ।
ଶତେ ପାରିଦଣ୍ଡ ରାଜା ପାଶେ ଥିଲେ ରହି
ରାଜ୍ୟରେ ପଶି ନ ଦିଅ ଆଜ୍ଞା ସେ ଦିଅଇ ।
ରାଜା ବଚନେ ଧାଇଁଲେ ଯୋଦ୍ଧା ପାରିଦଣ୍ଡ
ଲୌହ ଧନୁଶର ଧରି ଡାକିଲେ ପ୍ରଚଣ୍ଡ ।
ଗର୍ଜନ ନାଦେ କମ୍ପିଲା ଚରାଚର ପୃଥ୍ୱୀ
ଦଲଦଲ ହୋଇକରି କମ୍ପେ ବସୁମତୀ ।
ପାରିଦଣ୍ଡ ରାଜା ସର୍ବେ ଅସ୍ତ୍ରକୁ ସଜାଡ଼ି
ରହ ରହ ବୋଲି ଚକ୍ରବର୍ତ୍ତୀ ରଣପାଡ଼ି ।
ଇତର ଲୋକ ହୋଇଣ ଏଡ଼େକ ଭରସୁ
ମରିବା ପାଇଁ ଚୂଡ଼ଙ୍ଗ ଦେଶେ କିପାଁ ପଶୁ ।
ନିଜଥାଟ ପଛକରି ଆଗ କଲେ ରଥ
ବୋଇଲେ କିଏ ସେ ଅଛ ଏଡ଼େକ ସମର୍ଥ ।
ବାହୁଡ଼ିଣ କହ ଯାଇ ତୁମ୍ଭ ନୃପ ଆଗେ
ବୋଲିବୁ ନକୁଳ ବିଜେ ଏ ଦକ୍ଷିଣ ଦିଗେ ।
କଳହରେ ପ୍ରୟୋଜନ ମୋର ନାହିଁ କିଛି
ହସ୍ତିନା ରାଜ୍ୟକୁ ଯିବ ବହୁକାର୍ଯ୍ୟ ଅଛି ।
ସୈନ୍ୟବୋଇଲେ ପାଣ୍ଡବବୋଲି କେ ଜାଣଇ
କହୁଁ କହୁଁ ବିନ୍ଧିଲେ ସେ ବହୁଶର ନେଇ ।
ଅବିଚ୍ଛିନ୍ନ ବିନ୍ଧିଲେ ସେ କିଛି ନ ବିଚାରି
ନକୁଳ ସ୍ମରଣ କଲେ ଦେବ ଚକ୍ରଧାରୀ ।
ତୁ ଯେ ତିଆରି କହିଲୁ ଆମ୍ଭଙ୍କୁ ଯତନେ
ଦ୍ୱନ୍ଦ୍ୱୀ ନୁହନ୍ତି ଦକ୍ଷିଣଦିଗ ରାଜାମାନେ ।
ଏତେ ବିଚାରିଣ ବୀର ବିନ୍ଧେ ତୀକ୍ଷଣ ବାଣ
ତୀକ୍ଷଣ ମୁନା ଶର ବିନ୍ଧେ ପାଣ୍ଡବ ପଞ୍ଚାଣ ।
ଶରବୃଷ୍ଟି କଲେ ସେହୁ ବଜ୍ରନାଦ କରି
ହସ୍ତୀ କୁମ୍ଭସ୍ଥଳ ତୁଟେ ଶର ପଡ଼ିକୁରି ।
ନଦୀପ୍ରାୟେ ରକ୍ତ ବହେ ଶରୀରରୁ ଗଳି
ମହା ମହା ନାଗମାନେ ପଡୁଛନ୍ତି ଢଳି ।
ମାଦ୍ରୀର ନନ୍ଦନ ଅଟେ ବଡ ବଳବନ୍ତା
ପବନୁ ବେଗେ ବିନ୍ଧଇ ନ ଯାଇ ଗଣିତା ।
ସହସ୍ରେ ମୁକୁଟଯୋଦ୍ଧା ଥିଲେ ଆଗୁଆଣି
ଗର୍ଜି ଭୂମିରେ ପଡ଼ିଲେ ଗଣ୍ଡି ମୁଣ୍ଡ ବେନି ।

ଧାଇଁଲେ ସେ ସୈନ୍ୟହତ ଦେଖି ପାରିଦଣ୍ଡେ
ଧରିଅଛନ୍ତି ପଥର ସର୍ବେ ଖଣ୍ଡେ ଖଣ୍ଡେ ।
ବାମକରେ ଧରିଛନ୍ତି ପୁଣି ବୃକ୍ଷେ ବୃକ୍ଷେ
ବାନରବଳ ପରାୟେ ଦିଶନ୍ତି ପ୍ରତ୍ୟକ୍ଷେ ।
ଦେଖିଣ ନକୁଳବୀର କୁନ୍ତ ବୁଲାଇଲା
କ୍ରମେ କ୍ରମେ ତେଜ ତାର ଉଦିତ ହୋଇଲା ।
କୁମାର ନକୁଳ ଅଟେ ମହାବଳ କ୍ଷତ୍ରୀ
ହସ୍ତୀଙ୍କ ଉପରେ କୁନ୍ତ ମାଇଲାକ ଧାତି ।
ହସ୍ତୀ ମାହୁନ୍ତ ଦୁହିଁଙ୍କୁ ବୁଲାଇ ବୁଲାଇ
ଆକାଶେ ଫିଙ୍ଗନ୍ତେ ଗଡ଼େ ପଡନ୍ତି ଯେ ଯାଇ ।
ପଡ଼ିଗଲେ ମହାବୀର ଉଲ୍‌କାପାତ ଜାଣି
ଜଗତୀରେ ଥାଇ ଦେଖେ ଚୂଡ଼ଙ୍ଗ ନୃମଣି ।
ସ୍ୱରୂପେ ଦେଖିଲେ ରାଜା ସୈନ୍ୟବଳ ଭାଙ୍ଗେ
ରଥେକ ସାଜି ତକ୍ଷଣେ ଆପେ କଲା ବିଜେ ।
ବାମ ଡାହାଣ ପଶ୍ଚାତ ପୁଣି ଆଗୁଆଣି
ସୈନ୍ୟଙ୍କୁ ରଖି ଚଳଇ ଚୂଡ଼ଙ୍ଗ ନୃପଣି ।
ଆପଣା ରାଜାଙ୍କୁ ଦେଖି ଉଠିଲେ ସଇନି
ନକୁଳକୁ ପ୍ରହାରିଲେ ଶାଳ ଶିଳ ଘେନି ।
ମାର ମାର ଶବଦରେ ପୂରେ ଦଶଦିଶ
ସୈନ୍ୟମାନେ ଦଉଡ଼ିଲେ ହୋଇ ମହାରୋଷ ।
ସୈନ୍ୟମାନଙ୍କ କଟାଳ ନକୁଳ ଯେ ଦେଖି
ପଚାରିଲେ ସେ ରୋହନ୍ତ ସାରଥିକୁ ଡାକି ।
ପ୍ରତିଜ୍ଞା କରି ମୋଡ଼ାଏ କରନ୍ତି ସମର
ରାଜାଙ୍କ ଛାମୁକୁ ବାହା ରଥକୁ ମୋହର ।
ନକୁଳ ବଚନ ଶୁଣି ମରୁତର ସୁତ
ପବନ ଗତି କରିଣ ବାହେ ବେଗେ ରଥ ।
ଶ୍ୟେନପକ୍ଷୀ ପରକାରେ ଉଡ଼ନ୍ତି ତରଙ୍ଗେ
ଧାତିକାରେ ରଥ ଗଲା ଚୂଡ଼ଙ୍ଗର ଆଗେ ।
ଅଦଭୂତେ ରଥ ଦେଖି ସେ ପ୍ରତାପବଂଶୀ
କରେ କୃପାଣ ଘେନିଣ ନକୁଳ ଆକ୍ରୋଶି ।
ତା ଦେଖି ନକୁଳ ବୀର ବୁଲାଇଣ କୋନ୍ତେ
ଆକ୍ରୋଶି ପ୍ରହାର ଭଲା ଚକ୍ରବର୍ତ୍ତୀ ରଥେ ।
ନକୁଳର କୁନ୍ତ ପଡ଼ି ରଥ ଭଗ୍ନ ହେଲା
ମତ୍ତହସ୍ତୀ ଏକ ଚଢ଼ି ପୁଣି ସେ ମିଳିଲା ।
ଲୁହାର ଦୁଇଟି ଗଦା ଧରି ବେନିହସ୍ତେ
ବୁଲାଇ ପ୍ରହାର କଲା ନକୁଳର ମାଥେ ।
ରୋହନ୍ତ ସାରଥି ତାହା ରୁହାଇଲା ଶୂନ୍ୟେ
ନକୁଳ ପୁଣି କୁନ୍ତେକ ମାରେ କୋପମନେ ।
ସେ କୁନ୍ତ ଆଘାତେ ହସ୍ତୀ କୁମ୍ଭ ଗଲା ଫୁଟି
ଗର୍ଜ୍ଜନ କରିଣ ହସ୍ତୀ ପଡ଼େ ଭୂମି ଲୋଟି ।
ବିରଥୀ ହୋଇଣ ତହୁଁ ପଳାଇ ସେ ରାୟ
ପଛେ ପଛେ ଗୋଡାଇଲେ ମାଦ୍ରୀର ତନୟ ।
କୁନ୍ତ ଉଞ୍ଚାଇ ପ୍ରହାର କରିବାର ବେଳେ
ମନ୍ତ୍ରୀବର ପ୍ରଣିପାତ ହେଲା ପାଦତଳେ ।
ରୋହନ୍ତ ବୋଇଲେ ଏବେ ଛାଡ଼ କୋପମନ
ମନ୍ତ୍ରୀର ବାକ୍ୟରେ କୋପ କଲା ସମାଧାନ ।
କିଞ୍ଚିତ ଦୋଷରେ ତୁହି ରାଜାଙ୍କୁ ନାଶିଲେ
ରାଜୁସିଯାଗ ନୋହିବ ରାଜାଏ ନ ଥିଲେ ।
ରୋହନ୍ତ ବିଚନ ଶୁଣି କୋପ କରି ଶାନ୍ତି
ବୋଲେ ରାଜାଙ୍କୁ ଫେରାଇ ଆଣ ଆହେ ମନ୍ତ୍ରୀ
ନକୁଳ୍ ବଚନ ଶୁଣି ଚଳେ ତତ୍‌କ୍ଷଣାନ୍ତି
ବେଗେ ରାଜାକୁ ଯାଇଣ ବାହୁଡ଼ାଏ ମନ୍ତ୍ରୀ ।
ଦନ୍ତେ ତିରଣ ମୁଖରେ ଦଶନଖ ଭରି
ଉଦ୍ଧରି ଧର ବୋଲିଣ ଡାକଇ ଫୁକାରି ।
ରାଜାର ବିକଳ ଦେଖି ମାଦ୍ରୀଦେବୀ ବଳା
ଚୂଡ଼ଙ୍ଗ ରାଜାର ଗଳେ ଦେଲା ରତ୍ନମାଳା ।
ଅକାରଣରେ ସୈନ୍ୟଙ୍କୁ ମରାଇଲୁ ଜାଣି
ଏବେ ଦଣ୍ଡ ଘେନି ଯାଅ ରାଜ୍ୟକୁ ଏକ୍ଷଣି ।
ଏହା କହି ନିମନ୍ତ୍ରଣ ଦେଲାକ ନକୁଳ
ଚୂଡ଼ଙ୍ଗ ବୋଇଲା ଆଜ ରହ ମୋର ଆଳ ।
ନକୁଳ ବୋଲେ ଭୋଜନେ ନାହିଁ ମୋରଇଚ୍ଛା
ତୁମ୍ଭେ ଚଳିଲେ ମୋହର ପୂରିବ ଯେ ବାଞ୍ଛା ।
ତୁହି ଏବେ ଦଣ୍ଡ ଚଢ଼ି ବେଗେ ଯାଅ ବାହି
ତୋ ଥାଟ ସହିତେ ଥିବୁ ଇନ୍ଦ୍ରପ୍ରସ୍ଥେ ରହି ।
ନକୁଳର ଆଜ୍ଞାରେ ଯେ ଚୂଡ଼ଙ୍ଗ ନୃପତି
ବିନୟ-ଯୁକତେ କଲା ବହୁତ ଭକତି ।
ଅନ୍ୟଥା ବିଳମ୍ବ ହେଲେ ନ ବର୍ତ୍ତିବେ କେହି
ଜଗନ୍ନାଥ କୋପେ ପ୍ରାଣ ନ ପାରିବ ରହି ।
ବାଜିଲା ଯେ ବିଜିଘୋଷ ଟମକ ଦାଉଣ୍ଡି
ପ୍ରବାଳ ରଙ୍ଗକୁ ଜିଣି ରଥ ଦେଲେ ମଣ୍ଡି ।
ସେ ନଗ୍ରକୁ ଜୟ କରି ନକୁଳ ବାହାର
ଦ୍ୱିଜ ନଗରେ ପ୍ରବେଶ ପାଣ୍ଡବ ସୁନ୍ଦର ।
ପରଥାଟ ଆସିବାର ରାୟେ ବାର୍ତ୍ତା ଶୁଣି
ଯମନିକ ରାଜା କରେ ଥାଟର ପଲାଣି ।
ଅଇବ୍ରତ ରଥ ଦଶ ଅଇବ୍ରତ ହସ୍ତୀ
ଚାରିଲକ୍ଷ ଅଶ୍ୱ ପାଞ୍ଚକ୍ଷଉଣୀ ପଦାତି ।
ଯମନିକ ବୋଲିକରି ଯେଉଁ ନୃପବର
ତେଲଙ୍ଗୀ ଭାଷୀ ଅଟଇ ଜାତି ଦ୍ୱିଜବର ।
ବନସ୍ତ ଭିତରେ ଅଟେ ତା ନଗର ଗୋଟି
କାହାର ସେ ବଶ ନୁହେଁ ମହତ ରାଜାଟି ।

ନକୁଳ ପ୍ରବେଶ ହେଲା ତାହାର ନଗ୍ରରେ
ବୀର ତୂର ବାଦ୍ୟ ନାଦେ ଦଶଦିଗ ପୁରେ ।
ସାଜ ସାଜ ରହୁବର ବୀର ମୟଦତ୍ତା
ଯମନିକ ରାଜା ରଣେ ବିଷମ ଶକତା ।
ତାହାକୁ ପ୍ରସନ୍ନ ଏକବଳା ଯେ ପାର୍ବତୀ
ପରଥାଟ ବାର୍ତ୍ତା ଶୁଣି ଦେବୀଙ୍କୁ ଜଣାନ୍ତି ।
ବହୁବଳି ଦେଇ ପାଦେ ପଡ଼ିଣ ବିନୟେ
ବୋଲେ ବିଦେଶୀ ରାଜାକୁ କି କରିବା ମାୟେ
ପ୍ରସନ୍ନ ହୋଇ ବୋଇଲେ ଏକବଳା ଦେବୀ
ପରଥାଟ ହେଲେ ସିନା ତାକୁ ନିବାରିବି ।
ପାଣ୍ଡବ ପଞ୍ଚାଣ ସେହୁ ନକୁଳ କୁମାର
ଉଷବ ନିମନ୍ତେ ସେହୁ ଆସେ ତୋର ପୁର ।
ପୃଥିବୀରେ ଚାରିଉଣା ଲକ୍ଷେକ ରାଜନ
ସର୍ବେ ପାଣ୍ଡବମାନଙ୍କୁ ହେବେ ସମାଧାନ ।
ଯାହାକୁ ସହାୟ ସଦା ଅଟନ୍ତି ଶ୍ରୀବସି
ମୁହିଁ ବା ଅବଜ୍ଞା କଲେ କିସ ଭଲ ଅଛି ।
ପୁତ୍ର ବନ୍ଧୁ କୁଟୁମ୍ବାଦି ଘେନିଣ ନୃପତି
ନକୁଳ ଛାମୁକୁ ଯାଇ କରତୁ ଭକତି ।
ଦେବୀଙ୍କର ଆଜ୍ଞାମାତ୍ରେ ସେହି ନୃପବର
କୁଟୁମ୍ବାଦି ଘେନି ସଙ୍ଗେ ହୋଇଲା ବାହାର ।
ଯମନିକ ଦରଶନ କରିଲାକ ବାଟେ
ଯଦ୍ୟଗିରି ନିକଟରେ ଯାଇକରି ଭେଟେ ।
ପୁତ୍ର କୁଟୁମ୍ବାଦି ଘେନି ଦ୍ୱିଜନଗ୍ର ସ୍ୱାମୀ
ନକୁଳର ପାଦେ ଯାଇ ହେଲା ପରଣାମି ।
ଶ୍ରୀହସ୍ତେ ନକୁଳ ଦେଲେ ଅକ୍ଷତ ଯେ ଗୁଆ
ବୋଇଲେ ତୁ ଇନ୍ଦ୍ରପ୍ରସ୍ଥେ ବେଗହୋଇ ଯାଆ ।
ନକୁଳର ଆଜ୍ଞା ରାଜା ନିବେଶିଣ ଶିରେ
ସମଦଣ୍ଡ ଘେନି ବେଗେ ନବରୁ ବାହାରେ ।
ତହୁଁ ସେ ନକୁଳବୀର ଥାଟକୁ ଚଳାଇ
ପଦ୍ମନାଭ ପର୍ବତରେ ବିଜେକଲେ ଯାଇ ।
ସୈନ୍ୟ ଘେନିଣ ଉଠିଲେ ତହିଁର ଉପରେ
ଦେଖେ ଏକ ନାରାୟଣ ମନ୍ଦିର ସେଠାରେ ।
ଶିରେ ସପ୍ତଫଣା ହୃଦେ କଉସ୍ତୁଭ ମଣି
ଅନନ୍ତ ଶଯ୍ୟାରେ ନିଦ୍ରା ଦେହ ନୀଳ ଜିଣି ।
ସୀମସ୍ଥାନେ ବସିକରି ଦେବୀ ସରସ୍ୱତୀ
ସପ୍ତସ୍ୱରା ବୀଣା ଘେନି ରାଗିଣୀ କରନ୍ତି ।
ନିଦ୍ରା ଯାଇଛନ୍ତି ପ୍ରଭୁ ବ୍ରହ୍ମଯୋଗ ଲୟେ
ଚରଣ ତଳେ ଖଟନ୍ତି ସର୍ବ ଦେବତାଏ ।
ପାଦ ନଖରୁ ବହଇ ନଦୀ କୃଷ୍ଣାବେଣୀ
ପାଦ ମଞ୍ଚାଳନ୍ତି ବସି ଦେବୀ କମଳିନୀ ।
ସେ ଅନାଦିନାଥ ଯୋଗନିଦ୍ରାରେ ନିଦ୍ରିତ
ନାନା ବିଭୂଷଣେ କେତ୍ତେ ଦିଶନ୍ତି ଶୋଭିତ ।
ସ୍ୱାମୀ ଭୋଜନ ଶୟନ ତୋର ହୃଦଗତେ
ବିଷାଦ ଖଣ୍ଡଇ ପଦ୍ମନାଭ ସୁମରନ୍ତେ ।
ଜରାବସ୍ଥାରୁ ଉତ୍ପତ୍ତି ହୁଏ ସର୍ବ ବ୍ୟାଧି
ପଦ୍ମନାଭଙ୍କର ନାମ ତହିଁ ମହୌଷଧି ।
ସମସ୍ତ ରୋଗ ଖଣ୍ଡଇ ଯା ଅମୃତ ଦୃଷ୍ଟି
ଯମଦଣ୍ଡ ନିବାରଣ ତାଙ୍କ ନାମଗୋଟି ।
ନମସ୍ତେ ନମସ୍ତେ ଦେବ ଜୟ ପଦ୍ମନାଭ
ନମସ୍ତେ ନମସ୍ତେ ଦେବ ଜୟ ବାସୁଦେବ ।
ଶ୍ରୀପଦ୍ମନାଭ ଚରଣେ ସଦା ମୋର ଆଶ
ଶାରଳାଦାସ କରଇ ଚିରତେ ଅଭ୍ୟାସ ।



## ଶ୍ରୀଗିରି ପର୍ବତେ ତ୍ରେତୟା ଯୁଗର ସୁଷେଣଙ୍କ ବିବରଣ ଓ ନକୁଳର ଇଚ୍ଛାପୁର ରାଜା ସହିତ ଯୁଦ୍ଧ ଓ ତାହାର ପଳାୟନ ଏବଂ ଅନ୍ୟାନ୍ୟ ରାଜାଙ୍କ ନିମନ୍ତ୍ରଣ

କୁମ୍ଭ ଋଷିଙ୍କର ନନ୍ଦନ ବଦନ୍ତି ଅଗସ୍ତି
ପଦ୍ମନାଭ ପର୍ବତରେ ପ୍ରବେଶ ହୁଅନ୍ତି ।
ଚାରିଶତ ରାଜା ତହିଁ କଲେ ଦରଶନ
ସେ ପର୍ବତରେ ରହିଲେ ସର୍ବେ ଏକଦିନ ।
ଚାରିଶତ ନରପତି ନିମନ୍ତ୍ରଣ କରି
ଚଳିଲେ ସେ ରାଜାମାନେ ଇନ୍ଦ୍ରପ୍ରସ୍ଥ ପୁରୀ ।
ବଦନ୍ତି ଅଗସ୍ତି ତୁମ୍ଭେ ଶୁଣ ମହାଜ୍ଞାନୀ
ସେ ପର୍ବତରୁ ନକୁଳ ଗଲେ ଦଣ୍ଡଘେନି ।
ତୁଳମାସ କୃଷ୍ଣପକ୍ଷ ପୁଣି ଚନ୍ଦ୍ରବାର
ସ୍ୱାତୀ ତୁଳାରାଶି ଭୋଗ ଥିଲା ସେ ଦିନର ।
ତୈତିଳ ନାମେ କରଣ ବୈଧୃତିର ଯୋଗ
ତୁଳ ସଂକ୍ରାନ୍ତିକି ଅଷ୍ଟ ଦିବସର ଭୋଗ ।
ସେଦିନ ନକୁଳବୀର ଦଣ୍ଡକୁ ଚଳାଇ
ରୁଦ୍ରଗିରି ପରବତେ ପ୍ରବେଶିଲେ ଯାଇ ।
ବାଜଇ ଯେ ବୀରତୂର ଟମକ ନିଶାଣ
ମହୀ ହେଲରେ ଘେନଇ ଯେହ୍ନେ ବଜ୍ରବାଣ ।
ମାନଧାତା ବୋଲିକରି ନଦୀ ଏକଗୋଟି
କୃଷ୍ଣଭଦ୍ରାର ଦକ୍ଷିଣଦିଗୁଁ ସେହି ଫୁଟି ।
ସାଗର ସଙ୍ଗମ ସେହୁ ଦୁଇ ଧବଳାଙ୍ଗୀ
ସ୍ୱଚ୍ଛ ଗଭୀର ନୀର ତା ନୁହଇ କୃଶାଙ୍ଗୀ ।
ସେ ନଦୀରେ ସ୍ନାନ କରି ମାଦ୍ରୀର ନନ୍ଦନ
କାବେରୀ ରାଜ୍ୟରେ ଯାଇ ପ୍ରବେଶ ବହନ ।

ରୋହନ୍ତ ସାରଥି ବାହେ ବେଗକରି ରଥ
ବିଜେ ମାଦ୍ରୀର ନନ୍ଦନ ସେ କାବେରୀ ପ୍ରସ୍ଥ ।
କାବେରୀ ନଦୀ ହୋଇଛି ଐଶାନ୍ୟଗାମିନୀ
ସେ ନଦୀରେ ସ୍ନାନକଲେ ନକୁଳ ସଇନି ।
ବୀରତୂର ବାଦ୍ୟ ବାଜେ କରିଣ ଶବଦ
ନାନା ରାଜ୍ୟକୁ ଶୁଭିଲା ତାହାର ସେ ନାଦ ।
ବିଜୟ ନଗରବାସୀ ସମସ୍ତେ ଜାଣିଲେ
ସମଦଣ୍ଡ ଘେନି ସର୍ବ ଯୋଦ୍ଧା ଦଉଡ଼ିଲେ ।
ନକୁଳ ପ୍ରବେଶ ହେଲା ଶ୍ରୀଗିରି ପର୍ବତେ
ରାଜାଏ ଦର୍ଶନ କଲେ ଆସିଣ ସମସ୍ତେ ।
କାଞ୍ଚି ନଗ୍ରର ଆଜାନୁରାଜା ଚକ୍ରବର୍ତ୍ତୀ
ତାକୁ ଖଟଇ ପଞ୍ଚାଶ ସହସ୍ର ଯେ ହାତୀ ।
ଚାରି ଅର୍ବୁଦ ଅଟଇ ତାର ଅଶ୍ୱବଳ
ପାଞ୍ଚ ଅକ୍ଷୌହିଣୀ ଛନ୍ତି ପଦାତି କେବଳ ।
ବଡ଼ ପୁଣ୍ୟବନ୍ତ ରାଜା କାବେରୀ କୂଳରେ
ମହା ବିସ୍ତାର ରାଜ୍ୟ ତା କିଏ କହିପାରେ ।
କାଞ୍ଚି ନଗର ବୋଲିଣ ଜଗତରେ ଜାଣି
ବହଇ କାବେରୀ ନଦୀ ସମ୍ମୁଖରେ ପୁଣି ।
ଦେଶାଉର ଜଣାଇଲା ରାଜାର ଅଗ୍ରତେ
ସ୍ୱାମୀ ଶୁଣ ପରରାଷ୍ଟ୍ର ବାରତା ଏମନ୍ତେ ।
ସୋମବଂଶିକ ଅଟନ୍ତି ଯୁଧିଷ୍ଠି ନୃପତି
ତାଙ୍କ ପିତା ବ୍ରହ୍ମହତ୍ୟା ପାପ କରିଛନ୍ତି ।
ତହିଁ ପାଇଁ କରିଛନ୍ତି ରାଜସୂୟ ସଭା
ଲକ୍ଷେ ନୃପତି କରିବେ ଯାଇଁ ତାଙ୍କୁ ସେବା ।
ଆକାଶୁ ଆସିବେ ମଧ୍ୟ ସର୍ବ ବୃନ୍ଦାରକେ
ପାତାଳପୁରୁ ଆସିବେ ଦେବତାଏ ଥୋକେ ।
ନିଜେ ଯଜ୍ଞ ରଚିଛନ୍ତି ଦେବ ଜଗନ୍ନାଥେ
ଯେ ରାଜା ନ ଯିବ ନାଶହେବ ଶରାଘାତେ ।
ପଶ୍ଚିମକୁ ଭୀମସେନ ଉତ୍ତରେ ଅର୍ଜ୍ଜୁନ
ଦକ୍ଷିଣେ ନକୁଳ ପୂର୍ବେ ସହଦେବ ଜାଣ ।
ଚାରିଦିଗକୁ ଗମିଲେ ସେହି ଚାରିଭାଇ
ରାଜାମାନଙ୍କୁ ନିମନ୍ତ୍ରି ଆଣିବାର ପାଇଁ ।
ଚାରିଉଣା ଲକ୍ଷେ ରାଜା ନେବେ ସେ ନିମନ୍ତ୍ରି
ଯେ ରାଜା ଅସାଧ୍ୟ ହୁଏ ତାହାକୁ ମାରନ୍ତି ।
ସ୍ୱାମୀ ଦଣ୍ଡ ସାଜ ବେଗେ ଯଜ୍ଞସ୍ଥଳେ ଯିବା
ତୁଙ୍ଗଭଦ୍ରା ନଦୀକୂଳେ ଦର୍ଶନ କରିବା ।
ଚରଙ୍କ ବଚନେ ରାଜା ମନ୍ତ୍ରୀକି ପଚାରି
ବହୁତ କହିଲା ମନ୍ତ୍ରୀ ରାଜାଙ୍କୁ ତିଆରି ।
ସ୍ୱାମୀସୈନ୍ୟ ଘେନି ଚଳ ଶ୍ରୀଗିରି ପର୍ବତ
ରାଜ୍ୟେ ଆଣିବା ନକୁଳ କରି ପୁରୁଷାର୍ଥ ।
ଦର୍ଶନେ ପୁଣ୍ୟ ପ୍ରସନ୍ନେ ହେବ କାର୍ଯ୍ୟସିଦ୍ଧି
ଯୁଦ୍ଧକତେ ନ ଗଲେ ସ୍ୱାମୀ ହେବ ମନ୍ଦବୁଦ୍ଧି ।
ମନ୍ତ୍ରୀର ବଚନେ ରାୟେ ସାଜିଲାକ ଦଣ୍ଡ
ବାଦ୍ୟ ନାଦରେ କମ୍ପିଲା ସେ ଭୁବନଖଣ୍ଡ ।
ଦୁଇଶତ ରାଣୀ ତୁଲେ ଚାରିପୁତ୍ର ଧରି
ଶ୍ୱେତ ଅଶ୍ୱ ଆରୋହଣ କଲେ ଦଣ୍ଡଧାରୀ ।
ନୃପତି ବିଜୟ ଯାଇ ଶ୍ରୀଗିରି ପର୍ବତେ
ଆଗେ କରିଲା ଦର୍ଶନ ଶ୍ରୀମଲ୍ଲିକାନାଥେ ।
ଏହି ପରକାରେ କରି କାବେରୀର ସାଇଁ
ନକୁଳ ଛାମୁରେ ଆସି ଦର୍ଶନ କରଇ ।
ନକୁଳ ବସିଅଛନ୍ତି ସୁବର୍ଣ୍ଣ ଆସନେ
ପର୍ବତ ତଳେ ଭେଟଇ ରାଜା ତତକ୍ଷଣେ ।
ରୋହନ୍ତ ସାରଥି ଯାଇ କହେ ନକୁଳଙ୍କୁ
କାଞ୍ଚିରାଜା ଦରଶନ କରଇ ତୁମ୍ଭଙ୍କୁ ।
ବଡ଼ ପୁଣ୍ୟବନ୍ତ ରାଜା ଦକ୍ଷିଣ ପ୍ରଦେଶେ
ଲକ୍ଷ୍ମୀ ବିଜେ କରିଛନ୍ତି ପ୍ରତି ପ୍ରଜାବାସେ ।
ପୂର୍ବେ ରାଜ୍ୟ କରୁଥିଲେ ମହାନ୍ଦ୍ର ନୃପତି
ବିଷ୍ଣୁ ବଲ୍ଲଭଙ୍କୁ ସେହୁ କରଇ ଭକତି ।
କମଳାଙ୍କ ପ୍ରସାଦରେ ଅତୁଟ ଏ ରାଜ୍ୟ
ତେଣୁ ସବୁବେଳେ ଥାଏ ସେ ରାଜ୍ୟେ ଐଶ୍ୱର୍ଯ୍ୟ
ଘରେ ଘରେ କମଳିନୀ ଥାନ୍ତି ବିଜେକରି
ଅଳକା ଭୁବନ ସରି କାଞ୍ଚନଗ୍ର ପୁରୀ ।
କନକ ଘଟଣ ଅଟେ ସମସ୍ତଙ୍କ ବାସ
ସର୍ବ ଗୃହ ଶିଖେ ପୁଣି ସୁବର୍ଣ୍ଣ କଳସ ।
ନେତର ପତାକା ଉଡ଼େ ହୋଇ ଫରହର
ବିଷ୍ଣୁଭବନ ପରାୟେ ରାଜ୍ୟଟି ସୁନ୍ଦର ।
ସେ ନଗରେ ନବଲକ୍ଷ ଗୃହ ଅଛି ରହି
ପଞ୍ଚବିଂଶ ଯୋଜନ ସିନା ପାଚେରୀ ବେଢ଼ାଇ ।
ଏମନ୍ତ ଭୁବନ ମଧ୍ୟେ ମହା ପୁଣ୍ୟଭୂମି
ସତ୍ୟଯୁଗେ ଯାଗ କଲା ସେ ମହୀନ୍ଦ୍ର ସ୍ୱାମୀ ।
ପ୍ରସନ୍ନେ କାବେରୀ ନଦୀ ରାଜ୍ୟକୁ ବେଢ଼ିଛି
ଧନ ଧାନ୍ୟେ ସେ ରାଜାଙ୍କୁ କୁବେର କରିଛି ।
ରୋହନ୍ତ ବାକ୍ୟେ ନକୁଳ ହେଲା ତୋଷମନ
ତେଣୁକରି ରାଜା ପ୍ରତି ପକାଏ ନୟନ ।
ଉଠ ବୋଲି ଆଜ୍ଞାଦେଲା ମାଦ୍ରୀଦେବୀ ବାଳ
ପୁଣ ପୁଣ ପ୍ରଣମଇ ରାଜା ପାଦତଳ ।
ସର୍ବ ରାଜା ଏକ ଏକ ମୁକ୍ତାମାଳା ଘେନି
ଦେଇଥିଲେ ନକୁଳର ଯେ ପ୍ରଧାନ ସୈନି ।
ସପ୍ତସରି ମାଳା ଘେନି ଆଜାନୁନୃପତି
ନକୁଳ କଣ୍ଠେ ଲମ୍ବାଏ ହୋଇ ଶାନ୍ତ ମୂର୍ତ୍ତି ।

ମୁକୁଟ ସିନ୍ଥା ବାହୁଟି ପୁଣି ଜଗଦ୍‌ବଳା
ତାଡ଼ ଝୁମ୍ପା ସରଳ ଯେ କଣ୍ଠେ ରତ୍ନମାଳା ।
ଅନେକ ରତନ ଘେନି କାଞ୍ଚନଗ୍ର ରାଜା
ନକୁଳ କୁମରକୁ ସେ କଲା ଦିବ୍ୟ ପୂଜା ।
ସେ ମଲ୍ଲିକା ଅରଜୁନ ଦର୍ଶନ ନିମନ୍ତେ
ଶ୍ରୀରାମ ଜଙ୍ଗମ ବୋଲି ତହିଁରେ ନୃପତେ ।
ରୁଦ୍ର ଚିହ୍ନ ବହଇ ସେ ଜଟା କଷାଧାରୀ
ଶ୍ରୀହରି ପର୍ବତେ ସେହୁ କ୍ଷେତ୍ର ଅଧିକାରୀ ।
ସେ ମଲ୍ଲିକା ସ୍ୱାମୀକୁ କରଇ ଯେ ପୂଜା
ତିନିଲକ୍ଷ ଜଙ୍ଗମ ସେ ଅଟେ ରାମରାଜା ।
ରାମ ଜଙ୍ଗମ ଦେଖାଇ ଶ୍ରୀମଲ୍ଲିକାନାଥ
ପ୍ରସନ୍ନ ହୋଇ ସେ ସ୍ୱାମୀ ହୋଇଲେ ଗୁପତ ।
ସେହି ମର୍କତ ଲିଙ୍ଗରେ ବୈଦୁର୍ଯ୍ୟେ ଢାଙ୍କୁଣୀ
ଶୁଦ୍ଧ ସୁବର୍ଣ୍ଣ ଉପରେ ହୋଇଛି ଉସାଣି ।
ରାମଜଙ୍ଗମକୁ ତହିଁ ପୁଚ୍ଛିଲେ ନକୁଳ
କହ ଏହାଙ୍କ ବିଷୟ କରି ଆଦ୍ୟ ମୂଳ ।
ଶୁଣି ନକୁଳ ଅଗ୍ରତେ କହଇ ଜଙ୍ଗମ
ଦଶଶିର ରାବଣକୁ ବଧିଣ ଶ୍ରୀରାମ ।
ଏହି ଶ୍ରୀଗିରି ପର୍ବତେ ବିଜେ କଲେ ଆସି
ଏ ନଦୀକୂଳେ କଟକ କରିଲେ ସେ ବଂଶୀ ।
ଶ୍ରୀରାମଚନ୍ଦ୍ର ସୁଷେଣ ଆଣିଲେ ଡକାଇ
ବୋଇଲେ ଏଥିରେ ତୋତେ ରାଜା କରିବଇଁ
ସୁଷେଣ ବୋଲେ ନ ରୁଚେ ମୋତେ ଅନ୍ୟଭୂମି
ଅନୁବ୍ରତେ ତୋର ପାଦେ ଖଟିଥିବି ସ୍ୱାମୀ ।
ସୁଷେଣକୁ ଆଜ୍ଞା ଦେଲେ ରହ ତୁହି ଏଥେ
ଅଭିଷେକ କରାଇବି କାଲି ମୁହିଁ ତୋତେ ।
ଶ୍ରୀଗିରି ପର୍ବତରେ ଯେ ରହିଲା ସୁଷେଣ
ଶ୍ରୀରାମ ବିଜେ କରିଲେ ବିଜୟ ନଗ୍ରେଣ ।
ସ୍ୱାମୀ ହେ କଳପନଦୀ ବୋଲି ନଦୀଟିଏ
ଏଥେ ସ୍ନାନ କଲେ କଷ୍ଟେ ନ ତୁଟଇ କାୟେ ।
ସୀତାଦେବୀ ଶୁଣିଲେ ଯେ କଷ୍ଟ ମହାତମ
ନଦୀସ୍ନାନେ ବାହାରିଲେ ସୀତୟା ଶ୍ରୀରାମ ।
ବ୍ରହ୍ମା ଦେଖିଣ ବୋଇଲେ ନଦୀକି ହକାରି
ରାମ ସୀତା ଆସୁଛନ୍ତି ଏବେ ସ୍ନାନ କରି ।
ତୋ ତହିଁ ସ୍ନାନ ସେ କଲେ ହେବେ କଷ୍ଟଜୀବୀ
ଭାରା ହରଣ କେମନ୍ତେ ହୋଇବ ପୃଥିବୀ ।
ଲକ୍ଷ୍ମୀ ନାରାୟଣ ଜନ୍ମ ହୋନ୍ତି ପୁନଃ ପୁନଃ
ତେବେ ଯାଇ ଦାନବଙ୍କ ହୁଅଇ ନିଧନ ।
ଏମନ୍ତ ଅନୁଜ୍ଞା ଯହୁଁ ଦେଲା ଧାତା ସ୍ୱାମୀ
ଏ କଷ୍ଟନଦୀ ହୋଇଲା ରସାତଳଗାମୀ ।
ଶ୍ରୀରାମ ଜଙ୍ଗମ କହେ ବୀର ନକୁଳକୁ
ତେଣୁକରି ଗଙ୍ଗା ହାଦେ ଗଲା ପାତାଳକୁ ।
ଯାଇ ସୁତଳରେ ଗୋପ୍ୟ ହୋଇଲା ଜାହ୍ନବୀ
ତହୁଁ ରାଗେ ଶାପ ଦେଲେ ମା ଜାନକୀ ଦେବୀ
ମୋତେ ଦେଖି ତୁହି ଯେବେ ପଶିଲୁ ପାତାଳେ
ଗୋପନଭାଗୀ ତୁ ହୋଇଥାଅ ସଦାକାଳେ ।
ଜାନକୀ ପାଶରେ ତେଣୁ ହୋଇଲା ଅଗତି
ସୁଷେଣେ ପାଟ ଦେବାକୁ ଲୋଡ଼ିଲେକ ଏଥି ।
କୁମ୍ଭମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ
ଗୁରୁବାର ପୁନର୍ବସୁ ନକ୍ଷତ୍ର ଯେ ଜାଣ ।
ଟେଳିଳ ନାମେ କରଣ ବେଳ ଅସ୍ତଗତେ
ସୁଷେଣର ପ୍ରାଣତ୍ୟାଗ ହେଲା ଏ ପର୍ବତେ ।
ହନୁକୁ ଡାକି ବୋଇଲେ ଦେବ ଦାଶରଥି
ଅଭିଷେକର ଯୋଗାଡ଼ କର ଯା ତଡ଼ତି ।
ସ୍ୱାମୀ ଆଜ୍ଞା ଶିରେ ଧରି ଚଳଇ ପାବନି
ଶ୍ରୀଗିରି ପର୍ବତେ ହନୁ ପ୍ରବେଶ ରଜନୀ ।
ସୁଷେଣ ଯେ ବିଚାରଇ ପର୍ବତରେ ବସି
ଶ୍ରୀରାମ ସଦୟ ମୋତେ ସର୍ବ ଗୁଣରାଶି ।
ମୁହିଁ କିଷ୍କିନ୍ଧ୍ୟା ନଗରୁ ଗୋଡ଼ାଇ ଅଇଲି
ଶ୍ରୀଚରଣେ ଖଟିବାକୁ ଭାଜନ ନୋହିଲି ।
ମୋତେ ଆଜ୍ଞା ଦେଲେ ତୁହି ରାଜା ହୁଅ ଏଥେ
ସ୍ୱାମୀ ପାଦ ନ ଦେଖଇ ମୁଁ ବିର୍ତ୍ତିବି କେମନ୍ତେ ।
ଶରୀର ଛାଡ଼ି ମୋହର ପଞ୍ଚଭୂତ ଆତ୍ମା
ଏତେ ବୋଲି ନାସ୍ତିକରି ହସିଲା ମହାତ୍ମା ।
ଶ୍ରୀରାମ ବୋଲି ଶବଦେ ଏକ ଡାକଦେଲା
ପଞ୍ଚଭୂତ ଆତ୍ମାରୁ ସେ ପରାଣ ଛାଡ଼ିଲା ।
ଏହି ପର୍ବତେ ଛାଡ଼ିଲା ତାର କାୟା ଗୋଟି
ଶ୍ରୀରାମଙ୍କୁ ସୁମରି ସେ ପଡ଼େ ମହୀଲୋଟି ।
ଏମନ୍ତ ସମୟେ ହନୁ ହେଲା ଉପସ୍ଥିତ
ଦେଖିଲେ ସୁଷେଣ ମନ୍ତ୍ରୀ ହୋଇଅଛି ହତ ।
ହନୁ ଡାକଇ ଖ୍ଞଜନ ରାଜବଳା ଉଠ
କେତେ ନିଦ୍ରାଯାଉ ରାତି ପାହିବା ନିକଟ ।
ରାବଣ ଯୁଦ୍ଧରେ ତୁହି ଅନିଦ୍ରାରେ ଥିଲୁ
ସୁଖ ପାଇ ଅଚିନ୍ତାରେ ଏବେ ନିଦ୍ରାଗଲୁ ।
ପୁଣି ପଚାରଇ ହନୁ ସନ୍ନିଧକୁ ଆସି
ନ ଚଳେ ନାସିକା ବାୟୁ ନ ଦିଏ ସମ୍ଭାଷି ।
କୋଳକରି ସୁଷେଣକୁ ତୋଳେ ହନୁମନ୍ତ
ଦେଖେ ଆତ୍ମା ନାହିଁ ଯହୁଁ ରଖେ ସେ ପର୍ବତ ।
ଆହା ସୁଷେଣ ବୋଲିଣ କାନ୍ଦେ ହନୁମନ୍ତ
ବାବୁ କେଉଁ ପାପେ ହେଲୁ ତୁହି ମୃତ୍ୟୁଗତ ।

ବାବୁ ରାମ କରିଥାନ୍ତେ ତୋତେ ଅଭିଷେକ
ଏ ରାଜ୍ୟରେ ହୋଇଥାନ୍ତୁ ନୃପତି ନାୟକ ।
ଅନେକ ଜନ ମାନବେ କରୁଥାନ୍ତେ ପୂଜା
ଏବେ କାହିଁପାଇଁ ତାହା କରିଲୁ ତୁ ତେଜ୍ୟା ।
ଅନେକ ବିକଳ ଭାବେ କାନ୍ଦି ହନୁମାନ
ରାମତାରକ ମନ୍ତ୍ରକୁ କହେ ତାର କର୍ଣ୍ଣ ।
ପର୍ବତେ ଗୋଇଠା ଏକ ପ୍ରହାରିଲା ହନୁ
ତିନିତାଳ ଗଭୀରରେ ପୋତିଲା ତା ତନୁ ।
ମଲ୍ଲିକା ପୁଷ୍ପଗୁଡ଼ିଏ ଘୋଡ଼ାଇ ଉପରେ
କୃଷ୍ଣାଜିନ ଛାଲ ପି ଘୋଡ଼ାଇ ଯତ୍ନରେ ।
ଏହି ପରକାରେ ତହିଁ କରାଇ ପାବନି
ଶ୍ରୀରାମ ବିଜେ କରିଲେ ସମଦଣ୍ଡ ଘେନି ।
ଧାତିକାରେ ଉଠିଲେ ସେ ପର୍ବତ ଉପରେ
ପଦ୍ମାସନେ ବିଜେ ହେଲେ ଯାଇ ସେ ଛାଲରେ
ହନୁକୁ ଆଜ୍ଞା କରିଲେ ସୁଷେଣକୁ ଆଣ
ଏ ପର୍ବତେ ଅଭିଷେକ ମରିବା ଏକ୍ଷଣ ।
ବୀର ହନୁମନ୍ତ କହେ ଶ୍ରୀରାମ ଅଗ୍ରତେ
ସୁଷେଣ ଯେ ପ୍ରାଣତ୍ୟାଗୀ ହେଲା ଏ ପର୍ବତେ
ଲକ୍ଷ୍ମଣ ବୋଇଲେ ତାର କାହିଁ ଅଛି ଶବ
ଏହି ପର୍ବତରେ ମୁହିଁ ପୋତିଅଛି ଦେବ ।
ସୁଷେଣକୁ ଆଣ ବୋଲି ଆଜ୍ଞା ଅବଧାରି
ଲକ୍ଷ୍ମଣ ଛାମୁରେ କହେ କର ଯୋଡ଼ିକରି ।
ସ୍ୱାମୀ ରାଜା ହୋଇବାକୁ ସୁଷେଣ ଅନିଚ୍ଛା
ତୋ ଚରଣ ସେବିବାକୁ ସର୍ବଦା ତା ବାଞ୍ଛା ।
ଶ୍ରୀଗିରି ପର୍ବତେ ଅଭିଷେକ କଥା ଶୁଣି
ପ୍ରାଣ ବିସର୍ଜନ କଲା ଆଜର ରଜନୀ ।
ଶ୍ରୀରାମ ସ୍ତମ୍ଭିତ ହେଲେ ଏହି କଥା ଶୁଣି
ହା ହା ସୁଷେଣ ତୁ ମୋର ଥିଲୁ ପ୍ରାଣମଣି ।
ଲଙ୍କା ଭୁବନ ଜିଣିଲି ତୋର ଘେନି ବୁଦ୍ଧି
ଲକ୍ଷ୍ମଣର ପ୍ରାଣ ଦେଲୁ କହି ମହୌଷଧି ।
ହନୁ ହକାରି କହନ୍ତି ରଘୁକୁଳବସି
ସୁଷେଣର ମୃତପିଣ୍ଡ ଆଣ କାହିଁ ଅଛି ।
ହନୁମନ୍ତ ବୋଲେ ଦେବ ତୋ ଆସନ ତଳେ
ପ୍ରାଣ ବିସର୍ଜନ୍ତେ ତାକୁ ପୋତେ ତିନିତାଳେ ।
ହନୁମନ୍ତର ବଚନେ ରାମଚନ୍ଦ୍ର ଉଠି
ଲକ୍ଷ୍ମଣ କାଢ଼ିଲେ କୃଷ୍ଣାଜିନ ଛାଲଗୋଟି ।
ମଲ୍ଲିକା ପୁଷ୍ପଗୁଡ଼ିକ କାଢ଼େ ହନୁମାନ
ତାରକା ମନ୍ତ୍ର ପଢ଼ିଲେ ପୁଣି ରଘୁନାନ ।
ଶ୍ରୀରାମ ଚାହିଁଲେ କରି ଅମୃତର ଦୃଷ୍ଟି
ଲିଙ୍ଗେକ ବାହାର ହେଲା ପର୍ବତରୁ ଫୁଟି ।
ଦେଖିଲେ ସେ ରଘୁନାଥ ବିଜେ ମହାଶମ୍ଭୁ
ହନୁକୁ ବୋଇଲେ ଗିରି ବେଗେ ଖୋଳବାବୁ ।
ଶ୍ରୀରାମ ଆଜ୍ଞାରେ ଲିଙ୍ଗ ବେଢ଼ାଇଣ କାଟି
ଲକ୍ଷ ଯୋଜନ ପାତାଳେ ଅଛି ସେହୁ କଣ୍ଟି ।
ଦେଖିଣ ସାନନ୍ଦ ହେଲେ ରଘୁକୁଳ ନାଥ
ଶ୍ରୀରାମ ପୂଜିଲେ ତହୁଁ ସେହି ବିଶ୍ୱନାଥ ।
ହନୁ ଘୋଡ଼ାଇଣ ଥିଲା ମଲ୍ଲୀରୁ ଗୁଡ଼ାଏ
ଉପରରେ ଥିଲା କୃଷ୍ଣାଜିନ ଛାଲଟିଏ ।
ମଲ୍ଲୀଅଞ୍ଜନ ଲିଙ୍ଗେଲ ହେଲା ଉତପତ୍ତି
ଶ୍ରୀରାମ ନାମରେ ସେହି ଜଙ୍ଗମ ନୃପତି ।
ନକୁଳ ଆଗେ କହିଲା ଶାସ୍ତ୍ରର ସଙ୍ଗତି
ପାଣ୍ଡବ ସୁନ୍ଦର ଶୁଣି ହେଲା ତୋଷମତି ।
ଆବର ପୁଣ ଅଶ୍ୱିନୀକୁମାରଙ୍କ ନାନ
ଏ ମହାଲିଙ୍ଗର ନାମ ମଲ୍ଲିକା ଅର୍ଜୁନ ।
ଶ୍ରୀରାମ ଜଙ୍ଗମ କହେ ନକୁଳ ଅଗ୍ରତେ
ଖଣ୍ଡଇ ମହାପାତକ ଦୋଷ ଥାଇ ଯେତେ ।
ଜଙ୍ଗମର ବଚନରେ ସେ ନକୁଳ କ୍ଷତ୍ରୀ
ମଲ୍ଲୀକାନାଥଙ୍କୁ ବୋଲେ ଫେଡ଼ ମୋ ଦୁର୍ଗତି ।
କହନ୍ତି ଅଗସ୍ତି ମୁନି ଶୁଣ ଯୋଗେଶ୍ୱର
ନକୁଳ ପ୍ରସନ୍ନେ ନାଥ ଦେଲେ ଆସି ବର ।
ଶୁଭିଲା ଶବଦ ଥାଇ ଅଦୃଶ୍ୟ ଗଗନେ
ତ୍ରିଭୁବନ ବଳ ହୁଅ ଅଶ୍ୱିନୀର ନାନେ ।
ଯେ ଅବା ପାତକ ଥିଲା ତୋହର ଯେ ବଂଶ
ଆଜି ସେ ପାତକ ଯେବେ ଥିଲା ସର୍ବ ଧ୍ୱଂସ ।
ଏଥୁ ଅନନ୍ତରେ ଶୁଣ ନକୁଳକୁମାର
ନିଉନ୍ତ ଦିଏ ମଲ୍ଲିକାଅର୍ଜୁନ ଛାମୁର ।
ନୃପତିଙ୍କୁ ନିମନ୍ତ୍ରଣ ତହୁଁ ସେ କରଇ
ଦୁଇଶତ ଛୟାଶୋହ ରାଜା ଥିଲେ ହୋଇ ।
ସମସ୍ତଙ୍କୁ ନିମନ୍ତ୍ରିଲେ ରତ୍ନମାଳା ଦେଇ
ପୁଣି ତାହାଙ୍କୁ କହିଲେ ହୋଇଣ ବିନୟୀ ।
ରଥ ଗଜ ଅଶ୍ୱ ଆଦି ଯାର ଅଛି ଯେତେ
ଭାଇବନ୍ଧୁ ଆଦିକରି କୁଟୁମ୍ବ ସହିତେ ।
ଦେଖା ଦରଶନୀ ଧନ ଯେତେ ହୋଇପାରେ
ଯେଉଁ ରୂପେ ପୁରୁଷାର୍ଥ ପାଇବ ସଭାରେ ।
ନକୁଳ ବଚନ ଶୁଣି ସର୍ବରାଜା ତୁଷ୍ଟ
ସାଜନ୍ତି ସେ ସମଦନ୍ତ ଯେ ଯାହାର ଥାଟ ।
ବାଜିଲାକ ବୀରତୂର ଟମକର ବାଦ୍ୟ
ଆକାଶ ଉଛୁଳି ପଡ଼େ ସେ ବାଦ୍ୟର ନାଦ ।
ଯେ ଯାହାର ଯେତେ ଥିଲା ଥାଟର ପଲାଣି
ଇନ୍ଦ୍ରପ୍ରସ୍ଥକୁ ଚଳିଲେ ସର୍ବ ନୃପମଣି ।

ରାଜାମାନଙ୍କୁ ଚଳାଇ ସେ ନକୁଳ କ୍ଷତ୍ରୀ
ଦଣ୍ଡ ଘେନିଣ ହୋଇଲା ଦକ୍ଷିଣ ମୂରତି ।
ଦୁରାନ୍ତକ ବନେ ଅଛି ସୁମନ୍ତ ପର୍ବତ
ସୌଭାଗ୍ୟନଦୀ ବହଇ ତା ପଶ୍ଚିମପ୍ରସ୍ଥ ।
ଇଚ୍ଛାପୁର ବୋଲି ଅଛି ନଗର ଗୋଟିଏ
ସେ ରାଜ୍ୟର ଆୟତନ ଅଟେ ଯୁଣ ଶଏ ।
ବାମଦେବ ବୋଲିକରି ତହିଁର ନୃପତି
ବତ୍ରିଶଅର୍ବୁଦ ତାକୁ ଖଟିଥାନ୍ତି ହସ୍ତୀ ।
ଅଶ୍ୱଯୋଦ୍ଧା ପଦାତିକ ନାହିଁ ତାର କିଛି
ଶତ ପାରିଦଣ୍ଡ ତୁଲେ ରାଜ୍ୟ କରୁଅଛି ।
ସେ ବନସ୍ତ ଲଙ୍ଘି କରି ଚଳଇ ନକୁଳ
ଦଣ୍ଡ ଘେନିଣ ଚଳିଲା ସୌଭାଗୀର କୂଳ ।
ବୀରତୂର ଶବଦରେ କମ୍ପେ ମେରୁସ୍ଥଳି
ସେ ରାଜ କଟକେ ବାଦ୍ୟ ପଡ଼ଇ ଉଛୁଳି ।
ଆସ୍ଥାନେ ବାରତା ଯାଇ କହିଲା ମୁନେହି
ଶୁଣ ସାବଧାନେ ଦେବ ବାମଦେବ ସାଇଁ ।
କେଉଁ ଦେଶ ଯୋଦ୍ଧାଏକ ବହୁନଗ୍ର ଜିଣି
ବାଦ୍ୟଘୋଷର ଶବଦ ଉଲ୍‌କାପାତ ଜାଣି ।
ରାଜ୍ୟର ଭିତରେ ସେହୁ ପୂରାଇଲା ଦଣ୍ଡ
ଗରୁଡ଼ ପରାୟ ଯୋଦ୍ଧା ଅତ୍ୟନ୍ତ ପ୍ରଚଣ୍ଡ ।
ଶୁଣିଣ ନୃପତି ବହୁ କରିଲା ପ୍ରତିଜ୍ଞା
ପୁଣିହିଁ ଗର୍ଜି ଉଠିଣ କରଇ ଅବାଜ୍ଞା ।
ମନ୍ତ୍ରୀବର ବୋଲଇ ଯେ ଶୁଣ ବାମଦେବ
ବିରାମ କରିବା ହେଉ ପ୍ରତିଜ୍ଞା ସ୍ୱଭାବ ।
ବଡ଼ଇ ଗହନ ଦେବ ପଶ୍ଚିମର ସ୍ଥଳି
ରାଜାଏ ଅଛନ୍ତି ତହିଁ ମହା ମହାବଳୀ ।
ସମରେ ପ୍ରତିଜ୍ଞାବନ୍ତ ଅଟନ୍ତି ଅଭୟ
ତାଙ୍କୁ ସମ୍ମୁଖୀନ ହେବ କେବଣ କ୍ଷତ୍ରିୟ ।
ସେ ଦିଗ ସାଧ କରେ ଯା ଭାଇ ଭୀମସେନ
ଉତ୍ତରଦିଗ ଜିଣିଲା ବୀର ଅରଜୁନ ।
ଏ ନକୁଳ ଦକ୍ଷିଣକୁ କରିଲା ବିଜୟ
ରାଜୁସିଯାଗ କରନ୍ତି ଯୁଧିଷ୍ଠିର ରାୟ ।
ସମଦଣ୍ଡ ଘେନି ଚାଲ ଆମ୍ଭେମାନେ ଯିବା
ବହୁ ଗଉରବ କରି ନକୁଳେ ଆଣିବା ।
ତାର ସମ୍ମୁଖୀନ ରଣେ କେ ପାରିବ ମିଳି
ମନ୍ତ୍ରୀମୁଖୁ ଶୁଣିକରି ସେ ପ୍ରତିଜ୍ଞାଶାଳୀ ।
କମ୍ପାଇଲା ନିଜ ଅଙ୍ଗ ହୋଇ ବଇରାଗୀ
ସାଜ ସାଜ ସୈନ୍ୟ ବୋଲି ଧାଇଁଲା ସେ ବେଗି
ଆକାଶ ଉଛୁଳି ପଡ଼େ ବୀରତୂର ବାଦ୍ୟ
ସମୁଦ୍ର ଗର୍ଜନ ପ୍ରାୟ ହସ୍ତୀଙ୍କର ନାଦ ।
ପର୍ବତ ପ୍ରାୟ ଦିଶନ୍ତି ସେହି ମହାନାଗେ
ଏକଗଜେ ଆରୋହିଲା ମହାରାଜା ବେଗେ ।
ଏକଲକ୍ଷ ଯୋଦ୍ଧା ଘେନି ସଙ୍ଗେ ମହାରାୟେ
କଟକୁଁ ବାହାର ହୋଇ କରିଲା ବିଜୟେ ।
ତାହାର ଦ୍ୱାରକୁ ଆସି ଆବୋରିଲେ ସୈନି
ଛେଲା ଚକ୍ର ନାରାଚକୁ ଛନ୍ତି କରେ ଘେନି ।
ବହୁତ ପ୍ରତିଜ୍ଞା କଲେ ରାଜ ବାମଦେବ
ରାଜ୍ୟରୁ ବାହାର ହେଲା ହୋଇ ମତ୍ତଗର୍ବ ।
ଦୁଃସହ ପ୍ରତିଜ୍ଞା କରେ ସେହି ମହାରାଷ୍ଟ୍ର
ଗର୍ଜନରେ କମ୍ପମାନ ହେଲା ବଇରାଷ୍ଟ୍ର ।
କଟକେ ପଶନ୍ତି ବାମଦେବ ନୃପସାଇଁ
କାହାର ଥାଟ ଏହୁରେ ବୋଲି ପଚାରଇ ।
ନବନିଶି କୁନ୍ତ ଗଦା ଧରିଛନ୍ତି ହସ୍ତେ
ମୁଖ ଶବଦେ ପ୍ରତିଜ୍ଞା କରେ ସାମରଥେ ।
ବାମଦେବ ନୃପତିକୁ ଦେଖି ସୁରନାନ
ବୋଲନ୍ତି ଉଚ୍ଚବାଚ ତୁ କରୁ ଅକାରଣ ।
ସୋମବଂଶରେ ନୃପତି ଯୁଧିଷ୍ଠିର ରାୟେ
ରାଜୁସିଯାଗ କରିବେ ଆସି ଦେବତାଏ ।
ଦକ୍ଷିଣ ଦିଗକୁ ବିଜେ ଅର୍ଜୁନ ଅନୁଜ
ଏହି ନକୁଳ ଅଶ୍ୱିନୀକୁମାର ସାନୁଜ ।
ଦକ୍ଷିଣ ଦିଗେ ଅଇଲେ ରାଜାଙ୍କ ବରଣେ
ନିଜ ସମଦଣ୍ଡ ଘେନିଗଲେ ରଜାଗଣେ ।
ତୁହି ଏବେ ସୈନ୍ୟ ଘେନି ଆସୁ କେଉଁଅର୍ଥେ
ଭାବକୁ ଅଭାବ ତୁହି କରୁ କେଉଁମତେ ।
ଆରେ ବାମଦେବ ତୁହି ଅଟୁ ବଡ଼ମନ୍ଦ
ପ୍ରୀତିଲୋକରେ କିପାଇଁ ଉପୁଜାଉ ଦ୍ୱନ୍ଦ ।
ମୁହିଁ ବିଚାର କରୁଛି ମରିବାର ବୁଦ୍ଧି
ପାଦେ କିପାଁ ମର୍ଦ୍ଦୁଅଛୁ ଏଡ଼େକ ସମୃଦ୍ଧି ।
ଶୁଣି ପ୍ରତିଜ୍ଞା କରିଲା ବାମଦେବ ରାଜା
କୁନ୍ତ ଅସିବର ଧରି କରଇ ତରିଜା ।
ନୃପତି ଆଜ୍ଞାରେ ତହୁଁ ସକଳ ସଇନି
ବିନ୍ଧିଲେ ନାରାଚମାନ କରେ ଅସ୍ତ୍ର ଘେନି ।
ଆଗୁଆଣି ଥାଟେ ଥିଲେ ଲକ୍ଷେ ମହାଯୋଧୀ
ଅବିକ୍ଷଣ ଶରମାନ ପୂରାଇଣ ବିନ୍ଧି ।
ନାରାଚ ପଡ଼ିବା ଦେଖି ପାଣ୍ଡବଙ୍କ ବୀରେ
ସେହି ଶରରେ ବିନ୍ଧିଲେ ରାଜ ସୈନ୍ୟପରେ ।
ନକୁଳ ସଇନିଗଣେ ଅତି ବଳବନ୍ତା
ପରରାଷ୍ଟ୍ର ସୈନ୍ୟ ତାଙ୍କୁ ନୁହନ୍ତି ଗଣିତା ।
ରେରେକାର ଶବଦରେ ଦେଲେ ଘୋରରଡ଼ି
ବାମଦେବ ସଇନକୁ ପଡ଼ିଲେ ସେ ମାଡ଼ି ।

କୁନ୍ତ କୃପାଣ ଗୁରୁଜ ପୁଣି ତୀକ୍ଷ୍ଣ ଶର
ପଡ଼ି ନିକିଳଇ ରାଜା ସଇନି ଉପର ।
ଘାଏ ଘୁମାଇ ପଡ଼ିଲେ ସର୍ବେ ମୁହଁମାଡ଼ି
କାହାର କନ୍ଧ କାହାର ଶିର ପଡ଼େ ଛିଡ଼ି ।
ଚୋଖାର ଚୋଖାର ଅଶ୍ୱ ପୁଣି ମତ୍ତହସ୍ତୀ
ଶରମାନ ଗଳିଯାନ୍ତେ ଭୂମିରେ ପଡ଼ନ୍ତି ।
ଭାଜିଲେ ରାଜର ସୈନ୍ୟ ହୋଇଣ ବିମୁଖ
ଦନ୍ତରେ ତିରଣ ଧରି ବୋଲନ୍ତି ଯେ ରଖ ।
ସୈନ୍ୟଭଗ୍ନ ଦେଖି ବାମଦେବ ନରନାଥ
ଉଠେ ଦୁଇଅଇବ୍ରତ ହସ୍ତୀର ସହିତ ।
ବହୁପ୍ରତିଜ୍ଞା ଦେଖାଇ ସେହୁ ନରସାଇଁ
ଆରେ ଆରେ ବୋଲି ଗଜ ଦେଲାକ ଧୂଆଇଁ ।
ନକୁଳର ସୈନ୍ୟ ଥିଲେ ହୋଇ ଆଗୁଆଣି
ମଳୟ ବସନ୍ତ ବିନ୍ଧେ ଶର ବେଗେ ଟାଣି ।
କୁନ୍ତ ଘେନିଣ ଦୁଷ୍ମନ୍ତ ନାମେ ସେନାପତି
ବାମଦେବର ହସ୍ତୀକୁ ମାଇଲା ବିକୋତି ।
ଘାଏ ଘୁମାଇ ପଡ଼ିଲା ସେହି ମହାନାଗ
ଆରେକ ହସ୍ତୀ ଆରୋହେ ରାଜା ଯାଇ ବେଗ
ଏକ ବଜ୍ର ମୁଦ୍ଗର ନୃପତି ବୁଲାଇ
ବସନ୍ତସେନ ଉପରେ ପ୍ରହାରିଲା ନେଇ ।
ବସନ୍ତସେନ ଘୁଞ୍ଚିଣ ତାହା ଦେଲା ମେଣ୍ଟି
ପୁଣି ବାମଦେବ ରାଜା ପ୍ରହାରିଲା ଯାଠି ।
ବସନ୍ତସେନ ମେଣ୍ଟିଲା ଆଡ଼ ହୋଇକରି
ପରିଘ ଘେନି ବସନ୍ତ ରାଜାକୁ ପ୍ରହାରି ।
ରାଜା ଚଢ଼ିବା ହସ୍ତୀର ପଡ଼େ କୁମ୍ଭସ୍ଥଳେ
ଗର୍ଜିଣ ସେ ମତ୍ତନାଗ ପଡ଼ିଗଲା ତଳେ ।
ଯହୁଁ ବିରଥୀ ହୋଇଲା ରାଜା ବାମଦେବ
ଆରେକ ହସ୍ତୀ ଚଢ଼ିଲା ହୋଇ କୋପଭାବ ।
ଗୁରୁଜ ବୁଲାଇ ପିଟେ ସେ ବସନ୍ତସେନ
ଘାଏଣ ସେ ମତ୍ତନାଗ ହେଲା ଅଚେତନ ।
ବାହନବିହୀନ ହୋଇ ପଳାଏ ନୃପତି
ଆପଣା ଥାଟରେ ପଶେଲ କରି ପାଦଗତି ।
ଅଶ୍ୱେ ଅଶ୍ୱେ ଆରୋହିଣ ସେନାପତି ବେନି
ରେରେକାରରେ ଉଠିଲେ ଲାଙ୍ଗିଆକୁ ଘେନି ।
ରାଜା ପଳାଇ ଯାଆନ୍ତେ ଭାଙ୍ଗିଗଲେ ବଳ
ନକୁଳ ସଇନମାନେ କଲେ ମହାଗୋଳ ।
ପର କି ଆପଣା ବୋଲି ବାରଣ ନ ଯାଇ
ଆଦିତ୍ୟ ଦେବତା ମେରୁ ଉହାଡ଼େ ଗମଇ ।
ଅନ୍ଧାର ବେଳେ ଭାଙ୍ଗିଲା ରାଜାର ସଇନି
ଗଡ଼ରେ ପଶିଲା ଯାଇ ଭଗ୍ନବଳ ଘେନି ।

ନକୁଳ ସୈନ୍ୟ ରହିଲେ ବାହାର ଦ୍ୱାରରେ
ବସନ୍ତସେନ କହିଲା ନକୁଳ ଛାମୁରେ ।
ସ୍ୱାମୀ ଗଡ଼କୁ ବେଢ଼ିବା ଚାଲ ରାତ୍ରିକାଳେ
ନ ପୁଣ ପଳାଏ ରାଜା ପ୍ରାଣର ବିକଳେ ।
ନକୁଳ ବୋଲେ ପଳାଇ ଯିବ କେତେଦୂର
ଦକ୍ଷିଣ ଦିଗର ରାଜା ଅଟନ୍ତି ଆମ୍ଭର ।
ଯଦି ଏ ଦିଗୁଁ ପଳାଇ ଯିବ ଦୂର ହୋଇ
ଭୀମ ଠାକୁର ପଶ୍ଚିମ ଦିଗେ ଛନ୍ତି ରହି ।
ତେଣୁ ସେ ନଗର ମଧ୍ୟେ ରହିଲେ ନକୁଳ
ବରବାଦ୍ୟ ଶୁଭେ ଯେହ୍ନେ ସମୁଦ୍ରର ଗୋଳ ।
ତ୍ରାସକରି ସେହୁ ବାମଦେବ ନରପତି
ସୈନ୍ୟ ଘେନି ପଳାଇଲା ସେହି ନିଶାରାତି ।
ପୁତ୍ର ବନ୍ଧୁ କୁଟୁମ୍ବାଦି ଘେନିଣ ସମସ୍ତ
କରବୀର ପୁରେ ଯାଇ ପ୍ରବେଶ ତୁରିତ ।
କରବୀର ପୁରେ ରାଜା ଭୂମନ୍ୟୁ ନୃପତି
ତାହାର ଦୁହିତା ନାମ ଅଟେ ଭାନୁମତୀ ।
ଦୁର୍ଯ୍ୟୋଧନ ରାଜାର ସେ ଅଟେ ପାଟରାଣୀ
ସୈନ୍ୟ ଖଟଇ ତାହାକୁ ବାଇଶ କ୍ଷଉଣୀ ।
ଭୂମନ୍ୟୁ ରାଜାର ସାତ ଅଇବ୍ରତ ରଥୀ
ବାଇଶ ଅର୍ବୁଦ ପୁଣି ତାର ଅଟେ ହସ୍ତୀ ।
ଚାଳିଶ ଅର୍ବୁଦ ଅଶ୍ୱ ଅଟଇ ତାହାର
ଚବିଶକ୍ଷୌଣୀ ପଦାତି ଥାନ୍ତି ନିରନ୍ତର ।
ସାତଶତ ପାରିଦଣ୍ଡ ରାଜା ଅଧିକାରୀ
ଦକ୍ଷିଣ କୋଶଳ ରାଜା କେହି ନୁହେଁ ସରି ।
ବାମଦେବ ନରପତି ରାତ୍ରରେ ପଳାଇ
କରବୀର ପୁର ରାଜ୍ୟେ ପ୍ରବେଶିଲେ ଯାଇ ।
ଆସ୍ଥାନରେ ବସିଛନ୍ତି ନୃପତି ଭୂମନ୍ୟୁ
ଭଗ୍ନବଳ ସହ ମିଳେ ଦେବରାଜ ସୂନୁ ।
ପ୍ରଣିପାତ କରେ ଯାଇ ଆସ୍ଥାନରେ ତଳେ
ଶରଣ ଫୁକାରେ ରାଜା ପ୍ରାଣର ବିକଳେ ।
ବାମଦେବକୁ ପଚାରେ ଭୂମନ୍ୟୁ ନୃପତି
କା ଭୟେ ପଳାଇ ଆସି କରୁ ଏତେ ଭୀତି ।
କହେ ବାମଦେବ ରାଜା ହୋଇ କୃତାଞ୍ଜଳି
ସ୍ୱାମୀ କେବଣ ଦେଶର ନୃପ ମହାବଳି ।
ଅଳପ ସୈନ୍ୟ ଘେନିଣ କରେ ଦିଗବିଜେ
ବାର୍ତ୍ତା ନ ଦେଇଣ ମୋତେ ପଶିଲା ମୋ ରାଜ୍ୟେ ।
ଅନେକ ସମର ମୁହିଁ କଲି ତାର ତୁଳେ
ଶରଘାତ ନୁହେ ତାର ଶରୀରେ ପଡ଼ିଲେ ।
ମୋର ସୈନ୍ୟ ମରାଇଲି ଦେବ ଅନିମିତ୍ତେ
ଅନେକ ସେ ଯୁଦ୍ଧ କଲା ମୋହର ସହିତେ ।

ସୈନ୍ୟ ମରାଇ ପଳାଇ ଅଇଲି ମୁଁ ଏଥେ
ଶୁଣି ଭୂମନ୍ୟୁ ବୋଲନ୍ତି ତାହାକୁ ତୁରିତେ ।
କିପାଁ ତୁ ତେଜିଲୁ ରାଜ୍ୟ ଜ୍ଞାନ ତୋର ନାହିଁ
ଯେବେ ଆସିଲୁ ଏଠାକୁ ଥାଅ ସୁଖେ ରହି ।
ମୋହର ନନ୍ଦିନୀ ନାମ ଅଟେ ଭାନୁମତି
ତାହାକୁ ବିବାହ ଦେଲି କୁରୁଚକ୍ରବର୍ତ୍ତୀ ।
ଦୁର୍ଯ୍ୟୋଧନ ଯୁଧିଷ୍ଠିଙ୍କ ଅଟନ୍ତି ସାନୁଜ
ବଡ଼ ବିଚକ୍ଷଣ ପଞ୍ଚରାଜ୍ୟେ ମହାରାଜ ।
ଭୀମସେନ ବୋଲିକରି ତାହାଙ୍କ ଅନୁଜ
ତାହାଙ୍କ ସାନୁଜ ପାର୍ଥ ଇନ୍ଦ୍ରଙ୍କ ଆତ୍ମଜ ।
ଅର୍ଜ୍ଜୁନଙ୍କର ଅନୁଜ ନକୁଳ ସୁନ୍ଦର
ଜୁଆଇଁ ହୁଅନ୍ତି ମୋର ପାଣ୍ଡବ ସୋଦର ।
ପ୍ରଭାତେ ନକୁଳ ଇଚ୍ଛାପୁରର ଗଡ଼ରେ
ଦେଖିଲେ ମାନବ କେହି ନାହାନ୍ତି ସେଠାରେ ।
ନକୁଳ ସୈନ୍ୟ ବସିଲେ ଯାଇ ଗଡ଼ ମାଡ଼ି
ବିଚାରିଲେ ପଳାଇଲେ ରାଜା ଗଡ଼ ଛାଡ଼ି ।
ରାଜ୍ୟ ବାହାରେ ଦେଖନ୍ତି ନକୁଳ ସଇନ୍ୟେ
ଲେଡ଼ନ୍ତି ଗିରି କନ୍ଦର ଗହଳ ଅରଣ୍ୟେ ।
ପଚାରିନ୍ତି ମନୁଷ୍ୟଙ୍କୁ ରାଜା କାହିଁ ଅଛି
ଦିଗଭାଗ ଲୋକ ଯେହୁ ବାଟେ ଆସୁଅଛି ।
ପଥ ଅନୁସରି କରି ଗୋଡାନ୍ତି ସଇନି
କରବୀର ପୁରେ ଆସି ହେଲେ ଦଣ୍ଡ ଘେନି ।
ଡଗର ବାରତା ଦେଲା ନୃପତି ଭୂମନ୍ୟୁ
ସ୍ୱାମୀ ନଗ୍ରେ ପ୍ରବେଶିଲେ ମାଦ୍ରୀଦେବୀ ସୂନୁ ।
ନକୁଳର ଆଗମନ ବାରତାକୁ ପାଇ
କଟକେ ଭୂମନ୍ୟୁ ରାଜା ଉତ୍ସବ କରାଇ ।
ସୁବର୍ଣ୍ଣ କଳଶେ ନେଇ ପତାକା ଉଡ଼ାନ୍ତି
ଦ୍ୱାରେ ପୂର୍ଣ୍ଣକୁମ୍ଭ ରମ୍ଭାବୃକ୍ଷକୁ ରୋପନ୍ତି ।
ନଗରର ସ୍ଥାନେ ସ୍ଥାନେ ନୃତ୍ୟରଙ୍ଗ କ୍ରୀଡ଼ା
ତିନିକ୍ରୋଶ ପରିଯନ୍ତେ ପାରିଲେ ପାଏଡ଼ା ।
ନଅ ମରବୁଦ ରଥୀ ଅଶ୍ୱ ପାଞ୍ଚକୋଟି
ସମଦଣ୍ଡ ଘେନି ନୃପ ଯାଆନ୍ତି ପାଛୋଟି ।
ସମଦଣ୍ଡ ଘେନିଣ ସେ ପାଣ୍ଡବ ସୁନ୍ଦର
ସ୍ନାହାନ କରନ୍ତି କୃଷ୍ଣାବେଣୀର ଭିତର ।
କରପତ୍ର ଯୋଡ଼ିକରି କହଇ ଡଗର
ଭୂମନ୍ୟୁ ନୃପ କଟକୁଁ ହୋଇଲେ ବାହାର ।
ପାଣ୍ଡବ ସଇନି ସର୍ବେ ସ୍ନାନ କରୁଥିଲେ
ଧାଡିକାରେ ଯେ ଯାହାର ଅସ୍ତ୍ରାଦି ଧଇଲେ ।
ରଣଝଣ ଶବଦ ଯେ କରିଣ ସଇନି
ଚଢ଼ନ୍ତି ଯାନ ବାହନ ବୀରେ ଅସ୍ତ୍ର ଘେନି ।

ନକୁଳ ସୈନ୍ୟମାନଙ୍କ ଉଚ୍ଚବାଚ ଦେଖି
ଧାଡିକାରେ ଭୂମନ୍ୟୁ ଯେ ବାହନ ଉପେକ୍ଷି ।
ବେନି କରରେ ଚାମର ଧରି ମହୀପତି
ସୈନ୍ୟ ତେଜିଣ ଆସଇ କରି ପାଦଗତି ।
କିଛିଦୂର ଆସି ଶାଳବୃକ୍ଷ ମୂଳେ ରହି
ବିଚାରେ କେମନ୍ତେ ଯିବି ଆଜ୍ଞା ମୋତେ ନାହିଁ
ରାଜାର ସଙ୍ଗତେ ଥିଲେ ପଞ୍ଚାଶୀ କୁମର
ସେ ବୃକ୍ଷତଳେ ରହିଲେ ଧରିଣ ଚାମର ।
ପାତ୍ର ଅମାତ୍ୟେ ରହିଲେ ଯାଇ ଦୂରସରି
ଯେ ଯାହାର ଅନୁରୂପେ କରି ପଟୁଆରି ।
ତାହାଙ୍କ ଅନ୍ତରେ ପୁଣ ରହିଲେ ସଇନି
ରାମରାଜ୍ୟ ଛାଡ଼ିଣ ରଆସନ୍ତି ଯୁଣ ତିନି ।
ପ୍ରାତଃସ୍ନାନ ସାରି ଦେବେ ତୋଳିଲେ ଅଞ୍ଜଳି
ପୂର୍ବମୁଖେ ପ୍ରଣମିଲେ ଦେବ ଅଂଶୁମାଳି ।
ସୁବର୍ଣ୍ଣ ପିଢ଼ରେ ବସି ପୁର ଲୟ କଲେ
କୁଶହସ୍ତ ହୋଇକରି ନାମ ଉଚ୍ଚାରିଲେ ।
ମଳୟ ବସନ୍ତ ଯାଇ କରେ ନିବେଦନ
ଭୂମନ୍ୟୁ ନୃପ ଆସିଛି କରି ଦରଶନ ।
ସ୍ୱାମୀ ସେ ଅଟେ ଦକ୍ଷିଣ ଦିଗ ଚକ୍ରବର୍ତ୍ତୀ
ଆଜ୍ଞା ନୋହିବାରୁ ଦେବ ଆସି ନ ପାରନ୍ତି ।
ସୁରବର ସୁନ୍ଦର ସେ କକ୍ଷା ଜଗଜ୍ଜେଠି
ଚତୁର୍ଦ୍ଦିଗରେ ଚମକ ପଡ଼େ ନାମଗୋଟି ।
ନାମ କୀର୍ତ୍ତନ ଛାଡ଼ିଣ ବସିଲେ ପିଢ଼ାରେ
ଦକ୍ଷିଣ ମୂର୍ତ୍ତିରେ ପୁଣି ବସିଲେ କୁମରେ ।
ଭୂମନ୍ୟୁ ନରପତିକୁ କଲେ ନିରୀକ୍ଷଣ
ନ୍ୟୁଛାତି କରି ଶୁତିଲେ ପାରିଦଣ୍ଡଗଣ ।
ପୁତ୍ର ବନ୍ଧୁକୁଟୁମ୍ବାଦି ଘେନିଣ ଭୂମନ୍ୟୁ
ନ୍ୟୁଛାଳି କରି ଶୁତିଲେ ଘେନି ସର୍ବ ସୂନୁ ।
ପାଦଗତି କରି ରାଜା କଲେ ନିଉଛାଳି
ଶ୍ରମେ କର୍ଦ୍ଦମ ହୋଇଲା ଲାଗି ଭୂମି ଧୂଳି ।
ସ୍ୱାମୀ ରାଜରାଜ୍ୟେଶ୍ୱର କକ୍ଷା ଜଗଜ୍ଜେଠି
ମହିମା ଉଦ୍ଧାର ନାଥ ତୋର ନାମଗୋଟି ।
ତୁ ଶରଣ ଉଦ୍ଧାରଣ ଦେବ ମନସିଜ
ଜଗଜ୍ଜନ ମୋହନ ତୁ ପ୍ରଭୁ ଦେବରାଜ ।
ନିଉଛାଳି କରି ଯୋଡ଼େ ବେନିକର ଗୋଟି
ଗଡ଼ ଘାଲିଣ ଶୋଇଲା ସର୍ବାଙ୍ଗରେ ଲୋଟି ।
ପୁଣି ଉଭାହୋଇ ବୋଲେ ସେ ନୃପତିମଣି
ପ୍ରସନ୍ନ ନାରାୟଣ ତୁ ଦେବ ଚକ୍ରପାଣି ।
ଅନେକ ସ୍ତୁତି ବହୁତ ବିନୟରେ ବୋଲି
ସନ୍ନିଧିକୁ ଆସି ପୁଣି ଶୁଏ ଗଡ଼ଘାଲି ।

ନକୁଳ ବୋଲେ ଅନନ୍ତ ଯୁଥପତି ଚାହିଁ
ଆରେ ଭୂମନ୍ୟୁକୁ ତୋଳ ବେଗକରି ଯାଇ ।
ନକୁଳ ବାକ୍ୟେ ରଥନନ୍ତ ଚଳିଣ ତୁରିତ
ଉଠ ହେ ଭୂମନ୍ୟୁ ଆଜ୍ଞା ହୋଇଲା ତୁମ୍ଭନ୍ତ ।
ଆଜ୍ଞା ପ୍ରମାଣେ ଉଠିଲା ତହୁଁ ମହାରାୟେ
ମଥାରେ ହାତ ଦେଇଣ କହଇ ବିନୟେ ।
ନକୁଳ ବୋଇଲା କିପାଁ ଏଡ଼େକ ଭକତ
ଭାନୁମତୀଙ୍କ ପିଅର ଆମ୍ଭ ଜ୍ୟେଷ୍ଠତାତ ।
ସେ ମହାସତୀ ସାକ୍ଷାତେ ପରମା ଅପର୍ଣ୍ଣା
ହସ୍ତିନା ମଣ୍ଡନା ଆମ୍ଭ ଗଉରବୀ ସିନା ।
ସେହି ମାହେଶ୍ୱରୀଙ୍କର ଅଟ ଯେ ପିଅର
ବେଭାରେ ପିଅର ସମ ହୋଇବ ଆମ୍ଭର ।
ଆସ ଆସ ମହାରାଜା ବସ ମୋର କିତି
ନିମନ୍ତ୍ରଣ ପାଇଛ କି ରାଜସୂୟ ପ୍ରତି ।
ନକୁଳ ବଚନେ ଭାନୁମତୀର ପିଅର
ଶିରେକର ଦେଇ ବୋଲେ ବିନୟରେ ଗିର ।
ସ୍ୱାମୀ ଦ୍ୱିତୀ ନିରଞ୍ଜନ ଅଟେ ଯା ଆସ୍ଥାନ
ତହିଁ ବସିବାକୁ ମୁଁ କି ହୋଇବି ଭାଜନ ।
ଯଦି ବା ଅର୍ପଣ ମୁହିଁ କରିଛି କୁମାରୀ
ସ୍ୱାମୀ ସେବକ କି କେଭେ ହେବ ସମସରି ।
ସ୍ୱାମୀ ଯା ଆସ୍ଥାନ କଲେ ଲକ୍ଷେରଜା ଖଟି
ମୁଁ ତୋର ଦାସର ଦାସ ବୋଲି ମଣିବୁଟି ।
ମସ୍ତକରେ ହସ୍ତଦେଇ ରଜା ହେଲା ଉଭା
ନକୁଳ ମୁଖ ଦଶିଲା ଚନ୍ଦ୍ର ଜିଣି ଶୋଭା ।
ଅନେକ ରତ୍ନାଭରଣ ଅଛି ତାଙ୍କ ଅଙ୍ଗ
ଝୀନବାସ ପରିଧାନେ ଉଦୟେ ଦେବାଙ୍ଗ ।
ମାଛି ଗୋଟିଏ ଆସିଣ ଶରୀରେ ବସିଲେ
ଚନ୍ଦନ ଲେପନ ତହିଁ ବିକୃତ ପାଇଲେ ।
ସପ୍ତଦ୍ୱୀପା ପୃଥ୍ୱୀ ସେହୁ ଧରେ କୁନ୍ତମୂନେ
ଯମ ଦର୍ପଭଞ୍ଜା ଯେହୁ କେଶବ ପ୍ରସନ୍ନେ ।
ପର୍ଶୁରାମ ଦିଗବିଜେ ଶାସ୍ତ୍ରେ ଶୁଣିଥିଲୁ
ପାଣ୍ଡବଙ୍କ ଦିଗବିଜେ ପ୍ରତ୍ୟକ୍ଷ ଦେଖିଲୁ ।
ଯେଉଁମାନଙ୍କର ଥିବ ପୂର୍ବଜନ୍ମ ଭାଗ୍ୟ
ସେମାନେ ଦେଖିବେ ସିନା ରାଜସୂୟ ଯାଗ ।
ଭୂମନ୍ୟୁ ନୃପତି ସୁତେ ଚରଣେ ପ୍ରଣମି
ବୋଇଲେ ରାଜ୍ୟକୁ ଚାଲ ଏବେ ଦେବସ୍ୱାମୀ
ରାଜ୍ୟର ନରନାରୀଏ ଦେଖି ବେନି ତୋଳେ
ଧର୍ମ ଅର୍ଥ କାମ ମୋକ୍ଷ ପ୍ରାପ୍ତ ହେବେ ହେଳେ
ଏ ଜମ୍ବୁଦ୍ୱୀପ ମଧ୍ୟରେ ସଫଳ ମୋ ରାଜ୍ୟ
ସବୁ ପୁରେ ପଡ଼ିବ କି ତୁମ୍ଭ ପଦରଜ ।

ନକୁଳ ବୋଇଲେ ଆସ ଆସ ସୈନ୍ୟମାନେ
ଶଳାମାନଙ୍କ ବଚନ ଭାଙ୍ଗିବା କେସନେ ।
ରଥ ଗଜ ଅଶ୍ୱ ପୁଣି ସମସ୍ତ ପଦାତି
ରାଜ୍ୟ ତେଜି କଟକରେ ସମ୍ଭାରେ ପଶନ୍ତି ।
ଦାଣ୍ଡେପାଡ଼ିଥିଲା ରାଜା ପାଏତା ତ୍ରିକୋଶ
ନାନା ଉପହାର ବାଢ଼ିଥିଲା ରତ୍ନକୋଷ ।
ମୁଗ ବିରି ଚାଉଳ ଯେ ପରିବା ବହୁତ
ଦାଣ୍ଡେ କୁଢ଼ କୁଢ଼ ହୋଇଥିଲା ସେ ସମସ୍ତ ।
ଚହଳ ଗୋଳ ଧନ୍ଦୋଳ ହୋଇଲା ଦାଣ୍ଡର
ପାଦଗତିରେ ରତନ ସବୁ ହୁଏ ଚୂର ।
ସୈନ୍ୟଙ୍କ ଗତିରେ ଶୂନ୍ୟେ ଉଡ଼ିଯାଏ ଧୂଳି
ଆକାଶେ ମୂର୍ଚ୍ଛନା ମାତ୍ର ଦିଶେ ଅଂଶୁମାଳି ।
ଇନ୍ଦ୍ର ବିଜେ କଲେ ଯେହ୍ନେ ମଞ୍ଚକୁ ଅପୂର୍ବ
ତେମନ୍ତ ଦେଖନ୍ତି ନରେ କାହିଁ ନାହିଁ ଠାବ ।
ବିଜୟେ ଭୂମନ୍ୟୁ କରେ ଚାମରକୁ ଧରି
କୁମରଙ୍କ ତୁଳେ ଢାଳେ ଆନନ୍ଦେ ଉଭାରି ।
କରବୀର ଗଡ଼େ ଯାଇ ପଶନ୍ତେ ଶୋଭଇ
ମଦନାର ନନ୍ଦନ ଯେ ତ୍ରୈଲୋକ୍ୟ ମୋହଇ ।
ପ୍ରବେଶ ହୋଇଲେ ଯାଇ ଆସ୍ଥାନ ଉପରେ
ଖଟନ୍ତି ସେ ବିଳାସିନୀ ତାଣ୍ଡବ ସମ୍ଭାରେ ।
ଦେବାସନ ପ୍ରାୟେ ଦିଶେ ଜଗତୀ ଆସନ
ଅଳକା ଭୁବନ ପ୍ରାୟ ଦିଶଇ ଶୋଭନ ।
ପବିତ୍ର ବ୍ରାହ୍ମଣମାନେ କରନ୍ତି ରନ୍ଧନ
ଅମୃତ ଷଡ଼ରସରେ ପାକର ବିଧାନ ।
ଶୀତଳ ଯୋଗାଡ଼ କଲେ ଦିବ୍ୟ ନିତିପ୍ରତି
ମର୍ଦ୍ଦନକୁ ବିଜେକଲା ସେ ନକୁଳ କ୍ଷତ୍ରୀ ।
ସୁବାସିତ ଶୀତଳ ଯେ ପନୀରର ପାଣି
ବେଣୀଭଦ୍ରା ନଦୀଜଳ ମିଶାବନ୍ତି ଆଣି ।
ତହିଁରେ ସ୍ନାହାନସାରି ବିଜୟେ ଆସ୍ଥାନେ
ଢାଳନ୍ତି ଚାମର ଘେନି ରାଜପୁତ୍ରମାନେ ।
କେଶ ଶୁଖାଇ ଦ୍ୱାଦଶ ବର୍ଣ୍ଣେ ବାନ୍ଧି ଗଭା
ସଜାଡ଼ୁ ଅଛନ୍ତି ଗଭା ପରମ ବୈଷ୍ଣବା ।
କୁମର ବିଜୟ କଲେ ମଣୋହି ଭୁବନେ
ସମ୍ଭାରେ ବସିଲେ ପୁଣି ସର୍ବ ସୈନ୍ୟମାନେ ।
ସୁବର୍ଣ୍ଣ ପଲ୍ୟଙ୍କମାନ ନାନାଦି ପ୍ରକାର
ସର୍ବ ସୈନ୍ୟଙ୍କର ପିଢ଼ା ଅଟେ ସୁବର୍ଣ୍ଣର ।
ସର୍ବ ସୈନ୍ୟଙ୍କୁ ସୁବର୍ଣ୍ଣ ଥାଳି ରୂପା ଖୁରି
ଜଣ ଜଣକେ ପାଇଲେ ସୁବର୍ଣ୍ଣର ଝରୀ ।
ବ୍ରାହ୍ମଣେ ପରଷନ୍ତି ଯେ ସୁଧା ପାକମାନ
ହରଷେ ସର୍ବ ସଇନି କରନ୍ତି ଭୋଜନ ।

ଗୋରସ ଯୋଗାଡ଼ଫଳ ପିଠା ଦ୍ରବ୍ୟମାନ
ତୃପତ ଭାବ ହୋଇଲା ସମସ୍ତଙ୍କ ମନ ।
ଭୁଞ୍ଜିଣ ତୃପତ ହୋଇ ସମସ୍ତ ସଇନି
ଆଚମନ କଲେ ସେହି ସୁନା ଝରୀ ଘେନି ।
କର୍ପୂର ତାମ୍ବୁଳ ଆଦି ଭୁଞ୍ଜି କୁତୂହଳେ
ବିଜେ ବାରଣ ବାଙ୍କିଆ ଉପରେ ନକୁଳେ ।
ଆଲଟ ଚାମରମାନ ଢ଼ାଳୁଛନ୍ତି ନିତି
ଭାନୁମତୀର କୁଟୁମ୍ବ ବେଢ଼ିଣ ଦେଖନ୍ତି ।
ବୀଣା ବଂଶୀସ୍ୱନ ଗୁଣା ଆବର ଅର୍ଧଟି
ପଟ୍ଟକୁଣ୍ଡଳୀ ତାର ଯେ ଫରହରେ ଖଟି ।
ହରଷ ବଦନେ ପୁଚ୍ଛା କରିଣ ନକୁଳେ
ଇଚ୍ଛାପୁରର ରାଜାଙ୍କୁ ଦେଖନ୍ତି ଏ ସ୍ଥଳେ ।
ଭୂମନ୍ୟୁର ପୁତ୍ରମାନେ ହୋଇ ପରଣାମି
ଇଚ୍ଛାପୁର ରାଜା ଦେଖା କରୁଅଛି ସ୍ୱାମୀ ।
ଜଗତୀର ତଳେ ରାଜା ଦନ୍ତେ କୁଟା ଘେନି
ସହସ୍ରେ ଭାର ଆଣିଛି ଦେଖା ଦରଶନୀ ।
ବିନୟ କରି ଶରଣ ମାଗେ ଦେବସ୍ୱାମୀ
ନକୁଳେ ଚାହାନ୍ତେ ରଜା ହେଲା ପରଣାମି ।
ନକୁଳ ଆଜ୍ଞା କରିଲେ ଭୂମନ୍ୟୁ ନୃପଙ୍କୁ
ବାମଦେବ ନୃପତିକି ଆଣ ଉପରକୁ ।
ଅକାରଣେ ନଷ୍ଟ ହେଲୁ ଆହେ ବାମଦେବ
ସୈନ୍ୟ ମଧ ନାଶଗଲେ ନ ଜାଣିଲୁ ଭାବ ।
ଶୁଣି ବାମଦେବ ପାଦେ ହେଲା ପରଣାମି
ବହୁ ଅପରାଧ କଲି କ୍ଷମ ଦେବ ସ୍ୱାମୀ ।
ନକୁଳ ବୋଇଲେ ମୁହିଁ ନୁହେଁ ତୁମ୍ଭ ଦୋଷୀ
ଆମ୍ଭେ ଆସିନାହୁଁ ଜାଣ ତୋର ଧନ ନାଶି ।
ଭୋଜନ ଅକ୍ଷତ ଦେବୁ ଅପାରୁ ଅପାର
ଷୋଳ ଦିନଯାଏ ତହିଁ ପାଇବ ସମ୍ଭାର ।
ଯେ ଯାହାର ଅନୁରୂପେ କରିବୁ ଗୌରବ
ବହୁ କଉତୁକ ପୁଣି ମହିମା ଦେଖିବ ।
ଆକାଶର ଦେବତାଏ ତହିଁକି ଆସିବେ
ଆବର ଯେ ନାଗରାଜା ସେଠାରେ ମିଳିବେ ।
ଏହି ମହିମା ଦେଖିଲେ ପାପ ହୁଏ କ୍ଷୟେ
ଲକ୍ଷେ ରାଜାଙ୍କ ମିଳନେ ହେବ ବିଷ୍ଣୁ ମୟେ ।
ପୃଥିବୀ ମଧରେ ହେଲେ ଲକ୍ଷେକ ନୃପତି
ଯେଉଁ ରଜାର ଯେତେକ ସଇନା ପଦାତି ।
ଉତ୍ସବ ଯାତ୍ରା ହୋଇବ ସଭାରେ ମଙ୍ଗଳେ
ସେ ପୁଣ୍ୟକ୍ଷେତ୍ରକୁ ଗଲେ ପୁଣ୍ୟଫଳ ଫଳେ ।
ଏଡ଼େ ସୁଲଭକୁ ଘେନି ଆସିଥିଲୁ ଆମ୍ଭେ
କାଳେ ନ ଜାଣିଣ ଦ୍ୱନ୍ଦ୍ୱ କରିଅଛ ତୁମ୍ଭେ ।
ଜରାସନ୍ଧ ନେଲା ତୋତେ କରିଣ ବନ୍ଧନ
ଅଶ୍ୱିନୀ ଦୁର୍ଗାଷ୍ଟମୀରେ ଦ୍ୟନ୍ତା ବଳିଦାନ ।
କୃଷ୍ଣାର୍ଜୁନ ଭୀମ ତହିଁ ହୋଇଲେ ପ୍ରବେଶ
ସଂସାର ହିତେ ଜରାକୁ କରିଲେ ବିନାଶ ।
ବଡଦୁଷ୍ଟ ତୁହି ତୋର ଅଟେ ମନ୍ଦପଣ
ମରଣୁ ଉଦ୍ଧାର କଲୁ ପାସୋରିଣ ଗୁଣ ।
ଯେଉଁ ଯଜ୍ଞ ପାଇଁ ଆମ୍ଭେ କରିଥିଲୁ ରକ୍ଷା
ସେହି ଯଜ୍ଞେ ଯିବାପାଇଁ କରିଲୁ ତୁ କକ୍ଷା ।
ବାମଦେବ ବୋଲେ ଦେବ ଯେତେକଥା କହୁ
ବୋଇଲେ କରିବୁ କୋପକୁ ଯେ ମହାବାହୁ ।
ସ୍ୱାମୀ ବାଳୁତ ବୟସେ ବାଳକର ବୁଦ୍ଧି
ବାର୍ତ୍ତା ନ ଦେଇ ଆମ୍ଭଙ୍କୁ କରୁ ଅପରାଧୀ ।
ବାରତା ନ ଦେଇ ରାଜ୍ୟେ ପଶୁ ଅନିମିତ୍ତେ
ଅନେକ ବିବାଦେ ବସୁ ଆମ୍ଭେ ଯେ ସମସ୍ତେ ।
ପରଥାଟ କଲି ମୁହିଁ ମହାଯୁଦ୍ଧ କଲି
ଅଜ୍ଞାନପଣରେ ମୁହିଁ ନିଜେ ନାଶଗଲି ।
ନକୁଳ ବୋଇଲା ତୁହି ନାନାକଥା କହି
ବିଳମ୍ବ କରିବୁ ସିନା ନ ପାରିବି ରହି ।
ଏହା କହି ନିମନ୍ତ୍ରଣ ଦେଲେ ନୃପତିକି
ଭୋ ପିତା ଯଜ୍ଞେ ଅଇଲି ତୁମ୍ଭର ତହିଁକି ।
ଏ ନିକଟେ ରହିଛନ୍ତି ଯେତେ ରାଜ୍ୟମାନ
ସମସ୍ତଙ୍କୁ ନିମନ୍ତ୍ରିଣ ଅଣାଅ ବହନ ।
ନକୁଳ ବଚନ ଶୁଣି ଭୂମନ୍ୟୁ ନୃପତି
ଶ୍ରୀମୁଖ ଦେଇ ରାଜାଙ୍କୁ ଅଣାଏ ତଡ଼ତି ।
ଉଡ଼ଙ୍ଗ ଚୂଡ଼ଙ୍ଗ ପୁଣି ନେପାଳ ଭୂପାଳ
ସଉନିକ କଉନିକ ଡାହାଳ ବେଲାଳ ।
ଚୌର ଚିର ମାନଭର ବିଷ୍ଣୁ ଯେ ମଣ୍ଡଳ
ଦକ୍ଷିଣ କୋଶଳେ ଥିଲେ ଯେତେ ମହୀପାଳ ।
ସିନ୍ଧୁକୂଳ ଯାଏ ଥିଲେ ଯେତେକ ନୃପତି
ସେଠାରେ ଗଲେ ନକୁଳ ସବୁଙ୍କୁ ନିମନ୍ତ୍ରି ।
ଜୟ ଜୟ ଜଗନ୍ନାଥ କମଳାର ମୁଖ
ମୋ ଗୁହାରି ଶୁଣ ପ୍ରଭୁ ମୁଁ ଅଟେ ନିରେଖ ।
ଶାସ୍ତ୍ରେ ଜ୍ଞାନ ନାହିଁ କିବା ନାହିଁ ମନ୍ତ୍ରବଳ
ଅନ୍ଧବିଶ୍ୱାସ ମୋହର ଅଛଇ କେବଳ ।
ଆହେ ମହାବାହୁ ଘେନି ଏ ଦୀନ ଆରତ
ପଚିଶ ପ୍ରକୃତି ମୋତେ କଲେଣି ବ୍ୟଥିତ ।
ତୁମ୍ଭ ନାମ ଜପିବାକୁ ନ ଦିଅନ୍ତି ବେଳ
ସବୁବେଳେ କରୁଥାନ୍ତି ମନକୁ ଆକୁଳ ।
ତେଣୁକରି ତୁମ୍ଭ ପାଦେ ଚିତ୍ତ ନ ରହଇ
ଭବସାଗରୁ ତରିବା ବାଟ ନ ଦିଶଇ ।

ସେଥିପାଇଁ ନିବେଦନ ଘେନ ଆହେ ହରି
ଚକ୍ରରେ ଛେଦନ କର ସେ ସର୍ବ ଅଇରି ।
ନିଶ୍ଚଳ କରାଇ ଦିଅ ଜପୁ ମୋ ରସନା
ଶାରଳାଦାସ ସର୍ବଅଦା କରେ ଏ କାମନା ।



## ଦଣ୍ଡପା ନୃପତି ଓ ସୁବଳଗିରିରେ ଗୋରେଖ ସହିତ ଭେଟ ହୋଇ ସେମାନଙ୍କୁ ନିମନ୍ତ୍ରଣ ଦେଇ ନକୁଳର ହସ୍ତିନା ପ୍ରତ୍ୟାଗମନ

ଅଗସ୍ତିଙ୍କୁ ପଚାରିଲେ ବିଲଙ୍କା ରାଜନ
ବାମଦେବଙ୍କୁ ନକୁଳ କଲେ କ୍ଷମାଦାନ ।
ତହିଁ ଉତ୍ତାରୁ କରିଲେ କେବଣ କୌତୁକ
ସେହି କଥା କହ ମୋତେ ହେ ମୁନିନାୟକ ।
କହନ୍ତି ଅଗସ୍ତି ଶୁଣ ବିଲଙ୍କ ନୃପତି
ନକୁଳର ବାଣୀ ଅଟେ ଅଲୌକିତ ଅତି ।
ଶ୍ୟାମଦୀର୍ଘ ବୋଲିକରି ଗୋଟିଏ ନଗର
ତହିଁ ପ୍ରବେଶ ହୋଇଲା ନକୁଳକୁମାର ।
ସେହି ଦେଶର ନୃପତି ଶତ୍ରୁଘନ ରାଜା
ଅରୁଣସେନ ରାଜାର ଅଟଇ ତନୁଜା ।
ସେତୁବନ୍ଧ ସୁବଳୟା ଅଧିକାର ତାର
ଶ୍ରୀରାମଚନ୍ଦ୍ରଙ୍କୁ ସେହୁ ସେବେ ନିରନ୍ତର ।
ସେତୁବନ୍ଧ ରାଜା ଅଟେ ଅଙ୍ଗଦକୁମାର
ତାହାର ବଂଶ ସମ୍ଭୁତ ଶତ୍ରୁଘନ ବୀର ।
ଅଙ୍ଗଦସେନ ନନ୍ଦନ ଅଙ୍ଗଦନୃପତି
କନ୍ଦୁର ବୋଲି କରିଣ ଏହାର ସନ୍ତତି ।
ଏହାର ନନ୍ଦନ ନାମ କୌଶିକ ନୃପତି
କୁଳମକର ବୋଲିଣ ଏହାର ସନ୍ତତି ।
ମଳୟସେନ ବୋଲିଣ ଜାତ ହେଲା ବାଳ
ତା ନନ୍ଦନ ମନମଥ ନାମେ ମହୀପାଳ ।
ମନମଥ ସୁତ ଶତ୍ରୁଜିତ ନରପତି
ବେଳା ବନରେ ଏକାଙ୍ଗ ଅଟେ ଚକ୍ରବର୍ତ୍ତୀ ।
ସେହି ସେତୁବନ୍ଧ ରାଜ୍ୟେ ନକୁଳ ପ୍ରବେଶ
ଦୃମନଗିରି ଶିଖରେ ବାଜେ ବିଜିଘୋଷ ।
ବାଦ୍ୟ ଶୁଣି ପୁଚ୍ଛେ ଶତ୍ରୁଜିତ ନରପତି
କାହାର ଏ ଥାଟ ତୁ ଚହା ବୁଝ ଯାଇ ମନ୍ତ୍ରୀ ।
ରାଜାର ଆଗରେ ମନ୍ତ୍ରୀ କହେ ପାରିଦଣ୍ଡେ
କେବଣ ରାଜାର ଥାଟ ଦେଖ ଯାଇ ଚାଣ୍ଡେ ।
ମନ୍ତ୍ରୀଙ୍କର ବଚନରେ ଭୂୟାଁ ରାଜଗଣ
ଚାରିଲକ୍ଷ ଯୋଦ୍ଧା ଗଲେ ଘେନିଣ କୃପାଣ ।

ଦେଖିଲେ ଦୃମନ ଗିରି ଶିଖେ ଥାଟ ଅଛି
ରେ ରେକାର ମୁଖରୋବ କେବଳ ଶୁଭୁଛି ।
ସୈନ୍ୟ ବେଢ଼ିଲେ ସେ ଗିରି ଶତେପୁର କରି
ରେରେକାର ଶବଦଙ୍କୁ ମୁଖରେ ଉଚ୍ଚାରି ।
କାହିଁର ରେ ବୋଲି ଉଚ୍ଚେ ଶବଦେକ ହାଙ୍କି
କରନ୍ତି ଯେ ସିଂହନାଦ ହେମାଳନ୍ତି ଡାକି ।
ପର୍ବତେ ଥାଇ ଦେଖନ୍ତି ନକୁଳ ସଇନି
ଉଚ୍ଚବାଚ ହେଉ ହେଉ ପାହିଲା ରଜନୀ ।
ନକୁଳ ବୋଇଲା ଆରେ ଓହ୍ଲାଅ ପର୍ବତୁଁ
ବସନ୍ତ ସେନାପତିକି କହିଲା କହ ତୁ ।
ପାଣ୍ଡବଙ୍କର ଆକ୍ରମେ ସେନାପତି ବେନି
ପର୍ବତରୁ ଓହ୍ଲାଇଲେ କିରୀଟିକି ଘେନି ।
ଶତ୍ରୁଜିତର ସଇନି ନାରାଚ ପେଷନ୍ତି
ଯୁଦ୍ଧ ଦେଖି ସେନାପତି ତେଜ ବିକାଶନ୍ତି ।
ଅସିପତ୍ର ବୁଲାଇଣ ପଡ଼ିଲେକ ମାଡ଼ି
ପଳାଇଗଲେ କିଙ୍କରେ ନିଜଦର୍ପ ଛାଡ଼ି ।
ରହ ରହ ମହାବଳ ଡାକେ ମନ୍ତ୍ରୀବର
ରହି ତପସ୍ୟା କରରେ କିପାଁ ଯାଅ ଖର ।
ସମ୍ବୋଧନ କରି ତାଙ୍କୁ କହେ ଜ୍ଞାନମନ୍ତ୍ରୀ
ସମାର୍ଜ୍ଜନା ବଚନରେ ରହି ସେନାପତି ।
ବୋଇଲେ ତୁମ୍ଭ ରାଜାକୁ ବାର୍ତ୍ତା କହ ଯାଇ
ନକୁଳ ଯୁଧିଷ୍ଠିରଙ୍କ ଅଟେ ସାନଭାଇ ।
ଆଜ୍ଞା ପ୍ରମାଣେ ଦକ୍ଷିଣ ଦିଗକୁ ବରଣେ
ରାଜସୂୟ ଅର୍ଥେ ଆସନ୍ତି ରାଜା ନିମନ୍ତ୍ରଣେ ।
ଦଣ୍ଡଘେନି ଯିବେ ଏହି ଦିଗେ ଯେତେ ରାଜା
ଯୁଧିଷ୍ଠି ଦେବଙ୍କୁ ଯାଇ କରିବେ ସେ ପୂଜା ।
ଶୁଣି କୋପାନଳ ହେଲେ ସେ କିଙ୍କରମାନେ
ଶ୍ରୀରାମ ବିନା ନ ଜାଣୁ ଆମ୍ଭମାନେ ଆନେ ।
ଜୀବନକୁ ତୁମ୍ଭରରେ ଯେବେ ଅଛି ଆଶ
ଶତ୍ରୁଜିତ ଆଜ୍ଞା ତୁମ୍ଭେ ରଜ୍ୟରେ ନ ପଶ ।
ପ୍ରତିଜ୍ଞା କରିଣ ସେହି ତର୍ଜ୍ଜନ୍ତି ଗର୍ଜ୍ଜନ୍ତି
ଶାଳ ଶିଳ କରେ ଧରି ଆକ୍ରୋଶେ ରହନ୍ତି ।
ସେ ସର୍ବ ସୈନ୍ୟ ଅଟନ୍ତି ଯେଣୁ କାମରୂପୀ
କ୍ଷଣକେ ଅଦୃଶ୍ୟ କ୍ଷଣେ ଗଗନରେ ବ୍ୟାପି ।
ଅନ୍ତରୀକ୍ଷରେ ବୁଲାଉ ପ୍ରହାରନ୍ତି ଶିଳ
କ୍ଷଣକେ ମହାମୂରତି କ୍ଷଣକେ କଟାଳ ।
ତାହା ଦେଖି କୋପକଲେ ନକୁଳ ସଇନି
ଗର୍ଜ୍ଜିଣ ଉଠିଲେ ସର୍ବେ କରି ମହାଧ୍ୱନି ।
କୋନ୍ତ ଖଡ଼ଗ ନାରାଚ ପୁଣି ତୀକ୍ଷ୍ଣ ମୁନା
ଘେନି ସମରେ ଧାମନ୍ତି ବଡ ବଡ଼ ସେନା ।

ମୁଖରାବ ଶବଦରେ କଲେ ଗୁଣ ଘୃଷ୍ଟି
ମହା ବିଶ୍ୱମୂର୍ତ୍ତି ହୋଇ ଯାବଡ୍ରୋକ୍ତ ଉଠି ।
ଧର ଧର ମାର ମାର ଦିଅନ୍ତି ବୋବାଳି
ଚରଣ ଆଘାତେ କମ୍ପି ଉଠେ ମହୀସ୍ଥଳୀ ।
ସେହି ଦୁଃସହ ପ୍ରତିଜ୍ଞା କହିତ ନ ପାରି
ଅହୋବଳ ଅନ୍ୟ ଅନ୍ୟ ଅସ୍ତ୍ର ମରାମରି ।
ଝଲକେ ଲାଙ୍ଗିଆ କୋନ୍ତ ମୁଦୁଗର ଯଷ୍ଟି
ଗୁରୁଜ ପରିଘ ଅସି ଘେନି ପିଟା ପିଟି ।
ପାଣ୍ଡବ ସୈନ୍ୟ ଉଠିଲେ ହୋଇ ଗଳଗାଜି
କିଙ୍କର ସଇନିଗଣ ପଳାଇଲେ ଭାଜି ।
ମହାପ୍ରତାପୀ ମଳୟବସନ୍ତ ସେ ବେନି
ଗୋଡ଼ାଇ ପ୍ରହାର କଲେ କିଙ୍କର ସଇନି ।
ଅକୂପାରର କୂଳକୁ ପଳାନ୍ତି ସମସ୍ତେ
ଭଗ୍ନବଳ ଯାଇ କହେ ରାଜାର ଅଗ୍ରତେ ।
ଶୁଣ ସାବଧାନେ ଶତ୍ରୁଜିତ ଦଣ୍ଡଧାରୀ
ଅଦଭୂତେ ସୈନ୍ୟତୋର ଗଲେ ପ୍ରେତପୁରୀ ।
ବଡ଼ ଦୁରାପଦ ଦେବ କେଉଁ ଦେଶ ରାୟେ
ଶାଳଶୀଳ ପର୍ବତରେ ନ ହୋଇଲେ କ୍ଷୟେ ।
ସଂଗ୍ରାମରେ ତୋର ସୈନ୍ୟ ପାଇଲେ ଯେ ଦୁଃଖ
ଶସ୍ତ୍ର ନ ଭେଦଇ ଅଙ୍ଗେ ହୋଇଲେ ବିମୁଖ ।
ଅଦଭୂତେ ତୋ ସମସ୍ତ ସୈନ୍ୟ ନାଶଗଲେ
ଯୋଜନେକ ପରିଯନ୍ତେ ପାଏଡା ପାଡ଼ିଲେ ।
ସଇନିଙ୍କ କଷ୍ଟ ଦେଖି ନୃପ ଶତ୍ରୁଜିତ
ଶାର୍ଦ୍ଦୁଳେକ ଚଢ଼ି ସେହୁ ବାହାରେ ତ୍ୱରିତ ।
ହସ୍ତେ ଏକ କାଳଚକ୍ର ଧରି ନୃପମଣି
କୋପେ ଗର୍ଜନ କରଇ କାଳସର୍ପ ଜାଣି ।
ସମରେ ପ୍ରବେଶ ହେଲା ହୋଇ କୋପମୂର୍ତ୍ତି
ଦୂରୁ ଦେଖିଲେ ନକୁଳବୀର ମହାକ୍ଷତ୍ରୀ ।
ମଳୟ ବସନ୍ତ ବେନି ସେନାପତି ରାଇ
ବୋଇଲେ ରାଜାଛାମୁରେ ଓଗାଳ ହେ ଯାଇ ।
ଆଜ୍ଞା ପାଇ ମହାବଳ ଦୁଇ ସେନାପତି
ସୈନ୍ୟବଳ ଘେନିଆଗେ ଓଗାଳିଲେ ଧାତି ।
କରେ କାଳଚକ୍ର ଘେନି ବୀର ଶତ୍ରୁଜିତ
ବସନ୍ତସେନ ଉପରେ ପିଟେ ବଜ୍ରପାତ ।
କାଳଚକ୍ର ଘାତେ ସେନାପତି ମହାବଳୀ
ଅସାଷ୍ଟମରେ ବସନ୍ତ ପଡ଼ିଲାକ ଢଳି ।
ବସନ୍ତସେନ ବିଚ୍ଛେଦେ ସେ ମଳୟ ବୀର
ମୁଦ୍‌ଗର ବୁଲାଇ ଧାଏଁ ହୋଇ କୋପଭର ।
ଶତ୍ରୁଜିତର ଉପରେ ପ୍ରହାରିଲେ କୋପେ
ପଡ଼ିଣ ଶାର୍ଦ୍ଦୁଳ ତଳେ ଲୋଟିଲା ତା ଦର୍ପେ ।

ବାହନବିହୀନ ହୋଇ ଘୁଞ୍ଚେ ଶତ୍ରୁଜିତ
ପଛରେ ଗୋଡ଼ାଇ ଧରେ ମଳୟ ବସନ୍ତ ।
କେଶ ଧରିଣ ଉଛୁଡ଼ି ଆଣେ କୋପଚିତ୍ତେ
ଦୂରେ ଥାଇଣ ଦେଖଇଲା ଅଶ୍ୱିନୀର ସୁତେ ।
ରହ ରହ ବୋଲି ତାକୁ କରନ୍ତେ ବାରଣ
ନକୁଳ ବଚନେ ରକ୍ଷା ପାଏ ନୃପରାଣ ।
ବିକଳ ହୋଇଣ ତହୁଁ ପୁଚ୍ଛେ ଶତ୍ରୁଜିତ
ସ୍ୱାମୀ କେଉଁ ଦେଶର ତୁ ଅଟୁ ବଳବନ୍ତ ।
ଅଦଭୂତେ ଆସିଲୁ ତୁ ମୋହର ରାଜ୍ୟକୁ
ଅନିମିତ୍ତେ ମାଇଲୁ ମୋ ଅନେକ ସୈନ୍ୟଙ୍କୁ ।
ତୋହର ଶତ୍ରୁତ ମୁହିଁ ନୁହେଁ କେଉଁକାଳେ
ବଡ଼ ଅପଚୟ ମୋର କର୍ମର ଅବଳେ ।
ନକୁଳ ବୋଇଲେ ଆରେ ମୂଢ଼ ମନ୍ଦମତି
ଦେଶାନ୍ତରେ ବାର୍ତ୍ତା ତୋତେ ଦେଉକି ନାହାନ୍ତି
ମୁହିଁ ପାଣ୍ଡବ ଅଭୟ ଅଟେ ସୋମବଂଶୀ
ମୋ ନାମ ନକୁଳ ଏହି ଦିଗବିଜେ ଆସି ।
ତିନିସହସ୍ର ରାଜା ମୁଁ ନେବଇଁ ନିମନ୍ତି
ରାଜସୂୟ ଯାଗକୁ ତୁ ଚଳ ହୋ ତଡ଼ତି ।
ତୋହର ଆମ୍ଭର କିଛି ଐରିଭାବ ନାହିଁ
ଯାହାକୁ ଡାକି ଅଇଲେ କଳିଦ୍ୱନ୍ଦ କାହିଁ ।
ଅକ୍ଷତ ଗୁଆକୁ ଘେନ ତୁହୋ ଶତ୍ରୁଜିତ
ଅକାରଣେ ଦ୍ୱନ୍ଦ କିପାଁ କରୁ ଉପଗତ ।
ନକୁଳ ଯାହା ବୋଇଲା ସେ ବଚନ ଶୁଣି
ଶାନ୍ତିଲାଭ କଲା ତହୁଁ ସେହି ଦଣ୍ଡପାଣି ।
ପଳାଉଥିଲା ରାଜନ ରହିଲା ଲେଉଟି
ନକୁଳଙ୍କୁ ପ୍ରଣିପାତ ହୁଏ ପାଦେ ଲୋଟି ।
ଅନେକ ବିନୟଭାବେ କହୁ ଶତ୍ରୁଜିତ
ନିମନ୍ତ୍ରଣ ନେଲା ସେହୁ ହୋଇ ଶାନ୍ତଚିତ୍ତ ।
ଦଣ୍ଡଘେନି ଥାଟ ବାହାରିଲେ ନରେଶ୍ୱର
ସାଜିଲା ଥାଟ ଘେନିଣ ବହୁତ ସମ୍ଭାର ।
ପଞ୍ଚବିଂଶ ଲକ୍ଷ ରାଜା ମତ୍ତଗଜ ସାଜି
ରଥ ନାହିଁ ଅର୍ଦ୍ଧଲକ୍ଷ ସାଜେ ମତ୍ତବାଜୀ ।
ପଦାତି ସୈନ୍ୟଙ୍କୁ ନେଲା ତିନି ଯେ ସାଗରେ
ସାଗର କୂଳକୁ ତେଜି ବାହାରେ ଉତ୍ତରେ ।
ଚଳନ୍ତି ନକୁଳ ସେତୁବନ୍ଧ ରାମେଶ୍ୱର
ପ୍ରବେଶ ହେଲେ ସୁବେଳ ଗିରିର ଉପର ।
ତେରକ୍ରୋଶ ଆୟତନ ସେ ଗିରିର ସ୍ଥଳୀ
ଉସ୍ପର୍ଶ ଅଟଇ ତିନିକ୍ରୋଶରୁ ସେ ବଳି ।
ସେଠାରେ ଅଛଇ ଏକ ସୁବର୍ଣ୍ଣ ଦେଉଳ
ତାହାର ଉସ୍ପର୍ଶ ଅଟେ ଜାଣ ସାତତାଳ ।

ସେହି ସୁବର୍ଣ୍ଣ ଦେଉଳେ ଚଢ଼ିଲେ ଯାଇଣ
ଦଶଦିଗ ଦେଖାଯାଏ କଲେ ନିରୀକ୍ଷଣ ।
ସେହି ଦେଉଳ ଭିତରେ ବିଜୟ ଧୂର୍ଜଟି
ସଂସାର ଅଦୃଶ୍ୟ ପାଇ ପାତାଳରୁ ଫୁଟି ।
ଶ୍ରୀରାମ ଘାଟରେ ଯାଇ କରିଲେ ସ୍ନାହାନ
ଦ୍ୱାରେ ଦେଖିଲେ ପାଷାଣରୂପ ହନୁମାନ ।
ଦର୍ଶନେ ବହୁ ବିନୟେ କରିଲେ ଭକତି
ଦେଉଳ ଦେଖିଲେ ଭୂମିଗତ ପଶୁପତି ।
ବୈଦୁର୍ଯ୍ୟଶକ୍ତି ପ୍ରବାଳ କାନ୍ତିକି ଯେ ଜିଣି
ବିକଶନ୍ତି ପ୍ରତିବିମ୍ବ ତିନିତାଳ ପାଣି ।
ଏସନ ସ୍ୱରୂପ ଦେଖି ଆଶ୍ଚର୍ଯ୍ୟ କୁମାର
ବିଚାରେ ଦେଖିବା ରୂପ ସଦାଶିବଙ୍କର ।
ନକୁଳ କୁମାର ତହୁଁ ହୋଇ ପରଣାମି
ବୋଲେ ଗିରିଜାବଲ୍ଲଭ ସଦାନନ୍ଦ ସ୍ୱାମୀ ।
ସିଦ୍ଧ ସମାଧି ସର୍ବଦା ଅଟଇ ତୋହର
ସ୍ଥୂଳଶୂନ୍ୟ ଭେଦିବାକୁ ଶକତି ଯାହାର ।
ତୁହି କାଳ ତୁ ଅକାଳ ତୁହି ସର୍ବରକ୍ଷ
ତୁହି ଯେ ମଧୁର ଭାବ କାଳକୂଟ ଭକ୍ଷ ।
ଜୟ କରୁଣା ସାଗର ଜୟ ରାମେଶ୍ୱର
ପ୍ରସନ୍ନେ ଶତ୍ରୁ ଜିଣିଲୁ ରାମ ଅବତାର ।
ବୃଷଭ ବାହନ ନାଥ ସୃଜି ସର୍ବନିଧି
ଯାହାର ପ୍ରସନ୍ନେ ନାଥ ମିଳଇ ଔଷଧି ।
ଶ୍ରୀରାମେଶ୍ୱର ଶ୍ରୀରାମଚନ୍ଦ୍ର କଲେ ପୂଜା
ଲକ୍ଷ୍ମଣ ବିନୟେ ବିଜେ ତୁହି ଦେବରାଜା ।
ବାଞ୍ଛିତ ଅବାଞ୍ଛିତ ତୁ ଜଗଜ୍ଜନ ଗୁରୁ
କୃତାନ୍ତ ଭୟରୁ ନାଥ ତୁହି ଯେ ଉଦ୍ଧରୁ ।
ଅନ୍ଧକ ବିଦାରଣରେ ତୋର ଦିବ୍ୟବୁଦ୍ଧି
କୃପାକରି ବନ୍ଧାଇଲୁ ତୁହି ବାରାନିଧି ।
ଜନଙ୍କ ମନମୋହନ ପାଳନ୍ତ ତୁ ସର୍ବ
ଯୋଗୀଜନ ହୃଦଗତେ ତୁହି ସର୍ବଜୀବ ।
ତୋର ପାଦେ ସେବାକରି ରଘୁରାଜା ନାତି
ରାବଣକୁ ବଧ କଲେ ସୁଖେ ଦାଶରଥି ।
ପୃଥ୍ୱୀ ଉଶ୍ୱାସ କରିଲ କୌଣପକୁ ଧ୍ୱଂସି
ତୁହି ସ୍ଥୂଳ ତୁହି ସୂକ୍ଷ୍ମ ତୁହି ଅବିନାଶୀ ।
ତୁହି ବାରାନିଧି ନାଥ ଅଟୁ ତ୍ରିପୁରାରି
ତୁ ନାଥ ପିନାକଧାରୀ କନ୍ଦର୍ପ ଅରି ।
ଶ୍ରୀରାମେଶ୍ୱର ସ୍ୱାମୀଙ୍କ ଚରଣାରବିନ୍ଦେ
କୋଟିଏ ତୀର୍ଥ ସଙ୍ଗମ ହୁଏ ଯାର ପାଦେ ।
କୋଟି କୋଟି ନିଧି ଘେନି ମହେଶ ମୂରତି
ତା ସଙ୍ଗେ ବିଜୟ ନାଥ ଯେ କଲେ ଭକତି ।
ରାମେଶ୍ୱର ମହାଲିଙ୍ଗ ଅଟୁ ଶ୍ରୀଯୋଗାବ୍ଧି
ଶ୍ରୀଶୁଦ୍ରମୁନି ଶାରଳା ବନ୍ଦେ ନିରବଧି ।
ସେହି ଲିଙ୍ଗକୁ ନକୁଳ କଲା ବହୁସ୍ତୁତି
ଭୂତଳ ତେଜିଣ ବିଜେ କଲେ ଉମାପତି ।
ନକୁଳଙ୍କୁ ସୁପ୍ରସନ୍ନ ହୋଇଣ ଯେ ହର
ବୋଇଲେ ମନର ବାଞ୍ଛା ପୂର୍ଣ୍ଣହେଉ ତୋର ।
ପାଇଲା ନକୁଳବୀର ମନ୍ତ୍ରୀ ମହାସିଦ୍ଧି
ଯେଉଁରୂପେ ରତ୍ନଜାତ ହୋଇବାର ବିଧି ।
ତହୁଁ ଚଳିଲା ନକୁଳ ବୀର ଚୂଡ଼ାମଣି
ସୁବେଳ ନଗ୍ରେ ପ୍ରବେଶ ହେଲା ବଣ ଜିଣି ।
ଦକ୍ଷିଣ କୋଶଳରେ ଯେ ବହୁରାଜ୍ୟ ସାଧି
କଦଳୀ ବନେ ପ୍ରବେଶ ହେଲା ମହାଯୋଧି ।
ଦର୍ଶନ ପାଇଲେ ମହାଇନ୍ଦ୍ର ନାଥ ସୁତ
ଭେଟିଲେ ଗୋରେକ୍ଷ ମହାଯୋଗୀ ଅବଧୂତ ।
ଶୁକ୍ଳାମ୍ବର ପୁରୁଷ ସେ ଶିରେ ଜଟାବେଣୀ
ଅଶନଲୋପ ସଉମ୍ୟ ପୁଣି ସିଦ୍ଧବାଣୀ ।
ବଂଶୀ ବାଦ୍ୟେ କରୁଛନ୍ତି ସଦା ମତିଭୋଳା
ଅନନ୍ତ ଗାୟତ୍ରୀ ମଧ୍ୟେ କପିଳା ବଉଳା ।
କରେ ଖର୍ପର ସ୍ଫଟିକ ଅଛି ବେନି କର୍ଣ୍ଣେ
କଣ୍ଠେ ବକୁଳର ମାଳା ପାଦୁକା ଗଗନେ ।
ସହୀ ସଙ୍ଗାତ ନାହିଁ ନା ଗମନାଗମନ
କିସ ମୁଁ ଉପମା ଦେବି ସେ ବନ ଶୋଭନ ।
ନକୁଳ କୁମର ଯାଇ ଭ୍ରମେ ଚଉପାଶେ
ଜୀବଜନ୍ତୁ କେହି ନାହିଁ ତାର ଆସପାଶେ ।
ଯୋଗାନଦୀର ଉତ୍ତରଦିଗ ଆର କୂଳେ
ଭେଟିଲେ ସେ ମହାତ୍ମାକୁ ବକୁଳର ମୂଳେ ।
ନକୁଳ ଯେ ପୁଚ୍ଛାକଲେ ତୁ କେବଣ ଯୋଗୀ
ଏଡ଼େ ପ୍ରଶସ୍ତ ଭୂମିରେ କିପାଁ ନରତ୍ୟାଗୀ ।
ଗୋରେଖ ବୋଇଲେ ତୁହି ଶୁଣ ଆରେ ସୁତ
ଆମ୍ଭେ ଯେ ଅଟୁ ଗୋରେଖ ନାମେ ଅବଧୂତ ।
ଆଦ୍ୟନାଥ ଅଟନ୍ତି ଯେ ନିରଞ୍ଜନ ଗୋତ୍ରୀ
ତା ସୁତ ମତ୍ସ୍ୟେନ୍ଦ୍ରନାଥ ନାମେ ଇନ୍ଦ୍ରପତି ।
ମତ୍ସ୍ୟେନ୍ଦ୍ରନାଥର ଜାଣ ଆମ୍ଭେ ଅଟୁସୁତ
ତୋର ଅଗ୍ରତେ କହିଲୁ ଜନ୍ମର ବୃତ୍ତାନ୍ତ ।
ତୁହୋ ନକୁଳ ନ ଜାଣୁ ଏହାର ବ୍ୟବସ୍ଥା,
ରାଜ୍ୟ ଯେମନ୍ତେ ପାଇଲୁ ଶୁଣ ତାର କଥା ।
ଅନୁଭାବନ ବୋଲିଣ ଏକ ସତ୍ୟଯୁଗେ
ଭାବି ନାମରେ ପୃଥିବୀ ବସେ ମଧ୍ୟସ୍ୱର୍ଗେ ।
ଯାକୁ ମାଡ଼ି ରହିଥିଲା ସାଗର କ୍ଷୀରୋଦ
ମହାଖଳା ପାତିଲାକ ସୋମନାମେ ରୁଦ୍ର ।

କାଦମ୍ବରୀ ପାନେ ସେହୁ ହୋଇ ମତୁଆଳ
ଡ଼େଇଁଣ ପଡ଼ିଲା ତହୁଁ ସେ ସାଗର ଜଳ ।
ବହୁକାଳ ଦ୍ୱନ୍ଦ୍ୱକଲା ରତ୍ନାକର ତୁଲେ
କ୍ଷୀରୋଦ ଗଣ୍ଡୁଷ କଲା ପୁଣି କରତଳେ ।
ଯେତେବେଳରେ ଗଣ୍ଡୂଷ କଲା ସେହୁ ସିନ୍ଧୁ
ଅପୋଡ଼ାଭୂମି ଖଣ୍ଡିଏ ମିଳେ ତହିଁ ମଧୁ ।
କାହାର ରାଜ୍ୟ ନୁହଇ ଯେ କୌଣସିକାଳେ
ସମୁଦ୍ର ଛଡ଼ା ଖଣ୍ଡିଏ ଅଟଇ ସେ ବେଳେ ।
କନ୍ଦଳରେ ଛଡ଼ାଇଲେ ସୋମରୁଦ୍ର ଦେବେ
କନ୍ଦଳି ନାମେ ବିଖ୍ୟାତ ହେଲା ତହୁଁ ତେବେ ।
ଏ ଅନାଥଭୂଇଁ ଯହୁଁ ପ୍ରକାଶିଲା ଆସି
ଆମ୍ଭେ ତ ଅନାଥ ପୁଣି ଦ୍ୱିତୀୟେ ସନ୍ନ୍ୟାସୀ ।
ଏ ଭୁବନେ ଆମ୍ଭେ ତହୁଁ ହେଲୁ ନରପତି
ଏ ସ୍ଥାନକୁ ନ ଆସନ୍ତି କେହି ଆନ୍ୟ କତି ।
ନକୁଳ ବୋଲେ ନିର୍ମଳ ଅଟେ ତୁମ୍ଭ ଦୀକ୍ଷା
ଯାଗଯଜ୍ଞେ ଯିବାକୁ ନ ଥାଏ କେଭେ ଇଚ୍ଛା ।
ଗୋରେଖ ବୋଇଲେ ଆମ୍ଭେ ଅଟୁ କୁତୂହଳୀ
ଭ୍ରମଣେ ସର୍ବଦା ଇଚ୍ଛା କଲୁ ଖେଳା ଖେଳି ।
ଛାମୁରେ ଥୋଇଲେ ଯହୁଁ ନେଇ ନିମନ୍ତ୍ରଣ
ସାନନ୍ଦେ ପରମ ଯୋଗୀ କଲେ ତା ଗ୍ରହଣ ।
ହରଷେ ସଜ ହୋଇଲେ ମତ୍ସ୍ୟେନ୍ଦ୍ର ତନୟ
ତହୁଁ ଚଳିଲେ ସେଠାରୁ ବୀର ଅଶ୍ୱିନେୟ ।
ପୁଣ ପୁଣ କୁମାର ଯେ ଆସଇ ଲେଉଟି
ଗୋରେଖଙ୍କୁ ଦେଖି ମନେ ଲଭି ମହାତୁଷ୍ଟି ।
ରୋହନ୍ତ ସାରଥି ବୋଲେ ତହିଁ ନକୁଳଙ୍କୁ
ପ୍ରତ୍ୟକ୍ଷ ଦେଖିଲୁ ଆସି ଗୋରେଖନାଥଙ୍କୁ ।
ଯାହାଙ୍କୁ ଦେଖିଲେ ନରେ ହୁଅନ୍ତି କୋଟିକଳ୍ପୀ
ମାଗ ସିଦ୍ଧବ୍ରହ୍ମ ତାଙ୍କୁ ଦିଅନ୍ତି ଯଦ୍ୟପି ।
ପିଣ୍ଡ ପ୍ରାଣ ଏକତତ୍ତ୍ୱ ଅଟେ ଯାହାଙ୍କର
ହେତୁ ଜ୍ଞାନ ପୁରୁଷ ସେ ତେଣୁ ଯୋଗେଶ୍ୱର ।
ସେହି ଯେ ଅଟନ୍ତି ଯୁଗଯୁଗାନ୍ତ ପୁରୁଷ
ତେଣୁକରି ମାନବଙ୍କୁ ହୁଅନ୍ତି ଅଦୃଶ୍ୟ ।
ସାରଥି ବାକ୍ୟେ ନକୁଳ ହୋଇ ପରଣାମି
ବୋଇଲା କିଞ୍ଚିତ ଜ୍ଞାନ କହିଦେବା ସ୍ୱାମୀ ।
ଗୋରେଖ ବୋଇଲେ ଏହି ସଂସାର ଜଞ୍ଜାଳ
ତାକୁ ତେଜିଲେ ବର୍ତ୍ତନ୍ତି ଜାଣ ଚିରକାଳ ।
କୁମାର ବୟସେ ଭୋଗ ବିଳାସେ ତୋ ମନ
ଯୋଗ ସାଧିବା ବିଷୟ ନୁହେଁରେ ନନ୍ଦନ ।
ତୁହି ଯଦ୍ୟପି ମାଗିଲୁ ଦେବାକ ପଦାର୍ଥେ
ସ୍ତମ୍ଭନ ବିଦ୍ୟାଏକ ଯେ ଦେଲେ ଅବଧୂତେ ।

ପବନର ଉଜାଣିକି କହିଲେ ବଖାଣି
ଶୋଷିଲେ ଥୟ କରିଣ ଫେରାଇବ ଆଣି ।
କହି ଛଟକେ ଅଦୃଶ୍ୟ ହେଲେ ସେ ପୁରୁଷ
ତାହା ଦେଖିଣ ନକୁଳ ହୋଇଲା ହରଷ ।
ଦକ୍ଷିଣରେ ନିମନ୍ତ୍ରଣ ସବୁ କରି ଶେଷ
ଲେଉଟି ହସ୍ତିନାପୁରେ ହୋଇଲେ ପ୍ରବେଶ ।
ଜୟ ଜୟ ଜଗନ୍ନାଥ ନୀଳାଦ୍ରି ବିହାରୀ
କମଳା ସେବନ୍ତି ପାଦେ ହୋଇ ପରିଚାରୀ ।
ନଖ କୋଣରୁ ଜାହ୍ନବୀ ହୋଇ ଉତପତ୍ତି
ତ୍ରିଜଗତ ପ୍ରାଣୀଙ୍କୁ ସେ କରଇ ମୁକତି ।
ଧନ୍ୟ ହେ ମହିମା ମେରୁ ମହିମା ଅପାର
ପାଣ୍ଡବ ରକ୍ଷକ ତୁମ୍ଭେ ଶରଣ ସୋଦର ।
ଗୋବର୍ଦ୍ଧନ ଗିରି ଧରି ତାରିଲ ଗୋପାଳ
ସେ ଭାର ସହିଲ ହରି ନୋହିଲ ବିକଳ ।
ତେଣୁକରି ବୋଲାଉଛ ନାମ ଗିରିଧାରୀ
ସେ ଭାର ସହିଲେ ପ୍ରଭୁ ନ ହୋଇଲା ଭାରି ।
ମୋହର ଭାର ବଳିଲା କି ଅବା ତୁମ୍ଭଙ୍କୁ
ଯେତେ ଡାକିଲେ ନ ଶୁଭେ ତେଣୁ ସେ କର୍ଣ୍ଣକୁ
ଚଉଦ ବ୍ରହ୍ମାଣ୍ଡ ପ୍ରାଣୀ ଗୁହାରି ଶୁଣୁଛ
ମୋ ବେଳକୁ ପାଷାଣରୁ ବଳି ଯାଉଅଛ ।
ଶୁଣ ବା ନ ଶୁଣ ତୁମ୍ଭେ ମୋର ଜପାମାଳି
ଶାରଳା ଦାସର ଅଟ ଅନ୍ତିମ ସଙ୍ଗାଳି ।



## ସହଦେବଙ୍କ ପୂର୍ବଦିଗ ରାଜାମାନଙ୍କୁ ବରଣ ନିମନ୍ତେ ଗମନ, ତେଷ୍ଟରି ମହାଭାରତ ବିବରଣ, ମାର୍କଣ୍ଡ, କୋନ୍ତ ଭୋଜ ପ୍ରଭୃତି ରାଜାଙ୍କୁ ନିମନ୍ତ୍ରଣ ଏବଂ ନୀଳସେନ ରାଜା ସହିତ ଖଣ୍ଡଯୁଦ୍ଧ

ଏଥୁଅନ୍ତେ ବୈବସ୍ୱତ ମନୁ ନୃପବର
ଅଗସ୍ତି ମୁନିଙ୍କ ଗଳେ ଦେଇ ରତ୍ନହାର ।
ଧୂପ ଦୀପ ନଇବେଦ୍ୟ ବହୁତ ବାଢ଼ିଲେ
ନବବସ୍ତ୍ର ନବାସନେ ପୂଜିଣ ବୋଇଲେ ।
ହେ ମୁନି ତୁମ୍ଭ ପ୍ରସାଦେ ଏ ଭାରତ ବାଣୀ
ତୃପ୍ତି ହେଲା ପଞ୍ଚମନ ସଭାପର୍ବ ଶୁଣି ।
ନକୁଳ ଦକ୍ଷିଣ ଦିଗ କରି ନମନ୍ତ୍ରଣ
ହସ୍ତିନା ରାଜ୍ୟକୁ ଗଲେ ପୁଣି ଲେଉଟିଣ ।
ପୂର୍ବ ପଶ୍ଚିମ କେବଳ ବାକୀ ରହିଅଛି
କିଏ ଏ ଦିଗକୁ ଗଲା କହ କୁମ୍ଭବହି ।

ଶୁଣି ଅଗସ୍ତି ପଣ୍ଡିତ କହନ୍ତି ରାଜାଙ୍କୁ
ସହଦେବ ମନ୍ତ୍ରୀ ବିଜେ ପୂରୁବ ଦିଗକୁ ।
ମନଦେଇ ଶୁଣ ଏହେବ ଆହେ ନରନାଥ
ତିନିଦିଗ ରାଜା ସର୍ବେ ଗଲେ ଇନ୍ଦ୍ରପ୍ରସ୍ଥ ।
ଉତ୍ତରରାଜା ରହିଲେ ସେ ବାରୁଣାବନ୍ତେ
ଦକ୍ଷିଣ ରାଜା ଅଛନ୍ତି ଯାଇ ଇନ୍ଦ୍ରପ୍ରସ୍ଥେ ।
ସଭା ଆୟତନ ଅଟେ ଦ୍ୱାଦଶ ଯୋଜନ
ଗଙ୍ଗା ଯମୁନା ନଦୀର ତଟ ମଧ୍ୟସ୍ଥାନ ।
ସର୍ବ ଅବତାର ସେହି କୁରୁକ୍ଷେତ୍ର ଭୂମି
ଦିଗମ୍ବରୀ କାନ୍ତାନୀ ଯେ ପ୍ରେତରୂପେ ଭ୍ରମି ।
ମହାଭାରତ ସମର ହୁଏ ସେ ଭୂମିର
ଏମନ୍ତେ ସମର ହେଲା ତେଏସ୍ତରି ବାର ।
ସଂଗ୍ରାମେ ମରନ୍ତି ତହିଁ ଯେତେ ମହାରଥୀ
ନିସତ ହୋଇଣ ସେହୁ ପଳାଇ ମରନ୍ତି ।
କୁରୁକ୍ଷେତ୍ରର ମଣ୍ଡଳ ଅଟେ ବାରଯୂଣ
ରାଜାଏ ହୁଅନ୍ତି କଟାତିଳର ପ୍ରମାଣ ।
ଗତି ଅଗତି ହୋଇଣ ସେ ସ୍ଥାନରେ ଥାନ୍ତି
ଅସ୍ଥି ଚର୍ମ ମାଂସ ତହିଁ ମିଳାଇ ଯାଆନ୍ତି ।
ଯେତେବେଳେ ମହାଯଜ୍ଞ କଲେ ଯୁଧିଷ୍ଠିର
ଗତି ଅଗତି ସମସ୍ତେ ହୋଇଥାନ୍ତି ପାର ।
ପୁଣି ପୁଣି ଯଜ୍ଞ ହୁଏ ପୁଣି ହିଁ ସମର
ପୁନଃ ପୁନଃ ମରି ତହିଁ ହେଉଥାନ୍ତି ପାର ।
ମହାଯଜ୍ଞ ଭୂମି ସେହି ମହାରଣ ଭୂଇଁ
ପୃଥ୍ୱୀକେ ଏମନ୍ତ ଭାବ ସବୁକାଳେ ହୋଇ ।
ଆହେ ବୈବସ୍ୱତ ମନୁ ପ୍ରଳୟ ହୁଅଇ
ପ୍ରଳୟ ଅନ୍ତରେ ପୁଣି ପୃଥିବୀ ଭିଆଇ ।
ପୁଣି ରାମାୟଣ ହୁଏ ଭାରତ ଭାରତେ
ଧାତୁବାଦ୍ୟ ପୁରୁଷ ସେ ଭ୍ୟାନ୍ତି ଏହିମତେ ।
ସବୁ ବର୍ଣ୍ଣ ଏକକରି କରି ଏକମାଳି
ହୃଦେ ଲମ୍ବାଇଲେ ତାହା ନେଇ ବନମାଳୀ ।
ସେହି ଯେ ଅଟଇ ମାତା ସେହି ହୁଏ ପିତା
ସେହି ଜାତ ହୁଏ ପୁଣି ଶେଷକୁ ନିୟନ୍ତା ।
ଉତ୍ପତ୍ତି କରନ୍ତେ ତହୁଁ ହୋଇଯାଏ ଭାରା
ଭାରାଭର ହୋଇଲେ ନ ସହେ ବସୁନ୍ଧରା ।
ତହୁଁ ବସୁନ୍ଧରା ଦେବୀ ହୁଅଇ ବିକଳ
ଭାରୀ ନିବାରଣ ପୁଣି କଲେ ସର୍ବକାଳ ।
ସର୍ବ କୌତୁକ କରାଏ ସେହୁ ଅତିରସେ
ହରଇ ହରାଇ ପୁଣି ରଜନୀ ଦିବସେ ।
ଏସନ ଭିଆଣମାନ ଜଗନ୍ନାଥ କଲେ
ତେଣୁ ଜଗତ ଜୀବନ ନାମକୁ ବହିଲେ ।

ଦିନ ସରିବା ନିମନ୍ତେ ଏମାନ ତ କରି
ନାନାଦି ଚରିତମାନ ଭିଆଏ ଶ୍ରୀହରି ।
କାଳ କଳୁଷ କଳଙ୍କ ସବୁ କାଢ଼ିବାକୁ
ଇଚ୍ଛା ବଢ଼ାଇଣ ଥାନ୍ତି ଶ୍ରଦ୍ଧାରେ ତାହାକୁ ।
ନରନାରାୟଣ ସେହି ମହାନର୍କ ବଞ୍ଚା
ନମୋ ନମୋ ଭଗବାନ ସଞ୍ଚା କି ଅସଞ୍ଚା ।
ତୋ କରସ୍ଥଳ ସଞ୍ଚିତ ଭାବେ କି ଅଭାବେ
ସନ୍ଥ ସଜ୍ଜନ ଧ୍ୱଂସ ପ୍ରସ୍ତାବେ ଅପ୍ରସ୍ତାବେ ।
ସୁରବର ସୁନ୍ଦର ତୁ କକ୍ଷା ଜଗଜ୍ଜେଠି
ମୋର ହୃଦୟେ ବିକାଶୁ ତବ ନାମଗୋଟି ।
ଅଜ୍ଞାନେ କହଇ ମୁହିଁ ଯାହା ହୁଏ ଦୃଶ୍ୟ
ଜନ୍ମେ ଜନ୍ମେ ସେବକ ମୁଁ ତୋ ଦାସର ଦାସ ।
ଇତି ଶ୍ରୀପୁରାଣ ବାକ୍ୟ କହେ ଜନହିତେ
ବିଷ୍ଣୁପୁରାଣ କହିଲେ ବାକ୍ୟ ଏ ସଙ୍ଗତେ ।
ଇହଜନ୍ମ ସଂସାରେ ଅନୀତି ହରିବାକୁ
ଲୋଭ ମୋହ ହିଂସା ଆଦି ନ ହେଉ କାହାକୁ ।
ଅଭୟ କାନ୍ତାନୀ ତୁଗ୍ରୋ ଅଟୁ ମୋର ମାତ
ପ୍ରତ୍ୟକ୍ଷରେ ବାକ୍ୟ ମୋତେ କର ତୁ ବ୍ୟକତ ।
ଅସଂଖ୍ୟ ସାଗର କିଏ କରିବ ଲେଖନ
ସଂକ୍ଷେପି ଲେଖିଲେ କାହିଁ ପାଇବାକ ଦିନ ।
ଶୈଳରାଜାର ନନ୍ଦିନୀ ବିଜେ ମମ ହୃଦେ
ଚୋରେ ଧନ ପାଇ ଯଥା ରହନ୍ତି ଆନନ୍ଦେ ।
ଝଙ୍କଡ଼ପୁର ବାସିନୀ ପ୍ରତ୍ୟକ୍ଷେ ହିଙ୍ଗୁଳା
ବାଲ୍ୟ କୁତୂହଳେ ତୋର ସଦା ମତିଭୋଳା ।
ସେ ଦେବୀ ଚରଣ ତଳେ ଆରାଧି ମଙ୍ଗଳେ
ଲଭିବ ପରମ ଗତି ତାହାଙ୍କର ବଳେ ।
ଶ୍ରୀଶାରଳା ଚଣ୍ଡୀଙ୍କର ଚରଣେ ଶରଣ
ଶୂଦ୍ରମୁନି ଶାରଳା ଯେ କରଇ ଜଣାଣ ।
ଶୁଣ ଏବେ ସାବଧାନେ ଦୁର୍ଲ୍ଲଭ ବାରତା
ସହଦେବ ପୂର୍ବଦିଗ ବିଜୟର କଥା ।
ତୁଳ କୃଷ୍ଣ ତ୍ରୟୋଦଶୀ ଅଟେ ଭୃଗୁବାର
ପୂର୍ବା ଫାଲଗୁନୀ ସିଂହ ଥିଲା ପ୍ରଭାତର ।
ଗର ନାମେ କରଣ ଯେ ବଇଧୃତି ଯୋଗ
ସମ୍ପୂର୍ଣ୍ଣ ଅମୃତ ଯୋଗେ ବିଜେ ପୂର୍ବଦିଗ ।
ଏକଲକ୍ଷ ରଥ ପୁଣ ବେନିଲକ୍ଷ ହସ୍ତୀ
ଚାରିଲକ୍ଷ ଅଶ୍ୱ ନବଲକ୍ଷ ଯେ ପଦାତି ।
ଟମକ ନିଶାଣ ଢୋଲ ଲକ୍ଷେ ବୀରତୂର
ଆଲମ୍ବ ପାଟଛତ୍ର ଯେ ଅଇବ୍ରତ ତାର ।
ଏତେକ ସୈନ୍ୟ ଘେନିଣ ସେ ମଦନବଳା
ଦିଶେ ସୁସଞ୍ଚ ବାଳାର୍କ ପ୍ରାୟ ଅନର୍ଗଳା ।

ମହୀନ୍ଦ୍ର ପର୍ବତେ ସେହୁ ବଲ୍ଲେ ରଥ ବାହି
ସୁରସେନ ଶଙ୍ଖଧ୍ୱନି ଉଚ୍ଚରେ କରଇ ।
ମହୀନ୍ଦ୍ର ଲଗ୍ନ ବୋଲିଣ ଅଛି ନଦୀଟିଏ
ତହିଁ ଯାଇ ସ୍ନାନ କଲେ ଅଶ୍ୱିନୀ ତନୟେ ।
ତହିଁ ଚଳନ୍ତି ସଇନି ଅନେକ ହରଷେ
ପ୍ରବେଶ ପାଣ୍ଡବ ଯାଇ ମହୀନ୍ଦ୍ରର ଦେଶେ ।
ତହିଁର ରାଜା ଅଟଇ ମାର୍କଣ୍ଡ ନୃପତି
ତାର ଅଗ୍ରତେ ଡଗର ଯାଇଣ କହନ୍ତି ।
ଶୁଣ ଦେବ ସାବଧାନେ ମହେନ୍ଦ୍ରାଧିକାରୀ
କେବଣ ଦେଶର ରାଜା ଆସେ ସୈନ୍ୟଧରି ।
ଚାରଗଣଙ୍କ ମୁଖରୁ ଏ ବାରତା ଶୁଣି
ଆସ୍ଥାନକୁ ତ୍ୟାଗକରି ଉଠେ ନୃପମଣି ।
ଶତଭାର ଅଷ୍ଟରତ୍ନ ସଙ୍ଗତରେ ଘେନି
ଛାମୁରେ ମାର୍କଣ୍ଡ ରାଜା କରଇ ଦଇନି ।
ଅକ୍ଷତ ଗୁବାକ ଦେଲେ ବୀର ସହଦେବ
ପ୍ରୀତି ବଢ଼ାଇଲେ ତାରେ କରି ନାନାଭାବ ।
ତୁମ୍ଭ ପ୍ରୀତିଲୋକ ସିନା ଆମ୍ଭେ ଅଟୁ ରାଜା
ସମଦଣ୍ଡ ଘେନି ଏବେ ଜୟନ୍ତାକୁ ଯାଯା ।
ଅନେକ ଯେ କୃତକୃତ୍ୟ ହେଲା ମାରକଣ୍ଡ
ସଙ୍ଗତରେ ଘେନିଲା ସେ ଶତେ ଧାରିଦଣ୍ଡ ।
ରଥଗଜ ସହ ଥିଲେ ତାର ଯେତେ ବାଜୀ
ଚଳିଲା ନରେନ୍ଦ୍ର ତହୁଁ ସେ ଗଡ଼କୁ ତେଜି ।
ଯହୁଁ ସେ ସ୍ଥାନୁ ବିଜୟ କଲା ସହଦେବ
ସିନ୍ଧୁ ଦେଶରେ ପ୍ରବେଶ ଘେନି ପ୍ରିୟଭାବ ।
ସିନ୍ଧୁଦେଶ ରାଜା ନାମ ଅଟେ ଜୟଦ୍ରଥ
ଗଜ ଅଶ୍ୱ ନାହିଁ ଦଶସହସ୍ରେକ ରଥ ।
ଡଗର କହିଲେ ଦେବ ଶୁଣ ସିନ୍ଧୁପତି
ପୂର୍ବଦିଗୁଁ ବିଜେକରି ସହଦେବ ମନ୍ତ୍ରୀ ।
ପ୍ରବେଶ ହୋଇଲେ ଆସି ଏହି ସିନ୍ଧୁଦେଶେ
ବଡାଇ ପ୍ରତାପୀ ସୈନ୍ୟ ଚାହାନ୍ତି ସେ ରୋଷେ
ଦେଶାଉର ମୁଖୁ ବାର୍ତ୍ତା ଶୁଣି ଜୟଦ୍ରଥ
ନବର ମଧ୍ୟେ ଉତ୍ସବ କରାଏ ତ୍ୱରିତ ।
କଟକେ ପାଏତାମାନ ପକାଇଲା ଖରେ
ପୂର୍ଣ୍ଣକୁମ୍ଭ ରମ୍ଭାତରୁ ପୋତେ ସର୍ବଦ୍ୱାରେ ।
ଆପଣେ ପାଦଗତିରେ ଗମିଲାଟ ରାୟେ
ଶ୍ରୀକରେ ଚାମର ଘେନି ବହୁତ ବିନୟେ ।
ସହଦେବ ବିଜେକଲେ ସେ ସିନ୍ଧୁ ରାଜ୍ୟରେ
ଜୟଦ୍ରଥ ଦେଖାକଲେ ସମୁଦ୍ର ତଟରେ ।
ରଥୁଁ ଉତୁରିଲେ ତହୁଁ ସହଦେବ ମନ୍ତ୍ରୀ
ଜୟଦ୍ରଥେ କୋଳାଗ୍ରତ କରି ବହୁ ପ୍ରୀତି ।
କୋଳ ସମ୍ଭାଷଣରେ ଯେ ବାରତା ବହୁତ
ଗଡ଼େ ପ୍ରବେଶିଲେ ଆସି ହୋଇ ହରଷିତ ।
କୁଶଳର ବାର୍ତ୍ତା କୁହାକୁହି ହୋନ୍ତି ବେନି
ଅନେକ ହରଷେ ବିଜେ ସେନାଦିଙ୍କୁ ଘେନି ।
ବଡ଼ ସମ୍ଭର୍ବରେ ରାଜା କରଇ ଉତ୍ସବ
ରାଜା ଭୁବନେ ଭୋଜନ କଲେ ସହଦେବ ।
ମଣୋହି ସାରିଣ ବିଜେ ଚନ୍ଦ୍ରଶାଳାପୁରେ
ଅକ୍ଷତ ଯୋଗାଡ଼ ଦେଲେ ବହୁତ ବିଧିରେ ।
ପୁଣ ବୋଇଲେ ତୋହର ବନ୍ଧୁ ରାଜା ଯେତେ
ସମସ୍ତଙ୍କୁ ନିମନ୍ତ୍ରିଣ ଘେନିଆସ ଏଥେ ।
ଜୟଦ୍ରଥ ବୋଇଲାକ ଯେତେକ ସଇନି
ସହସ୍ର ରାଜାଙ୍କୁ ମୁହିଁ ସଙ୍ଗେ ଯିବି ଘେନି ।
ଏମନ୍ତ କହି ମନ୍ତ୍ରୀକି ପେଷିଲା ସତ୍ୱର
ପ୍ରବେଶ ମନ୍ତ୍ରୀ ବିରାଳଚକ୍ର ନଗ୍ରପୁର ।
ସେ ରାଜ୍ୟର ବର୍ଣ୍ଣାନିକ ନାମେ ନରପତି
ସହଦେବ ଚାର ଯାଇ ବାରତା ଦିଅନ୍ତି ।
ଶୁଣ ସାବଧାନେ ବର୍ଣ୍ଣାନିକ ନୃପବର
ପୂର୍ବଦିଗୁ ଆସିଛନ୍ତି ସହଦେବ ବୀର ।
ରାଜାମାନେ ନିମନ୍ତ୍ରଣ କରିବା ନିମନ୍ତେ
ସକଳ ନରେନ୍ଦ୍ର ଯିବେ ଜୟନ୍ତାର ପ୍ରସ୍ଥେ ।
ବାରତା ପାଇଣ ଚଳେ ତହୁଁ ବର୍ଣ୍ଣାନିକ
ସବଦଣ୍ଡ ସୈନ୍ୟ ତାର ସାଜିଲା ଅନେକ ।
ଆପଣେ ଯେ ସମଦଣ୍ଡ ଘେନି ମହୀପତି
ସହଦେବଙ୍କୁ ଦର୍ଶନ କଲା ଆସି ଧାତି ।
ଛାମୁରେ ଆସି ସହସ୍ରେ ହୋଇ ପରଣାମି
ବୋଲେ ଜୀବନ ସଫଳ ନିସ୍ତରିଲି ସ୍ୱାମୀ ।
ଅକ୍ଷତ ଗୁବାକ ତହୁଁ ଦେଇ ସହଦେବ
ବୋଇଲେ ରାଜୁସି ଯାଗେ ଚଳିଯାଅ ଦେବ ।
ମାଦ୍ରୀଦେବୀଙ୍କ ନନ୍ଦନ ଆଜ୍ଞା ଅବଧାରୀ
ଦଣ୍ଡଘେନି ଚଳଇ ସେ ଜୟନ୍ତା ନଗରୀ ।
ଅନେକ ଯେ ବୀରତୂର ଟମକାଦି ବାଜେ
ଚନ୍ଦ୍ରଚୂଡ଼ ଜିଣି ବୀର ଐଶାନ୍ୟକୁ ବିଜେ ।
ବୃନ୍ଦାଅର୍କ ବୋଲିକରି ରାଜ୍ୟ ଯେ ଗୋଟିଏ
ମଦନବସନ୍ତ ବୋଲି ତହିଁ ନୃପରାୟେ ।
ସେହି ରାଜାର ରାଜ୍ୟରେ ବିଜେ ମନ୍ତ୍ରୀବର
ସନ୍ନିଧିକୁ ହକାରିଣ ପେଷିଲା ଡଗର ।
ମଦନବସନ୍ତକୁରେ ବାର୍ତ୍ତା କହ ଯାଇ
ଦଣ୍ଡ ଘେନିଣ ଛାମୁକୁ ଆସୁ ନରସାଇଁ ।
ସ୍ୱାମୀର ବଚନ ଶୁଣି ଚଳିଲା ମୁନେହି
ମଦନବସନ୍ତ ରାଜା ଛାମୁରେ କହଇ ।

ଆହେ ରାଜା ସହଦେବ ପୂର୍ବଦିଗେ ବିଜେ
ନିମନ୍ତ୍ରୁଛନ୍ତି ସମସ୍ତ ଦେଶ ନରରାଜେ ।
ସୈନ୍ୟଘେନି ରହିଛନ୍ତି ମହୋଦଧି କୂଳେ
ଦର୍ଶନକୁ କରାଇବା ପ୍ରସନ୍ନର ବେଳେ ।
ଚାରମାନଙ୍କ ମୁଖରୁ ପାଇଣ ବାରତା
ଦେଖା ଦରଶନୀ ଧନ ଘେନେ ଅପ୍ରମିତା ।
ମହୋଦଧିର କୂଳରେ ବିଜେ ମହାମନ୍ତ୍ରୀ
ନାମ ସଙ୍କେତ କାଳରେ ଭେଟେ ଯାଇ କ୍ଷତ୍ରୀ ।
ଚାରେ ଜଣାଇଲେ ତବ ଆଜ୍ଞା ଅବଧାରୀ
ମଦନ ନୃପତି ଆସେ ଦେବ ଦେଖାକରି ।
ଜପଳୟ ବେଳେ ତାକୁ ଦେଲେକ ଅନାଇଁ
ନିଉଛାଳି କରି ରାଜା ଶୁତିଲାକ ଭୂଇଁ ।
ଅନେକ ବିନୟେ ତହିଁ କହଇ ବାରତା
ମନ୍ତ୍ରୀବର ଗୁଣବନ୍ତ ଅଟ ସାମରଥା ।
ସ୍ୱାମୀ ତବ ପାଦରଜ ପଡ଼େ ମୋ ଭୁବନେ
ମହାଯଜ୍ଞ ଫଳଶ୍ରୁତି ଲଭେ ବହୁ ପୁଣ୍ୟେ ।
କଟକେ ପାଏଡ଼ାମାନ ପାଡ଼ି ଅମାନାତ୍ୟେ
ନଗ୍ରେ ଉତ୍ସବ କରାନ୍ତି ଅତି ତୋଷଚିତ୍ତେ ।
ଅନେକ ଶୀତଳ ଦ୍ରବ୍ୟ ଉପହାରମାନ
ବହୁ ସମ୍ଭାରରେ ବାଢ଼ି ଅଛଇ ରାଜନ ।
ପାଏଡ଼ା ଉପରେ ଅଷ୍ଟରତ୍ନାଦି କୁଢ଼ାଇ
ଲକ୍ଷେକ ସୁବର୍ଣ୍ଣ ରାଜା ପାଦପୂଜା ଦେଇ ।
ରାଜାଙ୍କୁ ଯେ ନିମନ୍ତ୍ରଣ କଲେ ସହଦେବ
ବୋଇଲେ ସୈନ୍ୟ ଚଳାଇ ଏହିକ୍ଷଣି ଯିବ ।
ସୈନ୍ୟ ଚଳାଇ ରାଜନ ଥୋକେ ଦୂର ଯାଉଁ
ସହଦେବ ମଧଗିରି ତ୍ୟାଗ କଲେ ତହୁଁ ।
ଦଣ୍ଡଘେନି ସେଠାବରୁ ଚଳି ବୀରମଣି
ଦୁନ୍ଦିଭି ନଗ୍ରେ ପ୍ରବେଶ ହେଲା ସେହିକ୍ଷଣି ।
ବୀରବାହୁ ନାମରେ ଯେ ସେଠାବର ରାଜା
ସହଦେବଙ୍କୁ ବହୁତ କଲା ପାଦପୂଜା ।
ସହଦେବ ନିମନ୍ତ୍ରଣ ଦେଲେକ ତାହାରେ
ଦଣ୍ଡଘେନି ଚଳେ ରାଜା ଜୟନ୍ତୀ ନଗରେ ।
କୃତାନ୍ତକ ନଦୀତୀରେ ରାଜ୍ୟ ମଧୁବନ
ତହିଁର ନୃପତି ନାମ ଅଟେ ଦ୍ୟୁମସେନ ।
ସେ କୃତାନ୍ତ ନଦୀତୀରେ ବିଜେ ଅନୀକିନୀ
ମହା ସମ୍ଭର୍ବେ ବିହାର କରନ୍ତି ସଇନି ।
ବଜାନ୍ତି ଯେ ବିଜିଘୋଷ ଟମକ ଦାଡ଼ଣ୍ଡି
ବାଲ୍ମୀକେ ପରାୟେ କରି ସର୍ବ ରଥ ମଣ୍ଡି ।
ଫରହର ଆଲମ୍ୱ ଯେ ପଡ଼ଇ ରଥରେ
ଅନେକ କୌତୁକେ ଥାଟ ଚଳଇ ସମ୍ଭାରେ ।
ଦ୍ୟୁମସେନ ନୃପତି ଯେ ବିଜୟେ ଆସ୍ଥାନେ
ଛାମୁରେ କହିଲେ ଯାଇ ଦେଶଉରମାନେ ।
ଭୋଦେବ ହସ୍ତିନାପୁର ଠାକୁର ଯୁଧିଷ୍ଠି
ବୃକୋଦର ଅଟନ୍ତି ଯେ ତାହାଙ୍କ କନିଷ୍ଠି ।
ତାହାଙ୍କ ଅନୁଜ ଅଟେ ବୀର ଅରଜୁନ
ନକୁଳ ବୋଲି କରିଣ ତାହାଙ୍କର ସାନ ।
ସହଦେବ ଠାକୁର ଯେ ତାହାଙ୍କ ସାନୁଜେ
ମହାଯଜ୍ଞର ନିମନ୍ତେ ପୂର୍ବଦିଗେ ବିଜେ ।
ହେ ଦେବ ସକଳ ରାଜା ଆଣିଲା ନିମନ୍ତ୍ରୀ
ଆମ୍ଭ ଦେଶକୁ ହେ ଦେବ କାଲି ଆସିଛନ୍ତି ।
ଶୁଣିଣ ବିଚାର କରେ ତହୁଁ ଦ୍ୟୁମସେନ
ତହିଁକି ଗଲେ କାରଣ ପୁଣି ଅଛି ପୁଣ୍ୟ ।
ଭୋଜନ ଅକ୍ଷତ ଆଦି ବହୁତ ପାଇବା
ଲକ୍ଷକୋଟି ମନୁଷ୍ୟଙ୍କ ମୁଖକୁ ଚାହିଁବା ।
ଏହାକହି ସଙ୍ଗେଘେନି ଯୋଦ୍ଧା ତିନିକୋଟି
ଦ୍ୟୁମସେନ ନୃପତି ଯେ ଆସଇ ପାଛୋଟି ।
ସହଦେବ ଛନ୍ତି ମଧୁସୂଦନ ପର୍ବତ
ତହିଁ ପ୍ରବେଶ ଦ୍ୟୁମତସେନ ନରନାଥ ।
ବହୁ ସମ୍ଭର୍ବେ ଦର୍ଶନ କଲା ଯାଇ ରାଜା
ଲକ୍ଷେ ସୁବର୍ଣ୍ଣ ନେଇଣ କରେ ପାଦପୂଜା ।
ବହୁତ ବିନୟେ ରାଜା ବହୁତ ସମ୍ଭର୍ବେ
ମଧୁବନ କଟକକୁ ନେଲା ସହଦେବେ ।
ଇନ୍ଦ୍ର ବିଜେକଲେ ନରେ ହୁଅନ୍ତି ଯେସନ
ମଧୁବନ ନରନାରୀ ଆନନ୍ଦ ତେସନ ।
ମଣୋହି ଯୋଗାଡ଼ମାନ କଲେ ନରପତି
ସହସ୍ରେକ ସୂପକାର ରନ୍ଧନ କରନ୍ତି ।
ନୃତ୍ୟ କରନ୍ତି ସେଠ ରେ ବାରବିଳାସିନୀ
ସପ୍ତପୁରୀ ବୀଣା ଜିଣି ମଧୁର ରାଗିଣୀ ।
ସ୍ନାନ ଦେବାର୍ଚ୍ଚନ କଲେ ବେଳ ସାତଘଡ଼ି
ମଣୋହିକୁ ବାହାରିଲେ ଚନ୍ଦ୍ରବେଳ ଛାଡ଼ି ।
ନାନାଦି ପିଷ୍ଟକ ପୁଣି ନାନାଦି ବ୍ୟଞ୍ଜନ
ସୂପକାର ପରଷନ୍ତି ସୁବାସିତ ଅନ୍ନ ।
ଭୋଜନେ ବସିଲେ ତହିଁ ସୈନ୍ୟ ସେନାପତି
ସମସ୍ତେ ଭୋଜନ କରି ଲଭିଲେ ତୃପତି ।
ଭୋଜନାନ୍ତେ ସହଦେବ କଲେ ଆଚମନ
କର୍ପୂରମିଶା ବିଡିଆ କରିଲେ ଚର୍ବଣ ।
କୁଟୁମ୍ୱଯୋକ ଘେନିଣ ସେ ଦ୍ୟୁମତସେନ
ଭୃତ୍ୟ ପରାୟେ ହୋଇଲେ ଖଟନ୍ତି ଆସ୍ଥାନ ।
ବେଦଧ୍ୱନି କଲେ ଦ୍ୱିଜେ ବହୁମେଳେ ତୋଳି
ସୁଲକ୍ଷଣୀ ନାରୀ ତହିଁ ଦ୍ୟନ୍ତି ହୁଳହୁଳି ।

ରାଜା ବୋଲେ ଯାଗ କଲେ ମୋ ଉପରବଂଶେ
ତେଣୁ ତୋ ପାଦ ପଡ଼ିଲା ମୋର ଏହିଦେଶେ
ପ୍ରସନ୍ନ ନାରାୟଣଙ୍କୁ ଦେଖିଲି ମୁଁ ଡୋଳେ
ରାଜ୍ୟକୁ ସୁଲଭ ମୋର ହେଲା ସର୍ବକାଳେ ।
ସହଦେବ ବୋଇଲେ ତୁ ମହତ ଧାର୍ମିକ
ଅମହତ ଜନ ସିନା ଅଟେ ଅବିବେକ ।
ଏହା କହିଣ ଯୋଗାଡ଼ ଦେଲେ ସହଦେବ
ଜୟନ୍ତା ଭୁବନେ ତୁମ୍ଭେ ସମସ୍ତେହିଁ ଯିବ ।
ମୁଁ ଦର୍ଶନ କରାଇବି ଭୀମ ଠାକୁରଙ୍କୁ
ସେ ଦର୍ଶନ କରାଇବେ ନେଇ ଯୁଧିଷ୍ଠିଙ୍କୁ ।
ସ୍ନାହାନ ଭୋଜନ ସାରି ସେ ନୃପ ଦ୍ୟୁମନ
ତତକ୍ଷଣରେ ସାଜିଲା ସମଦଣ୍ଡମାନ ।
ଚଳଇ ନରେନ୍ଦ୍ର ତହୁଁ ସଭାକୁ ତଃକ୍ଷଣେ
ସହଦେବ ବାହାରିଲେ ଅଇଶାନ୍ୟ କୋଣେ ।
ଭୋଜସେନ ଦେଶେ ଯାଇ ପ୍ରବେଶନ୍ତି ବୀର
ମହାରାଜ୍ୟ ଗୋଟିଏ ସେ ବଡ଼ଇ ସୁନ୍ଦର ।
ସେ ରାଜ୍ୟକୁ ବେଢ଼ି ବହେ ନଦୀ ବୈତରଣୀ
କୋନ୍ତଭୋଜ ବୋଲିଣ ଯେ ତହିଁ ନୃପମଣି ।
ସେ କୋନ୍ତଭୋଜ ରାଜାର ଏକଇ ଦୁହିତା
ସେହି ଦୁହିତାର ନାମ ଅଟଇ କୋଇନ୍ତା ।
ସୋମବଂଶ ଅଧିପତି ପଣ୍ଡୁ ନୃପମଣି
ତାହାଙ୍କୁ ପ୍ରଦତ୍ତ କଲେ କୁନ୍ତୀ ମହାରାଣୀ ।
କୁନ୍ତୀଙ୍କ ଯୁଧିଷ୍ଠିଆଦି ପାଞ୍ଚଟି ଆତ୍ମଜ
ତେଣୁ ଅଜା ଅଟନ୍ତି ଯେ ରାଜା କୋନ୍ତଭୋଜ ।
ସେ ରାଜା ଅଗ୍ରତେ ଯାଇ କହିଲା ମୁନେହିଁ
ସ୍ୱାମୀ ହେ କେବଣ ରାଜା ଦଣ୍ଡଆଣେ ବାହି ।
କୋନ୍ତଭୋଜ ଆଜ୍ଞାଦେଲେ ମନ୍ତ୍ରୀକୁ ହକାରି
ଉତ୍ସବମାନ କରାଅ ରାଜ୍ୟରେ ମୋହରି ।
କଟକ ଭିତରେ ନେଇ ପାଏଡ଼ା ପକାଅ
ଦ୍ୱାରେ ପୂର୍ଣ୍ଣକୁମ୍ଭ ରମ୍ଭାତରୁକୁ ରୋପାଅ ।
ରାଜା ଆଜ୍ଞା ପାଇଁ ମନ୍ତ୍ରୀ ଉତ୍ସବ କରାଏ
ସୈନ୍ୟ ଘେନିଣ ସେ ରାଜା ପାଛୋଟିଣ ଯାଏ
କୁନ୍ଦଗିରି ଶିଖରରେ ଛନ୍ତି ବୀରମଣି
ସନ୍ନିଧେ ପ୍ରବେଶ ହେଲେ ଭୋଜ ନୃପମଣି ।
ସହଦେବ ରହିଥିଲେ ଆପଣାର ରଥେ
ଅନ୍ତାଗୁରୁ ଦେଖି ବିଜେ ହେଲେ ପାଦଗତେ ।
ଛାମୁରେ ଯେ ପାଦଅର୍ଘ୍ୟ ଏକଗୋଟି ଥୋଇ
ଶ୍ରୀଚରଣେ ସହଦେବ ଶୁତିଲାକ ଯାଇ ।
କୋଳ କରିଣ ଧଇଲେ ନୃପ କୋନ୍ତଭୋଜ
ବହୁ ଅଳଙ୍କୃତ କଲେ ଆତ୍ମଜା ଆତ୍ମଜ ।

କର୍ପୂର କସ୍ତୁରୀ ଅଙ୍ଗେ କରିଲେ ମର୍ଦ୍ଦନ
ଅଗରୁ ଚନ୍ଦନ କଲେ ପୁଣିହିଁ ଲେପନ ।
ଅନେକ ଯେ କୃତକୃତ୍ୟ ହୋଇଣ ବିନୟୀ
କଟକେ ପ୍ରବେଶ ହେଲେ ସହଦେବେ ନେଇ ।
ସ୍ନାନ ଭୋଜନ କରାଇ ତାଙ୍କୁ ମହାରାୟେ
ରତ୍ନ ପଲ୍ୟଙ୍କରେ ନେଇ କରାଏ ବିଜୟେ ।
ଅନେକ ଆନନ୍ଦ ହେଲେ ପୁର ନରନାରୀ
ଦଉଡ଼ିଲେ ଦେଖିବାକୁ ଲଜ୍ଜା ପରିହରି ।
ଧାମନ୍ତି ଘରଘରଣୀ କାନ୍ତକୁ ଉପେକ୍ଷି
ପାଣ୍ଡବ ମନ୍ତ୍ରୀକି ଦେଖି ତୃପ୍ତ କଲେ ଆଖି ।
ମନ୍ତ୍ରୀ ବୋଇଲେ ହେ ପିତା ଯେତେ ତୋରଦଣ୍ଡ
ସବୁନ୍ତି ଘେନିଣ ରଥ ଗଜ ଅଶ୍ୱ ମଣ୍ଡ ।
ବାଟରେ ଭେଟିବୁ ଆଉ ଯେତେକ ରାଜାନ୍ତ
ସବୁନ୍ତି ଘେନି ଚଳିବୁ ଜୟନ୍ତାବ୍ର ପ୍ରସ୍ଥ ।
କୋନ୍ତଭୋଜ ବୋଇଲେକ ରାଜାନ୍ତ ତୁ ସାଧି
ବହନରେ ଘେନିଆସ ସେ ସମସ୍ତ ଯୋଧି ।
ଏ ପୂର୍ବ ଦିଗର ଭୂମି ନୁହେ ଅସରଳ
ଦୁଷ୍ଟରାଜା ନୁହନ୍ତି ଏ ନ କରନ୍ତି ଗୋଳ ।
ଜ୍ଞାନବନ୍ତ ଧର୍ମବନ୍ତ ଅଟନ୍ତି ପଣ୍ଡିତ
ପ୍ରୀତିବତ୍ସଳ ସର୍ବଦା ନୁହନ୍ତି ଉଦ୍ଧତ ।
ଏ ସର୍ବ ରାଜା ବଞ୍ଚନ୍ତି ବିଷ୍ଣୁଙ୍କ ଆଶ୍ରିତେ
ତୁମ୍ଭନ୍ତ ଅଭାବ କେବେ ନୋହିବ ଯୁକତେ ।
ଏ ଦିଗ ରାଜାଏ ପାଇଅଛନ୍ତି ବାରତା
ଆଜ୍ଞା ପାଇଲେ ଚଳିବେ ଏହି ମାତ୍ର କଥା ।
ଆସ୍ଥାନରେ ବସାଇଣ କୋନ୍ତଭୋଜରାଜା
ସହଦେବ କୁମରକୁ କଲେ ବହୁପୂଜା ।
ସେ ରାଜାକୁ ସହଦେବ କଲେ ନିମନ୍ତ୍ରଣ
ଆଜ୍ଞାଏ ବାହାର ରାଜା ତୁରିତ ହୋଇଣ ।
ତହୁଁ ସହଦେବ ବୀର ଥାଟକୁ ଚଳାଇ
କରମଣ୍ଡଳ ରାଜ୍ୟରେ ପ୍ରବେଶିଲା ଯାଇ ।
ଶ୍ରୀୟାଭୁଜ ବୋଲିକରି ତହିଁର ନୃପତି
ସେ ରାଜ୍ୟେ ଯାଏ ବିଚିତ୍ରବୀର୍ଯ୍ୟଙ୍କର ନାତି ।
ରାଜାର ଅଗ୍ରତେ ଯାଇ କହଇ ମୁନେହି
ଶୁଣ ଦେବ ସାବଧାନେ ବାରତା କହଇ ।
ସ୍ୱାମୀ ଏକଯୋଦ୍ଧା ଆସେ ତା ସୈନ୍ୟ ଅଳପ
ରଥ ଗଜ ପଦାତିକ ନୁହଇ ସଂକ୍ଷେପ ।
ଆମ୍ଭ ରାଜ୍ୟରେ ପଶିଲା କେଉଁ ଦେବରାୟେ
ବିହରନ୍ତି ସେ ସଇନି ଉଲ୍‌କାପାତ ପ୍ରାୟେ ।
ଡଗର ମୁଖୁଁ ବାରତା ପାଇ ଶ୍ରୀୟାଭୁଜ
ମନ୍ତ୍ରୀକୁ ବୋଇଲା ଆରେ ଦଣ୍ଡ ମୋର ସାଜ ।

ମୁହିଁ ଯେ ଅନ୍ୟ ରାଜ୍ୟକୁ ସାଜେ ହାଦେ ଥାଟ
ନ ବିଚାରି କିପାଁ ପଶେ ସେହୁ ପରରାଷ୍ଟ୍ର ।
ଗର୍ଜିଲେ ଯୋଦ୍ଧାଏ ଶୂନ୍ୟେ ଲାଗିଲା ମୁକୁଟ
ନିର୍ଘାତ ସେ ଜାଣି ତହିଁ ସାଜିଲେକ ଥାଟ ।
ସହଦେବଙ୍କ ଆଗରେ କହନ୍ତି ଡଗର
ଶୁଣ ସାବଧାନେ ଦେବ ପାଣ୍ଡବ ସୁନ୍ଦର ।
କର୍ଣ୍ଣ ମଣ୍ଡଳର ରାଜା ବଡ଼ଇ ପ୍ରତାପୀ
ଗର୍ଜନ୍ତି ଲାଙ୍ଗିଆ ଧରି ହୋଇ ମହାକୋପୀ ।
ଆଗେ ଓଗାଳିଲେ ଦେବ ମହାକୋପ କରି
ବିନ୍ଧନ୍ତି ନାରାଚ ସେହୁ କିଛି ନ ବିଚାରି ।
ସହଦେବ ଡାକେ ସୁରେଶ୍ୱର ସେନାପତି
ବୋଲେ ଆସିଅଛୁ ଆମ୍ଭେ ତାହାକୁ ନିମନ୍ତ୍ରି ।
ଏଥିର ବାରତା ତାକୁ ସବୁ କହଯାଇ
ନ ଜାଣିଣ ଦଣ୍ଡସାଜେ ସେହୁ କାହିଁପାଇଁ ।
ସହଦେବ ଆଜ୍ଞାରେ ଯେ ଚଳେ ସୁରେଶ୍ୱର
ଅଶ୍ୱ ଚଢ଼ି ଯାଏ ମନ୍ତ୍ରୀ ରାଜାର ଆଗର ।
ଦେଖି ଜ୍ଞାନବର ମନ୍ତ୍ରୀ ପୁଚ୍ଛଇ ବାରତ
କେବଣ ଦେଶରୁ ତୁମ୍ଭେ ହୋଇଲ ଆଗତ ।
ଉଲ୍‌କାପାତ ଜାଣି ଯେହ୍ନେ ଆଣିଅଛ ଥାଟେ
ନ ପଚାରି ପଶିଲ ଯେ ଆସି ପରରାଷ୍ଟ୍ରେ ।
ସୁରେଶ୍ୱର ବୋଲେ ମନ୍ତ୍ରୀ କୁହ ରାଜାଗ୍ରତେ
ଆମ୍ଭେ ଆସିଛୁ କେବଳ ବରଣ ନିମନ୍ତେ ।
ବୋଲେ ସୋମବଂଶ ଜାତ ଯୁଧିଷ୍ଠିର ରାୟେ
ତା କନିଷ୍ଠ ସହଦେବ ମାଦ୍ରୀର ତନୟେ ।
ପୂର୍ବଦିଗେ ବିଜେକଲେ ନିମନ୍ତ୍ରଣ ପାଇଁ
ଏହିରୂପେ ଚତୁର୍ଦ୍ଦିଗେ ଗଲେ ଚାରିଭାଇ ।
ରାଜସୂ ଯଜ୍ଞ କରିବେ ଧର୍ମ ନରପତେ
ସହଦେବ ଆସିଛନ୍ତି ବରଣ ନିମନ୍ତେ ।
ଜମ୍ବୁଦ୍ୱୀପ ମଧ୍ୟେ ଛନ୍ତି ଲକ୍ଷେ ନରପତି
ଚତୁର୍ଦ୍ଦିଗ ରାଜାଙ୍କୁ ଯେ ନେଉଛୁ ନିମନ୍ତ୍ରି ।
ନିମନ୍ତ୍ରଣ କାର୍ଯ୍ୟେ ଆସୁ ନୋହୁ ଦ୍ୱନ୍ଦ୍ୱକାରୀ
ଉତ୍ସବ କାର୍ଯ୍ୟେ ବନ୍ଧୁଙ୍କୁ ଲୋଡ଼ନ୍ତି ଯେପରି ।
ତୁମ୍ଭ ଆମ୍ଭର ଅଛଇ ପ୍ରୀତି ବନ୍ଧୁପଣ
ଉଚ୍ଚବାଚ କରିବାର ଅଟେ ଅକାରଣ ।
ମାଧୁର୍ଯ୍ୟ ବଚନ ଯହୁଁ କହେ ସେନାପତି
ବାହୁଡ଼ି ରାଜା ଛାମୁରେ ଜଣାଇଲା ମନ୍ତ୍ରୀ ।
ଶୁଣ ସାବଧାନେ ସେହୁ ପଣ୍ଡୁରାଜ ପୁତ୍ର
କୋନ୍ତଭୋଜ ରାଜା ନାତି କୁନ୍ତୀଦେବୀ ସୁତ ।
ଯଜ୍ଞ ନିମନ୍ତେ ଅଇଲେ ରାଜା ନିମନ୍ତ୍ରଣେ
ବହୁ ସମାର୍ଜ୍ଜନା କରି କହେ ବନ୍ଧୁପଣେ ।
ବନ୍ଧୁପଣେ ବୁଝାଇଲା କରିଣ ଉତ୍ତମ
ଶୁଣି ତୃପ୍ତ ହେଲା ରାଜା ଶାନ୍ତି କଲା ତମ ।
ଆପଣେ ନୃପତି ଏକ ଅଶ୍ୱରେ ଆରୋହି
ସୈନ୍ୟବଳମାନଙ୍କୁ ସେ ପଛରେ ରଖାଇ ।
ଅଶ୍ୱ ତ୍ୟାଗକରି ତହୁଁ ଆପଣେ ନୃପତି
ହସ୍ତରେ ଚାମର ଧରି କରେ ପାଦଗତି ।
ଯେଉଁଠାରେ ବସିଛନ୍ତି ଅଶ୍ୱିନୀ ଆତ୍ମଜ
ଛାମୁରେ ପ୍ରଣାମକଲେ ରାଜା ଶ୍ରୀୟାଭୁଜ ।
ଶ୍ରୀଭୁଜରେ ସହଦେବ ରାଜା କଲେ କୋଳ
ଶ୍ରୀୟାଭୁଜର କଣ୍ଠରେ ଦେଲେ ରତ୍ନମାଳ ।
ବେନିକୁଳ ସମ୍ଭାଷଣ ଅନେକ ପୀରତି
କଟକେ ପ୍ରବେଶ ହେଲେ ଯାଇଣ ତଡ଼ତି ।
ଅନେକ ଅକ୍ଷତେ ପୂଜା କଲା ଶ୍ରୀୟାଭୁଜ
ଭୋଜନ ଯୋଗାଡ଼ ସବୁ ଆଗେ କରି ସଜ ।
ସହଦେବ ବୋଇଲେକ ମୋତେ ବେଳନାହିଁ
ଯାଇ ରାଜା ନିମନ୍ତ୍ରଣ କରିବଇ ମୁହିଁ ।
ନଉଦିନେ ନିମନ୍ତ୍ରିବି ତିନିସହସ୍ର ରାଜା
ମୋ ଦିଗ ରାଜାଏ ଆଗେ କରିବେ ଯେ ପୂଜା
ନିର୍ମଳ ଦେଶ ଅଟଇ ସେହି ପୁଣ୍ୟଭୂମି
ବ୍ରାହ୍ମଣେ ରାଜା ଅଟନ୍ତି ସର୍ବେ ମହାବ୍ରହ୍ମୀ ।
ପ୍ରଥମେ ଅକ୍ଷତ ଦେବେ ମହାଯଜ୍ଞ ସ୍ଥାନ
ନିର୍ଦ୍ୱନ୍ଦେ ନେବାକୁ ରାଜା ଆଜ୍ଞା- ଭଗବାନ ।
ଚାରିଦିଗକୁ ଅଇଲୁ ଆମ୍ଭେ ଚାରିଭାଇ
ଚାରିଉଣା ଲକ୍ଷେରାଜା ନିମନ୍ତ୍ରିବା ପାଇଁ ।
ନିଶ୍ଚିତ ଆଜ୍ଞା ଆମ୍ଭଙ୍କୁ ଦେଲେ ବାସୁଦେବ
ନଉଦିନରେ ନ ଗଲେ ମୁଣ୍ଡକାଟ ହେବ ।
ତେଣୁ ଭୋଜନ ଶୟନେ ମୋର ନାହିଁ ଇଚ୍ଛା
ଆଗେ ଯେ କରିବ ଦେଖା ପୂରିବ ତା ବାଞ୍ଛା ।
ଏହା କହି ନିମନ୍ତ୍ରଣ ଦେଲେ ସହଦେବ
ପାରିଦଣ୍ଡ ରାଜା ଘେନି ଏହିକ୍ଷଣି ଯିବ ।
ନିରାଧାର ଆଜ୍ଞା ପାଇ ସାଜି ପାରିଦଣ୍ଡ
ତକ୍ଷଣେ ବାହାରେ ରାଜା ତେଜି ରାଜ୍ୟଦଣ୍ଡ ।
ତହିଁ ସହଦେବ ଥାଟ ଚଳାଇ ହରଷେ
ପ୍ରବେଶ ହୋଇଲା ଯାଇଁ ମିଥିଳାର ଦେଶେ ।
ନନ୍ଦସେନ ବୋଲିକରି ତହିଁ ଅଟେ ରାଜା
ସହଦେବ ବିଜେ ଜାଣି କଲା ପାଦପୂଜା ।
ପଞ୍ଚାଶ ଭାର ସୁବର୍ଣ୍ଣ ଦେଖା ଦରଶନୀ
ଦର୍ଶନ କଲା ପଞ୍ଚାଶ ପୁତ୍ରଙ୍କୁ ସେ ଘେନି ।
ଆପଣେ ରାଜା ଚାମର ଢ଼ାଳଇ ଅଗ୍ରତେ
ପୁଣି ପୁଣି ପ୍ରଣିପାତ ହୁଅଇ ଭକତେ ।

ନିଉଛାଳି କରି ରାଜା ରହେ ପୁର ମେଣ୍ଟି
ମୋର ଶିରେ ଥୋଇଦିଅ ତୋର ପାଦଗୋଟି
ଜୀବନ କାରଣ କର ମୋର ଜନ୍ମ ଜନ୍ମେ
ଲଭିବି ଅନେକ ପୁଣ୍ୟ ଭକ୍ତି ଅନୁକ୍ରମେ ।
ସହଦେବ ବୋଇଲେ ଯେ ତୋ ଜୀବନ ସାଧୁ
ପୂର୍ବଦିଗ ରାଜାମାନେ ମୋର ପ୍ରାଣବନ୍ଧୁ ।
ଏହା କହିଣ ଅକ୍ଷତ ଦେଲେ ମହାମନ୍ତ୍ରୀ
ସମଦଣ୍ଡ ଘେନି ରାଜା ଚଳେ ତତ୍କ୍ଷଣାନ୍ତି ।
ସହଦେବ ଦକ୍ଷିଣକୁ ଗଲେ ମୁଖାକରି
ପ୍ରବେଶ ହେଲେ ନୀଳେନ୍ଦ୍ରି ନାମେ ଏକ ଗିରି ।
ନୀଳେନ୍ଦ୍ରି ନଦୀର ତୀରେ ନୀଳେନ୍ଦ୍ରିର ଦେଶ
ସେ କଟକ ଆୟତନ ଯୁଣ ପଞ୍ଚଦଶ ।
ଶତେକ ଯୋଜନ ସ୍ଥଳୀ ସେ ରାଜ୍ୟ ଅଟଇ
ଶତେ ପାରିଦଣ୍ଡ ନୀଳସେନକୁ ଘଟଇ ।
ରାଜାର ଆଜ୍ଞାରେ ଯାଇ କହିଲେ ମୁନେହି
ଶୁଣ ଦେବ ସାବଧାନେ ଦେଶବାର୍ତ୍ତା ଏହି ।
ହସ୍ତିନାପୁରେ ଯୁଧିଷ୍ଠି ନାମେ ମହାରାଜା
ରାଜୁସି ଯଜ୍ଞେ କରିବେ ନୃପତିଏ ପୂଜା ।
ସହଦେବ ନାମେ ଏହୁ ନକୁଳର ସାନ
ନିମନ୍ତି ଆସୁଅଛନ୍ତି ପୂର୍ବ ରାଜାମାନ ।
ଆମ୍ଭର ରାଜ୍ୟରେ ଆସି ହୋଇଲେ ପ୍ରବେଶ
ସୈନ୍ୟଙ୍କ ତେଜ ତାହାର ଅପୂର୍ବ ବିକାଶ ।
ଏସନକ ଶୁଣି ରାଜା କୋପେ ପରଚଣ୍ଡ
ସନ୍ନିଧିକୁ ହକାରିଲା ଶତେ ପାରିଦଣ୍ଡ ।
ବୋଇଲେ ଧାଆଁରେ ସର୍ବେ ବେଢ଼ିକରି ଧର
ଭାଙ୍ଗିବା ଦର୍ପ ତାହାରି ଜୀବନେ ନ ମାର ।
ତିରଣ ପରାୟେ ତାକୁ କଟାଡିବି ତୋଳି
ଅସ୍ଥି ମାଂସ ତାର ଆଜି ଦେବି ଖେଷାବଳି ।
ମୋହର ମହିମା ତାର ନାହିଁକି ଶୁଣିଲା
ନିଶ୍ଚୟରେ ନାଶକର ତା ପାଞ୍ଜି ପୋଛିଲା ।
ରାଜା ବଚନେ ସାଜିଲେ ସମସ୍ତ ସଇନି
ଗଜ ପୃଷ୍ଠେ ଚଢି ରାଜା ଅସିପତ୍ର ଘେନି ।
ଉଠିଲେ ସେ କୋପାନଳେ ରେକାର ଶବଦେ
ମହୀ ଉଛୁଳି ପଡ଼ିଲା ତାହାଙ୍କର ନାଦେ ।
କଟକେ ପଶନ୍ତେ ସହଦେବର ସଇନି
ଓଗାଳିଲେ ଯୋଦ୍ଧାମାନେ ଅସ୍ତ୍ରମାନ ଘେନି ।
ଝଲକାଇ ଲାଙ୍କିଆକୁ ବୁଲାବନ୍ତି ତୋଳି
ଶ୍ୟାମଳ ମେଘେ ଯେସନେ ଝଲକେ ବିଜୁଳି ।
କୋଦଣ୍ଡେ ଶର ପୂରାଇ ଅତି କୋପଭରେ
ଅବିକ୍ଷଣରେ ବିନ୍ଧିଲେ ସୈନ୍ୟଙ୍କ ଉପରେ ।
ଶରତ ମେଘୁ ଯେସନେ ହୁଏ ବଜ୍ରପାତ
ଗୁଣ ଟଙ୍କାର ଶବଦେ ଶୁଭେ ସେହିମତ ।
ସୈନ୍ୟେ ତିଆରି ବୋଲନ୍ତି ମାଦ୍ରୀଙ୍କର ବସ୍ତ
ରଜନୀ ପ୍ରକାଶ ହୋଇ ରଣୁ ଦଣ୍ଡେ ଘୁଞ୍ଚ ।
ମନ୍ତ୍ରିବରଙ୍କ ବଚନେ ଘୁଞ୍ଚନ୍ତି ସଇନି
କଟାଳ ଦେଖି ନାରାଚ ବିନ୍ଧିଲେକ ଘେନି ।
ବେନି ପ୍ରହର ହୋଇଲା ତହିଁ ଶରବୃଷ୍ଟି
ଶସ୍ତ୍ର ପଡ଼ିତାଳ ହେଉ ରାତିଗଲା ଫାଟି ।
ବେନି ସୈନ୍ୟଙ୍କର ଯହୁଁ ହେଲା ଦ୍ୱନ୍ଦ୍ୱଭାବ
ସସ୍ତ୍ରଯୋଦ୍ଧା ଘେନି ଉଠେ ତହୁଁ ସହଦେବ ।
ଆପଣା ସୈନ୍ୟମାନଙ୍କୁ ପଶ୍ଚାତ କରିଣ
ରହ ରହ ଡ଼ାକଦେଲା ପାଣ୍ଡବ ପଞ୍ଚାଣ ।
ଅହୋବଳ ସଂଗ୍ରାମରେ ପ୍ରସରିଲା ରାତି
ରଣେ ପଶେ ସହଦେବ ଆଉ ସେନାପତି ।
ଦଶସସ୍ର ଯୋଦ୍ଧା ଘେନି ସେହୁ ବୀରବର
ସେ ଦୁହିଙ୍କୁ ଆବୋରିଣ କରିଲା ସମର ।
ନ ଘୁଞ୍ଚନ୍ତି ସୈନ୍ୟ ତାର ବଡ଼ଇ ପ୍ରଚଣ୍ଡ
ସେ ନୀଳସେନ ରାଜାର ଶତ ପାରିଦଣ୍ଡ ।
ବହୁତ ସଇନ୍ୟ ତହୁଁ ହେଲେ ଅନାଅନି
ଉଠିଲେ ଏକ ମୁଖରେ ସହଦେବ ସୈନି ।
ବିନ୍ଧନ୍ତି ଶର ପରିଘ ପୁଣି ତୀକ୍ଷ୍ଣ ମୂନା
ପଡ଼ିଲେକ ରଥ ଗଜ ଫୁଟି ବଜ୍ର ସେନ୍ହା ।
ହସ୍ତୀଙ୍କ କୁମ୍ଭସ୍ଥଳରେ ଶର ହୋନ୍ତେ ବୃଷ୍ଟି
ଗର୍ଜନ ନାଦ କରିଣ ମଲେ ମହୀଲୋଟି ।
ଘୋର ଶସ୍ତ୍ର ବିଘାତରେ ଲୋଟନ୍ତି ରାଉତେ
ରଥ ଗଜ ଅଶ୍ୱ ଘେନି ପଳାନ୍ତି ସମସ୍ତେ ।
ସହଦେବଙ୍କର ସୈନ୍ୟ ଶ୍ରୀକୃଷ୍ଣ ପ୍ରସାଦେ
ପଡ଼ିଲେ ଅନେକ ଯୋଦ୍ଧା ରହି ଅପ୍ରମାଦେ ।
ବିକଳେ ବିପକ୍ଷ ସୈନ୍ୟ ପଳାଇଲେ ଭାଜି
ପାଣ୍ଡବ ବଳ ଉଠିଲେ ତହୁଁ ଗଳଗାଜି ।
ତିନିକ୍ରୋଶ ପରିଯନ୍ତେ ପାଏଡ଼ା ପାଡ଼ିଲେ
ଭଗ୍ନବଳ ରାଜା ଆଗେ ଯାଇ ଉଭା ହେଲେ ।
ତାଙ୍କୁ ଦେଖିଣ ବିସ୍ମୟ ହେଲା ଚକ୍ରବର୍ତ୍ତୀ
ଚାରିଲକ୍ଷ ଯୋଦ୍ଧା ଘେନି ଚଢ଼େ ମତ୍ତହସ୍ତୀ ।
ରହ ରହ ବୋଲିକରି ଡ଼ାକେ ନୃପମଣି
ଗର୍ଜିଣ ନାରାଚ ମାନ ବିନ୍ଧିଲାକ ଟାଣି ।
ରାଜା ଦେଖି ସହଦେବ ଯାଇ ହେଲା ଆଗ
ଦେଖିକରି ସ୍ତମ୍ଭୀଭୂତ ହେଲା ମହାନାଗ ।
ସହଦେବ ପଚାରଇ ସେ ନୀଳ ରାଜାକୁ
ଅକାରଣେ ରଣ କିପାଁ କରୁ ମରିବାକୁ ।

ମୁହିଁ ଅଇଲଇ ପୂର୍ବ ଦିଗର ବରଣେ
ରାଜୁସି ଯଜ୍ଞ ସଭାକୁ ରାଜା ନିମନ୍ତ୍ରଣେ ।
ପୂର୍ବ ରାଜା ଯାଉଛନ୍ତି ହସ୍ତିନା ରାଜ୍ୟକୁ
ତୋ ପରାୟ ମୂର୍ଖରାଜା ନ ଦେଖିଲି ତାଙ୍କୁ ।
ଜୀବନ ଝଗଡ଼ା ମଣୁ ଆୟୁ ଥାଉଁ ରାଜା
ନ କର ସଂଗ୍ରାମ ଏବେ ବେଗେ ଘୁଞ୍ଚି ଯା ଯା ।
ମୁଁ ଅଟେ ପାଣ୍ଡବଙ୍କର ସିନା ମନ୍ତ୍ରୀବର
ତୋ ଦୁଷ୍ଟପଣକୁ ଯୋଗ୍ୟ ଅଟେ ବୃକୋଦର ।
ଏବେ ତୋର ମନ୍ଦପଣ ଛାଡ଼ ହୋ ନୃପତି
ମୁହିଁ ସିନା ଆସିଅଛି ରାଜାଙ୍କୁ ନିମନ୍ତ୍ରି ।
ରାଜୁସି ଯଜ୍ଞ ଯାତ୍ରାର ଏମନ୍ତ ବିଧାନ
ଦର୍ଶନେ ଖଣ୍ଡଇ ପାପ ମିଳେ ବହୁ ପୁଣ୍ୟ ।
ପୂର୍ବଦିଗେ ରାଜା କେହି ନାହିଁ ଏଡ଼େ ଦୁଷ୍ଟ
ମୂର୍ଖ ଅଜ୍ଞାନୀ ତୁହିରେ ବଡ଼ାଇ ପାପିଷ୍ଠ ।
ଭଲେ ଭଲେ ବୁଝାଇଲି ଭଲପଣେ ମୁହିଁ
ତା ନୋହିଲେ ଏତେବେଳେ ଜୀଅନ୍ତୁକି ତୁହି ।
କହୁଁ କହୁଁ ସହଦେବ ବିକାଶିଲା ତେଜ
ନୀଳସେନ ନୃପତିକି ଦିଶେ ସସ୍ରଭୁଜ ।
ଏମନ୍ତ ଦେଖି ଆଶ୍ଚର୍ଯ୍ୟ ହୋଇଲା ରାଜନ
ଚିନ୍ତେ ଏ କି ସତ୍ୟଯୁଗ ସହସ୍ରଅର୍ଜୁନ ।
ପୁରାଣେ ଯା ଶୁଣିଥିଲି ଦେଖିଲି ତା ଡୋଳେ
ମୋହର ମନରୁ ଭ୍ରାନ୍ତି ଭାଙ୍ଗେ ଏତେକାଳେ ।
ଗୁଣ ସ୍ୱରୂପ ସକଳ ସୁମରିଣ ରାଜା
ତକ୍ଷଣେ ବାହନ ତାର କଲା ପରିତେଜ୍ୟା ।
କରରୁ ଛାଡ଼ିଲା ତହୁଁ କମାଣ କୋଦଣ୍ଡ
ପ୍ରଣିପାତ ହେଲା ଯାଇ ନୃପ ନୀଳଷଣ୍ଢ ।
ଗଡ଼ ଘାଲିଣ ଶୁତିଲା କରି ନିଉଛାଳି
ଆସ ନୀଳଷଣ୍ଢ ସହଦେବ ଦେଲେ ତୋଳି ।
ନୀଳସେନକୁ ତୋଳିଲା ନିଜ ରଥ ଛାଡ଼ି
ଆକର୍ଷିଣ କୋଳକଲା ଶ୍ରୀଭୁଜରେ ଭିଡ଼ି ।
ଏକ ରତ୍ନମାଳା ନେଇ ଲମ୍ବାଇଲା ହୃଦେ
ଦେଖି ଫିଟିଗଲା ଭ୍ରାନ୍ତି ପରମ ଆନନ୍ଦେ ।
ବୋଇଲା ମୁଁ ଅଟେ ମୂର୍ଖ ପୁଣିହିଁ ଅଜ୍ଞାନ
ନୁହଇ ଧାର୍ମିକ ମୁହିଁ ପୁଣ ଶିଷ୍ଟଜନ ।
ତୁହି ଶରଣପଞ୍ଜର ଜଗଜ୍ଜନ ବନ୍ଧୁ
ଏ ମଧ୍ୟଭୁବନେ ତୋର ଜୀବନହିଁ ସାଧୁ ।
ତୁହି ଶରଣରକ୍ଷଣ କରୁଣାସାଗର
ଦାସ ଦୋଷ କ୍ଷମା ତୁହି କର ଯେ ମୋହର ।
ସହଦେବ ବୋଇଲେ ଯେ ଅଜ୍ଞାନ ପ୍ରାଣୀକି
ପଣ୍ଡିତେ ନ ଧରିଥାନ୍ତି ତାହାର ବାଣୀ କି ।
ସହଦେବ ବୋଲେ ଆଉ ନ ଭାଳ ତୁ ଚିତ୍ତେ
କ୍ଷତ୍ରି ବୃତ୍ତି ଥିଲେ ନିଶ୍ଚେ ଘଟଇ ଏମନ୍ତେ ।
ଗତଦୋଷ ପାଇଁ ଆଉ ନ କର ତୁ ଭୀତି
ଏ ପୂର୍ବ ଦିଗେ ଆସିଲି ରାଜାଙ୍କୁ ନିମନ୍ତ୍ରି ।
ଚିହ୍ନି ନ ପାରିବାରୁହିଁ ଅକାରଣେ ଦୋଷୀ
ବିନା ଅପରାଧେ ତୋର ବଳ ଦେଲି ଧ୍ୱଂସି ।
ଏହାକହି ନିମନ୍ତ୍ରଣ ଦେଇ ସେ ରାଜାକୁ
ବୋଇଲା ତୁ ଦଣ୍ଡ ଘେନି ଚଳ ଜୟନ୍ତାକୁ ।
ଶୁଣି ସହଦେବ ପାଦେ ହେଲା ପରଣାମି
ବୋଇଲା ଆଜକ ରହ ଆହେ ଦେବସ୍ୱାମୀ ।
ସହଦେବ ବୋଇଲା ତୁ ଚଳ ସୈନ୍ୟ ଘେନି
କ୍ଷଣହେଁ ନ ରହି ଯଥ ଦିବସ ରଜନୀ ।
ତାହା ଶୁଣି ନୀଳସେନ ସୈନ୍ୟ ସଜକରି
ବାହାର ହୋଇଲା ବେଗେ ଗଡ଼ ପରିହରି ।
ଜୟ ଜୟ ଚକାଆଖି ନୀଳାଦ୍ରି ବିହାରୀ
ଜୟ ଜୟ ଲକ୍ଷ୍ମୀକାନ୍ତ ଶଙ୍ଖ ଚକ୍ରଧାରୀ ।
ଜୟ ହେ କରୁଣାସିନ୍ଧୁ ଶରଣ ରକ୍ଷଣ
ତିନି ଭୁବନ ପ୍ରାଣୀବି ଅଟୁ ତୁ କାରଣ ।
ତୋର ପାଦପଦ୍ମେ ଯେହୁ ଦୃଢ଼ତା ରଖଇ
ତାହାକୁ ପରୀକ୍ଷା କରୁ ନାନା କଷ୍ଟ ଦେଇ ।
ତହିଁରୁ ନିବର୍ତ୍ତ ହୋଇ ଯେହୁ ସେବାକରେ
ତାହାକୁ ନ ଛାଡୁ କ୍ଷଣେ ଥାଉ ତା ସଙ୍ଗରେ ।
ଦୁଃଖ ସୁଖ ପାଇଁ ମୁହିଁ ନ କରେ ଭାବନା
ନିଶ୍ଚଳେ ତୋହର ନାମ ରଟୁ ମୋ ରସନା ।
ସଂସାର ଜଞ୍ଜାଳଜାଲେ ନ ରହିବ ମତି
ଏହାହିଁ ଶାରଳାଦାସ ମାଗଇ ସମ୍ପ୍ରତି ।



## କେଶବରାଜା, ଶକୁନି ଓ ସହଦେବଙ୍କର କଥୋପକଥନ, ହୃଷୀକେଶ ତ୍ରିକାଳହସ୍ତା ଓ ଚଉଦପୁର ନରପତି ପ୍ରଭୃତିଙ୍କୁ ନିମନ୍ତ୍ରଣ ଏବଂ କପିଳ ମୁନିଙ୍କ ଦ୍ୱାରା ସଗରବଂଶ ଧ୍ୱଂସ ଓ ଗଙ୍ଗାଆନୟନ ବିବରଣ କଥନ

ପଚାରିଲେ ବୈବସ୍ୱତ ମନୁ ନୃପରାଣ
ହେ ଅଗସ୍ତି ମୁନି କହ ଅନ୍ୟ ବିବରଣ ।
ଏଥୁଅନ୍ତେ ସହଦେବ କଲେ କେଉଁ କୃତ୍ୟ
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ ।
ବଦନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ସହଦେବ ତହୁଁ ଚଳି ଚଳାଇଲେ ସୈନ୍ୟ ।

ଭାବିନୀ ବୋଲିଣ ଅଛି ନଦୀ ଏକଗୋଟି
ବିଷ୍ଣୁଭଦ୍ରା ନଦୀରୁ ସେ ବାହାରିଅଛି ଫୁଟି ।
ସେ ନଦୀକୂଳେ ଚଳଇ ସହଦେବ ଥାଟ
ମଧୁମାତଙ୍ଗ ଦେଶରେ ହୋଇଲେ ନିକଟ ।
ହସ୍ତି କାଳନଗ୍ର ବୋଲି ଏକ ପର୍ବତ
ତହିଁ ଯାଇ ବିଜେକଲେ ପଣ୍ଡୁରାଜା ସୁତ ।
ସେ ଦେଶର ରାଜା ନୀଳକେଶବ ନୃପତି
ବିଜେ କରିଛି ସମ୍ଭର୍ବେ ଆସ୍ଥାନ ଜଗତୀ ।
ଚାରଗଣ ଜଣାଇଲେ ନୃପତିର ପାଶେ
ପରଦେଶ ରାଜାଟିଏ ବିଜେ ଆମ୍ଭ ଦେଶେ ।
ବଡ଼ାଇ ସମ୍ଭର୍ବେ ଦେବ ଆଣିଛି ସଇନି
ଆକାଶ ଉଛୁଳୁଅଛି ବୀରତୂର ଧ୍ୱନି ।
ଚାର ବଚନରେ ନୀଳ କେଶବ ଯେ ରାଜା
ବୋଲେ କେବଣ ଦେଶର ପୁଛିଅ ସ ଯା ଯା ।
ରାଜାର ବଚନେ ବେଗେ ଗଲେ ଚାରଗଣ
ରାଇବା ପରାୟେ ହୋଇ ମିଳିଲେ ଯାଇଣ ।
ଆଗୁଆଣିର ଥାଟକୁ ପୁଛନ୍ତି ବାରତ
କେଉଁ ଦେଶୁ ତୁମ୍ଭେମାନେ ହୋଇଲ ଆଗତ ।
ସୈନ୍ୟ ବୋଇଲେ ତୁମ୍ଭର ନୃପେ କହ ଯାଇ
ସୋମବଂଶ ଯୁଧିଷ୍ଠିର ଦେବ ସାନଭାଇ ।
ରାଜସୂୟ ମହାଯଜ୍ଞ କରିବା ନିମନ୍ତେ
ସହଦେବ ବିଜେ ରାଜା ନିମନ୍ତ୍ରଣ ଅର୍ଥେ ।
ସୈନ୍ୟମାନଙ୍କ ମୁଖରୁ ପାଇଣ ଉଦନ୍ତ
ତକ୍ଷଣେ ବାହୁଡ଼ିଗଲେ କେଶବର ଦୂତ ।
କେଶବସେନ ଛାମୁରେ ଜଣାଇଲେ ଯାଇ
ସହଦେବ ଆସିଛନ୍ତି ନିମନ୍ତ୍ରିବା ପାଇଁ ।
ଏମନ୍ତ ବାରତା ଶୁଣି ସାନନ୍ଦ ନୃପତି
ଆସ୍ଥାନ ତେଜିଣ ରାଜା ଆସଇ ତଡ଼ତି ।
ସେ ନଗର ବାହାରରେ ଛନ୍ତି ସହଦେବ
ଦର୍ଶନ କରିଲା ଯାଇ ନୃପତି କେଶବ ।
କେତେକ ଦୂରରୁ ରାଜା କରି ନିଉଛାଳି
ଶରୀରୁ ତ୍ରିପଣ୍ଡ ଝାଳ ବହିଲାକ ଗଳି ।
ବହୁତ ବିନୟ ହୋଇ କହିଲା କେଶବ
ଶ୍ରୀଭୁଜରେ କୋଳାଗ୍ରତ କରେ ସହଦେବ ।
ବୋଇଲେ ତୋ ସମଦଣ୍ଡ ଘେନି ମହାରାଜା
ଜୟନ୍ତୀ ରାଜ୍ୟକୁ ତୁହି ବେଗହୋଇ ଯାଯା ।
ସହଦେବର ବଚନ ଶୁଣି ନୃପମଣି
ବୋଇଲା ଆଜ୍ଞା ପ୍ରମାଣେ ଯିବି ଏହିକ୍ଷଣି ।
ନିମନ୍ତ୍ରଣର ଯୋଗାଡ଼ ଦେଲା ମହାମନ୍ତ୍ରୀ
ବହୁତ ଗୌରବ କରି କରିଲା ଭକତି ।

ତହୁଁ ସହଦେବ ମନ୍ତ୍ରୀ ଚଳେ ଦଣ୍ଡବାହି
ଗାନ୍ଧାର ଦେଶେ ପ୍ରବେଶ ହୋଇଲାକ ଯାଇ ।
ଗାନ୍ଧାର ଦେଶ ନୃପତି ଅଟଇ ଶକୁନି
ତା ରାଜ୍ୟେ ପ୍ରବେଶ ହେଲା ଘେନି ଅନୀକିନୀ
ପରରାଷ୍ଟ୍ରର ସୈନ୍ୟଙ୍କୁ ଦେଖିଣ ମୁନେହି
ଆସ୍ଥାନ ତଳେ କହିଲେ ଶକୁନିକି ଯାଇ ।
ସ୍ୱାମୀ ଅଳ୍ପ ସୈନ୍ୟ ଘେନି କେଉଁ ଦେଶ ରାଜା
ଘୋର ଶବଦରେ ପୁଣି ବଜାଉଛି ବାଜା ।
ଶୁଣିକରି ଆଜ୍ଞାଦେଲା ସେ ମନ୍ତ୍ରୀ ଶକୁନି
ରାଜ୍ୟେ ପଶି ନ ଦିଅରେ ଓଗାଳି ସଇନି ।
ଦେଢ଼ଶତ ପାରିଦଣ୍ଡ ରାଜାଙ୍କୁ ହକାରି
ଆଜ୍ଞାଦେଲା ପ୍ରଦେଶୀକି ଆଣ ଯାଇ ଧରି ।
ମୋର ଦେଶେ କିପାଁ ସେହୁ ଏଡ଼େକ ପ୍ରଚଣ୍ଡ
ସୁରନଦୀର କୂଳରେ କାଟ ତାର ମୁଣ୍ଡ ।
ରାଜାର ବଚନ ଶୁଣି ଚଳିଲେ ସଇନି
ଗାଢ଼େ ଆଜ୍ଞାଦେଲା ଯହୁଁ ସେ ମନ୍ତ୍ରୀ ଶକୁନି ।
ଅସିପତ୍ର କୋନ୍ତ ଆଦି ବୁଲାଇଲେ ତୋଳି
ଝଟକଇ ତୀକ୍ଷ୍ଣମୁନା ବିଜୁଳିକି ବଳି ।
ନିରନ୍ତର ଶରବୃଷ୍ଟି ଜଳଧାରା ଜାଣି
ଏହି ପରକାରେ ଦେଖି ଭାଜିଲେ ସଇନି ।
ପାରିଦଣ୍ଡ ରାଜା ଉଠି କଲେ ଶରବୃଷ୍ଟି
କାଣ୍ଡ ବିନ୍ଧନ୍ତେ ନ ଦିଶେ ତାହାଙ୍କର ମୁଷ୍ଟି ।
ଗଦା ମୁଦ୍ଗର ଛେଲ ଚକ୍ର କୋନ୍ତ ଯାଠି
ଅଶ୍ୱ ଗଜ ଉପରରେ ବୁଲାଇଣ ପିଟି ।
ଉଭୟ ଦିଗ ସଇନି ରଣେ ନ ଘୁଞ୍ଚନ୍ତି
ମହାଘୋର ନାଦକରି ସମର କରନ୍ତି ।
ପାଣ୍ଡବ ସଇନିମାନେ ରଣରେ ନିର୍ଭୟା
ନାରାୟଣଙ୍କ ପ୍ରସାଦେ ଅତୁଟ ଯା କାୟା ।
କୋପରେ ଉଠିଲେ ବୀର ଉପରୋଧ ଛାଡ଼ି
ଗଜ ଅଶ୍ୱ ସଇନିଙ୍କୁ ପଡ଼ିଲେ ସେ ମାଡ଼ି ।
ଏକମୁଖ ହୋଇ ଯହୁଁ ଉଠେ ସମଦଣ୍ଡ
ମୁଖରାବ ଶବଦରେ କମ୍ପିଲା ବ୍ରହ୍ମାଣ୍ଡ ।
ପାଣ୍ଡବ ବଳ ସକଳ ଆକର୍ଷିଣ ଘୋଟି
ଶସ୍ତ୍ର ବିଘାତେ ଗାନ୍ଧାର ସୈନ୍ୟ ପଡ଼ି ଲୋଟି ।
ପବନଘାତେ ଲୋଟନ୍ତି ଯେହ୍ନେ ଦ୍ରୁମମାଳା
ତେମନ୍ତ ରକ୍ତଦର୍ଶନେ ସୈନ୍ୟେ ହେଲେ ଭୋଳା
ଆଗୁଆଣି ଥାଟ ଥିଲେ ପଞ୍ଚଦଶ ଯୋଧି
ପାଣ୍ଡବ ବଳ ବିଘାତେ ହୋଇଗଲେ ମର୍ଦ୍ଦି ।
ଦଣ୍ଡଭଗ୍ନ ଦେଖିକରି ଗାନ୍ଧାର ଶକୁନି
ଆପଣେ ଉଠିଲେ ଦଶଲକ୍ଷ ଯୋଦ୍ଧା ଘେନି ।

ଦୂରୁ ଦେଖିଲା ମଦନାଦେବୀଙ୍କର ବାଳ
ବିଚାରଇ ଶକୁନି ଏ ଆମ୍ଭର ମାତୁଳ ।
ଏମନ୍ତ ବିଚାର କରି ତହୁଁ ହେଲା ଆଗ
ଶକୁନି ଆଗରେ ରଥ ଟେକିଲାକ ବେଗ ।
ରଥରୁ ଉତୁରି ତହୁଁ ମାଦ୍ରୀଦେବୀ ସୁତ
ଶକୁନି ଆଗକୁ ଯାଇ ହେଲା ପ୍ରଣିପାତ ।
ଗଜୋପରେ ଥାଇ ଦେଖେ ଗାନ୍ଧାରର ରାୟେ
ତହୁଁ ନାଗ ତେଜ୍ୟା କରି କହଇ ବିନୟେ ।
ବାବୁ ତୋତେ ନ ଜାଣଇ ସହଦେବ ବୋଲି
ଅଜ୍ଞାନରେ ତୋର ତୁଲେ ମୁହିଁ ଦ୍ୱନ୍ଦ୍ୱ କଲି ।
ତୁମ୍ଭେମାନେ ଅଟ ମୋର ଜ୍ୟେଷ୍ଠଭଗ୍ନୀ ସୁତ
ଅଜ୍ଞାନପଣେ ମୋ ସୈନ୍ୟ ମରିଲେ ବହୁତ ।
ସୁରବର ସୁନ୍ଦର ତୁ ପାଣ୍ଡବ ପ୍ରଚଣ୍ଡ
ତୁ ଧର୍ମ ବିଚାର କରି ଦିଅ ମୋତେ ଦଣ୍ଡ ।
ସହଦେବ ବୋଇଲା ଯେ ଭକ୍ତିଭାବ ବହି
ମାମୁଁ ତୋର ରାଜ୍ୟ ବୋଲି ମୋର ଜ୍ଞାନ ନାହିଁ
ଏହି ତ ଗାନ୍ଧାର ଦେଶ ଅଟଇ ଯୁକତେ
ଦେଶାଉରେ ବାରତାକି ନ କହିଲେ ତୋତେ ।
ଶକୁନି ବୋଲେ ଅଜ୍ଞାନେ କରିଲି ମୁଁ ଦୋଷ
ଯୁଧିଷ୍ଠିର ଆଗରେ ନ କରିବୁ ପ୍ରକାଶ ।
କି ବୋଲିବେ ପୁଣି ଧୃତରାଷ୍ଟ୍ର ବା ଗାନ୍ଧାରୀ
ଭୀମାର୍ଜ୍ଜୁନ କୋପ ହେବ ପୁଣି ଦେବ ହରି ।
ସହଦେବ ବୋଲଇ ଅଜ୍ଞାନ ଅଟେ ଯେହୁ
ଅଜ୍ଞାନ ଗୋପ୍ୟ କଥାକୁ ପ୍ରକାଶଇ ସେହୁ ।
ଶକୁନି ବୋଇଲା ବାବୁ ମୋତେ ବଡ଼ ଲଜ୍ଜା
ମନ୍ତ୍ରୀବୋଲେ ସାଧିନେବି ଏ ଦିଗର ରାଜା ।
ଶକୁନି ବୋଇଲେ ତୁମ୍ଭପାଇ ବଡ଼ଦୁଃଖୀ
ତୁମ୍ଭ ହାତରେ ମରଣ ଲଭି ହେବି ସୁଖୀ ।
ଦୁର୍ଯ୍ୟୋଧନ ମାମୁଁ ପୁଣି ସଚିବ ଅଦ୍ୟପି
ପାଣ୍ଡବଙ୍କ ହିତାର୍ଥରେ ବଞ୍ଚେ ମୁଁ ଅଦ୍ୟାପି ।
ସହଦେବ ବୋଲେ ମାମୁଁ ଜାଣେ ସର୍ବତତ୍ତ୍ୱ
ଏତେ କାଳରେ କହିଲୁ ତାଙ୍କ ମୃତ୍ୟୁପଥ ।
ମାମୁଁ ମୁ ଜାଣିଛି ଯାହା ଏହା ତତ୍ତ୍ୱକଥା
ବେନିମନ୍ତ୍ରୀ କୁହାକୁହି ହେଲେ ଯେ ବାରତା ।
ଶକୁନି ବୋଇଲା ତୁହି ଶୁଣ ଆରେ ବାବୁ
ମହାଭାରତ ଯୁଦ୍ଧ ନିଶ୍ଚେ କରାଇବୁ ।
କୁରୁ ପାଣ୍ଡବ ଯଦ୍ୟପି ଏକତ୍ର ଏକ୍ଷଣି
ତୁମ୍ଭମାନଙ୍କୁ ଶାସ୍ତି ଯେ ଦେବେ ଚକ୍ରପାଣି ।
ବହୁତ କଷ୍ଟ ପାଉଛି ଜାଣ ବସୁନ୍ଧରା
ମହାଭାରତ ଯୁଦ୍ଧରେ ଉଣା ହେବ ଭାରା ।

ମୁଁ ତୋତେ ଦଇନୀ କରି ବୋଲୁଅଛି ବାବୁ
କୌରବ ବଂଶକୁ ନିଶ୍ଚେ ନାଶ କରାଇବୁ ।
ମୁହିଁ ତ କୌଶଳେ ତାଙ୍କ ବଂଶ ମରାଇବି
ରଣଯଜ୍ଞ କରି ମୁହିଁ ଶେଷେ ନାଶଯିବି ।
ପରକାଳକୁ କାରଣ ମାଗୁଅଛି ତୋତେ
ସମରରେ ଶରାଘାତ କରିବୁ ତୁ ମୋତେ ।
ବାବୁ ତୋ ହାତରେ ମୁହିଁ ମଲେ ପ୍ରାଣତେଜ୍ୟା
ଅବସ୍ଥା ଦେଇ ନ ପାରେ ମୋତେ ଜନ୍ତୁରାଜା ।
ତାହା ଶୁଣି ସହଦେବ କହିଲା ଉତ୍ତର
ଏ ସର୍ବ ବିଷୟ ମୋତେ ଅଟଇ ଗୋଚର ।
ବହୁକାଳ କଥା ତୋର ପିତା ବିବରଣ
ତୋ ଜ୍ଞାତିମାରେ ପଥର ଘରରେ ଭରିଣ ।
ଶଏ ଛୟାଶୋଇ ଜଣ ପୂରାଏ ସେ ଘରେ
ତୁହିଁ ତ ବଞ୍ଚିଲୁ ତହିଁ ବଡ଼ କୌଶଳରେ ।
ତୋ ପିତା ଗାନ୍ଧାରସେନ ଯା କହି ମରିଛି
ସେ ସକଳ କଥା ତୋର ନିଶ୍ଚେ ମନେ ଅଛି ।
ତାର ହାଡ଼ହାଡ଼ ନେଇ କରିଛୁ ତୁ କାଠି
ସେ କାଠିରେ ଖେଳି ନିଶ୍ଚେ ହାରିବେ ଯୁଧିଷ୍ଠି ।
ଆମ୍ଭରି ସମ୍ପଦଯାକ ଦେବୁ ଦୁର୍ଯ୍ୟୋଧନେ
ପରେ ମରାଇବୁ ତାକୁ ସବଂଶେ ଜୀବନେ ।
ଏହିପରି ପୃଥ୍ୱୀଭାର ଉଶ୍ୱାସ କରିବୁ
ପରିଶେଷେ ତୁହି ମଧ ସଂସାରରୁ ଯିବୁ ।
ଏହାକହି ନିମନ୍ତ୍ରଣ ଦେଲା ସହଦେବ
ଦଣ୍ଡଘେନିଣ ମାତୁଳ ବହନରେ ଯିବ ।
ସେ ଶକୁନି ମହାମନ୍ତ୍ରୀ ଅନେକ ଗୌରବେ
ଆପଣା ଭୁବନେ ଘେନି ଗଲେ ସହଦେବେ ।
ଅପେକ ସମ୍ଭର୍ବରେ ଯେ କରାଏ ମଣୋହି
ସେ ଦିନକ ସହଦେବ ସେ ଦେଶରେ ରହି ।
ପରଦିନ ବୋଲେ ମାମୁଁ ଚଳ ଏହିକ୍ଷଣ
ବେଗେ ଯାଅ ରାଜାଙ୍କୁ ତୁ କର ସମ୍ଭାଷଣ ।
ସହଦେବର ବଚନେ ସାନନ୍ଦ ଶକୁନି
ବୋଲେ ଐଶାନ୍ୟ କୋଣର ରାଜା ଯିବି ଘେନି
ଐଶାନ୍ୟ କୋଣର ମୁହିଁ ଅଟେ ମହାଯୋଧି
ଦୁଇ ସହସ୍ର ରାଜାଙ୍କୁ ଜିଣିଅଛି ସାଧି ।
ଅନେକ ସମ୍ଭର୍ବ କଟି ବାହାରେ ଶକୁନି
ଚଳଇ ଗାନ୍ଧାରବଳ ସର୍ବ ସଙ୍ଗେ ଘେନି ।
ଶକୁନି ମହାରାଜା ଯେ ଥାଟ ଚଳାଇଲେ
ବହୁତ ଦେଶର ନୃପ ସଙ୍ଗେ ଗୋଡ଼ାଇଲେ ।
ତହୁଁ ସହଦେବ ବୀର କରିଲେ ପ୍ରୟାଣ
ବାଜଇ ଯେ ବିଜିଘୋଷ ଟମକ ନିଶାଣ ।

ସାଗର କୂଳ ମହୀନ୍ଦ୍ର ନାମେ ଏକଦେଶ
ତହିଁର ରାଜାର ନାମ ଅଟେ ହୃଷୀକେଶ ।
ସହଦେବ ବିଜେକଲେ ଯହୁଁ ସେହି ରାଜ୍ୟେ
ବାର୍ତ୍ତାପାଇ ହୃଷୀକେଶ କଲେ ତହୁଁ ବିଜେ ।
ବହୁତ ପଦାର୍ଥମାନ ଆଣିଲା ଛାମୁକୁ
କଉତୁକେ ସହଦେବ ପୁଚ୍ଛାକଲେ ତାକୁ ।
ଅଶୀସହସ୍ର ଘର ଯେ ସେ ରାଜ୍ୟେ ବସଇ
କାନ୍ଥ ରୁଅ ଶ୍ରେଣୀ ଆଦି ସୁବର୍ଣ୍ଣ ଅଟଇ ।
ଶୁଦ୍ଧ ସୁବର୍ଣ୍ଣ ନିର୍ମିତ ଜଗତୀ ମଣ୍ଡପ
ତିରଣ ଛାଉଣି ଘର ନାହିଁ ତା ସ୍ୱରୂପ ।
ମୁହିଁ ଅଇଲି ବାଟୁରେ ବହୁସ୍ଥାନ ଭ୍ରମି
କାହିଁ ନ ଦେଖିଲି ଏଡ଼େ ରାଜ୍ୟେକ ଉତ୍ତମି ।
ଶୁଣି ହୃଷୀକେଶ ରାଜା କହଇ ପ୍ରଣମି
ସତ୍ୟଯୁଗ କଥା ତେବେ ଶୁଣ ଦେବ ସ୍ୱାମୀ ।
ସେ ଯୁଗେ ମାହେନ୍ଦ୍ର ନାମେ ଥଲେ ଏକରାଜା
କ୍ଷୀରୋଦ ସାଗର ସେହୁ ନିତି କରେ ପୂଜା ।
ଲକ୍ଷେ ବତିଶ ବରଷ ଏମନ୍ତ ସେ ଖଟି
ବାରାନିଧି ସେବାକରି ରାଜା ବହୁକଷ୍ଟୀ ।
ତୁଳ କୃଷ୍ଣପକ୍ଷ ଗୁରୁବାର ଯେ ପଞ୍ଚମୀ
ରୋହିଣୀ ନକ୍ଷତ୍ରେ ବିଜେ ଲକ୍ଷ୍ମୀ ମର୍ତ୍ତ୍ୟେ ଭ୍ରମି ।
ଲକ୍ଷ୍ମୀ ତୁଲେ ଚିଲ ପେଚା ଛନ୍ତି ବେନି ଦାସୀ
କୋଟିତୀର୍ଥ ଜଳେ କରେ ସୁବର୍ଣ୍ଣ କଳସି ।
ଚାମର ଢାଳନ୍ତି ବେନି ପାର୍ଶ୍ୱରେ ନାୟିକା
ଦେଖିଲେ ମାହେନ୍ଦ୍ର ରାଜା ପୂଜା କରେ ଏକା ।
ବରୁଣଜେମା ରାଜାକୁ ଦେଖଇ ରାତ୍ରିକାଳେ
ପ୍ରସନ୍ନ ହୋଇଲେ ଦେବୀ ଅତି କୁତୂହଳେ ।
ରାଜାକୁ ପ୍ରସନ୍ନ ହୋଇ ଦେବୀଜଗଦ୍ଧାତ୍ରୀ
ବୋଇଲେ ତୁ ସେବ ଗୁରୁ ପଞ୍ଚମୀର ତିଥି ।
ଗୋସାମଣୀଙ୍କ ଆଜ୍ଞାରେ ମାହେନ୍ଦ୍ର ନୃପତି
ପାଳିଲା ସେ ବ୍ରତକରି ଲକ୍ଷ୍ମୀଙ୍କୁ ତଡ଼ତି ।
ସ୍ୱାମୀ କମଳା ବଚନେ ହେଲା ମହାରାଜ
ତେଣୁକରି ସ୍ୱର୍ଣ୍ଣମୟ ହେଲା ଏହି ରାଜ୍ୟ ।
ବୋଇଲେ ନ ସରେ ଦେଉଅଛି ଯେତେ ନିଧି
ପୂର୍ବର କଥା ଅଟଇ ଏସନକ ବିଧି ।
କାଳେ ମହାଲକ୍ଷ୍ମୀ ଯହୁଁ ଏହି ବର ଦେଲା
ଏହି ଗଡଗୋଟା ତହୁଁ ସ୍ୱର୍ଗଧାମ ହେଲା ।
ଅନେକ ବିନୟୀ ହୋଇ କହେ ହୃଷୀକେଶ
ମନ୍ତ୍ରୀବର ତାହା ଶୁଣି ହୋଇଲା ହରଷ ।
ଅକ୍ଷତ ଗୁବାକ ଦେଲା ବୀର ଚୂଡ଼ାମଣି
ବୋଇଲା ରାଜୁସିଯାଗେ ଯାଅ ଏହିକ୍ଷଣି ।
ସସଦଣ୍ଡ ଘେନିଣ ସେ ମାହେନ୍ଦ୍ର ନୃପତି
ଥାଟ ସଜ କରିଣ ସେ ଚଳେ ତତ୍‌କ୍ଷଣାନ୍ତି ।
ତହୁଁ ମନ୍ତ୍ରୀ ଚଳିଗଲେ କରି ଅନୁକୂଳ
ତ୍ରିକାଳ ହସ୍ତୀ ଭେଟିଲେ ତ୍ରିକୂଟଗିରି ତଳ ।
ସନ୍ଦେଶ ଗାରେଡ଼ି ସେହୁ ପ୍ରତ୍ୟକ୍ଷ ଦେବତା
ସହଦେବ ସଙ୍ଗେ ହେଲେ ବହୁକାଳ କଥା ।
ପ୍ରତ୍ୟକ୍ଷ ନାରାୟଣ ସେ ବେଙ୍କଟର ବିନୋଦୀ
ବାମପାଦେ ମାଡ଼ିଅଛି ମହାରସନିଧି ।
ଯେଉଁ ଦେବତା ଦର୍ଶନେ ଦୁଷ୍କୃତାଦି ହରି
ଚାରିଯୁଗରେ ମନୁଷ୍ୟରୂପେ ଅବତରି ।
ଅକ୍ଷତ ଗୁବାକ ଆଦି ଅର୍ଘ୍ୟଥାଳେ ଥୋଇ
ସହଦେବ ଶୁତିଲାକ ପାଦତଳେ ଯାଇ ।
ମନ୍ତ୍ରୀବର ପୁନଃ ପୁନଃ ହୋଇ ପରଣାମି
ବୋଲେ ରାଜୁସି ଯାଗକୁ ଯିବ ଦେବସ୍ୱାମୀ ।
ବଦୟନ୍ତି ମହାତମା ସେ ତ୍ରିକାଳ ହସ୍ତୀ
ଯମପ୍ରସ୍ଥ ବନେ ଆମ୍ଭେ ଯାଇ ନିତିପ୍ରତି ।
ଯେତେ ଜୀବମାନଙ୍କୁ ହୋ କରନ୍ତି ଭୋଜନ
ହରିଣ ମୃଗ ଗଣ୍ଡାର ଆଦି ଜୀବମାନ ।
ଘାନ୍ତିକରେ ଲକ୍ଷେ ଲକ୍ଷେ ଆଣୁଥିବ ମାରି
ଶବରମାନେ ଆଣିବେ ଯାଇ ଭାରକରି ।
ବନଜୀବଙ୍କୁ ଯୋଗାଡ଼ ଲାଗିବଟି ଯେତେ
ନିତିପ୍ରତି ମାରିକରି ଦେଉଥିବି ତେତେ ।
ତାହାଶୁଣି ସହଦେବ ହେଲା ତୋଷମନ
ତହୁଁ ମହାତ୍ମା ହୋଇଲେ ତହିଁ ଅନ୍ତର୍ଦ୍ଧାନ ।
ଚଳେ ସହଦେବ ତହୁଁ ଚଳାଇଣ ଦଣ୍ଡ
ବିହରନ୍ତି ଯୋଦ୍ଧାମାନେ ବଡ଼ାଇ ପ୍ରଚଣ୍ଡ ।
କ୍ଷୀରୋଦ କୂଳେ ବେଲାଳ ନାମେ ଅଛି ଦେଶ
ତହିଁ ସହଦେବ ଥାଟ ହୋଇଲେ ପ୍ରବେଶ ।
ବାଲ୍ୟକାଳେ କଲା ସେହୁ ଗୌତମୀ ଭକତି
ସେ ଦେଶ ରାଜା କେରଳ ନାମେ ଚକ୍ରବର୍ତ୍ତୀ ।
ସିଂହ ବୃହସ୍ପତି ଯୋଗେ ଗୌତମୀ କୂଳରେ
ଗୌତମ ଦାନ ଘେନିଲେ ପ୍ରଚୁର ପ୍ରକାରେ ।
ଏରୂପେ ଦାନ ଘେନନ୍ତି ଦିବସ ରଜନୀ
ତହୁଁ ହୋଇଲା ତାଙ୍କର ଗୋରୁପଲ ତିନି ।
ପଞ୍ଚାଶତ ଗାଈରେ ଯେ ହୁଏ ଏକପଲ୍ଲି
ଚବିଶ ପଲ୍ଲିରେ ଜାତ ଏକ ଗୋଷ୍ଠ ବୋଲି ।
ଚବିଶ ଗୋଷ୍ଠରେ ଏକ ଲଉଡ଼ି ନିର୍ମାଣି
ଚବିଶ ଲଉଡ଼ି ହେଲେ ମହାଖୋଡ଼େ ଗଣି ।
ଚବିଶ ମହାଖୋଡ଼ରେ ହୁଏ ଯେତେ ଗାଈ
ଏତେକ ଉପରେ ଖଟେ ଏକ ମହାଭୋଇ ।

ଏମନ୍ତ ଚବିଶ ମହାଭୋଇ ତହିଁ ଥିଲେ
ତୋଷେ ମହାତ୍ମା ବେଲାଳ ସେନକୁ ସେ ଦେଲେ ।
ଯେତେକ ଘୃତ ଲାଗଇ ତାଙ୍କର ହୋମକୁ
ବେଲାଳସେନ ଦିଅଇ ନିତି ଗୌତମଙ୍କୁ ।
ଗୌତମଙ୍କ ପ୍ରସାଦେ ସେ ବେଲାଳ ରାଜା
ମହୋଦଧି କୂଳେ ସର୍ବେ କରୁଥାନ୍ତି ପୂଜା ।
ସହଦେବ ପ୍ରବେଶିଲେ ଯାଇ ସେହି ରାଜ୍ୟେ
ବୀରତୂର ଢୋଲ ଆଦି ବହଳରେ ବାଜେ ।
ଦେଶାଉର ବାର୍ତ୍ତା ଦେଲେ ବେଲାଳସେନକୁ
ବିଦେଶୀ ରାଜା ଗୋଟିଏ ଆସଇ ରାଜ୍ୟକୁ ।
ଆଚମ୍ବିତ ବାରତାକୁ ପାଇଣ ବେଲାଳ
ରାଜ୍ୟରେ ପଶି ନ ଦିଅ ବହନ ଓଗାଳ ।
ମୋହର ଛାମୁକୁ ଆଣ ତାକୁ ଯାଇଧରି
ଜୀବନ୍ତରେ ବନ୍ଦୀକର ଜୀବନେ ନ ମାରି ।
ରାଜା ଆଜ୍ଞା ପାଇକରି ସେ ଗୋପାଳମାନେ
ବହୁ ପ୍ରତିଜ୍ଞା କରିଣ ଧାଇଁଲେ ବହନେ ।
ପାଦରେ କଠାଉ ବେନିକରେ ଧରି ଯଷ୍ଟି
ମଥାରେ ଖୋଲରି କାଶ ଫୁଲଶର ଗୋଟି ।
ଗଳେ ଜବାପୁଷ୍ପ ହାର ଗୁଞ୍ଜର ଲଲାଟି
ପ୍ରତିଜ୍ଞା କରି ଧାମନ୍ତି ଓଷ୍ଠ କରି ଯଷ୍ଟି ।
କଡ଼ା ମର୍ଦ୍ଦଳ ଘୁମୁରା ବାଜଇ ବାଂଶରୀ
ମଦିରା ଭୋଳେ ଖେମଟା ନୃତ୍ୟ କରି କରି ।
ଅଣ୍ଟାରେ କାଛେଣୀ ଭିଡ଼ି ଘଣ୍ଟି ମାଳେ ମାଳେ
ଦାନ୍ତ ପ୍ରକଟି ବିହାର କରନ୍ତି ଗୋପାଳେ ।
ବୁଲାବନ୍ତି ଲହୁଡ଼ିକୁ ପୁଣି ଗୀତ ଗାଇ
ବଳଦେ ବଳଦେ ଚଢ଼ି ଆସନ୍ତି ଖତାଇ ।
ପାଣ୍ଡବ ସଇନିମାନେ ଏହିପରି ଦେଖି
ପଶିଲେ ସେ ରଣରଙ୍ଗେ ଉପ୍ରୋଧ ଉପେକ୍ଷି ।
ସମ୍ଭାଳିଣ ସହଦେବ ଆପଣାର ବଳ
ବୋଇଲେ ରହ ଦେଖିବା ଗୋପାଳଙ୍କଗୋଳ ।
ଏକ ବଳଦେ ଆରୋହି ବେଲାଳ ନୃପତି
ବାମ ଡାହାଣେ ରଖିଛି ଦୁଇଗୋଟି କ୍ଷତ୍ରୀ ।
ମାଦ୍ରୀନନ୍ଦନ ବୋଇଲା ସାରଥିକୁ ଚାହିଁ
ବେଲାଳସେନ ଆଗକୁ ରଥ ନିଅ ବାହି ।
ସହଦେବ ବାକ୍ୟେ ରଥ ସାରଥି ବାହିଣ
ବେଲାଳ ଛାମୁରେ କରିଲା ନେଇଣ ।
ବେଲାଳ ବୋଇଲା କେଉଁ ଦେଶର ନୃପତି
ମୋହର ରାଜ୍ୟରେ କିପାଁ କରୁଛ ଅନୀତି ।
ତୁମ୍ଭେ ଯୋଦ୍ଧାସବୁ ଅଟ କେଉଁ ଦେଶବାସୀ
ଏଠାରେ ସମୁଦ୍ର ଛଡ଼ା କିଛି ନୁହେ କୃଷି ।

ଗୋରୁପଲ ଦେଲେ ମୋତେ ଗଉତମ ଯତି
ତାଙ୍କ ଆଜ୍ଞାରେ ପାଳେ ମୁଁ ସେ ଗୋରୁ ସବୁନ୍ତି
ସହଦେବ ବୋଲେ ମୋର ଅଛି ବଡ଼ କାର୍ଯ୍ୟ
ତୋତେ ନିମନ୍ତ୍ରଣ କରି ନେଇଯିବି ଆଜ ।
ରାଜସୂୟ ଯାଗକୁ ତୁହି ଚଳସି ବେଲାଳ
ରାଜମାନେ ଆସି ଯହିଁ ହୋଇଛନ୍ତି ଠୁଳ ।
ଲକ୍ଷେ ରାଜା ବିଜେ ହେବେ ସେହି ମହାଯାଗେ
ତୁହି ରାଜା ବିଜେକରି ଯିବୁ ଏହି ଲାଗେ ।
ସହଦେବର ବଚନେ ବୋଲଇ ବେଲାଳ
ମୁଁ କିପାଁ ତୋ ଯଜ୍ଞେ ଯିବି ଛାଡ଼ି ନିଜସ୍ଥଳ ।
ବହୁତ ପ୍ରତିଜ୍ଞା କଲା ତହୁଁ ସେ ନ ମାନି
ମୋହନା ଶର ମାରିଲା ମନ୍ତ୍ରୀ ତହୁଁ ଘେନି ।
ବଳଦରେ ଚଢ଼ିଥିଲା ସେ ବେଲାଳସେନ
ମୋହନା ଶର ବାଜନ୍ତେ ହେଲା ଅଚେତନ ।
ରଥରୁ ଓହ୍ଲାଇ ଆସି ସହଦେବ ବୀର
ବାଳ ଆକର୍ଷି ଘେନିଲା ରଥର ଉପର ।
ପାଟ ଡୋରରେ ବନ୍ଧନ କରିଲାକ ରଥେ
ତାହା ଦେଖଇ କୋପ କଲେ ଗଉଡ଼ ସମସ୍ତେ ।
ଲହୁଡ଼ିକୁ ବୁଲାଇଣ ପିଟିଲେ ସେ ଆଗେ
ଗୋପାଳଙ୍କୁ ମାର ମନ୍ତ୍ରୀ କହିଦେଲା ରାଗେ ।
ସହଦେବ ଆଜ୍ଞାପାଇ ଘେରିଗଲେ ବଳ
ଗଉଡ଼ଙ୍କୁ ପ୍ରହାରିଲେ ଅଶ୍ୱାଦି ସକଳ ।
ପରବତ ଭେଦିବାକୁ ସମର୍ଥ ଯେ ବୀରେ
ଗୋପାଳ କିସ ମାତ୍ରିକ ତାହାଙ୍କ ଛାମୁରେ ।
କାଦମ୍ବରୀ ପାନେ ଥିଲେ ଅତି ମତି ଭୋଳ
ଅନେକ ସମର କଲେ ତହିଁ ସେ ଗୋପାଳ ।
ସମସ୍ତ ଗୋପାଳ ତହିଁ ପଡ଼ିଲେ ସମରେ
ଜଣେ କେହି ନ ରହିଲେ ସହଦେବ ଶରେ ।
ତିନି ମରବୁଦ ପୁଣି ତିନି ଅଇବ୍ରତ
ଆବର ସଇନି ଥିଲେ ପଞ୍ଚଦଶ ଶତ ।
ସର୍ବେ ଲୋଟିଲେ ପାଣ୍ଡବ ପଞ୍ଚାଶ ଶରରେ
ପାଏଡ଼ା ପଡ଼ିଲା ପାଞ୍ଚକୋଶ ପର୍ଯ୍ୟନ୍ତରେ ।
ମନ୍ତ୍ରୀ ବୋଇଲେ ଅଡାଅ ସର୍ବ ଗୋରୁପଲ୍ଲ
ଧାଇଁଣ ବେଢ଼ିଲେ ଯାଇ ତହୁଁ ମହାମଲ୍ଲ ।
ଘୋରରୂପ ଦେଖିକରି ବିରୁଡ଼ିଲେ ଗାଈ
ହମ୍ବାରବ କରିଣ ଯେ ଉଠିଲେ ବୋବାଇ ।
ସେ ଗୋରୁପଲ୍ଲ ପଶିଲେ ତହୁଁ ଗଳଗାଜି
ପାଣ୍ଡବବଳ ସକଳ ପଳାଇଲେ ଭାଜି ।
ଅନେକବାଗେ କରିଲେ ଉପାୟ ସକଳେ
କେବହେଁ ସାଧ ନୋହିଲେ ସେ ସର୍ବ ଗୋକୁଳେ ।

ବେଲାଳ ବୋଇଲା ଗୋରୁ ବଡ଼ାଇ ପ୍ରମାଦି
ପରିଚୟ ଗୋପ ସିନା,ପାରିଥାନ୍ତି ସାଧି ।
ଅତିଅନ୍ତ ଦୁଷ୍ଟାଗାଇ ଅଟନ୍ତି ଏ ମନ୍ଦ
ଗୋରୁଙ୍କ ସହିତ କାହିଁ ମନୁଷ୍ୟଙ୍କ ଦ୍ୱନ୍ଦ ।
ସୈନ୍ୟ ନାଶ ନ କରାଅ ହୋଇଣ ନିର୍ବୁଦ୍ଧି
ତୋହରବୋଲେ ସେ ପଲ ନ ହୋଇବେସାଧି
ସମରେ ସଇନି ସଙ୍ଗେ ପାଇଲେ ସେ ଦୁଃଖ
ରାଗିର ରହିଲେ ବୀରେ ହୋଇଣ ବିମୁଖ ।
ଯୁଗତେ ଗାଇକୁ କେବେ ନ କରନ୍ତି ବଧ
ଧର୍ମ ପ୍ରମାଣେ ଛାଡ଼ିଲେ ସର୍ବ ମହାଯୋଧ ।
ବେଲାଳସେନକୁ ଘେନିଗଲେ ସହଦେବ
ଚଉପୁର ନଗ୍ରେ ଯାଇ ପ୍ରବେଶ ପାଣ୍ଡବ ।
ଚଣ୍ଡୀକେଶୀ ବୋଲି କରି ନଦୀ ଏକ ଗୋଟି
ଚଉପୀଢ଼ ପର୍ବତରୁ ଆସଇ ସେ ଫୁଟି ।
ଚଉପୁର ନଗ୍ରେ ମନ୍ତ୍ରୀ ପ୍ରବେଶିଲେ ଯାଇ
ବାରାତା ପାଇ ନୃପତି ହରଷ ହୁଅଇ ।
ଅନେକ ସାନନ୍ଦ ହୋଇ ଚନ୍ଦ୍ରଚୂଡ ରାଜା
ସହଦେବ ପଦ୍ମପାଦେ ଯାଇ କଲା ପୂଜା ।
ବୋଇଲା ଅନେକ ପୁଣ୍ୟ ଅର୍ଜିଥିଲୁ ପୂର୍ବେ
ତେଣୁ ତୋ ପାଦ ଦର୍ଶନେ ଭାଜନ ମୁଁ ଏବେ ।
ବହୁତ ବିନୟୀ ହୋଇ କହେ ନୃପମଣି
ମନ୍ତ୍ରୀପ୍ରତି ବଢ଼ାଇଲେ ଭକ୍ତିଭାବ ଜାଣି ।
ଚନ୍ଦ୍ରଚୂଡକୁ ଅର୍ପିଲେ ଅକ୍ଷତାଦି ଗୁଆ
ବୋଇଲେ ତୁ ଦଣ୍ଡ ଘେନି ରାଜୁର୍ଷିକୁ ଯାଆ ।
ନୃପ ବୋଲେ ଆଜ୍ଞାମାତ୍ରେ ଏହିକ୍ଷଣି ଯିବି
ରାଜୁସି ଯଜ୍ଞ ସଭାରେ ଯୁଧିଷ୍ଠି ସେବିବି ।
ସହଦେବ ମନ୍ତ୍ରୀ ଆଜ୍ଞା ମସ୍ତକେ ନିବେଶି
ଦଣ୍ଡ ଘେନି ବାହାରିଲା ଚନ୍ଦ୍ରଚୂଡ଼ କେଶୀ ।
ବୀରତୂର ନାଦକରି ବାହାରିଲେ ସୈନ୍ୟ
ତହୁଁ ସହଦେବ ବିଜେ ଅଲେଖ ଆସ୍ଥାନ ।
ଅଲେଖସେନୀ ବୋଲିଣ ହରିହର ବଂଶୀ
ସହଦେବଙ୍କୁ ଭେଟଇ ସିନ୍ଧୁକୂଳେ ଆସି ।
ଶତେଭାର ପାଣିଦ୍ରବ୍ୟ ସଙ୍ଗେ ଘେନି ରାୟ
ମନ୍ତ୍ରୀ ଚୂଡ଼ାମଣି ପାଦେ କରିଲା ବିନୟ ।
କ୍ଷତ ଗୁବାକ ନେଇ ଦେଲେ ସହଦେବ
ବୋଇଲେ ରାଜୁସି ଯଜ୍ଞେ ଏହିକ୍ଷଣି ଯିବ ।
ସହଦେବ ମନ୍ତ୍ରୀ ଆଜ୍ଞା ନିବେଶିଣ ଶିରେ
ସମଦଣ୍ଡ ଘେନି ରାଜା ତକ୍ଷଣେ ବାହାରେ ।
ତହୁଁ ସହଦେବ ମନ୍ତ୍ରୀ ସୈନ୍ୟାଦିଙ୍କୁ ଘେନି
ମନୋହର ଦେଶେ ଗଲେ ମନ୍ତ୍ରୀ ଚୂଡ଼ାମଣି ।
ତ୍ରିପୁରେଶ୍ୱର ବୋଲିଣ ତହିଁ ମହାରାଜା
ତ୍ରିଅମ୍ବକ କପିଳାସବାସୀ କରେ ପୂଜା ।
ତାହାରି ରାଜ୍ୟରେ ବିଜେ କଲେ ସହଦେବ
ଛାମୁରେ ଦର୍ଶନ କଲା କରିଣ ସମ୍ଭର୍ବ ।
ସହଦେବ ବୋଇଲେ ତୁ ଶୁଣ ତ୍ରିପୁରାନ୍ତ
ରାଜୁସି ଯାଗକୁ ଚଳ ସଇନି ସହିତ ।
ଏହା କହିଣ ଯୋଗାଡ଼ ଦେଲେ ମାଦ୍ରିବାଳେ
ଦଣ୍ଡଘେନି ତ୍ରିପୁରାନ୍ତ ବହନରେ ଚଳେ ।
ତହୁଁ ସହଦେବ ଗଲେ ନିଜ ଦଣ୍ଡ ସାଜି
ଯମନିକ ତୀର୍ଥେ ଯମେଶ୍ୱର ଲିଙ୍ଗ ପୂଜି ।
ନୀଳକଳ୍ପବଟ ପାଖେ ସୁନ୍ଦର ପର୍ବତେ
ମନ୍ତ୍ରୀ ଚୂଡ଼ାମଣି ଯାଇ ବିଜେ ମହାତୀର୍ଥେ ।
ଧନୁମାସ ଶୁକ୍ଳପକ୍ଷ ଚୌଠି ଚନ୍ଦ୍ରବାର
ଶ୍ରବଣା ନକ୍ଷତ୍ର ଭୋଗ ଥିଲା ସେ ଦିନର ।
ସହଦେବ ବିଜେ କଲା ସେ ଦିନର ନିଶି
ଭେଟିଲେ ଯାଇ ମାର୍କଣ୍ଡ ମହାତମାଋଷି ।
ବାହନକୁ ତେଜ୍ୟାକରି ପଣ୍ଡୁ ରାଜା ସୁତ
ମାରକଣ୍ଡଙ୍କ ଚରଣେ ନମଇଁ ତୁରିତ ।
ବଦନ୍ତି ଯେ ମହାତମା ମାରକଣ୍ଡ ମୁନି
ପୂର୍ବଦିଗ ରାଜା ସବୁ ଆଣିଲୁକି ଘେନି ।
ଶୁଣି ସହଦେବ ବୋଲେ ତୁମ୍ଭ ଅନୁଗ୍ରହେ
ନିମନ୍ତ୍ରିଲି ସର୍ବରାଜା କାର୍ଯ୍ୟର ଆଗ୍ରହେ ।
ଭୋ ଋଷି ଯିବନାହିଁକି ରାଜୁସି ସଭାକୁ
ତୁମ୍ଭେ ନଥିଲେ ସେ ସଭା ଶୋଭେ କି ଆନକୁ
ମାର୍କଣ୍ଡ ବୋଇଲେ ତହିଁ ଛନ୍ତି ମୁନିବ୍ୟାସ
ନିଶ୍ଚୟ ଯିବୁଁ ପ୍ରଥମ ଆହୁତି ଦିବସ ।
ଯମନିକ ତୀର୍ଥ ନୀଳସୁନ୍ଦର ଏ ଗିରି
କୋଟିତୀର୍ଥରେ ପୁଷ୍କର ଅଛି ବିଜେକରି ।
ଦ୍ୱାପରଯୁଗ ଶେଷର ଦେବ ଜଗନ୍ନାଥ
ବଉଦ୍ଧ ରୂପରେ ବିଜେ କରିବେ ଯେ ଏଥ ।
ଚାରିଲକ୍ଷ ଚୌଦସସ୍ର ବର୍ଷ ପରିଯନ୍ତ
ବସିବେ ଏହି ସ୍ଥାନରେ ହୋଇଣ ନିର୍ଶ୍ଚିନ୍ତ ।
କଳିଯୁଗେ ଲୋକମାନେ କରୁଥିବେ ସେବା
ରଙ୍ଗ କୌତୁକ କରିବେ ରାମକୃଷ୍ଣ ଦେବା ।
ତୁହି ସର୍ବଜ୍ଞ ପଣ୍ଡିତ ମନ୍ତ୍ରୀ ଚୂଡ଼ାମଣି
ଗତାଗତ ଜାଣୁ କିସ କହିବି ବଖାଣି ।
ସମସ୍ତ କଲ୍ୟାଣ ବାଞ୍ଛା କରି ମହାଯତି
ଚଳନ୍ତେ ସେ ନମନ୍ତ୍ରଣ ଦେଲେ ମହାମନ୍ତ୍ରୀ ।
ମାରକଣ୍ଡ କଲ୍ୟାଣ ପାଇ ମନ୍ତ୍ରୀବର
ଅର୍କତୀର୍ଥେ ବିଜେ କଲା ପାଣ୍ଡବ ସୁନ୍ଦର ।

ରାମଚଣ୍ଡୀ ରାମେଶ୍ୱର କରିଲା ଦର୍ଶନ
ବିରଞ୍ଚି ଦର୍ଶନ କଲା ଚନ୍ଦ୍ରଭାଗା ସ୍ନାନ ।
ସେ ଅର୍କତୀର୍ଥର ରାଜା ନାରାୟଣ ଦାସ
ତହିଁ ବିଜୟ କରନ୍ତେ ପଣ୍ଡୁରାଜା ଶିଷ୍ୟ ।
ନାରାୟଣ ନରପତି ବାରତା ପାଇଣ
ଛାମୁରେ ଆଗମ ହୋଇ କଲାକ ଦର୍ଶନ ।
ସେହି ରାଜାକୁ ଅକ୍ଷତ ଗୁବାକାଦି ଦେଇ
ଆବର ରହି ସେଠାରେ କରିଲେ ମଣୋହି ।
ନାରାୟଣ ଚଳାଇଣ ଆସନ୍ତେ ବହନେ
ମହ୍ଲାର ବଳ ଭେଟିଲେ କନ୍ଦୁକ କାନନେ ।
ନବଲକ୍ଷ ଯୋଦ୍ଧା ଘେନି ସେହି ବନଚର
ବେଣ୍ଟ ବିନୋଦେ ଭ୍ରମଇ ଚିତ୍ରୋତ୍ପଳା ତୀର ।
ସହଦେବ ମନ୍ତ୍ରୀ ଯାନ୍ତେ ଓଗାଳିଲେ ଆସି
ବୋଇଲେ କାହାର ଦର୍ପେ ରାଜ୍ୟେ ଅଛୁ ପଶି
କୃତ୍ତିବାସ ତୀର୍ଥ ସିନା ଅତୁଟ ଏ ଗିରି
ବିଜୟା ପରମାନନ୍ଦ ଦେବ ତ୍ରିପୁରାରି ।
ଶୁଣି ସହଦେବ ବୋଲେ ଶୁଣ ହେ ମହ୍ଲାର
ଆମ୍ଭେ ପାଣ୍ଡବ ବିବାଦି ନ ଅଟୁ ତୋହର ।
ରାଜସୂୟ ଯଜ୍ଞ ସଭା କରିବା ହେ ଆମ୍ଭେ
ଏହିଦିଗ ରାଜା ଘେନି ଚଳିଯିବ ତୁମ୍ଭେ ।
ଶୁଣିକରି ହରଷିତ ହେଲେ ମହାବୀର
ବୋଇଲେ ଏ ତୀର୍ଥେ ଛନ୍ତି ଅନାଦି ଈଶ୍ୱର ।
ବିନ୍ଦୁସାଗର ତୀର୍ଥେ ଏ ଅଟେ ସିଦ୍ଧଜଳ
ସ୍ନାନକରି ପିଣ୍ଡ ଦ୍ୟନ୍ତି ମାନବ ସକଳ ।
ବିଜେ ମନ୍ତ୍ରୀବର ତହୁଁ ଏକାମ୍ରର ତୀର୍ଥେ
ପିଣ୍ଡଦାନ ଦେଇ ତୋଷକଲେ ବିଶ୍ୱନାଥେ ।
ଜୟ ତୁହି ମହାଦେବ ତ୍ରିଭୁବନ ମଣ୍ଡୁ
ଅଭୟ ଭୁବନବାସୀ ସର୍ବଦୁଃଖ ଖଣ୍ଡୁ ।
ଶୈଳଜା ବଲ୍ଲଭ ନାଥ ସିତାଂଶୁମଉଳୀ
ବୃଷଭ ବାହନ ଦେବ ଜୟ ତୁ କପାଳୀ ।
ପରଲୋକ ଇହଲୋକ ସର୍ବସ୍ଥାନ ବନ୍ଧୁ
ଭକତ ବତ୍ସଳ ନାଥ ତୁହି ଆଶାସିନ୍ଧୁ ।
ଶ୍ରୀମହାଲିଙ୍ଗ ଭୁବନ ଆଦି ଅଧିପତି
ଅଭୟ ସୁର ବନ୍ଦନ ଫେଡ଼ ମୋ ଦୁର୍ଗତି ।
ମୋତେ ଅନୁଗ୍ରହ କର ଦେବ ଦେବରାଜା
ମଉଳିରେ ଧବଳାଙ୍ଗୀ ଯା ବଶେ ଗିରିଜା ।
ଜନ୍ମେ ଜନ୍ମେ ସେବା ମୋର ତବ ପଦ୍ମପାଦେ
ଲଭିବି ପରମଗତି ନାଥ ତୋ ପ୍ରସାଦେ ।
କୀର୍ତ୍ତିବାସ ବେନିଦୈତ୍ୟ ଧ୍ୱଂସିଲ ହେ ସ୍ୱାମୀ
ତବ ପାଦରେ ମୋହର ଗୋଟିଏ ପ୍ରଣମି ।

ଶ୍ରୀମହାକ୍ଷେତ୍ରେ ଭୁବନ ଈଶ୍ୱରଙ୍କ ପୂଜା
ଶାରଳା ଦାସକୁ ଦୟା କର ଦେବରାଜା ।
ସହଦେବ ସ୍ତୁତିବାଣୀ ଶୁଣିଣ କପାଳୀ
ବୃଷଭ ବାହନେ ବିଜେ ଶ୍ରୀପଞ୍ଚମଉଳି ।
ଦେଖି ମନ୍ତ୍ରୀ ଭକ୍ତିଭାବେ କରିଲା ପ୍ରଣତି
ବୋଲେ ଭକତବତ୍ସଳ ଖଣ୍ଡ ମୋ ଦୁର୍ଗତି ।
ସହଦେବର ବଚନ ସ୍ୱାମୀ ଦେବ କାଶୀ
ବୋଇଲେ ପଣ୍ଡୁସୁତ ତୁ କଲ୍ୟାଣ ପାଅସି ।
ବହୁ ପୁରୁଷାର୍ଥ କଲେ ତାଙ୍କୁ ଦେବରାଜା
ସର୍ବକାର୍ଯ୍ୟ ସିଦ୍ଧକରି ବହନ ତୁ ଯାଯା ।
ପୂର୍ବଦିଗ ରାଜାଙ୍କୁ ତୁ କଲୁ ନିମନ୍ତ୍ରଣ
ଯଜ୍ଞର କାଳ ନିକଟ ହେଉଅଛି ଜାଣ ।
ଅକ୍ଷତ ଗୁବାକ ଦେଲା ମନ୍ତ୍ରୀ ଚୂଡ଼ାମଣି
ବୋଇଲେ ଯଜ୍ଞକୁ ଯିବେ ଶିବଗଣ ଘେନି ।
ଶୁଣି ସହଦେବ ଆଜ୍ଞାକଲେ ବିଶ୍ୱନାଥେ
ପାର୍ଥ ନିମନ୍ତ୍ରିଲା ମୋତେ ହେମନ୍ତ ପର୍ବତେ ।
ଆକାଶକୁ ଯାଇଅଛି ବୀର ଫାଲଗୁନି
ସ୍ୱର୍ଗରୁ ଆସିବ ସେହୁ ଦେବତାଙ୍କୁ ଘେନି ।
ଗଣ ସହିତେ ଯାଉଛୁ ଏବେ ସେ ସଭାକୁ
ତୁ ବହନ ଘେନିଯାଅ ଏ ରାଜାଗଣଙ୍କୁ ।
ଏତେ ବୋଲି ଅନ୍ତରୀକ୍ଷେ ବିଜେ ମହେଶ୍ୱର
ଏକାମ୍ର ତୀର୍ଥରୁ ମନ୍ତ୍ରୀ ହୋଇଲା ବାହାର ।
ମହ୍ଲାରସେନ ନାମରେ ଯେବଣ ନୃପତି
ଚଳିଗଲେ ସହଦେବ ତାହାଙ୍କୁ ନିମନ୍ତ୍ରି ।
ତହୁଁ ବିଜେ କରିଗଲେ ମନ୍ତ୍ରୀ ଚୂଡ଼ାମଣି
ଚିତ୍ରୋତ୍ପଳା ତୀରେ ଥାଟ କରିଲେ ପଲାଣି ।
କୁଣ୍ଡଳ ଭୋଜ ନାମରେ ଏକ ନରପତି
ସହଦେବ ଦେଖାକରି ବଢ଼ାଇଲେ ପ୍ରୀତି ।
ନିମନ୍ତ୍ରଣର ଯୋଗାଡ଼ ଦେଲେ ମନ୍ତ୍ରୀବର
ବୋଇଲେ ରାଜସୂ ଯଜ୍ଞେ ଏକ୍ଷଣି ବାହାର ।
ଚଳଇ କୁଣ୍ଡଳରାଜା ଥାଟକୁ ଚଳାଇ
ତହୁଁ ସହଦେବ ଚଳେ ନିଜ ଥାଟ ବାହି ।
ଶ୍ରୀମହାଦେବଙ୍କୁ ତହୁଁ ମନ୍ତ୍ରୀବର ତେଜି
ଅନେକ ବିନୟ ଭାବେ ହୃଦେ ଲୟ ଭଜି ।
ବିଶ୍ୱନାଥ ସେବା କରି ଚଳେ ସହଦେବ
କୈଳାସ ଗିରି ଉପରେ ବିଜୟ ପାଣ୍ଡବ ।
କାଶୀ ସେବା କଲେ ଯାଇ ନନ୍ଦିକେଶ ତୀର୍ଥେ
ତହିଁ ଜରା ନାମଧେୟ ଏକଇ କିରାତେ ।
ସେ ଯାଇ ଦର୍ଶନ କଲା ପାଣ୍ଡବ ପଞ୍ଚାଣ
ତାକୁ ଦେଖି ସହଦେବ କଲେ ନିମନ୍ତ୍ରଣ ।

ରାକୁସି ଯଜ୍ଞକୁ ତୁହି ଚଳରେ ସତ୍ୱର
ତାହା ଶୁଣି ସେ କିରାତ ଶିରେଦେଲା କର ।
କିରାତ ନୃପତି ବୋଲେ ଆହେ ଦେବ ସ୍ୱାମୀ
ଆଜ୍ଞା ପ୍ରମାଣେ ଏକ୍ଷଣି ହେବି ଅଗ୍ରଗାମୀ ।
ଅପୂର୍ବ ଦ୍ରବ୍ୟମାନଙ୍କୁ ଭଣ୍ଡାରରୁ ଘେନି
ତକ୍ଷଣେ କିରାତେଶ୍ୱର ଚଳାଏ ଯାଇନି ।
ତହୁଁ ଚଳେ ସହଦେବ ଐଶାନ୍ୟରେ ଦିଗେ
ଜଳତରଙ୍ଗ ରାଜ୍ୟରେ ପ୍ରବେଶିଲେ ବେଗେ ।
ବାଜଇ ଯେ ବିଜିଘୋଷ ଟମକ ନିଶାଣି
ବିହରନ୍ତି ରାଉତେ ଯେ ଖେଦି ଆଗୁଆଣି ।
ରାଜ୍ୟରେ ପଶନ୍ତେ ଶୁଭେ ବାଦ୍ୟ ଘୋରନାଦ
ଚାରେ ଯାଇ ଜଣାଇଲେ ରାଜାଙ୍କୁ ସମ୍ବାଦ ।
ସ୍ୱାମୀ କେଉଁ ଦେଶ ରାଜା ଆସେ ଦଣ୍ଡସାଜି
ବଳେ ରାଜ୍ୟରେ ପଶନ୍ତି କରି ଗାଳଗାଜି ।
ରଥ ଗଜ ଅଶ୍ୱ ଆଦି ବେଶୀ ନ ହିଁ ଦଣ୍ଡ
ଖେଦନ୍ତି ଯୋଦ୍ଧା ପ୍ରତିଜ୍ଞା କରି ଘୋରଚଣ୍ଡ ।
ଚାରଗଣ ମୁଖୁ ରାଜା ପାଇଣ ବୃତ୍ତାନ୍ତ
ଆଜ୍ଞା କରିଲା ସାଜରେ ବେଗେ ମୋର ରଥ ।
ରାଜାର ବଚନ ଶୁଣି ଧାଇଁଲେ ସଇନି
ରହ ରହ ବୋଲି ଡାକଦ୍ୟନ୍ତି କରି ଧ୍ୱନି ।
ନାନାଜାତି ଅସ୍ତ୍ର ଧରି ଚଢ଼ିଛନ୍ତି ହୟେ
ଚୋଖାର ତୁରଙ୍ଗମକୁ ଦେଖନ୍ତି ନିର୍ଭୟେ ।
ବହୁତ ଅଛନ୍ତି ସୈନ୍ୟ ନ ଯାଏ ଗଣନା
କରେ କୁନ୍ତ ଚକ୍ର ଆସି ବକ୍ଷେ ବଜ୍ରସେହ୍ନା ।
ରଥରଥୀ ଗଜ ଅଶ୍ୱ ଅନେକ ପଦାତି
ତିନିଶତ ପାରିଦଣ୍ଡ ଘେନି ନରପତି ।
ଲୁହା ରଥରେ ଶାର୍ଦ୍ଦୂଳ ଚର୍ମର ଛାଉଣି
ଅହୋ ବଳ ସଇନିକ ଟେକେ ରାଜା ଆଣି ।
ଆଗୁଆଣିର ଥାଟକୁ ଓଗାଳିଲା ଆସି
ଚନ୍ଦ୍ରେ ରାହୁଧାଏଁ ଯେହ୍ନେ ପକାଇବ ଗ୍ରାସି ।
ପାଞ୍ଚଲକ୍ଷ ଯୋଦ୍ଧା ଘେନି ସେ ଜଳତରଙ୍ଗ
ଆକାଶେ କ୍ଷେପିବ ଚଢ଼ି ଏମନ୍ତ ତୁରଙ୍ଗ ।
ରେ ରେ କାର ଶବଦରେ କରଇ ଯେ ରଡ଼ି
ସେ ରଡ଼ି ଶୁଭଇ ଯେହ୍ନେ ମେଘ ଘଡ଼ଘଡ଼ି ।
ରାଜାର ପ୍ରତିଜ୍ଞା ଦେଖି ପାଣ୍ଡବ ସଇନି
ଗର୍ଜି ଉଠିଲେ ସେ ବୀର କରେ ଅସ୍ତ୍ର ଘେନି ।
ପ୍ରତିଜ୍ଞା ସାମର୍ଥ ଜଳତରଙ୍ଗ ସେ ବାଳୀ
ଦୂରୁ ସହଦେବଙ୍କୁ ସେ ଆସଇ ଓଗାଳି ।
ସୈନ୍ୟ ଦୁଇଭାଗ ହେଲେ ରାଜ ଦଉଡ଼ନ୍ତେ
ସହଦେବ ଓଗାଳିଲା ଚଢ଼ି ଏକରଥେ ।
ସହଦେବଙ୍କୁ ପୁଛଇ କେଉଁ ଦେଶ ରଥୀ
କାହିଁକି ମୋ ରାଜ୍ୟ ଆସି ପକାଉଛୁ ମଛି ।
ଶୁଣି ସହଦେବ ବୋଲେ ତୁ କେବଣ ପ୍ରାଣୀ
ସହଦେବ ପୂର୍ବେ ବିଜେ ତୁ କି ନାହୁଁ ଜାଣି ।
ରାଜସୂୟ ଯଜ୍ଞ ଆମ୍ଭେ କରିବା ନିମନ୍ତେ
ଐଶାନ୍ୟ ଦିଗେ ଅଇଲୁ ନିମନ୍ତ୍ରିବୁଁ ତୋତେ ।
ଲକ୍ଷେ ରାଜା ମେଳେ ତହିଁ କରିବାକ ସଭା
ସମଦଣ୍ଡ ଘେନି ଚାଲ ବହନରେ ଯିବା ।
ସହଦେବ ବାକ୍ୟେ ଜଳତରଙ୍ଗର ରାୟେ
ରଥ ତେଜ୍ୟାକରି ଯାଇ ପ୍ରଣିପାତ ହୁଏ ।
ତୁହି ଦେବ ସୋମବଂଶ କ୍ଷତ୍ରିୟ ଉତ୍ତମ
ଦାସ କରିଥିବା ଦୋଷ ଏବେ ମୋର କ୍ଷମ ।
ଶୁଣି କୋଳାଗ୍ରତ କରି ସହଦେବ ମନ୍ତ୍ରୀ
ଅକ୍ଷତ ଯୋଗାଡ଼ ଦେଲେ ରାଜାକୁ ନିମନ୍ତ୍ରି ।
ବୋଇଲେ ଦଣ୍ଡ ଘେନିଣ ବାହାର ତକ୍ଷଣେ
ପ୍ରବେଶ ହେଲେଣି ଆସି ସର୍ବ ରାଜାଗଣେ ।
ଶୁଣିଣ ନରେନ୍ଦ୍ର ତହୁଁ ହୋଇଲା ଆନନ୍ଦ
ମୁଖ ବିକାଶିଲା ଯେହ୍ନେ ପୂର୍ଣ୍ଣିମାର ଚାନ୍ଦ ।
ଚଳଇ ଜଳତରଙ୍ଗ ସୈନ୍ୟବଳ ଘେନି
ତରଙ୍ଗ ଦେଶୁ ବାହାର ହୋଇଲେ ସଇନି ।
ଅନେକ ସମ୍ଭର୍ବ କରି ଚାଲେ ନୃପମଣି
ଅସ୍ତିନା ଦେଶକୁ ବୋଲି ଦଣ୍ଡର ପଲାଣି ।
ଗୋମତୀ ନଦୀର ତୀରେ ଚଳେ ମହାମନ୍ତ୍ରୀ
କୈବର୍ତ୍ତ ରାଜା ନିଷାଦପୁର ଅଧିପତି ।
ପଞ୍ଚବିଂଶ ଅରବୁଦ ତା ଥାଟ ପଲାଣି
ସତ୍ୟଯୁଗୁଁ ଅଛି ସେହି ନିଷାଦ ନୃମଣି ।
ତ୍ରେତାଯୁଗେ ରାମଚନ୍ଦ୍ର ନଦୀ କଲା ପାରି
ତେଣୁ ଅମର ପଦରେ କଲେ ଅଧିକାରୀ ।
ସେହି ରାଜ୍ୟରେ ପ୍ରବେଶ ହେଲେ ସହଦେବ
ଡଗର କହିଲା ବାର୍ତ୍ତା ଯେ ରାଜାର ଠାବ ।
ସହଦେବ ଏହି ନଦୀ ଦକ୍ଷିଣର କୂଳ
ଉପର ଜଗତୀପରେ ଦେଖେ ମହୀପାଳ ।
କୈବର୍ତ୍ତ ଦୂତେ ହୋଇଲା ଶୁଣି ନରନାହା
ଦକ୍ଷିଣ କୂଳକୁ ରଥ ବେଗକରି ବାହା ।
କେବଣ ଦେଶର ରାଜା ଅଛି ଆରପାରି
ଦଣ୍ଡ ଘେନିଣ ଆସିଣ ଏ କୂଳେ ବାହାରି ।
ରାଜା ଆଜ୍ଞାରେ ସାଜିଲେ ବେଗେ ନାବମାନ
ଉଡ଼ଇ ପତାଙ୍ଗମାନ ଝଲକେ ରତନ ।
ନାବ ଲାଗିଲା ଆସିଣ ଦକ୍ଷିଣ କୂଳରେ
ହେମ ପର୍ବତର ବନ କିଞ୍ଚିତ ଦୂରରେ ।

ସହଦେବ ବିଜେକଲେ ନାବର ଉପରେ ।
ସୈନ୍ୟ ପାରିହେଲେ ନଦୀ ଉତ୍ତର ତୀରରେ ।
ଆସ୍ଥାନ ତେଜିଲା ତହୁଁ କୈବର୍ତ୍ତର ରାଜା
ଅର୍ଘ୍ୟ ଘେନି ସହଦେବ ପାଦେ କଲା ପୂଜା ।
ସହଦେବଙ୍କୁ ସୁବର୍ଣ୍ଣ ଆସନେ ବସାଇ
ଲକ୍ଷେକ ସୁବର୍ଣ୍ଣ ସେହୁ ବନ୍ଦାଇଲା ନେଇ ।
ନିଜ ପୁରରେ ଉତ୍ସବ କରାଏ ନୃପତି
ମଣ୍ଡଣି କରିଲା ମେଢ଼ ମଣ୍ଡପ ଜଗତୀ ।
ଅନେକ ଯେ କୃତକୃତ୍ୟ ହୋଇ ସେ ନିଷାଦ
ବୋଲେ ଦର୍ଶନେ ଖଣ୍ଡିଲି ସକଳ ଆପଦ ।
ବାଲ୍ୟକାଳେ ଥିଲି ମୁହିଁ ନଦୀ ଜଗିକରି
ପଥଶ୍ରାନ୍ତ ଲୋକଙ୍କୁ ମୁଁ କରିଦିଏ ପାରି ।
ତୋହର ଉପରବଂଶେ ନୃପତି ଯଯାତି
ତାଙ୍କୁ ପାରି କରିଅଛି ମୁହିଁ ସାତଘାନ୍ତି ।
ଶ୍ରୀରାମଚନ୍ଦ୍ର ଯେକାଳେ ବନବାସ କଲେ
ବୈଦେହୀ ଲକ୍ଷ୍ମଣ ଘେନି ଏ କୂଳେ ମିଳିଲେ ।
ତାଙ୍କୁ ପାରିକରି ଗଲେ ସେ ବନବାସକୁ
ଏହିବାଟେ ଗଲେ ବାଞ୍ଛାବଟର ତଳକୁ ।
ରାବଣକୁ ମାରି ପୁଣି ବାହୁଡ଼ିବା ବେଳେ
ତାଙ୍କୁ ପାରିକରି ମୁହିଁ ଆଣିଲି ଏ କୂଳେ ।
ଲକ୍ଷେକ ପଲାଣି ମୁହିଁ ଦେଲି ଦିବାରାତି
ତିନିଦିନେ ପାରିକରି ଦେଲଇଁ ସବୁନ୍ତି ।
ତୋଷେ ପ୍ରସନ୍ନ ହୋଇଲେ ମୋତେ ରାମଚନ୍ଦ୍ର
ବୋଇଲେ ତୁ ଯୁଗେ ଯୁଗେ ଥାଅ ରେ ନିଷାଦ
ସ୍ୱାମୀଙ୍କର ଆଜ୍ଞା ମୁହିଁ ହୃଦେ ଧରିଥିଲି
କଂସବଧ କାଳେ ପୁଣି କୃଷ୍ଣେ ପାରିକଲି ।
ସହଦେବ ବୋଇଲେ ତୁ ପର ଉପକାରୀ
ଅଗାଧ ଜଳରୁ ତୁହି ଧର୍ମେ କରୁ ପାରି ।
ଦଣ୍ଡ ଘେନିଣ ତୋହର ଯାଉ ନାବମାନ
ଘେନିଯାଅ ତହିଁ ମୋର ଦରଶନୀ ଧନ ।
ସହସ୍ର ସହସ୍ର ଭାର ରାଜା ଦ୍ୟନ୍ତି ମୋତେ
ଅପ୍ରମିତ ହିରଣ୍ୟ ମୁଁ ସଙ୍ଗେ ନେବି କେତେ ।
ସହସ୍ର ନାବେ ପୂରାଇ ଦେଲେ ମନ୍ତ୍ରୀବର
ବୋଇଲେ ଏ ସବୁ ସଙ୍ଗେ ଘନିଯାଅ ତୋର ।
ଆଉ ସହସ୍ରେକ ନାବ ରଖ ଏହି ତୀରେ
ନିମନ୍ତ୍ରିତ ରାଜା ପାରିହେବେ ସେ ନାବରେ ।
ଏହା କହି ଅର୍ଘ୍ୟ ଘେନି ପାଣ୍ଡବ ପଞ୍ଚାଣ
ନିଷାଦ ନରପତିକି କଲେ ନିମନ୍ତ୍ରଣ ।
ପୁଣି ବୋଲେ ରାତ୍ରିଦିବା ଚଳାଅ ନାବକୁ
ହେଉ ବୋଲି ସନମତ କରିଲା ମନ୍ତ୍ରୀକୁ ।

ନିଷାଦ ବୋଇଲା ତୋର ଆଜ୍ଞା ପରମାଣେ
ହସ୍ତିନା ରାଜ୍ୟକୁ ଏବେ ଯାଉଛି ଏକ୍ଷଣେ ।
ଥାଟ ଚଳାଇଲେ ମନ୍ତ୍ରୀ ଦିଗବିଜେ କରି
ପ୍ରବେଶ ହୋଇଲେ ଯାଇ ଜ୍ଞାନନଗ୍ର ପୁରୀ ।
ସେ ରାଜ୍ୟର ରାଜା ଜ୍ଞାନଚନ୍ଦ୍ର ନରପତି
ତାହାର ରାଜ୍ୟେ ପ୍ରବେଶ ହେଲେ ମହାମନ୍ତ୍ରୀ
ବୀରତୂର ବାଦ୍ୟନାଦେ ଗଗନ ଉଛୁଳେ
ରାଜ୍ୟରେ ପଶିଲେ ସୈନ୍ୟ ରାଜା ସନ୍ଧ୍ୟାବେଳେ ।
କଟକ ରକ୍ଷା କରନ୍ତି ଚାରିଲକ୍ଷ ଯୋଧି
ରାଜ୍ୟରେ ପଶିଲେ ଯାଇ ରଖିଲେ ନିରୋଧି ।
ବୋଇଲେ କାହିଁର ସୈନ୍ୟ ପଶ ଅନିମିତ୍ତେ
ବାର୍ତ୍ତା ନ ଦେଇ ରାଜ୍ୟରେ ପଶୁନ୍ନ କେମନ୍ତେ ।
ଯମକୁ କି ଭୟ ନାହିଁ ମନ୍ଦ ବୁଦ୍ଧିପଣେ
ଯାକୁ ଏ ପୃଥିବୀ ରାଜା ନ ପାରନ୍ତି ରଣେ ।
ମହା ପ୍ରତାପୀ ରାଜାଏ କଉସ୍ତୁଭ ବଂଶୀ
ନ ପଚାରି କିପାଁ ପଶ ଆମ୍ଭ ରାଜ୍ୟେ ଆସି ।
କହୁଁ କହୁଁ ଯୋଦ୍ଧାମାନେ ହେଲେ ପରଚଣ୍ଡ
ସହଦେବର ଉପରେ ପ୍ରହାରିଲେ କାଣ୍ଡ ।
ସହଦେବ ବୋଲେ ରହ ରହ ରେ ସଇନି
ବନ୍ଧୁ ଲୋଡ଼ିଆସୁ କିପାଁ ମାର ଅସ୍ତ୍ର ଘେନି ।
କୁଳଚନ୍ଦ୍ର ବୋଲେ ତୁମ୍ଭେ କେଉଁଦେଶ ରାଜା
ପର ରାଜ୍ୟେ ପଶି କିପାଁ ବୀରତୂର ବଜା ।
ସହଦେବ ବୋଲେ ଆମ୍ଭେ ଅଟୁ ସୋମବଂଶୀ
ଯଜ୍ଞ ନିମନ୍ତେ ରାଜାଙ୍କୁ ନିମନ୍ତ୍ରିଣ ଆସି ।
ଏହା କହି ଅକ୍ଷତାଦି ଦେଲେ ମହାକ୍ଷତ୍ରୀ
ବୋଇଲା ସୈନ୍ୟଙ୍କୁ ଘେନି ଚଳ ଦିବାରାତ୍ରି ।
ସହଦେବର ବଚନେ କୁଳଚନ୍ଦ୍ର ରାଜା
ହରଷରେ ପଦ୍ମପାଦେ ଯାଇ କଲା ପୂଜା ।
ବୋଇଲା ବହୁତ ପୁଣ୍ୟ ଅର୍ଜିଥିଲି ପୂର୍ବେ
ସେଥିକି ରାଜସୂୟାଗ ଦେଖିଲି ମୁଁ ଏବେ ।
ଏତେ ବୋଲି କରି ଜ୍ଞାନପୁର ଚକ୍ରବର୍ତ୍ତୀ
ନିଜ ରାଜ୍ୟ ଛାଡ଼ି ଯାଜା ବାହାରେ ତଡ଼ତି ।
ତହୁଁ ଗଲେ ସହଦେବ ଘେନି ନିଜ ବଳ
ସାଗର ସଙ୍ଗମେ ହେଲେ ପଣ୍ଡୁର ଦୁଲାଳ ।
ସେ ତୀର୍ଥେ ତପରେ ଛନ୍ତି କପିଳ ମହର୍ଷି
ତ୍ରିବେଣୀ ସଙ୍ଗମ ମଧ୍ୟେ ଅଛନ୍ତି ସେ ବସି ।
ଲମ୍ବିତ ଜଟା ତାଙ୍କର ଭୂମିପରେ ଲୋଟି
ତିନିଯୁଗ ହେଲା ତାଙ୍କ ଏକାସନ ଗୋଟି ।
ରଥରୁ ଓହ୍ଲାଇ କରି ମାଦ୍ରୀଦେବୀ ବଳା
ଋଷିଙ୍କର ପାଦତଳେ ପ୍ରଣିପାତ ହେଲା ।

ପରମ ଯୋଗୀ ପୁରୁଷ କରି ଆଶୀର୍ବାଦ
ପ୍ରସନ୍ନେ ବାର୍ତ୍ତା ପୁଛିଲେ ହୋଇଣ ସାନନ୍ଦ ।
ସହଦେବଙ୍କୁ କହିଲେ ସେ କପିଳ ଯତି
ଯାହା ନିମନ୍ତେ ରାଜୁସି ଯାଗକୁ କରାନ୍ତି ।
ଭାର ନିବାରିବା ଯାଇ କୌତୁକେ ଅନନ୍ତ
କରନ୍ତି କରାନ୍ତି ସେହି ଜାତ ମଧ ଅନ୍ତ ।
ଲକ୍ଷେ ନୃପତି ସମସ୍ତ କରାଉଛି ଯାଥି
ତୁମ୍ଭଙ୍କୁ ଯେ ଏକଛତ୍ର କରାଇବା ବୃଦ୍ଧି ।
ଗଙ୍ଗା ଯମୁନା ଆବର ନଦୀ ସରସ୍ୱତୀ
ତିନିଧାର ହୋଇ ମୁନି ଜଟାରେ ବୁଲନ୍ତି ।
ପୁଣି ସାଗରେ ମିଳନ୍ତି ହୋଇ ତିନିଧାର
ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ମନ୍ତ୍ରୀବର ।
କପିଳ ମହାମୁନିଙ୍କି ପଚାରିଲେ ବାଣୀ
ବିନୟ ଭକ୍ତି ଭାବରେ ଯୋଡ଼ି ବେନିପାଣି ।
ବଡ଼ ଆଶ୍ଚର୍ଯ୍ୟ ହୋଇଲି ଦେଖି ମହାମୁନି
ତୁମ୍ଭଙ୍କୁ ନ ଛାଡ଼େ ସତ୍ୟ ଧର୍ମ ସୁରଧୁନି ।
ସହଦେବର ବଚନେ ବୋଲନ୍ତି ବ୍ରହ୍ମର୍ଷି
ବହୁକାଳ କଥା ଶୁଣ କହୁଛି ପ୍ରକାଶି ।
ବିଜୟ ନାମ ଏକ ସତ୍ୟଯୁଗ କଥା
ମୋହକ ନାମରେ ପୃଥ୍ୱୀ କରିଥିଲେ ଧାତା ।
ଇକ୍ଷ୍ୱାକୁ ବଂଶେ ସଗର ନାମେ ନରପତି
ତା ଔରସେ ଜନ୍ମେ ଷାଠିଏସସ୍ର ସନ୍ତତି ।
ଏକକାଳେ ମାତାପୁତ୍ର ନ ପାରିଲା ପୋଷି
ମୃତ୍ତିକା ଖାଅ ବୋଲିଣ ମାତା ଦେଲେ ଭାଷି ।
ତହୁଁ ସେ ସକଳ ପୁତ୍ରେ ଏକମୁଖ ହୋଇ
ଜମ୍ବୁଦ୍ୱୀପ ମାଟି ସବୁ ଯାଇଛନ୍ତି ଖାଇ ।
ନବଲକ୍ଷ ଦୁଇଶତ ଯୋଜନ ଏ ପୃଥ୍ୱୀ
ଦକ୍ଷିଣ ପୂର୍ବ ପଶ୍ଚିମ ବେଢ଼ି ସେ ଯାଆନ୍ତି ।
ଆହେ ସହଦେବ ନିତି ଖାନ୍ତି ଏହି ବାଗେ
ବାରବର୍ଷ ଭକ୍ଷିଗଲେ ମନର ସରାଗେ ।
ଦିଗପାଳମାନେ ଯାଇ କହିଲେ ବ୍ରହ୍ମାଙ୍କୁ
ଜମ୍ବୁଦ୍ୱୀପ ନାଶଗଲା କହିଲୁ ତୁମ୍ଭଙ୍କୁ ।
ପୃଥ୍ୱୀ ନାଶଯିବା ଦେଖଇ ତହୁଁ ପିତାମହ
ଆମ୍ଭଙ୍କୁ ସେ ଆଜ୍ଞା କଲେ ତାଙ୍କୁ ବେଗେ କହ ।
ଧାତାଙ୍କ ବଚନ ଶୁଣି ଆମ୍ଭେ ଲଭି ତୁଷ୍ଟି
ସଗରସୁତେ ପଡ଼ିଲୁ କରି କୋପଦୃଷ୍ଟି ।
ଭାଗୀରଥ ନାମେ ତାଙ୍କ ବଂଶେ ଜାତ ହେଲା
ଆକାଶରୁ ଗଙ୍ଗା ଆଣି ପୃଥିବୀରେ କଲା ।
ଆସନ୍ତେ ମେରୁମେଖଳେ ରହେ ଗଙ୍ଗାମାତା
ଦନ୍ତ ପ୍ରହାର କରିଲା ଆସି ଐରାବତ ।
ତିନିଥର ଦନ୍ତାଘାତ କଲା ପରବତେ
ଏକଦନ୍ତ ଭାଙ୍ଗି ତହିଁ ରହେ ଅକସ୍ମାତେ ।
ତିନି ଆଘାତରେ ଗଙ୍ଗା ତିନିଧାରେ ଫୁଟି
ମହାବେଗେ ବାହାରନ୍ତେ ଗଜ ଗଲା ଲୋଟି ।
ଗଙ୍ଗା ଯମୁନା ଆବର ନଦୀ ସରସ୍ୱତୀ
ଏହି ତିନିନାମେ ଗଙ୍ଗା ତହୁଁ ବାହାରନ୍ତି ।
ଆଗୋ ଭଗୀରଥ ପଛେ ଗଙ୍ଗା ଆଦ୍ୟନାରୀ
ତାଙ୍କୁ କଢ଼ାଇ ଆଣଇ ଦିଗ ଅନୁସରି ।
ଜହ୍ନୁ ଋଷି ଗୋକର୍ଣ୍ଣରେ ତପ କରୁଥିଲେ
ତାହାଙ୍କର କୁଟିରକୁ ଭସାଇଣ ନେଲେ ।
ତହୁଁ ମହାଋଷିଙ୍କର ଭାଙ୍ଗିଗଲା ଧ୍ୟାନ
ଏକା ଚଳୁକେ ତ୍ରିଧାର କରିଦେଲେ ପାନ ।
ଗଙ୍ଗାଦେବୀଙ୍କୁ ନ ଦେଖି ସଗରର ନାତି
ତହୁଁ ସେ ମୁନିଙ୍କ ପାଦେ କରିଲା ଭକତି ।
ବୋଲଇ ହେ ମହାଋଷି ଗଙ୍ଗା କଲ ପାନ
କେମନ୍ତେ ଉଦ୍ଧାର ହେବେ ସଗର ସନ୍ତାନ ।
ବହୁକାଳ ତପ କରି ପାଇଥିଲି ଯାହା
ତାହାକୁ ପ୍ରଦାନ କର ଆହେ ମୁନିନାହା ।
ଏହିରୂପେ ଭଗୀରଥ କରିଲା ମିନତି
ତହୁଁ ଜହ୍ନୁ ମୁନିଙ୍କର କୋପ ହେଲା ଶାନ୍ତି ।
ବୋଇଲେ ମୁଖପଥରେ କରିଲେ ବାହାର
ଉଚ୍ଛିଷ୍ଟ ବୋଲି ସମସ୍ତେ କରିବେ ବିଚାର ।
ତହୁଁ ମୁନି ନିଜ ଜାନୁ ଦିଅନ୍ତେ ବିଦାରି
ସେହି ବାଟେ ତିନିଧାରେ ଆସିଲେ ବାହାରି ।
ଗଙ୍ଗାଙ୍କୁ ପ୍ରାର୍ଥନା କଲେ ଯହୁଁ ଜହ୍ନୁମୁନି
ଜାହ୍ନବୀ ନାମ ଧଇଲେ ତହିଁ ସୁରଧୁନୀ ।
ଭଗୀରଥ ଗଙ୍ଗାଙ୍କୁ ଯେ ପୁଣି ମଣାଇଣ
ଐଶାନ୍ୟ ମୂର୍ତ୍ତିରେ ଆସେ ନବସସ୍ର ଯୁଣ ।
ବିଜୟନଗ୍ରେ ଶରଧା ବୋଲି ଗନ୍ଧନାରୀ
ଗଙ୍ଗା ବହି ଆସୁ ପାତେ ନେଇ ସୁରାଝରି ।
ଆକାଶ ହାନ୍ଦୋଳାରେ ସେ ତିନିଧାର ରୂପ
ଗନ୍ଧନାରୀ ସୁରାପାତ୍ରେ ହୋଇଗଲେ ଗୋପ୍ୟ
ତାହାକୁ ଭକତି କରି ମାଗେ ଭଗୀରଥ
ଗଙ୍ଗାଙ୍କୁ ସେ ମହାପ୍ରାଣୀ କରାଇଲା ସତ୍ୟ ।
ବୋଇଲା ମାଗୋ ପଶିଲୁ ତୁହି ସୁରାଝରି
ଆଜିଠାରୁ ତୋର ନାମ ହେଉ ସୁରେଶ୍ୱରୀ ।
ସତ୍ୟ କରାଇଣ ଛାଡ଼ିଦେଲେ ସେ ଗଙ୍ଗାଙ୍କୁ
ଭଗୀରଥ ଦେଖାଏ ତା ପୂର୍ବ ପୁରୁଷଙ୍କୁ ।
ଅଗ୍ନି ଭିତରେ ନ ପଶି ସଗରର ନାତି
ଆମ୍ଭଙ୍କୁ ସେ ପ୍ରଦକ୍ଷିଣ କଲା ତିନିଥାନ୍ତି ।

ଗଙ୍ଗାଙ୍କୁ ବୁଲିଲେ ତିନିବେଳ ପରିଯନ୍ତେ
ଭଗୀରଥ ବୋଇଲେ ମୁଁ ଆଣେ ପିତାଅର୍ଥେ ।
ଏ ଦହନ ଅଗ୍ନିଲିଭା ମୋହର ରକତେ
ଗଙ୍ଗା ବୋଇଲେ ସ୍ୱରୂପ କହୁଅଛି ତୋତେ ।
ଯାହାରଟି ସେହି କାର୍ଯ୍ୟ ଅଛଇ ଜଗତେ
ସେହି ସିନା ଝାସଦେବେ ଯାଇଣ ଅଗ୍ରତେ ।
ତୋ ଗୋତ୍ର ପୋଡ଼ି ମରନ୍ତି ସିନା ଏହି ଭାବେ
ତୁ ଝାସ ନ ଦେଲେ କିଏ ପଶିବ ସେଠାବେ ।
ଭାଗୀରଥ ବୋଇଲା ମୁଁ ତୋହର ଶରଣ
ବଂଶ ନିମନ୍ତେ ଝାସୁଛି ପାଇବି କାରଣ ।
ଗଙ୍ଗା ବୋଇଲେ ଯେ ଚାରିଯୁଗର ମଧରେ
ଭଗୀରଥ ଗଙ୍ଗା ବୋଲି ଗାଧୋଇବେ ନରେ ।
ଦେବ ଦାନବ ଗୁହ୍ୟକ ଏହି ଆଦିକରି
ସମସ୍ତେ ସ୍ନାନ କରିବେ ତୋର ନାମ ଧରି ।
ଗଙ୍ଗାଙ୍କ ବଚନ ଶୁଣି ହୋଇ ଶାନ୍ତ ମୂର୍ତ୍ତି
ବହନିରେ ଝାସ ଦେଲା ସଗରର ନାତି ।
ସଗର ପୁତ୍ରମାନଙ୍କୁ କରିବା କାରଣ
ମୋ ମସ୍ତକେ ଦେବୀ ଏବେ କରିବ ଭ୍ରମଣ ।
ସାଗର ସଙ୍ଗମ ତହୁଁ ହୁନ୍ତି ମାହେଶ୍ୱରୀ
ଏଥିର ମହିମା କିଏ କହିବ ବିସ୍ତାରି ।
ଶୁଣବାବୁ ସହଦେବ ଏ ସଙ୍ଗମ କଥା
କୋଟିତୀର୍ଥ ସମ ନୁହେ ଏହାକୁ ସର୍ବଥା ।
ସୁରବୋଧନ ନାମରେ ଥିଲା ସତ୍ୟଯୁଗ
ସେ କାଳ କଥାକୁ ଶୁଣ କରି ମନଯୋଗ ।
ଗଙ୍ଗାଇତୁ ବାଇ ନାମେ ଥିଲା ଏକ ପକ୍ଷୀ
ଆକାଶେ ଉଡ଼ଇ ସେହୁ ମାଛ ଭକ୍ଷି ଭକ୍ଷି ।
ମାଛର ନିମନ୍ତେ ସେହୁ ଜଳରେ ପଡ଼ଇ
ଦିନେ ସଙ୍ଗମୁ ବାହାରି ନ ପାରିଲା ସେହି ।
ନିଜ କାୟା ଝାସ ଯହୁଁ ଦେଲା ତାର ମଧେ
ଇନ୍ଦ୍ରପଦରେ ବସିଲା ଅତି ଅପ୍ରମାଦେ ।
ଏ ତୀର୍ଥ ମହିମା ଅଟେ ଅତି ଅପ୍ରମିତ
ଆମ୍ଭ ବ୍ରହ୍ମହତ୍ୟା ଦୋଷ ଖଣ୍ଡିଗଲା ଏଥ ।
ତୁମ୍ଭେ ଏ ତୀର୍ଥରେ ସ୍ନାନ କର ହୋ ପାଣ୍ଡବ
ପିତା ନାମଧରି ତୁବ ହତ୍ୟା ଛାଡ଼ିଯିବ ।
କପିଳ ଋଷିଙ୍କଠାରୁ ମନ୍ତ୍ରୀବର ଶୁଣି
ମହାତୀର୍ଥେ ସ୍ନାନକଲା ପିତା ପାପ ଗୁଣି ।
ସ୍ନାନ ନିତ୍ୟକର୍ମ ସାରି ବୀର ସହଦେବ
ପିଣ୍ଡଦାନ କଲା ପିତା ନିମନ୍ତେ ପାଣ୍ଡବ ।
ପଣ୍ଡୁରାଜା ବ୍ରହ୍ମହତ୍ୟା ଯେତେ ଦୋଷମାନ
ସ୍ନାନ ପିଣ୍ଡଦାନ ସର୍ବ ହୋଇଲା ଖଣ୍ଡନ ।
ତହୁଁ କପିଳ ମୁନିଙ୍କୁ କରି ନିମନ୍ତ୍ରଣ
ବୋଇଲେ ରାଜସୂୟ ଯଜ୍ଞେ ଯିବେ କି ଆପଣ ।
ଶୁଣି ସାନନ୍ଦ ଚିତ୍ତରେ ବୋଲନ୍ତି କପିଳ
ରାଜାମାନଙ୍କୁ ଘେନିଣ ତୁମ୍ଭେ ଶୁଭେ ଚଳ ।
ଅସ୍ତୁକାର ପୁରୁଷ ଯେ ମହାକ୍ଷେତ୍ରେ ଗଲେ
ଅସ୍ତୁ ଅସ୍ତୁ ବୋଲିକରି ମଙ୍ଗଳ ବାଞ୍ଛିଲେ ।
ତହୁଁ ସହଦେବ ମନ୍ତ୍ରୀ ଚଳଇ ନିଗମେ
ସୁମରଇ ନାରାୟଣ ପୁରୁଷ ଉତ୍ତମେ ।
ଜୟ ଜୟ ତୁହି ଦେବ ଯମ ଦର୍ପଗଞ୍ଜା
କୌଶିକ ବାକ୍ୟେ ତାଡ଼କୀ ଦର୍ପ କଲୁ ଭଞ୍ଜା ।
ମହାବ୍ରହ୍ମ ପୁରୁଷ କୋଦଣ୍ଡ ଦୀକ୍ଷାଗୁରୁ
କୌତୁକେ ମହାଭାରତ ଯୁଦ୍ଧ ତୁହି କରୁ ।
କନ୍ଧ କନ୍ଧ ଯୁଦ୍ଧେ ନାଥ ହିରଣ୍ୟ ମାଇଲୁ
ସାଗରେ ସେତୁ ବାନ୍ଧିଣ କୌଣପ ଧ୍ୱଂସିଲୁ ।
ଶୈଳଜା ବଲ୍ଲଭ ହର ଯାର ପ୍ରାଣବନ୍ଧୁ
କମଳା ପାଇବାପାଇଁ ମନ୍ଥିଲୁ ତୁ ସିନ୍ଧୁ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ବିକାଶୁ ମୋ ହୃଦେ
ଶାରଳା ଦାସ ବଦନ୍ତି ପରମ ସାନନ୍ଦେ ।



## ଭୀମସେନଙ୍କର ପଶ୍ଚିମଦିଗ ଯାତ୍ରା, ମୃଗସେନ ରାଜା ସହିତ ଯୁଦ୍ଧେ ପରାଜୟ, ସୋମବଂଶର ବଂଶାବଳି ଓ ମୃଗସେନର ଜନ୍ମ ବୃତ୍ତାନ୍ତ

ଘଟରଷିଙ୍କର ନନ୍ଦନ ଅଗସ୍ତି ପଣ୍ଡିତ
ଯାର କଥା ଶୁଣି ପାପୀ ହୁଅଇ ମୁକତ ।
ବୈବସ୍ୱତ ମନୁ ପୁଚ୍ଛା କରିଲେ ପ୍ରସ୍ତାବେ
ଶ୍ରୀ ବିଷ୍ଣୁ ପୁରାଣ ମୋତେ କହ ମୁନି ଏବେ ।
ଭୀମସେନ ଯାଇଥିଲେ ପଶ୍ଚିମ ଦିଗକୁ
ସାଧି ସାଧନା କଲେ କି ସକଳ ରାଜାଙ୍କୁ ।
ରାଜାଙ୍କୁ ଘେନି ଆସିଲେଟିକି ସର୍ବଶୁଭେ
ହେ ମହାତ୍ମା ତବ ମୁଖୁଁ ଶୁଣିବି ମୁଁ ଏବେ ।
ବଦନ୍ତି ଅଗସ୍ତି ଶୁଣ ବିଲଙ୍କ ଅଧିପ
ନିମନ୍ତିଲେ ଚାରିଗୁଣ ପାଞ୍ଚସସ୍ର ନୃପ ।
ପଶ୍ଚିମ ଅନ୍ତେ ମେରୁର ଦକ୍ଷିଣ ପାରୁଶେ
ମେଖଳ ପର୍ବତେ ହର ଉଦ୍ୟାନର ଦେଶେ ।
ହରିନାଥ ବୋଲିକରି ତହିଁ ଅଧିପତି
କିଷ୍କିନ୍ଧ୍ୟା ନଗ୍ରେ ଅନେକ କାଳୁଁ ସେହି ସ୍ଥିତି ।
ହରିବଳ ଘେନିକରି ଖଟେ ଶ୍ରୀରାମଙ୍କୁ
ରାବଣ ବଧି ପ୍ରସନ୍ନ ହୋଇଲେ ତାହାଙ୍କୁ ।

ନିଜ ଆୟୁଦେଇ ତାକୁ ଚିରାୟୁଷ କରି
ରଖାଇଲେ ତାକୁ ନେଇ କିଷ୍କିନ୍ଧ୍ୟା ନଗରୀ ।
ଅପାର କାଳରୁ ରାଜ୍ୟ କରଇ ସେ ବନେ
ଯମଦଣ୍ଡ ଖଣ୍ଡିଲା ସେ ଶ୍ରୀରାମ ପ୍ରସନ୍ନେ ।
ହରି ବଳ ସୈନ୍ୟ ତାର ଅଠର ଅର୍ବୁଦ
ଦଣ୍ଡ ଘେନି ନିର୍ଦ୍ୱନ୍ଦ୍ୱରେ ଥାଏ ସେ ବନସ୍ତ ।
ସେହି ରଜ୍ୟରେ ପ୍ରବେଶ ହୋଇଲା ପାବନି
ରାଜ୍ୟେ ପ୍ରବେଶନ୍ତେ ତହିଁ ଶୁଭେ ଗୋଳଧ୍ୱନି ।
କିଳିକିଳା ରାବେ ଧାଇଁଗଲେ କପିବୀରେ
କରେ ଶେଭାପାଏ ବୃକ୍ଷ ପଥରେ ପଥରେ ।
ରେ ରେ କାର କିଳିକିଳା ଏ ବେନି ଶବଦେ
କମ୍ପିଗଲେ ବୃନ୍ଦାରକେ ଅହୋବନ ନାଦେ ।
କିଟିକିଟି ନାଦ ମିଟିମିଟି ବେନି ଡୋଳ
ଭିଡ଼ନ୍ତି ଦାନ୍ତ ଖତାନ୍ତି ହୋଇ ବିକଟାଳ ।
ଦେଖିଣ ପାଣ୍ଡବବଳ ଏମନ୍ତ ପ୍ରତ୍ୟକ୍ଷେ
ଦେଖିଲେ ସକଳେ ତହୁଁ ହୋଇ ଏକମୁଖେ ।
ଧରନ୍ତେ ଧରା ନୁହଇ ନ ଆସନ୍ତି କତି
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀରେ ଅଭୟ ଯେ ରଥୀ ।
ଭୀମସେନ ସୈନ୍ୟସବୁ ସମର ଉପେକ୍ଷି
ନଗରେ ପଶିଲେ ହରିବଳଙ୍କୁ ନ ଦେଖି ।
କୋଳାହଳ ବାଦ୍ୟ ଶୁଣି ହରିନାଥ ରାୟେ
ବାନର ବଳଙ୍କୁ ଘେନି କରିଲା ବିଜୟେ ।
ଭୀମସେନର ଛାମୁରେ ପ୍ରବେଶିଲା ଆସି
ପାଣ୍ଡବବଳ ଦେଖିଣ ତାଙ୍କୁ ହେଲେ ତ୍ରାସି ।
ହରିନାଥ ପଚାରିଲା ଶୁଣ ମହାତ୍ମା
ମାନବ ଜନମ ଲଭି ତୋର ଏ ଗରିମା ।
ଏ କପିସୈନ୍ୟ ଅଟନ୍ତି ମୋର ମହାଯୋଦ୍ଧା
ତ୍ରେତାଯୁଗେ ରାମଚନ୍ଦ୍ର ଦେଲେ ମୋତେ ସାଧି
ଭୀମ ବୋଇଲେ ମୋହର ପ୍ରତିଜ୍ଞା ବହୁତ
ମୁହିଁ ଅଟଇ ପାଣ୍ଡବ ସୋମବଂଶେ ଜାତ ।
ପବନ ନନ୍ଦନ ଭୀମସେନ ନାମ ଜାଣ
ପଶ୍ଚିମ ବିଜେ ରାଜାଙ୍କୁ କରି ନିମନ୍ତ୍ରଣ ।
ଯୁଧିଷ୍ଠି ରାଜସୂୟଜ୍ଞ କରିବା ନିମନ୍ତେ
ସର୍ବରାଜା ଯାଉଛନ୍ତି ସେ ବାରୁଣାବନ୍ତେ ।
ତୁହୋ ମହାରାଜା ଅଟୁ ବନ ଅଧିକାରୀ
ତୋତେ ନିମନ୍ତ୍ରିବା ପାଇଁ ପେଷିଲେ ଶ୍ରୀହରି ।
ସମଦଣ୍ଡ ଘେନିଣ ତୁ ଯିବୁଟି ହସ୍ତିନା
ଦ୍ୱନ୍ଦ୍ୱକାରୀ ନୁହେଁ ମୁଁ ଉତ୍ସବକାରୀ ସିନା ।
ଭୀମ ବଚନେ ସାନନ୍ଦ ହେଲା ନରନାଥ
ବୋଲେ ପବନସୁତ ତୋ ଭାଇ ହନୁମନ୍ତ ।

ତହୁଁ ଭୀମସେନ ପାଶେ ନୃପ ପ୍ରିୟଭାବେ
ପୂଜା କରିଲା ତାହାଙ୍କୁ ଅନେକ ସମ୍ଭବେ ।
ସେ ରାଜ୍ୟେ ରାଜା କରିଲେ ବହୁତ ଉତ୍ସବ
ଭୋଜନକୁ ଫଳ ଦେଲା ଯା ହେଲା ସମ୍ଭବ ।
ନିମନ୍ତ୍ରଣର ଯୋଗାଡ଼ ଦେଲାକ ପଞ୍ଚାଣ
ବୋଇଲା ତୁ ଦଣ୍ଡ ଘେନି ଚଳ ନୃପରାଣ ।
ସେଠାରୁ ମାରୁତି ତହୁଁ ଚଳେ ଦଣ୍ଡ ଘେନି
ମେଖଳା ଦେଶରେ ଯାଇ ପ୍ରବେଶ ପାବନି ।
ଲୋକାଲୋକ ବୋଲିକରି ଏକ ପରବତେ
ପ୍ରବେଶ ହୋଇଲା ଯାଇ ସେଠାରୁ ତ୍ୱରିତେ ।
ମୃଗସେନ ନାମେ ତହିଁ ଏକଇ ନୃପତି
ବଡ଼ାଇ ପ୍ରତାପୀ ରାଜା ଗିରିଶିଖେ ସ୍ଥିତି ।
ବୀରତୂର ବାଦ୍ୟମାନ ଶୁଭେ ଅପ୍ରମିତ
ପର୍ବତ ଉପରେ ଥାଇ ଦେଖେ ନରନାଥ ।
ଭୁଜରେ ଶୋଭା ଭୁଜାଲି ପୃଷ୍ଠରେ ଭାରତୀ
ରଙ୍ଗନେତ୍ରରେ ଚାହିଁଲା ଫୁଲାଇଣ ଛାତି ।
କନ୍ଦର ବେଢ଼ିଲେ ଯାଇ ପାଣ୍ଡବଙ୍କ ଥାଟ
ଦେଖଇଣ ସେ ମୃଗସେନ ତାହାଙ୍କ ମୁରାଟ ।
ବହୁତ ପ୍ରତିଜ୍ଞା କରି ଦେଖାଇଲେ ଟାଣ
ପ୍ରଥମେ ପ୍ରହାର କଲେ ନେଇଣ ସେ ବାଣ ।
କୋପେ ମୃଗସେନ ତହୁଁ ଘେନି ତୀକ୍ଷ୍ଣମୁନା
ବିନ୍ଧଇ ନାରାଚ ସେହୁ କରି ଅକଳନା ।
ସିଂହ ତୁରଙ୍ଗ ଧନୁରେ ପାଞ୍ଚଶର ସନ୍ଧି
ଆକର୍ଷି କୋପେ ନାରାଚ ଦେଲାକ ସେ ବିନ୍ଧି ।
ସେ ପାଞ୍ଚଶର ଘୋଟିଲା ପାଣ୍ଡବର ଥାଟ
ତ୍ରାସେ ସଇନି ଭାଜିଲେ ନ ପାଇଣ ବାଟ ।
ଅନ୍ତରୀକ୍ଷୁ ଶର ପଡ଼େ ଭୀମର ଥାଟରେ
ପଞ୍ଚଶତ ଯୋଦ୍ଧା ମଲେ ଏକ ପ୍ରହାରରେ ।
ପୁଣି ପ୍ରହାର କରିଲା ଶର ଅସ୍ତ୍ରଚାରି
ପଞ୍ଚଶତ ଯୋଦ୍ଧା ପଡ଼ି ମରିଲେ ଆହୁରି ।
ସୈନ୍ୟ ଅସାକ୍ଷମ ଦେଖି ବୀର ଭୀମସେନ
ରଥରୁ ଡେଇଁ ପଡ଼ିଲା ହୋଇ କୋପମାନ ।
ରେରେକାର ଶବଦରେ ଯେହ୍ନେଘୋଟେ ରାହୁ
ଉର୍ଦ୍ଧ୍ୱଦିଗକୁ ବିସ୍ତାର କଲା ବେନି ବାହୁ ।
ଭୀମସେନକୁ ଦେଖିଣ ନୃପ ମୃଗସେନ
ପୁଣି ଶତେକ ନାରାଚ କରିଲା ସନ୍ଧାନ ।
ଗିରିବର ତଳେ ଥବଲେ ଯେବଣ ସଇନି
ପଡ଼ିଲେ ନାରାଚ ଘାଏ ଝଳକି ବହନି ।
ଏକଶତ ରଥୀ ପୁଣି ଚାରିଶତ ହସ୍ତୀ
ବେନି ଅୟୁତ ପଚିଶ ମରିଲେ ପଦାତି ।

ଶତେକ ନାରାଚ ନୃପ ପୁଣି କଲା ବୃଷ୍ଟି
ଭୀମ ଉପରେ ପଡ଼ିଣ ଅଗ୍ନିତେଜ ଉଠି ।
ଯେମନ୍ତେ ଅନିଳ ବହେ ବହିଲା ଅନଳ
ସହସ୍ର ତେଜେ ଦହିଲା ପାଣ୍ଡବର ବଳ ।
ଯେତେ ସୈନ୍ୟଥିଲେ ଭୀମସେନ ସଙ୍ଗତରେ
ସମସ୍ତ ଦଗଧ ହେଲେ ସେ ରାଜା ଶରରେ ।
ଏକା ରହେ ଭୀମସେନ ମରୁତ ସାରଥି
ଏହା ଛଡ଼ା ସଖା କେହି ତାହାର ନାହାନ୍ତି ।
ଏମନ୍ତ ଅବସ୍ଥା ଦେଖଇ ସୈନ୍ୟମାନଙ୍କର
ଅରୁଣ ଉଜ୍ଜ୍ୱଳନେତ୍ରୁ ବହେ ଅଶ୍ରୁଧାର ।
ଶୋକଭରରେ ରୋଦଇ ପାଣ୍ଡବ ପଞ୍ଚାଣ
ସାରଥିକୁ ପ୍ରଣମିଣ ବୋଲଇ ସେ ରାଣ ।
ତୁହି ମୋହର ପିଅଇ ପିତାମହ ସରି
ସଖା ସୋଦର ମୋହରି ଗଲେ ଅପସରି ।
ନିର୍ଲ୍ଲଜ ଅଟଇ ସିନା ମୋହର ଏ ଅମ୍ମା
କ୍ଷତ୍ରିୟବର କ୍ଷୋହଡ ସେ ସାଧୁ ମହାତ୍ମା ।
ଆମ୍ଭଙ୍କୁ କିପାଇଁ ନାଶ ନ କଲା ସମରେ
କିସ ପ୍ରୟୋଜନ ଅଛି ଆଉ ଜୀବନରେ ।
ସଖା ସହୋଦର ମୋର ସର୍ବ ହରାଇଲି
କ୍ଷତ୍ରିୟ କୁଳକୁ ସିନା ଝିଙ୍ଗାସ ପାଇଲି ।
ଭୋ ପିତାମହ ମୋହର ବାହୁ ତୁହି ରଥ
ମୃଗସେନ ନ ମାଇଲେ ଜୀଇଁବା ଧିକ ତ ।
ଏହି ପ୍ରକାରେ କହନ୍ତେ ଧାଏଁ ମୃଗସେନ
ହାବୋଡ଼ାଶର ଗୋଟିଏ ମାଇଲା ବହନ ।
ବଜ୍ରର ସମାନ ଯାଇ ସେ ନାରାଚ ପଡ଼ି
ଭୀମସେନ ରଥଚକ ପଡ଼ିଲାକ ଛିଡ଼ି ।
ରଥ ଗଜ ଅଶ୍ୱଆଦି ନ ପାଇଲା ଯହୁଁ
ପାଦଗତିରେ ପାବନି ଧାଇଁଲାକ ତହୁଁ ।
ସାରଥି ବଚନ ଭୀମ ନ କରିଲା ରକ୍ଷା
ରାଗରେ ମାରୁତି କଲା ଧର୍ମକୁ ଉପେକ୍ଷା ।
ବାଆନ ବାଆନ ଭାର ଗଦା କରେ ଘେନି
ବୁଲାଇ ପିଟିଲା ମୃଗସେନର ମୂର୍ଦ୍ଧନି ।
ଚନ୍ଦ୍ର ଗ୍ରାସିବାକୁ ରାହୁ ଯେହ୍ନେ ତେଜ ଦିଶେ
ସେହିପରି ମୃଗସେନ ମୃଗକୁ ଆକର୍ଷେ ।
ବୁଲାଇ ପ୍ରହାରେ ଗଦା ହିଡ଼ିମ୍ବୀର ନାହା
ଦେଖି ମୃଗସେନ ପାତେ ତାର ବେନି ବାହା ।
ଭୀମସେନ ପ୍ରହାରିଲା ଗଦା ଗଳଗାଜି
ରାଜାର ଉପରେ ପଡ଼ି ଗଦା ଗଲା ଭାଜି ।
କୋଇନ୍ତା ନନ୍ଦନ ଯହୁଁ ହେଲା ଶୂନ୍ୟହସ୍ତ
ଲୌହଗଦା ପ୍ରହାରିଲା ମୃଗ ନରନାଥ ।

ଦେଖିକରି ବୃକୋଦର ପାତେ ବାମଅଙ୍ଗ
ମୃଗସେନ ଦୁଇଗଦା ପଡ଼ି ହେଲା ଭଙ୍ଗ ।
ତାହା ଦେଖି ମୃଗସେନ ଧାଏଁ ମହାକ୍ରୋଧେ
ଭୀମସେନକୁ ଆକର୍ଷି ଧରେ ମାଲଯୁଦ୍ଧେ ।
ପବନ ନନ୍ଦନ ଅଟେ ଅତି ବଳବନ୍ତା
ମୃଗସେନ ଅଟେ ମଧ୍ୟ ତ୍ରିଲୋକ ଜିଣନ୍ତା ।
ଭୁଜେ ଭୁଜେ ଧରାଧରି ପାଦେ ଛନ୍ଦାଛନ୍ଦି
ଶିରେ ଶିର ପଡ଼ିତାଙ୍କ ହୃଦେ ହୃଦ ବାନ୍ଧି ।
ସମର ସମ୍ପର୍କେ ଦୁହେଁ ମହୀରେ ପଡ଼ିଲେ
କେତୁ ମଙ୍ଗଳ ସମର ଯେହ୍ନେ କରିଥିଲେ ।
ସେହିରୂପେ ସମରରେ ବଢ଼େ ମହାରୋଳ
ମୁଖରାବ ଶବଦରେ ଉଠେ ମହାଗୋଳ ।
ଶିରେ ଶିରେ ପଡ଼ିତାଙ୍କ ହୃଦେ ବାନ୍ଧି ବେନି
ରଣଝଣେ ଘାତେ ବହ୍ନି ଉଠଇ ବହନି ।
ପର୍ବତ ଡିଙ୍ଗର ଖାଲ ପୁଣି ବୃକ୍ଷମାନ
ଦୁହିଙ୍କ ଶରୀର ଘାତେ ହୋଇଲାକ ଚୂର୍ଣ୍ଣ ।
ଭୀମସେନକୁ ପାଡ଼ିଣ ରାଜା ମୃଗସେନ
ବକ୍ଷସ୍ଥଳେ ମାଡ଼ିବସେ ହୋଇ କୋପମନ ।
ବାମକରେ ପାବନୀର କଣ୍ଠଦେଶ ଧରି
ଡାହାଣ ହାତରେ ମୁଥ ମାରେ କୋପକରି ।
ମୁଥ ଘାତରେ ଝଲନ୍ତି ପଡ଼େ ବୈଶ୍ୱାନର
ବୋଇଲା କିଏ ରଖିବ ତୋତେରେ ପାମର ।
ଘାଏ ନିଶ୍ଚେଷ୍ଟ ହୋଇଣ ପଡ଼ିଲା ମାରୁତି
ଶତଶୃଙ୍ଗ ପର୍ବତକୁ ସୁମରଇ ଧାତି ।
ପର୍ବତବର ଭୀମର ଅଙ୍ଗେ କଲା ବିଜେ
ସାଷ୍ଟାମ ପାଇ ଉଠିଲା ପବନ ଆତ୍ମଜେ ।
ଏକ ଉତ୍ତର ଶତେକ ସିଂହ ମହାବଳେ
ଲେଉଟାଇ ମାଡ଼ି ବସେ ରାଜା ବକ୍ଷସ୍ଥଳେ ।
ମହାବଳବନ୍ତ ଯେଣୁ ପବନର ସୁତ
ମୃଗସେନ ବକ୍ଷସ୍ଥଳେ ବସିଲା ତୁରିତ ।
କୋଇନ୍ତା ସୁତ ପ୍ରତିଜ୍ଞା କରି ମହାଗୁରୁ
ବୋଇଲା ପାମର ତୋତେ କିଏ ରକ୍ଷାକରୁ ।
ସୁମର ତୁ ପାମରରେ ତୋର ପିତାମାତା
ସୁମର ତୁ ପାମରରେ ତୋ ଇଷ୍ଟଦେବତା ।
ଭୀମସେନର ପ୍ରତିଜ୍ଞା ମୃଗସେନ ଶୁଣି
ଗର୍ଜ୍ଜିଣ ଭୀମସେନଙ୍କୁ ଲେଉଟାଇ ପୁଣି ।
ଧାତିକାରେ ଲେଉଟାଇ ବସେ ବକ୍ଷସ୍ଥଳେ
ପୁଣି ପୁଣିହିଁ ପ୍ରତିଜ୍ଞା କରେ ମହାବଳେ ।
ରେ ରେ ପାମର ମହିମା ତୋର ଅଟେ ଧନି
ରେ ପାମର ଧନ୍ୟ ତୋର ସାଧବୀ ଜନନୀ ।

ରେ ପାମର ତୋହର କିସ ଅଟେ ଦର୍ପ
ରେ ରେ ପାମର ଚାଳିଲୁ ତୁହି କାଳସର୍ପ ।
ରେ ରେ ପାମର ତୁହିତ କି ପ୍ରତିଜ୍ଞା କରୁ
ରେ ରେ ପାମର ଆସିଣ କେହି ରକ୍ଷାକରୁ ।
ରେ ରେ ପାମର ଚିରିବି ତୋର ବକ୍ଷସ୍ଥଳ
ରେ ରେ ପାମର ତୋହର ପୂରିଲାଣି କାଳ ।
ରେ ରେ ପାମର ଜନ୍ମିଲୁ ତୁ କେବଣ ଦେଶ
ଏ ସ୍ଥାନକୁ ଆସି କାୟ କରିଲୁ ତୁ ଧ୍ୱଂସ ।
ଯାହାର କର୍ମେ ଯେଠାରେ ଅଛଇ ନିୟତ
ଦଇବ କଢ଼ାଇ ଆଣେ ଗଳେ ଦେଇ ହସ୍ତ ।
ସ୍ୱର୍ଗେ ଦେବତା ପାତାଳେ ଛନ୍ତି ନାଗଲୋକ
ମର୍ତ୍ତ୍ୟପୁରେ ନରମାନେ ଅଛନ୍ତି ଅନେକ ।
ତୋହର ଅବସ୍ଥା ଯାହା ଘଟିଛି ତୁ ଦେଖୁ
ତ୍ରୈଲୋକ୍ୟ ମଧ୍ୟରେ ଆଜି ତୋତେ କିଏ ରଖୁ
ଦୁଃସହ ପ୍ରତିଜ୍ଞାମାନ କରେ ବୀରମଣି
ବିଚାରଇ ପ୍ରାଣେ ଯାକୁ ମାରିବି ଏକ୍ଷଣି ।
ପୁଣି ବିଚାରଇ ଏହୁ କାହାର ତନୟେ
ସ୍ୱରୂପ ଦିଶଇ ଦିଗପାଳ ଅଂଶ ପ୍ରାୟେ ।
ମାରିବି କି ନ ମାରିବି ବିଚାରଇ ମନେ
ଅପଖ୍ୟାତି ପାଇବି ମୁଁ ମାରିବି କେସନେ ।
ପୁଣି ମୃଗସେନ ରାଜା ପୁଛେ ମୁଖ ଚାହିଁ
କେବଣ ପୁରରେ ଜାତ ବାସ ତୋର କାହିଁ ।
ଭୀମ ତଳେ ପଡ଼ି ବୋଲେ ମାଲଯୁଦ୍ଧେ ହାରି
ମୁହିଁ ସୋମବଂଶେ ଜାତ ବ୍ୟାସ ବଂଶଧାରୀ ।
ଚନ୍ଦ୍ର ଅଂଶେ ଉତପତ୍ତି ବୁଧ ନରପତି
ପୁରରବା ବୋଲିକରି ତାହାର ସନ୍ତତି ।
ପୁରରବାଙ୍କ ନନ୍ଦନ ନାମ ଯେ ଆଉରି
ନହୁଷ ନୃପତି ପୁତ୍ର ହୋଇଲା ତାଙ୍କରି ।
ନହୁଷ ରାଜାଙ୍କ ପୁତ୍ର ହୋଇଲା ଯଯାତି
ଯାଯାତିର ପୁତ୍ର ନାମ ପ୍ରବୀର ପ୍ରଚେତି ।
ମନୁ ସାନନ୍ଦ ବୋଲିଣ ପୁତ୍ର ଏହାଙ୍କର
ଇଲିଭିର ବୋଲିକରି ଏହାଙ୍କ କୁମର ।
ଦୁଷ୍ମନ୍ତ ବୋଲିକରିଣ ଯାଙ୍କ ପୁତ୍ର ଜାଣ
ଏଥୁ ଉତ୍ତାରୁ କହୁଛି ମନ ଦେଇ ଶୁଣ ।
ଦୁଷ୍ମନ୍ତଙ୍କର ହୋଇଲା ଭରତ ନାମେ ସୂନୁ
ଭରତ ନନ୍ଦନ ହେଲା ନାମ ଯେ ଭୂମନ୍ୟୁ ।
ଭୂମନ୍ୟୁ ନନ୍ଦନ ନାମ ବିରଥ ପ୍ରତ୍ୟକ୍ଷ
ବିରଥ ନନ୍ଦନ ହେଲା ନୃପତି ବିଭୂକ୍ଷ ।
ବିଭୂକ୍ଷ ନନ୍ଦନ ନାମ ଶମ୍ଭୁ ନୃପଚାଣ
କୁରୁନାଥ ବୋଲିକରି ଯାଙ୍କ ସୁତ ଜାଣ ।
କୁରୁନାଥ ନନ୍ଦନ ନୃପତି ଯେ ପାର୍ଥିକ
ତାର ନନ୍ଦନ ଶାନ୍ତନୁ ନାମେ ସହଦେବ ।

ତା ପୁତ୍ର ଚିତ୍ର ବିଚିତ୍ରବୀର୍ଯ୍ୟ ଦୁଇଭାଇ
ଗଙ୍ଗାଶାପରେ ମରିଲେ ଅପୁତ୍ରିକ ହୋଇ ।
ପରାଶରଙ୍କ ଭାରିଯା ନାମ ସତ୍ୟବତୀ
ଏହାଙ୍କର ନନ୍ଦନ ଯେ ବ୍ୟାସେ ମହାଯତି ।
ଏହାଙ୍କ ନନ୍ଦନ ହେଲେ ପଣ୍ଡୁ ଧୃତରାଷ୍ଟ୍ର
ପଣ୍ଡୁଙ୍କ ନନ୍ଦନ ପୁତ୍ର ଯୁଧିଷ୍ଠିର ଶ୍ରେଷ୍ଠ ।
ରାଜସୂୟ ଯାଗ ସେହୁ କରିବା ନିମନ୍ତେ
ମୁଁ ଆସେ ପଶ୍ଚିମ ରାଜା ନିମନ୍ତ୍ରଣ ଅର୍ଥେ ।
ସମସ୍ତ ନୃପତିଙ୍କି ମୁଁ ଆଣିଲଇଁ ସାଧି
ପୃଥିବୀ ମଧ୍ୟରେ ମୋର ସମ ନାହିଁ ଯୋଦ୍ଧି ।
ଜରାସନ୍ଧକୁ ମାରିଲି ମାଲବନ୍ଧେ ହେଳେ
ତୋତେ ହାରିଲି ଏଠାରେ ମୋର କର୍ମବଳେ ।
ମୃଗସେନ ବୋଇଲା ତୁ ଯେବେ ବ୍ୟାସବଂଶୀ
ଦେଖୁ ଲୟକରି ସ୍ମର ବ୍ୟାସ ମହାଋଷି ।
ରାଜାର ବଚନେ ଭୀମ ଚିନ୍ତେ ହୃଦଗତେ
ତକ୍ଷଣେ ବିଜୟ କଲେ ବ୍ୟାସ ତପୋବନ୍ତେ ।
ଦେଖିଲେ ଭୀମସେନର ଦୁଃସହ ଅବସ୍ଥା
ଛାଡ଼ ଛାଡ଼ ବୋଲି ଡାକ ଦେଲେ ବ୍ରହ୍ମବେତ୍ତା ।
ନାଗରାଜାଙ୍କ ସଙ୍ଗରେ ଥିଲେ ବ୍ୟାସଋଷି
ଭୀମସେନ ସୁମରନ୍ତେ ବିଜେକଲେ ଆସି ।
ବ୍ୟାସଙ୍କୁ ଦେଖିଣ ମୃଗସେନ ପରଣାମି
ନ ଛାଡ଼ିବି ମୁଁ ଏହାକୁ ମାରିବଇଁ ସ୍ୱାମୀ ।
ବ୍ୟାସ ବୋଇଲେ ନ ଛାଡୁ କିପାଇଁ ବହନ
ଆମ୍ଭର ନାତି ଏ ତୋର ଭାଇର ନନ୍ଦନ ।
ତୁହି ଆମ୍ଭର ନନ୍ଦନ ଏ ତୋହର ସୁତ
ସହେଦର ସୁତକୁ ତୁ ମାରୁଛୁ କେମନ୍ତ ।
ବ୍ୟାସଙ୍କ ବଚନ ଶୁଣି ଛାଡ଼େ ତତ୍କ୍ଷଣାନ୍ତି
କୋଳେ ବସାଇଲେ ଋଷି ପୁତ୍ର ଆଉ ନାତି ।
ମୃଗସେନକୁ ସମାର୍ଜି କହି ବ୍ରହ୍ମଯତି
ଭୀମସେନ ସମର୍ପିଲେ ମୃଗସେନ କତି ।
ସହୋଦର ସୁତ ଦେଖି ହୃଷ୍ଟ ମୃଗସେନ
ଭୀମସେନକୁ କୋଳରେ ବସାଏ ବହନ ।
ଗତ ପୁରାଣର ବାକ୍ୟେ କହିଲେ ଯେ ଯତି
ଭୀମକୁ ଭାଷିଲେ ମୃଗସେନର ଉତ୍ପତ୍ତି ।
ବହୁ କାଳର ବାରତା କହିଲେ ସାନନ୍ଦେ
ଭୀମସେନ ଶୁଣିଲେ ଯେ ମନର ଆନନ୍ଦେ ।
ମୃଗସେନ ବୋଲିକରି ଯେଉଁ ମହାବୀର
ଏହା କହି କୃଷ୍ଣ ହେଲେ ଶତ ଅବତାର ।
ଅନେକ ଯୋଗାଡ଼ ତହିଁ କରେ ମୃଗସେନ
ସାନନ୍ଦ ମନରେ ଭୀମ କରିଲା ଭୋଜନ ।
ନିମନ୍ତ୍ରଣର ଯୋଗାଡ଼ ଦେଲେ କ ପାବନି
ବୋଇଲା ହସ୍ତିନା ବିଜେକର ସୈନ୍ୟଘେନି ।

ପାଣ୍ଡବ ସକଳ ସୈନ୍ୟ ମୋହେ ପଡ଼ିଥିଲେ
ବ୍ୟାସଙ୍କର ସିଦ୍ଧ ବାକ୍ୟେ ଚେତନା ପାଇଲେ ।
ମୃଗସେନ ବୋଇଲା ମୋ ସୈନ୍ୟସଖା ନାହିଁ
ଏ ମେରୁମେଖଳେ ମୁହିଁ ଥାଏ ଏକାହୋଇ ।
ମୁହିଁ ନ ଜାଣଇ କିସ ରାତ୍ର ବା ଦିବସ
ମୁହିଁ ନ ଜାଣଇ ଯୁଗାନ୍ତରର ପ୍ରକାଶ ।
ଭୀମସେନ ବୋଇଲାକ ତୋ ଜୀବନ ଧନ୍ୟ
ତୋତେ ଭେଟିଲି ମୋହର ସାର୍ଥକ ଜୀବନ ।
ବ୍ୟାସ ବୋଇଲେ ତୁ ଭୀମ ଚଳ ବେଗହୋଇ
ନୃପତିମାନଙ୍କୁ ବେଗେ ନିଅ ତୁ କଢ଼ାଇ ।
ବହନରେ ଘେନିଯାଅ ସମସ୍ତ ରାଜାଙ୍କୁ
କଟାଳ କରିବୁ ନାହିଁ ଏକା ବିରାଟକୁ ।
ତାହାର ଇଚ୍ଛାରେ ଯିବ ସେହୁ ଯଜ୍ଞସ୍ଥାନ
ଏହା କହି ବ୍ୟାସଗଲେ ହୋଇ ଅନ୍ତର୍ଦ୍ଧାନ ।
ମୃଗସେନ ପାଶେ ଯାଇ ପବନ ଦୁଲାଳ
ପୁନଃ ପୁନଃ ପ୍ରଣିପାତ ହେଲା ପାଦତଳ ।
ତହୁଁ ପଶ୍ଚିମ ଦିଗରୁ ଆସଇ ବହନେ
ଯେ ଯାହାର ସୈନ୍ୟଘେନି ଗଲେ ରାଜାମାନେ
ବୈବସ୍ୱତ ମନୁ ପୁଚ୍ଛା କରିଲେ ପ୍ରସ୍ତାବେ
ମୃଗସେନର ଚରିତ କହ ମୋତେ ଏବେ ।
ଅଗସ୍ତି ବୋଇଲେ ଶୁଣ ଆହେ ନୃପବର
ମୃଗସେନର ବିଷୟ ଯେମନ୍ତ ପ୍ରକାର ।
ସୁରସିଦ୍ଧ ବୋଲିକରି ଏକ ସତ୍ୟଯୁଗ
ଯୁବାକାଳେ ବ୍ୟାସ ହେଲେ ମୃଗୁଣୀର ସଙ୍ଗ ।
ମୃଗୁଣୀ ଗର୍ଭରେ ଯହୁଁ ଯତି ଦେଲେ ରେତ
ଗୋଟିଏ କୁମର ତହଉଁ ହୋଇଲାକ ଜାତ ।
ମନୁଷ୍ୟ ଶରୀର ତାର ମୃଗମୁଣ୍ଡ ଗୋଟି
ଅମୃତ ଯୋଗରେ ଜାତକଲେ ତପୋନିଷ୍ଠି ।
ଅଭେଦର ବଜ୍ରସେହ୍ନା ଦେଲେ ତାର ଅଙ୍ଗେ
ତ୍ରୈଲୋକ୍ୟେ ରଣେ ଜିଣନ୍ତାନାହିଁ ତାରସଙ୍ଗେ
ଅଳପେ ଅଳପେ ତାକୁ ନିଅନ୍ତି କଢ଼ାଇ
ବଳାତ୍କାରେ ନେବାପାଇଁ କାର ସାଧନାହିଁ ।
ଏହିପରି ଆଜ୍ଞା ତାକୁ ଦେଲେ ବ୍ୟାସରଷି
ଅତୁଟ ଶରୀର ତୋର ହେବ ଅବିନାଶୀ ।
ଅତି ପ୍ରୀତି ଭାବେ ତାକୁ ବ୍ୟାସେ ମହାଯତି
ଅମୃତ ଆଣି ତାହାକୁ ସେବନ କରାନ୍ତି ।
ତେଣୁକରି ତା ଶରୀର ଅତୁଟ ହୋଇଲା
ମହାବଳବନ୍ତ ହୋଇ ଯୁଗ ଭୋଗକଲା ।
ଜୟ ତୁ ମହାମାୟା ଗୋ ଅନାଦି ଶକତି
ହିମବନ୍ତର ନନ୍ଦିନୀ ଅଭୟା ପାର୍ବତୀ ।
ମହାଯୋଗ ସାଧିନୀ ଗୋ ତୁହି ସର୍ବଭୂତା
ତୁ ମୋତେ ବାରେ ପ୍ରସନ୍ନ ହୁଅସି ଗୋ ମାତା ।
କ୍ଷଣକେ କାଳିକା କ୍ଷଣେ କାମରୂପୀ ଧରୁ
କ୍ଷଣକେ ଜଗତ ପାଳୁ କ୍ଷଣକେ ସଂହାରୁ ।
ବଳିଦର୍ପ ଧ୍ୱଂସିନୀ ଗୋ ନମସ୍ତେ କରାଳି
ଦୁଷ୍ଟଜନ ନାଶୁ ମାଗୋ ସଚ୍ଛଜନ ପାଳି ।
ମହାଯୋଗ ସାଧନି ଗୋ ଅଟୁ ଯୋଗ୍ନୀରୂପୀ
ବାଳାର୍କ ତେଜକୁ ଜିଣି ଅଟୁ ତୁ ସ୍ୱରୂପୀ ।
ମହାଯୋଗ ମନ୍ତ୍ର ତୁହି ତୁହି ଗୋ କାମାକ୍ଷୀ
ପ୍ରସନ୍ନା ଅପର୍ଣ୍ଣା ତୁହି ତୁହି ପିଙ୍ଗଳାକ୍ଷୀ ।
ଖଟ୍ୱାଙ୍ଗ ଡମ୍ବରୁ ଧରୁ ତ୍ରିଶୂଳ ଶକତି
ଖେଚର ବାହନେ ଭ୍ରମୁ ତୁହି ଦିବାରାତି ।
କଡ଼ ମର୍ଦ୍ଦଳ ବଜାଇ କାହାଳି ଦାଉଣ୍ଡି
ମଧୁମତ୍ତ ହୋଇ ନାନା ନୃତ୍ୟରଙ୍ଗେ ମଣ୍ଡି ।
ପାତାଳେ ଚରଣ ମାଗୋ ଆକାଶେ ମସ୍ତକ
ପ୍ରଖର ନିଃଶ୍ୱାସେ ତୋ ବହଇ ଦୀପକ ।
ମନମଥ ସୁନ୍ଦର ଟୋ ପୃଥ୍ୱୀଜନ ଚିନ୍ତା
ପର ଲୋକର ବାଞ୍ଛିତ ତୁହି ବରଦାତା ।
ତବ ଚରଣେ ଭକତି ମୋହର ସର୍ବଦା
ଜନ୍ମେ ଜନ୍ମେ ସେବା ମୋର ଘେନଗୋଶାରଦା
ମଙ୍ଗଳମୟ ଅଭୟା ତୁ ସର୍ବବାସିନୀ
କାଳପାଶି ଫିଟିଯାଏ ଯେ କରେ ଦଇନୀ ।
ପ୍ରସନ୍ନ ଦର୍ଶନେ ମାଗୋ ସର୍ବ ଦୁଃଖ ଖଣ୍ଡି
ଅଭୟ ବର ଦାୟିନୀ ତୁହି ସିଦ୍ଧଚଣ୍ଡୀ ।
ତୋର ପଦ୍ମ ଚରଣରେ ନିରନ୍ତର ସେବା
ଶୂଦ୍ରମୁନି ଶାରଳାକୁ ଗତି ମୁକ୍ତି ଦେବା ।
ଇତି ଶ୍ରୀ ବିଷ୍ଣୁପୁରାଣେ ସଭାପର୍ବ ବାଣୀ
ସଂସାର ଜନଙ୍କ ହିତେ ବିରଚିଲି ଆଣି ।
ପଶ୍ଚିମଦିଗ ବରଣ ସମାପତ ଏଥୁ
ସଂସାରକୁ ଦେଖାଇଲି ପ୍ରାଣୀ ମୁକ୍ତି ହେତୁ ।



## ଅର୍ଜ୍ଜୁନଙ୍କର ଦେବଲୋକ ନିମନ୍ତ୍ରଣେ ଗମନ, ଯମଦ୍ୱାରା ପାପ ଓ ତାହାର ପ୍ରାୟଶ୍ଚିତ୍ତ କଥନ, ଦ୍ୱାରକାରେ ନିମନ୍ତ୍ରଣ ଦେଇ ଯୁଧିଷ୍ଠିରଙ୍କ ସହିତ ସାକ୍ଷାତ

ଅଗସ୍ତିଙ୍କୁ ପଚାରିଲେ ବୈବସ୍ୱତ ମନୁ
ଉତ୍ତର ଦିଗ ସାଧିଲାଟିକି ଇନ୍ଦ୍ରସୂନୁ ।

ଆବର କେବଣ କୃତ୍ୟ କଲା ଧନଞ୍ଜୟ
ସେ କଥା ସଂକ୍ଷେପି କହ ମୁନି ମହାଶୟ ।
ବଦନ୍ତି ଅଗସ୍ତି କୁମ୍ଭଋଷିଙ୍କର ବଳା
ଶୁଣ ଯୁଗାନ୍ତ ପୁରୁଷ ମନୁ ମତିଭୋଳା ।
ପାର୍ଥ ଉତ୍ତରେ ଚାଳିଶସହସ୍ର ରାଜା ସାଧି
କମାଗୋଷ୍ଠକୁ ଆପଣା ରଥେ ଅଛି ବାନ୍ଧି ।
ମାତଳି ସାରଥିକି ଯେ ବୋଇଲେ ଅର୍ଜ୍ଜୁନ
ଆକାଶକୁ ରଥ ମୋର ବାହା ହେ ବହନ ।
ଇନ୍ଦ୍ରଙ୍କୁ ମୁଁ ନିମନ୍ତ୍ରଣ ଦେବି ଯାଇ ସ୍ୱର୍ଗେ
ଅମର ସ୍ୱର୍ଗକୁ ମୋର ରଥ ବାହା ବେଗେ ।
ହେମ ପ୍ରଦେଶ ରାଜାଏ ସଙ୍ଗେ ରହିଥିଲେ
ସେମାନଙ୍କୁ ଡାକି ପାର୍ଥ ଆଦେଶ କରିଲେ ।
ତୁମ୍ଭେମାନେ ଚଳିଯାଅ ଇନ୍ଦ୍ରପ୍ରସ୍ଥ ପୁରେ
ମୋ ସୈନ୍ୟଙ୍କୁ ଘେନିଯାଅ ତୁମ୍ଭର ସଙ୍ଗରେ ।
ମୁ ଯାଉଛି ଦେବତାଙ୍କୁ ନିମନ୍ତ୍ରଣ କରି
ତାହା ଶୁଣି ରାଜାମାନେ ପ୍ରଣିପାତ କରି ।
ବୋଇଲେ ଯେ ରାଜାମାନେ କରପତ୍ର ଯୋଡ଼ି
କମାଗୋଷ୍ଠ ଆମ୍ଭ ସଙ୍ଗେ ଦେବ ଛାଡ଼ି ।
ଏହାଙ୍କୁ ଯେ ଆମ୍ଭେମାନେ ସଙ୍ଗେ ଘେନିଯିବୁ
ରାଜସୂୟ ଯଜ୍ଞେ ଦର୍ଶନ ନେଇ କରାଇବୁଁ ।
ପାର୍ଥ ବୋଇଲେ ନ ବୋଲ କିଛି ଏହାପାଇଁ
ଅଭାବ ନୃପତି ଯାକୁ ଟିକେ ଦୟାନାହିଁ ।
ଅବଶ୍ୟ ବନ୍ଧନ କରି ନେବି ମୁଁ ଏଭାକୁ
ସ୍ୱର୍ଗ ମର୍ତ୍ତ୍ୟବାସୀମାନେ ଦେଖିବେ ଏହାକୁ ।
ଅନେକ କଠୋର କରି କହିଲେ ଅର୍ଜ୍ଜୁନ
ପାଷାଣ ରେଖାପ୍ରାୟ ମୋହର ବଚନ ।
ତହୁଁ ରାଜାମାନେ ଗଲେ ଥାଟକୁ ଚଳାଇ
ମାତଳି ସାରଥି ସ୍ୱର୍ଗେ ରଥ ଦେଲା ବାହି ।
ଅନ୍ତରୀକ୍ଷରେ ଦେଖିଲା ଦିନକର ସ୍ୱାମୀ
ତାଙ୍କୁ ଦେଖି ଧନଞ୍ଜୟ ହେଲା ଚରଣାମି ।
ଜୟ ଜୟ ଦିନନାଥ ଆର୍ତ୍ତ ନିବାରଣ
ତୁହି ଛାୟାନାଥ ଦେବ ତିମିର ହରଣ ।
ତୁ ଦେବ ଗଗନ ମଧ୍ୟେ ପ୍ରତ୍ୟେକ୍ଷେ ସ୍ୱରୂପୀ
ସଂଜ୍ଞାର ବଲ୍ଲଭ ନାଥ ତ୍ରିଜଗତ ବ୍ୟାପୀ ।
ସୁଜ୍ଞଜନ ଚିନ୍ତାମଣି ଶୂନ୍ୟରେ ହିଁ ଭ୍ରମୁ
ପ୍ରାତଃ ଆହ୍ନିକ ନାଥ ସବୁ ତୋର ଛାମୁ ।
ଦିବସ ରଜନୀ ଆଦି ସବୁ ତୋହ୍ନ କଲା
ତୋ ବିହୁନେ ଏ ଜଗତ ଅନ୍ଧକାର ଥିଲା ।
ମୋହର ଦେଖନ୍ତେ ନାଥ ନ ସରେ କହନ୍ତେ
ପ୍ରଣାମ କରଇ ପାର୍ଥ ସୂର୍ଯ୍ୟ ପାଦଗତେ ।
ସ୍ୱାମୀ ପ୍ରସନ୍ନରେ ବର ଦେଲେ ପୂର୍ବେ ବିଧି
ଯାଅ ଯା ଅର୍ଜ୍ଜୁନ ତୋର କାର୍ଯ୍ୟ ହେଉ ସିଦ୍ଧି ।
ଅର୍ଜ୍ଜୁନ ବୋଇଲା ଯଜ୍ଞ କରିବା ନିମନ୍ତେ
ସ୍ୱାମୀ ତୁମ୍ଭଙ୍କୁ ବରଣ କରୁଅଛି ଏଥେ ।
ପ୍ରସନ୍ନରେ ବର ଦେଲେ ସ୍ୱାମୀ ଦେବରାଜା
ସର୍ବକାର୍ଯ୍ୟ ସିଦ୍ଧ ହେଉ ଏବେ ତୁହି ଯାଯା ।
ସୂର୍ଯ୍ୟ ସ୍ୱାମୀଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି
ଚଳଇ ଅର୍ଜ୍ଜୁନ ରଥ ତହିଁ ଆଗକରି ।
ଶୂନ୍ୟ ପୁରୁଷମାନଙ୍କୁ କରି ନିମନ୍ତ୍ରଣ
ବିଶ୍ୱେଦେବା ସନାକାଦି କର ତୁ ବରଣ ।
ପିତୃଲୋକ ଧ୍ରୁବଲୋକ ଗ୍ରହଆଦି କରି
ଚନ୍ଦ୍ର ଦେବତାଙ୍କୁ ଚାହିଁ ଭେଟେ ଯାଇକରି ।
ନିମନ୍ତ୍ରଣର ଯୋଗାଡ଼ ଶ୍ରୀଛାମୁରେ ଦେଇ
ଅର୍ଜ୍ଜୁନ ଶୁତିଲା ତହୁଁ ପ୍ରଣିପାତ ହୋଇ ।
ଅନେକ ବିନୟ ଭାବେ ତାଙ୍କୁ କଲା ସ୍ତୁତି
ପ୍ରସନ୍ନେ ସମସ୍ୟା ଦେଲେ ତାଙ୍କୁ ନିଶାପତି ।
ବଦନ୍ତି ଶଶଧର ତୁ ଶୁଣ ଫାଲଗୁନି
ନିମନ୍ତ୍ରଣ କର ଯାଇ ଦେବ ସସ୍ତ୍ରଯୋନି ।
ତୁମ୍ଭେ ଆମ୍ଭର ବଂଶରୁ ହୋଇ ଉତପତ୍ତି
ପୃଥିବୀ ଭାରା ହରଣେ ତୋର ତହିଁ ସ୍ଥିତି ।
ବାବୁ ହେ କୀର୍ତ୍ତି କରିଛ ଥାଇ ମଧ୍ୟସ୍ୱର୍ଗେ
ମୋ ବଂଶରେ ସାଧୁ ସାଧୁ ହେଲେ ପୁଣ୍ୟ ମାର୍ଗେ ।
ଦେବତାଙ୍କୁ ନିମନ୍ତ୍ରଣ କର ଫାଲଗୁନି
ଆମ୍ଭେ ଯାଉଛୁ ସଭାକୁ ଗ୍ରହଗଣ ଘେନି ।
ଶଶଧରକୁ ନିମନ୍ତ୍ରି ବୀର ଧନଞ୍ଜୟ
ଅଳକା ଭୁବନେ ଯାଇ କରିଲା ବିଜୟ ।
କୁବେର ଭୁବନେ ଦେଖେ କାର୍ଯ୍ୟର ଗହଳ
ବିଶ୍ୱକର୍ମା ଲାଗିପଡ଼ି ଗଢ଼ାନ୍ତି ସକଳ ।
ରତ୍ନ ଯୋଗାଡ଼ ନିର୍ମାଣ କରୁଛନ୍ତି ବେଗେ
ପ୍ରବେଶିଲା ସବ୍ୟସାଚି କୁବେରଙ୍କ ଆଗେ ।
ନିମନ୍ତ୍ରଣର ଯୋଗାଡ଼ ଥୋଇ ଫାଲଗୁନି
କୁବେରକୁ କରିଲା ସେ ଅନେକ ଦଇନୀ ।
ଅଳକା ନାଥ ପାର୍ଥକୁ ସ୍ନେହେ କୋଳେ ଧରି
ସର୍ବ ବାରତା ପୁଚ୍ଛନ୍ତି ଆଶ୍ୱାସନା କରି ।
ଅର୍ଜ୍ଜୁନ ବୋଇଲା ସ୍ୱାମୀ ରାଜସୂୟେ ଯିବା
ବୃନ୍ଦାର୍କ ମେଳରେ ଷୋଳ ଦିବସ ରହିବା ।
କୁବେର ବୋଇଲେ ବାବୁ ଦେଖ ଫାଲଗୁନି
ଲାଗିଛି ପଦ୍ମେ ବିନ୍ଧାଣି ଦିବସ ରଜନୀ ।
ଶ୍ରୀଶ୍ରୀ ନାରାୟଣ ଆଜ୍ଞା କରିଛନ୍ତି ମୋତେ
ରତ୍ନ ଘଟଣା ଯାଗରେ ଲାଗିବାକ ଯେତେ ।

ସେହି ସମସ୍ତ ପଦାର୍ଥ କରୁଛି ନିର୍ମାଣ
ଦୃଢ଼ଭାବେ ଆଜ୍ଞା ଯାହା ଦେଲେ ନାରାୟଣ ।
କୁବେର ବଚନ ଶୁଣି ପାଣ୍ଡବ ଅର୍ଜ୍ଜୁନ
ପ୍ରତ୍ୟକ୍ଷେ ଦେଖିଲେ ଯାଇ ସେ ଘଟଣାମାନ ।
ଦେଖି ଫାଲଗୁନି ମନେ ପରମ ସାନନ୍ଦ
ପରମ ସନ୍ତୋଷେ ବୋଲେ ହୋଇ ଗଦଗଦ ।
ତୁ ଦେବ ଜଗମୋହନ ସର୍ବ ଅଧିକାରୀ
ତୋ ପ୍ରସାଦେ ଆମ୍ଭେମାନେ ଉଦେ ବସୁନ୍ଧରୀ
ଯେତେ ପ୍ରତାପୀ ହୋଇଣ ଥିଲେ ରାଜାମାନେ
ସେମାନଙ୍କୁ ଜୟ କଲେ ତୋହର ପ୍ରସନ୍ନେ ।
ତୁ ସିନା ଆମ୍ଭମାନଙ୍କ ସର୍ବଦା ସପକ୍ଷ
ତୋ ପ୍ରସାଦେ ଆମ୍ଭେମାନେ ସର୍ବପୁରେ ଦକ୍ଷ ।
ଅନେକ କାର୍ପଣ୍ୟ ହୋଇ ବୀର ଫାଲଗୁନି
ଜଗନ୍ନାଥ ନାମେ ଧରି କରଇ ଦଇନୀ ।
କୁବେରକୁ ନିମନ୍ତ୍ରିଣ ସୁଭଦ୍ରାର ନାହା
ମାତଳିକି ଆଜ୍ଞାକଲା ରଥ ମୋର ବାହା ।
ଚଳିଗଲେ ତୁରଙ୍ଗମ ପବନୁ ତୁରିତ
ଅମର ଭୁବନେ ବିଜେ ବାସବର ସୁତ ।
ଆକାଶେ ଦେବ ସଭାରେ ବିଜେ ସହସ୍ରାକ୍ଷ
ଆସ୍ଥାନ ତଳରେ ଉଭା ହୋଇଲା ବିବସ୍ୱ ।
ଦେଖି ସାନନ୍ଦ ହୋଇଲେ ଅମରାଧି ସ୍ୱାମୀ
ପୁଣି ପୁଣି ଅର୍ଜ୍ଜୁନ ସେ ହୁଏ ପରଣାମି ।
ଅନେକ ହରଷ ହୋଇ ଦେବ ଆଖଣ୍ଡଳ
ଅର୍ଜ୍ଜୁନଙ୍କୁ ଘେନିଯାଇ ବସାଇଲେ କୋଳ ।
ଅନେକ ଯେ ଆଭରଣ କରି ବୀର ପାର୍ଥେ
ପଚାରଇ ସୁରନାଥ ବହୁ ପୁରୁଷାର୍ଥେ ।
ରମ୍ଭା ଉର୍ବଶୀ ମେନକା ପୁଣି ଚିତ୍ରଲେଖା
କାମସେଣା ମଦନିକା ଆବର ଅମ୍ବିକା ।
ଏହାଙ୍କ ତୁଲେ ଚୌଷଠି ବିଦ୍ୟାଧର ନାରୀ
ଖଟନ୍ତି ଅତି ହରଷେ ସେ ସର୍ବେ ସୁନ୍ଦରୀ ।
ତାଳ ଲୟେ ପହପଟ ରାଗିଣୀ ରଚନ୍ତି
ମୋହିନୀ ବେଶେ ତାଣ୍ଡବ ନୃତ୍ୟରେ ଖଟନ୍ତି ।
ବାସବ କୋଳେ ବିଜୟ କରିଛି ଅର୍ଜ୍ଜୁନ
ପୁତ୍ରକୁ ଦେଖି ଆନନ୍ଦ କରୁଥାନ୍ତି ମନ ।
ନୃତ୍ୟଅନ୍ତେ ଷଡ଼ରସେ ଭୋଜନ କରାଇ
ଅର୍ଜ୍ଜୁନକୁ ତୃପ୍ତ କଲେ ତହିଁ ସୁରସାଇଁ ।
ସୁବର୍ଣ୍ଣର ଥାଳିରେ ଯେ ଅର୍ଘ୍ୟମାନ ଘେନି
ଅର୍ଜ୍ଜୁନକୁ ବନ୍ଦାପନା କଲେ ସସ୍ରଯୋନି ।
ଅର୍ଘ୍ୟ ଘେନି ବନ୍ଦାଇଲେ ସେ ବରବନିତା
ବୋଇଲେ ପାର୍ଥ ଧନ୍ୟ ତୋ ଗର୍ଭଧାରୀ ମାତା
ଏହି ପରଲୋକର ଯେ ଅଟେ ଶିରୋମଣି
କୋଳେ ବସାଇଲେ ଆଣି ଦ୍ୱିତୀଇନ୍ଦ୍ର ଜାଣି ।
ଧନ୍ୟ ଧନ୍ୟ ତୁହି ତୋର ଜୀବନହିଁ ସାଧୁ
ସହସ୍ର ପଦରେ ଲକ୍ଷ୍ମୀ ନ ଛାଡ଼ିବେ କନ୍ଧୁ ।
ବହୁତ ପ୍ରଶଂସା କଲେ ସ୍ୱର୍ଗର ଯୁବତୀ
ଯେତେ ଦେଖନ୍ତି ପାର୍ଥଙ୍କୁ ନୁହନ୍ତି ଅତୃପ୍ତି ।
ବିଚାରିଲେ ଶିବ କାଲେ କନ୍ଦର୍ପ ଦହନ
ସ୍ୱରୂପ ହୋଇ ଏ କାହୁଁ ହେଲେ ଉତପନ୍ନ ।
ଦିବାରାତ୍ର ରହି ତୋତେ ଦେଖିବାକୁ ଇଚ୍ଛା
ଆମ୍ଭମାନଙ୍କ ବଲ୍ଲଭ ହୁଅ ପୁରୁବାଞ୍ଛା ।
ପୁନଃ ପୁନଃ ଏହିପରି କଥାମାନ ବୋଲି
ବିରହ ଅସାଷ୍ଟମରେ ନ ପାରିଲେ ଚାଲି ।
କଷ୍ଟେ କଷ୍ଟେ ଚାଲିଗଲେ ଆପଣାର ବାସେ
ଅନୁବ୍ରତେ ଭାଳିଲେ ସେ ରଜନୀ ଦିବସେ ।
ଅର୍ଜ୍ଜୁନ ଚାହିଁ ବୋଲନ୍ତି ଦେବ ସୁରନାଥେ
ବାବୁ ରେ ପାର୍ଥ ଅଇଲୁ ତୁ କେବଣ ଅର୍ଥେ ।
ଶୁଣି ଅର୍ଜ୍ଜୁନ ବୋଇଲେ ବେନିକର ଯୋଡ଼ି
ରାଜସୂୟ ଯାଗ ନିମନ୍ତେ ଆସେ ପ୍ରଭୁ ଲୋଡ଼ି ।
ଉତ୍ତର ଦିଗର ରାଜା କରି ନିମନ୍ତ୍ରଣ
ବିଦ୍ୟାଧର ଘେନି ବିଜେ କରିବେ ଆପଣ ।
ଇନ୍ଦ୍ର ବୋଇଲେ ତୁ ଶୁଣ ଆରେ ଧନଞ୍ଜୟ
ମୋତେ ଆଜ୍ଞା କରିଛନ୍ତି ପ୍ରଭୁ ଦେବରାୟ ।
ନନ୍ଦନ ବନରେ ଅଛି ଯେତେ ପକ୍ୱଫଳ
ନାବରେ ନେଇଣ ଦେବୁ ଇନ୍ଦ୍ରପ୍ରସ୍ଥ ସ୍ଥଳ ।
ବାବୁ ନାବ ପୂର୍ଣ୍ଣକଲି ମୁଁ ପଞ୍ଚାଶ ଖର୍ବ
କଦଳୀ କଣ୍ଟକୀ ଆମ୍ର ନଡ଼ିକାଳ ସର୍ବ ।
ଚାରିମାସ ହେଲା ବୋହି ନେଉଛୁ ହସ୍ତିନା
ଆମ୍ଭେ ସେ ଯାଗ ଭୃତ୍ୟର ଭୃତ୍ୟ ଅଟୁ ସିନା ।
ଅକ୍ଷତ ନିମନ୍ତ୍ରଣ ଯୋ ଦେଲେ ସବ୍ୟସାଚି
କୁଟୁମ୍ବ ସର୍ବ ଘେନିବ ଯେ ଯେଉଁଠି ଅଛି ।
ସ୍ୱାମୀ ଏବେ ଯିବି ମୁହିଁ ବ୍ରହ୍ମା ଭୁବନକୁ
ନିମନ୍ତ୍ରଣ କରିବି ମୁଁ ଯେ ପିତାମହଙ୍କୁ ।
ଶୁଣି ସନ୍ତୋଷ ହୋଇଲେ ଦେବ ମଘବାନ
ପ୍ରସନ୍ନ ହୋଇଣ ଦେଲେ ପୁଷ୍ପକ ବିମାନ ।
ଏଥେ ବସି ଯେ ଭୁବନେ କରିବୁ ତୁ ଇଚ୍ଛା
ସେହିକ୍ଷଣି ଭେଟିବୁ ତୁ ଯହିଁକି ତୋ ବାଞ୍ଛା ।
ସୁରନାଥଙ୍କ ବଚନ ଶୁଣି ସବ୍ୟସାଚି
ବିମାନରେ ବସି ଯଶୋବନ୍ତୀ ପୁର ଇଚ୍ଛି ।
ଅର୍ଜ୍ଜୁନ ଆଜ୍ଞାଦେଲାକ ତହିଁ ମାତଳିକି
ଜମାଗୋଷ୍ଠକୁ ମୋ ରଥେ ଥାଅ ତୁମ୍ଭେ ରଖି ।

ଏହା କହି ଚିନ୍ତିଲାକ ବିମାନରେ ବସି
ବ୍ରହ୍ମାଙ୍କର ପୁରେ ପାର୍ଥ ବିଜେ କଲା ଆସି ।
ଅର୍ଜୁନକୁ ଦେଖି ପୁର ରକ୍ଷାକାର ସର୍ବେ
କୋପଭରେ ଓଗାଳିଲେ ସକଳ ଗନ୍ଧର୍ବେ ।
ବୋଇଲେ କିରେ ମାନବ ଦିଗପାଳ ନୋହି
ବ୍ରହ୍ମାପୁରେ ପଶୁଅଛି କି ସାହସୀ ହୋଇ ।
ପାର୍ଥ ବୋଇଲେ ବାସବ ସୁତ ମୁଁ ଅର୍ଜୁନ
ତୁମ୍ଭେମାନେ ବିଦ୍ୟାଧର ମୋତେ କି ନ ଚିହ୍ନ ।
ପିତାଙ୍କୁ ମୁଁ ନିମନ୍ତ୍ରିବି ରାଜସୂୟ ଅର୍ଥେ
ମୋତେ ପେଷିଲେ ଯୁଧିଷ୍ଠିରଦେବ ମହୀପତେ ।
ତାହା ଶୁଣି ବୋଇଲେକ କ୍ଷଣେକ ବିଶ୍ରାମ
ଜଣାଇନେବୁ ସାର୍ଥକ ହେବ ତୋର ଧର୍ମ ।
ଏମନ୍ତ କାଳରେ ତହିଁ ବଶିଷ୍ଠ ମହର୍ଷି
ଧନଞ୍ଜୟର ନିକଟେ ମିଳିଗଲେ ଆସି ।
ପାର୍ଥ ନମସ୍କାର କଲା ବଶିଷ୍ଠଙ୍କୁ ଦେଖି
ବଶିଷ୍ଠ ଚକିତ ହେଲେ ଅର୍ଜୁନେ ନିରେଖି ।
ଅର୍ଜୁନକୁ ଘେନିଯାଇ ବଶିଷ୍ଠ ମହର୍ଷି
ପ୍ରଣିପାତ କରାଇଲେ ବ୍ରହ୍ମାପାଦେ ଆସି ।
ଅର୍ଜୁନକୁ ଦେଖି ଧାତା କିଞ୍ଚିତରେ ହସି
ମଉନ ଭାବେ ରହିଲେ କିଛିହିଁ ନ ଭାଷି ।
ଅର୍ଜୁନ ଶତସହସ୍ର ପ୍ରଣିପାତ ହୋଇ
ମସ୍ତକେ କର ନିବେଶି ସ୍ତୁତି ସେ କରଇ ।
ଦେବ ଦେବ ପିତାମହ ଜଗତର ପିତା
ଦେବ ଦେବ ପିତାମହ ତୁ ସକଳ କର୍ତ୍ତା ।
ଦେବ ଦେବ ପିତାମହ ସକଳ ଘଟକ
ଦେବଦେବ ପିତାମହ ସମସ୍ତ ଜନକ ।
ଦେବଦେବ ପିତାମହ ଅଚେତରୁ ଜାତ
ଦେବଦେବ ପିତାମହ ପ୍ରଳୟେ ତୁ ସ୍ଥିତ ।
ଦେବ ଦେବ ପିତାମହ ନମୋ ପଦ୍ମଯୋନି
ଦେବଦେବ ପିତାମହ ଭୁବନ ନିର୍ମାଣି ।
ଦେବଦେବ ପିତାମହ ଶୁଦ୍ଧ ତୁ ଦେବତା
ଦେବଦେବ ପିତାମହ ତୁହି ସର୍ବ ଜ୍ଞାତା ।
ଦେବଦେବ ପିତାମହ ଚତୁର ଆନନ
ଦେବଦେବ ପିତାମହ ହଂସ ତୋ ବାହନ ।
ଦେବଦେବ ପିତାମହ ବାପୀ ଯଶୋବନ୍ତୀ
ଦେବଦେବ ପିତାମହ ଅଟୁ ତୁ ଦହତି ।
ଦେବଦେବ ପିତାମହ ଧାତୁ ବାନ୍ଧ୍ୟବନ୍ଧୁ
ଦେବଦେବ ପିତାମହ ତାରୁ ଭବସିନ୍ଧୁ ।
ଦେବଦେବ ପିତାମହ ତୁ ଅନଙ୍ଗ ଭଞ୍ଜା
ଦେବଦେବ ପିତାମହ ବ୍ରହ୍ମଦୈତ୍ୟ ଗଞ୍ଜା ।
ଦେବଦେବ ପିତାମହ ଚାରିଭୁଜ ମେରୁ
ଦେବଦେବ ପିତାମହ ଦକ୍ଷେ ବେଦ ଧରୁ ।
ଦେବଦେବ ପିତାମହ ଶୂନ୍ୟେ ତୋ ଆସନ
ଦେବଦେବ ପିତାମହ ଜାତ ଅବସାନ ।
ଦେବଦେବ ପିତାମହ ବୋଧ ବ୍ରହ୍ମଜ୍ଞାନ
ଚତୁର୍ମୁଖେ ସଦା ମଗ୍ନ ବେଦ ଅଧ୍ୟୟନ ।
ଦେବଦେବ ପିତାମହ ତୋ ଦେହ ଅକାମ
ଦେବଦେବ ପିତାମହ ପିତା ତୋର ନାମ ।
ଦେବଦେବ ପିତାମହ ପ୍ରଭୁ ପଦ୍ମଯୋନି
ସେ ପାଦେ ସେବା ଶାରଳା ଦାସ ଶୁଦ୍ରମୁନି ।
ଅନେକ ପ୍ରାର୍ଥନାକରି ବୀର ଫାଲଗୁନି
ପୁଣ ପୁଣ ପାଦେ ପଡ଼ି କରିଲେ ଦଇନୀ ।
ଅର୍ଜୁନର ସ୍ତୁତିବାକ୍ୟ ଶୁଣି ବେଦବର
ବୋଲନ୍ତି କାମନା ତୋର ପୂର୍ଣ୍ଣହେଉ ବୀର ।
ଏ ମୋହର ଜୀବନରେ କଲୁ ଯେଉଁ କୃତ୍ୟ
ନର ହୋଇ ଚାରିଯୁଗେ ଅଛି କେ ଏମନ୍ତ ।
ଜଗତ ମୋହନ ନାଥ ଯାହାକୁ ସପକ୍ଷ
ମାୟାରେ ଭିଆଇଛନ୍ତି ସକଳ ଶ୍ରୀବତ୍ସ ।
ଆନନ୍ଦ ହୋଇ କହନ୍ତି ଦେବ ପଦ୍ମଯୋନି
ମଝେ ଜନ୍ମିବାର ତୋର ସାଧୁ ଫାଲଗୁନି ।
ଚଳ ପାର୍ଥ ଆକାଶରେ ଅନ୍ୟ ନିମନ୍ତ୍ରଣେ
ଆମ୍ଭେ ଯାଉଅଛୁ ଏବେ ବୃନ୍ଦାର୍କ ଗହଣେ ।
ତହୁଁ ଛାମୁରେ ପାଦାର୍ଘ୍ୟଦେଇ ଧନଞ୍ଜୟେ
ପୁଣି ପୁଣି ଶତ ଶତ ପ୍ରଣିପାତ ହୁଏ ।
ଉଠ ଉଠ ବୋଲି ଧାତା ବୋଇଲେ ତଡତି
ତହୁଁ ପାର୍ଥ ନିମନ୍ତ୍ରିଲେ ତହିଁ ସର୍ବ ଯତି ।
ବଶିଷ୍ଠ ବାମଦେବ ଯେ ପୌଲସ୍ତ୍ୟ ଅଗସ୍ତି
ବାଲମୀକ ମାରକଣ୍ଡ ଦୁର୍ବାସାଦି ଯତି ।
ସମସ୍ତଙ୍କୁ ନିମନ୍ତ୍ରଣ କଲା ପିତା ଅର୍ଥେ
ବୋଲେ ଯାଗେ ଯିବ ବାଲଖିଲ୍ୟାଙ୍କ ସହିତେ ।
ସମସ୍ତେ ସମ୍ମତ ହେଲେ ପାର୍ଥକଥା ଶୁଣି
ବ୍ରହ୍ମାଙ୍କ ସଦନୁ ଫେରେ ତହୁଁ ସେହିକ୍ଷଣି ।
ବାହୁଡ଼ି ଆସଇ ପୁଣି ବାସବ ଭବନ
ତାହାଙ୍କୁ ଦେଖି ମଘବା ହେଲେ ତୋଷମନ ।
ପିତାମହ ବୋଇଲେ ଯେ ନାରଦ ହକାରି
ଅର୍ଜୁନ ଆସେ ଆକାଶେ ଦିଗବିଜେ କରି ।
ତେତିଶକୋଟି ଦେବତାମାନଙ୍କ ବରଣେ
ସଂଯମନୀ ପୁରକୁ ଯେ ଯିବ ଏହିକ୍ଷଣେ ।
ପଣ୍ଡୁର ଅବସ୍ଥା ଦେଖି ବୀର ଧନଞ୍ଜୟ
ପିତା କଷ୍ଟରେ ଯମକୁ ଦଣ୍ଡିବ ନିଶ୍ଚୟ ।

ଏହି ତ୍ରୈଲୋକ୍ୟ ମଧ୍ୟରେ ପାର୍ଥ ମହାଯୋଧି
ସେହି କୋପକଲେ କେହି ନ ପାରିବେ ରୋଧି
ତୁ ହେ ନାରଦ ଯମକୁ କହ ଯାଇ ବେଗ
ପଣ୍ଡୁକୁ ଆସ୍ଥାନେ ନେଇ କରିଣ ସରାଗ ।
ବହୁ ଉପହାର ନାନା ଅଳଙ୍କାର ଦେଇ
ପଣ୍ଡୁ ରାଜାର ଛାମୁରେ ଥାଇ ଉଭା ହୋଇ ।
ପିତା ପୌରୁଷେ ଯମକୁ ବରିବ ସେ ସ୍ନେହ
ଏମନ୍ତ ଚରିତ ଯାଇ ଯମ ଆଗେ କହ ।
ପିତାର ବଚନ ଶୁଣି ଚଳେ ତପୋନିଷ୍ଠି
ସଂଯମନୀ ପୁରେ ଯମ ସହିତରେ ଭେଟି ।
ବ୍ରହ୍ମାଙ୍କ ବାର୍ତ୍ତା ସକଳ କହେ ତା ଆଗରେ
ଶୁଣିକରି ନାଶକର ଆସଇ ବେଗରେ ।
ପଣ୍ଡୁରାଜାଙ୍କୁ କରିଲା ପ୍ରଶଂସା ବହୁତ
ବୋଲେ ଧର୍ମେ ପାଞ୍ଚପୁତ୍ର କରିଥିଲୁ ଜାତ ।
ରାଜସୂୟ ଯଜ୍ଞ ଆରମ୍ଭ କରିଲେ ଯୁଧିଷ୍ଠି
ଖଣ୍ଡିଲୁ ତୁ ବ୍ରହ୍ମହତ୍ୟା ମେଣ୍ଟିଲା ଅରିଷ୍ଟି ।
ତୋର ମାତାପିତା ଧନ୍ୟ ଧନ୍ୟ ତୋ ଜୀବନ
ଶୁଭ ଅନୁକୂଳେ ଜାତ କରିଲୁ ସନ୍ତାନ ।
ନ ଜାଣି ଅକାଳେ ସ୍ତିରୀସଙ୍ଗେ ହୋନ୍ତି ରତ
ନିଜକୁ ଅନୀତି ପୁଣି ବଂଶ ହୁଏ ହତ ।
ନ ଜାଣି ମତ୍ତଗର୍ବରେ ବୋଇଥାନ୍ତି ବଣା
ଆପଣାର କଲା କର୍ମ ଯମକୁ ବୋଲଣା ।
ସୁଖରେ ତୁ ପୁତ୍ର ଜାତ କରାଇଲୁ ପଣ୍ଡୁ
ଧର୍ମ ବୁଦ୍ଧିବଳେ ରାୟେ ତୋ ଦୁଷ୍କୃତ ଖଣ୍ଡୁ ।
ଏହିରୂପେ ବନ୍ଦନା କରି ନାଶକର
ପଣ୍ଡୁକୁ ବସାଏ ନେଇ କଣୟ ସଭାର ।
ଉପରେ ମଣ୍ଡିଲା ବାରସ୍ୱତୀ ପୁର ଜିଣି
ନେତ୍ର ଚନ୍ଦ୍ରାତପେ ଝୁଲେ ନାନା ଶୁଦ୍ଧ ମଣି ।
ଛାମୁରେ ନୃତ୍ୟ ଗୀତାଦି କରନ୍ତି ବନିତା
ଖଟନ୍ତି ଯେ ବିଳାସିନୀ ତାଣ୍ଡବ ସଙ୍ଗୀତା ।
ଏମନ୍ତ କାଳରେ ବୀରବର ଫାଲଗୁନି
ଇନ୍ଦ୍ରଦେବତା ଚରଣେ କରଇ ଦଇନୀ ।
ଭୋ ପିତା ଯିବଇଁ ମୁହିଁ ସଂଯମନୀ ପୁରେ
ପିତାଙ୍କୁ ଦେଖିବି ପିତୃଲୋକଙ୍କ ସଙ୍ଗରେ ।
ତାହା ଶୁଣି ସହସ୍ରାକ୍ଷ ବସାଇ ବୋଇଲେ
ଯମକୁ କୋପ ନୋହିବୁ ତୁହି ତିଳେ ହେଲେ ।
ପଣ୍ଡୁ ବ୍ରହ୍ମହତ୍ୟା ଦୋଷୀ ତାକୁ ଅଛି ଦଣ୍ଡ
ପାପୀଲୋକଙ୍କର ଧ୍ୱଂସ କରଇ ସେ ପିଣ୍ଡ ।
ବାବୁ ଜାତ କରେ ବ୍ରହ୍ମା ନାଶକରେ ଯମ
ଏ ବିଧିରେ ଦୁଇଦେବ ଜାଣ ଯମ ଧର୍ମ ।
ପୁଣ୍ୟବନ୍ତକୁ ବହୁତ ବାଗରେ ମଣ୍ଡଇ
ପାପୀ ଲୋକକୁ ଅନେକ ପ୍ରକାରେ ଦଣ୍ଡଇ ।
ଆପଣା ଅର୍ଜିଲା କର୍ମ ବିଚାରେ ସେ ସବୁ
ନ ପୁଣ ଯମକୁ କୋପ କରିବୁ ତୁ ବାବୁ ।
ଅନେକ ବାଗେ ତିଆରି ତାକୁ ମଘବାନ
ପଠାଇଲା ନନ୍ଦିଘୋଷ ଚଢ଼ିଲା ଅର୍ଜ୍ଜୁନ ।
ମାତଳିକି ଆଜ୍ଞାଦେଲେ ସୁଭଦ୍ରାର ନାହା
ସଂଯମନୀପୁରେ ଏବେ ମୋ ରଥକୁ ବାହା ।
ବାସବିର ଆଜ୍ଞାକ୍ରମେ ମାତଳି ସାରଥି
ଅମର ସ୍ୱର୍ଗରୁ ରଥ ବାହେ ତତ୍କ୍ଷଣାନ୍ତି ।
ବିଜେ ଫାଲଗୁନି ନାଶକରର ଭୁବନେ
ଦେଖିକରି ତରିଗଲେ ବହୁ ପାପୀମାନେ ।
ନିଜକର୍ମେ ତରିଯାନ୍ତି ପାର୍ଥ ଦରଶନେ
ଅର୍ଜ୍ଜୁନକୁ ନାଶକରେ ବସାଏ ଆସ୍ଥାନେ ।
ଦ୍ୱିତୀକୃଷ୍ଣ ଯମାଳୟେ କରିଲେ ବିଜୟେ
ଦେଖିକରି ନାଶକର କୃତ୍ୟ କୃତ୍ୟ ହୁଏ ।
ଆପଣା ହସ୍ତରେ ଅର୍ଘ୍ୟ ଘେନି ଯମରାଜା
ଅର୍ଜ୍ଜୁନର ପାଦପଦ୍ମେ ଦେଇ କଲା ପୂଜା ।
ଦ୍ୱିତୀକୃଷ୍ଣ ପ୍ରତ୍ୟକ୍ଷରେ ଅଟେ ଅବତାର
ତବ ପ୍ରସାଦେ ଖଣ୍ଡିଲି ଦୁର୍ଗତି ମୋହର ।
କେଉଁ ଅନୁଗ୍ରହେ ନାଥ ଏଠାରେ ପ୍ରବେଶ
ପୃଥ୍ୱୀଭାର ଉଦ୍ଧାରନ୍ତା କରନ୍ତା ଉଶ୍ୱାସ ।
କେଉଁ କାର୍ଯ୍ୟେ ଆଗମନ କେଉଁ ଅନୁଗ୍ରହ
ସୋମବଂଶର ମଣ୍ଡନ ନାଥ ମୋତେ କୁହ ।
ଅର୍ଜ୍ଜୁନ ବୋଇଲେ ଶୁଣ ଶମନ ଦେବତା
ରାଜସୂୟଯଜ୍ଞ ପିତାଙ୍କ କାର୍ଯ୍ୟହିଁ ସର୍ବଥା ।
ମଞ୍ଚପୁର ପ୍ରାଣୀଙ୍କର ତୁହି ଅଟୁ ମୂଳ
ତୋହର ଦୟା ଭାବରେ ବସନ୍ତି ସକଳ ।
ମୋର ପିତା ପଣ୍ଡୁଦେବ ଛନ୍ତି କେଉଁଠାବେ
ଦେଖିବି ପିତାଙ୍କୁ ମୋର ତୋ ପ୍ରସାଦେ ଏବେ
ଶୁଣି ନାଶକର ବୋଲେ ଶୁଣ ସବ୍ୟସାଚୀ
ଦେଖ ତୋ ପିତା ଯେସବଣ ଠାବେ ରହିଅଛି ।
ଆଗେ ଆଗେ କୃତାନ୍ତକ ପଛେ ପଛେ ଫାଲଗୁନି
ଦିବ୍ୟସିଂହାସନକୁ ଯେ ଗଲା ତାକୁ ଘେନି ।
ବିଜେ ରାଜନ ଅଭାଗନାଥ ସୋମବଂଶୀ
କଣୟ ସିଂହାସନରେ ପଣ୍ଡୁଛନ୍ତି ବସି ।
ଅନେକ ଅଳଙ୍କାରରେ ଶରୀର ଭୂଷିତ
ଦେଖଇ ଫାଲଗୁନି ମନେ ହେଲା ଆନନ୍ଦିତ ।
ଶ୍ରୀକରରେ ଅର୍ଘ୍ୟଥାଳି ଘେନିଣ ଅର୍ଜ୍ଜୁନ
ପଣ୍ଡୁ ପାଦତଳେ ଥୋଇ କରିଲା ବନ୍ଦନ ।

ଅର୍ଜୁନକୁ ଦେଖିକରି ତୋଷ ମହାରାଜା
ବୋଇଲେ ତୋର ପ୍ରସାଦେ ସର୍ବଦା ମୋ ପୂଜା
କାଳାନ୍ତକ ଭୁବନ ଏ ପିଶାଚର ପୁରୀ
ଏ ପୁରରେ ପୂଜା ମୋତେ ତୋ ପ୍ରସାଦେ କରି
କରପତ୍ର ଯୋଡ଼ିକରି ଅର୍ଜୁନ ବୋଇଲେ
ଦିନେ ନାରଦ ଆମ୍ଭର ପୁରେ ଯାଇଥିଲେ ।
ଯୁଧିଷ୍ଠି ପୁଛିଲେ କାହିଁଥିଲ ବ୍ରହ୍ମଚାରୀ
ନାରଦ ବୋଇଲେ ଥିଲୁ ସଂଯମନୀ ପୁରୀ ।
ପୁଣିହିଁ ପୁଛିଲେ ପିତା ପଣ୍ଡୁ ନରପତି
ଯମର ସଭା ମଧ୍ୟରେ ଦେଖିଲ କି ଯତି ।
ସେ ବୋଇଲେ ଦେଖୁ ସଭା ତ୍ରିପାବଚ୍ଛ ତଳେ
ହେଠମାଥ ଉଭା ହାତ ରଖି କୁର୍ଣ୍ଣିଛନ୍ତି ।
ବସ ବୋଲିକରି ତାଙ୍କୁ ନ ବୋଇଲା ଯମ
ଯୁଧିଷ୍ଠି ବୋଇଲେ ପିତା କି କଲେ ଅଧର୍ମ ।
ନାରଦ ବୋଇଲେ ତହୁଁ ପୁଛିଲି ପଣ୍ଡୁଙ୍କୁ
କେଉଁଦୋଷେ ଯମ ଶାସ୍ତି ଦେଉଛି ତୁମ୍ଭଙ୍କୁ ।
ଯୁଧିଷ୍ଠି ଅଗ୍ରତେ ତହିଁ କହିଲେ ନାରଦେ
ତୋର ପିତା ବ୍ରହ୍ମହତ୍ୟା କରିଥିବା ହାଦେ ।
ଏତେ ବୋଲିଣ ନାରଦ ହେଲେ ତିରୋଭାବ
ଶୁଣି ଉପହାସ କଲେ ସକଳ କୌରବ ।
ପଣ୍ଡୁ ବୋଇଲେ ନାରଦ ଦେଖିନାହିଁ ମୋତେ
ଗୁରୁପୁତ୍ର ପାଇଁ ହରି ଆସିଥିଲେ ଏଥେ ।
ଗୁରୁପୁତ୍ର ଘେନି ହରି ବାହୁଡ଼ିବା ବେଳେ
ମୋତେ ରଖିଥିଲେ ଯମ ତ୍ରିପାବଚ୍ଛ ତଳେ ।
ତହୁଁ ଯମକୁ ପୁଛିଲେ ବୀର ଧନଞ୍ଜୟ
ପିତା କେବଣ ପାତକେ କଲ ଏହି ପ୍ରାୟ ।
ତବ ମୁଖରୁ ଶୁଣିବି ଏହାର ସିଦ୍ଧାନ୍ତ
ବିନୟ ଭାବରେ ତହୁଁ ବୋଲନ୍ତି କୃତାନ୍ତ ।
ସ୍ୱାମୀ ବ୍ରହ୍ମହତ୍ୟା ଦୋଷ ଅଟେ ମହାପାପ
ଡରେ ସ୍ୱାମୀ ନ ବିହିଲି ତାହା ଅନୁରୂପ ।
ତୁମ୍ଭେ ରାଜସିଯଜ୍ଞକୁ ଆରମ୍ଭିଲ ଯହୁଁ
ହତ୍ୟାଦୋଷ କ୍ଷମାକରି ବସାଇଲି ତହୁଁ ।
ସ୍ୱାମୀ ତୁମ୍ଭର ଆଗରେ କହିଲି ସିଦ୍ଧାନ୍ତ
ରଖିଲେ ରଖ ମାରିଲେ ମାର ଆହେ ପାର୍ଥ ।
ଅର୍ଜୁନ ବୋଇଲେ ଏହୁ ପୂର୍ବର ପ୍ରସ୍ତାବ
ତୋହର କଥାକୁ କିଏ ଅନ୍ୟଥା କରିବ ।
ଯମ ବୋଇଲେ ହେ ଦେବ ବ୍ରହ୍ମହତ୍ୟା କଲେ
ସେହି ଦୋଷ ନାଶ ହୁଏ ଅନ୍ନଦାନ ଦେଲେ ।
କେହି ନର ଗୋରୁହତ୍ୟା ଯଦ୍ୟପି କରଇ
କୋଟିତୀର୍ଥ କଲେ ତେବେ ସେ ଦୋଷ ନାଶଇ ।
କେହି ନର ପରସ୍ତିରୀ ହରଣ କରିଲେ
ସେହି ଦୋଷ ନାଶହୁଏ ତ୍ରିପୁରା ପୂଜିଲେ ।
କେହି ଅଧମ ଯଦ୍ୟପି ଗୁରୁପତ୍ନୀ ହରେ
ସେ ପାପ ଖଣ୍ଡଇ ବ୍ରହ୍ମଜ୍ଞାନ ସାଧନରେ ।
ମାତୃହତ୍ୟା ଗୋରୁହତ୍ୟା ବୃଷଳୀ ଗମନ
ରଣଯଜ୍ଞ କରି ମଲେ ହୁଅଇ ଖଣ୍ଡନ ।
ଯମଦେବତା କହିଲେ ଅର୍ଜୁନର ଆଗେ
ପଞ୍ଚ ମହାପାପ ଖଣ୍ଡେ ମଲେ ରଣଯାଗେ ।
ଯମ ବୋଲେ ପରସ୍ତିରୀ ହରଣର ଦୋଷ
ଷଣ୍ଢ ଧେନୁ ଦାନ ଦେଲେ ପାପ ହୁଏ ନାଶ ।
ପରଦ୍ରବ୍ୟ ଦେଖିକରି ଯେହୁ କରେ ଚୋରି
ସଦାଶିବ ସେବାକଲେ ପାପୁଁ ଯାଏ ତରି ।
ଯେଉଁଜନ ପରଧନ ହରିନିଏ ବଳେ
ପୁଷ୍କରିଣୀ ଖୋଳାଇଲେ ପାପୁଁ ତରି ଭଲେ ।
ଯମ ବୋଇଲେ ଅଦୋଷେ ଯେହୁ ଛେଦକାରୀ
ବିପୁଳ ଗୃହଦାନରେ ପାପୁଁ ଯାଏ ତରି ।
ରହେ କୌନ୍ତେୟ ବିଶ୍ୱାସଘାତକର ଦୋଷ
କେବେହେଁ ସେ ନ ଟଳଇ ନର୍କେ ତାର ବାସ ।
ଯେ ପ୍ରାଣୀ ବ୍ରହ୍ମସ୍ୱ ହରେ ହୋଇଣ ବିଶ୍ୱାସୀ
ଗୋଦାନ ମଣିକର୍ଣ୍ଣିକା କିବା ବାରାଣସୀ ।
ଆବର ଯେହୁ ହରଇ ବିଧବା ବ୍ରାହ୍ମଣୀ
ଚିରକାଳ ପଡ଼ିଥାଏ ନର୍କେ ସେହୁ ପ୍ରାଣୀ ।
ସଭାରେ ବସି ଯେ ଜନ କହିଥାଏ ମିଥ୍ୟା
ସେ ଦୋଷ ହରେ ସାଗରେ ବୁଡ଼ାଇଲେ ମଥା
ଆବର ଯେହୁ ହରଇ ଗୋଚରର ଭୂଇଁ
ସେ ଦୋଷୁ ତରଇ ଲକ୍ଷେମାଢ଼ ସୁନାଦେଇ ।
ପିତାମାତାଙ୍କୁ ଯେ ପୁତ୍ର ନ ଦିଅଇ ଅନ୍ନ
ପ୍ରୟାଗରେ ଝାସ ଦେଲେ ଖଣ୍ଡେ ଦୋଷମାନ ।
ଯେହୁ ନିୟମ କରଇ ଯାଇ ଶିବଆଳେ
ପୁନଃ ପୁନଃ ଜାତହୁଏ ଅଛବଟ କୂଳେ ।
ନାଶକର ବୋଲେ ଦେବ ବ୍ରହ୍ମହତ୍ୟା ଦୋଷ
କହିଲେ ତା ସରିବ କି କେ କରିବ ଶେଷ ।
ଯମ ବୋଇଲାକ ଦେବ ଶୁଣିବା ହେ ପାର୍ଥେ
ଅପାର ପାତକ ଦେବ ନ ସରେ କହନ୍ତେ ।
ପାତକ ଖଣ୍ଡଇ ଦେବ ପ୍ରାୟଶ୍ଚିତ୍ତ କଲେ
ନାନା ପାପ ଖଣ୍ଡେ ବିଷ୍ଣୁ ପୁରାଣ ଶୁଣିଲେ ।
ମନକର୍ଣ୍ଣ ନିବେଶି ଯେ ଶୁଣେ ବିଷ୍ଣୁ ରସ
ସକଳ ପାପ ଖଣ୍ଡଇ ଦୋଷ ହୁଏ ଧ୍ୱଂସ ।
ସ୍ୱାମୀ ଜ୍ଞାନେ ଅଜ୍ଞାନେ ଯେ ମହାପାପ କରେ
ମହାଭାରତ ଶୁଣିଲେ ସେହି ପାପହରେ ।

ସମସ୍ତ ଦୋଷ ହରଣେ ନାରାୟଣ ମୂଳ
ଶ୍ରୀମହାଭାରତ ଶୁଣ ଯେହୁ ପୁଣ୍ୟଜଳ ।
ଧର୍ମ ଅର୍ଥ କାମ ମୋକ୍ଷ ଏଥେ ଅଛି ସବୁ
ଏହି ପୁଣ୍ୟ କଲେ ନର୍କେ ନ ପଡ଼ିବୁ ବାବୁ ।
ଯେତେ ତୀର୍ଥ ଲୋଡ଼ିବୁ ତୁ ସର୍ବ ଏଥେ ପାଇ
ଅର୍ଜ୍ଜୁନ ଆଗରେ ଯମ କହନ୍ତି ବୁଝାଇ ।
ମହାଭାରତ ଶୁଣନ୍ତି ଯେହୁ ହୃଦଗତେ
ତାଙ୍କୁ ଶାସ୍ତି ନ ଦିଅଇ ମୁହିଁ କଦାଚିତେ ।
ଦାନ ସାଗର ପୁଣ୍ୟର ଏହୁ ଫଳଶ୍ରୁତି
ଆୟୁଷ ଧନ ପୁତ୍ରାଦି ସବୁ ଅଛି ଏଥି ।
ଏ କଳିକାଳ ପାତାଳ ହରିବା ନିମନ୍ତେ
କେଶବ ମନୁଷ୍ୟ ରୂପେ ଅବତାର ଏଥେ ।
ଯାହା ଯାହା କହିଲାକ ଯେ ଯମ ଦେବତା
ସଂକ୍ଷେପେ କହିବାକୁ ତା କାହିଁ ସମର୍ଥତା ।
ସବୁ ପ୍ରାଣୀଙ୍କ ଶରୀରେ ଛନ୍ତି ନାରାୟଣ
ତାରନ୍ତି ମାରନ୍ତି ସେହୁ କରନ୍ତି କାରଣ ।
ତୁଳସୀନାଥଙ୍କୁ ସଦା ରଖି ହୃଦଗତେ
ବଦନ୍ତି ଶାରଳା ମୁନି ଜନଙ୍କର ହିତେ ।
ବହୁ ବିନୟେ କହନ୍ତି ସେ ଯମଦେବତା
ଶୁଣି ସାନନ୍ଦ ହୋଇଲା ପାର୍ଥ ମହାରଥା ।
ପଣ୍ଡୁ ବାଇଲେ ବାବୁରେ ଦୀର୍ଘାୟୁ ହୁଅସି
ବଂଶ ନିଷ୍କଳଙ୍କ ହେଉ କରାଅ ରାଜୁସି ।
ପଣ୍ଡୁଯମ ଏ ଦୁହିଙ୍କି ନିମନ୍ତ୍ରଣ ଦେଇ
ଚଳିଗଲା ଧନଞ୍ଜୟ ଆନନ୍ଦିତ ହୋଇ ।
ମନୁ ପୁରୁଷଙ୍କ ମୂଳେ ଭୃଗୁ ବୃହସ୍ପତି
ହିରଣ୍ୟ ହେମବର୍ଣ୍ଣାଦି ସମସ୍ତ ନିମନ୍ତି ।
ଯକ୍ଷ କିନ୍ନର ଗୁହ୍ୟକ ଏହି ଆଦି କରି
ଆକାଶରେ ନିମନ୍ତିଲା ରହି ଦିନ ଚାରି ।
ତହୁଁ ମାତଳିକି ବୋଲେ ବାହା ରଥ ମୋର
ଦ୍ୱାରକା ପୁରକୁ ଯିବା ବିଳମ୍ବ ନ କର ।
ମାତଳି ବୋଇଲା ତହୁଁ ଦେବ ନାରାୟଣ
ରାଜୁସି ଯଜ୍ଞ ସଭାରେ ଅଛନ୍ତି ଆପଣ ।
ଅର୍ଜ୍ଜୁନ ବୋଇଲା ତହିଁ ଅଛି ଉଗ୍ରସେନ
ରହି ଅଛନ୍ତି ଯାଦବ ସାତବଂଶମାନ ।
ବିଶେଷରେ ଛନ୍ତି ପୁଣି ଦେବ ବଳଦେବେ
ନିମନ୍ତ୍ରଣ ନ ଦେଲେ ମୁଁ କାହିଁକି ଯେ ଯିବେ ।
ଯଦି ବୋଲ ଜଗନ୍ନାଥ ତାହାଙ୍କର ଭାଇ
ନିମନ୍ତ୍ରଣ ନ ଦେଲେ ଯେ ଯିବେ କାହିଁପାଇଁ ।
ତହୁଁ ମାତଳି ବାହିଲା ରଥ ବେଗକରି
ବହନ ହେଲେ ବିଜୟ ଦ୍ୱାରାବତୀ ପୁରୀ ।

ଦେଖିଣ ସାନନ୍ଦ ହେଲେ ନୃପ ଉଗ୍ରସେନ
ସଭାରେ ବିଜୟ କଲେ କୋଇନ୍ତା ନନ୍ଦନ ।
ଅର୍ଜ୍ଜୁନି ଚରଣେ ପୁତ୍ରେ ଯାଇ କଲେ ପୂଜା
କୋଳେ ଧରି ଚୁମ୍ବ ଦେଲେ ବାସବ ଆତ୍ମଜା ।
ନିମନ୍ତ୍ରଣ ଯୋଗାଡ଼ନ୍ତି ଦେଇ ଫାଲଗୁନି
ରାମ ପାଦପଦ୍ମେ କଲେ ବହୁତ ଦଇନୀ ।
ଉଗ୍ରସେନ ସହିତରେ ସର୍ବ ରାଜଦେବା
ନିମନ୍ତି ବୋଇଲେ ଚାଲ ହସ୍ତିନାକୁ ଯିବା ।
ତାହା ଦେଖିଣ ସନ୍ତୋଷ ହେଲେ କାମପାଳ
ସଜ ହୋଇଲେ ଯିବାକୁ ରୋହିଣୀ ଦୁଲାଳ ।
ଉଗ୍ରସେନ ସହିତେରେ ସର୍ବ ପୁତ୍ରମାନେ
ଆନନ୍ଦରେ ଆରୋହିଲେ ଯେ ଯାହାର ଯାନେ
ବାହାରିଲେ ଦ୍ୱାରକାରୁ ଅକଳନ୍ତା ଥାଟ
ଘୋଟିଲେ ଚୌରାଶୀ ଯୁଣ ସିନ୍ଧୁକୂଳ ପାଟ ।
ତାଳଧ୍ୱଜ ରଥେ ବିଜେ ସ୍ୱାମୀ କାମପାଳ
ଶ୍ରୀଭୁଜେ ଶୋଭା ପାଉଛି ହଳ ଯେ ମୁଷଳ ।
ପବନହୁଁ ବେଗମାନ ଏମନ୍ତ ଯେ ବାଜୀ
ଆକାଶ ଘୋଟି ଚାଲନ୍ତି ଗରଜି ଗରଜି ।
ବିହରନ୍ତି ନାଗମାନେ ଯେହୁ ବଡ଼ଦନ୍ତା
ପଦାତିମାନଙ୍କ ସଂଖ୍ୟା କେ କରେ ଗଣିତା ।
ସୁନ୍ଦର ସୁପୁରୁଷ ଯେ ସ୍ଥୂଳ ସ୍ଥୂଳ କାୟା
ଧର୍ମ କାଳଦଣ୍ଡକୁ ଯେ ଅଟନ୍ତି ନିର୍ଭୟା ।
ବାଟ କଢ଼ାଇ ଆଣନ୍ତି ତାଙ୍କୁ ଫାଲଗୁନି
ପଛେ ପଛେ ପାଣ୍ଡବଙ୍କୁ କ୍ଷେପନ୍ତି ସଇନି ।
ଝଲକେ ହିରଣ୍ୟ ହୀରା ବିଦାରିଣ ମଣି
ଜଣେ ଜଣେ ବିକାଶନ୍ତି ଯେସନେ ବହନି ।
ପବନୁ ବେଗେ ଚଳନ୍ତି ରଜନୀ ଦିବସ
ଜୟନ୍ତା ଦ୍ୱୀପରେ ଯାଇ ହୋଇଲେ ପ୍ରବେଶ ।
ବଳରାମଙ୍କ ଆଗତ କହିଲେ ମୁନେହିଁ
ପାର୍ଥ ମଧ୍ୟ ବିଜେ କଲେ ଶୁଣ ଭାବଗ୍ରାହୀ ।
ଧନୁ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଚନ୍ଦ୍ରବାର
ପୁଷ୍ୟା ନକ୍ଷତ୍ରକୁ ଭୋଗ ଥିଲା ସେ ଦିନର ।
ଗର ନାମରେ କରଣ ପ୍ରୀତିନାମେ ଯୋଗ
ଧନୁ ସଂକ୍ରାନ୍ତିକୁ ଅଷ୍ଟବିଂଶ ଦିନ ଭୋଗ ।
ଉତ୍ତର ଦିଗେ ବିଜୟ ସାରିଣ ସକଳ
ଅର୍ଜ୍ଜୁନ ବିଜୟ ଘେନି ଶୁଭ ଅନୁକୂଳ ।
ମହା ସମ୍ଭର୍ବରେ ଆସି ବିଜୟ କିରୀଟୀ
ଯମୁନାର କୂଳେ ଯାଇ ଜଗନ୍ନାଥ ଭେଟି ।
ରଥ ତେଜ୍ୟା କରିଣ ସେ ପାଣ୍ଡବ କିରୀଟୀ
ଜଗନ୍ନାଥଙ୍କର ପଦ୍ମପାଦେ ଯାଇ ଭେଟି ।

ଯଦୁବଂଶ ଅବତଂସ ଜୟ ଚକ୍ରପାଣି
ଶତକୋଟି ବ୍ରହ୍ମାଣ୍ଡର ତୁମ୍ଭେ ଶିରୋମଣି ।
ପ୍ରଳୟର ଗଙ୍ଗାନଖ କୋଣେ ଥିଲା ଲୁଚି
ଶିରେ ଅଭିଷେକ କଲା ତାହାକୁ ବିରଞ୍ଚି ।
ସେହି ପାଦୋଦକ ଯାହା ପଡ଼ିଲା ଉଛୁଳି
ପଶୁପତି ଅଭିଷେକ ହେଲେ ତାହା ତୋଳି ।
କୋଟି ଜନମର ସବୁ ଦୋଷ କଲେ ଧ୍ୱଂସ
ଜନ୍ମେ ଜନ୍ମେ ବଢ଼ାଇଲି ମୁହିଁ ବହୁ ଆଶ ।
ଅଗାଧ ସାଗର ବୋଲି ନ ପାରିଲି ପାଞ୍ଚି
ତବ ପ୍ରସାଦେ ଭାରତ ପୋଥି ଅଛି ଲୁଚି ।
ତବ ପଦ୍ମପାଦ ସଦା ଥାଉ ମୋର ହୃଦେ
ସଂସାର ବୋଧିବାକୁ ମୁଁ ପାଇଲଇଁ ପଦେ ।
କୁଶସ୍ଥଳୀ ଦ୍ୱାରକା ଯେ ଭାରତର ଭୂମି
ସୁନ୍ଦର ଗିରି ସନ୍ନିଧେ ତୋଷିଲେ ସେ ସ୍ୱାମୀ ।
ଅକାରଣକୁ କାରଣ ମୋ ସ୍ୱାମୀଙ୍କ ପାଦ
ଜନ୍ମେ ଜନ୍ମେ ସେବଇଁ ମୁଁ ତାଙ୍କୁ ରଖି ହୃଦ ।
ଭାରତୀ ବଲ୍ଲଭ ପାଦେ ସଦା ମୋର ଆଶ
ଶୂଦ୍ରମୁନି ଶାରଳାର ହୃଦେ ଆସି ବସ ।
ଜ୍ଞାନ ଥାଉଁ ଥାଉଁ ମୂଢ଼େ ହେଉଛନ୍ତି ବଣା
ସଂସାର କାରଣ କୃଷ୍ଣ ନାମର ଧାରଣା ।
ସକଳ ଧର୍ମ ଲଭଇ ଯାହାକୁ ସେବିଲେ
ଧ୍ୱଂସ ହୁଅଇ ପାତକ ଯାହାକୁ ଶୁଣିଲେ ।
ଯଜ୍ଞକୁଣ୍ଡେ ଯେତେ ଇଚ୍ଛା ଧ୍ୱଂସକର ଘୃତ
ମହାଯଜ୍ଞଠାରୀ ଶ୍ରେଷ୍ଠ ଶ୍ରୀମହାଭାରତ ।
ଜନ୍ମେ ଜନ୍ମେ ସେବାମୋର ଅଗସ୍ତି ପାଦରେ
ସମୁଦ୍ର ଗଣ୍ଡୂଷ କଲେ ଯେହୁ କିଞ୍ଚିତରେ ।
ବ୍ୟାସଦେବଙ୍କ ପ୍ରସନ୍ନେ ସ୍ଫୁରିଲା ମୋ ବାଣୀ
ସଭାପର୍ବ ଲେଖି ମୁହିଁ ବଞ୍ଚାଇଲି ଆଣି ।
ବିଲଙ୍କ ଦେଶର ବୈବସ୍ୱତ ମନୁରାଜା
ଅଗସ୍ତି ପାଦପଦ୍ମରେ ସଦା କରି ପୂଜା ।
ଯୁଗାନ୍ତ ପୁରୁଷ ହୋଇ ଅପୁତ୍ରିକ ଥିଲା
ଭାରତ ସଂହିତା ଶୁଣି ସାତପୁତ୍ର ହେଲା ।
ପୁଣି ଯେ ବୋଇଲେ ଏହି ସଂସାର ଅର୍ଣ୍ଣବେ
ଠିଆ ହୋଇବାକୁ କାହିଁ ନ ମିଳଇ ଠାବେ ।
ଶୁଣିଣ ମନୁ ବୋଇଲେ ଶୁଣ ତୁ ରାଉତ
ଇହ ପରକାଳେ ନିଶ୍ଚେ ହୋଇବୁ ମୁକତ ।
ନ ଭେଟିବୁ କାମ କ୍ରୋଧ ନ ଭେଟିବୁ କାଳ
ନ ଭେଟିବୁ ରୋଗ ଶୋକ ନ ଥିବ ଜଞ୍ଜାଳ ।
ମୁନି ବୋଇଲେ ଭାରତ ଶୁଣୁଛି ଯେପରି
ସବୁଦିନେ ଶୁଣୁଥାଅ ମନ ତୋଷକରି ।
ଇହକାଳେ ସବୁ ତୋର ହୋଇବ ସୁବିଧା
ପରଲୋକ ଯମ ପୁଣି ତୁ କରିବୁ ବାଧା ।
ଭାର୍ଯ୍ୟା ପୁତ୍ର ଭାଇ ବନ୍ଧୁ ଏ ଯେତେକ ସବୁ
ପ୍ରତିବନ୍ଧକ କେବଳ ଏ ସକଳ ବାବୁ ।
ହିଂସା କ୍ରୋଧ ଲୋଭ ମିଥ୍ୟା ଏ ସବୁ କାହିଁକି
ଶମନ ଦଣ୍ଡିବ ପରେ ତା ଜାଣୁ ନାହିଁକି ।
ଶୁଣ ଆହେ ଯୋଗେଶ୍ୱର ସଦା ଦେଇ ମତି
ଇତି ଶ୍ରୀ ମହାଭାରତ ପୁରାଣର ପୋଥି ।
ଅଗସ୍ତି ମୁନିଙ୍କ ପାଦେ ସଦା ମୋର ସେବା
ଶୂଦ୍ରମୁନି ଶାରଳାକୁ ମୁକ୍ତି ପଥ ଦେବା ।
ଯେବଣ ନାମ ବହିଲୁ ଦଶ ଅବତାରେ
ସିଦ୍ଧ ଶାରଳା ହୋଇଲୁ ଏ କଳିକାଳରେ ।
ଜମ୍ବୁଦ୍ୱୀପ ବାରାନିଧି ପଶ୍ଚିମର ଭାଗେ
ସୁନ୍ଦର ପର୍ବତ ନୀଳ କଳ୍ପବଟ ଲାଗେ ।
ଚନ୍ଦ୍ରଭାଗା କୋଣାର୍କର ତୀର୍ଥ ଅଟେ ଯହିଁ
ସେହି ସର୍ବସ୍ଥାନେ ହାଦେ ସୁସ୍ଥାନ ଅଟଇ ।
ଚିତ୍ରୋପଳା ନଦୀ ବହେ ଦକ୍ଷିଣ କୋଣରେ
ଓଡ଼ରାଷ୍ଟ୍ର ବ୍ରହ୍ମପୁର ଅଛଇ ସେଠାରେ ।
କଳିକାଳରେ ଗୁପତ ଅଛି ଏହି ନଦୀ
ଚିତ୍ରୋପ୍ଳା ନାମେ ଆସେ ଐଶାନ୍ୟକୁ ଭେଦି
ସେ ନଦୀକୂଳରେ ପର୍ଶୁରାମଙ୍କ ଆଶ୍ରମ
ନିଜ ଭୁବନ କନକାବତୀ ଅଟେ ନାମ ।
ତାକୁ ଜଙ୍ଘେର ଜଇନ୍ତା ନାମ ଗୋଟି ବୋଲି
ସେହିଠାରେ ବସିକରି ଲୟ ମୁଁ କରିଲି ।
ତୁ ମାହେଶ୍ୱରୀ କହିଲୁ ମୋତେ ଶାସ୍ତ୍ରଯୋଗେ
ଉତ୍ତମ ଜ୍ଞାନ ପାଇଲି ଭକତିର ଭାବେ ।
କୃପାଜଳଙ୍କ ନନ୍ଦିନୀ ଅଟନ୍ତି ଯେ ଦେବୀ
ଜନ୍ମେ ଜନ୍ମେ ଅଭ୍ୟାସ ମୁଁ ତୋର ପାଦେ ସେବି
ସ୍ୱରୂପରେ ପାଇଲି ମୁଁ ସିଦ୍ଧି ଏଥି ପୋଥି
ଶାରଳା ପ୍ରସାଦେ ମୁହିଁ ଖଣ୍ଡିଲି ଦୁର୍ଗତି ।
ସଂସାର ଜନବୋଧନ ମୋତେ ଦେଲେ କହି
କୃପାଜଳଙ୍କ ନନ୍ଦିନୀ ମୋର ହୃଦେ ରହି ।
ବାଳିକା ସ୍ୱଭାବେ ଘେନି କୌତୁକରେ ଖେଳି
କୃଷ୍ଣବର୍ଣ୍ଣ ସ୍ୱରୂପିଣୀ ହୋଇ ମତି ଭୋଳି ।
ବିଘ୍ନବିନାଶିନୀ ଦେବୀ ବିପଦର ସଖା
ଅହର୍ନିଶି ବର ଦେଇ ତୁହି କରୁ ରକ୍ଷା ।
ସନକବାଦେ କୈଳାସକ୍ଷେତ୍ରେ ଅଧିକାରୀ
ବରମାଗି ତୋ ବଲ୍ଲଭ ହେଲେ ତ୍ରିପୁରାରି ।
ଶ୍ରୀମଙ୍ଗଳା ପାଦରେଣୁ ରହେ ମୋର ଶିରେ
ପ୍ରାପତ ହୋଇଲି ମୁହିଁ ନନ୍ଦି ଅବତାରେ ।

ପ୍ରସନ୍ନେ ସାଧବୀ ଦେବୀ ଚରଣେ ଦଇନି
କହଇ ଶାରଳାଦାସ କବି ଶୂଦ୍ରମୁନି ।



## ଶ୍ରୀକୃଷ୍ଣ ବାଳକମାନଙ୍କର ଦ୍ୱାର ରକ୍ଷା, ଅନନ୍ତ ପଢ଼ିହାରୀ ପାଇବା ପ୍ରାର୍ଥନା, ଋଷିମାନଙ୍କୁ ଯଜ୍ଞରେ ବରଣ ଏବଂ ଯଯାତି ରାଜା ପ୍ରତି ପୁରୁ ପ୍ରବୀର ଦୁଇ ପୁତ୍ରଙ୍କର ଷଡ଼ଯନ୍ତ୍ର

ଅଗସ୍ତିଙ୍କ ପାଦପଦ୍ମେ ମନୁ କରି ସେବା
ବୋଲନ୍ତି ଯଜ୍ଞର କଥା ମୋ ଆଗେ କହିବା ।
କୁମ୍ଭଋଷିଙ୍କ ନନ୍ଦନ ଅଗସ୍ତି ବଦନ୍ତି
ସମସ୍ତ ରଙ୍ଗ କୌତୁକ ଶ୍ରୀପତି କରନ୍ତି ।
ପଞ୍ଚାଶ ସହସ୍ର ତିନି ଊଣା ପଶ୍ଚିମରେ
ରାଜା ଘେନି ନିଜେ ଭୀମ ପଶ୍ଚିମ ଦୁଆରେ ।
ଉତ୍ତରୁ ଚାଳିଶସସ୍ର ରାଜା ଘେନି ପାର୍ଥ
ଉତ୍ତର ଦ୍ୱାରେ ପ୍ରବେଶ ହୋଇଲା ତ୍ୱରିତ ।
ଏକଊଣା ତିନିସସ୍ର ଘେନି ନୃପମଣି
ଦକ୍ଷିଣ ଦ୍ୱାରେ ନକୁଳ ରଖାଇଲା ଆଣି ।
ପୂର୍ବରୁ ଏକୋନଶତସସ୍ର ରାଜା ଘେନି
ପୂର୍ବଦ୍ୱାରେ ରଖାଇଲେ ମନ୍ତ୍ରୀ ଚୂଡ଼ାମଣି ।
ପୂରିଗଲେ ରାଜାମାନେ ବଡ଼ାଇ ସମ୍ଭାରେ
ଚାରିଦିଗ ରାଜା ସ୍ଥିତି ହେଲେ ଚାରିଦ୍ୱାରେ ।
ଏ ବିଧିରେ ଚାରିଊଣା ଲକ୍ଷେକ ନୃପତି
ଚାରିଦିଗର ରାଜାଙ୍କୁ ଆଣିଲେ ନିମନ୍ତ୍ରି ।
ମହାସଭାରେ ବିଜୟ କଲେ ବଳରାମ
ଛାମୁରେ ଦର୍ଶନ କଲେ ଶ୍ରୀପୁରୁଷୋତ୍ତମ ।
ଶ୍ରୀ ହସ୍ତରେ ଅର୍ଘ୍ୟଘେନି ଯୁଧିଷ୍ଠି ତୁରିତେ
ଆପଣେ କରିଲେ ପୂଜା ରାମପାଦଗତେ ।
ବିଜେକଲେ କାମପାଳ ସଭାରେ ସମ୍ଭର୍ବେ
ଆବର ଅଛନ୍ତି ସାତବଂଶର ଯାଦବେ ।
ପ୍ରଦ୍ୟୁମ୍ନକୁ ହକାରିଣ ଦେବ ଜଗନ୍ନାଥେ
ଆଗେ ଶାଢ଼ୀ ଦିଆଇଲେ ଯୁଧିଷ୍ଠିର ହାତେ ।
ବୋଇଲେ ସହସ୍ର ଭାଇ ଥାଅ ପୂର୍ବଦ୍ୱାରେ
ଯେ ରାଜାକୁ ଆଜ୍ଞା ହେବ ଛାଡ଼ିବ ଭିତରେ ।
ଶାମ୍ବକୁମରକୁ ପୁଣି ଛାମୁକୁ ହକାରି
ନିଜେ ଶାଢ଼ୀଦେଲେ ତାଙ୍କୁ ଧର୍ମ ଅଧିକାରୀ ।
ଚାଳିଶ ସହସ୍ର ଭ୍ରାତ ଉତ୍ତରରେ ଥିବ
ଯେ ଯାହାକୁ ଆଜ୍ଞାଦେବ ଭିତରେ ଛାଡ଼ିବ ।
ଗଦ ନାମ କୁମର ସତ୍ୟଭାମା ବାଳ
ଦଶସସ୍ର ଘେନି ସେ ପଶ୍ଚିମ ଦ୍ୱାରପାଳ ।
ଜୟନ୍ତ ନାମେ ଅଟଇ କାଳିନ୍ଦୀ କୁମର
ନବସସ୍ର ଘେନି ରହେ ଦକ୍ଷିଣର ଦ୍ୱାର ।
ତାଡ଼ ଝୁମ୍ପା ସରଳ ବାହୁଟି ଜଗଦ୍‌ବଳା
ମୁକୁଟ କର୍ଣ୍ଣ କୁଣ୍ଡଳ ହୃଦେ ରତ୍ନମାଳା ।
ଦେବୀଙ୍କ ବସନ ନେତ ଆବର ପତନୀ
ଯୁଧିଷ୍ଠିଦେବ ଏମାନ ଶ୍ରୀହସ୍ତରେ ଘେନି ।
ବୋଇଲେ କୃଷ୍ଣସୁତଙ୍କୁ ତୁମ୍ଭେମାନେ ଯୋଧି
ଅନେକ କଠୋରି ଥିବ ଦ୍ୱାରମାନ ରୋଧି ।
ଏହା କହି କୁମରଙ୍କ ଶ୍ରୀଅଙ୍ଗେ ନେଇଣ
ସର୍ବ ରତ୍ନ ଅଳଙ୍କାର କଲେ ଆଭରଣ ।
ପୁଣି ଅନନ୍ତ ହକାରି ଦେବ ନାରାୟଣ
ବୋଇଲେ ଠାକୁର ଆଜ୍ଞା ସାବଧାନେ ଶୁଣ ।
ବାବୁରେ ଦ୍ୱାରକୁ ଯେହୁ ନ ପାରିବ ରୋଧି
ଠାକୁରଙ୍କଠାରେ ନିଶ୍ଚେ ହେବ ଅପରାଧୀ ।
ଏହିରୂପେ ଚାରିଦ୍ୱାର ଦୃଢ଼େ ରୋଧିକରି
କରଯୋଡ଼ି ଯୁଧିଷ୍ଠିରେ ବୋଲନ୍ତି ଶ୍ରୀହରି ।
ସ୍ୱାମୀ ପଢ଼ିହାରୀ ପଣେ ମୋତେ ଶାଢ଼ୀ ଦିଅ
ଦେଖା କରାଇବି ରାଜାମାନଙ୍କୁ ହେ ରାୟ ।
ପୁଣି ସେମାନଙ୍କୁ ନେଇ ଯଥା ସମୟରେ
ମାନ୍ୟକରି ବସାଇବି ଯାହାକୁ ଯେଠାରେ ।
ଶ୍ରୀକୃଷ୍ଣ ବଚନ ଶୁଣି ବିସ୍ମୟ ଯୁଧିଷ୍ଠି
ବୋଇଲେ ତ୍ରୈଲୋକ୍ୟନାଥ ତୋର ସର୍ବସୃଷ୍ଟି
ଦେବାଧି ଦେବତାଙ୍କର ଅଟୁ ଦେବରାଜା
ତୋ ପାଦପଦ୍ମେ କରନ୍ତି ସର୍ବଦେବ ପୂଜା ।
ମୋ ଜିହ୍ୱାଗ୍ରେ ପଢ଼ିହାରୀ ଡାକିବି କିପରି
ମୋର ପିତା ହତ୍ୟାଦୋଷୁ ନୋହୁପଛେ ପାରି
ଶୁଣିଣ ବିନୟଭାବେ ଶ୍ରୀକୃଷ୍ଣ କହିଲେ
ସ୍ୱାମୀ ହୋ ପୃଥିବୀରାଜା ସମସ୍ତେ ଅଇଲେ ।
ମୁଁ ଯେବେ ଭକତିଭାବେ ନ ଖଟିବି ତୋତେ
ଏ ରାଜାଏ ତୋତେ ପୂଜା କରିବେ କେମନ୍ତେ
ତହୁଁ ଧର୍ମ ବିଜେକଲେ ବ୍ୟାସଙ୍କର ପାଶେ
ବୋଇଲେ ଶ୍ରୀକୃଷ୍ଣ କଥା ଶୁଣ ଆହେ ବ୍ୟାସେ
ଦୁଃସହ କଥା କହନ୍ତି ମୋତେ ଚକ୍ରଧାରୀ
ବୋଲନ୍ତି ତୋ ଯଜ୍ଞେ ହେବି ମୁହିଁ ପଢ଼ିହାରୀ ।
ବ୍ୟାସେ ବୋଇଲେ ବାବୁରେ ଅଛଇ ଏମନ୍ତ
ଯହିଁ ଧର୍ମ ତହିଁ କୃଷ୍ଣ ହୋଇଥାନ୍ତି ଭୃତ୍ୟ ।
ବ୍ୟାସଙ୍କ ବଚନ ଶୁଣି ଧର୍ମ ଦଣ୍ଡଧାରୀ
ନିଜ ଶ୍ରୀହସ୍ତରେ ଶାଢ଼ୀ ଦେଲେ ସ୍ନେହକରି ।

ତଳ ହସ୍ତରେ ଘେନିଲେ ପ୍ରଭୁ ଶିରୀପତି
ମଥାରେ ବାନ୍ଧିଲେ ତାକୁ ନେଇ ତତ୍‌କ୍ଷଣାନ୍ତି ।
ସୁନା ଯୋଡ଼ିବେତ ବିଶ୍ୱକର୍ମାର ନିର୍ମାଣ
ଅନନ୍ତ ପଡ଼ିହାରୀ ତା ନେଲେ ନାରାୟଣ ।
ଷାଠିଏ ସହସ୍ର ଶିଷ୍ୟ ଘେନି ବେଦବ୍ୟାସ
ଯଜ୍ଞଶାଳ ଆରୋହଣ କରନ୍ତି ବିଶେଷ ।
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତ
ପ୍ରବେଶ ହୋଇଲେ ଯାଇ ସଭାର ଅଗ୍ରତ ।
ବ୍ରହ୍ମାନନ୍ଦ ବଶିଷ୍ଠ କେବଳ ବ୍ରହ୍ମରଷି
ଅଶୀସସ୍ର ଶିଷ୍ୟ ଘେନି ପ୍ରବେଶିଲେ ଆସି ।
ଲକ୍ଷେ ବାଳଶିଷ୍ୟ ଘେନି ବାହ୍ଲିକ ଦୁର୍ବାସା
ଯଜ୍ଞେ ପ୍ରବେଶିଲେ ଆସି ଆନନ୍ଦେ ସହସା ।
ପଞ୍ଚାଶ ସହସ୍ର ଶିଷ୍ୟ ମାର୍କଣ୍ଡେୟ ଘେନି
ଅଶୀସସ୍ର ଶିଷ୍ୟ ସହ ବିଭାଣ୍ଡକ ମୁନି ।
ଋଷ୍ୟଶୃଙ୍ଗ ପଞ୍ଚଶତ ଶିଷ୍ୟଙ୍କର ତୁଲେ
ନବସସ୍ର ଋଷି ସଙ୍ଗେ ଗୌତମ ଅଇଲେ ।
ସନକ ସନାତନାଦି ଉତ୍ତମ ଯେ ଋଷି
ଏଗାର ସହସ୍ରସହ ଭରଦ୍ୱାଜ ଆସି ।
ପଞ୍ଚାଶ ସହସ୍ର ଘେନି ବିଶ୍ୱାମିତ୍ର ମୁନି
ରାଜସୂୟ ଯଜ୍ଞେ ବିଜେ ଶିଷ୍ୟଙ୍କୁ ସେ ଘେନି ।
ଲକ୍ଷେ ଶିଷ୍ୟ ଘେନି ବିଜେହେଲେ ବାମଦେବ
ନବସସ୍ର ଶିଷ୍ୟ ଘେନି ସଦାନନ୍ଦ ଶିବ ।
ସୁମନ୍ତ ମୁନି ସହିତେ ନବସସ୍ର ଚେଲା
ରାଜୁସି ଯଜ୍ଞସଭାରେ ଯାଇ ପ୍ରବେଶିଲା ।
ପଞ୍ଚାଶ ସହସ୍ର ଶିଷ୍ୟ ଘେନିଣ ଜୈମିନି
ପ୍ରବେଶ ହେଲେ ମହାତ୍ମା ଶୁଭଲଗ୍ନ ଘେନି ।
ଅଷ୍ଟାବକ୍ର ସହସ୍ରେକ ଦ୍ୱିଜ ଘେନି ତୁଲେ
ସଭାରେ ବସିଲେ ଆସି ଋଷିଙ୍କର ମେଳେ ।
ରାଜଋଷି ବ୍ରହ୍ମଋଷି ପୁଣି ଦେବଋଷି
ସମସ୍ତ ବ୍ରହ୍ମବେତ୍ତାଏ ପ୍ରବେଶିଲେ ଆସି ।
ଋଷିମାନଙ୍କୁ ଦେଖିଣ ଦେବ ଧର୍ମରାଜା
ଅର୍ଘ୍ୟ ଘେନି ସମସ୍ତଙ୍କୁ ଯାଇ କଲେ ପୂଜା ।
ବସନ କୁଣ୍ଡଳମାନ ଚନ୍ଦନାଦି ଦେଇ
ବରଣ କରି ସବୁଙ୍କୁ ପ୍ରବୋଧିଲେ ଯାଇ ।
ଶୂଳଏକ ଶ୍ରୀହସ୍ତରେ ଘେନି ମାରକଣ୍ଡ
ନିଜେ ମହାତ୍ମା ଖୋଳନ୍ତି ଯାଇ ଯଜ୍ଞକୁଣ୍ଡ ।
ଦ୍ୱାଦଶକାଠି ବିସ୍ତାର ଚତୁର୍ଦ୍ଦିଗ ସ୍ଥଳୀ
ଗଭୀର ତା ତିନିକାଠି ଦ୍ୱାଦଶ ଅଙ୍ଗୁଳି ।
ପୂର୍ବ ଦ୍ୱାରରେ ବରଣ ମାରକଣ୍ଡ ଋଷି
ସଙ୍ଗରେ ଘେନି ପଚିଶ ସହସ୍ର ଯେ ଶିଷି ।
ଦକ୍ଷିଣ ଦ୍ୱାରରେ ବାମଦେବ ପୁରୋହିତେ
ପଶ୍ଚିମ ଦ୍ୱାରେ ଅଗସ୍ତି ଶିଷ୍ୟଙ୍କ ସହିତେ ।
ଉତ୍ତରେ ବରଣ ହେଲେ ବିଶ୍ୱାମିତ୍ର ମୁନି
ବରଣ ଅଧାନେ ଲକ୍ଷେ ବ୍ରାହ୍ମଣଙ୍କୁ ଘେନି ।
ବାର ବିଶ୍ୱେଦେବ ସାତ ମନୁ ଯେ ପୁରୁଷ
ଶୂନ୍ୟେ ଦେବତାଏ ପାଞ୍ଚ ସନକ ଯେ ଦଶ ।
ଅଷ୍ଟମନ୍ତର ବାକ୍ୟରେ ଲକ୍ଷେ ଦ୍ୱିଜବରି
ଋକବେଦୀ ବରଣ ଯେ ହେଲେ ଲକ୍ଷ ଚାରି ।
ଦ୍ୱିଲକ୍ଷଦ୍ୱିଜ ବରଣ ହେଲେ ସାମବେଦୀ
ଯଜୁର୍ବେଦୀ ପାଞ୍ଚଲକ୍ଷ ବରିଲେ ସମ୍ପାଦି ।
ଅଥର୍ବବେଦୀ ବରିଲେ ନବଲକ୍ଷ ଜାଣ
ଯୋଗମୁଦ୍ରା ଏକସ୍ତରି ସହସ୍ର ବରଣ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଏହି ତିନି ଦଇବତ
ସୋମ ଜଙ୍ଗମ ତେଇଶ ଲକ୍ଷ ପରିମିତ ।
ସମସ୍ତ ବରଣ କଲେ ଧର୍ମଙ୍କର ସୁତ
ପୁଣି ଅନେକ ବରିଲେ ଯାହାକୁ ଯେମନ୍ତ ।
ମହାଯଜ୍ଞରେ ବରଣ ସର୍ବ ବ୍ରହ୍ମମୁନି
ଯେ ଯାହା ପୀଠେ ବସିଲେ ଶିଷ୍ୟମାନ ଘେନି
କାଳିଞ୍ଜନ କାଳଧ୍ୱଂସ ନାମରେ ଡଗର
ଦୁହିଁଙ୍କୁ ପଠାଇଥିଲେ ତହିଁ ନାଶକର ।
ମହାପଣ୍ଡିତ ସେମାନେ ଜ୍ଞାନେ ସର୍ବସିଦ୍ଧି
ଭୂତ ଭବିଷ୍ୟତ ଜ୍ଞାତା ଅଟେ ତାଙ୍କ ବୁଦ୍ଧି ।
ଅଦଭୂତେ ଆକାଶରୁ ହୋଇଲେ ପ୍ରବେଶ
ଲୋହିତ ବର୍ଣ୍ଣ ଶରୀର ଅଗ୍ନିର ସଦୃଶ ।
ଯୁଧିଷ୍ଠିର ପଚାରିଲେ ମନ୍ତ୍ରୀର ଅଗ୍ରତେ
କାହିଁର ଦୂତ ଅଇଲେ ଏହୁ ଅଦଭୂତେ ।
ବିଚାର କରିଣ କହ ଏହାଙ୍କ ବିଷୟ
ସହଦେବ ବୋଲେ ସ୍ୱାମୀ ଶୁଣ ଧର୍ମରାୟ ।
ଆମ୍ଭର ଯେ ପୂର୍ବ ବଂଶ ସତ୍ୟଯୁଗ ରାଜା
ପ୍ରବୀର ପୁରୁ ଯଯାତି ରାଜାର ଆତ୍ମଜା ।
ଯଯାତି ରାଜା ଯେ ସତ୍ୟଯୁଗ ନରପତି
ଦ୍ୱିଲକ୍ଷ ତିନିସହସ୍ର ଭୋଗକଲେ ପୃଥ୍ୱୀ ।
ପୁରୁ ପ୍ରବୀର ଏ ଦୁହେଁ ଯଯାତିର ବାଳ
ପିତାଙ୍କ ପ୍ରଉଢ଼କାଳେ ଯାଙ୍କ ଯୁବାକାଳ ।
ମୀନ କୃଷ୍ଣ ଚତୁର୍ଦ୍ଦଶୀ ପୁଣି ଭୌମବାର
ରେବତୀ ନକ୍ଷତ୍ରେ ଭୋଗ ଅଟେ ସେ ଦିନର ।
ଅଶ୍ୱେ ଅଶ୍ୱେ ଚଢ଼ିକରି ସେ ବେନି କୁମରେ
କୁତୂହଳେ ବାହାରିଲେ ମୃଗୟା ଅର୍ଥରେ ।
କୁମାରମାନଙ୍କ ଯିବା ଜାଣିକରି ମନ୍ତ୍ରୀ
ଯଯାତିଙ୍କ ନିକଟରେ କହେ ତତ୍‌କ୍ଷଣାନ୍ତି ।

ସ୍ୱାମୀ ତୋର ଯୁବାପୁତ୍ରେ ବୟସ ମଦରେ
ମୃଗୟାକୁ ଯାଉଛନ୍ତି ଘୋର ଅରଣ୍ୟରେ ।
ଶୁଣି ଯଯାତି ବୋଲଇ ତହୁଁ ମନ୍ତ୍ରୀ ଆଗେ
ପୁତ୍ରଙ୍କ ସହିତେ ଏବେ ଚଳ ତୁହି ବେଗେ ।
ପୁତ୍ରମାନଙ୍କୁ ବନସ୍ଥୁ ଆଣିବୁ ସମ୍ଭାଳି
ଦୁଷ୍ଟପୁତ୍ରେ ନ ଜାଣନ୍ତି ଧର୍ମ କେଉଁ ଭଳି ।
ରାଜାବାକ୍ୟେ ଯମନିକ ମନ୍ତ୍ରୀ ତହୁଁ ଚଳେ
ବନସ୍ତରେ କୁମାରଙ୍କ ସହିତରେ ମିଳେ ।
ଦୁଇଟି କୁମାର ମନ୍ତ୍ରୀ ଏହି ତିନିପ୍ରାଣୀ
ଚଳିଯାନ୍ତି ବନସ୍ତରେ ବନଚର ଜାଣି ।
ବହୁତ ଝର କନ୍ଦର ଗମିଲେ ଅଟବ୍ୟା
ମନ୍ତ୍ରୀବର ବୋଲେ ବାବୁ ଦୂରକୁ ନ ଯିବା ।
କୁମରେ ମନ୍ତ୍ରୀ ବସିଲେ ଅଗୁରୁର ମୂଳେ
ସକଳେ ବସିଲେ ଦିବା ଦ୍ୱିପ୍ରହରବେଳେ ।
ପୁରୁ ପ୍ରବୀର ଉଠିଲେ ତହୁଁ ଧାଡିକାରେ
ମନ୍ତ୍ରୀର କେଶ ଧଇଲେ ଯାଇ କୋପଭରେ ।
ବୁଲାବନ୍ତେ ଖଡ଼ଗକୁ ରାହୁତେଜ ଜାଣି
ବୋଲନ୍ତି ତୋହର ଶିର ପକାଇବୁ ହାଣି ।
ମନ୍ତ୍ରୀ ବୋଇଲା ତୁମ୍ଭର କଲି କେଉଁ ଦୋଷ
ଅକାରଣେ ମୋତେ କିମ୍ପା କରିବ ବିନାଶ ।
କୋପେ ବୋଲନ୍ତି ସୁମର ତୋ ଇଷ୍ଟଦେବତା
ଆବର ସୁମର ତୁହି ତୋର ପିତାମାତା ।
ବିକଳେ ମନ୍ତ୍ରୀ ବୋଇଲେ ଅନ୍ୟ କେ ରକ୍ଷଣ
ଧର୍ମପିତାମାତା ତୁମ୍ଭେ ତୁମ୍ଭର ଶରଣ ।
ଶରଣ ବୋଲନ୍ତେ ତହୁଁ ତାକୁ କଲେ ଦୟା
ସତ୍ୟ କରିଲେ ରଖିବୁ ତେବେ ତୋର କାୟା ।
ସାନନ୍ଦରେ ମନ୍ତ୍ରୀବର ସତ୍ୟବାକ୍ୟ କହି
ପ୍ରାଣେ ରକ୍ଷାପାଇ ପୁଣି କାରଣ ପୁଚ୍ଛଇ ।
କେଶ ଛାଡ଼ି ବସାଇଲେ ତାକୁ ସନ୍ନିଧାନ
ବୋଇଲେକ ତୋତେ କିସ ତିଆରିବୁ ଆନେ ।
ପିତା ଆମ୍ଭର ଅଟନ୍ତି ନୃପତି ଯଯାତି
ଅନେକ କାଳଯାଏ ସେ କଲେଣି ରାଜୁତି ।
ତାଙ୍କ ପୁତ୍ର ହୋଇ ଦୁହେଁ ହେଲୁ ବୃଦ୍ଧଅଙ୍ଗ
ଅଭୋଗରେ ଦିନ ଗଲା ହେଲୁଣି ବିଭଙ୍ଗ ।
ଏ ବୟସେ ରାଜନ ନ ହେଲୁ ବେନିଭ୍ରାତ
ଏଡ଼େ ବଡ଼ ସୋମବଂଶ ନୋହିଲୁ ପ୍ରାପତ ।
ଦଣ୍ଡଛତ୍ର ଆବୋରି ନ ହେଲୁ ରାଜ୍ୟଭୋଗୀ
ରାଜାର କୁମର ହୋଇ ହୋଇଲୁଣି ଯୋଗୀ ।
ତୁ ମନ୍ତ୍ରୀ ଆମ୍ଭମାନଙ୍କୁ କରାଇବୁ ରାଜା
ବିଶ୍ୱାସଘାତେ ଯଯାତି ରାଜାକୁ ମାର ଯା ।

ତୁହି ଅବା ଭୟ କରୁ ବଂଶ କଳଙ୍କକୁ
ତୁ ସାପକ୍ଷ ହେଲେ ନିଶ୍ଚେ ମାରିବା ରାଜାକୁ ।
ପୁଷ୍ୟା ଅଭିଷେକ ମହାଯୋଗ ଯେତେବେଳେ
ମାରିବୁ ଯଯାତି ରାଜା ତୋର ବୁଦ୍ଧିବଳେ ।
ମନ୍ତ୍ରୀ ବୋଲେ ତୁମ୍ଭ ପିତା ବଧ ନ ସାଧିଲେ
ତୁମ୍ଭଙ୍କୁ ଏ ରାଜ୍ୟ କାହୁଁ ପ୍ରାପ୍ତ ହେବ ଭଲେ ।
ବୁଦ୍ଧିବଳେ ମନ୍ତ୍ରୀବର ଦେହ ରକ୍ଷାକଲା
ନାନାବାଗେ କହି ତାଙ୍କ ପ୍ରୀତି ଜନ୍ମାଇଲା ।
ତହୁଁ ନାନା ଜୀବହତ୍ୟା କରି ପାରିଧିରେ
ପୁରେ ପ୍ରବେଶ ହୋଇଲେ ଅତ୍ୟନ୍ତ ସମ୍ଭାରେ ।
ଯେ ଯାହାର ଇଚ୍ଛାକ୍ରମେ ଗଲେ ଯେଝାଳୟେ
ଭାଳଇ ସେ ମନ୍ତ୍ରୀବର ହୃଦୟ ବିସ୍ମୟେ ।
ହୃଦୟେ ଚିନ୍ତା ପଶିଲା ଅଙ୍ଗହେଲା କ୍ଷୀଣ
ରୋଗ ପ୍ରଳୟ ହୁଅନ୍ତେ ବପୁ ହେଲା ହୀନ ।
ମନ୍ତ୍ରୀରୂପ ଦେଖି ନିତି ହୁଅନ୍ତି ବିସ୍ମୟେ
ଦିନେ ରାଜା ପୁଚ୍ଛେ କ୍ଷୀଣ କିମ୍ପା ତୋର କାୟେ
ଉଦରେ ମନ୍ଦାଗ୍ନି ହୋଇ ବଢ଼ିଲା କି ବ୍ୟାଧି
ତୁ ମହାଧାର୍ମିକ ମନ୍ତ୍ରୀ ନ କରୁ ଔଷଧି ।
ରାଜାର ବଚନ ଶୁଣି ମୌନେ ସେହୁ ବସେ
ମିଥ୍ୟା ବାକ୍ୟରେ ରାଜାଙ୍କୁ କିଛି ନ ସମ୍ଭାଷେ ।
ଏହିପରି ପଚାରନ୍ତେ ଗଲା ମାସତିନି
କଟାଳ କରିଲେ ଦିନେ ଏକାନ୍ତକୁ ଘେନି ।
ମିଥୁନ ଶୁକଳ ଷଷ୍ଠୀ ପୁଣି ଅର୍କବାର
ପୁନର୍ବସୁ ନକ୍ଷତ୍ର ଯେ ଅଟେ ସେ ଦିନର ।
ଅତିଗଣ୍ଡ ନାମେ ଯୋଗ ଶକୁନି କରଣ
ରାଜାମନ୍ତ୍ରୀ ଏକାନ୍ତରେ ହୋଇଲେ ମିଳନ ।
ମନ୍ତ୍ରୀ ବିଚାରେ କହିଲେ ହେବ ସତ୍ୟଭଗ୍ନ
ଏଣେ ରାଜା ରକ୍ଷା କଲେ ହେବ ମହାପୁଣ୍ୟ ।
ନିଅବକାଶ ସ୍ଥାନରେ ଥାଇ ରାଜା ମନ୍ତ୍ରୀ
ମନ୍ତ୍ରୀ ବୋଇଲାକ ତୁମ୍ଭେ ଶୁଣ ହୋ ନୃପତି ।
ଯାହା ଘଟିଅଛି ତାହା ରଖନ୍ତି ଗୋପନେ
ସତ୍ୟ ଲଙ୍ଘୁଅଛି ଏବେ ତୋ ଜୀବନ ପୁଣ୍ୟେ ।
ଏହା କହି ଯଯାତିର ପାଦରେ ପ୍ରଣମି
ବୋଲଇ ଯେ ଦିନ ପୁତ୍ରେ ହେଲେ ବନଗାମୀ ।
ତୁମ୍ଭେ ଆଜ୍ଞାଦେଲ ମୋତେ ଆହେ ନରସାଇଁ
ପୁତ୍ରମାନଙ୍କର ସଙ୍ଗେ ଯାଅ ବେଗ ହୋଇ ।
ତୁମ୍ଭ ଆଜ୍ଞାକ୍ରମେ ମୁହିଁ ଚଳିଲି ଗହଣେ
ତୁମ୍ଭ ପୁତ୍ରଙ୍କୁ ଭେଟିଲି ଯାଇ ଘୋରବନେ ।
ଆହନିକ କାଳେ ମୋତେ କଲେ ସେ କଟାଳ
ହାଣିବେ ବୋଲିଣ ସେହୁ ଧଇଲେ ମୋ ବାଳ

ଶିର ଛେଦିବାକୁ ଯହୁଁ କରିଲେ ସେ ଇଚ୍ଛା
ବିକଳେ ବୋଇଲି ଦେବ ମୋତେ କର ରକ୍ଷା ।
ସତ୍ୟ କରାଇ ବୋଇଲେ ତୋତେ ନ ମାରିବୁ
ନୃପେ ମରାଇ ଆମ୍ଭଙ୍କୁ ରାଜା କରାଇବୁ ।
ରାଜ୍ୟଧର ଅଂଶେ ଜନ୍ମି ନ ହୋଇଲୁ କିଛି
ଆମ୍ଭେ ବୃଦ୍ଧହେଲୁ ପିତା ରାଜତ୍ୱ କରୁଛି ।
ଯଯାତି ମରାଇ ବେଗେ କରାଇବୁ ରାଜା
ବହୁତ ସମ୍ମାରେ ତୋତେ କରାଇବୁ ପୂଜା ।
ସ୍ୱାମୀ ସତ୍ୟ କଲି ମୁହିଁ ପ୍ରାଣର ବିକଳେ
ପ୍ରମାଦ ଚିନ୍ତିବି କାହୁଁ ତୋ ପାଦକମଳେ ।
ଦୁର୍ଭାର କୁମାର ତୋତେ ମାରି କଲେ ଇଚ୍ଛା
ଯେଉଁରୂପେ ପାର ସ୍ୱାମୀ ତୁମ୍ଭେ ହୁଅ ରକ୍ଷା ।
ସ୍ୱାମୀ ହେ ତୁମ୍ଭ ବିଷୟ ଗୁଣି ଗୁଣି ହୃଦେ
ତହୁଁ କ୍ଷୀଣ କଲି ପଡ଼ି ବିଷମ ପ୍ରମାଦେ ।
ଏହା କହି ମନ୍ତ୍ରୀବର ଗଲେ ନିକେତନ
ପୁତ୍ରଙ୍କର ମୁଖ ଚାହିଁ ବୋଲନ୍ତି ରାଜନ ।
ପୁଷ୍ୟା ଅଭିଷେକ ଦିନ ମାରିବ କିପାଇଁ
ଆଜି ରାଜ୍ୟ ଘେନ କହି ପାଶରେ ବସାଇ ।
ପାତ୍ରମନ୍ତ୍ରୀ ପାରିଦଣ୍ଡ ଆଣିଲେ ହକାରି
ବୋଇଲେ ସେ ସର୍ବେ ଶୁଣ ମନଯୋଗ କରି ।
ରାଜତ୍ୱ କରିଲି ମୁହିଁ ହୋଇ ସୁଖଭୋଗୀ
ଚତୁର୍ଥ ବୟସ ମୋର ବେଭାରେ ମୁଁ ଯୋଗୀ ।
ଏହି ଯେ ପୁରୁ ପ୍ରବୀର ମୋର ପୁତ୍ର ବେନି
ତୁମ୍ଭେ ରାଜତ୍ୱ କରାଅ ବେନି ପୁତ୍ର ଘେନି ।
ସମୟରେ ରାଜତ୍ୱ ମୁଁ କଲି ସତ୍ୟଯୁଗେ
ତ୍ରେତାଯୁଗ ଗଲା ସୋମବଂଶ ମୋର ଭାଗେ
ସତ୍ୟ ଲକ୍ଷେ ସହସ୍ରେକ ବର୍ଷ ଭୋଗକଲି
ବାରଲକ୍ଷ ଛୟାଣୋଇ ତ୍ରେତାରେ ରହିଲି ।
ଲକ୍ଷେବର୍ଷ ଦ୍ୱାପରରେ ଗଲା ଭୋଗ ହୋଇ
ସସାଗରା ସପ୍ତଦ୍ୱୀପ ସାଧ କଲି ମୁହିଁ ।
ରାଜ୍ୟରକ୍ଷା ପାଇଁ ଦୁଷ୍ଟଦାନବ ବିନାଶି
ତେଣୁ ହୋଇଛି ବହୁତ ମୁହିଁ ହତ୍ୟାଦୋଷୀ ।
ଅନେକ ଯେ ହତ୍ୟାଦୋଷ ଥିବାରୁ ଶରୀରେ
ଭ୍ରମଣ କରିବି ଏବେ ନାନାଦି ତୀର୍ଥରେ ।
ପୁରୁ ପ୍ରବୀର ପୁତ୍ରଙ୍କୁ ଥାଇ କଲେ ରାଜା
ଜମ୍ବୁଦ୍ୱୀପ ଭ୍ରତଖଣ୍ଡେ କରାଇଲେ ପୂଜା ।
ତହୁଁ ଦଣ୍ଡ କମଣ୍ଡଳୁ କକ୍ଷା କଉପୀନେ
ଚଳନ୍ତି ଯଯାତିରାଜା ବ୍ୟାସ ତପସ୍ଥାନେ ।
ମନ୍ତ୍ରୀ ବୋଇଲା ହେ ଦେବ ଶୁଣ ମନଦେଇ
ଯଯାତି ରାଜ୍ୟ ତେଜିଲେ ନିଜ ପ୍ରାଣ ପାଇଁ ।

ଦୁଇଭାଇ ଦୁଇଖଣ୍ଡେ ରାଜତ୍ୱ କରିଲେ
ଲକ୍ଷେ ସତଷଠି ବର୍ଷ ଜୀବିତ ରହିଲେ ।
ନିଜେ ପ୍ରାଣତ୍ୟାଗୀ ହେଲେ କାଳର ପ୍ରଭାବେ
ଦୂତ ନିଅନ୍ତେ ବିଚାର କଲେ ଧର୍ମଦେବେ ।
ନାଶକର ବୋଲେ ତୁମ୍ଭେ ଅଟ ସୋମବଂଶୀ
ବହୁ ପୁଣ୍ୟକରି ସୁଦ୍ଧା ପିତୃଦୋଷେ ଦୋଷୀ ।
ପିତୃବଧ କରିବାକୁ ତୁମ୍ଭେ କଲ ଇଚ୍ଛା
ପିତା ସମ୍ପଦ ହରଣେ ବଳାଇଲ ବାଞ୍ଛା ।
ମହାଗୁରୁ ମାରିବାକୁ ହେଲ ଅଭିଳାଷୀ
ଏବେ ଜୀର୍ଣ୍ଣକୂପେ ପଡ଼ି ହେଉଥାଅ ଧ୍ୱଂସି ।
କରାଳ ବିକରାଳ ଯେ ବେନି ସେନାପତି
ଦୁହିଁଙ୍କର କେଶ ଯାଇ ଧଇଲେ ତଡତି ।
ଧର୍ମଲୋକ ବୋଲେ ସୋମବଂଶ ଅଧିକାରୀ
ମୋକ୍ଷର କାରଣ କିମ୍ପା ନ କହୁ ବିଚାରି ।
କେତେକାଳ ପରେ ଏହୁ ହୋଇବେ ମୁକତି
ପ୍ରତିବାକ୍ୟ କହ କିନା ଯମ ନରପତି ।
କୃତାନ୍ତକ ଦଇବତ ବିଚାରି କହିଲା
ବଡ଼ ଦ୍ରୋହ କଲେ ଏହୁ କାରଣ ନୋହିଲା ।
ମନୁ ସାନନ୍ଦ ବୋଲିଣ ଏହାଙ୍କ ସନ୍ତତି
ତା ତହୁଁ ଦିଲୀପ ନାମେ ହେବ ଉତପତ୍ତି ।
ଦିଲୀପ ସୁତ ଦୁଷ୍ମନ୍ତ ହୋଇବ ଜନମ
ଦୁଷ୍ମନ୍ତ ସୁତ ଭରତ ହେବ ତାର ନାମ ।
ଭରତଠାରୁ ଭୂମନ୍ୟୁ ଜନମ ହୋଇବ
ଭୂମନ୍ୟୁସୁତ ବିରଥ ନାମକୁ ବହିବ ।
ବିରଥ ନନ୍ଦନ ପୁଣି ହୋଇବ ଭୂରଥ
ଶମ୍ଭୁରାଣ ନାମେ ଏକ ହେବ ତାର ସୁତ ।
ଶମ୍ଭୁରାଣ ପୁତ୍ର ହେବ କୁରୁ ନରପତି
ପାର୍ଥିବ ନାମେଣ ପୁତ୍ର ହେବ ଉତପତି ।
ପାର୍ଥିବ ନନ୍ଦନ ନାମେ ହୋଇବେ ଶାନ୍ତନୁ
ଚିତ୍ର ବିଚିତ୍ରବୀର୍ଯ୍ୟ ଯେ ଏହାଙ୍କର ସୂନୁ ।
ଯାଙ୍କଠାରୁ ଧୃତରାଷ୍ଟ୍ର ପଣ୍ଡୁ ହେବେ ଜାତ
ପଣ୍ଡୁ ବ୍ରହ୍ମହତ୍ୟା ଦୋଷେ ହୋଇବେ ଦୂଷିତ ।
ପଣ୍ଡୁର ନନ୍ଦନ ହେବ ଯୁଧିଷ୍ଠିର ରାଣ
ପିତାପାଇଁ ରାଜସୂୟ କରିବ ସେ ପୁଣ ।
ତାହାଙ୍କର ମହାଯଜ୍ଞ ଆରୋପଣ କାଳେ
ସତାଇଶ ବଂଶ ପାପ ହରିବ ସେବେଳେ ।
କାଳିଞ୍ଜନ କାଳଧ୍ୱଂସ ଦୁଇ ନାମ ଧରି
ଖଟିବ ମହାଯଜ୍ଞକୁ ଯାଇଣ ତାଙ୍କରି ।
ସେ ମହାଯଜ୍ଞକୁ ତୁମ୍ଭେ ନୟନରେ ଚାହିଁ
ତେବେ ଯାଇ ସର୍ବପାପ ଯିବ ଧ୍ୱଂସ ହୋଇ ।

ସହଦେବ କହିଲେକ ଯୁଧିଷ୍ଠିର ପାଶ
ପୁରୁ ପ୍ରବୀର ଅଟନ୍ତି ଆମ୍ଭ ପୂର୍ବବଂଶ ।
ମହାରାଜସୂୟ ଯଜ୍ଞ ଆରୋପଣ ଶୁଣି
ଜୀର୍ଣ୍ଣକୂପୁଁ ନାଶକର ଉଦ୍ଧାରିଣ ଆଣି ।
ଯୁଧିଷ୍ଠିଦେବ ବୋଇଲେ ସହଦେବ ଯାଯା
ବଂଶର ପିତୃଲୋକଙ୍କୁ କର ଯାଇ ପୂଜା ।
ଅନେକ ପୂଜା ତାହାଙ୍କୁ କରିଲେ ଯୁଧିଷ୍ଠି
ଗତ ଦୋଷ ନିମନ୍ତେ ସେ ରାଜସୂୟ ଖଟି ।
ଶୁଣ ହେ ପଣ୍ଡିତ ଜନେ ସୁପୁତ୍ରଙ୍କ କଥା
ପିତୃଲୋକେ ଖଟିଥାନ୍ତି ହୋଇଣ ବଶ୍ୟତା ।
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧାରୀ
ଜୟ ହେ ଚକାନୟନ ଦୁଃଖୀ ଦୁଃଖହାରୀ ।
ଜୟ ବସୁଦେବ ସୁତ ଜୟ ବାସୁଦେବ
ଶରଣ ରକ୍ଷଣ ନାଥ ରାଧିକା ବଲ୍ଲଭ ।
କର ହେ ଉଦ୍ଧାର ମୋତେ ଡାକୁଛି ଆରତେ
ଭାବଇ ଶାରଳା ଦାସ ସଦା ହୃଦଗତେ ।

■

## ମୟଦାନବ ସଭାରେ ଯୁଧିଷ୍ଠିରଙ୍କର ଉପବେଶନ, ଯଜ୍ଞର ଅନୁକୂଳ ଓ ଯେ ଯେଉଁ କାର୍ଯ୍ୟରେ ଦକ୍ଷ ତାହାଙ୍କୁ ସେହି ସେହି କାର୍ଯ୍ୟରେ ନିୟୋଗ ଏବଂ ଶାଢ଼ୀ ପ୍ରଦାନ

ପୁଣି ପଚାରିଲେ ଯାଇ ମନୁ ଯୁଗପତି
ଅଗସ୍ତିଙ୍କ ପଦ୍ମପାଦେ କରିଣ ଭକତି ।
ରାଜସୂୟ ମହାଯଜ୍ଞ କରିଲେ ସୂଚନା
ପୁଣି କେଉଁ କୃତ୍ୟ କଲେ କୃଷ୍ଣ ମହାମନା ।
ସେହି କଥା ଶୁଣି ତନୁ କରିବି ମୁକତ
କହନ୍ତି ଅଗସ୍ତି ମୁନି ଶୁଣ ନରନାଥ ।
ମୟ ଦାନବଙ୍କୁ ଧ୍ୟାନେ ଚିନ୍ତିଲେ ଅଚ୍ୟୁତ
ମହାସଭା ଘେନି ଇନ୍ଦ୍ରପ୍ରସ୍ଥେ ଉପସ୍ଥିତ ।
ପଞ୍ଚାଶ ସେନା ଆଣନ୍ତି ତାକୁ ମୁଣ୍ଡେ ଧରି
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସର୍ବ ଦଣ୍ଡଧାରୀ ।
ଶ୍ରୀରାଜସୂୟଯଜ୍ଞ ସଭା ଐଶାନ୍ୟର ଆଡେ
ଗଙ୍ଗାକୂଳସ୍ଥିତ ଧର୍ମଗିରି ପଛବାଡେ ।
ଆକାଶ ସଭାକୁ ଛାୟାମଣ୍ଡପର ତଳେ
ଥୋଇଲା ମୟଦାନବ ଅତି ଶୁଭବେଳେ ।
ଦେଖି ମୋହିତ ହୋଇଲେ ସର୍ବ ନରପତି
ବୋଇଲେ ଧନ୍ୟ ଯୁଧିଷ୍ଠି ତୋ ଆଶ୍ଚର୍ଯ୍ୟ ରୀତି
ତୋର ମହିମାରୁ ପୁଣି ଆମ୍ଭ ପୁଣ୍ୟବଳେ
ଶ୍ରବଣେ ଯା ଶୁଣିଥିଲୁ ଦେଖିଲୁ ତା ଡୋଳେ ।
ସତ୍ୟ ତ୍ରେତୟା ଦ୍ୱାପର କଳି ଆଦିକରି
ଏହି ଚାରିଯୁଗେ ହୋଇ ନ ଥିଲା ଏପରି ।
ମନୁଷ୍ୟ ଦେଖିବା କଥା କିମ୍ପାଇଁ ପଚାର
ଦେବଗଣଙ୍କୁ ଏ ସଭା ଅଟେ ଅଗୋଚର ।
ଆଶ୍ଚର୍ଯ୍ୟ ହୋଇ ବୋଲନ୍ତି ଦେଖି ଧର୍ମରାୟ
ମୋତେ ଅଗୋଚର ହରି କଲେ ଯେ ବିଷୟ ।
ହସ୍ତ ଯୋଡ଼ିଣ ବୋଲନ୍ତି ପ୍ରଭୁ ଚକ୍ରପାଣି
ଛାୟାମଣ୍ଡପକୁ ଯିବେ ସର୍ବ ନୃପମଣି ।
ମୟଦାନବ ସଭାରେ ବସିବେ ଆପଣ
ତହିଁ ଦର୍ଶନ କରିବେ ସର୍ବ ରାଜାଗଣ ।
ଦ୍ରୁପଦନନ୍ଦିନୀ ଥିବ ଦେବ ତୋର କୋଳେ
ଦ୍ରୁପଦର ସୁତ ଥିବ ପାବଚ୍ଛର ତଳେ ।
ତହିଁ ପାବଚ୍ଛର ତଳେ ସହଦେବ ମନ୍ତ୍ରୀ
ଭୂତ ଭବିଷ୍ୟତ କହୁଥିବ ଦିବାରାତି ।
ତା ପାବଚ୍ଛ ତଳେ ଥିବ ନକୁଳ କୁମର
ଅଭିଷେକ ଯୋଗାଡ଼କୁ ଧରିଥିବ କର ।
ତା ପାବଚ୍ଛ ତଳେ ଥିବ ବୀର ଫାଲଗୁନି
ଭୁଜେ ଥିବ ଲକ୍ଷେବଳ ଗାଣ୍ଡିବକୁ ଘେନି ।
ତୋତେ ବା ଯେବଣ ରାଜା ହେବ ଅମାନିତ
କର୍ଣ୍ଣକଟାରିରେ ତାକୁ ଛେଦିବ ତୁରିତ ।
ଉପରେ ତିନି ପାବଚ୍ଛ ତଳର ତିନିରେ
ଦର୍ଶନ କରାଇବି ମୁଁ ରାଜାଙ୍କୁ ସେଠାରେ ।
ସ୍ୱାମୀ ଏ ବିଚିତ୍ର ସଭା ଦାନବ ନିର୍ମାଣ
ଶତ୍ରୁର କଣ୍ଟକ ବୋଲି ଏହାକୁଟି ଜାଣ ।
ସ୍ୱାମୀ ଏହା ବାଡ଼େ ଚିତ୍ର ବିଚିତ୍ର ଲେଖନ
ଜଳସ୍ଫଟିକ ପଥର ଏକଇ ନିର୍ମାଣ ।
ବୋଲନ୍ତି ଧର୍ମନନ୍ଦନ କୃଷ୍ଣଙ୍କ ବଚନେ
କେତେବେଳେ ଦେଖାହେବେ ସର୍ବ ରାଜାମାନେ
ଗୋବିନ୍ଦ ବୋଇଲେ ଶାଢ଼ୀ ଦ୍ରୋଣେ ଦିଅ ଧରି
ବ୍ରହ୍ମ କ୍ଷତ୍ରୀଙ୍କ ଅନ୍ନରେ ହେଉ ଅଧିକାରୀ ।
ନାରାୟଣଙ୍କ ବଚନେ ଦେବ ଧର୍ମସୁତ
ଶ୍ରୀହସ୍ତରେ ଅର୍ଘ୍ୟ ଘେନି ଚଳିଲେ ତୁରିତ ।
ରତ୍ନମଣିର ମୁକୁଟ ବାହୁଟି କଙ୍କଣ
ଚତୁଃସମ ନାନା ପୁଷ୍ପ ପଟ୍ଟବସ୍ତ୍ରମାନ ।
ନାନା ଆଭରଣେ ଦ୍ରୋଣ ପାଦପୂଜା କରି
ଶତ ପ୍ରଣିପାତ ହେଲେ ପାଦରେ ତାଙ୍କରି ।
ବୋଇଲେ ତୁମ୍ଭେ ମୋ ଗୁରୁ ଦ୍ୱିଜକୁଳେ ମୁଖ୍ୟ
ବ୍ରାହ୍ମଣଙ୍କ ଛତ୍ରଶାଳେ ହୁଅନ୍ତୁ ପରୀକ୍ଷ ।
କୃପାଚାର୍ଯ୍ୟ ଅଶ୍ୱଥ୍ମା ତାହାଙ୍କ ସହିତେ
ଛତ୍ରଶାଳକୁ ବିଜୟ କଲେ ତୋଷଚିତ୍ତେ ।

ଦ୍ରୋଣ ସହିତରେ ବିଜେ କଲେ ବାସୁଦେବେ
ରୋଷଶାଳକୁ ଦେଖାନ୍ତି ନେଇ ଠାବେ ଠାବେ
ଚୁଲିକାରେ ଶଏ ପଖା ଦ୍ୱିଜ ତିନି ତିନି
ନଉତିକରେ ତ୍ରିବିଧ ରାନ୍ଧଣାକୁ ଘେନି ।
ଏହିରୂପେ ଦେଖାଇଲେ ନେଇ ଦାମୋଦର
ସୁବର୍ଣ୍ଣ ଯୋଗାଡ ପୂର୍ଣ୍ଣ ସକଳ ମନ୍ଦିର ।
ନଉତି କୁଣ୍ଡାଇ ପୁଣି ତେଲୁଣୀ ମାଠିଆ
ସବୁ ସୁବର୍ଣ୍ଣେ ନିର୍ମାଣ କଲେ ଯଦୁନାହା ।
ଦେଖିଣ ଆଶ୍ଚର୍ଯ୍ୟ ଚିତ୍ତ ହେଲେ ଦ୍ରୋଣଗୁରୁ
ବୋଇଲେ ଜଗତ୍ତାରଣ ତୁହି ଏକା କରୁ ।
ଦ୍ରୋଣଙ୍କର ମୁଖଚାହିଁ ବଦନ୍ତି କେଶବ
ରୋଷାଇ ବିଧିବିଧାନ ଶୁଣ ଏବେ ସର୍ବ ।
ଗୌରୀ ଶୌରୀ ନଳବିଧି ଏହି ତିନି ପ୍ରତି
ଦୋହରା ପ୍ରସନ୍ନେ ସବୁ ଅମୃତ ହୁଅନ୍ତି ।
ଏହା କହି ଧ୍ୟାନ କଲେ ଦୋହରା ବହନି
ଦ୍ୱିଜରୂପେ ବିଜେ କଲେ ଅମୃତକୁ ଘେନି ।
ପୁଣି ସୁମରଣା କଲେ ପ୍ରସନ୍ନେ ହିଙ୍ଗୁଳା
ବିଜେକଲେ ମାହେଶ୍ୱରୀ ଦେବୀ ମହାଖଳା ।
ସେବନ୍ତି ଶ୍ରୀନାରାୟଣ ହିଙ୍ଗୁଳାର ପାଦେ
ବୋଇଲେ ଏ ମହାଯଜ୍ଞ ହୁଏ ତୋ ପ୍ରସାଦେ ।
ପ୍ରସନ୍ନ ହେଲେ ହିଙ୍ଗୁଳା କୃଷ୍ଣଙ୍କ ବଚନେ
ବୋଲେ ଯଜ୍ଞ ଶେଷଯାଏ ଥିବି ଏହି ସ୍ଥାନେ ।
ଅବାଟିଲା ଅକାଟିଲା ଯୋଗାଡ଼ ସହିତେ
ସୁଧା ହେଉଥିବ ପାକ କରିବ ଯେ ଯେତେ ।
ଗଉରୀ ଶଉରୀ ନଳ ରାନ୍ଧଣାର ବିଧି
ଦୋହରା ପ୍ରସନ୍ନେ ହେବ ସେ ସମସ୍ତ ସିଦ୍ଧି ।
ଗୌରୀ ଯେହ୍ନେ ପାଳିକରି ଦିଅନ୍ତି ଶିବଙ୍କୁ
ସରସ୍ୱତୀ ଯେଉଁରୂପେ ଦ୍ୟନ୍ତି ଶ୍ରୀବିଷ୍ଣୁଙ୍କୁ ।
ସେହିପରି ସମ୍ପାଦିଲେ ସଭା ରାଜସୂୟେ
ଯାହା ପ୍ରସନ୍ନରେ ପ୍ରଭୁ କରେ ଦେବରାୟେ ।
ବଦନ୍ତି ଶ୍ରୀ ଜଗନ୍ନାଥ ଯୁଧିଷ୍ଠି ଅଗ୍ରତେ
ସ୍ୱାମୀ ଭୀଷ୍ମେ ଶାଢ଼ୀ ଦେବେ ସଭାର ସାକ୍ଷାତେ
ସେହି ଛତ୍ରଶାଳେ ଯାଇ ହୁଅନ୍ତୁ ଅଧିକାରୀ
ସମସ୍ତ ରାନ୍ଧଣାମାନ କରନ୍ତୁ ବିଚାରି ।
କ୍ଷତ୍ରୀବର୍ଗଛନ୍ତି ସର୍ବରାଜାଙ୍କ ସଇନି
ଭୀଷ୍ମ ସମ୍ପାଦିଲେ ଯାଙ୍କୁ ଦିବସ ରଜନୀ ।
ଶୁଣି ଶାଢ଼ୀଘେନି ଧର୍ମ ଅଇଲେ ତୁରିତେ
ଗାଙ୍ଗେୟ ବାନ୍ଧିଲେ ନେଇ ତାହା ନିଜ ମାଥେ ।
ଛତ୍ରଶାଳାରେ ପରିଛା ହେଲେ ଭୀଷ୍ମରଥୀ
ମନଜାଣି ଅନ୍ନ ଦେବ କହନ୍ତି ଶ୍ରୀପତି ।
ଜଣେ ଯେବେ ଅନ୍ନାଭାବେ ତୃପତ ନୋହିବ
ତେବେ ପଣ୍ଡୁ ବ୍ରହ୍ମହତ୍ୟା ପାର ନ ହୋଇବ ।
ଏଥିରୁ ଜଣେ ଯଦ୍ୟପି ନ ପାଇବ ଅନ୍ନ
ତେବେ ମସ୍ତକ ଛେଦିବି ମୋ ଦୃଢ଼ ବଚନ ।
ଶାଢ଼ୀପାଇ ଭୀଷ୍ମଦେବ ଗଲେ ଛତ୍ରଶାଳେ
ଦଶଲକ୍ଷ ସୂପକାର ଏହାଙ୍କର ତୁଲେ ।
ତ୍ରିବିଧ ଭିଆଣ କରି ଦେବ ଦେଲେ ସଞ୍ଚି
ଜଣେ କେହି କେଉଁରୂପେ ନ ପାଇବ ବାଛି ।
ସଭିଙ୍କୁ ଶାଢ଼ୀ ଭ୍ୟାଇଲେ ଯୁଧିଷ୍ଠିଙ୍କ ହାତେ
ଭୂରିଶ୍ରବା ସୋମଦତ୍ତ ବାହ୍ଲିକ ସହିତେ ।
ଉତ୍ତମ ରାଜବଂଶୀୟ ଯୋଦ୍ଧା ଅଶୀ ଖର୍ବ
ଏମାନଙ୍କୁ ଘେନି ତୁମ୍ଭେ ଅନ୍ନ ପରଷିବ ।
ଯେହୁ ଯେତେବେଳେ ଆସି ମାଗୁଥିବ ଅନ୍ନ
ତୃପ୍ତକରି ଦେଉଥିବ ସମସ୍ତ ରାଜନ ।
ଷୋଳସସ୍ର ଗୋପୀ ଯେହୁ ଆପଣାର ସଙ୍ଗ
ସେମାନଙ୍କୁ ଆଜ୍ଞାଦେଲେ ଦେବ ଶିରୀଅଙ୍ଗ ।
ଗୋଦୋହନ କରି ଭାରେ ସେ କ୍ଷୀର ସମସ୍ତ
ଛତ୍ରଶାଳେ ନେଇ ତାହା ଦେଉଥିବ ନିତ୍ୟ ।
ଏହା କହି ଶାଢ଼ୀ ଦେଲେ ଶ୍ରୀହସ୍ତେ ଶ୍ରୀହରି
ଆଣନ୍ତି ଗୋପାଳମାନେ ଦୁଗ୍ଧଭାର କରି ।
ଏକ ରୋଷଘରେ ଦୁଗ୍ଧ ସହସ୍ରେକ ଭାର
ରୋଷଘରେ ଅଛି ପଦ୍ମ ଆବର ପନ୍ଦର ।
ଘରକେ ସହସ୍ର ଭାର କ୍ଷୀର ଦେଲେ ଆଣି
ପରାର୍ଦ୍ଧେ ପନ୍ଦର ଖର୍ବ ଲେଖା ପରମାଣି ।
ଶତଧେନୁ ଦୋହନରେ ଭାରେକ ଉଠଇ
ଏମନ୍ତେ ସସ୍ରେଭାରକୁ ଅଟେ ଲକ୍ଷେ ଗାଈ ।
ଦଶଲକ୍ଷ ପନ୍ଦର ଯେ ମେବଛ ସମ୍ପାଦେ
ଦଶକ୍ଷୌଣୀ ପଞ୍ଚଦଶ ପଦ୍ମଧେନୁ ହାଦେ ।
ଲେଖ ହୋ ସୁବୁଦ୍ଧି ଜ୍ଞାନୀ ଆବର ପଣ୍ଡିତେ
ରାନ୍ଧଣାର ଯୋଗାଡ଼କୁ ଦୁଗ୍ଧ ହେଲା ଯେତେ
ତେତିଶ ମହାଖୂଡ଼ ଯେ ଗାଈଙ୍କର ମେଳ
ଏକାଦଶ ପଦ୍ମ ପୁଣି କାହିଁକି ଗୋପାଳ ।
କଜ୍ଜଳୀ କଳା ଶାମଳୀ କେହି ବା ଧବଳ
ଦ୍ୱିତୀୟ ସମୁଦ୍ର ପ୍ରାୟେ ଦିଶନ୍ତି ଗୋକୁଳ ।
ପୁଣି ଦଶ ଅଇବ୍ରତ ଭାର ପରିମାଣି
ଦଧି ଦୁଗ୍ଧ ଅଧାମ ଯେ ପର୍ଷିବାକୁ ଆଣି ।
ଏହି ରୂପେ କହିବି ମୁଁ କେତେ ପରିମାଣି
ଲେଖିବାକୁ ଶକ୍ତି କାହିଁ ମୁହିଁ ମୂର୍ଖ ପ୍ରାଣୀ ।
ଲକ୍ଷେ ରାଜାଙ୍କର ଅଟେ ଅସଂଖ୍ୟ ସଇନି
ସମ୍ପର୍ବରେ ଆଣିଛନ୍ତି ଥାଟର ପଲାଣି ।

ଗଙ୍ଗା ଯମୁନାର ମଧ୍ୟେ ମଣ୍ଡପାଦି ରଚି
ବାରଯୂଣ ଦୀର୍ଘ ପ୍ରତି କରି ଯହିଁ ସଞ୍ଚି ।
ସେହି ଭୂମି ଅଟଇ ସେ ଭୋଜନର ସ୍ଥଳୀ
କିଞ୍ଚିତେ ସର୍ଜନା କଲେ ଯାହା ବନମାଳୀ ।
କିରାତ ରାଜା ଅଟଇ ବନ୍ୟ ଅଧିପତି
ଗଙ୍ଗାକୂଳେ କାଠ ଆଣି କୁଢ଼ାଏ ସେ ନିତି ।
ହରିଣ ବରାହ ଗଣ୍ଡା ସମ୍ବରାଦି ଜୀବ
ବହୁଯୋଦ୍ଧା ଘେନି ଆସେ କିରାତେଶ ଦେବ ।
ନିଷାଦ ରାଜା ଅଟଇ ଜାତିରେ କୈବର୍ତ୍ତ
ଗଙ୍ଗାରେ ନାବ ଚଳାଏ ମର୍ତ୍ତ୍ୟଭୂତ ମର୍ତ୍ତ୍ୟଭୂତ ।
ଆକାଶ ଗଙ୍ଗାରେ କୃଷ୍ଣ ଆଜ୍ଞା ପରମାଣେ
ନାବ ଲାଗେ ଯାଇ ଇନ୍ଦ୍ର ନନ୍ଦନର ବନେ ।
ଲୋକାଲୋକ ବୋଲି ଅଛି ଯେଉଁ ପରବତ
ତାହା ପଛରେ ଲଗାନ୍ତି ନେଇ କଇବର୍ତ୍ତ ।
ଇନ୍ଦ୍ରଙ୍କର ନବଲକ୍ଷ ତୋଟାଳିଆମାନେ
ତକ୍ଷଣେ ନାବରେ ଆଣି ପୂରାନ୍ତି ବହନେ ।
ନଡ଼ିଆ ପଣସ ରମ୍ଭା ପୁଣି ଚୂତଫଳ
ଟଭା ନାରଙ୍ଗ ଜମ୍ବିଳ ଲେମ୍ବୁ କଣ୍ଟିହୋଳ ।
ପୁଣି ବ୍ୟଞ୍ଜନ ଯୋଗାଡ଼ ସର୍ବ ପଦାର୍ଥକୁ
ଇନ୍ଦ୍ର ତୋଟାଳିଆ ଦ୍ୟନ୍ତି କୈବର୍ତ୍ତ ରାଜାକୁ ।
ନଖର୍ବ ନବଅର୍ବୁଦ ନାବମାନ ଭିଡ଼ି
ଇନ୍ଦ୍ରପ୍ରସ୍ଥେ ପ୍ରବେଶନ୍ତି ସେ ନାବରେ ଚଢ଼ି ।
ନାବେ ଫଳମାନ ଭରି ଆଣଇ ସୁବାହୁ
ଆଳୁ ସାରୁ କଦଳୀ ଯେ ନାନାଜାତି ତହୁଁ ।
ନାରାୟଣଙ୍କ ବଚନେ ହିଙ୍ଗୁଳା ପ୍ରସନ୍ନେ
କ୍ଷଣକେ ସିଝଇ ସବୁ ଅମୃତ ସମାନେ ।
ପରିବା ପିଠଉ ଲୁଣ ବେସର ସଜାଡ଼ି
ଘୃତଯୋଗେ ଏକାବେଳେ ଦିଅନ୍ତି ଯୋଗାଡ଼ି ।
ଭାଣ୍ଡେ ପୂରାଇ ତକ୍ଷଣେ ଚୁଲ୍ଲୀରେ ଜାଳିଲେ
କ୍ଷଣକେ ଅମୃତ ହୁଏ ଦୋହରା ଚିନ୍ତିଲେ ।
ଏ ରାନ୍ଧଣା ଗୌରୀ ଶୌରୀ ପୁଣି ନଳ ବିଧି
ବିନା ପ୍ରୟେ ପାକ ହୁଏ ହୋଇଣ ସଂସିଦ୍ଧି ।
ମକର ମାସର କୃଷ୍ଣପକ୍ଷ ଯେ ଚଉଠି
ଉତ୍ତରାଫାଲ୍ଗୁନୀର ପାଞ୍ଚ ଯେ ଘଡ଼ିଏ ।
ଇନ୍ଦ୍ରବାର ଆୟୁଷ୍ମାନ ଯୋଗ ତିନିଲତା
କିଂସ୍ତୁଘ୍ନ ନାମେ କରଣ ଲଗ୍ନଘେରେ ସ୍ଥିତା ।
ପଞ୍ଚମରେ ଚନ୍ଦ୍ର ଏକାଦଶ ବୃହସ୍ପତି
ଅଧ୍ୟକ୍ଷକାଳେ ବାରୁଣୀ ଅଷ୍ଟମରେ ସ୍ଥିତି ।
କର୍ମଘରେ ଦଇବତ ଜନ୍ମଘରେ ଶଶୀ
ଘଟ ଅନୁକୂଳ କଲେ ବ୍ୟାସ ମହାଋଷି ।

ନିତ୍ୟକର୍ମ ଆଦିସାରି ନୃପ ଦେବେଧର୍ମ
ବିଜୟ କରିଲେ ଯାଇ ଯଜ୍ଞର ଆଶ୍ରମ ।
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ୍ୟ ପୁରୋହିତ
କୃଷ୍ଣାଜିନରେ ବସିଲେ ଯୁଧିଷ୍ଠି ଅଗ୍ରତ ।
କୁଶହସ୍ତ ହୋଇକରି ଦେବ ଯୁଧିଷ୍ଠିର
ସେ ମଧ ବସିଲେ କୃଷ୍ଣାଜିନର ଉପର ।
ସୁବର୍ଣ୍ଣ ଘଟେ ପୂରାଇ ସର୍ବତୀର୍ଥ ପାଣି
ପୁଷ୍କର ଦେବତା ତାହା ଯୋଗାଇଲେ ଆଣି ।
ଡାହାଣାବର୍ତ୍ତକ ଶଙ୍ଖେ ନେଇ ଯବତିଳ
ସଂକଳ୍ପ କଲେ ପ୍ରୋହିତ ବାକ୍ୟ ଦେଶକାଳ ।
ଯଥାବାକ୍ୟ ବେଦଶାସ୍ତ୍ର ବିଧିର ପ୍ରମାଣେ
ବିଶ୍ୱଦେବା ସନକାଦି ବ୍ରାହ୍ମଣ ବରଣେ ।
ଅଗ୍ନିକୁ ବରଣ କଲେ ତହିଁ ମହାଯୋଗେ
ଆସିଣ ସଂକଳ୍ପ କଲେ ଯଥା ଶାସ୍ତ୍ରଯୋଗେ ।
ବରଣ ସାରି ଆସ୍ଥାନେ ବିଜେ କଲେ ଧର୍ମ
ଛାମୁରେ ଆସି ଜଣାନ୍ତି ଶ୍ରୀପୁରୁଷୋତ୍ତମ ।
ସ୍ୱାମୀ ଚତୁର୍ଦ୍ଦିଗ ବାହି ଅଇଲେ ରାଜନେ
ଦର୍ଶନ କରିବେ ସେହୁ ବହୁ ଅର୍ଥଦାନେ ।
ଅନେକ ସମ୍ପଦ ଘେନି ଦେବ ଧର୍ମରାୟ
ମୟ ଦାନବ ସଭାରେ କରିଲେ ବିଜୟ ।
କୋଳେ ବସାଇଲେ ନେଇ ଦେବୀ ଯାଜ୍ଞସେନୀ
ଅଗ୍ନିରୁ ଜାତ ପଞ୍ଚାଳ ରାଜାର ନନ୍ଦିନୀ ।
ଆକାଶ ଅଭିଷେକର ଯେତେ ଅଳଙ୍କାର
କୁବେର ଭୂଷଣ କଲା ଅଷ୍ଟାଙ୍ଗ ଶରୀର ।
ଅମ୍ଳାନ ବସନ ପୁଣ ଦେବପୁଷ୍ପମାନ
ଯୁଧିଷ୍ଠି ଦେବଙ୍କ ଶିରେ ଦେଲେ ମଘବାନ ।
ଅନେକ ଯେ ଆଭରଣମାନ ଆଣି ଶଚୀ
ଦ୍ରୌପଦୀ ଶରୀରେ ତାହା ନେଇ ଦେଲେ ରଚି
ରାଜାଙ୍କ ଉଠିବାପାଇଁ ସେ ତେର ପାବଛ
ପାବଛ ତଳେ ରହିଲେ ମାଦ୍ରୀଦେବୀ ବସ ।
କରେ ଘେନିଅଛି ଭୂତ ଭବିଷ୍ୟତ ପୋଥି
ଗତ ଆଗତ କହଇ ଉଭା ହୋଇ ତଥି ।
କନକ ଉଦଣ୍ଡ ଛତ୍ର ଧରିଣ ନକୁଳ
ରହି ଅଛଇ ସେ ବେନି ପାବଛର ତଳ ।
ତୃତୀୟ ପାବଛ ତଳେ ବିଜେ ଫାଲଗୁନି
ଅନେକ ବେଶ ଭୂଷଣେ ଗାଣ୍ଡୀବକୁ ଘେନି ।
ଅନନ୍ତ ପଡ଼ିହାରୀର ରୂପେ ଜଗନ୍ନାଥ
ଦଶମ ପାବଛ ଜଳେ ହୋଇଲେ ସେ ସ୍ଥିତ ।
ଦୁର୍ଯ୍ୟୋଧନେ ଶାଢ଼ୀ ଦିଅ ବୋଇଲେ ଶ୍ରୀହରି
ଭଣ୍ଡାର ନାୟକ ହେଉ ଧନେ ଅଧିକାରୀ ।

ଭୂଇଁ ଛୁଇଁଣ ଯୁଧିଷ୍ଠି କର୍ଣ୍ଣେ ଦେଲେ ହସ୍ତ
ବୋଇଲେ ନଷ୍ଟ କରିବ ମୋ ଧନ ସମସ୍ତ ।
ଯଦିଚ ସୋଦର ମୋର ସେ ମାନଗୋବିନ୍ଦ
କାଳେ ଦେଖି ନ ପାରଇ ସୋଦର ସମ୍ପଦ ।
ଅଳ୍ପ ବ୍ୟୟସ୍ଥଳେ ବହୁବ୍ୟୟ ଦେବ କରି
ଭଣ୍ଡାରେ ନ ଥିଲେ ଧନ କେଉଁ କାର୍ଯ୍ୟପାରି ।
ସ୍ୱାମୀ ଅନାଚାରୀ ଭାର୍ଯ୍ୟା ଆଶାହୀନ ଜନ
ଅଭାବ ମଇତ୍ର ପୁଣି ସୁହୃଦ ବିହୀନ ।
ଅବିଶ୍ୱାସୀ ସହୋଦର ହୃଦୟ ଅଚେତା
ଆବର ଦୁର୍ଜନ ଭ୍ରାତା ଅନାଚାରୀ ମାତା ।
ଏତେଙ୍କର ତୁଲେ ହରି ପ୍ରୀତି ନ କରିବା
ଏହାଙ୍କୁ ବିଶ୍ୱାସ କରି ଭାର୍ଯ୍ୟା ନ ଅର୍ପିବା ।
ଏହାଙ୍କର ଗୋଚରରେ ସମର୍ପିଲେ ଧନ
କାର୍ଯ୍ୟଭ୍ରଷ୍ଟ ହୋଇ ଜାଣ ହୁଏ ଅପମାନ ।
ଯୁଧିଷ୍ଠିରଙ୍କର ଏହି ନିଷ୍ଠୁରତା ଶୁଣି
ବିନୟେ ବୋଲନ୍ତି ତହୁଁ ଦେବ ଚକ୍ରପାଣି ।
ସ୍ୱାମୀ ଭଣ୍ଡାରାଧିକାରୀ ହୋଇ ଦୁର୍ଯ୍ୟୋଧନ
ତାର ଶକ୍ୟ ଅନୁସାରେ କରୁ ବିତରଣ ।
ତହିଁକି କିଛି ନ ଭାଳ ଅଛି ଦିବ୍ୟବୁଦ୍ଧି
ପନ୍ନଗ ନାରାୟଣ ତା କରେ ଶଙ୍ଖନିଧି ।
କୃଷ୍ଣ ବଚନେ ଡାକିଲେ ତହୁଁ କାଳିଞ୍ଜନ
ବୋଇଲେ ଛାମୁକୁ ଆଣ ରାଜା ଦୁର୍ଯ୍ୟୋଧନ ।
ଯୁଧିଷ୍ଠିରଙ୍କ ବଚନେ ସେହି ପ୍ରତିହାରୀ
ଆଜ୍ଞାକ୍ରମେ ଚଳେ ଦୁର୍ଯ୍ୟୋଧନଙ୍କୁ ହକାରି ।
ବୋଇଲା ଛାମୁକୁ ଆସ ତୁମ୍ଭେ ଏହିକ୍ଷଣି
ଭଣ୍ଡାର ନାୟକ ହେବ ଆଜ୍ଞା ପରମାଣି ।
ଶୁଣି ଶକୁନି ବଦନ ଚାହେଁ ମହୀପାଳ
କେବଣ ଚରିତ ପ୍ରାୟ ମଣିଲୁ ମାତୁଳ ।
ଶକୁନି ବାଇଲା ଶାଢ଼ୀ ଆଣ ବେଗକରି
ଯୁଧିଷ୍ଠିର କାର୍ଯ୍ୟ ନିଶ୍ଚେଁ ହୋଇ ଅପହାରୀ ।
ଭାରେ ଆଜ୍ଞାଦେଲେ ତାଙ୍କୁ ଦଶଭାର ଦେବୁ
ତା ଭଣ୍ଡାର ଧ୍ୱଂସ ହେବ ତୁ ଯଶ ଅର୍ଜିବୁ ।
ଧନ ଅଭାବରେ ନିଶ୍ଚେଁ ଧର୍ମ ହେବ ହାନୀ
ଭାଜିବ ଏ ମହାଯାଗ ନିଶ୍ଚେଁ ଥାଅ ଘେନି ।
ଶକୁନିର ବଚନରେ ଚଳେ ଦଣ୍ଡଧାରୀ
ଯୁଧିଷ୍ଠି ଛାମୁକୁ ଆସେ ମନେ ମାୟା ଧରି ।
ଶ୍ରୀହସ୍ତେ ଶାଢ଼ୀ ଘେନିବୁ ଦେବେ ଧର୍ମ ସୁତେ
ଦୁର୍ଯ୍ୟୋଧନେ ତିଆରନ୍ତି ପିତୃକାର୍ଯ୍ୟ ଅର୍ଥେ ।
ବୋଲନ୍ତି ରାଜାମାନଙ୍କ ଦରଶନୀ ଯେତେ
ସମସ୍ତ ସମ୍ଭାଳ ବାବୁ ସମର୍ପିଲି ତୋତେ ।
ନାରାୟଣଙ୍କ ଆଜ୍ଞା ହେବ ଯେଉଁମତେ
ବିଚାରିଣ ଧନ ଦେବୁ ଯେ ଭୋଜନମତେ ।
ଯୁଧିଷ୍ଠିଙ୍କର ବଚନେ ସେ ମାନଗୋବିନ୍ଦ
ଅବଧାରୀ ଶାଢ଼ୀ ନେଲା ହୋଇଣ ଆନନ୍ଦ ।
ନବଲକ୍ଷ ଯୋଦ୍ଧା ପୁଣି ରହିଲେ ଗହଣେ
ବାଉନ ଭଣ୍ଡାର ହେଲା ପରିଚାର ପଣେ ।
ମଥାରେ ଶାଢ଼ୀ ବାନ୍ଧିଣ ଦେବ କୁରୁନାଥେ
ଭଣ୍ଡାରକୁ ଆବୋରିଲେ ଆପଣାର ସ୍ୱାର୍ଥେ ।
ଶକୁନି ଗାନ୍ଧାରସେନ ନୃପତିର ବସ୍ଥା
ଅଶ୍ୱମାନଙ୍କର ହାଦେ ହୋଇଲା ପରିଛା ।
ଯୁଧିଷ୍ଠିର ଆଜ୍ଞାକଲେ ଶୁଣ ତୁ ମାତୁଳ
ଅଶ୍ୱବିଦ୍ୟା ଯୋଗେ ଅଶ୍ୱ ଭଲେ ପ୍ରତିପାଳ ।
ଯେତେ ପରମାଣେ ଲାଗେ ଘାସ ଚଣା ବିରି
ସମସ୍ତଙ୍କୁ ଦେବୁ ମାମୁଁ ମନ ତୁଷ୍ଟକରି ।
ମାମୁଁ ମୂଳେ ଦୁର୍ଯ୍ୟୋଧନ ଅଠାଶୋଇ ଭାଇ
ଅଶ୍ୱ ଗଜ ପରୀକ୍ଷକ ହୋଇଲେ ସେ ଯାଇ ।
ଯୁଧିଷ୍ଠିଙ୍କୁ ଜଣାଇଲେ ଶ୍ରୀକୃଷ୍ଣ ଆପଣେ
ଦୁଃଶାସନେ ଶାଢ଼ୀ ଦିଅ ରାତି ବୁଲାପଣେ ।
ଦେବତା ଦୈତ୍ୟ ପିଶାଚ ହେଉଛନ୍ତି ମେଳ
ରାତ୍ରିକାଳରେ ସେ ପୁଣ ନ କରନ୍ତି ଗୋଳ ।
ଦୁର୍ଜନ ପ୍ରକୃତି କାରେ ନ ଥାଏ ପ୍ରତୀକ୍ଷା
ଯାହାର ବଳେ ଏ ନିଶା ହୋଇପାରେ ରକ୍ଷା ।
ତହୁଁ କାଳିଞ୍ଜନ ଆଣେ ଦୁଃଶାକୁ ହକାରି
ଶ୍ରୀହସ୍ତରେ ଶାଢ଼ୀ ଦେଲେ ଧର୍ମ ଅଧିକାରୀ ।
ବୋଇଲେ ଲକ୍ଷେକ ରାଜା ପୁଣି ତାଙ୍କ ବଳ
ଅନୁକ୍ଷଣେ ହେଉଅଛି ଅତି ମହାଗୋଳ ।
ପୁଣି ଛନ୍ତି ଦୁଷ୍ଟରାଜା ମହା ମହାବାଦୀ
ତୋହର ଦର୍ପେ ସେମାନେ ହୋଇଯିବେ ସାଧି
ତିନିଶଲକ୍ଷ ଯୋଦ୍ଧାଏ ଥିବେ ତୋର ତୁଲେ
ଶିର ଛେଦିବୁ ନା ଆଜ୍ଞା ଅବଜ୍ଞା କରିଲେ ।
ତାଡ଼ ଝୁମ୍ପା ବାହୁଟି ଯେ ପୁଣି ଜଗଦ୍‌ବଳା
ଶିରରେ ମୁକୁଟ ଦେଲେ ଗଳେ ରତ୍ନମାଳା ।
ଦୁଃଶାସନ ନିଜେ ଶିରେ ଶାଢ଼ୀ ବାନ୍ଧିକରି
ପର୍ଶୁରାମ ତେଜ ପ୍ରାୟେ ଦର୍ପ ଦେଲା କୁରି ।
ଯୁଧିଷ୍ଠିର ପଚାରିଲେ ଶୁଣ ଜନାର୍ଦ୍ଦନ
ଏ ମହାସଭା ଶାନ୍ତିରେ ରହିବ କେସନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଧର୍ମସୁତ
ଭୀମସେନ ଆଜ୍ଞା ଦେବା କରିବେ ସେ ଶାନ୍ତ
ଯୁଧିଷ୍ଠି ବୋଇଲେ ତହୁଁ ଶୁଣ ଦେବହରି
ଜାଣିଲି ରାଜାଙ୍କୁ ରାଗ ଅଛଇ ତୋହରି ।

ଅନୁବ୍ରତେ ଦୁଷ୍ଟ ସେହୁ ଅଟେ ମନ୍ଦପ୍ରାଣୀ
ସେ କି ବିଚାରିବ ଭଲ ମନ୍ଦ ଚକ୍ରପାଣି ।
କିଞ୍ଚିତ ଦୋଷକୁ ଯେହୁ ଦିଏ ଦଣ୍ଡ ଭାରୀ
ସେହି କେମନ୍ତେ ଜାଣିବ ସମ୍ମାର୍ଜନା କରି ।
ହକାର ବୋଇଲେ ତାର ଘେନିଯାଏ ପ୍ରାଣ
ସେହୁ ସମ୍ମାର୍ଜିଲେ କାହିଁ ଥିବେ ରାଜାଗଣ ।
ଏମନ୍ତ ଦୁଷ୍ଟକୁ ସଭା ସମର୍ପ କେସନେ
ଅନୁକ୍ଷଣେ ଦୁଷ୍ଟକଥା ପାଞ୍ଚୁଥାଇ ମନେ ।
ଶ୍ରୀକୃଷ୍ଣ ବୋଇଲେ ଏହୁ ଅଟେ ମହାସଭା
ଅନ୍ୟର ନିବର୍ତ୍ତ କୁହେ ମନରେ ବୁଝିବା ।
ସର୍ବଦା ତାହାକୁ ଭୟ କରୁଥାନ୍ତି ଜନ
ତାହା ଦ୍ୱାରା ନିଶ୍ଚେ ହେବ ସଭା ସମାର୍ଜନ ।
ନାରାୟଣଙ୍କ ମୁଖରୁ ଏହି ବାକ୍ୟ ଶୁଣି
ଅନେକ ସାନନ୍ଦ ହେଲେ ଧର୍ମ ନୃପମଣି ।
ସହଦେବର ପାରୁଶେ ଭୀମସେନ ଥିଲା
ସଭା ସମାର୍ଜନା ଶାଢ଼ୀ ମଥାରେ ବାନ୍ଧିଲା ।
ଶ୍ରୀବତ୍ସଲାଞ୍ଛନା ପୀତବାସ ପରିଧାନ
ନବଘନ ଶ୍ୟାମରୂପେ ଚନ୍ଦ୍ରମା ବଦନ ।
ଶ୍ରୀପଦ୍ମ ଲୋଚନ ତାଙ୍କ ସୁରଙ୍ଗ ଅଧର
ହୃଦେ କଉସ୍ତୁଭ ମଣି ଅତି ଶୋଭାକର ।
କିରୀଟ କୁଣ୍ଡଳ ସବୁ ଜଗଜ୍ଜନ ମୋହେ
ହସ୍ତେ ସୁବର୍ଣ୍ଣ ବଳୟ ଅନ୍ଧକାର ଦହେ ।
ରତ୍ନର ତାଡ଼ ବାହୁଟି କଟିରେ ମେଖଳା
ପାଦପଦ୍ମରେ ନୂପୁର ହୃଦେ ରତ୍ନମାଳା ।
କୋଟି କନ୍ଦର୍ପର ରୂପେ ଅତି ଶୋଭାବନ
ସୁଢ଼ଳ ମୂରତି ପୁଣି ପ୍ରସନ୍ନ ବଦନ ।
ସୁବର୍ଣ୍ଣର ଯୋଡ଼ା ବେତ କରେ ଶୋଭାବନ
ସେ ରୂପ ବର୍ଣ୍ଣ ଲେଖିବ କା ଲେଖନୀ ମୁନ ।
ଦେବ ଦିଗପାଳ ଯକ୍ଷ କିନ୍ନର ଗନ୍ଧର୍ବ
ସାଧକ ମୁନୀନ୍ଦ୍ର ବିପ୍ର ଆଦି କରି ସର୍ବ ।
ସମସ୍ତେ ପରମାନନ୍ଦ କୃଷ୍ଣ ମୁଖ ଚାହିଁ
ମାନସେ କରନ୍ତି ପୂଜା ମନେ ମନେ ଧ୍ୟାୟି ।
ଗଦେଗଦେ ଅଶ୍ରୁବହି ଟାଙ୍କେ ରୋମାବଳି
ସ୍ତୁତିକରି ଠିଆ ହୋନ୍ତି ହୋଇ କୃତାଞ୍ଜଳି ।
ଧନ୍ୟ ଧନ୍ୟ ସେହି ଯାଗ ଧନ୍ୟ ଧର୍ମସୁତ
ଧନ୍ୟ ସେହି ରାଜା ଧନ୍ୟ ପରଜା ସମସ୍ତ ।
ଯେବଣ ରାଜ୍ୟେ ବିଜୟ ଦେବ ଜଗନ୍ନାଥ
ସେ ରାଜ୍ୟ ମହିମା କେହି କହି କି ସାମର୍ଥ ।
ହେ ପ୍ରଭୁ ସେ ଦେଶ ଜନ ପଶୁ ପକ୍ଷୀଙ୍କର
ପାଦରଜ ପଡୁ ମୋର ମସ୍ତକେ ଉପର ।
ମୋହର ସପ୍ତପୁରୁଷ ମୁକ୍ତିଲାଭ ହେଉ
ଦୟାନିଧି ନାମ ତାର ଚିରକାଳ ଥାଉ ।
ଶ୍ରୀଜଗନ୍ନାଥ ସ୍ୱାମୀଙ୍କ ପାଦେ ପରଣାମି
ଶାରଳାଦାସ କହଇ ଉଦ୍ଧର ହେ ସ୍ୱାମୀ ।



## ଯୁଧିଷ୍ଠିରଙ୍କୁ ରାଜସୂୟ ଯଜ୍ଞରେ ରାଜାମାନଙ୍କର ଦର୍ଶନ, ଜମାଗୋଷ୍ଠ ରାଜାର ମୁକ୍ତି, ବିରାଟ ରାଜା ନ ଆସିବାରୁ ଶ୍ରୀକୃଷ୍ଣଙ୍କର କୋପ ଏବଂ ଅନ୍ଧ ନୃପତିଙ୍କୁ ଚକ୍ଷୁଦାନ

ଏଥୁଅନ୍ତେ ପଚାରିଲେ ମନୁ ମହାରାଜା
ଅଗସ୍ତିଙ୍କ ପାଦପଦ୍ମେ କରି ଦିବ୍ୟପୂଜା ।
ନିବେଦନ ଘେନ ମୋର ଆହେ ମୁନିବର
ଆସିଥିଲେ ସେ ସ୍ଥାନକୁ ସର୍ବ ନୃପବର ।
କେଉଁରୂପେ ହେଲା ଦେଖା ଦରଶନୀ ତହିଁ
ସେହି କଥା ଶୁଣିବାକୁ ମାନସ ବଳଇ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ
ଯେଉଁରୂପେ ହେଲା ତାହା ନାନାଦି ରହସ୍ୟ ।
ସହଦେବ ପ୍ରତି ଆଜ୍ଞା ହେଲା ଯେଉଁପରି
କାଳିଞ୍ଜନ ଡଗରକୁ କହିଲେ ହକାରି ।
ତୁହି ଏବେ କହ ଯାଇ ସହଦେବ ଆଗେ
ପୂର୍ବରାଜାଙ୍କୁ ଦର୍ଶନ କରାଉ ସେ ବେଗେ ।
ଆଜ୍ଞା ପାଇ ଚଳିଗଲେ ଦୁଇ ପ୍ରତିହାରୀ
ସହଦେବଙ୍କୁ ବାରତା ଦେଲେ ଯାଇକରି ।
ପୂର୍ବର ଦୁଆରେ ଥିଲେ ମନ୍ତ୍ରୀ ଚୂଡ଼ାମଣି
ରାଜାଙ୍କୁ ଆଜ୍ଞା ହୋଇଲା ଆସନ୍ତୁ ଏକ୍ଷଣି ।
ମନ୍ତ୍ରୀ ଆଜ୍ଞାରେ ଉଠିଲେ ପୂର୍ବରାଜାମାନେ
ଏହି କାଳେ ବିଜେ କଲେ ଦେବ ଜନାର୍ଦ୍ଦନେ ।
ଦଧିବାମନ ସୁମରି ଶୁଭ ଅନୁକୂଳେ
ବାହାରିଲେ ପୂର୍ବରାଜା ଆଦି କୁତୂହଳେ ।
ପୂର୍ବଦ୍ୱାରେ ଦ୍ୱାରପାଳ କୁମର ପ୍ରଦ୍ୟୁମ୍ନ
ତାଙ୍କୁ ପଚାରିଲେ ଯାଇ ଦେବ ଜନାର୍ଦ୍ଦନ ।
ବାବୁରେ ଦ୍ୱାର ତୁ ଛାଡ଼ ରାଜାମାନେ ଯିବେ
ସଭାର ମଧ୍ୟେ ସ୍ୱାମୀଙ୍କୁ ଦର୍ଶନ କରିବେ ।
ମଙ୍ଗଳ ଶୁଭକୁ ଧରି ରୁକ୍ମିଣୀର ବାଳ
ଅମୃତ ଯୋଗେ ଛାଡ଼ିଲା ସର୍ବ ମହୀପାଳ ।
ଆସ୍ଥାନରେ ବସିଛନ୍ତି ମହାରାଜା ଧର୍ମ
ରାଜଦର୍ଶନ କରାନ୍ତି ଶ୍ରୀପୁରୁଷୋତ୍ତମ ।

ସର୍ବ ରାଜାଏ ଛାମୁରେ ହେଲେ ପରଣାମି
କୃଷ୍ଣ ବୋଲନ୍ତି ଏ ପୂର୍ବଦିଗ ରାଜା ସ୍ୱାମୀ ।
ଜିତ ଶ୍ରୀମହାପ୍ରସାଦ ବୋଲି ଅବଧାରୀ
ବୋଇଲେ ଆସ୍ଥାନେ ବସ ସର୍ବ ଦଣ୍ଡଧାରି ।
ସର୍ବ ରାଜାଏ ସେଠାରେ କଲେ ବହୁସ୍ତୁତି
ନିରାକାର ପୁରୁଷ ତୁ ଯୋଗାରୂଢ଼ ମୂର୍ତ୍ତି ।
ସଭା ଛାୟା ମଣ୍ଡପରେ ପୂର୍ବଭାଗ ସ୍ଥାନ
ସମାର୍ଜିଣ ବସାଇଲେ ଦେବ ଜନାର୍ଦ୍ଦନ ।
ଏଥୁ ଅନନ୍ତରେ ପୁଣି କୁମାର ନକୁଳ
ଦକ୍ଷିଣ ଦ୍ୱାରେ ପ୍ରବେଶ ଘେନି ତାଙ୍କ ବଳ ।
ଶ୍ରୀଛାମୁରେ ଜଣାଇଲେ ଦେବ ଜଗନ୍ନାଥ
ନକୁଳ ଆଣେ ଦର୍ଶନେ ଦକ୍ଷିଣ ରାଜାନ୍ତ ।
ଆଣୁ ବୋଲି ଆଜ୍ଞା ଦେଲେ ଜଣାନ୍ତି ଛାମୁରେ
ତହୁଁ ବାସୁଦେବ ଗଲେ ଅତ୍ୟନ୍ତ ବେଗରେ ।
ଶ୍ରୀକୃଷ୍ଣଙ୍କୁ ଦେଖିକରି ସକଳ ନୃପତି
ସର୍ବରାଜା ତାଙ୍କ ପାଦେ ହୋଇଲେ ପ୍ରଣତି ।
ବହୁ ଭକ୍ତିକରି ବିଜେ ହେଲେ ସର୍ବରାୟେ
ନାରାୟଣଙ୍କ ଦର୍ଶନେ ପାପ କଲେ କ୍ଷୟେ ।
ପ୍ରଭୁ ଯେଉଁ ଦେବକଥା କର୍ଣ୍ଣେ ଥିଲେ ଶୁଣି
ଚକ୍ଷୁରେ ଦେଖିଲୁ ସେହିରୂପେ ପରିମାଣି ।
ରାଜାମାନଙ୍କୁ ବଦନ୍ତି ତହୁଁ ବାସୁଦେବ
କୋଟିଜନ୍ମ ମୁକ୍ତି ହେବ ଯୁଧିଷ୍ଠିଙ୍କୁ ସେବ ।
ମୁହିଁ ଭୃତ୍ୟପଣେ ଖଟେ ଯା ଚରଣ ତଳେ
ଶୁଣିଣ ଆଶ୍ଚର୍ଯ୍ୟ ହେଲେ ସର୍ବ ମହୀପାଳେ ।
ଗଦକୁମରେ ଗୋବିନ୍ଦ ଆଜ୍ଞା ଅବଧାରୀ
ଦ୍ୱାର ଛାଡ ରାଜା ଯିବେ ଦରଶନ କରି ।
ନାରାୟଣଙ୍କ ଆଜ୍ଞାରେ ଛାଡ଼ି ଦେଲେ ଦ୍ୱାର
ସାତସସ୍ର ରାଜା ନେଲେ ନକୁଳ କୁମର ।
ରାଜାମାନେ ଯାଇ ତହିଁ କଲେ ନିଉଛାଳି
କର ଯୋଡ଼ିଣ ବୋଲନ୍ତି ତହୁଁ ବନମାଳୀ ।
ସ୍ୱାମୀ ଦକ୍ଷିଣ କୋଶଳେ ଏ ସର୍ବ ନୃପତି
ନକୁଳ କୁମାର ଯାଙ୍କୁ ଆଣିଲା ନିମନ୍ତି ।
ଦେଖିଣ ସାନନ୍ଦ ହେଲେ ଯୁଧିଷ୍ଠିର ଦେବେ
ବୋଇଲେ ରାଜା ବସନ୍ତୁ ଯେ ଯାହାର ଠାବେ
ସମସ୍ତ ରାଜାମାନଙ୍କୁ ଘେନି ଦେବହରି
ଯେଣ୍ଟା ଆସ୍ଥାନେ ବସାନ୍ତି ଗଉରବ କରି ।
କାଳିଞ୍ଜନ କାଳଧ୍ୱଂସ ତଗର ହସ୍ତରେ
ଦେଖା ଦରଶନୀ ଦେଲେ ଦୁର୍ଯ୍ୟୋଧନଠାରେ
ପୂର୍ବ ଦକ୍ଷିଣ ଦିଗର ଯେତେ ଧନମାନ
ଯତ୍ନକରି ଭଣ୍ଡାରରେ ରଖେ କୁରୁନାନ ।

ଏଥୁଅନନ୍ତରେ ତୁମ୍ଭେ ଶୁଣ ମନୁରାଜ
ପଶ୍ଚିମ ରାଜାଙ୍କୁ ଘେନି ପବନ ଆତ୍ମଜ ।
ଶାମ୍ବ କୁମରକୁ ଯାଇ ପୁଚ୍ଛିଲେ ବଚନ
ଦ୍ୱାର ଛାଡ଼ି ଠାକୁରଙ୍କୁ କରିବୁ ଦର୍ଶନ ।
ଶାମ୍ବ ବୋଲେ ଠାକୁରଙ୍କ ନ ହୋଇଲା ଆଜ୍ଞା
ମୋ ବଳେ କି କରିପାରେ ସେ କଥା ଅବଜ୍ଞା ।
ତାଙ୍କ ଆଜ୍ଞା ହେଲେ ଛାଡ଼ି ପାରିବି ମୁଁ ଦ୍ୱାର
ଶୁଣି ସ୍ତମ୍ଭୀଭୂତ ହେଲା ପବନ କୁମର ।
ଉତ୍ତର ଦିଗ ଚାଳିଶ ସହସ୍ର ରାଜନ
ଘେନି ଉତ୍ତର ଦ୍ୱାରରେ ବିଜୟେ ଅର୍ଜ୍ଜୁନ ।
ଯୁଧିଷ୍ଠି ଛାମୁରେ ଯାଇ କହିଲେ ଶ୍ରୀହରି
ସ୍ୱାମୀ ଅର୍ଜ୍ଜୁନ ଆସିବେ ଦରଶନ କରି ।
ଯୁଧିଷ୍ଠି ବୋଇଲେ ଦେବ ପଚାର କାହାକୁ
ରାଜାଙ୍କୁ ଘେନି ଅର୍ଜ୍ଜୁନ ଆସୁ ମୋ ଛାମୁକୁ ।
ଶୁଣି ସାନନ୍ଦ ହୋଇଲେ ଜଗତମୋହନ
ଉତ୍ତର ଦ୍ୱାରକୁ ବିଜେ କରିଲେ ବହନ ।
ଆପଣା ରଥୁ ଓହ୍ଲାଇ ବୀର ଫାଲଗୁନୀ
ଜଗନ୍ନାଥ ପାଦତଳେ କରଇ ଦଇନୀ ।
ଦେଖିଲେ ଯେ ଜମାଗୋଷ୍ଠ ବନ୍ଧା ଅଛି ରଥେ
ଅର୍ଜ୍ଜୁନଙ୍କୁ କୋଳ କଲେ ଦେବ ଜଗନ୍ନାଥେ ।
ଅର୍ଜ୍ଜୁନ ବଦନ ଚାହିଁ ବୋଲନ୍ତି ଶ୍ରୀହରି
ଏ କେଉଁ ଦେଶ ରାଜାଙ୍କୁ ଆଣୁ ବାନ୍ଧିକରି ।
କର ଯୋଡ଼ିଣ କହଇ ସେ ପାଣ୍ଡବ ଶ୍ରେଷ୍ଠ
ସ୍ୱାମୀ ଏ ଉତ୍ତରଦିଗ ରାଜା ଜମାଗୋଷ୍ଠ ।
ଯା ମହିମା ତ୍ରୈଲୋକ୍ୟରେ ଅଟଇ ପ୍ରଚଣ୍ଡ
ଯା ନାମ ଲେଖି ପୋଛଇ ଛିଡେ ତାର ମୁଣ୍ଡ ।
ମୋହର ସମସ୍ତ ସୈନ୍ୟ ଏହୁ ନାଶ କଲା
ବିଚାର ସ୍ୱାମୀ ଏ ଦୁଷ୍ଟ କି ଦୋଷ ନ କଲା ।
ଶ୍ରୀନାରାୟଣ ବୋଲନ୍ତି ଶୁଣ ବୀରମଣି
ବାବୁ ଜମାଗୋଷ୍ଠ ବନ୍ଧା ଫେଡ ଏହିକ୍ଷଣି ।
ସଭା ସମାର୍ଜିବା ଶାଢ଼ୀ ନେଲା ଭୀମସେନ
ଏ କଥା ଶୁଣିଲେ ତାର ଘେନିବ ଜୀବନ ।
ଦଶଦୋଷ ଏହାର ଯେ କରିବାକୁ କ୍ଷମା
ଅଜ୍ଞାନରେ ଦୋଷ କଲା ତାହା ନ ଘେନିମା ।
ନାରାୟଣ ଅର୍ଜ୍ଜୁନକୁ ବହୁତ ବୁଝାଇ
ଜମାଗୋଷ୍ଠକୁ ବନ୍ଧନୁ ଆଣିଲେ ଫିଟାଇ ।
ନାରାୟଣଙ୍କ ମୁଖରୁ ଏ ବଚନ ଶୁଣି
ରାଜାଏ କରିଲେ ତ୍ରାସ ଶିବକୁଳ ଜାଣି ।
ଆଗେ ବାସୁଦେବ ପଛେ ଚାଲେ ଫାଲଗୁନି
ମଧ୍ୟେ ଚାଳିଶ ସହସ୍ର ରାଜାଗଣ ଘେନି ।

ଉତ୍ତର ଦ୍ୱାରରକ୍ଷକ ସତ୍ୟଭାମା ସୁତ
ତାହାକୁ ପୁଚ୍ଛନ୍ତି ଯାଇ ଦେବ ଜଗନ୍ନାଥ ।
ଶ୍ରୀକୃଷ୍ଣ ବୋଲନ୍ତି ତାକୁ ଦ୍ୱାର ଛାଡ଼ ବାବୁ
ରାଜାନ୍ତ ନେଇ ଠାକୁରେ ଦେଖା କରାଇବୁ ।
ସତ୍ୟବତୀର କୁମର ନାମ ସତ୍ୟସେନ
ଛାଡ଼ିଲା ଦ୍ୱାର ପଶିଲେ ଜଗତ ମୋହନ ।
ଦେଖା ଦରଶନୀ ଧନ ରଥେ ଅଛି ପୁରି
ରାଜାଙ୍କୁ ନେଇ ଦର୍ଶନ କରନ୍ତି ଶ୍ରୀହରି ।
ସ୍ୱାମୀ ଉତ୍ତର ରାଜାନ୍ତ ଆଣିଲା ଅର୍ଜ୍ଜୁନ
ସ୍ୱାମୀ ହେ ଜଣକ ପାଇଁ ହେବ ସାବଧାନ ।
ଚାଳିଶ ସହସ୍ର ନୃପ ପାଦେ ପରଣାମି
ବୋଇଲେ ବହୁ ସୁଫଳ ଅର୍ଜିଲୁ ହେ ସ୍ୱାମୀ ।
ଜୀବନ ସୁଫଳ ଆଜ ଦେଖିଲୁ ଯୁଧିଷ୍ଠି
ବଂଶର ସୁଫଳ ରାଜସୂୟ ଯଜ୍ଞ ଖଟି ।
ଜୀବନ ସୁଫଳ ଆଜ ଦେଖି ଜଗନ୍ନାଥ
ଜୀବନ ସୁଫଳ ଋଷି ଦେଖିଲୁ ସମସ୍ତ ।
ବହୁ ବିନୟେ ବୋଲନ୍ତି ତହିଁ ରାଜାମାନେ
ଯୁଧିଷ୍ଠି ଦେବ ବୋଇଲେ ବସ ଯା ଆସ୍ଥାନେ ।
ପରମ ସାନନ୍ଦ ହେଲେ ସ୍ୱାମୀବାକ୍ୟ ଶୁଣି
ଉତ୍ତର ଦିଗେ ବସିଲେ ସର୍ବ ନୃପମଣି ।
ଗୋବିନ୍ଦ ପୁଚ୍ଛିଲେ ପୁଣି ଧର୍ମ ସନ୍ନିଧାନେ
ତିନି ଦିଗରୁ ପ୍ରବେଶ ହେଲେ ରାଜାମାନେ ।
ବ୍ୟାସ ତୁଲେ ଜଗନ୍ନାଥ ଯାଇ ହେଲେ କଥା
ସଂକ୍ଷେପି କହିଲେ ରାଜାମାନଙ୍କ ବାରତା ।
ଭୋ ବ୍ୟାସ ତିନିଦିଗରୁ ଅଇଲେ ରାଜନ
ପଶ୍ଚିମର ରାଜା ଘେନି ଅଛି ଭୀମସେନ ।
ବ୍ୟାସ ବୋଇଲେ ଶୁଣିବା ଦେବ ନରହରି
ମାୟାରେ ମାନବରୂପେ ଅଛ ଅବତରି ।
ସମସ୍ତ କୁଶଳ ପ୍ରଭୁ ତୁହି ପରମାଣୁ
ଭୂତ ଭବିଷ୍ୟତ ବାର୍ତ୍ତା ତୁହି ସର୍ବଜାଣୁ ।
ସବୁ ରାଜାଙ୍କୁ ଦର୍ଶନ କରାଇବୁ ଆଣି
ଏକା ବିରାଟେ ନ ନେବ ଆହେ ଚକ୍ରପାଣି ।
ଅଖିଳ ଭୁବନନାଥ ଆହେ ହୃଷୀକେଶ
ଯୁଧିଷ୍ଠିରକୁ କଥାଏ ହୋଇବ ଅବଶ୍ୟ ।
ଅଜ୍ଞାତବାସ ପାଣ୍ଡବେ ହୋଇବେ ଗୋପନ
ନିଶ୍ଚୟରେ ଜାଣିଥାଅ ବର୍ଷେ ତେରଦିନ ।
ପାଣ୍ଡବ ଆର୍ଦ୍ଦୋଳି ସହିବାକୁ କେହୁ କ୍ଷମ
ବିରାଟ ରାଜ୍ୟେ ଗୋପନ ହେବେ ଦେବଧର୍ମ
ବିରାଟ ଏକା ସହିବ ଏହାଙ୍କ ଆର୍ଦ୍ଦୋଳ
ସତ୍ୟରୁ ପାରି ହୋଇବେ ଯେଣୁ ଧର୍ମବାଳ ।

ବିରାଟ ନ ଦେଖି ଯେହ୍ନେ ଧର୍ମଙ୍କ ନନ୍ଦନ
ସେହିପରି କରାଇବ ଦେଖା ଦରଶନ ।
ତୁହି ସଂସାର ତାରଣ ଦେବ ଅନ୍ତର୍ଯ୍ୟାମୀ
ଏଥକୁ ବିଚାରି ବୁଦ୍ଧି କର ଦେବସ୍ୱାମୀ ।
ସମସ୍ତ ରାଜା ଘେନିଣ ଭୀମସେନ ଆସୁ
ଏକା ସେ ବିରାଟ ରାଜା ଭିତରେ ନ ପଶୁ ।
ବିରାଟ ଯେ ଶ୍ୱେତରାଜା ଥିଲା ସତ୍ୟଯୁଗେ
ମହାସମ୍ଭାର କରିଲା ସେହୁ ମହାଯାଗେ ।
ପୃଥିବୀ ହାଣ୍ଡି ସମୁଦ୍ର ହୋଇଲାକ ଘୃତ
ବଶିଷ୍ଠ ଯେ ଯାଗନିକ ହେଲେ ବ୍ରହ୍ମାସୁତ ।
ମେଘମାନେ ହେଲେ ସ୍ୱାହା ଆବର ପ୍ରୋକ୍ଷଣି
ଘୃତ ସମୁଦ୍ରରୁ ଘୃତ ବରଷିଲେ ଆଣି ।
ମୂଷଳଧାରେ ବର୍ଷିଲେ ସେହୁ ଦିବାରାତି
ବ୍ରହ୍ମାଣ୍ଡରେ ଉଚ୍ଛୁଳିଲା ଅନଳର ଜ୍ୟୋତି ।
ଲୋଭେ ଘୃତକୁ ଭକ୍ଷିଲେ ତହିଁ ଲୋହିତାକ୍ଷ
ଲୁଦୁବୁଦୁ ମହାବ୍ୟାଧି ଲଭିଲେ ପ୍ରତ୍ୟକ୍ଷ ।
ସତ୍ୟ ସତର ଲକ୍ଷ ଯେ ବର୍ଷ ସତାଶୋଇ
ରହିଲେ ବହ୍ନି ଦେବତା ବ୍ୟାଧିଗ୍ରସ୍ତ ହୋଇ ।
ତ୍ରେତୟା ଯୁଗ ଏମନ୍ତ ଭାବେ ବହିଗଲା
ବୈଶ୍ୱାନରଙ୍କ ମନ୍ଦାଗ୍ନି ପାର ଯେ ନୋହିଲା ।
ଦ୍ୱାପରରେ ଆଠଲକ୍ଷ ରହେ ଲୁଦୁବୁଦୁ
ଅର୍ଜ୍ଜୁନ ଖାଣ୍ଡବ ଦହି ଖଣ୍ଡିଲା ଆପଦୁ ।
ସେହି ଶ୍ୱେତରାଜା ଏହି ଅଟଇ ବିରାଟ
ମଘ ମତ୍ସ୍ୟ ଦେଶ ଅଟେ ଏହା ମହାରାଷ୍ଟ୍ର ।
ଏମନ୍ତ କହିଲେ ଯହୁଁ ବ୍ୟାସ ମହାଯତି
ଦୁର୍ଲ୍ଲଭ କୃତ୍ୟ ବୋଲିଣ କହିଲେ ଶ୍ରୀପତି ।
ସୁବର୍ଣ୍ଣର ଯୋଡ଼ିବେତ ଶୋଭଇ ହସ୍ତରେ
ଶ୍ରୀଅନନ୍ତ ପଡ଼ିହାରୀ ଚଳିଲେ ସତ୍ୱରେ ।
ପ୍ରବେଶ ହୋଇଲେ ଯାଇଁ ପଶ୍ଚିମ ଦୁଆରେ
ସେହିଠାବରେ ଭେଟିଲେ ଭୀମ ସହିତରେ ।
ଗୋବିନ୍ଦଙ୍କୁ ଦେଖିକରି ହସେ ଭୀମସେନ
ଶ୍ରୀଭୁଜରେ କୋଳାଗ୍ରତ କଲେ ଜନାର୍ଦ୍ଦନ ।
ବୋଇଲେ ବହୁ ବିଳମ୍ବ କରି ଭୀମସେନ
ଅଇଲେଟିକି ତୋହର ସର୍ବ ରାଜାମାନ ।
ଭୀମବୋଲେ ସ୍ୱାମୀ ମହାଦୂରାପନ୍ଥ ଭୂମି
ଏକେମାତ୍ରକ ବିରାଟ ନ ଆସିଲା ସ୍ୱାମି ।
ଶୁଣିକରି କୋପକଲେ ଦେବକୀର ବାଳ
ବୋଇଲେ ତୁ ଯାଇନାହୁଁ ପବନ ଦୁଲ୍ଲାଳ ।
ଏଡ଼େ ବଡ଼ ରାଜା ତୋର ନଇଲା ବିରାଟ
ଯାବତ କଥାକୁ ଘଟୁ ତୁହି ମୂର୍ଖ ଦୁଷ୍ଟ ।

ଏହା କହି କରେ ଚକ୍ର ଧଇଲେ ଶ୍ରୀବତ୍ସ
ଭୟେ ଭୀମସେନ ଗଲା ବହୁଦୂର ଘୁଞ୍ଚି ।
ଭୀମସେନ ବୋଲେ କୋପ ନ କର ଶ୍ରୀହରି
ଏକ୍ଷଣି ଦେବି ବିରାଟ ବାନ୍ଧି ଆଣିକରି ।
ଗୋବିନ୍ଦ ବୋଇଲେ ଶାଢ଼ୀ ରହିଛି ତୋହରି
ଏହିକ୍ଷଣି ଦେବୁ ସଭା ସମାର୍ଜ୍ଜନାକାରୀ ।
ଯେବେ କି ନଇଲା ସେହୁ ପଛ ହୋଇ ଆସୁ
ତ୍ରି ଊଣା ପଞ୍ଚ ସହସ୍ର ରାଜାସଙ୍ଗେ ବସୁ ।
ଭୀମସେନ ବୋଲେ ହେବ ସହି ନ ପାରିଲି
ବଜ୍ରଗିରିଦେଶୁଁ ନୃପ କୃତାନ୍ତେ ମାଇଲି ।
ତ୍ରି ଊଣା ପଞ୍ଚାସହସ୍ର ରାଜାଙ୍କୁ ଆଣିଛି
ଶୁଣି ମନରେ ଦୁଃଖିତ ହୋଇଲେ ଶ୍ରୀବତ୍ସ ।
ଆମ୍ଭେ ଯୁଧିଷ୍ଠିଙ୍କ ତୁଲେ ହୋଇନ୍ତୁ ଅଜ୍ଞାନୀ
ନିମନ୍ତ୍ରଣେ ପଠାଇଲୁ ତୋତେ ଜାଣିଶୁଣି ।
ଏତେକ ଆଣିଲୁ ଯାହା ପଣ୍ଡୁ ରାଜା ଭାଗ୍ୟ
ଭୀମସେନ ବୋଲେ ଦେବ କିମ୍ପା କର ରାଗ ।
ସେ ରାଜାର ସୈନ୍ୟ ସର୍ବେ ସାତ ଅକ୍ଷୌହିଣୀ
ଯେବଣ ରାଜାଙ୍କୁ ଦେବ ପକାଇଲି ହାଣି ।
ତାର ବହୁ ଧନ ରତ୍ନ ଆଣିଅଛି ରଥେ
ସୁବର୍ଣ୍ଣର ଏକରାଜା ଗଢ଼ିବା ନିମନ୍ତେ ।
ଭୀମସେନ ବଚନରେ ହସି ଚକ୍ରପାଣି
ବୋଇଲେ ଆସନ୍ତୁ ରାଜା ବୁଝିବା ଯେ ଗଣି ।
ଗଣି ପଞ୍ଚାଶ ସହସ୍ର ତିନିଊଣା ରାଜ
ଘେନି ଭିତରେ ପଶିଲେ ପବନ ଆତ୍ମଜ ।
ଦେଖା ଦରଶନୀ ଘେନି ରାଜା ସହ ଭୀମ
ଦର୍ଶନ କଲେ ବିଜୟ ଯହିଁ ଦେବ ଧର୍ମ ।
ଗନ୍ଧର୍ବ ବଳ ଘେନିଣ ଯେହ୍ନେ ପୁରନ୍ଦର
ସେହି ସ୍ୱରୂପ ଦିଶଇ ପବନ କୁମାର ।
ରାଜାମାନଙ୍କୁ ବହୁତ ସମାଦର କରି
ଯଥା ଯୋଗ୍ୟ ଆସନରେ ବସାଇଲେ ହରି ।
ଯୁଧିଷ୍ଠିଙ୍କ ଆସନକୁ ଚାହିଁ ନରପତି
ଧନ୍ୟ ଧନ୍ୟ କହି ସର୍ବେ ପ୍ରଶଂସା କରନ୍ତି ।
ପୁଣି ବୋଲନ୍ତି ସୁଫଳ ହେଲା ଆମ୍ଭ ଆଖି
ଯୁଧିଷ୍ଠିଙ୍କ ବଦନକୁ ବେନି ନେତ୍ରେ ଦେଖି ।
ମର୍ତ୍ତ୍ୟଭୁବନେ ଏ ଛାୟା ମଣ୍ଡପର ତଳେ
ସ୍ୱର୍ଗ ତେଜିଣ ବିଜେ କି ଅମର ମଣ୍ଡଳେ ।
ବିଶେଷରେ ଏଥେ ଛନ୍ତି ଦେବ ଯଦୁନାଥ
ଦ୍ୱିତୀୟ ବୈକୁଣ୍ଠ ତୁଲ୍ୟ ଦେଖାଯାଏ ଏତ ।
ରୋଗ ଶୋକାଦି ଖଣ୍ଡଇ ଦେଖି ଯେଉଁ ସଭା
ସମସ୍ତ ଦୁଃଖ ହରିଲେ ଦେଖି ରାଜଦେବା ।
ଦେଖି ଦେଖି ଶ୍ରଦ୍ଧା ଆଉ ଛାଡ଼ି ନ ପାରନ୍ତି
ଖିଆପିଆ ପାଶୋରିଲେ ସକଳ ନୃପତି ।
ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ସୋମଦତ୍ତ ନାମେ ସୋମରାଷ୍ଟ୍ର ନରପତି ।
ଭୃଗୁଋଷି ଶାପେ ଅନ୍ଧ ହେଲା ସେ ରାଜନ
ସେ ସଭାକୁ ଆସିଥିଲେ ପାଇ ନିମନ୍ତ୍ରଣ ।
ତେଡ଼େବଡ଼ ମହାପାପ ତାର ଗଲା ମେଣ୍ଟି
ଦିବ୍ୟ ଚକ୍ଷୁପାଇ ତାର ଫିଟିଗଲା ଦୃଷ୍ଟି ।
ଜୟ ବାସୁଦେବ ଅନ୍ଧେ ଦେଲ ଚକ୍ଷୁଦାନ
ଜୟ ଜୟ ପଦ୍ମନାଭ ଦାରିଦ୍ର୍ୟଭଞ୍ଜନ ।
ଏକ ଗୋପାଳ ତ୍ରେତାରେ ଅନ୍ଧ ହୋଇଥିଲା
ଶ୍ରୀରାମଚନ୍ଦ୍ରଙ୍କୁ ସେହୁ ଦୁଗ୍ଧ ଦାନ ଦେଲା ।
ତେଣୁକରି ଦେଖାଗଲା ତା ବେନି ନେତ୍ରକୁ
ଶ୍ରୀରାମ କାହିଁ ବୋଲିଣ ଦିଶିଲା ତାହାକୁ ।
ଆଉ ଏକ ଦ୍ୱିଜ ଥିଲା ଦରିଦ୍ର ଆଜନ୍ମୁ
କିଛି ନ ଜାଣଇ ସେହୁ ଜଗନ୍ନାଥ ବିନୁ ।
ଦ୍ୱାପର ଯୁଗରେ ସେହୁ ଜନମିଲା ଏକା
ଭିକ୍ଷା ମାଗି ଯାଉଁ ଯାଉଁ ରହିଲା ଦ୍ୱାରକା ।
ଦ୍ୱାରକା ଭୁବନେ ତାର କଷ୍ଟ ପାର ହେଲା
କ୍ରମେ ବ୍ରାହ୍ମଣ ଦରିଦ୍ରାବସ୍ଥାରୁ ତରିଲା ।
ସାତବରଷର ପୋଏ ହୋଇ ଏକମେଳି
ପ୍ରଦ୍ୟୁମ୍ନ ସଙ୍ଗତେ ଖେଳି କୁତୂହଳେ ଖେଳି ।
ପ୍ରଦ୍ୟୁମ୍ନର ବାଲିଘର ଭାଙ୍ଗେ ଅନ୍ଧପୁତ୍ର
କ୍ରୋଧରେ ପ୍ରଦ୍ୟୁମ୍ନ ଗାଳି ଦେଲାକ ବହୁତ ।
ଅନ୍ଧସୁତ ପ୍ରଦ୍ୟୁମ୍ନକୁ ପଦାଘାତ କରେ
ଅସାଷ୍ଟମରେ ପ୍ରଦ୍ୟୁମ୍ନ ପଡ଼ିଲେ ଭୂମିରେ ।
ଧୂଳିରେ ଧୂସର ହେଲା ତାହାଙ୍କ ଶରୀର
ଚେତି ଜଗନ୍ନାଥ ପାଶେ ମିଳିଲେ ସତ୍ୱର ।
ସଙ୍ଗୀଏ ବୋଇଲେ ମନ୍ଦ କଲୁ ଅନ୍ଧବାଳ
ନିଶ୍ଚେ ଜଗନ୍ନାଥ ତୋର ପୂରାଇବେ କାଳ ।
ବତିଶ ସହସ୍ର ଶତେ ଅଷ୍ଟୋତ୍ତର ଯାର
ଭାରିଯା ମଧରେ ଏକ ପ୍ରଦ୍ୟୁମ୍ନ କୁମର ।
ବହୁତ କ୍ରୋଧରେ ଗଲେ ରୁକ୍ମିଣୀର ବାଳା
ଆରେ ଅନ୍ଧର ନନ୍ଦନ ବେଗ ହୋଇ ପଳା ।
ସଙ୍ଗୀ ବାଳକ ବଚନ ଶୁଣି ଅନ୍ଧସୁତ
ଅନ୍ଧ ବ୍ରାହ୍ମଣ ପାଶକୁ ପଳାଏ ତୁରିତ ।
ଅନ୍ଧ ବୋଲେ କିମ୍ପା ବାବୁ ଆସୁ ଅତିକ୍ରମେ
ସମସ୍ୟା ଦେଇ ନ ପାରେ ପୁତ୍ର ମତିଭ୍ରମେ ।
ବିକଳେ ବୋଲେ ତାତ ମୁଁ ମନ୍ଦକୃତ୍ୟ କଲି
କୃଷ୍ଣସୁତ ପ୍ରଦ୍ୟୁମ୍ନକୁ କ୍ରୋଧରେ ମାଇଲି ।

ବିକଳ ହୋଇଣ ସେହୁ କାନ୍ଦି ଗଲା ବେଗେ
ନ ପୁଣ ଶ୍ରୀବାସୁଦେବ ନ ଆସନ୍ତି ରାଗେ ।
ଅନ୍ଧ ବୋଇଲା ପୁତ୍ରରେ ଲୁଚିଥା ମୋ ପିଠି
ଆସନ୍ତୁ ଶ୍ରୀବାସୁଦେବ ଦେଖୁ ମୋର ଦୃଷ୍ଟି ।
ତାହା ଶୁଣି ସେ ବାଳକ ଲୁଚିଲା ତା ପଛ
ଏଣେ କାନ୍ଦିଣ ପ୍ରଦ୍ୟୁମ୍ନ ଭେଟିଲା ଶ୍ରୀବସ୍ତ ।
ଆହା ପୁତ୍ର ବୋଲିକରି ଧଇଲେ ଅଚ୍ୟୁତ
ବାବୁ କେ ତୋତେ ମାଇଲା କହନି ଯଥାର୍ଥ ।
କାନ୍ଦି କ୍ରୋଧରେ କହଇ ଶମ୍ବର ଅଇରି
ଅନ୍ଧସୁତ ପଳାଇଲା ଅଦୋଷେ ପ୍ରହାରି ।
ପୁତ୍ରର ବିକଳ ନେତ୍ରେ ଦେଖିଣ ଅଚ୍ୟୁତ
ମାୟାମୋହେ କ୍ରୋଧ ହେଲେ ସେ ଜଗତର୍ଭୂତ
ଦ୍ୱାରକାର ଲୋକ ହୋଇ କାର ଏ ଭରସା
କେଉଁ ଅନ୍ଧପୁଅ ତୋତେ ଦେଲା ଏଡ଼େ ଦଶା ।
କ୍ରୋଧଭରେ ମସ୍ତକରୁ ବହେ ଶ୍ରମଝାଳ
ଆଗରେ ପ୍ରଦ୍ୟୁମ୍ନ ପଛେ ଦେବକୀର ବାଳ ।
ତାହା ଦେଖିକରି ଅନ୍ଧ ବ୍ରାହ୍ମଣର ବତ୍ସା
ବୋଲେ ପିତା ମୋତେ କରି ନ ପାରିବ ରକ୍ଷା
ଏସନକ ସମୟରେ ପ୍ରଭୁଙ୍କୁ ସେ ନେଇ
ଭେଟାଏ ପ୍ରଦ୍ୟୁମ୍ନ ଅନ୍ଧଦ୍ୱିଜ ସୁତ ଯହିଁ ।
କ୍ରୋଧଭର ହୋଇକରି ବୋଲନ୍ତି ଗୋବିନ୍ଦ
ମୋ ସୁତକୁ ମାଇଲା ତୋ ପୁଅ ଆରେ ଅନ୍ଧ ।
ନାରାୟଣଙ୍କ ବଚନେ ଅନ୍ଧ ପରମାଣି
ବୋଲେ ମୋ ପୁତ୍ର ଛାର କି ମାରିପାରେ ସ୍ୱାମୀ
ସେବକ ଉପରେ ଏଡ଼େ କୋପ କାହିଁପାଇଁ
ଶୁଣି କ୍ରୋଧରେ ବୋଇଲେ ଦେବ ଭାବଗ୍ରାହୀ
ଦେଖ ମୋର ପୁତ୍ରଅଙ୍ଗେ ଲାଗିଅଛି ଧୂଳି
ଦେଖ ନିଜେ ଅନ୍ଧ ବୋଲି ରାଗେ ପରଜ୍ୱଳି ।
ଶତଜନ୍ମ ଅନ୍ଧଦୋଷୁ ପାର ସେ ହୋଇଲା
ନାରାୟଣଙ୍କ ବଚନେ ନେତ୍ରକୁ ଦିଶିଲା ।
ଜୟ ତୁ ଅନ୍ଧପଟଳହାରୀ ବାସୁଦେବ
ଦର୍ଶନ ମାତ୍ରେ ଖଣ୍ଡୁ ତୁ ଅଦୃଶ୍ୟର ଭାବ ।
ସ୍ୱାମୀ ତୋ ପାଦ ପଙ୍କଜେ ଲୋଟୁ ମୋର ମାଥ
ତୋ ଲୟୁଁ ଆଶା ନ ତୁଟୁଁ ଯେହ୍ନେ କଦାଚିତ ।
ଏ ଜଗତେ ଜନମିଲେ ସର୍ବଜନ ହିତେ
ଶ୍ରୀବାସୁଦେବଙ୍କ ପଦ୍ମଚରଣେ ନମସ୍ତେ ।
ତରିଗଲା ସୋମଦତ୍ତ ରାଜା ଅନ୍ଧକଷ୍ଟୁ
ତାଦୃଶ ମୋ ହୃଦୁଁ ଅନ୍ଧପଟଳ ଯେ ଫିଟୁ ।
ଅନ୍ଧକାର ମୋହମାୟା ଏ ସକଳଶିରୀ
ଦୁସ୍ତର ସଂସାର ମଧ୍ୟେ କରିବା ଉଦାସୀ ।
ଜଗତବାନ୍ଧବ ନାଥ ମୋ ହୃଦରେ ବସ
ଅଦୃଶ୍ୟରେ ପଦମାନ ମୋତେ ହେଉ ଦୃଶ୍ୟ ।
ତୁଳସୀ ବଲ୍ଲଭଙ୍କର ପଦ୍ମପାଦ ଗତେ
ଅନୁକ୍ଷଣେ ଚିତ୍ତ ଥାଉ ଭାବଇ ନିରତେ ।
ସକଳ ଜନମାନଙ୍କ ଉପକାର ଅର୍ଥେ
ଶାରଳା ଦାସ ଲେଖଇ ସଭାପର୍ବ ଗୀତେ ।



## ରାଜାମାନଙ୍କର ଭୋଜନର ବ୍ୟବସ୍ଥା

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ଘେନ ମୋ କହିବା ଗିର ।
ଭୀମପ୍ରତି କୋପକରି ଦେବ ନାରାୟଣ
ବହୁ ଗାଳି ମନ୍ଦ କଲେ ଦେଖି ଆଚରଣ ।
ତଦପରେ ଦେବହରି କଲେ କେଉଁ କୃତ୍ୟ
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ ।
କହନ୍ତି ଅଗସ୍ତି ଶୁଣ ଆହେ ମନୁରାଣ
ଦ୍ୱିତୀୟ ସରଗେ ରାଜସୂୟ ବିବରଣ ।
ସମ୍ପର୍ବେ ବିଜୟ ତହିଁ ସକଳ ରାଜନ
ଜନ୍ମେ ଜନ୍ମେ ତାହାଙ୍କର ଜୀବନହିଁ ଧନ୍ୟ ।
ତେଣୁ ତହିଁ ବସିବାକୁ ଭାଜନ ହୋଇଲେ
ପୂର୍ବଜନ୍ମ ତପବଳେ ନେତ୍ରରେ ଦେଖିଲେ ।
ନରପତିମାନେ ଯହୁଁ ବସିଲେ ସମ୍ଭାରେ
ଯୁଧିଷ୍ଠି କହନ୍ତି ତହିଁ ଶ୍ରୀକୃଷ୍ଣ ଆଗରେ ।
ହରି ହେ ଅନେକ ଦେଶୁଁ ବିଜେ ମହୀପାଳେ
ଅମାତ୍ୟ ସହିତେ ବସି ଅଛନ୍ତି ଗହଳେ ।
କେମନ୍ତେ ଯାଙ୍କ ଚଉଚା କରିବା ହେ ହରି
ସେହି କଥା ମୋ ଆଗରେ କହନ୍ତୁ ବିସ୍ତାରି ।
ଏମନ୍ତ ସମୟେ ହେଲା ମଧ୍ୟାହ୍ନର କାଳ
ସୁଗନ୍ଧ ତୈଳ ଘେନିଲେ ଯୁଧିଷ୍ଠି ଭୂପାଳ ।
ନାରଦ ବୋଇଲେ ଯେବେ ଜଣେକ ଅତୃପ୍ତି
ପଣ୍ଡୁ ବ୍ରହ୍ମହତ୍ୟା ଦୋଷ ନ ଯିବ କଦାପି ।
ଆହ୍ନିକର ବେଳା ଯହୁଁ ଆସି ହେଲା ଦିନ
ମର୍ଦ୍ଦନ ଯୋଗାଡ଼ କଲେ ଅନେକ ବିଧାନ ।
ସୁଗନ୍ଧ ତୈଳ ଆଦି ଯେତେ ଦ୍ରବ୍ୟମାନ
ଶିଖଣ୍ଡୀକୁ ତାହା ନେଇ କଲେ ସମର୍ପଣ ।
ଯୁଧିଷ୍ଠିଙ୍କ ଆଜ୍ଞା ପାଇ ସେ ଶିଖଣ୍ଡୀ ବୀର
ତା ନେଇ ରାଜାମାନଙ୍କୁ ଦେଲାକ ସତ୍ୱର ।
ମର୍ଦ୍ଦନ କରନ୍ତି ମାଲେ ଅତି ହନ୍ତକାରୁ
ବାହାସ୍ଫୋଟ ମାରିଣ ସେ କ୍ଷତ୍ରି ମହାମେରୁ ।
ମର୍ଦ୍ଦନ ଶେଷରେ ଯାଇ ପଶି ଗଙ୍ଗାଜଳେ
ସୁଗନ୍ଧ ଅଏଁଳା ସର୍ବେ ଲେପିଲେକ ବାଳେ ।

ସୁବର୍ଣ୍ଣ ଘଟେ ପୁରାଇ ନାନା ବାସପାଣି
ପନୀର ନୀରମାନ ଯେ ନିଉଡ଼ନ୍ତି ଆଣି ।
ଗଙ୍ଗାଜଳରେ ପଶିଲେ କୁତୂହଳ ହୋଇ
କରନ୍ତି ଯେ ଜଳକ୍ରୀଡ଼ା ନାନାକଥା କହି ।
ସ୍ନାନ ନିତ୍ୟକର୍ମ ଶେଷ କରିଲେ ବିଧାନେ
ଆହ୍ନିକ କର୍ମ ସାରିଲେ ପୁରୋହିତମାନେ ।
ନିତ୍ୟକର୍ମମାନ ସାରି ଆସିଲେ ବହନ
ମଣୋହି କରି ବସନ୍ତି ଯେ ଯାହା ଆସନ ।
ଲକ୍ଷେକ ନୃପତି ତହିଁ ମଣୋହିରେ ବିଜେ
ସୁବର୍ଣ୍ଣପାତ୍ରେ ଯୋଗାଡ଼ ପରଷନ୍ତି ଦ୍ୱିଜେ ।
ପରଷନ୍ତେ ଅନ୍ନସବୁ ତହିଁ ସୂପକାରେ
ରାଜାଏ ଭୁଞ୍ଜନ୍ତି ତାହା ପରମ ସୁଖରେ ।
ସୁଗନ୍ଧ ସୁଶୀତଳ ଯେ ପରିଷ୍କୃତ ନୀର
ଘେନି ବସିଲେ ପାଣିଆ ରାଜାଙ୍କ ଆଗର ।
ଇନ୍ଦ୍ରପ୍ରସ୍ଥ ନଗରର ଗଙ୍ଗାନଦୀ କୂଳେ
ଐଶାନ୍ୟ ମୂରତି ହୋଇ ବସିଲେ ଭୂପାଳେ ।
ସୂପକାରମାନେ ଅନ୍ନ ନେଇ ପରଷନ୍ତି
ଦେବ ପିତୃ ପିତାମହ ତର୍ପଣ କରନ୍ତି ।
ଯୋଗାଡ଼ଠାରେ ଜଣକେ ଚାରି ଦୀପାବଳି
ଦିଅନ୍ତି ବ୍ରାହ୍ମଣମାନେ ତହିଁ ପତ୍ରାବଳି ।
ଦ୍ୱାଦଶ ହବି ଯେ ପଞ୍ଚଦଶ ପଞ୍ଚମୁଦ୍ରା
ବାହ୍ୟବଳେ ତୃପ୍ତି ଅର୍ଥେ ବାକ୍ୟବ୍ରହ୍ମମୁଦ୍ରା ।
ଯେ ଯାହାର ସଂକଳପେ ଦେବ ପିତୃ ଅନ୍ନ
ଧରନ୍ତି ଦେବତାଙ୍କର ତହିଁ ନାମମାନ
ବହୁପ୍ରକାରେ ଯୋଗାଡ଼ ଦିବ୍ୟାମୃତ ପାକ
ଭୁଞ୍ଜାନ୍ତି ରାଜାମାନଙ୍କୁ ଆଣି ଏକ ଏକ ।
ପ୍ରକୃତି ପୁରୁଷ ଆଚମନ ପଞ୍ଚଧାର
ସନ୍ତୁଷ୍ଟ ମନରେ କରୁଅଛନ୍ତି ଆହାର ।
ଯେବଣ ବ୍ୟଞ୍ଜନମାନ ଆସୁଛି ଆକାଶୁ
ଅମୃତ ପ୍ରାୟେ ନ ସରେ ତାହାଙ୍କ ପରଶୁ ।
ଭୁଞ୍ଜୁଛନ୍ତି ନରପତି ଯେତେ ଯାହା ଇଚ୍ଛା
ସୁପକ୍ୱ ପଦାର୍ଥମାନ ଆପ୍ୟାୟନେ ବାଞ୍ଛା ।
ଏ ମହିମା ଭିଆଇଛନ୍ତି ଦେବ ଦେବ ହରି
ନଳବିଧି ତିନିପ୍ରତି ଗଉରୀ ଶଉରୀ ।
ଗୋରସ ଦିଅନ୍ତି ଷଡ଼ରସ ଭୋଜନାନ୍ତେ
ନାନା ବିଧିର ମହିମା ନ ସରେ କହନ୍ତେ ।
ଭୋଜନ ସାରିଣ ରାୟେ ନ ପାରନ୍ତି ଉଠି
ଭୂମି ଭରାରେ ଉଠନ୍ତି ଦେଇ ପାଦଗୋଟି ।
ଆଚମନ ସ୍ଥାନେ ବିଜେ ହୁନ୍ତି ନୃପମାନେ
ବୋହିଯାଏ ସେହି ଜଳ ନଦୀର ସମାନେ ।
ଆଚମନ ସାରି ରାୟେ ନିଅବକାଶରେ
କର୍ପୂର ତାମ୍ବୁଳ ଆଦି ଭୁଞ୍ଜନ୍ତି ବିଧିରେ ।
ସର୍ବାଙ୍ଗରେ ଅଳଙ୍କାର କୁସୁମର ଗଭା
ଅମରାଧିନାଥ ପ୍ରାୟେ ଦିଶୁଅଛି ଶୋଭା ।
ନବବସ୍ତ୍ର ପୁଣି ନବ ନବ ଅଳଙ୍କାରେ
ସମ୍ଭର୍ବେ ବସନ୍ତି ରାୟେ ଆସନ ଉପରେ ।
ଖଟୁଅଛନ୍ତି ଅନେକ ବିଳାସୀ ବନିତାକ
ଦିବ୍ୟତାଳରେ ଗାଇଲେ ତାଣ୍ଡବ ସଙ୍ଗୀତା ।
ଶୁଣ ରାଜା ରାଜସୂୟ ଯଜ୍ଞର ଚରିତ
ଲକ୍ଷେମାଡ଼ ସ୍ୱର୍ଣ୍ଣପାତ୍ରେ ଯୋଗାଡନ୍ତି ନିତ୍ୟ ।
ରାଜାର ଲକ୍ଷେକ ମାଡ଼ ଝରିଆଦି କରି
ଭୋଜନାନ୍ତେ ପୋଛିଦ୍ୟନ୍ତି ନେଇ ପାରିବାରୀ
ଯମୁନାର ଜଳେ ତାହା ପକାଅନ୍ତି ନେଇ
ଗଭୀର ଜଳେ ପଡ଼ନ୍ତେ ନ ଆଣନ୍ତି କେହି ।
ଏହିପରି ପ୍ରତିଦିନ ଯୋଗାଡ଼ ନୂତନ
ଉଚ୍ଛିଷ୍ଟ ହେଲେ ପକାନ୍ତି ନେଇଣ ବହନ ।
ଏମନ୍ତ ସମ୍ପଦ ଅଟେ ରାଜସୂୟ ସଭା
ସାତନିଧି ଫେଡ଼ିଅଛି କୁବେର ଶ୍ରୀଦେବା ।
ରାଜାଙ୍କ ଭୋଜନ ଶେଷ ହେବାର ଉତ୍ତାରେ
ପାତ୍ର ଅମନାତ୍ୟମାନେ ବସନ୍ତି ସଭାରେ ।
ମୁକୁଟବନ୍ଧା ରାଉତ ମହାମଲ୍ଲ ସେନା
ମାଳ ମଣ୍ଡାଳିକା ବଡ଼ କୁମାର ଯେ ଯେନା ।
ଛତ୍ର ମନ୍ଦିରେ ବସନ୍ତି ଭୋଜନ ନିମନ୍ତେ
ସୈନ୍ୟମାନେ ବସିଛନ୍ତି ପଦାତି ସହିତେ ।
କ୍ଷେତ୍ରପାଳ ପରିଛା ଯେ ଭୀଷ୍ମ ମହାରଥୀ
ଅନେକ ସମ୍ଭାରେ ଅନ୍ନ ଆଣି ପରଷନ୍ତି ।
ଶୁଣ ମହାରାଜା ତାଙ୍କୁ ପ୍ରସନ୍ନ ହିଙ୍ଗୁଳା
ଅମୃତ ସ୍ୱାଦୁ ଭୋଜନ ପାଇ ଅତି ଭୋଳା ।
ଭୋଜନ ସାରିଣ ସର୍ବେ କଲେ ଆଚମନ
ପବନ ଉଡ଼ାଇ ନିଏ ସେହି ପତ୍ରମାନ ।
ମେଘମାନେ ବରଷନ୍ତି ତହିଁର ଉତ୍ତାରେ
ଧୋଇଯାଏ ସେ ଉଚ୍ଛିଷ୍ଟ ତହୁଁ ଅନ୍ୟପରେ ।
ପୁଣି ସଇନି ଭୁଞ୍ଜାଇ ବସନ୍ତି ସେ ଠାବେ
ବିହରନ୍ତି ସଇନି ଯେ କଉତୁକ ଭାବେ ।
ସହସ୍ରେକ ହାଟ ଆଠସହସ୍ର ଯେ ଘାଟ
ଅନୁକ୍ଷଣେ ଯାତ୍ରା ତହିଁ ହରଷ ସେ ରାଷ୍ଟ୍ର ।
ନାରାୟଣଙ୍କୁ ପୁଛିଲେ ଯୁଧିଷ୍ଠିର ଦେବେ
ହରି ହେ ରାଜାଙ୍କ ସୈନ୍ୟ ବଡ଼ ଅସମ୍ଭବ ।
ଭୋଜନ ପ୍ରମାଣ ହେଉ ଅଛଇ କେମନ୍ତେ
ବିଚାରିଣ ନାରାୟଣ ତା କହିବା ମୋତେ ।

ସତ୍ରଶାଳ ପୁରେ ଧର୍ମ ରାୟେ କଲେ ବିଜେ
ନିଜେ ପହଣ୍ଡ ମଣାନ୍ତି ଥାଇ ଦେବରାଜେ ।
ଦେଖିଲେ ସଇନି ତହିଁ ବଡ଼ଇ ଗହଳ
ବହୁ ସମ୍ଭାରେ ଭୁଞ୍ଜନ୍ତି ଅନ୍ନାଦି ସକଳ ।
ଯୁଧିଷ୍ଠି ବୋଲନ୍ତି ହରି ସୈନ୍ୟ କେତେ ଜଣ
କେମନ୍ତେ ହେ ଦେବ ତାହା କର ପରମାଣ ।
ପାଇଲା ନ ପାଇଲାକୁ ତଦ୍ଧ କେହୁ କରୁ
କୋଟିଏ ଜଣ ଭୁଞ୍ଜନ୍ତେ ଶଙ୍ଖ ଏକ ସ୍ଫୁରୁ ।
ଏହା କହି ବିଜେ ହେଲେ ପଶ୍ଚିମର ଆଡ଼େ
ଘଡ଼ିକେ ଦଶମର୍ବୁଦ ଶଙ୍ଖ ବାଜେ ଦୃଢ଼େ ।
ଦକ୍ଷିଣ ଆଡେ ଖର୍ବେକ ଶଙ୍ଖ ଯେ ବାଜଇ
ଶୁଣିଣ ଆଶ୍ଚର୍ଯ୍ୟ ହୁନ୍ତି ଧର୍ମ ନରସାଇଁ ।
କୃଷ୍ଣଙ୍କୁ ବୋଇଲେ ହରି କେବଣ କାରଣ
ଅଳ୍ପକାଳରେ ଭୁଞ୍ଜିଲେ କେହ୍ନେ ଏତେ ଜଣ ।
ବଦନ୍ତି କେଶବ ତହୁଁ ଶୁଣ ନୃପରାଣ
ତୁମ୍ଭ ଆଜ୍ଞାରେ ଖଟନ୍ତି ଆସି ଦେବଗଣ ।
ଦୋହରାଗ୍ନି ବିଜେ କରିଅଛନ୍ତି ସଭାରେ
ପୁଣି ହିଙ୍ଗୁଳା ପ୍ରସନ୍ନ ତୁମ୍ଭର ଉପରେ ।
ଉଠନ୍ତି ଯେ କାଳେ ଜନେ ଭୋଜନ ସାରିଣ
ଉଚ୍ଛିଷ୍ଟ ପତ୍ର ଉଡ଼ାଇ ନିଅନ୍ତି ପବନ ।
ତକ୍ଷଣେ ମେଘ ବରଷି ଭୋଜନର ଠାବ
ଧୋଇ ଦେଲେ ଭୂମି ଦେଖ ଯୁଧିଷ୍ଠିର ଦେବ ।
ବୋଇଲେ ପବନ ଦେବ ଅଟନ୍ତି ମୋ ପିତା
ସେ ପୁଣ ହୋଇଅଛନ୍ତି ଉଚ୍ଛିଷ୍ଟ ପୋଛନ୍ତା ।
ଏହା ମୋତେ ଅଧର୍ମ ହେ ପୁରୁଷ ଉତ୍ତମ
ବାୟୁର ଏ କାର୍ଯ୍ୟ ମୋର ନାଶଗଲା ଧର୍ମ ।
ସହଦେବ ମୁଖ ଚାହିଁ ଦେବ ଦାମୋଦର
କିସ କରିବାରେ ବାବୁ ଧର୍ମଙ୍କ ବିଚାର ।
ଗୋବିନ୍ଦ ଶ୍ରୀମୁଖ ଚାହିଁ ଦେବ ଦାମୋଦର
ମେରୁଶୃଙ୍ଗ ଋଷି ଛନ୍ତି ବଦରିକା ଠାବ ।
ଅନଳ ନେତ୍ରେ ଚାହାନ୍ତି ସେହୁ ମୁନିଈଶ
ତାଙ୍କ ଦୃଷ୍ଟିରେ ଉଚ୍ଛିଷ୍ଟପତ୍ର ହେବ ଧ୍ୱଂସ ।
ଏ ମହାଯଜ୍ଞଙ୍କୁ ହରି ତୁହି ଯେ ଧାରଣ
ଭୀମସେନକୁ ପଠାଇ ମେରୁଶୃଙ୍ଗ ଆଣ ।
ସହଦେବ ବାକ୍ୟେ ଦେବ ପରମ ଆନନ୍ଦ
ଭୀମସେନ ରାଇ ଆଜ୍ଞା କରିଲେ ଗୋବିନ୍ଦ ।
ତୁମ୍ଭେ ବଦରିକାଶ୍ରମେ ଯାଇ ଏହିକ୍ଷଣ
ବୁଦ୍ଧି ପରାକ୍ରମେ ମେରୁଶୃଙ୍ଗ ଋଷି ଆଣ ।
ଜୟ ଜୟ ଜଗନ୍ନାଥ ନୀଳାଦ୍ରି ବିହାରି
ଶାରଳା ଦାସକୁ କର ଭବସିନ୍ଧୁ ପାରି ।

## ମେରୁଶୃଙ୍ଗ ଋଷିଙ୍କ ବିବରଣ

ଶ୍ରୀକୃଷ୍ଣ ବାକ୍ୟେ ଚଳେ ଭୀମ ମହାରଥୀ
କାଳିକା ଗିରିରେ ଦେଖେ ପବନ ଦେବତା ।
ପବନ ବୋଲେ ଯାଉଛୁ ମେରୁଶୃଙ୍ଗଠାକୁ
କେମନ୍ତେ ଆଣିବୁ ଅଗ୍ନି ନେତ୍ର ମନୁଷ୍ୟକୁ ।
ସେ ମହାଋଷିର ବାବୁ ନ ଜାଣୁ ମହିମା
ତାହାର ଚରିତ କହେ ଶୁଣ ଆରେ ଭୀମା ।
ବ୍ରହ୍ମାର ମେଖଳା ଗଲା ମନୁ ମେଖଳାକୁ
ନିତ୍ୟ କରମ ବିଧାନ ଆକାଶ ଗଙ୍ଗାକୁ ।
ସେ ଆକାଶ ଫୁଟିଣ ଯେ ବହଇ ଜାହ୍ନବୀ
ନିତ୍ୟକର୍ମ ସାରି ପିତା ମହାପ୍ରଭୁ ସେବି ।
ଅମର ବିଳାସୀ ସଙ୍ଗେ ଯେ ଅଷ୍ଟନାୟିକା
କାମିନୀ କାମସେଣା ଯେ ନୀଳା ମଦନିକା ।
ମୋହିନୀ କମଳା ପୁଣି ଚଞ୍ଚଳା ସର୍ବାଙ୍ଗୀ
ନବଯୁବା ମାତଙ୍ଗୀ ଯେ ମହା ସଉଭାଗୀ ।
ଗଙ୍ଗାକୁ ସ୍ନାହାନ ପାଇଁ ଅଇଲେ ଅପ୍ସରୀ
ବିବସ୍ତ୍ରା ହୋଇ ସେମାନେ ଜଳକ୍ରୀଡ଼ା କରି ।
ସ୍ତନ ଯଉବନ ଭାରି ଅଟନ୍ତି ଯୁବତୀ
ତାଙ୍କ ରୂପମାନ ଦେଖି ପାଷାଣ ଝୁରନ୍ତି ।
ସନ୍ଧ୍ୟା ସମୟରେ ତାଙ୍କୁ ଦେଖି ବେଦବର
ମଦନ ଅସାଷ୍ଟମରେ ଢଳିଲା ଶରୀର ।
ଜଳରୁ ବାହାର ହେଲେ ଉଲଗ୍ନ ବସନ
ହୁଅନ୍ତି ସେ ସଉଭାଗୀ କୁଙ୍କୁମ ଲେପନ ।
ତାହାଙ୍କ ରୂପ ଦେଖିଲେ ସେ ବ୍ରହ୍ମା ଦେବତା
ମଦନରେ ଅସାଷ୍ଟମ ହୋଇଲେ ଅଯଥା ।
ମନମଥ ଶର ତାଙ୍କ ଶରୀରରେ ଗଳି
କାମ ଆରତେ ପିତାର ଢଳିଲା ତ୍ରିବଳୀ ।
ସନ୍ଧ୍ୟାର କ୍ରିୟା ସକଳ ତେଜ୍ୟା କଲେ ବିଭୁ
ତପ ଧ୍ୱଂସକାରିଣୀ ଏ ମିଳିଯାନ୍ତେ ବାବୁ ।
କାମ ବୋଲିକରି ଅଟେ ଯେବଣ ପଦାର୍ଥ
ଅଣଶୃଙ୍ଗାରେ ଢଳିଲା ପିତାମହ ରେତ ।
ତାହା ଖସନ୍ତେ ଭାର୍ଗିଲା ପିତାଙ୍କ ସରାଗ
ମେରୁ ମେଖଳାରେ ରେତ ପଡ଼ିଅଛି ବେଗ ।
ମହାଅନଳ ପରାୟେ କାଳାନଳ ବୀର୍ଯ୍ୟ
ମେରୁ ମେଖଳା ନ ସହେ ମହାତ୍ମାର ତେଜ ।
ଦୁଇମନ୍ଦା ଢଳିପଡ଼େ ସେହି ମେରୁଠାବେ
ରଖ ରଖ ବୋଲିକରି ଦେଲାକ ସେ ରାବେ ।
ମେରୁର ବିକଳ ଦେଖି ପାତି ବାମହସ୍ତ
ଆର ମନ୍ଦାକ ପଡ଼ନ୍ତେ ଧଇଲେ ତୁରିତ ।

ସେହି ମନ୍ଦାକରେ ଘେନି ତହୁଁ ବେଦପତି
ମେରୁ କ୍ରୋଟରେ ଅଗ୍ନିକୁ ଫିଙ୍ଗିଲେ ତଡ଼ତି ।
ପୁଣି ଅର୍ଦ୍ଧମନ୍ଦାକ ଯେ ପଡୁ ପଡୁ ଢଳି
ମେରୁ ବିକଳରେ ଧାତା ଧଇଲେ ତା ତୋଳି ।
ମନ ବିକୃତରେ ଗଙ୍ଗା ବାଲିକି ଯେ ଫିଙ୍ଗି
ବିମୁଖେ ବ୍ରହ୍ମା ଉଠିଲେ ନିତ୍ୟକର୍ମ ଭାଙ୍ଗି ।
ଶୁଣ ଆରେ ଭୀମସେନ ବୋଲନ୍ତି ମରୁତ
ପ୍ରଥମ ମନ୍ଦା ପଡ଼ିଲା ମେରୁ ପରବତ ।
ରଖ ରଖ ବୋଲି ମେରୁ ଡାକ ଦେଇଥିଲା
ସେହି ମନ୍ଦାକରୁ ରକ୍ଷ ଯକ୍ଷ ଜାତ ହେଲା ।
ଯେ ଅନ୍ୟମନ୍ଦା ବାଲିକି ଦେଇଥିଲେ ଫିଙ୍ଗି
ତହିଁରୁ ଜନ୍ମ ବାଲ୍ମୀକି ବାଳଖିଲ୍ୟା ଯୋଗୀ ।
ଭୀମସେନକୁ କହଇ ମରୁତ ଦେବତା
ସେ ବାଲ୍ମୀକି ବାବୁ ଭୂତ ଭବିଷ୍ୟତଜ୍ଞାତା ।
ଏହା ମୂଳେ ଲକ୍ଷ ବାଳଖିଲ୍ୟା ଉପୁଜିଲେ
ମହାରାଗ ସାଧି ରାଜ ତମକୁ ତେଜିଲେ ।
ଅଗ୍ନି ମଧ୍ୟେ ପକାଇଣ ଥିଲେ ଯୋଉଁ ରେତ
ସେଥିରୁ ଜନ୍ମେ ପୁରୁଷେ ହୋଇ ମହାମତ୍ତ ।
ତାହାର ଶରୀରୁ ଜାତ ହୁଅଇ ଅନଳ
ଏକପାଦ ତିନିମୁଣ୍ଡେ ଉଚ୍ଚ ନଅତାଳ ।
ଲୋହିତବର୍ଣ୍ଣ ସ୍ୱରୂପ ଅଟେ ଦଶଭୁଜ
ଷଡ଼ କର୍ଣ୍ଣ ଷଡ଼ ନେତ୍ର ବିରାଜେ ସରୋଜ ।
ସପତ ତାଳ ଉତ୍ସର୍ଗ ତା ନିଜ ପଞ୍ଜର
ଡରେ ହରି ନ ପାରିଲେ ବ୍ରହ୍ମା ହରିହର ।
ମେରୁଶୃଳ ନାମ ତାର ଦେଲେ ମହାତମା
ବିଭା ନୋହିଲା ପୁଣି ସେ ନ ଇଚ୍ଛିଲା ବାମା ।
ମହାବ୍ରହ୍ମ ଘେନି ସେହି ସାଧେ ଲୟଭାଗ
କରିଲା ସେ ସାଂସାରିକ ସୁଖ ପରିତ୍ୟାଗ ।
ଏହିପରି ଏକସ୍ତରୀ ଗଣ୍ଡା ଯୁଗ ଗଲା
ବାଳୁତ କାଳରୁ କେତେ ମନୁ ବହିଗଲା ।
ସେହୁ ଯେବଣ ଆଡ଼କୁ ନୟନେ ଚାହିଁଇ
ପନ୍ଦର ଯୋଜନ ଯାଏ ଅଗ୍ନିରେ ପଡ଼ଇ ।
ସମସ୍ତ ଦହନ ହୁଏ କାଷ୍ଠ ଆଦିକରି
ଦ୍ୱାଦଶ ଯୋଜନ ଯାନ୍ତି ତାକୁ ତ୍ୟାଗକରି ।
ଏଡ଼େ ଦୁର୍ଯୋଗକୁ ପେଷିଛନ୍ତି ଚକ୍ରପାଣି
ମହାବ୍ରହ୍ମବେତ୍ତା ତାଙ୍କୁ ପାରିବୁ କି ଆଣି ।
ଭୀମସେନ ବୋଲେ ଦେବ ଶ୍ରୀକୃଷ୍ଣଙ୍କ ଆଜ୍ଞା
ମୋହର କି ବଳ ତାହା କରିବି ଅବଜ୍ଞା ।
ଶ୍ରୀହରି ଆଶ୍ରୟେ ଆମ୍ଭେ ବଞ୍ଚୁ ଚିରକାଳ
ଶୁଣି ପବନ କହଇ ଶୁଣ ଆରେ ବାଳ ।
ମେରୁଶୃଳେ ଆଣିବାକୁ ନ ଯା ରେ କୁମର
ତାହାଯୋଗେ ସହିବୁ ତୁ ଦୁଃଖ ବହୁତର ।
ଭୀମସେନ ବୋଲେ ଦେବ ତାଙ୍କ ଆଜ୍ଞା ମେଣ୍ଟି
ଅବଶ୍ୟ ଚକ୍ରେ ଛେଦିବେ ମୋର ଶିରଗୋଟି ।
ପୁଣି ବୋଲଇ ଆଣିବି ମେରୁଶୃଳ ଋଷି
ତୋର ବୁଦ୍ଧିବଳ ଥିଲେ କହ ତୁ ପ୍ରକାଶି ।
ପବନ ଦେବ ଗୋଡ଼ାଏ ଭୀମସେନ ତୁଲେ
ମେରୁଶୃଳ ମଠୁଁ ପାଞ୍ଚ ଯୋଜନ ରହିଲେ ।
ଋଷି ପଛେ ଥାଇ କହେ ପବନ ଦେବତା
ହେ ଋଷି ଶୁଣ ଯୁଧିଷ୍ଠି ଯାଗର ବାରତା ।
ସୋମବଂଶେ ଜାତ ସେହୁ ଧର୍ମ ମହୀପତେ
ରାଜସୂୟ ଯାଗ କଲା ପିତାର ନିମନ୍ତେ ।
ପୃଥିବୀର ରାଜ ରାଜଋଷି ବ୍ରହ୍ମଋଷି
ସେ ରାଜସୂୟ ସଭାରେ ମିଳିଛନ୍ତି ଆସି ।
ପବନ ସୁତ ପାଣ୍ଡବ ବୀର ଭୀମସେନ
ନିମନ୍ତି ଆସି ରହିଛି ସେ ପାଞ୍ଚଯୋଜନ ।
ତୁମ୍ଭେ ନ ଗଲେ ନୋହିବ ସେହି ମହାସଭା
ଭୋ ମହାତମା ପୁରୁଷ ବେଗ ହୋଇଯିବା ।
ଭୀମସେନ ଡାକେ ପାଞ୍ଚ ଯୋଜନ ଅନ୍ତରେ
ବେଗେ ଆସ ହେ ମହାତ୍ମା ରାଜସୂ ଯଜ୍ଞରେ ।
ଆହେ ମେରୁଶୃଳ ଋଷି ଆସ ବେଗହୋଇ
ଯଦି ଆସିବ ମହାତ୍ମା ଆସ ଶାନ୍ତ ହୋଇ ।
ଋଷିଙ୍କୁ ଡାକି ପଳାଏ ବୀର ଭୀମସେନ
ଉଚ୍ଚସ୍ୱରେ ଡାକ ତାର ଶୁଭିଲା ଶ୍ରବଣ ।
ମେରୁ ମେଖଳ ଭିତରୁ ମହାତମା ଉଠି
ବାର ଯୋଜନ ପର୍ଯ୍ୟନ୍ତେ ପଡ଼ିଗଲା ଦୃଷ୍ଟି ।
ବୃକ୍ଷ ପକ୍ଷୀ ଜୀବଜନ୍ତୁ ଯେତେ ତହିଁ ଥିଲେ
ମେରୁଶୃଳ ଅଗ୍ନିନେତ୍ରେ ସବୁ ପୋଡ଼ି ଗଲେ ।
ପବନ ଦେବ ବହିଲା ପଶ୍ଚିମ ମୂରତି
ପଶ୍ଚିମେ ବହେ ଅନଳ କରି ମହାଜ୍ୟୋତି ।
ଭୀମ ପଳାଏ ପଶ୍ଚିମ ଦିଗୁଁ ଦକ୍ଷିଣକୁ
ପାଞ୍ଚ ଯୋଜନାନ୍ତେ ଡାକ ଦିଅଇ ଋଷିଙ୍କୁ ।
ଆସ ଆସ ମହାତମା ଦକ୍ଷିଣ ମୂରତି
ପବନ ଦେବ ଉଡ଼ାଏ ପଶ୍ଚିମକୁ ଜ୍ୟୋତି ।
ଏମନ୍ତେ ମେରୁଶୃଳକୁ ଆଣେ ଭୀମସେନ
ବାରୁଣାବନ୍ତେ ପ୍ରବେଶ ହେଉ ତିନିଦିନ ।
ବାରୁଣାବନ୍ତ ବୋଲିଣ ଯେବଣ ପର୍ବତ
ତଥି ଉପରେ ବସିଲେ ଋଷି ଭଗବନ୍ତ ।
ଧ୍ୟାନେ ନିମଜ୍ଜିଲେ ତହୁଁ ମୁଦ୍ରିତ ଲୋଚନ
ସର୍ବରାଜା ଗଲେ ମେରୁଶୃଳ ସନ୍ନିଧାନ ।

ଶ୍ରୀକରରେ ଅର୍ଘ୍ୟ ଘେନି ଧର୍ମ ମହାରାଜା
ମେରୁଶୂଳର ଅଗ୍ରତେ ଯାଇ କଲେ ପୂଜା ।
ମହାବ୍ରହ୍ମରଷି ତାଙ୍କୁ କରିଲେ କଲ୍ୟାଣ
ମନୋବାଞ୍ଛା ତୋହର ଯେ ହୋଇବ ପୂରଣ ।
ଭାଇମାନଙ୍କୁ ଘେନିଣ ଧରମ ଯୁଧିଷ୍ଠି
ସମସ୍ତେ ମେଳ ହୋଇଲେ ମେରୁଶୂଳ ପିଠି ।
ସନ୍ନିଧ ହୋଇ କହନ୍ତି ଦେବ ନାରାୟଣ
ହେ ବ୍ରହ୍ମପୁରୁଷ ତୁମ୍ଭେ ସାବଧାନେ ଶୁଣ ।
ରାଜସୂୟ ଯଜ୍ଞ ଆପେ ସୃଜିଲେ ଯୁଧିଷ୍ଠି
ତୋପାଇଁ ଖଣ୍ଡନ ହେବ ସକଳ ଅରିଷ୍ଟି ।
ବାରୁଣାବନ୍ତ ପର୍ବତେ ମୁନି ବସିଥିବୁ
ସୈନ୍ୟଙ୍କ ଭୋଜନ ଶେଷେ କିଞ୍ଚିତେ ଚାହିଁବୁ ।
ଉଚ୍ଛିଷ୍ଟପତ୍ର ସକଳ ହୋଇବ ଦହନ
ବିନୟ ଭାବେ କହିଲେ ତାଙ୍କୁ ନାରାୟଣ ।
ମେରୁଶୂଳ ବୋଲେ ତୁମ୍ଭେ ପୁରୁଷ ଉତ୍ତମ
ଆମ୍ଭ ସାକ୍ଷାତେ ନ ହେବ ଯଜ୍ଞକର୍ମ ଧର୍ମ ।
ଯେଉଁ ପ୍ରାଣୀ ନ ପାରନ୍ତି ଧର୍ମକର୍ମ କରି
କିଞ୍ଚିତେ ଯେ ନ ହୋଇବ ପର ଉପକାରୀ ।
ପରକାର୍ଯ୍ୟ କରିବାକୁ ଯେ ହୁଅନ୍ତି ଦୁଃଖୀ
ଏହି ପୁରୁଷମାନଙ୍କୁ ଅଭାଗ୍ୟରେ ଲେଖି ।
ସାହାଯ୍ୟ ଦେବାକୁ ଶକ୍ତି ନାହିଁତ ଆମ୍ଭର
ଆମ୍ଭଦ୍ୱାରା ଯୁଧିଷ୍ଠିଙ୍କ ହେଉ ଉପକାର ।
ଯେ ହେତୁରୁ ଆଜ୍ଞା ଦେଉ ଅଛନ୍ତି ଆପଣ
ଆମ୍ଭ କର୍ମେ ହେଲା ଏ ଉଚ୍ଛିଷ୍ଟ ପତ୍ରମାନ ।
ମେରୁଶୂଳକୁ ସମ୍ବୋଧି ଗଲେ ଜଗନ୍ନାଥ
ମହାଯଜ୍ଞରେ ପ୍ରବେଶ ହୋଇଲେ ତୁରିତ ।
ଇନ୍ଦ୍ରପ୍ରସ୍ଥ କଟକରେ ବାରଯୂଣ ଯାଏ
ସଦା ଅନ୍ନ ଭୁଞ୍ଜୁଛନ୍ତି ସେଠାରେ ସଭିଏଁ ।
ଭୋଜନ ସାରିଣ ଆଡ଼ ହୁଅନ୍ତେ ସଇନି
କିଞ୍ଚିତ ଦୃଷ୍ଟିରେ ପୋଡ଼େ ମେରୁଶୂଳ ମୁନି ।
ସେ ଉଚ୍ଛିଷ୍ଟପତ୍ରମାନ ହୁଅନ୍ତେ ଦଗଧ
ବୃଷ୍ଟିକରି ପରିଷ୍କାର କରନ୍ତି ଜଳଦ ।
ଧନ୍ୟ ହେ ମହିମାମେରୁ ଧନ୍ୟ ସେ ମହିମା
କେତେ ଲୀଳା ଲଗାଇଛ ନାହିଁ ତାର ସୀମା ।
ଯୁଧିଷ୍ଠିର କିବା ସାଧି ପୃଥିବୀ ରାଜାଙ୍କୁ
ଚରଚା କରି ସନ୍ତୋଷ କରିବ ତାହାଙ୍କୁ ।
କେବଳ ତୁମ୍ଭର ମାୟା ତୁମ୍ଭଙ୍କୁ ଗୋଚର
ଅନ୍ୟକୁ ଦିଶଇ ତାହା କଲେ ଯୁଧିଷ୍ଠିର ।
କିଏ ଦିଏ କିଏ ଖାଏ କେଉଁଠାରୁ ଆସେ
ସବୁ ସୁଘଟଣ ହୁଏ ତୁମ୍ଭ ମାୟାବେଶେ ।
କି ବିଚିତ୍ର ଅଟେ ପ୍ରଭୁ ତୁମ୍ଭଙ୍କୁ ଏ ସୈନ୍ୟ
ଯେ ପଡ଼ିଦାତା ଅଟନ୍ତି ଚଉଦ ଭୁବନ ।
ଆହେ ଦୟାମୟ ହରି ଶରଣପଞ୍ଜର
ବାରେ କୃପାଦୃଷ୍ଟି ହେଉ ଡାକଇ କିଙ୍କର ।
ତୁମ୍ଭେ ନ ରଖିଲେ ହରି ନିଶ୍ଚେ ଯିବି ସରି
ଯେତେ ଡାକିଲେ ନ ଶୁଭେ କର୍ଣ୍ଣକୁ ତୁମ୍ଭରି ।
ପଞ୍ଚ ପାଣ୍ଡବ ଆବର ଧ୍ରୁବ ପ୍ରହଲାଦ
କେଉଁରୂପେ ବଶ କଲେ କହି କେଉଁ ପଦ ।
ଶିଖାଇ ଦିଅ ହେ ମୋତେ ସେହି ପଦମାନ
ଶାରଳା ଦାସର ଇଚ୍ଛା କର ହେ ପୂରଣ ।



## କାମଧେନୁ ହରଣ ଓ ରାଜସୂୟ ଯଜ୍ଞ ସୂଚନା

ପୁଣି ପୁଚ୍ଛନ୍ତି ବିଲଙ୍କ ଦେଶ ଦଣ୍ଡଧାରୀ
ଅଗସ୍ତି ମୁନିଙ୍କ ପାଦେ ନମସ୍କାର କରି ।
ହେ ମୁନି ମେରୁଶୂଳକୁ ଆଣେ ଭୀମସେନ
ତଦପରେ କେଉଁକଥା କଲେ ଭଗବାନ ।
ସେହି କଥା ଶୁଣିବାକୁ ବଳେ ମୋ ମାନସ
କହନ୍ତି ଅଗସ୍ତିମୁନି ଶୁଣ ହେ ନରେଶ ।
କଣୟ ବୋଲିଣ ହରିହର ବଂଶେ ରାଜ
ତାର ହେଲେ ଶତଅଷ୍ଟଉତ୍ତର ତନୁଜ ।
କୃପାଜଳ ରଷିଙ୍କର କାମଧେନୁ ଗାଈ
ଚଉର୍ଯ୍ୟପଣେ ତାହାକୁ ନେଲେ ସେ ଚୋରାଇ
ଜମ୍ବୁଦ୍ୱୀପରୁ ଗାଈକୁ ଚୋରିକରି ନେଲେ
ଶାକଲ୍ୟଦ୍ୱୀପେ ତାହାକୁ ଲୁଚାଇ ରଖିଲେ ।
ଅଷ୍ଟୋତ୍ତର ଶତେଭାର କ୍ଷୀର ଖାନ୍ତି ସୁଖେ
କୃପାଜଳ ରଷି ଗାଈ ହେତୁ ଥାନ୍ତି ଦୁଃଖେ ।
ଦକ୍ଷ ପୁରୁଷେକ ମୁନି ଦେଖେ ସତ୍ୟଅନ୍ତେ
ଅନିଳବସୁ ତା ନାମ ଅନିଳ ପର୍ବତେ ।
ମୁନି ପଚାରିଲେ ଆହେ ଅନିଳ ପୁରୁଷ
ମୋ ଗାଈକୁ ହରିନେଲା କେବଣ ରାକ୍ଷସ ।
ତୁମ୍ଭେ ଅଷ୍ଟବସୁମାନେ ଅଟ ମହାବୀର
ଏ ଚାରିଯୁଗରେ ତୁମ୍ଭ ନାମ ଗୋରୁଚୋର ।
ତସ୍କର ଜାଣନ୍ତି ସିନା ତସ୍କର ପ୍ରକୃତି
ତୁ ଜାଣୁ କି କିଏ ନେଲା ମୋ ଗୋରୁ ସମ୍ପତ୍ତି ।
ଅନିଳବସୁ ବୋଇଲେ ଶୁଣ କୃପାଜଳ
ଗାଈ ଚୋରି ହୋଇଲାଣି ଆସି ବହୁକାଳ ।
କଣୟ ରୁଦ୍ରର ଅଷ୍ଟୋତ୍ତର ଶତ ଚାଟେ
ସତ୍ୟଯୁଗରେ ଗାଈକୁ ନେଲେ ଏହି ବାଟେ ।

ଅନିଳବସୁ ମୁଖରୁ ଏ ବାରତା ପାଇ
ଶାକଲ୍ୟ ଦ୍ୱୀପରେ ଗାଈ ଠାବ କଲେ ଯାଇ ।
କୃତାନ୍ତକର କଣୟ ନାମ ଜ୍ୟେଷ୍ଠପୁତ୍ର
ଗାଈ ଗୋଟିକୁ ମାଗିଲା ତାକୁ ତପୋବନ୍ତ ।
ଅଷ୍ଟୋତ୍ତର ଶତଭାଇ ସେ ଋଷିଙ୍କୁ ବେଢ଼ି
ମାର ମାର ବୋଲି କେଶ ଧଇଲେ ଉଚ୍ଛୁଡ଼ି ।
ଚାପୋଡ଼ା ଗୋଇଠା କେହୁ ମାରଇ ଲଉଡ଼ି
କୃପାଜଳ ପଡ଼ିଗଲେ ତହୁଁ ମୁହଁ ମାଡ଼ି ।
କୋପେ ତାଙ୍କୁ ଶାପ ଦେଲେ କୃପାଜଳ ଦେବ
ଯାଅ ତୁମ୍ଭେ ଜାତ ହୁଅ ଚଣ୍ଡାଳୀର ଗର୍ଭ ।
ଜ୍ଞାନ ଥାଉ ହରିଲରେ ବ୍ରାହ୍ମଣର ଗାଈ
ଚଉର୍ଯ୍ୟ ପୁରୁଷ ନେଲେ ପାପଭୟ ନାହିଁ ।
ଏକାଦଶ ଗୁରୁଙ୍କର ଅଟ ତୁମ୍ଭେ ଚାଟେ
ଧାର୍ମିକ ପଣ୍ଡିତ ସେହି ଦିଗପାଳ ଅଟେ ।
ତାର ପୁତ୍ର ହୋଇ ତୁମ୍ଭେ ଏଡ଼େକ ଅଜ୍ଞାନ
ଦୁଷ୍ଟବୁଦ୍ଧି ଧରି ମୋତେ ଦେଲ ଏ କଷଣ ।
ମୋର ଶାପକୁ ତୁମ୍ଭେରେ ଅବଶ୍ୟ ପାଇବ
ଅଗଣା ଖତକୁଡ଼ରେ ଯାଇ ବରଡିବ ।
କୁଜ୍ଞାନ ପଣରେ ଆଉ ଗାଈ ଚୋରାଇବ
ଛେରା ପହଁରା କରିଣ ଉଚ୍ଛିଷ୍ଟ କାଢ଼ିବ ।
ଧୃତିରୁଦ୍ର ବୋଲିକରି ଏକଇ ରୁଦ୍ରେକ
ଋଷିଙ୍କୁ ବିନୟ ହୋଇ ବୋଲଇ ଅନେକ ।
ଏଡ଼େ ମହାତ୍ମାକୁ ଆମ୍ଭେ ନ ପାରିଲୁ ଚିହ୍ନି
ଶାପକୁ ମୁକ୍ତି କାରଣ କହ ମହାମୁନି ।
ଗାଈଟିକୁ ଘେନି ସର୍ବେ ଗୋଡ଼ାଇ ବିକଳେ
ବୋଇଲେ ମହାଶାପ ତ ଦେଲେ କୃପାଜଳେ ।
ତୁମ୍ଭେ ଅଟ ତପୋବନ୍ତ ଧର୍ମ ମହାମୁନି
ଦୁଷ୍ଟମାନଙ୍କର ଦୋଷ କେହ୍ନେ ଅଛ ଘେନି ।
ନ ଜାଣିବାପଣେ ଦୋଷ କଲେ ମୋର ପୋଏ
ଯୁକତରେ ପୁଣି ଭାବ ବାଳୁତ ତନୟେ ।
ବେଳେହେଁକ ମହାତମା ନ କଲୁ ଉପେକ୍ଷା
ଶାପରୁ ମୁକତ କର ଏହା ମୋର ଭିକ୍ଷା ।
ଏକାଦଶ ରୁଦ୍ରଙ୍କର ଭକ୍ତି ଦେଖିକରି
ତାଙ୍କୁ ଦୟାକଲେ କୃପାଜଳ ତପଚାରୀ ।
ବୋଲେ ତ୍ରେତାଯୁଗେ ଦ୍ୱିଜଘରେ ଯାଇ ଥିବ
ହସ୍ତିନା ରାଜ୍ୟରେ ସେହି ଯୁଗ ପାହିଯିବ ।
ତ୍ରେତାଯୁଗ ଅନ୍ତେ ହେବ ଦୁଆପର ଯୁଗ
ସୋମବଂଶେ ଜନମିବେ ଧର୍ମ ମହାଭାଗ ।
ରାଜୁସି ଯଜ୍ଞ କରିବେ ସେହୁ ଆରୋପଣ
ତାଙ୍କ ଦେଶେ ପ୍ରବେଶିବେ ସର୍ବ ରାଜାଗଣ ।
ସେହି ରାଜାମାନଙ୍କର ଭୋଜନର ସ୍ଥାନେ
ତୁମ୍ଭେମାନେ ଛେରା ଦେବ ଯାଇ ପ୍ରତିଦିନେ ।
ସେ ମହାଯଜ୍ଞେ ଖଟିବ ଷୋଡ଼ଶ ଦିବସ
ଗୋରୁ ଚୋରାଇବା ପାପ ତହିଁ ହେବ ନାଶ ।
ଶୁଣ ମହାରାଜ ରାଜସୂୟର ମହିମା
ତାର ବାଟ ଚାହିଁଥିଲେ ରୁଦ୍ର ମହାତମା ।
ସୁବର୍ଣ୍ଣର ପହଁରାଏ ଏକ ଏକ କରି
ରାଜସୂୟେ ପହଁରନ୍ତି ଝଟଝଟ କରି ।
ସୁବର୍ଣ୍ଣର ଭାଣ୍ଡେ ମଳ ଗୋମୟ ଚକଟି
ଅଷ୍ଟୋତ୍ତରଶତ ଭାଇ କରୁଥାନ୍ତି ବୃଷ୍ଟି ।
ମେରୁଶୂଳ ଦାହ କରେ ସେ ଉଚ୍ଛିଷ୍ଟ ପତ୍ର
ମେଘ ବୃଷ୍ଟି କରି ଭୂମି କରଇ ପବିତ୍ର ।
ଏହି ରୂପେ ସମ୍ପର୍କରେ ଭୋଜନ ବ୍ୟବସ୍ଥା
ଯେ ନିୟମ କରିଛନ୍ତି ଶ୍ରୀକୃଷ୍ଣ ଦେବତା ।
ସମସ୍ତଙ୍କ ଭୋଜନାନ୍ତେ ଆପେ ଶୁଚି ହୋଇ
ଯଜ୍ଞସ୍ଥାନେ ବିଜେ କଲେ ଯୁଧିଷ୍ଠିର ଯାଇ ।
ବଶିଷ୍ଠ ପୌଲସ୍ତ୍ୟ ମାରକଣ୍ଡ ବିଶ୍ୱାମିତ୍ର
ସର୍ବ ଋଷିଙ୍କର ପାଦେ ହେଲେ ପ୍ରଣିପାତ ।
ଧୂପ ଦୀପ ନଇବେଦ୍ୟ ଗନ୍ଧ ପାଦାସନ
ଦେଇ ବିଧାନେ କରିଲେ ବିପ୍ରଙ୍କୁ ବରଣ ।
ବାମପାର୍ଶ୍ୱେ ଯାଜ୍ଞସେନୀ ଦ୍ରୁପଦ କୁମାରୀ
କରେ କୁଶବଟୁ ସଙ୍ଗେ ଯବତିଳ ଭରି ।
ଆସନରେ ବିଜେ କଲେ ଯାଇ ଦଣ୍ଡଧାରୀ
ଦକ୍ଷିଣ ପାର୍ଶେ ଅଛନ୍ତି ଦେବ ଦଇତ୍ୟାରି ।
ଧୌମ୍ୟ ପୁରୋହିତ ସର୍ବ ବାକ୍ୟାଦି ଉଚ୍ଚାରି
ଯଜ୍ଞକର୍ମ ଆରମ୍ଭିଲେ ସୁବିଧାନ କରି ।
ବହୁତର ବେଦଧ୍ୱନି କରନ୍ତି ବ୍ରାହ୍ମଣେ
ଯଥାବିଧିରେ ଆଶିଷ ମଙ୍ଗଳ ବଚନେ ।
ଅଗ୍ନି ଆଚ୍ଛାଦନ କଲେ ସ୍ୱାହା ସ୍ୱଧା ମେଳେ
ଅଷ୍ଟାଦଶ ପ୍ରତ୍ୟସିଦ୍ଧି ସପ୍ତ ବ୍ରହ୍ମବାଳେ ।
ସେମାନଙ୍କ ଦ୍ୱାରା ଯଜ୍ଞକାର୍ଯ୍ୟ ହେବ ସିଦ୍ଧି
ତାଙ୍କ କର୍ମରେ ସନ୍ତୁଷ୍ଟ ହେବେ ଦେବତାଦି ।
ପ୍ରାଣତେଜି ବୈଶ୍ୱାନର କାଳାନଳ ଜ୍ୱାଳା
ଜାତ ଅଗ୍ନିକୋଳେ ଏ ପିଙ୍ଗଳ ମୂର୍ତ୍ତିକଳା ।
ଆତ୍ମଜ୍ୟୋତି ସୁଷୁମ୍ନା ଅଜପାରୁ ମନ୍ତ୍ରେ
ଯଥା ବାକ୍ୟ ଉଚ୍ଚାରଣ କରନ୍ତି ପ୍ରୋହିତେ ।
ଜଟି ବଟି ହଟି ଆଶୁ ପଟିମାର ନୁଟି
ଏହି ଚାରିମୂଳେ ଅଷ୍ଟାଦଶ ମଧ୍ୟ ଖଟି ।
ଜାତି ଅନଳ ଅଗ୍ନି ଯେ ସମିଧ ବୃତ୍ତାନ୍ତ
ଏହା ମୂଳକରି ଷୋଳଲକ୍ଷ ଯେ ଅଶ୍ୱନ୍ତ ।

ବିଜେକଲେ ଯାଗନିକ ଯେ ଯାହାର ସ୍ଥାନ
ଯଥାବିଧି ମନ୍ତ୍ରେ କଲେ ସାମବେଦ ଗାନ ।
ପଞ୍ଚାମୃତ ଆଦିକରି ନଇବେଦ୍ୟ ସାରି
ବୈଶ୍ୱାନର ମୂଳଘେନି ମନ୍ତ୍ର ଅଷ୍ଟ ଚାରି ।
ଗୁଆଘୃତ ବ୍ରହ୍ମକର୍ମ ଆଦି ପାକସୁରା
ଅଷ୍ଟାଦଶ ବହନି ଯେ ଦ୍ୱାଦଶ ଦୋହରା ।
ଯଜ୍ଞକୁଣ୍ଡ ସମ୍ମାର୍ଜନ କରନ୍ତି ମାର୍କଣ୍ଡ
ଅଗ୍ନିଦେବତା ବିଜୟ କଲେ ଅଗ୍ନିକୁଣ୍ଡ ।
ପ୍ରଥମେ ଆହୁତି ଦେଲେ ବୈଶ୍ୱାନର ମୂଳେ
ଘୃତ ପକାଇଲେ ଅଗ୍ନିଦେବ ଗଣ୍ଡସ୍ଥଳେ ।
ତହୁଁ ସ୍ୱାହାକରି ମୁନି ଛାଡ଼ିଦେଲେ ଘୃତ
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ଜଗନ୍ନାଥ ।
ବ୍ରାହ୍ମଣମାନେ ମିଳିଣ କଲେ ବେଦଧ୍ୱନି
ମଙ୍ଗଳ ଗୀତ ଗାବନ୍ତି ସୁଶୀଳା କାମିନୀ ।
ଦ୍ୱାରଦେଶରେ ଗାବନ୍ତି ଆସି ଚଣ୍ଡପୁତ୍ର
ଗ୍ରହଶାନ୍ତି ମନ୍ତ୍ରମାନ ପଢ଼ନ୍ତି ପଣ୍ଡିତ ।
ଘୃତ ପାନରେ ବିକାଶ ହୋଇଲେ ଅନଳ
ଯୁଧିଷ୍ଠିଦେବ ଛାଡ଼ିଲେ ଅଞ୍ଜଳି ତଣ୍ଡୁଳ ।
ବ୍ରାହ୍ମଣଗଣ ମିଳିଣ କରନ୍ତି କଲ୍ୟାଣ
ଧର୍ମପ୍ରାପ୍ତ ହେଉ ଧର୍ମ ବୋଲନ୍ତି ବ୍ରାହ୍ମଣ ।
ଅଗ୍ନିଙ୍କର ତେଜ ଦେଖି ବୋଲନ୍ତି ଦୁର୍ବାସା
ହେ ବ୍ୟାସ ନ ଦିଶେ କିମ୍ପା ଅଗ୍ନିଙ୍କର ଶିଖା ।
ତୁମ୍ଭପରି ଦ୍ୱିଜ ଦେଲେ ପ୍ରଥମ ଆହୁତି
ମହାଶିଖା ନ ଉଠିଲା ଅନଳର ଜ୍ୟୋତି ।
ମାର୍କଣ୍ଡ ବୋଇଲେ ତହିଁ ଶୁଣ ମୁନିବର
ଆଜିକାଲି ଅଟେ ଦିନ ମାସ ଯେ ମକର ।
ମକର ମାସେ ଆଦିତ୍ୟ ଅନଳ ଉଦୟେ
ତାହାଙ୍କ ତେଜ ହେତୁରୁ ଦିଶଇ ଏ ପ୍ରାୟେ ।
ବଶିଷ୍ଠ ବୋଇଲେ ଆହେ ଏମନ୍ତ ନୁହଇ
ଏହି ଅନଳରେ କାହିଁ ଆଦିତ୍ୟ ଦିଶଇ ।
ନିଜେ ଯାଗନିକ ହୋଇ ତହିଁ ମାରକଣ୍ଡ
ତହିଁକି ଆଦିତ୍ୟ ତେଜ ହେବ ପରଚଣ୍ଡ ।
ନାରଦ ବୋଇଲେ ତୁମ୍ଭେ କହ ନାନାକଥା
ଶାସ୍ତ୍ର ଅନୁସାରେ କହ ଯଥାର୍ଥ ବାରତା ।
ଦୁର୍ବାସା ବୋଇଲେ ତୁମ୍ଭେ କଳିପ୍ରିୟ ମୁନି
ଭୂତ ଭବିଷ୍ୟତ ଜାଣି ଶୁଣି ମହାଜ୍ଞାନୀ ।
କାହିଁପାଇଁ ନ ଉଠିଲା ଶିଖା ଅନଳରୁ
ସେ କଥା ଦେଖାଅ ମୁନି ଶାସ୍ତ୍ର ସଙ୍ଗତିରୁ ।
ନାରଦ ବୋଲନ୍ତି ମୋତେ କହ କଳିପ୍ରିୟ
ସତ୍ୟ ଯା ଦେଖଇ ତାହା ବୋଲଇ ନିଶ୍ଚୟ ।
ସତ୍ୟ କହିଲେ ନିଶ୍ଚୟ ଲାଗେ ତହିଁ କଳି
ତେଣୁ ବୋଲୁଥାନ୍ତି ମୋତେ କଳିପ୍ରିୟ ବୋଲି ।
ମାର୍କଣ୍ଡ ବୋଲନ୍ତି ତୁମ୍ଭେ ଯଥାର୍ଥେ ଡଗର
ସର୍ବ ଦୁଃସହ ତୁମ୍ଭଙ୍କୁ ହୁଅଇ ଗୋଚର ।
ନାରଦ ବୋଇଲେ କହ ଯଥାର୍ଥ ବଚନ
ଅପୁତ୍ରିକ ଅଟନ୍ତି ଯେ ଯୁଧିଷ୍ଠି ରାଜନ ।
ସନ୍ତାନ ଅଭାବେ ସିନା ଧର୍ମହାନି ହୁଏ
ତେଣୁକରି ଅଗ୍ନିଦେବ ଆହୁତି ନ ନିଏ ।
ରାଜା ହୋଇକରି ଯେବେ ହେଲା ଅପୁତ୍ରିକ
ନ ହୁଏ ବସୁଧା କେବେ ସୁଫଳ ଦାୟକ ।
ଅପୁତ୍ରିକ ହୁଅଇଟି ଯେଉଁ ଦେଶ ରାଜା
ବହୁତ ଦୁଃଖୀ ହୁଅନ୍ତି ତହିଁ ଜନପ୍ରଜା ।
ଅପୁତ୍ରିକ ହୁଅଇଟି ଯେଉଁ ମହୀପାଳ
ଦେବତାଏ ତା ହସ୍ତରୁ ନ ଘେନନ୍ତି ଜଳ ।
ନୃପ ହୋଇକରି ଯେବେ ଅପୁତ୍ରକ ହେଲେ
ପାତ୍ର ଅମନାତ୍ୟ ଭଲ ନ ପାଆନ୍ତି ଭଲେ ।
ଯୁଧିଷ୍ଠିର ଅପୁତ୍ରିକ ପୁତ୍ର ତାଙ୍କ ନାହିଁ
ଅଗ୍ନିଦେବ ଆହୁତିରେ ପଶିବେ କିମ୍ପାଇଁ ।
ନାରଦଙ୍କର ପ୍ରକୃତ ବଚନକୁ ଶୁଣି
ସ୍ତମ୍ଭୀଭୂତ ହୋଇଗଲେ ପୁଣି ଚକ୍ରପାଣି ।
କୃଷ୍ଣ ସ୍ତମ୍ଭୀଭୂତ ଦେଖି ହସି ବ୍ୟାସଜ୍ଞାତା
ନାରଦଙ୍କୁ ବୋଲନ୍ତି ଯେ ଶୁଣ ଏହିକଥା ।
ଯୁଧିଷ୍ଠିର ଅପୁତିକ ହୋଇଲେ କିପରି
ପଞ୍ଚଭାଇ ଏକଆତ୍ମା ବୁଝ ମନେକରି ।
ଆଦ୍ୟ ବନବାସ କାଳେ ହିଡ଼ିମ୍ବକ ବନେ
ହିଡ଼ିମ୍ବିକୀକୁ ବିବାହ ହେଲେ ଭୀମସେନେ ।
ନିବାତକବଚ ସୁତା ଯେଉଁ ଅନ୍ନପୂର୍ଣ୍ଣା
ଅନାଦି ମାହେଶ୍ୱରୀ ସେ ନିରଞ୍ଜନୀ ସିନା ।
ସେହି ହିଡ଼ିମ୍ବିକୀ ଗର୍ଭେ ଭୀମ ଔରସରେ
ଘଟୋତ୍କଚ ଜାତ ହେଲା ଜାଣନ୍ତି ସଂସାରେ ।
ଭୀମସୁତ ଯୁଧିଷ୍ଠିଙ୍କ ନୁହେ କି କୁମର
ଅପୁତ୍ରିକ ବୋଲି ହୋଲ କେଉଁ ପରକାର ।
ନାରଦ ବୋଇଲେ ତାହା ଜାଣି ଶୁଣି ବ୍ୟାସ
ଯାଗକାଳେ ସେ ପୁତ୍ରକୁ ନ ଡାକିଲ ପାଶ ।
ବେଦଶାସ୍ତ୍ରବକ୍ତା ହୋଇ କିମ୍ପା ହେଲ ବଣା
ଏ ମହାଯଜ୍ଞକୁ ତାକୁ ବେଗକରି ଅଣା ।
ତା ଶୁଣି ଶ୍ରୀହରି ଆଜ୍ଞା କରିଲେ ଭୀମକୁ
ମନେ ଚିନ୍ତା କର ଏବେ ତୋହର ପୁତ୍ରକୁ ।
ଧନ୍ୟ ଚକ୍ରାନ୍ତ ତୋହର ଆହେ ଚକ୍ରପାଣି
ତୋ ପାଦେ ଶାରଳା ଦାସ କରୁଛି ଦଇନୀ ।

## ଘଟୋତ୍କଚଙ୍କୁ ସଭାକୁ ଆନୟନ ଓ ହିଡ଼ିମ୍ବିକୀ ସହିତ ଦ୍ରୌପଦୀର କଳହ

ଶ୍ରୀହରିଙ୍କ ବଚନରେ ବୀର ବୃକୋଦର
ନାମ ଧରି ହୃଦଗତେ ଚିନ୍ତଇ କୁମର ।
ସେଠାରୁ ହିଡ଼ିମ୍ବୀ ବନ ନବଶତ ଯୂଣ
କମ୍ପିଲା ଘଟୋତ୍କଚର ଦେହ ପୁଣ ପୁଣ ।
ଜନନୀ ଆଗରେ କୁମର ଯାଇଣ ପୁଚ୍ଛଇ
ମୋହର ଆସନ ମାଗୋ କିପାଇଁ କମ୍ପଇ ।
ପୁତ୍ରର ବଚନ ଶୁଣି ହୃଦଗତେ ଗୁଣି
ସପତ ବ୍ରହ୍ମାଣ୍ଡ ତାଙ୍କୁ ଦିଶିଲା ସେକ୍ଷଣି ।
ପୁଣି ପୁତ୍ରର ନିକଟେ କହେ ମାତା ତାର
ତୋତେ ଦେଖି ଲୋଡୁଛନ୍ତି ତୋହର ପିଅର ।
ତାହା ଶୁଣି ସେ କୁମର ବୋଲଇ ମାତାକୁ
କିସ ଭେଟିଦ୍ରବ୍ୟ ନେବି ପିତାଙ୍କ ପାଶକୁ ।
ମାତା ବୋଇଲା ସେଠାରେ ଛନ୍ତି ଲକ୍ଷେରାଜା
ବଡ ସମ୍ଭର୍ବରେ ତହିଁ କରିବୁ ତୁ ପୂଜା ।
ଶତେରଥ ପୂରାଇଲା ପାଣିଦ୍ରବ୍ୟ ଯେତେ
ଶତରଥ କସ୍ତୁରରୁ ଯୁଆଦ ସହିତେ ।
ସୁଗନ୍ଧ ଅଏଁଳା ନେଲା ଏକଲକ୍ଷ ଭାର
ଲକ୍ଷେ ଭାର ସଜକଲା ଚନ୍ଦନ କର୍ପୂର ।
ପୁଣି ଲକ୍ଷ ଲକ୍ଷ ଭାର ନେଲା ଚୂତଫଳ
ଯିବାପାଇଁ ସଜ ହେଲା ହିଡ଼ିମ୍ବୀଉ ବାଳ ।
ସଙ୍ଗେ ନିଶାଚରବଳ ଶତେସସ୍ର ରଥୀ
ମୁକୁଟ ତେଜ ବିରାଜେ ବାଳଅର୍କ ଜ୍ୟୋତି ।
ମାତା ଚରଣେ ଓଳଗି ମାଗିଲା ମେଲାଣି
ତାରାକ୍ଷୀନଦୀ କୂଳକୁ ଆସେ ଥାଟ ଘେନି ।
ଥୋକାଏ ଦୂର ହିଡ଼ିମ୍ବୀ ଆସଇ ପାଛୋଟି
ବୋଲେ ହୃଦେ ଧରିଥିବୁ ମୋର କଥାଗୋଟି ।
ବାଟରେ ଭେଟିବୁ ତୋର ତାତ ଭୀମସେନ
ପିତାଙ୍କୁ ତୁ ନମସ୍କାର କରିବୁ ବହନ ।
ଦ୍ୱିତୀୟରେ ପ୍ରଣିପାତ ହେବୁ ବାସୁଦେବ
ତୃତୀୟେ ପ୍ରଣାମ ହେବୁ ଯାଇ ଯଜ୍ଞଠାବ ।
ଚତୁର୍ଥେ ନମିବୁ ଯାଇ ଯୁଧିଷ୍ଠି ଦେବଙ୍କୁ
ଆବର ତୁ ନମସ୍କାର ନୋହିବୁ କାହାକୁ ।
ତୁହି ଅଟୁ ହିଡ଼ିମ୍ବିକ ବନର ମୂର୍ଦ୍ଧନା
ମାନବକୁଳକୁ ଅଟୁ ତୁ ଦେବତା ସିନା ।
ଘଟୋତ୍କଚ ବୋଲେ ମାତଃ ଅଧର୍ମ କହିଲୁ
ହିଂସାପ୍ରାୟ କରି ମାଗୋ ମୋତେ ନିରୋଧିଲୁ
ଯୁଧିଷ୍ଠିଙ୍କ କୋଳେ ଥିବେ ଦ୍ରୁପଦଦୁହିତୀ
ନମସ୍କାର କଲେ ତାଙ୍କୁ ଲକ୍ଷେକ ନୃପତି ।
ବ୍ରାହ୍ମଣ ରାଜାର ସେହୁ ଅଟଇ କୁମାରୀ
ଯଜ୍ଞୁ ଜାତ ସେ ଅନାଦି ଦେବୀ ମାହେଶ୍ୱରୀ ।
ଯୁଧିଷ୍ଠିଦେବଙ୍କଠାରୁ ଅଟେ ଚାରୁହଂସୀ
ସେ କୋପ କରିଲେ ଅଙ୍ଗ ହୋଇଯିବ ଧ୍ୱଂସି ।
ତୋର ତାଙ୍କଠାରେ ଅଛି ସପତଣୀ ହିଂସା
ତେଣୁକରି ନ ଛାଡ଼ିଲୁ କଳଙ୍କ ମନୀଷା ।
ହିଡ଼ିମ୍ବୀ ବୋଇଲା ତୁ ତ ବନେ ଅଧିପତି
ବଜ୍ର କବଚର କୂଳେ ତୋର ଉତପତ୍ତି ।
କୋଟିତୀର୍ଥ ଘେନିକରି କ୍ଷେତ୍ରାଦି ପୁଷ୍କର
ଅଭିଷେକ କରିଅଛି ତୋହର ଏ ଶିର ।
ପାଣ୍ଡବଙ୍କୁ ନମସ୍କାର ନୁହଇ ଯୁକତେ
ସ୍ତ୍ରୀ ଗୋଟାକୁ ନମସ୍କାର କରିବୁ କେମନ୍ତେ ।
ତୁହି ଯେ ବୋଇଲୁ ସେହୁ ଯଜ୍ଞରୁ ଉତ୍ପତ୍ତି
ସ୍ତ୍ରୀ କୂଳକୁ ଦୂଷିତା ସେ ଦୋଚାରୀ ଯୁବତୀ ।
ପୁଂସ ପଞ୍ଚବିଂଶ ନାରୀ କରିବେ ଯୁକତେ
ସ୍ତିରୀ ହୋଇ ପଞ୍ଚସ୍ୱାମୀ କରିଲା କେମନ୍ତେ ।
ଛାର ପାମରୀ ସେ ନାରୀ ଅଟଇ ଅସତୀ
ତାକୁ ନମସ୍କାର କଲେ ଆୟୁ ହେବ କ୍ଷତି ।
ପୁତ୍ର ଭୟ ଦେଖିକରି ହିଡ଼ିମ୍ବିକୀ ବୋଲେ
ସେ ଠାବକୁ ଯିବି ମୁହିଁ ଚାଲ ତୋହ ତୁଲେ ।
ପୁତ୍ରକୁ ଘେନିଣ ବଜ୍ରକବଚ ନନ୍ଦିନୀ
ନିଜରୂପ ତେଜି ମାୟାରୂପକୁ ସେ ଘେନି ।
ଆକାଶେ ଓଷ୍ଠ ତାହାର ମଧପୁରେ ପାଟି
ଗର୍ଭେ ପୂରାଇ ରଖିଲା ରଥ କୋଟି କୋଟି ।
ଭୟଙ୍କର ରୂପେ ଆସେ ଆକାଶ ମାର୍ଗରେ
ଦେବତାଏ ପଳାଇଲେ ତାକୁ ଦେଖିଡରେ ।
ଭୀମସେନ ମୁଖ ଚାହିଁ ବୋଲନ୍ତି ଶ୍ରୀବତ୍ସି
ପୁତ୍ର ଘେନି ହିଡ଼ିମ୍ବିକୀ ଶୂନ୍ୟେ ଆସୁଅଛି ।
ଯୁଧିଷ୍ଠିର ପୁଚ୍ଛା କଲେ ସହଦେବ ପାଶ
ବାବୁରେ କିପାଇଁ ସୂର୍ଯ୍ୟ ହୋଇଲେ ଅଦୃଶ୍ୟ ।
କରଯୋଡ଼ି ସହଦେବ ବଚନ ବୋଇଲା
ହିଡ଼ିମ୍ବିକୀ ଦେଖି ସୂର୍ଯ୍ୟ ଉହାଡ଼େ ଲୁଚିଲା ।
ସ୍ୱାମୀହେ କୋଟିଏ ରଥ ଉଦରେ ପୁରାଇ
ପୁତ୍ର ଘେନି ଆକାଶରେ ଆସୁଅଛି ଧାଇଁ ।
ଭୀମସେନକୁ ଡାକିଣ କହନ୍ତେ ଶ୍ରୀନାଥ
ଆସୁଅଛି ହିଡ଼ିମ୍ବିକୀ ପୁତ୍ରର ସହିତ ।
ମହାବିଶ୍ୱରୂପ ଧରି ଆସେ ହିଡ଼ିମ୍ବିକୀ
ମନୁଷ୍ୟ ତ୍ରସ୍ତ ହୋଇବେ ତାର ରୂପ ଦେଖି ।
କିଛିଦୂର ଯାଏ ବାବୁ ତୁ ପାଛୋଟି ଯାଅ
ସୁଖେ ଘେନିଆସ ତୋର ପତ୍ନୀ ଆଉ ପୁଅ ।

ଆଜ୍ଞାପାଇ ଭୀମସେନ ଚଳିଲା ବହନ
ମନ୍ମଥ ପର୍ବତ ଯାଏ କରିଲା ଗମନ ।
ସ୍ୱାମୀ ବଦନ ଚାହିଁବା ମାତ୍ରକେ ଅସୁରୀ
ବିଶ୍ୱରୂପ ତେଜି ହେଲା କନ୍ଦର୍ପ ସୁନ୍ଦରୀ ।
କାମଦେବ ପରାୟେକ ସେ ସ୍ଥିରୀ ହୋଇଲା
ସ୍ୱମୀ ପାଦତଳେ ଆସି ପ୍ରଣିପାତ ହେଲା ।
ଘଟୋତ୍କଚ ପ୍ରଣମିଲା ଭୀମସେନ ପାଦ
ପୁତ୍ର ଭାର୍ଯ୍ୟା ଦେଖି ଭୀମ ହେଲେ ଗଦ ଗଦ ।
ଯାନବାହନ ତେଜିଲେ ସକଳ ସଇନ୍ୟ
ଭୀମସେନଙ୍କ ପାଦରେ ଯାଇ କଲେ ମାନ୍ୟ ।
ପୁତ୍ରକୁ କୋଳରେ ଧରି ପାଣ୍ଡବ ସୁନ୍ଦର
ସର୍ବ ବାରତା ପୁଚ୍ଛଇ କୁଶଳାଦି ତାର ।
ସକଳ ସୁଲଭ ବୋଲି କହଇ କୁମର
ଭାରିଯାକୁ ସମ୍ବୋଧନ କରେ ବୃକୋଦର ।
ବାରୁଣା ପର୍ବତରେ ରଖି ସୈନ୍ୟବଳ
ନିତ୍ୟ ଭୋଜନ ତାହାଙ୍କୁ ଦିଅନ୍ତି ସକଳ ।
କୁମରକୁ ଘେନି ଭୀମ ବେଗେ ଗଲେ ଚଳି
ଦ୍ୱାରରେ ରହିଲା ବଜ୍ରକବଚ ଦୁଲ୍ଲାଳୀ ।
ଭିତରେ ପ୍ରବେଶ ହେଲା ଘଟୋତ୍କଚ ବୀର
ଶ୍ରୀନାରାୟଣଙ୍କୁ ଦେଖି କଲା ନମସ୍କାର ।
ଆଗେ ଆଗେ ବାସୁଦେବ ପଛେ ଭୀମସେନ
ମଧ୍ୟେ ଘଟୋତ୍କଚ ଚାଲେ ହିଡ଼ିମ୍ବୀ ନନ୍ଦନ ।
ବ୍ୟାସ ବଶିଷ୍ଠଙ୍କୁ ଚାହିଁ ନମସ୍କାର କରି
ଅନ୍ୟ ଋଷିଙ୍କୁ ମାନନା କଲେ ସେହିପରି ।
ରାଜାମାନେ ନିରୂପଣ କଲେ ତାକୁ ଦେଖି
ୟାର ମାମୁଁ ହିଡ଼ିମ୍ବିକ ମାତା ହିଡ଼ିମ୍ବକୀ ।
ଭୀମସେନ ହିଡ଼ିମ୍ବିକ ଅସୁରକୁ ମାରି
କୁମ୍ଭିରୀ କିନ୍ନରୀ ବକ ଆଦିକୁ ନିବାରି ।
ବଜ୍ରକବଚ ନନ୍ଦିନୀ ଭୀମେ କଲା ଇଚ୍ଛା
ଘଟୋତ୍କଚ ଅଟେ ତେଣୁ ଭୀମସେନ ବତ୍ସା ।
ସର୍ବେ ଆନନ୍ଦିତ ହେଲେ କୁମରକୁ ଚାହିଁ
ବୋଇଲେ ଦେଖିଲୁ ପୂର୍ବେ ଦେଖିନାହୁଁ କେହି ।
ଆସ୍ଥାନ ତଳକୁ ନେଲେ ଦେବ ଜନାର୍ଦ୍ଦନ
ବହୁଧନ ରତ୍ନସହ କଲାକ ଦର୍ଶନ ।
ପ୍ରତ୍ୟକ୍ଷରେ ନିରଞ୍ଜନ ଅଟନ୍ତି ଏ ସ୍ୱାମୀ
ବିଚାରି କୁମାର ହେଲା ତହିଁ ପରଣାମି ।
ଶ୍ରୀକୃଷ୍ଣ ବୋଇଲେ ଦେବ ଅବଧାନ କର
ହିଡ଼ିମ୍ବଜୀ ବନ ରାଜା କଲେ ନମସ୍କାର ।
କିତପ୍ରସାଦ ବୋଲିଣ ଆଜ୍ଞା ଅବଧାରୀ
ଛାମୁରେ ଉଭା କୁମର କାଖେ ହସ୍ତ ଭରି ।

ଦ୍ରୌପଦୀର ମୁଖ ଦେଖି ହେଲା ହେଠମଥା
ଦେଖିଣ କୋପ କରିଲେ ଦ୍ରୁପଦ ଦୁହିତା ।
ପୁତ୍ରଠାରୁ ଅପମାନ ପାଇଣ ପାଞ୍ଚାଳୀ
ରାଗେ ପ୍ରଚଣ୍ଡ ନେତ୍ରରୁ ଅଶ୍ରୁପଡ଼େ ଗଳି ।
ରାଗେ ଅଧୀର ହୋଇଣ କମ୍ପି ମାହେଶ୍ୱରୀ
ଘଟୋତ୍କଚ ମୁଖ ଚାହିଁ ଆଜ୍ଞା ଅବଧାରୀ ।
ଆରେ ଘଟୋତ୍କଚ ତୁହି ମାତା ଶିକ୍ଷା ପାଇ
ଅବଜ୍ଞାରେ ନମସ୍କାର ନ ହେଲୁ ରେ ବାଇ ।
ମୁଁ ଯାଜ୍ଞସେନୀ ଯୁଧିଷ୍ଠିରଦେବ ପାଟବଂଶୀ
ପାଣ୍ଡବହୁଁ ଶତଗୁଣେ ମୁହିଁ ଗୁରୁହଂସୀ ।
ବ୍ରାହ୍ମଣ ରାଜା ଦ୍ରୁପଦ ମୁଁ ତାର କୁମାରୀ
ତୋର ମାତା ନିଲକ୍ଷଣୀ ଅଟଇ ଅସୁରୀ ।
ମାତାର ବଚନ ପାଳି ତୁହି ଆରେ ଦୁଷ୍ଟ
ମୋତେ କିମ୍ପା ନମସ୍କାର ନ କଲୁ ପାପିଷ୍ଠ ।
ଏ ମହାସଭାରେ ମୋତେ ଲଜ୍ଜା ତୁ ଦିଅାଉ
ମୋ ଶାପରେ ତୁ ପାମର ହେବୁ ଅଳ୍ପଆୟୁ ।
ମାତା ପାପିଷ୍ଠୀର ବୋଲେ ଝିଙ୍ଗାସିଲୁ ମୋତେ
ଅଯୁଦ୍ଧେ ଶକତି ପଡୁ ତୋର ହୃଦଗତେ ।
ଏହିରୂପେ ଶାପଦ୍ୟନ୍ତେ ଦ୍ରୁପଦ କୁମାରୀ
ଭୟେ ଘଟୋତ୍କଚ ତହୁଁ ପଳାଇଲା ଡରି ।
ଦ୍ୱାରେ ଥାଇ ଦ୍ରୌପଦୀର କଥା ଶୁଣୁଥିଲା
ଗଦାକୁ ପେଲି ହିଡ଼ିମ୍ବୀ ଭିତରେ ପଶିଲା ।
ଲାଜ ଭୟ ସଂକୋଚାଦି ସବୁ ତ୍ୟାଗକରି
ଦ୍ରୌପଦୀକୁ ବାକ୍ୟ କହେ ଅତି କୋପ ଧରି ।
ଆଲୋ ଦେଖିଛି ତ ମୁହିଁ ତୁ ବଡ଼ ଅସତୀ
ତୁ ଗୋଟାଏ ନାରୀ ହୋଇ ତୋର ପାଞ୍ଚପତି ।
ମୋର ପୁତ୍ରଗୋଟି ଅଟେ ରାଜଅଭିଷେକୀ
ସେ କି ପ୍ରଣାମ କରିବ କୌଣସି ନାରୀକି ।
ମୋ ଅଜ୍ଞାନ ବାଳସୁତ ତାକୁ କଲୁ କୋପ
କିଛି ନ ବିଚାରି ପୂର୍ଣ୍ଣେ ଦେଲୁ ତାକୁ ଶାପ ।
ଯେଉଁ ଶାପ ଦେଲୁ ତାକୁ ନୋହିବ ଅନ୍ୟଥା
ପ୍ରକୃତରେ ସେ ତୋ ସୁତ ତୁ ତାହାର ମାତା ।
ଯେଉଁ ଶାପ ଦେଲୁ ତାର ହୋଇବଲୋ ହିତ
କ୍ଷତ୍ରୀର ଶକ୍ତି ପଡ଼ଇ କ୍ଷତ୍ରୀ ହୃଦଗତ ।
ସେ ଶକ୍ତି ପିଠିରେ ଯାଇ ଯେବେ କି ପଡ଼ନ୍ତା
ପୃଷ୍ଠଭଙ୍ଗ ପ୍ରାୟ କ୍ଷତ୍ରୀ ନର୍କଗତି ହନ୍ତା ।
ଆଲୋ ଆଣ୍ଠୁକୁଡ଼ି ତୋର ନାହାନ୍ତି ସନ୍ତାନ
ଯେଉଁରୂପେ ଶାପ ଦେବି ଶୁଣ ତା ବିଧାନ ।
ନିଶ୍ଚେ ପୁତ୍ର ହେବ ତୋର ପାଞ୍ଚ ଔରସରେ
ପାଞ୍ଚଟି କୁମର ହେବ ଜାଣିଥା ମନରେ ।

ଏମୋହର ବାକ୍ୟେ ତାଙ୍କୁ ପଡ଼ିବ ପ୍ରମାଦ
ସାତ ସାତ ବର୍ଷେ ହେବ ତାଙ୍କ ମୁଣ୍ଡ ଛେଦ ।
ଏହି ରୂପେ ହିଡ଼ିମ୍ବିକୀ ଶାପ ଦେଲା ଯହୁଁ
ଦୁଇ ସଉତୁଣୀଙ୍କର ଦ୍ୱନ୍ଦ୍ୱ ହେଲା ତହୁଁ ।
ଶୁଣ ବୈବସ୍ୱତ ମନୁ ରାକ୍ଷସୀ ବୁଦ୍ଧିକୁ
ଶାପକୁ ବିହିଲା ଆଣି ସେ ଭବିଷ୍ୟତକୁ ।
ଶ୍ରୀଜଗନ୍ନାଥ ଚାହିଁଲେ ବ୍ୟାସଙ୍କ ବଦନ
ବୋଇଲେ ମୁନି ଏ ଶାପ ହୋଇବ କେସନ ।
ଶ୍ରୀକୃଷ୍ଣ ବଚନେ ବ୍ୟାସ ଫିଟାଇଲେ ପୋଥି
ସଭାରେ ଶ୍ରବଣକାରୀ ଲକ୍ଷେକ ନୃପତି ।
ଆଗତ ପୁରାଣ କଥା ବ୍ୟାସ କହୁଛନ୍ତି
ସକଳ ଭବିଷ୍ୟ କଥା ସକଳେ ଶୁଣନ୍ତି ।
ଶୁଣ ହେ ପରମବ୍ରହ୍ମ କୃଷ୍ଣ ମହାଭାଗ
ଦୁଇକୁଳ ଦ୍ୱନ୍ଦ୍ୱୀ ହେବେ ପାଇବାକୁ ଭାଗ ।
ପ୍ରଥମରେ ଭୀଷ୍ମ ଯାଇ ହେବେ ସେନାପତି
ଦଶଦିନ ଯୁଦ୍ଧକରି ହେବେ ବିନାଶପତି ।
ତାଙ୍କ ଅନ୍ତେ ସେନାପତି ହେବେ ଗୁରୁଦ୍ରୋଣ
ଦ୍ୱିତୀୟ ଦିବସ ରାତ୍ରେ ହେବ ଘୋରରଣ ।
ବଜ୍ରଶକ୍ତି ଥିବ ରାଧାସୁତର ହସ୍ତରେ
ନନ୍ଦିଘୋଷ ଲୁଚାଇବ ଆପଣ ସେଠାରେ ।
ଘଟୋତ୍କଚକୁ ବୋଲିବ ସେଠାରେ ଆପଣ
ନନ୍ଦିଘୋଷ ପଛେ ଲୁଚି ବସ ରେ ଯାଇଣ ।
ଶକ୍ତି ବୁଲାଇ ମାରିବ ରାଧାର କୁମର
ପାତାଳେ ଚାପିବ ରଥ ହନୁମନ୍ତ ବୀର ।
ସେ ରଥ ପାତାଳଦେଶେ କରନ୍ତେ ଗମନ
ଘଟୋତ୍କଚ ବକ୍ଷେ ଶକ୍ତି ହୋଇବ ପତନ ।
ବେଦବ୍ୟାସ ଜଣାଇଲେ ଆଗତ ବିଷୟ
ଘଟୋତ୍କଚ ନାଶ କଥା ଏହି ଦେବରାୟ ।
ଆବର ପୁଚ୍ଛା କରିଲେ ପ୍ରଭୁ ଚକ୍ରଧର
ପାଞ୍ଚାଳୀ ପୁତ୍ରଙ୍କ କଥା କହ ମୁନିବର ।
ବ୍ୟାସ ବୋଇଲେ ଅଟଇ ଏହି ଦିବ୍ୟକଥା
ଦ୍ରୋଣ ଅନ୍ତେ ସେନାପତି କର୍ଣ୍ଣ ମହାରଥା ।
ଅଢ଼ାଇ ଦିବସ କର୍ଣ୍ଣ କରିବ ସମର
ଶେଷେ ଗଦାଯୁଦ୍ଧ ହେବ ଓଳିଏ ମାତର ।
କୌତୁକ ରଣ ହୋଇବ ଅଷ୍ଟାଦଶ ଦିନ
ପାଣ୍ଡବ ପାଞ୍ଚଭାଇ ଯେ କରି ଜୟ ରଣ ।
ଶୁଭ ଅନୁକୂଳ ଘେନି ଇନ୍ଦ୍ରପ୍ରସ୍ଥେ ଯିବେ
ଅର୍ଘ୍ୟ ଘେନି କୁନ୍ତୀଦେବୀ ବନ୍ଦାଇଣ ନେବେ ।
ପାଣ୍ଡବଙ୍କୁ ଘେନି ତୁମ୍ଭେ ଚଳିବ ଦ୍ୱାରିକା
ପାଞ୍ଚାଳି ସୁତେ ରହିବେ ହୋଇଣ ନିଃଶଙ୍କା ।
ଅଶ୍ୱତ୍ଥାମା ସେନାପତି ହେବ ସେ ରାତିରେ
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ହାଣିବ ଖଣ୍ଡାରେ ।
ପାଞ୍ଚାଳି ପାଞ୍ଚକୁମାର ଶୋଇଥିବେ ଖଟେ
ପର୍ଶୁ ଘେନି ଅଶ୍ୱତ୍ଥାମା କାଟିବ ଆକଟେ ।
ତହୁଁ କୁମରମାନଙ୍କ ପାଞ୍ଚଗୋଟି ଶିର
ନେଇ ଧନୁ କରେ ବାନ୍ଧି କରିବ ସେ ଭାର ।
ତାହା ଦୁର୍ଯ୍ୟୋଧନ ଆଗେ ପକାଇ ଦିଅନ୍ତେ
ଦୁର୍ଯ୍ୟୋଧନ ମୃତ୍ୟୁ ହେବ ତାହାକୁ ଚାହାନ୍ତେ ।
କହନ୍ତି ଯେ ବ୍ୟାସମୁନି ଶୁଣ ଦେବରାୟେ
ହିଡ଼ିମ୍ବିକୀ ଶାପେ ଏହା ଘଟିବ ନିଶ୍ଚୟେ ।
ବ୍ୟାସଙ୍କ ବଦନୁ ହରି ଏହିରୂପେ ଶୁଣି
ଅତ୍ୟନ୍ତ ବିରସ ହେଲେ ମନେ ମନେ ଗୁଣି ।
ଶ୍ରୀମୁଖରେ ମହାବାହୁ କରି ସାଧୁ ସାଧୁ
ସମାଧାନ କଲେ ତହୁଁ ଦୁଇ କୁଳବଧୂ ।
ଜୟ ଜୟ ଜଗନ୍ନାଥ ଶ୍ରୀମଧୁସୂଦନ
ଅଗତି ଗତିଦାୟକ ଜଗତ ଜୀବନ ।
ତୁ ରଖିଲେ ହରି ତାକୁ କିଏ ପାରେ ମାରି
ତୁ ମାରି ଇଚ୍ଛିଲେ କେହି ନ ପାରିବେ ତାରି ।
ତୋହର ଏ ଖେଳଘର ତୁହି କରିଅଛୁ
ତୋହର ଖେଳକୁ ଏକା ତୁ ସିନା ଦେଖୁଛୁ ।
ତୁହି ତାରୁ ତୁହି ମାରୁ ଦେଉ ସୁଖ ଦୁଃଖ
ତୁହି କି ନ ଜାଣୁ ହରି ମୁଁ ଅତି ନିରେଖ ।
ତୋର ଶ୍ରୀଚରଣ ଛଡ଼ା ନ ଜାଣେ ମୁଁ ଆନ
ମୋହର ଭକତି ପ୍ରଭୁ ଘେନ ବା ନ ଘେନ ।
ସେଥିପାଇଁ ଭୟ ଲେଶ ନାହିଁ ତ ମୋହରି
କେବଳ ରସନା ଡାକୁ ଶ୍ରୀହରି ଶ୍ରୀହରି ।
ଶାରଳା ଦାସ କହଇ ସଭାପର୍ବ ଗୀତେ
କାହିଁ ପଳାଇବୁ ହରି ସଦାଥିଲେ ଚିତ୍ତେ ।



## ବିଭୀଷଣକୁ ନିମନ୍ତ୍ରଣ କରି ଆଣିବା ନିମନ୍ତେ ଘଟୋତ୍କଚର ଗମନ

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ମୁନିନାୟକ କିସ ହେଲା ଅତଃପର ।
ସେହିକଥା ଶୁଣିବାକୁ ବଳଇ ମୋ ଚିତ୍ତ
କହନ୍ତି ଅଗସ୍ତି ମୁନି ଶୁଣ ନରନାଥ ।
ଅନେକ ବେଶ ଭୂଷଣ କରି ସେ କୁମରେ
ବସାଇଲେ ତାକୁ ନେଇ ଯୁଧିଷ୍ଠି କୋଳରେ ।
ନାନାଦି ମଙ୍ଗଳ ବାଦ୍ୟ ବାଜେ କରି ଧ୍ୱନି
ଦିଅନ୍ତି ହବିର୍ଭାଗକୁ ଯେ ପବିତ୍ର ଧ୍ୱନି ।

ଯୁଧିଷ୍ଠି ଦେବ ପୁଚ୍ଛିଲେ ଆହେ ଜନାର୍ଦ୍ଦନ
ମେଳ ହୋଇ ଅଇଲେ କି ସକଳ ରାଜନ ।
କହନ୍ତି ଶ୍ରୀ ବାସୁଦେବ ଶୁଣ ଦେବରାୟେ
ମର୍ତ୍ତ୍ୟପୁରୁ ଆସିନାହିଁ ପ୍ରତାପୀ ରାଜାଏ ।
ଅତିବଡ଼ ଗୁରୁହଂସୀ ଅଟେ ମହାରାଜା
ତେପନ ଯୁଗ ଧାର୍ମିକ ସେହି ମହାତେଜା ।
ଆଶ୍ଚର୍ଯ୍ୟ ହୋଇଲେ ଶୁଣି ଯୁଧିଷ୍ଠିର ଦେବ
ଏଡ଼େ ରାଜା ଶୁଣାନାହିଁ କାହିଁ ବାସୁଦେବ ।
କହନ୍ତି ଶ୍ରୀ ନାରାୟଣ ଶୁଣ ଆହେ ନୃପ
ବିଭୀଷଣ ନାମେ ରାଜା ଅଛି ଲଙ୍କା ଦ୍ୱୀପ ।
ସେହୁ ବଡ଼ ରାମଭକ୍ତ ପୁଣ ଅଟେ ଯତି
ତ୍ରେତୟାରେ ରାମଚନ୍ଦ୍ର ଜନମ ଲଭନ୍ତି ।
ପିତା ସତ୍ୟ ପାଳିବାକୁ ବନବାସ କଲେ
ଭାଇଭାର୍ଯ୍ୟା ସହିତରେ ଦଣ୍ଡକେ ରହିଲେ ।
ରାବଣ ଅଟଇ ଲଙ୍କାଗଡ଼ର ରାଜନ
ରାମ ପତ୍ନୀ ହରିନେଲା କରିଣ ଗୋପନ ।
ଲଙ୍କାକୁ ଗମନ କରି ତାହାକୁ ମାଇଲେ
ବିଭୀଷଣକୁ ସେଠାରେ ରାଜା କରିଦେଲେ ।
ଯୁଧିଷ୍ଠି ବୋଇଲେ ସେ ବା ଆସିବ କାହିଁକି
କୃଷ୍ଣ ବୋଇଲେ ପେଶିବା ଦୂତେକ ତହିଁକି ।
ଆସିବା ନ ଆସିବାର ଜାଣିବା ତଦନ୍ତ
ଏହା କହି ତହୁଁ ଗଲେ ଦେବ ଜଗନ୍ନାଥ ।
ସହଦେବ ଘେନି ବିଜେହେଲେ ଯାଇ ଦ୍ୱାରେ
ପୁଣି ବ୍ୟାସ ପାଶେ ଯାଇ ପୁଚ୍ଛିଲେ ସତ୍ୱରେ ।
ଆହେ ବ୍ୟାସ ଯୋଗାଏ କି ତୁମ୍ଭର ମନକୁ
ବିଭୀଷଣକୁ ଶ୍ରୀମୁଖ ଦେବୁ ଆସିବାକୁ ।
ବ୍ୟାସ ବୋଇଲେ ତୁମ୍ଭେ ତ ଅଟ ମହାଯୋଗୀ
ତୁମ୍ଭ ଶ୍ରୀମୁଖ ଚଳିଲେ ଆସିବ ସେ ବେଗି ।
ମନ୍ତ୍ରୀ ସହଦେବ ଘେନି ବ୍ୟାସଙ୍କ ସହିତେ
ଶ୍ରୀମୁଖ ଲେଖନ୍ତି ଯାଇ ଯୁଧିଷ୍ଠି ଅଗ୍ରତେ ।
ମାୟାରେ ପରଲୋକ ଯେ କରେ ଆଚ୍ଛାଦନ
ମନୁକାଳ ବଞ୍ଚାଇ ସେ ପୁଣ ଉତପନ୍ନ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଅଜେୟ ଯେ ଜାଣ
ନିରାକାର ପୁରୁଷ ଯେ ମଳୟ ଧାରଣ ।
ପୂର୍ବ ଦିଗର ପାଟକ ଯେ ଅଟେ କାରଣ
ଯେହୁ ଅଟେ ସୋମବଂଶ କୁଳ ଉଦ୍ଧାରଣ ।
ସୁଗୁଣ ନିଧାନ ସେହୁ କକ୍ଷା ଜଗଜ୍ଜେଠି
ଶୁକ୍ଳାମ୍ବର ନିରଞ୍ଜନ ଅବତାର ଗୋଟି ।
ନାରାୟଣ ବନ୍ଦୁଥାନ୍ତି ଯାହାଙ୍କ ଚରଣ
ସେହୁ ହସ୍ତିନାର ରାଜା ରାଜେଶ୍ୱର ଜାଣ ।
ମହାରାଜା ଯୁଧିଷ୍ଠିର ପାଦେ ଜଗଦ୍‌ବନ୍ଧୁ
ଲଙ୍କାଦ୍ୱୀପ ରାଜା ତୁହି ଯା ପାଦକୁ ବନ୍ଦୁ ।
ଏହି ଶ୍ରୀମୁଖ ଆଜ୍ଞାରେ ତୋର ଥାଟ ସୈନ୍ୟ
ଦେଖା ଦରଶନୀ ଘେନି ଆସିବ ବହନ ।
ଏଠାରେ ହେଉଛି ରାଜସୂୟ ଯଜ୍ଞ ଜାଣ
ବସି ଦର୍ଶନ କରିବୁ ଧର୍ମଙ୍କ ସନ୍ତାନ ।
ତୋତେ ଆଜ୍ଞା ହେଲା ଆରେ ଲଙ୍କାର ନାୟକ
ଶ୍ରୀହସ୍ତରେ ଘେନ ଶଙ୍ଖ ଚକ୍ରର ସନ୍ତକ ।
ଆହେ ବିଭୀଷଣ ମୋର ଏହି କଥା ଶୁଣ
ବହନ ଆସ ତୁ ଦେଖାଦର୍ଶନୀ ଘେନିଣ ।
ଏ ଗଲା ଦୂତ ସଙ୍ଗରେ ସତ୍ୱରେ ଆସିବୁ
ରାମବତାରେ ତୋତେ କହିନାହିଁ ବାବୁ ।
ଏଠାବକୁ ଆସିଲେ ତୁ ଆରେ ବିଭୀଷଣ
ନିଶ୍ଚେ ମୁହିଁ କରାଇବି ଠାକୁରେ ଦର୍ଶନ ।
ଶ୍ରୀମୁଖ ଲେଖି ଚଳିଲେ ଦେବ ଜଗନ୍ନାଥ
ଯଜ୍ଞସ୍ଥଳେ ନେଇ ଦେଲେ ଯୁଧିଷ୍ଠିର ହସ୍ତ ।
ଶ୍ରୀମୁଖ ସନ୍ତକ ବସେ ଯୁଧିଷ୍ଠିରଙ୍କର
ବିଧି ବିଧାନ ଅଛଇ ଯେମନ୍ତ ପ୍ରକାର ।
ଯୁଧିଷ୍ଠିର ପଚାରିଲେ ଶୁଣ ହେ ଅନନ୍ତ
ଲଙ୍କାଦ୍ୱୀପେ ଯିବାପାଇଁ କିଏ ସାମରଥ ।
ଅତ୍ୟନ୍ତ ଦୁରାଗମନ ସିନ୍ଧୁଗଡ଼ ସେହି
ମାନବ ମାତ୍ରକ ଦେବ ପାରିବ କି ଯାଇ ।
ଯୁଧିଷ୍ଠିରଙ୍କ ଅଗ୍ରତେ ବୋଇଲେ ଶ୍ରୀବତ୍ସ
ଲଙ୍କାଯିବ ହିଡ଼ିମ୍ବିକୀ ପୁତ୍ର ଘଟୋତ୍କଚ ।
ଅନ୍ତରୀକ୍ଷେ ଗମେ ଦେବ ଅସୁରଙ୍କ ରଥ
ସେହି ଗମନ କରିବ ସେ ଦୁଃସାଧ ପଥ ।
ନାରାୟଣ ଆଜ୍ଞା ଶୁଣି ଧର୍ମ ନରସାଇଁ
ଘଟୋତ୍କଚେ ଆଜ୍ଞାଦେଲେ ଲଙ୍କା ଯିବା ପାଇଁ
ଅନ୍ତରୀକ୍ଷ ବିମାନରେ ଚଢ଼ିଣ କୁମର
ଲଙ୍କା ଯିବାପାଇଁକି ସେ ହୋଇଲା ବାହାର ।
ବାସବ ଆଜ୍ଞାରେ ଯେହ୍ନେ ଅଙ୍ଗାର ପନ୍ନଗ
ନାନାରତ୍ନମଣିରେ ଯେ ଶୋଭେ ତାର ଅଙ୍ଗ ।
ସ୍ୱାମୀ ଶ୍ରୀମୁଖ ଲମ୍ବାଏ ତାର ହୃଦଗତେ
ଚଳଇ କୁମର ତହୁଁ ଦକ୍ଷିଣର ପଥେ ।
ସର୍ବରାଜାଏ ବିଚାର କରନ୍ତି ସଭାରେ
ଯୁଧିଷ୍ଠିର ଅଧିପତି ଏ ସସାଗରାରେ ।
ତ୍ରେତାଯୁଗ ବିଭୀଷଣେ ପୁଣି ମହାରାଜା
ଯୁଧିଷ୍ଠିର ପାଦେ ଆସି କରିବ ସେ ପୂଜା ।
ବଡ଼ ଦୁର୍ଲ୍ଲଭ କଥାତ ଦେଖୁଛୁ ଏଠାରେ
ସବୁ ଆଶ୍ଚର୍ଯ୍ୟ କଥାହିଁ ହରି ପ୍ରସାଦରେ ।

ସବୁ ରାଜା ମିଶି ତହିଁ କଲେ ଧନ୍ୟ ଧନ୍ୟ
ଇନ୍ଦ୍ରପ୍ରସ୍ଥରୁ ବାହାର ହିଡ଼ିମ୍ବୀ ନନ୍ଦନ ।
ଦ୍ୱିତୀୟ ଭୀମ ପରାୟେ ଭୀମସେନ ବାଳ
କାର୍ତ୍ତିକେଶ୍ୱରଙ୍କୁ ଜିଣି ତେଜ ଅନର୍ଗଳ ।
ଜମ୍ବୁଦ୍ୱୀପ ପ୍ରଦକ୍ଷିଣ କଲା ଏକରାତ୍ରେ
କ୍ଷୀରୋଦକୁ ଜିଣି ଗଲା ରଜନୀ ପ୍ରଭାତେ ।
ମାଘ ଶୁକ୍ଳପକ୍ଷ ଭୌମବାର ଚତୁର୍ଥୀରେ
ଉତ୍ତରଭାଦ୍ର ନକ୍ଷତ୍ର ପାଞ୍ଚଘଡ଼ିଠାରେ ।
ଘଟୋତ୍କଚ ପ୍ରବେଶିଲା ଲଙ୍କାର ମଧେଣ
ଆସ୍ଥାନରେ ବସିଛନ୍ତି ରାଜା ବିଭୀଷଣ ।
ଛାମୁରେ ବସିଛନ୍ତି ପାତ୍ର ଅମାତ୍ୟ
ଶୂନ୍ୟେ ଦିଶିଲା ଗମନ୍ତେ ତହିଁ ଏକ ରଥ ।
ଛାମୁରେ ଯେ କହେ ପାରୁଶ ନାମେ ଏକ ମନ୍ତ୍ରୀ
ଆକାଶରେ ଚାଲିଆସେ ଦେଖ ଏକରଥୀ ।
ଅଳକାପୁରକୁ ତେଜି ଅସେ କି କୁବେର
ଆକାଶର ନାଥ କିବା ଆସେ ସୁନାସୀର ।
ଦ୍ୟୁମତସେନ ବୋଇଲା ଏ ନୁହେଁ ମଘବା
ଐରାବତ ଚଢ଼ଇ ସେ ସୁରରାଜ ଦେବା ।
କିଏ ବୋଲେ ବାରାନିଧି ନାଥ ରତ୍ନାକର
କିଏ ବୋଲେ ଆସୁଛନ୍ତି କୈଳାସ ଈଶ୍ୱର ।
ଏହିରୂପେ ବିଚାରିନ୍ତି ଲଙ୍କାର ସଇନି
ଘଟୋତ୍କଚ ପ୍ରବେଶିଲା ତହିଁ ରଥ ଘେନି ।
ଶଙ୍ଖଚିହ୍ନ ବହଇ ଯେ ରଥର ଉପର
ଆସ୍ଥାନ ତେଜି ଉଠିଲେ ବେଗେ ଲଙ୍କେଶ୍ୱର ।
ରଥରୁ ଓହ୍ଲାଇ କରି ହିଡ଼ିମ୍ବିକୀ ବାଳ
ଜଗତୀର ଉପରକୁ ଚଢ଼େ ତତକାଳ ।
ବକ୍ଷସ୍ଥଳରେ ଶ୍ରୀମୁଖ ଅଛି ଯେ ଲମ୍ବାଇ
ବିଭୀଷଣ ଆସ୍ଥାନରୁ ଦେଖିଣ ଉଠଇ ।
ମହାପାରୁଶ ମନ୍ତ୍ରୀ ଯେ ପଚାରେ ଉଦନ୍ତ
ଆହେ ବାବୁ କେଉଁଦେଶୁଁ ହୋଇଲ ଆଗତ ।
କୁମର ବୋଲେ ପାଏଡ଼ା ପାଡ଼ି ବିଭୀଷଣ
ନିଉଛାଳି କରି ବେଗେ ସ୍ୱାମୀ ଅଜ୍ଞା ଘେନ ।
ବିଭୀଷଣ ବୋଲେ ମୁହିଁ ଅଟଇ ଅମର
ଅନ୍ୟ ଠାକୁର ନ ଜାଣଇ ମୋହର ଉପର ।
ରାବଣ ମୋର ଠାକୁର ଥିଲା ତ୍ରେତାଯୁଗେ
ଶ୍ରୀରାମ ବଧିଲେ ତାକୁ ଜାନକୀର ଯୋଗେ ।
ଦ୍ୱିତୀୟ ଠାକୁର ମୋର ଜଗନ୍ନାଥ ସ୍ୱାମୀ
ଅନ୍ୟ ଠାକୁରଙ୍କୁ ମୁହିଁ ନୁହେ ପରଣାମି ।
ରାମ ରାବଣ ଦୁହିଙ୍କୁ ଏକା ମୁଁ ଜାଣଇ
ସଂସାରେ ଜଗତଜିତା ଆନେ ନ ଗଣଇ ।

ଘଟୋତ୍କଚ ବୋଲେ ରାମ ତ୍ରେତୟା ଯୁଗରେ
ସୂର୍ଯ୍ୟବଂଶେ ଜନମିଲେ ଦଶରଥ ଘରେ ।
ଅନନ୍ତ ବଂଶରେ ଜାତ ଯଦୁ ମହାଋଷି
ଅରୁଣ ତେଜ ବୋଲିଣ ତାହାଙ୍କର ଶିଷି ।
ଅରୁଣ ତେଜର ପୁତ୍ର ଅଟେ ବସୁଦେବ
ତାହାଙ୍କ ନନ୍ଦନ ନାମ ହେଲା ବାସୁଦେବ ।
ଅଷ୍ଟମଲ୍ଲ ମୂଳେ ସେହୁ କଂସାସୁର ବଧି
ଜରା ନାରକାଦି କାଳଦମନ ନିରୋଧି ।
ଏବେ ବିଜେ କରିଛନ୍ତି ଯାଇ ଇନ୍ଦ୍ରପ୍ରସ୍ଥେ
ତୁମ୍ଭଙ୍କୁ ଶ୍ରୀମୁଖ ଦେଲେ ଯିବାର ନିମନ୍ତେ ।
ନିଃସନ୍ଦେହ ବାର୍ତ୍ତା ଶୁଣି ରକ୍ଷ ବିଭୀଷଣ
ଜଗତୀ ଉପରୁ ଡେଇଁପଡ଼ି ତତ୍‌କ୍ଷଣ ।
ପାଏଡ଼ା ପାଡ଼ିଣ ସେହୁ କଲା ନିଉଛାଳି
ଘଟୋତ୍କଚ ଶ୍ରୀମୁଖକୁ ନେଇ ଦେଲା ତୋଳି ।
ଘଟୋତ୍କଚ ଚାହିଁଣ ବୋଇଲା ବଚନ
କେବଣ କୁଳରେ ଜାତ ଯୁଧିଷ୍ଠି ରାଜନ ।
ବୁଧ ନାମେ ଚନ୍ଦ୍ରଦେବ ତାହାଙ୍କ ସନ୍ତତି
ପୁରୁରବା ବୋଲି ତାଙ୍କ ପୁତ୍ରେକ ହୁଅନ୍ତି ।
ତାଙ୍କ ନନ୍ଦନ ନହୁଷ ନାମେ ନରନାଥ
ଯଯାତି ମହାରାଜା ଯେ ତାହାଙ୍କର ସୁତ ।
ଦିଲୀପ ବୋଲି କରିଣ ତାହାଙ୍କ ନନ୍ଦନ
ତାଙ୍କରି ଅଂଶରୁ ଜାତ ଦୁଷ୍ମନ୍ତ ରାଜନ ।
ଭରତ ନାମରେ ହେଲେ ଏହାଙ୍କ ନନ୍ଦନ
ପୃଥିବୀ ମଧ୍ୟରେ ହେଲେ ବଡ଼ ଖ୍ୟାତପନ୍ନ ।
ଭରତ ସୁତ ଭୁମନ୍ୟୁ ନାମରେ ହୋଇଲେ
ପାର୍ଥିବ ବୋଲି ତାଙ୍କର ସୁତ ଜନମିଲେ ।
ତାହାଙ୍କର ସୁତ ଶମ୍ବୁରାଣ ନରପତି
ଆଦିତ୍ୟ ନନ୍ଦିନୀ ବିଭା ହୋଇଲେ ତପତୀ ।
ଯା ତେଜ ସହି ନ ପାରେ ନିଜେ ନରପତି
ତାଙ୍କୁ ଘେନି ବାସ କଲେ ଶମ୍ବୁ ସଦଗତି ।
ତାଙ୍କ ତହୁଁ ଜାତ ହେଲେ କୁରୁ ନରରାଜ
ବିରଥ ବୋଲିଣ ତାତ ତାଙ୍କର ଆତ୍ମଜ ।
ତାଙ୍କର ନନ୍ଦନ ନାମ ହୋଇଲା ଶାନ୍ତନୁ
ଚିତ୍ର ବିଚିତ୍ର ବୋଲିଣ ଯାଙ୍କ ଦୁଇସୂନୁ ।
ବେଦବ୍ୟାସ ମୁନିପୁତ୍ର ପଣ୍ଡୁ ଧୃତରାଷ୍ଟ୍ର
ପଣ୍ଡୁଙ୍କର ପୁତ୍ର ଧର୍ମ ଯୁଧିଷ୍ଠି ପ୍ରକଟ ।
ସାକ୍ଷାତ ଧର୍ମ ପୁରୁଷ ଯୁଧିଷ୍ଠିର ରାୟ
ତାଙ୍କର ଅନୁଜ ଭୀମ ପବନ ତନୟ ।
ତାହାଙ୍କର ସାନ ନାମ ଅଟେ ଫାଲଗୁନି
ହରି ଅର୍ଜ୍ଜୁନ ଏକାତ୍ମା ଅଟନ୍ତି ସେ ବେନି ।

ପାଞ୍ଚାଳ ଦେଶରେ ପାର୍ଥ ବିନ୍ଧି ରାଧାଚକ୍ର
ତହିଁ ଦଳିଲେ ଲକ୍ଷେକ ନୃପଙ୍କର ଦର୍ପ ।
କୈଳାସ ଉପାଡୁଥିଲା କୁମ୍ଭକ ଦଇତ
ଜିଣି ନ ପାରିଲେ ଶିବସ୍ୱଗଣ ସହିତ ।
ଅଗ୍ନି ବ୍ୟାଧି ନିବାରିଲେ ଇନ୍ଦ୍ରବନ ଦହି
ଦ୍ୱାପରେ ପାଣ୍ଡବଗଣେ ଯୋଦ୍ଧା ସେ ବୋଲାଇ
ହନୁମନ୍ତ ସଙ୍ଗତରେ କଲେ ସେ ବିବାଦ
ଶରେ ସାଗର ବାନ୍ଧିଲେ ମହା ସେତୁବନ୍ଧ ।
ନୀଳେନ୍ଦ୍ରୀ ହରଣ କାଳେ ଦଳିଲେ ସେ କାଳୀ
ଭୟରେ ଅଗ୍ନି ପ୍ରଦାନ କଲେ ବନମାଳୀ ।
କଲେ ରାଜସୂୟ ଯଜ୍ଞ ଧର୍ମଦେବ ରାଜା
ଲକ୍ଷେନୃପ ଆସିକଲେ ତାଙ୍କ ପାଦପୂଜା ।
ତ୍ରୈଲୋକ୍ୟ ଠାକୁର ଯେହୁ ଦେବ ଚକ୍ରଧାରୀ
ସେ ଯଜ୍ଞେ ହେଲେ ଅନନ୍ତ ନାମେ ପ୍ରତିହାରୀ ।
ଭାଳିଣ ଶ୍ରୀମୁଖ ଦେଲେ ଛାମୁରେ ଜଣାଇ
ବିଭୀଷଣ ବୋଲେ ନିଶ୍ଚେଁ ଦେଖିବି ମୁଁ ଯାଇ ।
ଘଟୋତ୍କଚ ବୋଲେ ରକ୍ଷରାଜ ହେଲେ ତୃପ୍ତି
ବହୁତ ପୂଜା କରିଲେ ଲଙ୍କା ଚକ୍ରବର୍ତ୍ତୀ ।
ମନ୍ତ୍ରୀ ଘେନିଣ ଏକାନ୍ତେ ଭାବଇ ଲଙ୍କାଧି
ଶ୍ରୀରାମ ପ୍ରସାଦେ ମୋର ସର୍ବକାର୍ଯ୍ୟ ସିଦ୍ଧି ।
ସେତୁବନ୍ଧ ପାରିହୋଇ ରାମ ଯିବାବେଳେ
ମୁଁ ପୁଚ୍ଛାକରି ଉତ୍ତର ମୂର୍ତ୍ତି ହେଲାବେଳେ ।
ସ୍ୱାମୀ ତ୍ରେତୟାଯୁଗେ ମୁଁ ଭେଟିଲିଇଁ ତୋତେ
ଦ୍ୱାପରେ ଦେଖା ହୋଇବା କଥା କହ ମୋତେ
ଶ୍ରୀରାମ ବୋଇଲେ ରାମ ଅବତାର ପରେ
ଦ୍ୱାପରେ ଜନ୍ମିବୁଁ ଆମ୍ଭେ ବସୁଦେବ ଘରେ ।
ମୋ ଦୂତ ଆସନ୍ତେ ତୁହି ଯିବୁଟି ବହନ
ନିରାକାର ବିଷ୍ଣୁଙ୍କୁ ତୁ କରିବୁ ଦର୍ଶନ ।
ମହାପ୍ରଭୁ ମୋତେ ଏହା ଅଛନ୍ତି ଯେ କହି
ନିଦାବିଷ୍ଣୁ ହସ୍ତିନାରେ ଏବେ ଜନ୍ମିଛଇଁ ।
ନିଃସନ୍ଦେହ ଆଜ୍ଞା ଦେଲେ ଲଙ୍କା ମହାରାଜ
ମନ୍ତ୍ରୀକୁ ବୋଇଲେ ବେଗେ ଦଣ୍ଡ ମୋର ସାଜ
ବହୁ ଉତ୍ସବରେ ସଜ ହେଲେ ଦୈତ୍ୟବଳ
ଅସୁର ଦୁନ୍ଦୁଭି ନାଦେ କମ୍ପେ ସିନ୍ଧୁଜଳ ।
ବତିଶ ଅଙ୍କୁଶ ସୈନ୍ୟ ଦଇତ୍ୟ ଦାନବ
ସହସ୍ର ରଥେ ପୁରାଏ ନେଇ ପାଣିଦ୍ରବ୍ୟ ।
ଦେବଦଳନ ରଥ ସେ ଦାନବର ଥିଲା
ସେ ରଥକୁ ବିଭୀଷଣ ଘେନି ବିଜେ କଲା
ସହସ୍ରେ ଶାର୍ଦ୍ଦୁଳ ନେଇ ଯୋଚିଲାକ ରଥେ
ଅତି ଦ୍ରୁତରେ ଉଡ଼ନ୍ତି ଗଗନର ପଥେ ।
ଶତଯୋଜନ ଅଟଇ ଅଗାଧ ଜଳଧି
ପ୍ରହରକ ମଧ୍ୟେ ଗଲେ ବ୍ୟାଘ୍ରମାନ ଖେଦି ।
ସାଗର ଲଙ୍ଘିଲା ଯହୁଁ ଅସୁରଙ୍କ ରଥ
ବିକଟଦନ୍ତ ଭୀଷଣ ଦିଶନ୍ତି ଦଇତ୍ୟ ।
ପର୍ବତ ପ୍ରାୟ ଶରୀର ଦୈତ୍ୟ କାମରୂପୀ
ଉତ୍ତର କୂଳରେ ଦଣ୍ଡ ଚଳେ ସର୍ବବ୍ୟାପି ।
ହିଡ଼ିମ୍ବୀ ନନ୍ଦନ ଦେଖି ହୋଇଲା ଆଶ୍ଚର୍ଯ୍ୟ
ବିଚାରଇ ମନକୃତ୍ୟ କଲେ ଦେବରାଜ ।
ଆଜ ଏ ମହାସଇନି କାହିଁ ବିଶ୍ରାମିବେ
ଏ ରାକ୍ଷସଙ୍କୁ କିଏ ସେ ଅନ୍ନ ଯୋଗାଇବେ ।
ଆବର ଲଙ୍ଘନ୍ତି ଯେବେ ମାନବ ସୈନ୍ୟଙ୍କୁ
କିଏ ସେ ସମର୍ଥ ହେବ ଏହାଙ୍କ ଆଗକୁ ।
ନିମିଷ ମାତ୍ର ଲଙ୍ଘିବେ ଏହୁ ତିନିପୁର
ଆବର ଏ ବିଭୀଷଣ ଅଟଇ ଅମର ।
ଘଟୋତ୍କଚ ବିଚାରେ ମୁଁ ଯାଏ ଆଗ ହୋଇ
ସ୍ୱାମୀ ଛାମୁରେ କହିବି ଏହି କଥା ନେଇ ।
ପୃଥିବୀରେ ଜନ୍ମିଛନ୍ତି ଦେବ ଦାମୋଦର
ପୃଥ୍ୱୀଭାରା ଉଶ୍ୱାସହିଁ ତାଙ୍କ ମୂଳାଧାର ।
ସ୍ଥାନ ନ ଅଣ୍ଟିବ ଯେବେ ଏତେକ ସୈନ୍ୟଙ୍କୁ
ଯେହ୍ନେ ସୈନ୍ୟ ନ ଆସନ୍ତୁ ଏ ଇନ୍ଦ୍ରପ୍ରସ୍ଥକୁ ।
ଶୂନ୍ୟେ ଗମନ କରଇ ଭୀମସେନ ବାଳ
ଗଳେ ଅଛି ବିଭୀଷଣ ଦତ୍ତ ରତ୍ନମାଳ ।
ସତ୍ୟଯୁଗରେ ଆଦିତ୍ୟ ଯେ ରତ୍ନମଣିକି
ପ୍ରସନ୍ନରେ ଦେଇଥିଲେ ସେ ବିଂଶପାଣିକି ।
ବିଭୀଷଣ ସେ ମଣିକୁ ଯତ୍ନେ ରଖିଥିଲେ
ତାକୁ ଆଣି ଘଟୋତ୍କଚ ଗଳେ ଲମ୍ବାଇଲେ ।
ଅଭୟ ବଳବନ୍ତା ସେ ହିଡ଼ିମ୍ବୀ ତନୟ
ପୁଣି ତେଜରେ ଦିଶଇ ବାଳଅର୍କ ପ୍ରାୟ ।
ଶୂନ୍ୟମାର୍ଗରେ କୁମାର ଚଳଇ ସତ୍ୱରେ
ଦିନକରେ ହେଲା ଚାନବିଂଶ ଯୋଜନରେଂ ।
ରଥ ତେଜ୍ୟା କଲା ବଜ୍ରକବଚର ନାତି
ଦକ୍ଷିଣ ଦ୍ୱାରରେ ଉଭା ହୋଇଲା ପାହାନ୍ତି ।
ଯାନ୍ତେ ପଥ ନିରୋଧିଲା ସତ୍ୟଭାମା ବାଳ
ଦକ୍ଷିଣ ଦ୍ୱାରରେ ଗଦା ଜଗେ ରକ୍ଷାପାଳ ।
ବୋଲେ ଦ୍ୱାର ଛାଡ଼ି ମୁହିଁ ଯିବି ଭିତରକୁ
ଲଙ୍କାର ବାରତା ଦେବି ଯାଇ ଠାକୁରଙ୍କୁ ।
ସେ ଦ୍ୱାରେ ଥିଲା ମାତଙ୍ଗ ନାମେ ସେନାପତି
ଭୀମସେନ ଠାକୁରଙ୍କୁ କହିଲା ତଡ଼ତି ।
ଘଟୋତ୍କଚ ଆଗମନ ଜାଣି ଭୀମସେନ
ସଙ୍ଗତରେ ନେଲେ ତହୁଁ ଦେବ ଭଗବାନ ।

ଯୁଧିଷ୍ଠି ଦେବଙ୍କ ଆଗେ ମାରୁତି କହିଲା
ଲଙ୍କାଗଡ଼ ବିଭୀଷଣ ହେ ଦେବ ଅଇଲା ।
ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ଏହି କଥା ଶୁଣି
ବୋଇଲେ ଏଡ଼େ ରାଜା କି ଆଣେ ପୁତ୍ରମଣି ।
ଶୁଣି ସାନନ୍ଦ ହୋଇଲେ ପ୍ରଭୁ ଦେବରାଜେ
ଘଟୋତ୍କଚର ନିକଟେ ତହୁଁ କଲେ ବିଜେ ।
ହିଡ଼ିମ୍ବୀ ନନ୍ଦନ ତାଙ୍କୁ ଦେଖି ପଣାମି
ବୋଲେ ବିଭୀଷଣ ଦେବ ବିଜେ କଲା ସ୍ୱାମୀ
ଅନେକ ସଇନ୍ୟ ଦେବ ଆଣିଅଛି ସାଙ୍ଗ
ଗିରିବର ପରକାରେ ସେମାନଙ୍କ ଅଙ୍ଗ ।
ମହାଯଜ୍ଞ ଆରମ୍ଭିଣ ଭାଙ୍ଗିଲ ହୋ ତୁହି
ଯଜ୍ଞକୁ ସାରନ୍ତୀ ବିଭୀଷଣଙ୍କୁ ନ କହି ।
ସ୍ୱାମୀ ଲକ୍ଷେ ନୃପତିଙ୍କୁ ଅନ୍ନ ଦେବ ଯେତେ
ଏକା ରାକ୍ଷସ ସୈନ୍ୟଙ୍କୁ ନ ଅଣ୍ଟିବ ତେତେ ।
ଭୋଜନ ସମୟେ ଯାଇ ଦେଖ ବାସୁଦେବ
ଦାନବଙ୍କର ରକ୍ଷକ ଅଟନ୍ତି ମାନବ ।
ଆପଣେ ଆରୋପି ସ୍ୱାମୀ ଆପେ କଲୁ ନାଶ
ଘଟୋତ୍କଚର ବଚନେ ଲାଗିଲାକ ତ୍ରାସ ।
ଶୁଣି ଆପଣା ମନରେ ହୋଇ ହସ ହସ
ହନୁମନ୍ତ ସୁମରଣା କଲେ ହୃଷୀକେଶ ।
ହସ୍ତିନାରୁ କିଷ୍କିନ୍ଧ୍ୟା ଯେ ସହସ୍ର ଯୋଜନ
ଚିନ୍ତନ୍ତେ ଆସ୍ଥାନେ ଥାଇ କମ୍ପେ ହନୁମାନ ।
ଆସନ କମ୍ପନ୍ତେ ତାହା ଜାଣିଣ ପାବନି
ତକ୍ଷଣେ ସାଜିଲା ତାର ଦଧିମୁଖ ସୈନି ।
ସାତପଦ୍ମ ପନ୍ଦର ମେବଚ୍ଛ କପିବଳ
ଲାଞ୍ଜ ଉପରେ ବସାଏ ସେ କପି ସକଳ ।
ଗିରିନା ପର୍ବତେ ପାଦ ଦେଇଣ ପାବନି
କ୍ଷେପାଏ ମାଇଲା ତହୁଁ ନିଜବଳ ଘେନି ।
ଶୂନ୍ୟ ଭୁବନକୁ ଭେଦି କ୍ଷଣକରେ ଭ୍ରମି
ଇନ୍ଦ୍ରପ୍ରସ୍ଥେ ବିଜେ କଲେ ହନୁମନ୍ତ ସ୍ୱାମୀ ।
ଦୂରୁଁ ଦେଖେ ଶ୍ରୀଅନନ୍ତ ଦେବ ପଡ଼ିହାରୀ
ଦୃତକନ୍ଥା ପିନ୍ଧି କାଖେ ଯୋଡ଼ିବେତ ଧରି ।
ଅଞ୍ଜନା ନନ୍ଦନ ଏହୁ ବେଶ ଦେଖି ଦୂରେ
ପ୍ରଣିପାତ ନିଉଛାଳି କରଇ ଛାମୁରେ ।
ହନୁମନ୍ତକୁ ଦେଖିଣ ସମସ୍ତ ରାଜାଏ
ବୋଲନ୍ତି ଲଙ୍କାଯମ ଏ ଦୈତ୍ୟ କଲା କ୍ଷୟେ ।
ସାଧୁ ସାଧୁ ତୋ ମହିମା ଯୁଧିଷ୍ଠି ରାଜନ
ତୋର ପ୍ରସାଦେ ଦେଖିଲୁଁ କେତେ କଥାମାନ ।
ହନୁମାନ ଶୁଣିଥିଲୁ ଦେଖିଲୁ ନୟନେ
ଜନମ ସୁଫଳ ଏକା ଯୁଧିଷ୍ଠି ଦର୍ଶନେ ।
ତ୍ରୈଲୋକ୍ୟ ମଧ୍ୟରେ ଯେହୁ ଅଟନ୍ତି ଅସାଧ୍ୟ
ସେ ସବୁଙ୍କୁ ଯୁଧିଷ୍ଠିର ଦେବ କଲେ ସାଧ୍ୟ ।
ହନୁମନ୍ତଙ୍କୁ ସାଦରେ ବୋଲେ ଜଗନ୍ନାଥ
ବିଭୀଷଣ ଆଣିଅଛି ଯୁଧିଷ୍ଠି ନିମିତ୍ତ ।
ହନୁମନ୍ତ ବୋଲଇ ଯେ ଶୁଣ ଦେବରାୟେ
ତାର ମୋର ଦେଖା ନାହିଁ ବହୁକାଳ ଯାଏ ।
ଡାହାଣରେ ହନୁମନ୍ତ ବାମେ ବୃକୋଦର
ଦୁଇ ଭାଇଙ୍କୁ ଘେନିଣ ଗଲେ ଚକ୍ରଧର ।
ପଛରେ ଗୋଡ଼ାଇଛନ୍ତି ବିନତା ନନ୍ଦନ
ଚଳନ୍ତି ଶ୍ରୀଜଗନ୍ନାଥ ଜଗତ ମୋହନ ।
ଲମ୍ବିତ କବରୀ ପରେ ଲମ୍ବ ଜୂଡ଼ାଗୋଟି
କପାଳେ ଚନ୍ଦନ ଚିତା ଦିଶୁଅଛି ଫୁଟି ।
ଦକ୍ଷିଣ ମୂରତି ହେଲେ ସ୍ୱାମୀ ଚକାଡୋଳା
ତ୍ରୈଲୋକ୍ୟକୁ ମୋହୁଛନ୍ତି ଦେବକୀର ବଳା ।
ବେନି ଯୋଜନ ପର୍ଯ୍ୟନ୍ତ ଗଲେ ସେ ପାଛୋଟି
ତୁଙ୍ଗଭଦ୍ରା ନଦୀକୂଳେ ବିଭୀଷଣେ ଭେଟି ।
ଶଙ୍ଖ ଚକ୍ର କୋଦଣ୍ଡ ଯେ ଗଦା ଭୁଜଚାରି
କାଖେ ଯୋଡ଼ିବେତ କୋଟିସୃଷ୍ଟି ଅଧିକାରୀ ।
ଗରୁଡ଼ଧ୍ୱଜ ରଥକୁ ବୀର ଦେଖି ଦୂରେ
ରଥରୁ ଡେଇଁ ପଡ଼ିଲା ଅତି ଭକ୍ତିଭରେ ।
ପରମାନନ୍ଦ ପୁରୁଷ ଦେବ ବନମାଳୀ
ଦୂରୁଁ ଦେଖି ବିଭୀଷଣ କଲା ନିଉଛାଳି ।
ମହାଭୟଙ୍କର ରୂପେ ଥିଲେ ଯେ ଅସୁରେ
ହନୁମନ୍ତ ମୁଖ ଚାହିଁ ଡରିଲେ ଅନ୍ତରେ ।
ନବକୋଟି ସୈନ୍ୟ ଏକଦଳ ହୋଇଅଛି
ହନୁମନ୍ତ ଡରେ ସର୍ବେ ହେଲେ ଏକଲୋଚି ।
ଏକ ପିଠିକୁ ଲୁଚିଲେ ଆରେକ ଅସୁର
ବିଚାରନ୍ତି କିମ୍ପା ଆସେ ଲଙ୍କାପୋଡ଼ା ବୀର ।
ଏହୁ ଧ୍ୱଂସ କରିଥିଲା ସବଂଶେ ରାବଣ
ଦୁର୍ଭାରବଳ ଧ୍ୱଂସନେ ଏହା ବୁଦ୍ଧିଜାଣ ।
ଆସିଲା ଅଚଳ ମାଳା ପକାଇଣ ହୃଦେ
ସାଗରେ ପକାଇ ଏକ ସେତୁ ବନ୍ଧ ବାନ୍ଧେ ।
ଶତେ ଚଉବିଂଶ ଯୂଣ ସେତୁ ଦୀର୍ଘ ଜାଣ
ଦ୍ୱାତ୍ରିଂଶ ଯୂଣ ଓସାର ଉଚ୍ଚ ବାରଯୂଣ ।
ଏକା ଥରକରେ ବାନ୍ଧିଦେଲା ବନ୍ଧସେତୁ
ଯା ଯୋଗୁ ରାମ ପାଇଲେ ଜାଣ ସର୍ବହେତୁ ।
ଅକଳିତ ସାଗରରେ ଏହୁକଲା ବାଟ
ଦିନେ ରାବଣ ସଙ୍ଗରେ ହେଲା ଯାର ଭେଟ ।
ଲକ୍ଷ୍ମଣକୁ ରାବଣ ଯେ ମାଇଲା ଶକତି
ଲଙ୍କାକୁ ନେବା ଇଛିଣ ଆସିଲା ସେ ଧାତି ।

ଲକ୍ଷ୍ମଣଙ୍କୁ ତୋଳିବାର ହନୁ ଦେଖି ଦୂରେ
ରେରେକାର କରି ଆସି ଚାପୋଡ଼େକ ମାରେ
ବିଂଶପାଣିର ମୁଖରୁ ବହିଲା ଶୋଣିତ
ଅଚେଷ୍ଟା ହୋଇ ପଡ଼ିଲା ସେହୁ ମୃତବତ ।
ଲକ୍ଷ୍ମଣଙ୍କୁ ତୋଳି ଘେନିଗଲା ରାମ ପାଶ
ନିର୍ଦ୍ଦୟ ବାନର ଯାକୁ ନ ଯାଇ ବିଶ୍ୱାସ ।
କେ ବୋଲେ କପଟୀ ଆସି ହେଲା ଉପସ୍ଥିତ
ମରଣକାଳକୁ ଯେହ୍ନେ ଘଟେ ବିପରୀତ ।
ନିର୍ଦ୍ଦୟ ମର୍କଟ ଲଙ୍କାରାୟେ ଦୟା ନାହିଁ
ଭୟେ କାନ୍ଦିଲେ ସକଳେ ହନୁମୁଖ ଚାହିଁ ।
ଦୈତ୍ୟମାନେ ଦଶନଖ ମୁଖରେ ଭରିଣ
ଡାକନ୍ତି ଶ୍ରୀରାମ ରଖ ଆମ୍ଭଙ୍କୁ ଶରଣ ।
ବାରମ୍ବାର ନିଉଛାଳି କଲେ ବିଭୀଷଣ
ଜୟ ଜୟ ରଘୁନାଥ ଗଲି ମୁଁ ଶରଣ ।
ଜୟ ରଘୁନାଥ ତବ ପଦାରବିନ୍ଦରେ
ଶାରଳା ଦାସର ମନ ରହୁ ନିରନ୍ତରେ ।



## ଯୁଧିଷ୍ଠିଙ୍କ ଦର୍ଶନାର୍ଥେ ଶ୍ରୀକୃଷ୍ଣ ବିଭୀଷଣଙ୍କୁ ଘେନି ଭିତରକୁ ଯିବାପାଇଁ ଚାରିଦ୍ୱାରେ ଭ୍ରମଣ ଏବଂ ରାଜାମାନଙ୍କ ଭୋଜନାଦି ଦର୍ଶନ

ପୁନରପି ପୁଚ୍ଛାକଲେ ମନୁ ଦଣ୍ଡଧର
ଅଗସ୍ତିଙ୍କ ଶ୍ରୀଚରଣେ ଯୋଡ଼ି ବେନିକର ।
ହେ ମହର୍ଷି ଏହାପରେ ହେଲା ଯେଉଁ କଥା
ବିସ୍ତାରି କହ ମୋହର ଫେଡ଼ ମନବ୍ୟଥା ।
କହନ୍ତି ଯେ କୁମ୍ଭସୁତ ମୁନି ବ୍ରହ୍ମବେତ୍ତା
ହେ ବିଲଙ୍କ ଦେଶ ରାଜା ବୈବସ୍ୱତ ଶ୍ରୋତା ।
ଏକମନେ ଶୁଣ ତୁମ୍ଭେ ରାଜସୂୟ ବାଣୀ
ସୁଖରେ ତରିବ ଏହି ଭବ ତରଙ୍ଗିଣୀ ।
ବହୁ ବିନୟୀ ହୋଇଣ ରାଜା ବିଭୀଷଣ
ଶ୍ରୀକୃଷ୍ଣଙ୍କ ପାଦେ କରି ସହସ୍ର ପ୍ରଣାମ ।
ବୋଲେ ତ୍ରେତାଯୁଗେ ଦେବ ତୋହର ଶରଣ
ଦ୍ୱାପରେ ଦୟା ତୁ ମୋତେ କର ନାରାୟଣ ।
ବୋଇଲେ ଶ୍ରୀକୃଷ୍ଣଚନ୍ଦ୍ର ଶୁଣ ହେ ଲଙ୍କାଧି
ଆମ୍ଭର ଦର୍ଶନେ ତୋର କାର୍ଯ୍ୟ ହେବ ସିଦ୍ଧି ।
ନିରାକାର ଅବତାର ଯୁଧିଷ୍ଠିର ସ୍ୱାମୀ
ଲକ୍ଷେକ ନୃପ ତାଙ୍କର ଚରଣେ ପ୍ରଣମି ।
ଶୁକ୍ଳଅଙ୍ଗ ନିଷ୍କଳଙ୍କ ଏହି ମହାରାଜା
ସକଳେ ତାଙ୍କ ଚରଣେ କରିବେକ ପୂଜା ।

ବିଭୀଷଣ ବୋଲେ ଦେବ କହୁଛି ତୁମ୍ଭଙ୍କୁ
ମୋହର ପାଇଁକି ଡାକି କହନ୍ତୁ ହନୁକୁ ।
ଏ ମୋର ତୁଳେ ଅଛନ୍ତି ଯେତେ ଦୈତ୍ୟବର
ଏ ଦୈତ୍ୟମାନଙ୍କ ଏକା ହନୁ କ୍ଷୟକାଳ ।
ଏହାଙ୍କୁ ଦେଖି ମୋ ସୈନ୍ୟ ହୁଅନ୍ତି କାତର
ସେମାନଙ୍କୁ ଦୟାକର ହେ ଅଞ୍ଜନା କୁମର ।
ହନୁବୋଲେ ଆଣିଛନ୍ତି ତୋତେ ଦେବରାଜେ
ତୁ ଆସିଛୁ ଧର୍ମସୁତ ଯୁଧିଷ୍ଠିଙ୍କ କାର୍ଯ୍ୟେ ।
ଯେବଣ ଯୁଧିଷ୍ଠିଦେବ ତ୍ରୈଲୋକ୍ୟର ନାଥ
ତାହାଙ୍କ ଆଜ୍ଞା କେ ଏଥେ ଲଙ୍ଘନେ ସମର୍ଥ ।
ଏହାଙ୍କ ଅନୁଜ ଏହୁ ଅଟେ ଭୀମସେନ
ଯାହାକୁ ଦେଖିଲେ ଭୟ କରଇ ଶମନ ।
ଭୀମସେନ ସାନୁଜ ଯେ ବୀର ଧନଞ୍ଜୟ
ଏକାକେ ସେ ତିନିପୁର କରିପାରେ ଜୟ ।
ସୁଗନ୍ଧପୁଷ୍ପ ହରଣେ କଲା ସେ ଗମନ
ଏକାକେ ଧ୍ୱଂସ କରିଲା ମୋର ମଧୁବନ ।
ବାରତା ପାଇ ଅଇଲି ମୁହିଁ କରି ରୋଷ
ମୋହରି ଛାମୁରେ ସେହି କଲା ଗୁଣଘୋଷ ।
ସତ୍ୟ ତ୍ରେତୟା ଦ୍ୱାପର ଆବର ଯେ କଳି
ଏ ଚାରିଯୁଗରେ ଜାଣ ମୁହିଁ ମହାବଳୀ ।
ସାତଦିନେ ବାନ୍ଧିଥିଲି ମୁହିଁ ସେତୁବନ୍ଧ
କପିବଳ ଘେନି ପାରେ ହେଲେ ସତ୍ୟସନ୍ଧ ।
ମୋହର ବିବାଦେ ଛାଡ଼ି ଅସ୍ତ୍ର ମନଭେଦୀ
କ୍ଷଣକ ମଧ୍ୟେ ବାନ୍ଧିଲା ପାର୍ଥ ବାରାନିଧି ।
ବିଭୀଷଣ ବୋଲେ ବନ୍ଧବାନ୍ଧିବା ଉତ୍ତାରେ
ଉଭା ହୋଇ ପାରିଲ କି ତାହାର ଉପରେ ।
ହନୁମନ୍ତ ବୋଲେ ମୁହିଁ ପରୀକ୍ଷା କରିଲି
ବିଶ୍ୱରୂପ ଧରି ବନ୍ଧ ଉପରେ ଉଠିଲି ।
ଲିତାଏକ ନ ଟଳିଲା ଶରବନ୍ଧ ତାର
ସେ ଦିନୁ ଜାଣିଲି ସେହି ଏକ ମହାବୀର ।
ଖାଣ୍ଡବବନ ଦହିଲା ଏହି ଫାଲଗୁନି
ଲୁଦୁବୁଦୁ ବ୍ୟାଧିରୁ ଯେ ତରିଲେକ ଅଗ୍ନି ।
ହେ ରାକ୍ଷସପତି ତୁମ୍ଭେ ଯାଅ କୃଷ୍ଣସଙ୍ଗେ
ଯୁଧିଷ୍ଠି ପାଦେ ବିନୟୀ ହେବ ବହୁମାର୍ଗେ ।
ତାହା ଆଜ୍ଞାରେ ନିଯୁକ୍ତ ଛନ୍ତି ଏ କେଶବ
ଅନ୍ୟ କଉଣସି କଥା ମନରେ ନ ଭାବ ।
ଏ ପରେ କୃଷ୍ଣ ବୋଇଲେ ହନୁମନ୍ତେ ଚାହିଁ
ବିଭୀଷଣ ସୈନ୍ୟଙ୍କୁ ତୁ ଅନ୍ନ ଦିଅ ଥାଇ ।
ଯିଏ ଯେ ରୂପେ ଭୋଜନେ ହୋଇବେକ ତୃପ୍ତି
ସେ ରୂପେ ଦେବୁ ଯେପରି ନୋହେ ଅତୃପ୍ତି ।

ବିଭୀଷଣ ମହାପାର୍ଶ୍ୱ ପାର୍ଶ୍ୱ ବେନି ମନ୍ତ୍ରୀ
ଏ ତିନିଙ୍କୁ ଘେନି ଆପେ ଆସନ୍ତି ଶ୍ରୀପତି ।
ବିଭୀଷଣଙ୍କୁ ଶ୍ରୀକୃଷ୍ଣ ବୋଲନ୍ତି ବାଟରେ
ହେ ରାଜା ନମିବ ଗଲେ ଯୁଧିଷ୍ଠି ପାଦରେ ।
ବିଭୀଷଣ ଯେଉଁ ଭାବେ ନ ନମିବ ଆନେ
ଶ୍ରୀକୃଷ୍ଣ ତା ଭାବ ଜାଣି ବିଚାରନ୍ତି ମନେ ।
ହେ ରାକ୍ଷସପତି ତୁମ୍ଭେ ନମିବ ଧର୍ମଙ୍କୁ
ସେ ସ୍ୱାମୀ ଯେ ରୂପେ କୋପ ନ କରେ ଆମ୍ଭଙ୍କୁ
ଏରୂପେ କହିଣ ଧରି ବିଭୀଷଣ କର
ଦକ୍ଷିଣ ଦ୍ୱାରେ ପ୍ରବେଶ ହେଲେ ଚକ୍ରଧର ।
ସେ ଦ୍ୱାରରେ ଦ୍ୱାରପାଳ କାଳିନ୍ଦୀର ବଳା
ପ୍ରତ୍ୟକ୍ଷେ ଧରିଛି ସେହି ବିଷ୍ଣୁଙ୍କର କଳା ।
ଅନେକ ଅଳଙ୍କାର ତା ଶରୀରେ ଭୂଷଣ
ଦେଖିଣ ସାନନ୍ଦ ମନ ହେଲା ବିଭୀଷଣ ।
ସେ ଦ୍ୱାରେ ବୋଲନ୍ତି ଶୁଣ କୃଷ୍ଣ ଦ୍ୱାରପାଳ
ଏ ଅଟନ୍ତି ବିଭୀଷଣ ଲଙ୍କା ମହୀପାଳ ।
ଯୁଗଭୋଗୀ ରାଜା ଏହୁ ରାମ ଅଭିଷେକୀ
ଯୁଧିଷ୍ଠି ଠାକୁରଙ୍କୁ ଏ ଆସିଅଛି ଦେଖି ।
ଭିତରକୁ ଯିବୁ ଆମ୍ଭେ ଦ୍ୱାର ଛାଡ଼ ବାବୁ
ଯୁଧିଷ୍ଠିରଙ୍କୁ ଦର୍ଶନ ଯାଙ୍କୁ କରାଇବୁ ।
କୁମର ବୋଇଲା ତାଙ୍କ ଆଜ୍ଞା ନ ପାଇଲେ
ଦ୍ୱାର ଛାଡ଼ି ପାରିବି କି ମୁହିଁ ତୁମ୍ଭ ବୋଲେ ।
ତହୁଁ ବିଭୀଷଣେ କୃଷ୍ଣ ଘେନିଣ ସଙ୍ଗତେ
ପୂର୍ବ ଦ୍ୱାରକୁ ଚଳିଲେ ପଶିବା ନିମନ୍ତେ ।
ଗୋବିନ୍ଦ ବୋଇଲେ ପାଶେ ଡାକି କାଳିଞ୍ଜନ
ବିଭୀଷଣ ଆଣିଛନ୍ତି ବହୁ ଦ୍ରବ୍ୟମାନ ।
ଭଣ୍ଡାର ଅଧିକାରୀକୁ କହ ଯାଉ ନେଇ
ମର୍ତ୍ତ୍ୟ ଭୁବନେ ଏ ଦ୍ରବ୍ୟ ଲୋଡ଼ିଲେ ନ ପାଇ ।
କୃଷ୍ଣ ଆଜ୍ଞାରେ ଦର୍ଶନୀ ଧନମାନ ଦେଲେ
ଦୁର୍ଯ୍ୟୋଧନ ପାଶେ ତାହା ସବୁ ସମର୍ପିଲେ ।
ବିଭୀଷଣଙ୍କୁ ଘେନିଣ ତହୁଁ ଦାମୋଦର
ବିଜୟ କରିଣ ଗଲେ ପୂର୍ବ ସିଂହଦ୍ୱାର ।
ଦଶ ଅଇବ୍ରତ ତହିଁ ଦୁହିଁହୁଏ ଗାଈ
ତାଙ୍କର ଉସ୍ୱର୍ଗେ ବହେ ଦୁଗ୍ଧନଦୀ ତହିଁ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ରାଜା ବିଭୀଷଣ
କାହିଁ ନ ଦେଖିଛୁ ନେତ୍ରେ ଏସନ ବିଧାନ ।
ପୂର୍ବଦିଗ ସିଂହଦ୍ୱାରେ ବିଜୟ ଅନଙ୍ଗ
ଅଶୀ ସହସ୍ରେ ଯୋଦ୍ଧା ଯେ ଛନ୍ତି ତାର ସଙ୍ଗ ।
ଅନେକ ଗହଳେ ପୂର୍ବଦିଗ ରାଜା ସେନି
ବହୁ ପାଣିଦ୍ରବ୍ୟ ଦେଖା ଦରଶନୀ ଘେନି ।

ଲକ୍ଷେ ରାଜାଙ୍କର ଯେତେ ଗଜ ଅଶ୍ୱମାନ
ଯେ ଯାହା ନିଯୋଗ ଘେନି ଅଛନ୍ତି ଏ ସ୍ଥାନ ।
ଦେଖିକରି ଆଶ୍ଚର୍ଯ୍ୟ ଯେ ନଉକେଶ ବସି
ମହାଦୁର୍ଲ୍ଲଭ ଦେଖିଣ ନ ସ୍ଫୁରଇ କିଛି ।
ଗୋବିନ୍ଦ ବୋଲନ୍ତି ଦ୍ୱାରେ ଶୁଣ ରେ ପ୍ରଦ୍ୟୁମ୍ନ
ଏ ଅଟନ୍ତି ଲଙ୍କାଗଡ଼ ରାଜା ବିଭୀଷଣ ।
ଦ୍ୱାର ଛାଡ଼ିଦେଲେ ଆମ୍ଭେ ଭିତରକୁ ଯିବୁ
ଯୁଧିଷ୍ଠିର ଠାକୁରଙ୍କୁ ଦର୍ଶନ କରିବୁ ।
ବାବୁ ମୀନକେତନ ଏ ଅଟେ ମହାତମା
ତ୍ରେତୟାଯୁଗ ରାଜା ଏ ରାକ୍ଷସେ ଉତ୍ତମା ।
ରାମଚନ୍ଦ୍ର ଅବତାରରେ ଏହୁ ଅଭିଷେକୀ
ଆମ୍ଭ ଆଜ୍ଞାରେ ଆସିଛି ଯୁଧିଷ୍ଠିର ଦେଖି ।
ନାରାୟଣଙ୍କ ବଚନେ ଶମ୍ବର ଅଇରି
ବୋଇଲା ବିନା ଆଜ୍ଞାରେ ଛାଡ଼ିବି କିପରି ।
ଆଜଦିନ ଦେବ ରହିଥିବ ସିଂହଦ୍ୱାରେ
ରାଜାଙ୍କୁ ଜଣାଇ ତାଙ୍କୁ ଛାଡ଼ିବା ଭିତରେ ।
ଗୋବିନ୍ଦ ବୋଇଲେ ଚାଲ ଏହିଠାରୁ ଯିବା
ଉତ୍ତର ଦୁଆରେ ଅବା ଯାଇଣ ପାରିବା ।
ବିଭୀଷଣଙ୍କୁ ଘେନିଣ ଦେବ ଦାମୋଦର
ପ୍ରବେଶ ହୋଇଲେ ଯାଇ ସେ ଉତ୍ତର ଦ୍ୱାର ।
ଦେଖିକରି ସୈନ୍ୟମାନେ ଦୂରୁ ଆଗସରି
ବୋଇଲେକ ଆଡ଼ ହୁଅ ଆସୁଛନ୍ତି ହରି ।
ଶାମ୍ବ କୁମର ବିଜୟେ ଦ୍ୱିତୀଇନ୍ଦ୍ର ଜାଣି
ଅନଘମଣି ମୁକୁଟୁ ଜଳେ ସୂର୍ଯ୍ୟ ଜିଣି ।
ନିଜ ତାତଙ୍କୁ ଦେଖି ସେ ଉଠି ଧାଡିକାରେ
ପ୍ରଣିପାତ ହୋଇଲା ସେ ତାହାଙ୍କ ପୟରେ ।
ଶ୍ରୀହରି ବୋଇଲେ ତୋର ପୁରୁ ମନୋବାଞ୍ଛା
ଅନେକ ବିପୁଳ ଭୁଞ୍ଜ ଯେ ତୋହର ଇଚ୍ଛା ।
ଶାମ୍ବକୁ ବୋଇଲେ ତହୁଁ ଦେବ ଚକ୍ରଧର
ବିଭୀଷଣ ଦର୍ଶନକୁ ଯିବେ ଛାଡ଼ ଦ୍ୱାର ।
ଏହି ରାଜା ଅଟନ୍ତି ଯେ ଲଙ୍କା ଅଧିପତି
ଯୁଧିଷ୍ଠିରଙ୍କ ଦର୍ଶନେ ଏଥେ ଆସିଛନ୍ତି ।
ଶାମ୍ବ ବୋଲେ ବିନାଜ୍ଞାରେ ଛାଡ଼ିବି କିପରି
ଏହା ଶୁଣିଣ ଫେରିଲେ ପ୍ରଭୁ ନରହରି ।
ଯାନ୍ତେ ବିଭୀଷଣଙ୍କୁ ବୋଇଲେ ଭାବଗ୍ରାହୀ
ଯୁଧିଷ୍ଠି ଦେବଙ୍କୁ ଦେଖି ପ୍ରଣମିବୁ ତୁହି ।
ଶୁଣି ହୃଦେ ବିଭୀଷଣ ଏମନ୍ତ ଭାବଇ
ଆନକେ ଠାକୁର ତୋହ ଛଡ଼ା ଜାଣେ ନାହିଁ ।
ଜଗତ ସୋଦର ତୋର ଜଗନ୍ନାଥ ନାମ
ଆଉମାନେ ଅପ୍ରୁରୁଷ ତୁ ପୁରୁଷୋତ୍ତମ ।

ବିଭୀଷଣ ହୃଦଗତେ ଏମନ୍ତ ବିଚାରେ
ଜାଣିଲେ ପରମାନନ୍ଦ ତାହା ହୃଦୟରେ ।
ମନେ ଏହା ବିଚାରନ୍ତି ପ୍ରଭୁ ଦେବରାଜ
ନ ପୁଣ ଯୁଧିଷ୍ଠି ସ୍ୱାମୀ ପାଆନ୍ତିଟି ଲାଜ ।
ବିଭୀଷଣଙ୍କୁ ଘେନିଣ ଦେବ ଯଦୁପତି
ପଥେ ପଥେ ଯାଉଁ ଯାଉଁ ତାହାଙ୍କୁ ଦେଖାନ୍ତି ।
ଚାଳିଶସସ୍ର ରାଜାଙ୍କ ଯେତେକ ସଇନି
ଦେଖ ଏହିଠାରେ ଛନ୍ତି ଦରଶନୀ ଘେନି ।
ଦେଖ ହେ ରାକ୍ଷସପତି ରାଜାଙ୍କର ସ୍ଥାନ
ଯମୁନା ଜଳେ କରନ୍ତି ରାଜାଏ ସ୍ନାହାନ ।
ରାଜାଏ ସ୍ନାନ କରନ୍ତେ ଯମୁନାର ନୀର
ମହକେ ଅତର ଆଉ କସ୍ତୁରୀ କର୍ପୂର ।
ସମସ୍ତେ ଅଟନ୍ତି ଯୁବା ସୁନ୍ଦର କୁମାର
ରାଜପୁତ୍ର ଅଳିଅଳ ଆଉ ଗର୍ବେଶ୍ୱର ।
ସ୍ନାହାନ ଉତ୍ତାରେ ସେ ଯେ କେଶକୁ ଶୁଖାଇ
ପିନ୍ଧୁଛନ୍ତି ନବତନ ବସ୍ତ୍ରମାନ ନେଇ ।
ଜାଈ ଯୁଈ ମଲ୍ଲୀ ଆଉ ବକୁଳ ମାଳତୀ
କେତକୀ ନାଗେଶ୍ୱର ଯେ ଚମ୍ପକ ସେବତୀ ।
କନକ କୁସୁମ ଫୁଲେ ସାଜୁଛନ୍ତି ଗଭା
ବହୁମୂଲ୍ୟ ଅଳଙ୍କାରେ ଦିଶନ୍ତି ସେ ଶୋଭା ।
ଅମାତ୍ୟ ପାତ୍ର କୁମର କେହୁ ବଡ଼ଜେନା
ମୁକୁଟ ବନ୍ଧା ସାହାଣି ମହାମଲ୍ଲ ସେହ୍ନା ।
ଅନେକ ବେଶ ଭୂଷଣ ହୋଇ ମତ୍ସ୍ୟରାଜେ
ଦେବମଣ୍ଡଳ ଆସ୍ଥାନେ କଲେ ଯାଇ ବିଜେ ।
ପାଦ ଧୌତ କରିଗଲେ ଭୋଜନର ସ୍ଥାନ
ସୁବର୍ଣ୍ଣ ପାତ୍ରମାନଙ୍କେ ଯୋଗାଡ଼ ବିଧାନ ।
ଅପୂର୍ବ ଯୋଗାଡ଼ମାନ ହୁଏ ଲଙ୍କେଶ୍ୱର
ନିତି ନିତି ନବତନ ରାନ୍ଧଣା ବେଭାର ।
ସୁବର୍ଣ୍ଣ ପଲମମାନ ଯୋଗାଡ଼ିବା ପାଇଁ
କୋଟି କୋଟି ସ୍ୱର୍ଣ୍ଣମାଢ଼େ ଗଢ଼ାଅଛି ହୋଇ ।
ଭୋଜନ ସ୍ଥାନରେ ରାୟେ ବିଜୟ ସମ୍ଭାରେ
ତହିଁ ବାରୁଣୀ ଦ୍ୱାଦଶ ବସୁ ଦିନକରେ ।
ଦୋହରା ଶେଷେ ବାସେଳୀ ଦ୍ୱାରେ ହେଲାବଳି
ବାହିଯା ଅନୁସରିଣ ଅନନ୍ତ ତ୍ରିବଳି ।
ଏସନକ ସମ୍ପଦରେ ଭୋଜନ ବିଧାନେ
ପରଷନ୍ତି ନାନା ଖାଦ୍ୟ ସୂପକାରମାନେ ।
ଯୁକତରେ ଅନ୍ନ ଆଦି କୃଷ୍ଣ ଯାହା ସଞ୍ଚି
ସୁବାସ ଆମୋଦ ଗନ୍ଧ ଆକାଶେ ବାସୁଛି ।
ଗଉରୀ ଶଉରୀ ନଳବିଧି ତିନି ପ୍ରତି
ଦେଖି ଶୂନ୍ୟ ଲୋକେ ହୁନ୍ତି ଆନନ୍ଦିତ ମତି ।
ସୁବାସିତ ଲବଣୀ ଯେ ଘୃତ ଚତୁଷ୍ଟାଦେ
ଦେବ ପିତୃଙ୍କୁ ଦେଇଣ ଭୁଞ୍ଜି ମହାଶ୍ରଦ୍ଧେ ।
ଭୋଜନ ମହିମା ଦେଖ ରାଜା ବିଭୀଷଣ
ଧନ୍ୟ ଧନ୍ୟ ବୋଲିକରି ଭାବଇ ହୃଦେଣ ।
ଅନେକ ତୋଷେ ରାଜାଏ ସରାଗେ ଭୁଞ୍ଜନ୍ତି
ବହୁତ ଦଧି ସଞ୍ଚିତ କୃଷ୍ଣ କରିଛନ୍ତି ।
ଗୋରସ ଯେ ଷଡ଼ରସ ଆଦି ଅନ୍ନ ମିଠା
କର୍ପୂର ଆମୋଦ ଅତି ସୁସୁଆଦୁ ମିଠା ।
ବିଭୀଷଣେ ଅଗୋଚର ଭୋଜନ ବିଧାନ
ଦେଖିଣ ପ୍ରଶଂସା ବହୁ କଲେ ବିଭୀଷଣ ।
ଶ୍ରୀଜଗନ୍ନାଥ କାଖରେ ଯୋଡ଼ ବେତ ଧରି
ରାଜାଙ୍କୁ ସମାର୍ଜନା ଯେ କଲେ ଯାଇକରି ।
ପ୍ରବୋଧନା ବାକ୍ୟେ ଜଣ ଜଣକେ ସମାର୍ଜି
କୃଷ୍ଣଙ୍କ ବାକ୍ୟେ ରାଜାଏ ସନ୍ତୋଷରେ ଭୁଞ୍ଜି ।
ଭୋଜନେ ସନ୍ତୁଷ୍ଟ ଯାହୁଁ ହେଲେ ରାଜାମାନେ
ଶଙ୍ଖ ଶବଦ କରିଲେ ଆଗମନ ସ୍ଥାନେ ।
ମେରୁଶୃଙ୍ଗ ଋଷିଙ୍କର ଅନଳ ନୟନ
ଉଚ୍ଛିଷ୍ଟ ପତ୍ରସବୁକୁ କରିଲା ଦହନ ।
ସୁବର୍ଣ୍ଣ ପାତ୍ର କାଢ଼ିଣ ନେଲେ ପରିବାରୀ
ଗଙ୍ଗା ଭିତରେ ନେଇଣ ଦେଲେ ଫିଙ୍ଗିକରି ।
ବିଭୀଷଣ ପୁଚ୍ଛାକଲେ କହ ନାରାୟଣ
ଗଭୀର ଜଳେ ଫିଙ୍ଗିଲେ କିପାଁ ଏ ବାସନ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ବିଭୀଷଣ
ରାଜାଙ୍କୁ ମିଳିବ ନିତି ନୂତନ ବାସନ ।
ବିଭୀଷଣ ବୋଲେ ଦେବ ଏ ବଡ଼ ଆଶ୍ଚର୍ଯ୍ୟ
ଅନ୍ୟ ଯଜ୍ଞେ ଦେଖିନାହିଁ ଦେଖିଲି ମୁଁ ଆଜ ।
ହରି ବୋଲନ୍ତି ଦେଖ ହେ ଲଙ୍କା ଅଧିପତି
ସେମାନେ ପହଁରି ବାରି ଗୋଛେରା ସିଞ୍ଚନ୍ତି ।
କଣୟ ରୁଦ୍ରଙ୍କ ଏହୁ ଶତେକ ସନ୍ତତି
ଏହା କରିଣ ଏମାନେ ଲଭିବେ ମୁକତି ।
ଅସୁର ଭୋଜ୍ୟ ହୋଇଲେ ବଶିଷ୍ଠଙ୍କ ପୁତ୍ରେ
ଏହୁ ନିର୍ମଳ କରନ୍ତି ମୁକ୍ତିର ନିମନ୍ତେ ।
ଛେରା ପହଁରା କରନ୍ତି ପୁରୁବର ପାପେ
ବ୍ରହ୍ମରାକ୍ଷସ ହୋଇଣ ବିଶ୍ୱାମିତ୍ର ଶାପେ ।
ଦେଖ ହେ ମେଘ ତହିଁର ପରେ ବରଷନ୍ତି
ତହିଁର ଉପରେ ପୁଣି ଚନ୍ଦନ ଲେପନ୍ତି ।
ତହିଁର ଉପରେ ବସି ଭୁଞ୍ଜନ୍ତି ସଇନି
କୋଟିଏ ଜଣ ଭୁଞ୍ଜିଲେ ହୁଏ ଶଙ୍ଖଧ୍ୱନି ।
ବିଭୀଷଣ ଘେନିକରି ଦାଣ୍ଡେ ଉଭାହେଲେ
ମେବଚ୍ଛକ ଶଙ୍ଖଧ୍ୱନି ସେକ୍ଷଣି ଶୁଣିଲେ ।

ବହୁତ ପ୍ରଶଂସା କଲେ ଦେଖି ବିଭୀଷଣ
ବାବୁ ଯୁଧିଷ୍ଠି ମହିମା ତୋର ଧନ୍ୟ ଧନ୍ୟ ।
ଏ ପୃଥ୍ୱୀରେ ଥିଲେ ବହୁ ମହା ମହାରଥା
ଜାନୁଘଣ୍ଟ ପର୍ଶୁରାମ ବେଣୁ ମାନଧାତା ।
ବାଳି ବଳି ହରିଶ୍ଚନ୍ଦ୍ର ଆଉ ଭାନୁଚନ୍ଦ୍ର
ଏପରି ପୃଥ୍ୱୀରେ ଥିଲେ ବହୁତ ନରେନ୍ଦ୍ର ।
ଏ ପୃଥ୍ୱୀରେ ଥିଲେ ବହୁ ମହା ମହା ରାୟେ
କେହି ଅର୍ଜି ନ ପାରିଲେ ଏଡ଼େକ ସଭାଏ ।
ଗୋବିନ୍ଦ ବୋଇଲେ ତୋର ଜୀବନଟି ଧନୀ
ଏ ସମ୍ପଦ ଦେଖିଲୁ ତୁ ଚର୍ମଚକ୍ଷୁ ଘେନି ।
ବିଭୀଷଣ ବୋଲେ ଦେବ ବୁଝିଛି ମୁଁ ହୃଦେ
ଏଡ଼େକ ସମ୍ପଦ ତାର ତୋହର ପ୍ରସାଦେ ।
ତହୁଁ ଯାନ୍ତି ବିଭୀଷଣ ହାତ ଧରି ହରି
ସତ୍ରଶାଳ ଦେଖାଇଲେ ପୁଣି ନେଇକରି ।
ରୋଷାଇଶାଳମାନଙ୍କୁ ଦେଖାଅନ୍ତେ ନେଇ
ଆଶ୍ଚର୍ଯ୍ୟ ହେଲା ତା ବିଭୀଷଣ ନେତ୍ରେ ଚାହିଁ ।
ଏକା ପାଞ୍ଚନଉତିକି ତିନି ସୂପକାର
ଏ ବିଧି ଶତେ ପାଚକ ରୋଶାଇ ଶାଳର ।
ବିଭୀଷଣ ବୋଲେ ଦେବ ଶୁଣ ନାରାୟଣ
ଏ ସକଳ କଥା ପ୍ରଭୁ ତୋହର ଭିଆଣ ।
ଗୋବିନ୍ଦ ବୋଇଲେ ପୂର୍ବୁ ସହଦେବ ମନ୍ତ୍ରୀ
ଏ ପ୍ରସ୍ତାବ ସୂପକାରେ ବୋଧି କହିଛନ୍ତି ।
ନବତନ ହାଣ୍ଡି ଏକ ନେଇ ବସାଇବ
ତହିଁରେ ପଦାର୍ଥ ଯହୁଁ ଫୁଟିବା ଦେଖିବ ।
ଆରେକ ନଉତି ଏକ ବସାଇବ ନେଇ
ଏରୂପେ ପାଞ୍ଚ ନଉତି ଚୁଲ୍ଲୀରେ ବସାଇ ।
ଯୋଗେ ଯଦି ଭରା ପାଇ ଏକ ଫାଟିଯିବ
ତହିଁକି ଗୋଟିକ ପୁଣି ସଞ୍ଚୁଣ ରଖିବ ।
ତାହା ବଦଳରେ ଶୀଘ୍ର ନେଇ ବସାଇବ
ଉପର ତଳ କରିଣ ଚଟୁ ମାରୁଥବ ।
ଚଟୁମାରି ବାମ୍ଭେ କାର ପୋଡ଼ିଚଲେ ହାତ
ତହିଁକି ଗୋଟିଏ ତୁମ୍ଭେ ରଖିଥିବ ସାଥ ।
ଏ ରୂପେ ବିଚାର ଯାର ଜାଣ ବିଭୀଷଣ
ମହାମନ୍ତ୍ରୀ ସହଦେବ କରିଛି ଭିଆଣ ।
ଅପାର ମହିମା ଏହି ଯୁଧିଷ୍ଠି ଦେବଙ୍କ
ଭୃତ୍ୟପଣେ ଖଟିଛନ୍ତି ସର୍ବ ଦେବଲୋକ ।
ଦେଖ ଚୁଲ୍ଲୀରେ ପକାନ୍ତି କଞ୍ଚା ଦାରୁ ନେଇ
ଅତିବେଗେ ଜଳି ପାକ ପ୍ରସ୍ତୁତ ହୁଅଇ ।
ଅକଟା ପରିବା ଆଉ ଅବଟା ମସଲା
ହାଣ୍ଡିରେ ପୂରାଇ ରାନ୍ଧୁ ସୁଧା ପାକ ହେଲା ।

ଶଙ୍କରଙ୍କୁ ପରଷନ୍ତି ଉମା ଯେଉଁପରି
କୃଷ୍ଣେ ପରଷନ୍ତି ଯଥା ବରୁଣ କୁମାରୀ ।
ସତ୍ୟଯୁଗେ ନଳ ଯେହ୍ନେ ଅମୃତର ପାକ
ରାନ୍ଧଣା କରି ତୋଷିଲେ ଯତ୍ନେ ଦେବଲୋକ ।
ଗଉରୀ ଶଉରୀ ନଳ ବିଧି ତିନିପ୍ରତି
ଦୋହରା ପ୍ରସନ୍ନେ ସର୍ବେ ହୁଅନ୍ତି ତୃପତି ।
ଏସନକ ମହିମାଟି ରନ୍ଧନ ବିଧାନ
ନନ୍ଦନବନୁ ଆସଇ ରନ୍ଧା ଫଳମାନ ।
ତଣ୍ଡୁଳମାନ ଆସଇ ଶାକଲ୍ୟ ଦ୍ୱୀପରୁ
ବିଭୀଷଣକୁ ଦେଖାନ୍ତି ଦେବ କଳ୍ପତରୁ ।
ବିଭୀଷଣେ ଘେନି ଦେବ ଗଙ୍ଗାକୂଳେ ବିଜେ
ତିନିପଦ୍ମ ଫଳ ବୋଝ ଓଜାଡ଼ନ୍ତି ଦ୍ୱିଜେ ।
ବ୍ରାହ୍ମଣ ଆଦି ଅଶ୍ୱିନୀ ଚଣ୍ଡାଳ ସହିତେ
ସବୁଙ୍କୁ ଭୋଜି ଦିଅନ୍ତି ବୁଝି ବିଧିମତେ ।
ରାଜାମାନଙ୍କର ଭୋଜ୍ୟ ହୁଏ ଯେଉଁପରି
ବାଦ୍ୟକାରଙ୍କୁ ଭୋଜନ ଦ୍ୟନ୍ତି ସେହିପରି ।
ଅଶ୍ୱ ଗଜେ ଖାଇବାକୁ ଦ୍ୟନ୍ତି ବ୍ରୀହି ଘାସ
ଏହାଙ୍କ ଚର୍ଚ୍ଚା ବୁଝଇ କିରାତ ନରେଶ ।
ମୃଗ ବାହୁଟିଆ ଆଦି ଗଣ୍ଡାଜୀବ ଆଣି
ଯେତେ ଲାଗଇ କିରାତ ଯୋଗାଉଛି ପୁଣି ।
କୃଷ୍ଣପାଦେ ବିଭୀଷଣ ପୁନଃ ପୁନଃ ନମି
ବୋଲେ ଯା ସଞ୍ଚୟ କାହିଁ କରିଥିଲୁ ସ୍ୱାମୀ ।
ଏହା ଦେଖାଇ ଚଳନ୍ତି ତହୁଁ ଦାମୋଦର
ବିଜୟ କରିଲେ ଯାଇ ପଶ୍ଚିମ ଦୁଆର ।
ସାତକ୍ଷୌଣୀ ବଳ ଘେନି ସଙ୍ଗରେ ବିରାଟ
ଶ୍ରୀକୃଷ୍ଣ ପାଦେ ନମିଲା ଯୋଡ଼ି କରପୁଟ ।
ପାଞ୍ଚଦିନ ହେଲା ସ୍ୱାମୀ ଅଇଲିଣି ମୁହିଁ
ଦରଶନ କରିବାକୁ ମୋତେ ଦ୍ୟନ୍ତି ନାହିଁ ।
ଏତେ ଦିନ ହେଲା ଦେବ ନ ପାରିଲି ଯାଇ
ଧର୍ମଙ୍କ ଦେଖା ନ ପାଇ କଷ୍ଟେ ଅଛି ରହି ।
ଏହା ଶୁଣିଣ ବୋଇଲେ କମଳଲୋଚନ
କେଉଁଠାରେ ଭୁଞ୍ଜୁଅଛ ଅନ୍ନାଦି ବ୍ୟଞ୍ଜନ ।
ମୋତେ କି ପଚାରୁଅଛ ଦେବ ଜନାର୍ଦ୍ଦନ
ସାତକ୍ଷୌଣୀ ବଳ ତୁଲେ କରେ ମୁଁ ଭୋଜନ ।
ସର୍ବେ ବୋଲନ୍ତି ଅନନ୍ତ ପଡ଼ିହାରୀ ଯେବେ
ଦର୍ଶନ କରାଇ ନେବେ ଦେଖିବୁ ତୁ ତେବେ ।
ନାରାୟଣ ବୋଇଲେ ତୁ ସେ ପଡ଼ିହାରୀକି
ହେ ବିରାଟ ରାଜା ତହିଁ ତାହାକୁ ଚିହ୍ନକି ।
ବିରାଟ ବୋଇଲା ସେହୁ ଥାଆନ୍ତି ଛାମୁରେ
ତାହାଙ୍କୁ ପାଆନ୍ତି ଯେବେ ପଶନ୍ତି ଭିତରେ ।

ଶ୍ରୀକୃଷ୍ଣ କହିଲେ ନିଶ୍ଚେ ପାଇବୁ ତୁ ଭେଟ
ଏହିଠାରେ ଅପେକ୍ଷାରେ ଥାଅ ହେ ବିରାଟ ।
ବିଭୀଷଣ ବୋଲେ ଦେବ ଅଟୁ ମାୟାଧର
ତୁମ୍ଭର ସକଳ ମାୟା ଦେବେ ଅଗୋଚର ।
ମାନବ ହୋଇଣ ତୋତେ କେ ଅନ୍ତ କରିବ
ବ୍ରହ୍ମା ଇନ୍ଦ୍ର ନ ପାଆନ୍ତି ଯାର ଲେଶ ଭାବ ।
ଚଉଦ ବ୍ରହ୍ମାଣ୍ଡର ତୁ ଅଟୁ ଅଧିକାରୀ
ତୁ ଜାଣୁ ତୋହର ମାୟା ଦେବ ଦଇତ୍ୟାରି ।
ଏହିପରି କଥାବାର୍ତ୍ତା ହୋଇ ହୋଇ ଗଲେ
ପଶ୍ଚିମ ଦ୍ୱାର ନିକଟେ ପ୍ରବେଶ ହୋଇଲେ ।
ପଚିଶ ସହସ୍ର ରାଜା ତହିଁଛନ୍ତି ପୂରି
ପଶିବାକୁ ତହିଁ ଶକ୍ତି ନାହିଁ ଯେ କାହାରି ।
ଦେଖା ଦରଶନୀ ଧନ କିଏ ପାରେ କଳି
କୁଢ଼ କୁଢ଼ ହୋଇ ତହିଁ ହୁଏ ଦଳାଦଳି ।
ହୀରା ମାଣିକ୍ୟ ବୈଦୁର୍ଯ୍ୟ କେ ଅନ୍ତ କରୁଛି
ଅଶ୍ୱ ଗଜ ପାଦତଳେ ପୋତି ହେଉଅଛି ।
ଦ୍ୱାର ଜଗି ରହିଅଛି ଗଦ ସୁକୁମାର
ନବସସ୍ର ଭ୍ରାତା ଛନ୍ତି ସଙ୍ଗରେ ତାଙ୍କର ।
ବିଭୀଷଣଙ୍କୁ ଘେନିଣ ଦେବ ଜନାର୍ଦ୍ଦନ
ରାଜାମାନଙ୍କ ଗହଳେ ପଶିଲେ ବହନ ।
ପାତ୍ର ଅମାତ୍ୟମାନଙ୍କ ବହୁତ ଗହଳ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଲଙ୍କା ମହୀପାଳ ।
ଦେଖିଣ କୁମାରମାନେ ଯଥାସ୍ଥାନୁ ଉଠି
ଗୋବିନ୍ଦଙ୍କୁ ପ୍ରଣିପାତ ହେଲେ ଭୂମିଲୋଟି ।
ବୋଇଲେ ଗୋବିନ୍ଦ ତାଙ୍କୁ ଶୁଣ ଦ୍ୱାରପାଳ
ଏହି ଦେଖ ବିଭୀଷଣ ବିଶ୍ରବା ଦୁଲ୍ଲାଳ ।
ଲଙ୍କପତି ଏ ତେପନଯୁଗ ଭୋଗୀ ରାଜା
ଆସିଛନ୍ତି ଯୁଧିଷ୍ଠିଙ୍କି କରିବାକୁ ପୂଜା ।
ଦ୍ୱାର ଛାଡ଼ ବାବୁ ଆମ୍ଭେ ଯିବୁ ଭିତରକୁ
ବିଭୀଷଣ ଦରଶନ କରିବେ ସ୍ୱାମୀଙ୍କୁ ।
ପୁଣ ପୁଣ କହୁଛନ୍ତି ଦେବ ନାରାୟଣ
ନ ଶୁଣେ ଗଦ କୁମାର ପିତାଙ୍କ ବଚନ ।
କଠୋର ବାକ୍ୟ କହଇ ସେ କୁମରମଣି
କିଏ ଲଙ୍କା ବିଭୀଷଣ ତାହାକୁ ନ ଜାଣି ।
ମହାରାଜାଏ ଦର୍ଶନ ନ ପାନ୍ତି ଏ ଦ୍ୱାରେ
ଛାଡ଼ି ନ ପାରିବି ଦ୍ୱାର ମୁଁ ବିନା ଆଜ୍ଞାରେ ।
ଏମନ୍ତ ହୋଇ କୁମର ହୋଇଲାକ ତୁନି
ଲଜ୍ଜାପାଇ ଚଳିଗଲେ ବିଭୀଷଣ ଘେନି ।
ବୋଲନ୍ତି ବଳେ ଦର୍ଶନ କରାଅନ୍ତି ନେଇ
ଧର୍ମସୁତ ଯୁଧିଷ୍ଠିଙ୍କ କୋପକୁ ଡରଇ ।

ଏହା କହି ବିଭୀଷଣେ ଘେନି ବନମାଳୀ
ଇନ୍ଦ୍ରପ୍ରସ୍ଥ ଭଣ୍ଡାର ଦ୍ୱାରେ ଯାଇ ମିଳି ।
ମାନ ଗୋବିନ୍ଦ ବିଜୟେ ଭଣ୍ଡାରର ଦ୍ୱାରେ
ବତିଶ ସହସ୍ର ଯୋଦ୍ଧା ଅଛନ୍ତି ସଙ୍ଗରେ ।
ଗୋବିନ୍ଦ ବୋଇଲେ ଏହି ଦେଖ ଲଙ୍କପତି
କୁରୁକୁଳ ମଣ୍ଡନ ଏ ମାନଚକ୍ରବର୍ତ୍ତୀ ।
ତୁ ତ ରାଜା ଏହାଙ୍କୁ ନ କରିବୁ ପ୍ରଣାମ
ପନ୍ନଗ ନାରାୟଣ ଏ ସ୍ୱୟଂ ବିଷ୍ଣୁ ସମ ।
ଅନର୍ଘ ମଣି ମୁକୁଟ ଅଛି ଏହା ଶିରେ
କୋଟିଏ ମଣି ଅଛି ଯା ସପତ ଶିଖରେ ।
କୋଟିପାଦେ ଲକ୍ଷ୍ମୀ ତହିଁ ବିଜେ କରୁଛନ୍ତି
ଅନୁକ୍ଷଣେ ତା କନ୍ଧରୁ ଛାଡ଼ି ନ ପାରନ୍ତି ।
ଶଙ୍ଖନିଧି ପଦ୍ମନିଧି ଅଛି କରସ୍ଥଳେ
ପାଷାଣେ ଲାଗିଲେ କର ସ୍ୱର୍ଣ୍ଣ ତତକାଳେ ।
ଚାଲନ୍ତେ ପାଦେ ଅବେଷ୍ଟ ପଦ୍ମଫୁଲ ଫୁଟେ
ଚୌରାଶୀ ଗୁଣ ଲକ୍ଷଣେ ଏହି ରାଜା ଅଟେ ।
ସବୁବେଳେ ହୋଇଥାଏ ବରବେଶ ଏହି
ମାତା ପିତାଏ କାହ କୁ ପ୍ରଣାମ ନୁହଇ ।
ଲକ୍ଷେ ରାଜାଙ୍କ ଉପରେ ଏ ମଉଡମଣି
ସପତ ସାଗର ଯାର ମହିମା ବଖାଣି ।
ଯା ସୈନ୍ୟ ଗୋଳରେ ଭାଙ୍ଗେ ସମୁଦ୍ର ଗାରିମା
ତେଜେ ପର୍ଶୁରାମ ଜ୍ଞାନେ ଅଟେ ବ୍ରହ୍ମା ।
ହେ ଦୈତ୍ୟ ବୁଝ ଯୁଧିଷ୍ଠି ମହିମା କିପରି
ଏଡ଼େବଡ଼ ରାଜା ଯାର ଭଣ୍ଡାରାଧିକାରୀ ।
ବିଭୀଷଣ ବୋଲେ ଦେବ ତୋର କୃତ୍ୟ ସର୍ବ
ଜାଣି ଭଣ୍ଡାର ଦେଇଛୁ ଯେହ୍ନେ ନ ସରିବ ।
କୃଷ୍ଣ ବୋଲନ୍ତି ଧର୍ମନ୍ତୁ କଲେ ତୁ ଦର୍ଶନ
କୋଟିଏ ଜନ୍ମର ପାପ ହୋଇବ ଖଣ୍ଡନ ।
ତାହାଙ୍କ ପାଦେ ସହସ୍ର ପ୍ରଣାମ କରିବୁ
ଠାକୁରଙ୍କ ଆଜ୍ଞାହେଲେ ଭୂମିରୁ ଉଠିବୁ ।
ବିଭୀଷଣ ଏହା ଶୁଣି ଭାଳେ ହୃଦଗତେ
ମୁହିଁ ଅନ୍ୟ ନ ଜାଣଇ ଜାଣେ ଏକା ତୋତେ ।
ତା ଭାବ ଜାଣି ଭାଳନ୍ତି କୃଷ୍ଣ ମନକଲି
ଏମନ୍ତ ରାଜାକୁ ମୁହିଁ କିମ୍ପା ଅଣାଇଲି ।
ଏ ତ ମାନ୍ୟ ନ କରିବ ଠାକୁର ଅଗ୍ରତେ
କି ଉପାୟ କରିବି ମୁଁ ବିଚାରଇ ଚିତ୍ତେ ।
ଦୁର୍ଯ୍ୟୋଧନଙ୍କୁ ବୋଇଲେ ଦେବ ନାରାୟଣ
ବିଭୀଷଣ ଆଣିଥିଲା ଯେଉଁ ଦ୍ରବ୍ୟମାନ ।
ଯତନେ ଭଣ୍ଡାରେ ତାହା ଥୋଇଛୁ ନା ସର୍ବ
ଏ ପରି କହିଲେ ଯହୁଁ ଦେବ ପଦ୍ମନାଭ ।
ଦୁର୍ଯ୍ୟୋଧନ ବୋଲେ ବେନିସସ୍ର ରଥ ଥିଲା
ନିମିଷକେ ଦାନେ ତାହା ସକଳ ସରିଲା ।

ଶୁଣି ବିଭୀଷଣ ବଡ ହୋଇଲା ଆଶ୍ଚର୍ଯ୍ୟ
ଏତେ ସଞ୍ଚିତ ରଖିଛୁ ତୁହି ଦେବରାଜ ।
ରାଜସୂୟ ଯାଗ ସଭା ଦେବଙ୍କୁ ଦୁର୍ଲ୍ଲଭ
ଯେ ଯାହା ମାଗଇ ନିଏ ନିରାଶେ ନ ଯିବ ।
ଭଣ୍ଡାର ଦ୍ୱାରେ ରହିଣ ଦେଖେ ବିଭୀଷଣ
ଘଡ଼ିକେ ଦାନ ହୋଇଲା ମେରୁଛେକ ସ୍ୱର୍ଣ୍ଣ ।
ବିଭୀଷଣ ବୋଲେ ଧର୍ମ ଜୀବନ ତୋ ସାଧୁ
ଧନେ ସମସରି ତୋତେ ନ ହୋଇବ ସିନ୍ଧୁ ।
ବିଭୀଷଣକୁ ଘେନିଣ ଯାନ୍ତି ଦାମୋଦର
ରତ୍ନଖଟମାନ ଦେଖେ ବିଶ୍ରବା କୁମର ।
ଲାଗିଅଛନ୍ତି ବିନ୍ଧାଣି ପଞ୍ଚାଶ ଅଦ୍ଭୁତ
ଅଳକାପୁରରୁ ଲକ୍ଷେ ଆଣି ଦ୍ୟନ୍ତି ବିତ୍ତ ।
କୋଟିଏ ତୀର୍ଥ ଘେନିଣ କ୍ଷେତ୍ରାଧି ପୁଷ୍କର
ଖଟିବାକୁ ରହିଅଛି ଦକ୍ଷିଣ ଦୁଆର ।
ଭୁଞ୍ଜନ୍ତି ତାଙ୍କର ସୈନ୍ୟ ସରସ୍ୱତୀ ତୀରେ
ତାଙ୍କୁ ପରଷଇ ହନୁ ରହିଣ ସେଠାରେ ।
ଭୁଞ୍ଜୁଅଛନ୍ତି ରାକ୍ଷସେ ଯେ ଯାହାର ଇଚ୍ଛା
କିଛି କି ଅପେକ୍ଷା ନାହିଁ ପୂର୍ଣ୍ଣକଟ ବାଞ୍ଛା ।
ମାରୁତି କହଇ ତାଙ୍କୁ କର ନାହିଁ ଭୀତି
ସନ୍ତୁଷ୍ଟ ହୋଇଣ ଭୁଞ୍ଜ ତୋଷକରି ମତି ।
ଯଦ୍ୟପି ତାଙ୍କୁ ପ୍ରବୋଧ କରଇ ପାବନି
ଭୟ କି ଛାଡ଼ନ୍ତି ମନୁ ଅସୁର ସଘନି ।
ପରଷଇ ହନୁ ଦୈତ୍ୟେ ଭୁଞ୍ଜନ୍ତି ଆନନ୍ଦେ
ଡରେ କେ ବୋଲଇ ସ୍ୱାମୀ ଅଣ୍ଟିଲାଣି ନାଦେ ।
ବିଭୀଷଣକୁ ଦେଖାନ୍ତି ଦେବ ଦାମୋଦର
ଦେଖିଣ ଅତି ଆଶ୍ଚର୍ଯ୍ୟ ହୁଏ ଲଙ୍କେଶ୍ୱର ।
ବୋଲେ ସବୁ ଆହେ ହରି ତୋହର ଏ କୃତ୍ୟ
ପାଣ୍ଡବଙ୍କ ନାମ ଭବେ କରିଛୁ ବିଦିତ ।
ତୁହି ଏକା ଦୟାମୟ ଅଟୁ କଳ୍ପତରୁ
ସବୁ ପାପ ଦୂର ହୁଏ ତୋହର କୃପାରୁ ।
ଶାରଳା ଦାସ ଚିନ୍ତଇ ତୋହର ଚରଣ
ମୋର ପାପ ନାଶକର ମୁହିଁ ଅକିଞ୍ଚନ ।



## ବିଭୀଷଣର ଯୁଧିଷ୍ଠିରଙ୍କ ଦର୍ଶନ ଓ ଯୁବନାଶ୍ୱ ରାଜାଙ୍କ ଉପାଖ୍ୟାନ

ପୁନଶ୍ଚ ପୁଚ୍ଛା କରନ୍ତି ମନୁ ଅଧିପତି
ଦରଶନ ପାଇଲାକି ନାହିଁ ଲଙ୍କପତି ।
ଏଥିର ବିଷୟ ମୋତେ କହ ତପୋଧନ
ତୁମ୍ଭର ଚରଣେ କରେ ଏହି ନିବେଦନ ।
ରାଜାର ଭକ୍ତି ଘେନିଣ କହନ୍ତି ଅଗସ୍ତି
ହେ ରାଜା ଏକାଗ୍ରଚିତ୍ତେ ଶୁଣ ତୋଷମତି ।

ପୁନଶ୍ଚ ବିଭୀଷଣକୁ ଘେନି ନାରାୟଣ
ସେହିଠାରୁ ଧୀରେ ଧୀରେ କରିଲେ ଗମନ ।
ପଶ୍ଚିମ ଦ୍ୱାର ନିକଟେ ପ୍ରବେଶ ହୋଇଲେ
ବିଭୀଷଣ ହାତ ଧରି ଦ୍ୱାରପାଶେ ଗଲେ ।
ବୀରବର କୁମରକୁ କହିଲେ କେଶବ
ଦ୍ୱାର ଛାଡ଼ ଦର୍ଶନକୁ ବିଭୀଷଣ ଯିବ ।
ବୀରବର ବୋଲେ ଦେବ ଦଣ୍ଡ ଏକ ରହ
ଭୀମସେନକୁ ଜଣାଏ ଏହାଙ୍କ ବିଷୟ ।
ଶୀଘ୍ର ଡାକି ବୀରବର ସେ କାଳିଞ୍ଜନକୁ
ବୋଇଲେ ଜଣାଅ ତୁହି ଭୀମ ଠାକୁରଙ୍କୁ ।
ବୋଲିବୁ ରାଜାମାନଙ୍କୁ ଘେନିଣ ଅନନ୍ତ
ଦରଶନ କରିବାକୁ ଦ୍ୱାରେ ଉପଗତ ।
ଦ୍ୱାରପାଳ ବାଣୀ ଶୁଣି ଗଲା କାଳିଞ୍ଜନ
ସଭାରେ ଜଣାଏ ଯହିଁ ଛନ୍ତି ଭୀମସେନ ।
ବିଭୀଷଣର ଆଗତ ବୋଲିଣ ଜଣାଇ
ଶୁଣି ଆଜ୍ଞାବୋଲେ ଆସୁ ବେଗ ହୋଇ ।
ଏହା କହି ପ୍ରବେଶିଲେ ପଶ୍ଚିମ ଦୁଆର
ଆସୁ ବିଭୀଷଣ ଦ୍ୱାର ଛାଡ଼ ବୀରବର ।
ଶୁଣିଣ ଦ୍ୱାର ଛାଡ଼ିଲେ ତହୁଁ ବୀରବର
ବିଭୀଷଣ ଘେନି ଦେବ ପଶିଲେ ଭିତର ।
ପାରୁଶ ମହାପାରୁଶ ମନ୍ତ୍ରୀ ସହିତରେ
ବିଭୀଷଣ ଚଳିଗଲେ କୃଷ୍ଣଙ୍କ ସଙ୍ଗରେ ।
ରାଜାମାନେ ବସିଛନ୍ତି ବଡ଼ାଇ ସମ୍ଭାରେ
ପାତ୍ର ଅମାତ୍ୟମାନେ ଛନ୍ତି ପଟୁଆରେ ।
ରାଜାମାନେ ହେଉଛନ୍ତି ତହିଁ କୃତକୃତ୍ୟ
ବୋଲନ୍ତି ଏ ବିଭୀଷଣ ଲଙ୍କାପୁର ନାଥ ।
ଅନେକ ଅଳଙ୍କାରରେ ଭୂଷିତ ତା କାୟ
ପ୍ରତ୍ୟକ୍ଷ ଦିଶିଲା ସେହି ଦ୍ୱିତୀଇନ୍ଦ୍ର ପ୍ରାୟ ।
ଦେଖିଲେ ତାହାର ରୂପ ଜଗତ ମୋହଇ
କ୍ଷତ୍ରୀପଣେ ଜାଣନ୍ତି ବ୍ରହ୍ମାଣ୍ଡେ କେହି ନାହିଁ ।
ଦଶଶିର ରାବଣର ଅଟଇ ଏ ଭାଇ
ଦେବତାଙ୍କୁ ଭୃତ୍ୟପଣେ ଖଟାଇଲା ନେଇ ।
ବିଭୀଷଣ ରାଜା ଅଟେ ବହୁତ ସମ୍ପଦେ
ଦେଖନ୍ତି ନୃପତିମାନେ ଅତ୍ୟନ୍ତ ସାନନ୍ଦେ ।
ଦେଖି ରାଜାଏ ବୋଲନ୍ତି ଆମ୍ଭେ ଅଟୁ ଧନ୍ୟ
ତେପନ ଯୁଗ ରାଜାକୁ ଦେଖିଲୁ ଏ ନୟନ ।
ପୂର୍ବ ପୁଣ୍ୟରେ ଦେଖିଲେ ରାଜସୂୟ ସଭା
ପାଣ୍ଡବଙ୍କ ପରସାଦେ ଦେଖିଲୁ ଏ ଶୋଭା ।
ଯାଗଶାଳେ ଥାଇକରି ଋଷିଏ ବୋଲନ୍ତି
ଦେଖ ଏହି ବିଭୀଷଣ ବିଶ୍ରବା ସନ୍ତତି ।

ଏ ସେ ଶ୍ରୀରାମଙ୍କ ପାଦେ ଶରଣ ପଶିଲା
ରାବଣକୁ ମରାଇଣ ଦେବଙ୍କୁ ତୋଷିଲା ।
ଦେଖିଣ ଆନନ୍ଦ ହେଲେ ସର୍ବ ମହାମୁନି
କଲ୍ୟାଣ ବାଞ୍ଛା କରିଲେ କରି ବେଦଧ୍ୱନି ।
ବିଭୀଷଣେ ତିଆରନ୍ତି ପୁରୁଷ ଉତ୍ତମ
ସ୍ୱାମୀଙ୍କ ଚରଣେ ତୁହି କରିବୁ ପ୍ରଣାମ ।
ମହା ପ୍ରତାପୀ ଏ ରାଜା ଧର୍ମ ଯୁଧିଷ୍ଠିର
ଆଜ୍ଞାକଲେ ଭୂମିପରୁ ଉଠିବୁ ସତ୍ୱର ।
ଅନେକ ତପସ୍ୟା ତୁହି ପୂର୍ବେ କରିଥଲୁ
ତହିଁର ଫଳେ ତୁ ଜାଣ ଦର୍ଶନ ପାଇଲୁ ।
ବିଭୀଷଣ ବିଚାରଇ ପୁଣି ହୃଦଗତେ
ଅନ୍ୟ କେ ସ୍ୱାମୀ ନ ଜାଣେ ତୋ ଛଡ଼ା ଜଗତେ
ବିଭୀଷଣ ହୃଦଭାବ ଜାଣି ବାସୁଦେବ
ଭାବିଲେ କେବେ ଏ ତାଙ୍କୁ ପ୍ରଣାମ ନୋହିବ ।
ଆସ୍ଥାନରେ ବସିଛନ୍ତି ଦେବ ଧର୍ମରାଜ
ବିଭୀଷଣକୁ ଘେନିଣ ବିଜେ ଦେବରାଜ ।
ଗୋବିନ୍ଦ ବୋଇଲେ ଦେବ ଏ ବିଶ୍ରବା ବଂଶି
ଅବଧାରି ହେବା ଦେବ ଦର୍ଶନ କରୁଛି ।
ଉଚ୍ଚସ୍ୱରେ ଡାକ ଦ୍ୟନ୍ତି ଦେବ ବନମାଳୀ
ଆପଣେ ପାଦେ ପଡ଼ିଣ କଲେ ନିଉଛାଳି ।
ବହୁତ ବନ୍ଦି ବିନୟ ବଚନରେ କହି
ତିନିପାବଛର ତଳ ଶୁତିଲେ ଗୋସାଇଁ ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲା ବିଭୀଷଣ
ନିରୋପି ଚାହିଁଣ ସେହୁ ଧର୍ମଙ୍କ ନନ୍ଦନ ।
ବିଚାରଇ ମନେ ଏହୁ ନୁହଇ ମାନବ
ଯାହାର ପାଦେ ପ୍ରଣାମ କରନ୍ତି କେଶବ ।
ନିରାକାର ବିଷ୍ଣୁ ଅବା ହୋଇବେ ପ୍ରତ୍ୟକ୍ଷେ
ଏହା ବିଚାରି ପ୍ରଣାମ ହୋଇଲେ ସମ୍ମୁଖେ ।
ଯୁଧିଷ୍ଠି ପାଦେ ନମିଲେ ଦେବ ନାରାୟଣ
ତାଙ୍କ ପାଦତଳେ ନମେ ରାଜା ବିଭୀଷଣ ।
ମାରକଣ୍ଡ ମୁଖ ଚାହିଁ ବ୍ୟାସ ମହାଋଷି
ଧନ୍ୟ ବିଭୀଷଣ କହି ବହୁତ ପ୍ରଶଂସି ।
ମନ୍ତ୍ରୀବର ପଣେ ତୋତେ କେହି ନୁହେଁ ସରି
ରାବଣ ସମ୍ପଦେ ଧନ୍ୟ ହେଲୁ ଅଧିକାରୀ ।
ତୁହି ଅଟୁ ମହାରାଜା ଜାଣୁ ସର୍ବ ବୁଦ୍ଧି
ତେପନଯୁଗ ଭୋଗିଲୁ ମହାମନ୍ତ୍ର ସାଧି ।
ଜିତପ୍ରସାଦ ବୋଲିଣ ଅର୍ଜୁନ ଜଣାଏ
ଦେବ ବିଭୀଷଣ ନମୁଛନ୍ତି ଦେବରାୟେ ।
ଶୁଣି ଯୁଧିଷ୍ଠି ବୋଲନ୍ତି ଯାଅରେ ନକୁଳ
ବାଞ୍ଛାସିଦ୍ଧ ହେଉ ବେଗେ ଶ୍ରୀହରିଙ୍କୁ ତୋଳ ।
ନକୁଳ ବୋଇଲେ ଆଜ୍ଞା ଦେଲେ ଧର୍ମରାଣ
ଉଠନ୍ତୁ ହେ ହରି ବୋଲୁଁ ଉଠିଲେ ମୋହନ ।
ଉଠି ବସି ବିଭୀଷଣ ଶିରେ ହାତଦେଇ
ବୋଇଲେ ନ ଉଠିବୁ ତୁ ତାଙ୍କ ଆଜ୍ଞା ନାହିଁ ।
ବିଭୀଷଣ ରହେ ମାନି କୃଷ୍ଣଙ୍କ ବଚନ
ଆଡ଼ ହୋଇଣ ଧର୍ମକୁ ଜଣାନ୍ତି ମୋହନ ।
ସ୍ୱାମୀ ଲଙ୍କାଗଡ଼ର ଏ ରାଜା ବିଭୀଷଣ
ତୋର ପାଦେ କରୁଅଛି ଭୂମିଷ୍ଠ ପ୍ରଣାମ ।
ଶ୍ରୀରାମ ଅଭିଷେକୀ ଏ ଅଟେ ମହାରାଜା
ଆପଣଙ୍କ ଶ୍ରୀଚରଣେ କରୁଅଛି ପୂଜା ।
ଶୁଣି ବାମକର ଚାଳି ବୋଇଲେ ଯୁଧିଷ୍ଠି
ହେ ହରି ବିଭୀଷଣଙ୍କୁ କହ ଆସୁଉଠି ।
କୃଷ୍ଣ ବଚନେ ଉଠିଲେ ଲଙ୍କା ଅଧିପତି
ଉଠି ପୁଣି ନିରାକାରେ ଧର୍ମଙ୍କର ମୂର୍ତ୍ତି ।
ହରି ବୋଇଲେ ଏ ଯେବେ ନର ହୋଇଥାନ୍ତା
ମୋହର ନମସ୍କାରେ କି ତା ଶରୀର ଥାନ୍ତା ।
ନିଶ୍ଚୟ ଦଗ୍ଧ ହୁଅନ୍ତା ତାର ନିଜ କାୟ
ନିରାକାର ଅବତାର ଏ ଯେ ଧର୍ମରାୟ ।
ଶ୍ରୀକରେ ଅର୍ଘ୍ୟ ଘେନିଣ ତହୁଁ ବିଭୀଷଣ
ଯୁଧିଷ୍ଠିଦେବଙ୍କ ପାଦେ କରିଲା ବନ୍ଦନ ।
କରେ ଯୁଧିଷ୍ଠିର ଦେବ ଦେଲେ ଜୟମାଳା
ବହୁ ପୁରୁଷାର୍ଥ କଲେ ଦେବ ଧର୍ମବଳା ।
ଆସ୍ଥାନେ ବସ ବୋଲିଣ ସର୍ବ ଦଣ୍ଡଧାରୀ
ସ୍ୱର୍ଣ୍ଣାସନେ ବସାଇଲେ ନେଇ ତାଙ୍କୁ ହରି ।
ସ୍ୱର୍ଗପୁର ସମାନ ସେ ସଭାର ଶୋଭନ
ବହୁତ ସାନନ୍ଦେ ବର୍ଣ୍ଣେ ଦେଖେ ବିଭୀଷଣ ।
ଅମର ବିଳାସିନୀଏ ତାଣ୍ଡବ ଖଟନ୍ତି
ନାନା ନୃତ୍ୟ ହେଉଅଛି ତହିଁ ଦିବାରାତି ।
ରାଜସୂୟ ଯାଗସଭା ପନ୍ଦର ଦିବସେ
ଦେବେ ପୁଷ୍ପ ବୃଷ୍ଟି କଲେ ଆକାଶୁ ହରଷେ ।
ପଣ୍ଡୁ ସ୍ୱର୍ଗ ଗଲେ ବୋଲି ଶୁଭିଲାକ ବାଣୀ
ଜୟ ଜୟ ଶବଦରେ କମ୍ପିଲା ମେଦିନୀ ।
ବ୍ୟାସଦେବ କହିଲେକ ବିଭୀଷଣ ଆଗେ
ଯୁବନାଶ୍ୱ ରାଜା ଯ ଗ କଲା ସତ୍ୟଯୁଗେ ।
ଅନେକ କଷ୍ଟରେ ସେହୁ ସନ୍ତାନ ପାଇଲା
ଏ ରାଜସୂୟ ସଭାର ସମାନ ନୋହିଲା ।
ରାଜାମାନେ ପୂଜାକଲେ ବ୍ୟାସଙ୍କ ଅଗ୍ରତେ
ଯୁବାନାଶ୍ୱ ରାଜାକଥା କୁହନ୍ତୁ ପଣ୍ଡିତେ ।
ଶୁଣିଣ ବ୍ୟାସ କହିଲେ ଫିଟାଇଣ ପୋଥି
ଲକ୍ଷେ ରାଜା ଶ୍ରୋତା ବକ୍ତା ବ୍ୟାସ ମହାଯତି ।

ମନ ନିବେଶିଣ ଶୁଣ ହେ ନୃପତିଗଣ
ଯୁବନାଶ୍ୱ ରାଜାଙ୍କର ଯଜ୍ଞର ବିଧାନ ।
ସୂର୍ଯ୍ୟବଂଶେ ସେହୁ ରାଜା ହୋଇଲେକ ଜାତ
ସଂକ୍ଷେପି କହୁଛି ଶୁଣ ତାହାଙ୍କ ଚରିତ ।
ଆଦ୍ୟ ଶୂନ୍ୟ ନିରଞ୍ଜନ ଶକତି ଉତ୍ପନ୍ନ
ପ୍ରଥମରେ ଉପୁଜିଲେ ଦେବତା ବ୍ରାହ୍ମଣ ।
ଏହାଙ୍କର ଅଂଶେ ଜାତ ହେଲେ ସୂର୍ଯ୍ୟବଂଶ
ଏହି ବଂଶେ ହରିଶ୍ଚନ୍ଦ୍ର ହୋଇଲେ ନରେଶ ।
ହରିଶ୍ଚନ୍ଦ୍ରଙ୍କ ନନ୍ଦନ ରୋହିତାଶ୍ୱ ହେଲେ
ହରଯଶ ଏହାଙ୍କର ସନ୍ତାନ ହୋଇଲେ ।
ହରଯଶର ନନ୍ଦନ ହେଲେ ଯୁବନାଶ୍ୱ
ସୁଖରେ ପାଳିଲେ ପ୍ରଜା ହୋଇ ସେ ନରେଶ ।
ଏହି ରାଜାଙ୍କର କୋଳେ କୁମର ନୋହିଲା
ଅପୁତ୍ରିକ ବେନି ଲକ୍ଷ ବର୍ଷ ରାଜ୍ୟ କଲା ।
ବହୁତର ଯାଗ ଯଜ୍ଞ କଲାକ ନୃପତି
ତଥାପି ତାହାର କୋଳେ ନୋହିଲା ସନ୍ତତି ।
ନାନା ଦାନମାନ ରାଜା କଲା ଅନୁକ୍ଷଣ
ବହୁତୀର୍ଥ ବୁଲି ରାଜା କଲା ପର୍ଯ୍ୟଟନ ।
ଅନେକ ପୂଜା କରିଲା ଦେବତା ବ୍ରାହ୍ମଣ
ତଥାପି ତାହାର ଅଂଶେ ନୋହିଲା ସନ୍ତାନ ।
ପୁତ୍ର ନୋହିବାରୁ ରାଜା ଅତିଅନ୍ତ ଦୁଃଖେ
ଦେବତା ବ୍ରାହ୍ମଣ ପୁଣି ଦଣ୍ଡିଲା ବିମୁଖେ ।
ବଶିଷ୍ଠ ବାମଦେବ ଯେ କହିଲେ ବ୍ରହ୍ମାଙ୍କୁ
ଯୁବନାଶ୍ୱ ହରିଲାକ ଦେବ ବ୍ରାହ୍ମଣଙ୍କୁ ।
ବେଦ ମନ୍ତ୍ରମାନ ସତ ନୋହିଲା ବିରଞ୍ଚି
ଶୁଣି ପିତାମହ ଏକ ପୁତ୍ର ଯଜ୍ଞ ରଞ୍ଚି ।
ଅଗ୍ନିଦେବଙ୍କୁ ସନ୍ତୁଷ୍ଟ କଲେ ଯଜ୍ଞ ଗୋଷ୍ଠେ
ମହାମନ୍ତ୍ରେ ଯଜ୍ଞ କଲେ ପୁତ୍ର ଜଳଘଟେ ।
ଆହୁତି ଦିଅନ୍ତି ଥାଇ ଲୋକାଲୋକ ଗିରି
ମହାମନ୍ତ୍ର ଜଳଘଟ ନେଇ ଯତ୍ନକରି ।
ଅଗର ବୃକ୍ଷେ ବିଶାଖା ଡାଳ ଥିଲା ଗୋଟି
ତା ପରେ ଥୋଇଲେ ନେଇ ସେ ଜଳଘଟଟି ।
କାଲି ପ୍ରଭାତେ କହିବା ଆସି ବଶିଷ୍ଠଙ୍କୁ
ଯୁବନାଶ୍ୱଙ୍କୁ ଦେବେ ସେ ଏ ଜଳଘଟକୁ ।
ଥୋଇ ବେଦବର ତହୁଁ ଗଲେ ଲାଣ୍ଡଭଣ୍ଡେ
ବଶିଷ୍ଠ ଯାଇଅଛନ୍ତି ପ୍ରୟାଗ ମାର୍କଣ୍ଡେ ।
କୁମ୍ଭମାସ ଶୁକ୍ଳପକ୍ଷ ଗୁରୁବାର ଚୌଠି
ରେବତୀ ନକ୍ଷତ୍ର ହୁଏ ବେଳ ତିନିଘଟି ।
ସେହିଦିନ ଯୁବନାଶ୍ୱ ମୃଗୟା ବିନୋଦେ
ଲୋଡ଼ି ନ ପାଇଲେ ବନେ ମୃଗ ଗଣ୍ଡାହାଦେ ।
ବୁଲି ବୁଲି ନରପତି ମହାଶ୍ରମୀ ହେଲେ
ପିପାସା ଆତୁରେ ସେହି ମନ୍ତ୍ରୀକି ବୋଇଲେ ।
ଆହେ ମନ୍ତ୍ରୀ ଶ୍ରମେ ଦହ୍ୟ ହୁଏ ମୋର କାୟ
ବହନ ଲୋଡ଼ିଣ ମୋତେ ଜଳ ଢୋକେ ଦିଅ ।
ରାଜାର ବଚନେ ମନ୍ତ୍ରୀ ଅଶ୍ୱକୁ ପଲାଣି
ବୁଲି ବୁଲି ନ ପାଇଲେ କାହିଁ ଲୋଡ଼ି ପାଣି ।
ଲୋକା ଲୋକ ଗିରିକୁ ସେ ଭେଟିଲା ନିକଟେ
ଅଗର ବୃକ୍ଷେ ଦେଖିଲା ଥିଲା ଜଳଘଟେ ।
ସେ ଜଳଘଟକୁ ଘେନି ମନ୍ତ୍ରୀ ଗଲା ବେଗେ
ଯତ୍ନକରି ଦେଲା ନେଇ ଯୁବନାଶ୍ୱ ଆଗେ ।
ମହାପିପାସାରେ ରାଜା ବସିଥିଲେ ତହିଁ
ଜଳ ପିଅନ୍ତେ ସେ ଘଟଯାକ ଦେଲେ ପିଇ ।
ସେ ଜଳ ସବୁକୁ ରାଜା ତୃଷାରେ ପିଇଲା
ଧାତାମନ୍ତ୍ରେ ରାଜାଗର୍ଭେ ପୁତ୍ରେକ ରହିଲା ।
କଟକରେ ଯାଇ ବିଜେକଲା ସୂର୍ଯ୍ୟବଂଶୀ
ପିତାଙ୍କୁ ଭେଟିଲେ ଯାଇ ବଶିଷ୍ଠ ମହର୍ଷି ।
ଧାତା ବୋଇଲେ ତୁ ଯାଅ ଲୋକାଲୋକ ଗିରି
ତାହା ଶିଖେ ବୃକ୍ଷେ ଅଛି ଘଟେ ଜଳ ପୁରି ।
ଯୁବନାଶ୍ୱ ରାଜା ଭାର୍ଯ୍ୟା ପିଇଲେ ସେ ନୀର
ଏକପୁତ୍ର ହେବ ତାହା ମହାବୀରବର ।
ଧାତାଙ୍କ ବାକ୍ୟେ ଚଳିଲେ ସେଠାରୁ ବଶିଷ୍ଠ
ପର୍ବତେ ଦେଖିଲେ ବୃକ୍ଷେ ନାହିଁ ଜଳଘଟ ।
ପିତାର ଛାମୁରେ ଯାଇ କହିଲେ ବାହୁଡ଼ି
ଲୋକାଲୋକେ ନ ପାଇଲୁ ଜଳଘଟ ଲୋଡ଼ି ।
ତାହା ଶୁଣି ପିତାମହ ମନେ ଚିନ୍ତାକଲେ
ଦାନବ ପାଇଣ କିବା ତାହା ହରି ନେଲେ ।
ସେ ପୁତ୍ର ଯେବେ ଜନ୍ମିବ ଦାନବଙ୍କ କୋଳେ
ଆଜହୁଁ ତେଜିଲେ ସ୍ୱର୍ଗ ଜାଣ ଦିଗପାଳେ ।
ଧ୍ୟାନରେ ଚିନ୍ତି ଜାଣିଲେ ସାବିତ୍ରୀର ନାହା
ଯୁବନାଶ୍ୱ ରାଜା ନିଜେ ପିଇଛନ୍ତି ତାହା ।
ବିଚାରି ବୋଇଲେ ସୂର୍ଯ୍ୟବଂଶ ରହିଗଲା
ଏଡ଼େ ରାଜା ଯୁବନାଶ୍ୱ ଅକାରଣେ ମଲା ।
ଯାଅ ଯାଅ ହେ ବଶିଷ୍ଠ ଯୁବନାଶ୍ୱ ତହିଁ
ସେ ରାଜାକୁ ରକ୍ଷାକର ଧର୍ମକଥା କହି ।
ଯୁବନାଶ୍ୱ ରାଜା ନାଶଯିବ ପୁରୁ ବାଞ୍ଛା
ବଂଶର କାରଣ ହେବ ପୁତ୍ର ହେଉ ରକ୍ଷା ।
ସେ ମହାମନ୍ତ୍ର ଜଳକୁ ପିଇଲା ନରେଶ
ବଳବନ୍ତ ପୁତ୍ର ଏକ ରହେ ଗର୍ଭବାସ ।
ତାଦୃଶ ତା ଗର୍ଭେ ଏକ ରହିଅଛି ବଳା
ସେଥିପାଇଁ ରାଜା ମନେ ହେଲାଣି ବିଭୋଳା ।

ଦିନୁଦିନ ନୃପତିର ଗର୍ଭ ହେଲା ଭାରି
ତିନିମାସେ କିସ ହେଲା ଭାଳେ ଦଣ୍ଡଧାରୀ ।
ଚାରିମାସେ ହେଲା ରାଜା ମହା ଅଶକତା
ଅନୁକ୍ଷଣେ ସେ ରାଜାକୁ ପୁଚ୍ଛେ ତା ବନିତା ।
ବୋଲଇ ନରେଶ ମୋର ହେଲା କିସ ବ୍ୟାଧି
ବୈଦ୍ୟକୁ କହି ବହନ କର ଅଉଷଧି ।
ବ୍ରହ୍ମାଙ୍କ ମନ୍ତ୍ରରେ ଶିଶୁ ଅଛି ଗର୍ଭେ ରହି
ମନ୍ତ୍ର ଅଉଷଧିରେ କି ତାହା ନାଶଯାଇ ।
ହଲାଇ ପାରେ କି କେହି ଶୂନ୍ୟେ ମେରୁକିଳା
ତେସନେକ ସ୍ୱରୂପରେ ଗର୍ଭେ ବଢ଼େ ବଳା ।
ମହାବୈଷ୍ଣବ କୁମର ବଳେ ବଳବନ୍ତା
ପାଞ୍ଚମାସେ ହେଲେ ରାଜା ଅତି ଅଶକତା ।
ଉଠି ନ ପାରଇ ରାଜା ଭୂମିପରେ ଲୋଟି
ଏମନ୍ତ କାଳେ ବଶିଷ୍ଠ ତହିଁ ଯାଇ ଭେଟି ।
ବ୍ୟାସ ବଶିଷ୍ଠ ସୁଦେବ ଶୁକ ମାରକଣ୍ଡ
ଧର୍ମଗ୍ରନ୍ଥ କହି ତାର ଆଶ୍ୱାସନ୍ତି ପିଣ୍ଡ ।
ବଶିଷ୍ଠ ବୋଇଲେ ରାଜା ନ କର ମୌଷଧି
ଗର୍ଭରେ ତୋହର କିଛି ଜାଣ ନାହିଁ ବ୍ୟାଧି ।
ଆପଣ ଯହୁଁ ଦେବତା ଦ୍ୱିଜେ ନ ସ୍ଥାପିଲୁ
ଅତ୍ୟନ୍ତ କଷ୍ଟରେ ଆମ୍ଭେ ପିତାଙ୍କୁ କହିଲୁ ।
ସନ୍ତତି ଜଳଘଟେକ ଯଜ୍ଞୁ ଜାତକଲେ
ଲୋକାଲୋକ ଗିରିଶିଖ୍ ଶୃଙ୍ଗରେ ଥୋଇଲେ ।
ଯେଉଁଦିନ ଗଲୁ ତୁହି ମୃଗୟା ବିନୋଦେ
ମୃଗ ନ ପାଇ ତୃଷାରେ ବସିଲୁ ବିଷାଦେ ।
ମନ୍ତ୍ରୀ ତୋହର ଅଶ୍ୱେକ ଚଢ଼ି ବେଗେ ଗଲା
ଜଳ ନ ପାଇ କାହିଁ ସେ ଜଳଘଟ ନେଲା ।
ତୋତେ ସେହି ଜଳଘଟ ଦେଇଥିଲା ଆଣି
ମହାଶ୍ରମେ ପିଇଲୁ ତୁ ବନେ ଯେଉଁ ପାଣି ।
ଧାତାର ମହାମନ୍ତ୍ର କି ହୋଇପାରେ ନାଶ
ପୁତ୍ରେକ ହୋଇବ ରାଜା ହେଲୁ ଗର୍ଭବାସ ।
ଯୁବନାଶ୍ୱ ତୁଷ୍ଟହେଲା ବଶିଷ୍ଠ ବଚନେ
ମୁହିଁ ପ୍ରପଞ୍ଚ ମରଇ ହେଉ ମୋ ସନ୍ତାନେ ।
ଯଦ୍ୟପି ସାନନ୍ଦ ମନ ହେଲା ନରପତି
କୁମାରର ଭାରା ରାଜା ସହୁଛି କେମନ୍ତି ।
ମାତା ଗର୍ଭରେ ପୁତ୍ରକୁ ସିନା ଠାବ ଅଛି
ଯାହାକୁ ଯେ କଥା ପୂର୍ବୁ ବିଧାତା ଗଢ଼ିଛି ।
ପିତାର କି ଶକ୍ତି ତାହା ପାରିବ ସେ ସହି
ମହା ଜ୍ୱାଳାରେ ଶରୀର ତାର ହୁଏ ଦହି ।
ବିଷ୍ଣୁ ପୁରାଣ ଫେଡ଼ିଣ ଶୁକ ମହାଯତି
ରାଜାଙ୍କ ଅଗ୍ରତେ ଯାଇ ନିତି ଶୁଣାବନ୍ତି ।
ନବଶତ ମହାଦେଈ ରାଜାଙ୍କ ଭାରିଯା
ଅନୁକ୍ଷଣେ ବେଢ଼ି ବସି ଖଟୁଥାନ୍ତି ରାଜା ।
ଶିବଆଳେ ଗୋ ଦୁହିଁଣ ଈଶ୍ୱରେ ଢାଳନ୍ତି
ନାନା ଉପଚାରେ ଗ୍ରହ କରାଅନ୍ତି ଶାନ୍ତି ।
ନବଲକ୍ଷ ବ୍ରାହ୍ମଣଙ୍କୁ ଆଣି ବିଷ୍ଣୁଆଳେ
ଭୁଞ୍ଜାନ୍ତି ଚଣ୍ଡୀଙ୍କୁ ବଳି ଦ୍ୟନ୍ତି ନିଶାକାଳେ ।
ସହି ନ ପାରିଣ ରାଜା କାନ୍ଦେ ଉଚ୍ଚସ୍ୱରେ
ମହାବଳୀ କୁମରଟି ବୁଲଇ ଗର୍ଭରେ ।
ଅନେକ ବ୍ୟାକୁଳ ମନେ ହୁଏ ଯୁବନାଶ୍ୱ
ସେ ବେଳକୁ ହୋଇଲାଣି ଗର୍ଭ ଆଠମାସ ।
ନବମାସେ ବାହାରିଣ ଲୋଡ଼ଇ ସେ ଦ୍ୱାର
କିବା ଭଇରବ ମୂର୍ତ୍ତି କଲା ସେ ବିସ୍ତାର ।
କୁମ୍ଭ ଶୁକ୍ଳ ଚତୁର୍ଥୀରେ ଗର୍ଭେ ରହେ ପୁତ୍ର
ହେ ରାଜା ଏମନ୍ତ କାଳେ ହୋଇଲା ସେ ଜାତ
ମାର୍ଗଶିର ଶୁକ୍ଳପକ୍ଷ ଚତୁର୍ଥୀର ତିଥି
ଅନୁରାଧା ନକ୍ଷତ୍ର ଯେ ବାର ବୃହସ୍ପତି ।
କିଂସ୍ତୁଘ୍ନ ନାମେ କରଣ ଶୁଭ ନାମେ ଯୋଗ
ରାତ୍ର ଦେଢ଼ ପ୍ରହରରେ ବୁଧଙ୍କର ଭୋଗ ।
ଗର୍ଭର ଭିତରୁ ପୁତ୍ର ବାହାନାଦ କରି
ବାହାର ହୋଇଲା ସେହୁ ପଞ୍ଜରା ବିଦାରି ।
ପୁତ୍ରର ବଦନ ଗୋଟି ଚାହିଁ ଯୁବନାଶ୍ୱ
ଛାଡ଼ିଣ ପିଣ୍ଡୁ ପରାଣ କଲା ସ୍ୱର୍ଗେ ବାସ ।
ତୁଳସୀ ନାମରେ ଯୁବନାଶ୍ୱ ପାଟରାଣୀ
ପୁତ୍ରକୁ ସମ୍ଭାଳିଲା ସେ ବଂଶର କାରଣି ।
ରାଜାର ପିଣ୍ଡ ନେଇଣ ପ୍ରୟାଗର ତୀର୍ଥେ
ଦହନ କରାଇଲେ ସେ ବଶିଷ୍ଠ ପ୍ରୋହିତେ ।
ବ୍ରହ୍ମାଙ୍କ ବାକ୍ୟ ମନ୍ତ୍ରରେ ଉପୁଜେ ସନ୍ତତି
ମାତାର ବିହୁନେ ପୁଣ ହେଲା ଉତପତ୍ତି ।
ମହର୍ଷିମାନେ ବସିଣ ଦେଲେ ଏହି ନାମ
ମାନଧାତା ନାମଗୋଟି ରହୁ ସର୍ବୋତ୍ତମ ।
ପୁରାଣ ବାକ୍ୟେ କହିଲେ ମୁନି ଶୁକବ୍ରହ୍ମ
ସେ ମାନଧାତାଙ୍କ ହେଲା ପ୍ରସିଦ୍ଧ ଯେ ନାମ ।
ସତ୍ୟେ ରାଜ୍ୟ କଲା ଲକ୍ଷେ ଷାଠିସହ୍ର ବର୍ଷ
ନବଦ୍ୱୀପ ମଧ୍ୟେ ତାର ମହିମା ପ୍ରକାଶ ।
ଶୁଣ ତୁ ରାଜା ଏମନ୍ତେ ଧାତାର ମହିମା
ନବଦ୍ୱୀପ ସାତସିନ୍ଧୁ ମଧ୍ୟେ ସେ ମହାତ୍ମା ।
ସୁତମନୁ ପ୍ରଥମରେ ଧନୁଏ ସଞ୍ଚିଲେ
ଅଜଗବ ନାମ ଗୋଟି ସେ ଧନୁର ଦେଲେ ।
ସେ ଧନୁର ତେଜ ମାନଧାତା ମହାଯୋଧୀ
ଏକା ନାରାଚକେ ସେହୁ ସପ୍ତଦ୍ୱୀପ ସାଧି

ଶତ୍ରୁ ନିସୂଦନ କଲା ଅମର ଭୁବନୁ
ସତ୍ୟଯୁଗେ ମହାରାଜ ଯୁବନାଶ୍ୱ ସୂନୁ ।
ସେ ରାଜା ଯଜ୍ଞ କରିଲା ବିଲଙ୍କର ଦେଶେ
ଯଜ୍ଞସ୍ଥାନେ ହୁତାଶନ ଉଠେ ଅର୍ଦ୍ଧାକାଶେ ।
ସତ୍ୟଯୁଗେ ମଧ୍ୟସ୍ୱର୍ଗେ ଷଡ଼ ଚକ୍ରବର୍ତ୍ତୀ
ବଳୀ ବେଣୁ ମାନଧାତା ବୀର ମହାଯତି ।
ଜାନୁଘଣ୍ଟ ପର୍ଶୁରାମ ଶ୍ରୀହରିଚନ୍ଦନ
ସତ୍ୟଯୁଗେ ଥିଲେ ଏହି ଛଅଟି ରାଜନ ।
ସତ୍ୟଯୁଗେ ନବ ଆଠଲକ୍ଷ ଛୟାଣୋଇ
ବର୍ଷ ଶେଷଯାଏ ଭୋଗ କଲେ ଏହି ମହୀ ।
ଏସନକ ଯଜ୍ଞ କରି ନ ଥିଲେ ଯେ କେହି
ବ୍ୟାସ ମହାଯତି ଏହା ସଭା ମଧ୍ୟେ କହି ।
ସେ ଦୀନବାନ୍ଧବ ହରି କମଳ ଲୋଚନ
ସିନ୍ଧୁସୁତା କମଳାଙ୍କ ତୁମ୍ଭେ ପ୍ରାଣଧନ ।
ତୁମ୍ଭେ ଏହି ମହାଯଜ୍ଞ ସ୍ଥାପନ କରିଲ
ପାଣ୍ଡବମାନଙ୍କ ଯଶ ଭବେ ରଖାଇଲ ।
କର ଦୟା ମୋହଠାରେ ହେ ମଧୁସୂଦନ
ଅନ୍ତିମେ ନ ଲାଗୁ ମୋତେ ଶମନ ବନ୍ଧନ ।
ଶାରଳା ଦାସ ସଦା ଏତିକି ମାଗୁଣି
ତୋ ନାମ ଧରି ତରିବି ଭବ ତରଙ୍ଗିଣୀ ।



## ଯୁଧିଷ୍ଠିରଙ୍କ ଦର୍ଶନେ ବିରାଟ ରାଜାଙ୍କ ଅପମାନ

ଏଥୁଅନ୍ତେ ମନୁରାଜା ଯୋଡ଼ି ବେନି ହାତ
ଅଗସ୍ତି ମୁନିଙ୍କ ପାଦେ କରି ପ୍ରଣିପାତ ।
ହେ ଅଗସ୍ତି ଏହା ପରେ ହେଲା କେଉଁ କଥା
ତାହା ଶୁଣାଇ ମୋହର ଖଣ୍ଡ ମନୋବ୍ୟଥା ।
ଅଗସ୍ତି ବୋଇଲେ ଶୁଣ ବିଲଙ୍କ ରାଜନ
ଏଥୁ ଅନନ୍ତରେ ହେଲା ଯେବଣ ବିଧାନ ।
ରାଜାମାନଙ୍କ ପାଶରେ ବ୍ୟାସ ମହାଯତି
ଯୁବନାଶ୍ୱ ରାଜାଙ୍କର ଚରିତ କହନ୍ତି ।
ଏମନ୍ତ ସମୟେ ତହିଁ ଦୂତ କାଳିଞ୍ଜନ
ସଭାରେ ଜଣାଏ ଯହିଁ ଛନ୍ତି ଭୀମସେନ ।
ସ୍ୱାମୀ ପଶ୍ଚିମର ରାଜ ବିରାଟ ଯା ନାମ
ସବୁବେଳେ କହେ ମୋତେ କରାଅ ଦର୍ଶନ ।
ଭୀମସେନ ଜଣାଇଲେ ନାରାୟଣ ପାଶେ
ସ୍ୱାମୀ ବିରାଟ ଦର୍ଶନେ ଆସିବାକୁ ଭାଷେ ।
ଗୋବିନ୍ଦ ପୁଚ୍ଛା କରିଲେ ବ୍ୟାସ ମହର୍ଷିଙ୍କି
ଦର୍ଶନକୁ ଆସିବେ କି ବିରାଟ ଏଥିକି ।

ବ୍ୟାସ ବୋଇଲେ ଭୋ ଦେବ ଶୁଣିମା ଶ୍ରୀରଙ୍ଗ
ବିରାଟର ଆଶା ଗୋଟି କେଭେ ତୁ ନ ଭାଙ୍ଗ ।
ତୁହି ଦେବ ମାୟାଧର କର ଏହି ବୁଦ୍ଧି
ତୋତେ କି ଅଜଣାଅଛି ଆହେ ଦୟାନିଧି ।
ଯେମନ୍ତେ ବିରାଟ ତାଙ୍କୁ ଦେଖି ନ ଚିହ୍ନଇ
କାଳେ ପାଣ୍ଡବମାନଙ୍କୁ ସାହା ହେବେ ସେହି ।
ବ୍ୟାସ ବାସୁଦେବ ଏହି କଥା ହେଲା ପରେ
ଭୀମକୁ ଡକାଇ କୃଷ୍ଣ କହିଲେ ସଧୀରେ ।
ଯାଅ ବାବୁ ବିରାଟକୁ ଆଣ ତୁ ବହନ
ଯେହ୍ନେ ଠାକୁରେ ନ ଚିହ୍ନୁ ବିରାଟ ରାଜନ ।
କୃଷ୍ଣଙ୍କ ବାକ୍ୟରେ ଭୀମ ଗଲେ ଅତି ତମେ
ଦୁଇ ଗଦା ବୁଲାଇଣ ଗଲେ ଦକ୍ଷ ବାମେ ।
ଦେଖିଣ ତ୍ରାସିଲେ ତାଙ୍କୁ ରାଜନ ସମସ୍ତେ
ବୋଲନ୍ତି କୋପ କାହାକୁ କରୁଅଛ ଏତେ ।
ଭୀମଙ୍କ ସେ ରୂପ ଦେଖି ସକଳ ଥରିଲେ
ସଂଯମନୀପୁରେ ଯମ ଦେଖି ଭୟ କଲେ ।
ଅଧରରେ ଦନ୍ତ ଚାପିଧାଏଁ ବୃକୋଦର
ଧାତିକାରେ ପ୍ରବେଶିଲେ ପଶ୍ଚିମ ଦୁଆର ।
ଦ୍ୱାରେ ଉଭା ହୋଇ ଡାକେ ପବନର ଚାଟ
ମତ୍ସ୍ୟଦେଶ ରାଜା କାହିଁ ଅଛ ହେ ବିରାଟ ।
କୁରାଳ ଚକ୍ର ପରାୟେ ବୁଲାଇ ଦ୍ୱିଆଖି
ବିରାଟ ତ୍ରାସିଲେ ଭୟେ ଭୀମରୂପ ଦେଖି ।
ଭୟରେ ମତ୍ସ୍ୟ ଅଧିପ କମ୍ପେ ଥରହର
ଛାମୁରେ ମିଳେ ତା ମନ୍ତ୍ରୀ ଯେ ଯାଚକେଶ୍ୱର ।
ବୃକୋଦର ବୋଇଲା ହେ ତୁ କି ମତ୍ସ୍ୟପତି
ସେ ବୋଇଲା ମୁଁ ଅଟଇ ସେ ରାଜାର ମନ୍ତ୍ରୀ ।
ଭୀମ ବୋଇଲେ ବିରାଟେ ଆଣ ମୋ ଛାମୁକୁ
ତାହାକୁ ଆଜ୍ଞା ହୋଇଲା ଛାମୁକୁ ନେବାକୁ ।
ମନ୍ତ୍ରୀ ବୋଲେ ଏବେ ଭ୍ରାନ୍ତି ଫିଟିଲା ଭୋ ସ୍ୱାମୀ
ବିରାଟ ଭୀମଙ୍କ ପାଦେ ହେଲା ପରଣାମି ।
ପଚାଶ ଭାର ସୁବର୍ଣ୍ଣ ନେଇଣ ସୟଳ
ଦେଇ ଭୀମପାଦେ ପଡ଼େ ମତ୍ସ୍ୟ ମହୀପାଳ ।
ଭୀମସେନ ବୋଇଲା ହୋ ରାଜା ଉଠ ଉଠ
ଏଡ଼େ ବଡ଼ ମନ୍ଦ ତୁହି ଅଟୁ ହୋ ବିରାଟ ।
ତ୍ରେତୟ ଯୁଗର ରାଜା ଲଙ୍କା ବିଭୀଷଣ
ସେ ଦର୍ଶନ କଲେ ଆସି ହେଲା ତିନିଦିନ ।
ଏଡ଼େ ତୁ ଅବଜ୍ଞା କରୁ ପାଇ କାହା ଦମ୍ଭ
ନିକଟ ରାଜା ହୋଇଣ କିପାଁ ତୋ ବିଳମ୍ବ ।
ହେ ବିରାଟ କୀଚକ ଯେ ଅଟେ ତୋର ଶଳା
ଶତସିଂହ ବଳ ବୋଲି ତେଣୁ କଲୁ ହେଳା ।

ମୋର ଶ୍ରୀମୁଖକୁ ସେହି ନିନ୍ଦା କରିଅଛି
ସଭାକୁ ଅଇଲୁ ତୁହି ସେ କାହିଁ ରହିଛି ।
ବିରାଟ ବୋଇଲେ ଦେବ ତା ଦୁଷ୍ଟ ପ୍ରକୃତି
ଅପଣ୍ଡିତ ଦୋଷ କିପାଁ ଧର ମହାମତି ।
ଭୀମ ବୋଇଲେ ଅଇଲୁ ତୁହି କେଉଁଦିନ
ଚାରିଦିନ ହେଲା ମୁହିଁ ଅଛି ଏହି ସ୍ଥାନ ।
ଭୀମସେନ ବୋଇଲେକ ଶୁଣ ହେ ବିରାଟ
କେଉଁଠ ଅନ୍ନ ବ୍ୟଞ୍ଜନ ଭୁଞ୍ଜନ୍ତି ତୋ ଥାଟ ।
ବିରାଟ ବୋଇଲେ ସ୍ୱାମୀ ଶୁଣ ଭୀମସେନ
ସାତକ୍ଷୌଣୀ ସୈନ୍ୟ ତୁଲେ କରୁଛି ଭୋଜନ ।
ଭୀମ ସାନନ୍ଦ ବିରାଟଠାରୁ ଏହା ଶୁଣି
ଛାମୁକୁ ଦରଶନୀ ତୁ କେତେ ଅଛୁ ଆଣି ।
ବିରାଟ ବୋଇଲେ ତହୁଁ ଯୋଡ଼ି ବେନି ହାତ
ପଞ୍ଚାଶ ଭାର ଧନ ମୁଁ ଆଣିଛି ନିତାନ୍ତ ।
ଭୀମ ବୋଇଲେ ତୁ ଦୁଇରାଜ୍ୟେ ଅଧିକାରୀ
ପରର ସମ୍ପଦ ତୁହି ବଳେ ଭୋଗକରି ।
ଦୁହାଁ ଦ୍ୱିପଦ୍ମ ବରଡ଼ ବାରଲକ୍ଷ ଗାଈ
ପରର ଧେନୁ ତୁ ବଳେ ଆଣିଲୁ ଛଡ଼ାଇ ।
କୀଚକର ବଳେ ତୋର ଏଡ଼େକ ମହିମା
ମନ୍ଦ ପ୍ରକୃତି ନ ଛାଡ଼ି ଦେଖାଉ ଗାରିମା ।
ପଞ୍ଚାଶ ଭାର ଆଣିଛୁ ତୋହପରା ରାଜା
ଜନମୁଖ ଚାହିଁବାକୁ ନ ପାଉ କି ଲଜ୍ଜା ।
ତୋ ପାଇଁ ଆସି ଗୁହାରି କରୁଛି ତ୍ରିଗର୍ତ୍ତ
ତାହା ତ ନ ଶୁଣୁ ଆମ୍ଭେ ତୋହର ନିମିତ୍ତ ।
ତୁହି ଅଇଲୁ ଅଶୁଦ୍ଧ ମୂଢ଼ ମନ୍ଦଭାବେ
ଆସ ଏଘାନ୍ତି ଦର୍ଶନ କରାଇବା ତେବେ ।
କହୁଁ କହୁଁ କୋପାନଳ ପଣ୍ଡୁରାଜା ସୁତ
ବିରାଟ ବେକରେ ନେଇ ଦେଲା ବାମହାତ ।
ଆରେକ ହସ୍ତକୁ ନେଇ ଦେଲା କଟିଭାଗେ
ପେଲି ପେଲି ଭୀମସେନ ଆଣେ ଅତି ବେଗେ
ବିରାଟ ନରପତି ଯେ ହୋଇଣ ହତାଶ
ବୋଇଲେ ଗୋସାଇଁ ମୋର ଅଛି କେଉଁ ଦୋଷ
ଭୀମ ବୋଲେ କଲା ମୋତେ ତ୍ରିଗର୍ତ୍ତ ଗୁହାରି
ବଳାତ୍କାରେ ରାଜ୍ୟକୁ ତୁ ଘେନିଛୁ ତାହାରି ।
ବିରାଟର ଆତ୍ମା ଗୋଟି ହେଉଛି ଦହିଯ୍ୟ
ସବୁ ରାଜାମାନେ ଦେଖି ହୁଅନ୍ତି ଆଶ୍ଚର୍ଯ୍ୟ ।
ଧର୍ମ ଧର୍ମ ସୁମରନ୍ତି ସର୍ବେ ରାଜାମାନେ
ବିରାଟକୁ ନ୍ୟନ୍ତି ଭୀମ ବଧିବେ କି ପ୍ରାଣେ ।
କେତେ ବୋଲନ୍ତି ବର୍ତ୍ତିବ ଛାମୁକୁ ଏ ଗଲେ
ମୃତ୍ୟୁନାହିଁ ଯୁଧିଷ୍ଠିଙ୍କ ଦର୍ଶନ ପାଇଲେ ।
ଯା ଭାବି ଚିନ୍ତନ୍ତି ମାଗୋ ଦୁର୍ଗତି ନାଶିନୀ
ପ୍ରାଣ ପାଉ ଏ ବିରାଟ ରଖ ଗୋସାମଣି ।
ଥୋକେ ବୋଲନ୍ତି ଏ ଧର୍ମସଭା ପିତୃକାର୍ଯ୍ୟ
ଅପ୍ରାଧେ ଏ ବିରାଟକୁ ମୃତ୍ୟୁନାହିଁ ଆଜ ।
କୃଷ୍ଣଙ୍କୁ ଚାହିଁ ବୋଲନ୍ତି ପରାଶର ସୂନୁ
ହେ କୃଷ୍ଣ ବିରାଯ କେହ୍ନେ ଧର୍ମଙ୍କୁ ନ ଚିହ୍ନୁ ।
ତୁଳସୀ ଦେବୀ ବଲ୍ଲଭ ବ୍ୟାସଙ୍କ ବଚନେ
ଆପଣେ ଧାଇଁ ଚଳିଲେ ଦେବ ଜନାର୍ଦ୍ଦନେ ।
ସୁଦର୍ଶନ ଚକ୍ରକୁ ସେ ବେଗେ ଦେଲେ ପେଷି
ବିରାଟର ସମ୍ମୁଖେ ସେ ବୁଲିଲାକ ଆସି ।
ଏଡ଼େକ ଆକର୍ଷିଛନ୍ତି ତାକୁ ବୀର ଭୀମ
ତେଣୁ ହୋଇଛି ବିରାଟ ରାଜା ମତିଭ୍ରମ ।
ତେଣୁକରି ଅନ୍ଧକାର ଦିଶେ ଦଶଦିଶ
ଚକ୍ର ଉହାଡ଼ରେ ପୁଣି ନୁହେଁ କିଛି ଦୃଶ୍ୟ ।
ଗୋବିନ୍ଦ ବୋଇଲେ ମତ୍ସ୍ୟରାଜା ଏ ବିରାଟ
ଦର୍ଶନ କରଇ ଆସି ଆସ୍ଥାନ ନିକଟ ।
ଜଣାନ୍ତେ କୃଷ୍ଣ ମାରୁତି ମୋଡ଼ିଲା ତା ତୋଟି
ଅସାଷ୍ଟମେ ବିରାଟେଶ ପଡ଼େ ମହୀଲୋଟି ।
ଉଠ ବୋଲି ବିରାଟକୁ କହିଲେ ଯୁଧିଷ୍ଠି
ଭୀମଙ୍କ ଭୟେ ସେ ତଳୁ ନ ପାରଇ ଉଠି ।
ଭୂପୃଷ୍ଠେ ଥାଇ ଧର୍ମଙ୍କୁ ଦେଖି ନ ପାରିଲା
ବିଜୁଳି ଛାୟା ପରାୟେ ଶ୍ରୀପଦ ଦେଖିଲା ।
ଭୀମ ବୋଲେ ଦେଖିଲ ତ ମତ୍ସ୍ୟ ମହୀପାଳ
ବିରାଟ ବୋଲେ ଦେଖିଲି ଚରଣ ଯୁଗଳ ।
ଗୋବିନ୍ଦ ବୋଇଲେ ଏହି ଅଟେ ବଡ଼ ମନ୍ଦ
କୀଚକ ବଳେ ହରିଲା ତ୍ରିଗର୍ତ୍ତ ସମ୍ପଦ ।
ଭୀମ ବୋଲେ ସେହି ହେତୁ ଦିଏ ଏହି ଦଶା
ଶ୍ରୀକୃଷ୍ଣ ବୋଲନ୍ତି ତାକୁ ସଭାରେ ନବସା ।
ଗୋବିନ୍ଦଙ୍କ ଆଜ୍ଞା ପାଇ ବୀର ବୃକୋଦର
ବିରାଟେ ବସାଏ ନେଇ ବାହାର ସଭାର ।
ଏମନ୍ତ ପନ୍ଦର ଦିନ ହୋଇଲା ଆହୁତି
ବସିଲେ ସମ୍ପର୍ବେ ତହିଁ ଲକ୍ଷେକ ନୃପତି ।
ମହା ମନ୍ତ୍ରରେ ଆହୁତି ଉଠଇ ଗଗନେ
ଶୂନ୍ୟେ ଆଘ୍ରାଣ କରନ୍ତି ଦିଗପାଳମାନେ ।
ଅବିଚ୍ଛିନ୍ନେ ଦାନ ଦ୍ୟନ୍ତି ଯେ ଯାହା ମାଗଇ
ଅଷ୍ଟରତ୍ନ ମିଳି ଯିଏ ଯାହା ପାରେ ନେଇ ।
ଇଚ୍ଛାଏ ଯେ ଯେତେବେଳେ ମାଗଇଟି ଅନ୍ନ
ମନ ତୋଷକରି ତାକୁ ଦିଅନ୍ତି ଭୋଜନ ।
ମାଘମାସ ଶୁକ୍ଳପକ୍ଷ ପୂର୍ଣ୍ଣିମାର ଦିନ
ଆସ୍ଥାନ ଉପରେ ଉଠିଲେ ଯେ ଧୃଷ୍ଟଦ୍ୟୁମ୍ନ ।

ଶ୍ରୀବତ୍ସ ଲକ୍ଷଣ ତାର ତାମ୍ରବର୍ଣ୍ଣ କାୟେ
ସ୍ୱରୂପରେ ଦିଶନ୍ତି ସେ ବ୍ରହ୍ମାପୁତ୍ର ପ୍ରାୟେ ।
ଲମ୍ବିତ ଜୁଡ଼ା ତାଙ୍କର ଧରି କୁଶହସ୍ତ
ଯୁଧିଷ୍ଠି ଦେବ ଦେଖିଣ ମାଥେ ଦେଲେ ହାତ ।
କର ପ୍ରସାରି କଲ୍ୟାଣ କରେ ଧୃଷ୍ଟଦ୍ୟୁମ୍ନ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସକଳ ରାଜନ ।
ଶ୍ରୀ ଶାରଳା ଚଣ୍ଡୀଙ୍କର ପାଦେ ରଖି ଚିତ୍ତ
ଶାରଳା ଦାସ କହଇ ସଭାପର୍ବ ଗୀତ ।



## ଧୃଷ୍ଟଦ୍ୟୁମ୍ନର ପୂର୍ବଜନ୍ମ ବିବରଣ

ମନୁ ପୁଚ୍ଛାକଲେ କହ ମୁନି ମହାଶୟ
ଏଥିରେ ବହୁତ ମୋର ଜନ୍ମିଲା ସଂଶୟ ।
ତ୍ରୈଲୋକ୍ୟନାଥ ବନ୍ଦନା କରେ ଯାହା ପାଦେ
ଏମନ୍ତ ଯେ ଧର୍ମରାଜା ଯୁଧିଷ୍ଠିର ହାଦେ ।
ଲକ୍ଷେ ନୃପତି ଯାହାର ପାଦତଳେ ଲୋଟି
ମୁକୁଟ ଶିରେ ଲାଗିଛି ଧର୍ମଙ୍କ ଅଙ୍ଗୁଷ୍ଠି ।
ଏ ଦ୍ୱାପର ଯୁଗେ ଯାର ଏସନ ମହିମା
ଶୁକ୍ଳଅମ୍ବର ଶରୀର ପ୍ରତ୍ୟକ୍ଷେ ମହାତ୍ମା ।
ଦେବ ଦାନବେ ଯାହାର କଥା ଅଗୋଚର
ଧୃଷ୍ଟଦ୍ୟୁମ୍ନଙ୍କୁ କେମନ୍ତେ କଲେ ନମସ୍କାର ।
ଅଗସ୍ତି ବୋଇଲେ ତୋତେ କହିବା କାରଣ
ହେ ରାଜା ସ୍ଥିର ହୋଇଣ ତାହା ଏବେ ଶୁଣ ।
ଏମନ୍ତ ଘଟଣା ଯହୁଁ ଶ୍ରୀହରି ଦେଖିଲେ
ଅଧର କମ୍ପାଇ ପ୍ରଭୁ ମହାରାଗ କଲେ ।
ଆମ୍ଭେ ଯାହାଙ୍କର ପାଦେ କରିଛୁ ପ୍ରଣାମ
ଧୃଷ୍ଟଦ୍ୟୁମନ ତାହାଙ୍କୁ କରିଲା କଲ୍ୟାଣ ।
ଏକ୍ଷଣ ଚକ୍ରେ ଛେଦିବି ତାହାର ମୁଁ ଶିର
ଦ୍ରୌପଦୀ ଦେବୀଙ୍କ କ୍ରୋଧ ହୋଇବ ଅପାର ।
ଏହା ଭାଳି ଶାନ୍ତ ହୋଇ ପୁଚ୍ଛିଲେ ଧର୍ମଙ୍କୁ
ଭୋ ଦେବ କଥାଏ ଆଜ ପୁଚ୍ଛିବି ତୁମ୍ଭଙ୍କୁ ।
ତୁମ୍ଭରି ପାଦେ ନମନ୍ତି ଲକ୍ଷେକ ନୃପତି
ଦେବରଷି ମହାରଷି ଏମାନେ ବନ୍ଦନ୍ତି ।
ଆଶ୍ଚର୍ଯ୍ୟ ମଣୁଛି ମୁହିଁ ଦେଖି ତୁମ୍ଭ କଥା
ଧୃଷ୍ଟଦ୍ୟୁମ୍ନକୁ କେମନ୍ତେ ନୁଆଁଇଲ ମଥା ।
ଧର୍ମ ବୋଇଲେ କୃଷ୍ଣାଙ୍କ ଏହି ଜ୍ୟେଷ୍ଠଭ୍ରାତେ
ତେଣୁକରି ନମସ୍କାର ହୋଇଲୁ ଯୁଗତେ ।
ଯୁଧିଷ୍ଠିଙ୍କ ମୁଖୁ ଏହା ଶୁଣି ହୃଷୀକେଶ
ଶୁକ ମୁନିଙ୍କି ସେକ୍ଷଣି ଡକାଇଲେ ପାଶ ।
ତାହାଙ୍କୁ କହନ୍ତେ ହରି ଫେଡ଼ିଲେ ସେ ପୋଥି
ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ଆଗରେ ପଢ଼ନ୍ତି ।
ପଢୁ ପଢୁ ଦେଖିଲେ ସେ ଶାସ୍ତ୍ରର ବିଧାନେ
ପତ୍ନୀ ଜ୍ୟେଷ୍ଠଭ୍ରାତେ ମାନ୍ୟ ନାହିଁ କେଉଁଠାନେ
ବ୍ୟାସଙ୍କ ପାଠରେ ଶଳା ଭୃତ୍ୟଙ୍କ ସମାନ
ଭଣଜାକୁ ତୋଷକଲେ ହୁଏ ବହୁ ପୁଣ୍ୟ ।
ଦେବତାଙ୍କୁ ପୂଜାକଲେ ଧର୍ମ ଅଛି ଯେତେ
ମଙ୍ଗଳୋତ୍ସବ ଭଣଜା ତୋଷେ ଧର୍ମ ତେତେ ।
ଯାଙ୍କୁ ଭୁଞ୍ଜାଇଲେ ଲକ୍ଷେ ବ୍ରାହ୍ମଣର ଫଳ
ଏ ପିଣ୍ଡ ଦେଲେ ଲଭନ୍ତି ପିତୃ ତତକାଳ ।
ପୁରାଣର ଧର୍ମଶୁଣି ଦେବ ଜନାର୍ଦ୍ଦନ
ରାଗେ ଜଳି ଉଠିଲେ ସେ ଅନଳ ସମାନ ।
ଆରେ ଧୃଷ୍ଟଦ୍ୟୁମ୍ନ ତୋର ଏଡ଼େ ବଡ଼ ଦର୍ପ
ପତ୍ନୀ ତୁଲେ ତୋତେ ମାନ୍ୟ କଲି ଅନୁରୂପ ।
ତୋହର କେମନ୍ତେ ହେଲା ଏଡ଼େକ ଭରସା
କଲ୍ୟାଣ କଲୁ ଧର୍ମଙ୍କୁ ବଳାଇ ମନୀଷା ।
ଯଜ୍ଞଶାଳେ ଥାଇ ଏହା ଦେଖି ବେଦବ୍ୟାସ
ଭାଳିଲେ ଧୃଷ୍ଟଦ୍ୟୁମନ ଯାଉଅଛି ନାଶ ।
ଏହିକ୍ଷଣି ନାରାୟଣ ପରାଣେ ମାରିବ
ଏଡ଼େ ବଡ଼ ସଭାଗୋଟି ବିଅର୍ଥ ହୋଇବ ।
ଯାଗଶାଳରୁ ମହାତ୍ମା ଉଠି ତତ୍କ୍ଷଣାନ୍ତି
ଯୁଧିଷ୍ଠି ଆସ୍ଥାନଠାକୁ ବିଜେକଲେ ଧାତି ।
ଆସ୍ଥାନକୁ ତେଜ୍ୟାକରି ଉଠିଲେ ଯୁଧିଷ୍ଠି
ବ୍ୟାସଙ୍କର ଚରଣରେ ଦେଲେ ଅର୍ଘ୍ୟଗୋଟି ।
ବ୍ୟାସଙ୍କ ମୁଖକୁ ଚାହିଁ ବୋଇଲେ ଶ୍ରୀଧର
ଦ୍ରୁପଦ ପୁତ୍ରକୁ ମାନ୍ୟ କଲେ ଯୁଧିଷ୍ଠିର ।
ଦ୍ରୌପଦୀ ବୋଲନ୍ତି ନମି ବ୍ୟାସଙ୍କ ପାଦରେ
ଭାଇ ମୋ ନାଶ ଯାଉଛି ରଖ ଏ ସଭାରେ ।
ତ୍ରୈଲୋକ୍ୟନାଥ ମୋ ଭ୍ରାତୃଦୋଷେ କରି ରକ୍ଷା
ବିନାଶିବେ ବାରେ ଦେବ କର ତୁମ୍ଭେ ରକ୍ଷା ।
ବ୍ୟାସ ବୋଇଲେ କୃଷ୍ଣଙ୍କୁ ଶୁଣ ଭାଗବାନ
ଧୃଷ୍ଟଦ୍ୟୁମନକୁ ଦେବ ମଣ କି ସାମାନ୍ୟ ।
ଧୃଷ୍ଟଦ୍ୟୁମନ ଅଟଇ ସ୍ୱୟଂ ପଶୁପତି
ଏହାର ବିଷୟ କହେ ଶୁଣ ହେ ଶ୍ରୀପତି ।
ହିମାଳୟ ଗିରିତଳେ ମାଳତୀ ଯେ ନଦୀ
ତାର ତୀରେ ଏକବଳା ପାର୍ବତୀ ସମାଧି ।
ଏକବଳା ପାର୍ବତୀଙ୍କି ଇଚ୍ଛାକଲେ ହର
ତେଣୁ ଖଟିଥାନ୍ତି ତାର ଛାମୁରେ ଈଶ୍ୱର ।
କପିଳା ଧେନୁ ତହିଁକି ଗଲା ପାଣି ପିଇ
ନିରଞ୍ଜନ ଦେବ ଭର୍ତ୍ତା ତାହାର ଅଟଇ ।

ନିରଞ୍ଜନ ପଞ୍ଚଆତ୍ମା ପଞ୍ଚଷଣ୍ଢ ହୋଇ
ସେ କପିଳା ପଛେ ପଛେ ଅଛନ୍ତି ଗୋଡ଼ାଇ ।
ସୋମେକ ରୁଦ୍ର ବୋଇଲେ ଦେଖ ଏକବଳା
ତୋ ମାତା ଅସତୀ ତାର ଏହିପରି ଲୀଳା ।
ଗୋଡ଼ାଇ ଅଛନ୍ତି ଦେଖ ତାକୁ ପଞ୍ଚଷଣ୍ଢ
ପାଞ୍ଚକୁ ଆଶା ଦେଖାଇ କରେ ଲଣ୍ଡଭଣ୍ଡ ।
ଯେବଣ ଷଣ୍ଢକୁ ଇଚ୍ଛା ତାହାର ହୋଇବ
ଚାରିଙ୍କି ନିସତ କରି ଏକେତ ବରିବ ।
ପାଞ୍ଚଷଣ୍ଢ ଆଶା କରି ଅଛନ୍ତି ଗୋଡ଼ାଇ
ସ୍ତିରୀଲିଙ୍ଗକୁ ଅଧର୍ମ କଥା ନ ଯୋଗାଇ ।
କପିଳାକୁ ଏକବଳା ଧଇଲା ବିକୃତି
ବୋଇଲା ଏ କଥା ମାତ ନୁହଇ ଯୁକତି ।
ସ୍ତିରୀ ଜନ୍ମ ହୋଇ ତୁମ୍ଭେ କର ଅବିଶ୍ୱାସ
ଏକବଳା ଯହୁଁ ହେଲା ଈଶ୍ୱରଙ୍କ ବଶ ।
ଏକବଳାଠାରୁ ଏହା ଶୁଣିଣ କପିଳା
ବୋଇଲେ ମନେ ବିକୃତି କଲୁ ଏକବଳା ।
ଅମ୍ଭାନେ ଅସତୀ ବୋଲି ବୋଇଲୁ ଏ କଥା
ଚତୁର୍ଥ ଅବତାରେ ତୋ ହେଉ ପଞ୍ଚଭର୍ତ୍ତା ।
ଈଶ୍ୱରଙ୍କୁ ଚାହିଁକରି ବୋଇଲେ ଏମନ୍ତି
ଅସତୀ ବୋଇଲୁ ମୋତେ ଶୁଣ ହେ ଦୁର୍ମତି ।
ଦ୍ରୁପଦ ଯଜ୍ଞ ଅନଳୁ ହୁଅ ଉତପନ୍ନ
ଧୃଷ୍ଟଦ୍ୟୁମ୍ନ ତୋର ନାମ ହେବ ରଖ ମନ ।
ଏହି ଏକବଳା ହେବ ଦ୍ରୁପଦ ଦୁହିତା
ଏହାର ହୋଇବୁ ତୁହି ଜାଣ ଜ୍ୟେଷ୍ଠଭ୍ରାତା ।
ଏମନ୍ତ ଶାପ ଦେବାରୁ ପୂର୍ବରୁ କପିଳା
ଦ୍ରୌପଦୀ ଯେ ଜନ୍ମିଛନ୍ତି ସ୍ୱୟଂ ଏକବଳା ।
ସୋମକ ରୁଦ୍ର ଅଟନ୍ତି ଏହି ଧୃଷ୍ଟଦ୍ୟୁମ୍ନ
ଏଥିରେ ସନ୍ଦେହ କିଛି ନାହିଁ ଜନାର୍ଦ୍ଦନ ।
ପୁଣି ଶ୍ରୀକୃଷ୍ଣଙ୍କୁ ବ୍ୟାସ କହିଲେ ଏକାନ୍ତେ
ଦ୍ରୋଣ ଶିରଚ୍ଛେଦ ହେବ ଧୃଷ୍ଟଦ୍ୟୁମ୍ନ ହସ୍ତେ ।
ଆବର ଭୀଷ୍ମଙ୍କୁ ନାଶ କରିବ ଶିଖଣ୍ଡୀ
ଏଥିକି ତାହାକୁ ଦେବ ନ ପାରିବ ଦଣ୍ଡି ।
ନୋହିଲେ ଧୃଷ୍ଟଦ୍ୟୁମ୍ନର ବଧଯୋଗ୍ୟ ଅଟେ
ସନ୍ଦେହ ଫେଡ଼ି କହିଲି ତୁମ୍ଭର ନିକଟେ ।
ବ୍ୟାସଙ୍କ ବଚନେ କୃଷ୍ଣ ରାଗ ଦୂର କଲେ
ଧୃଷ୍ଟଦ୍ୟୁମ୍ନ ରୁଦ୍ର ବୋଲି ବିଶ୍ୱାସ କରିଲେ ।
ପୁଣି ବୋଇଲେ ବିଶ୍ୱାସ କଲି ମୁଁ ଯଦ୍ୟପି
ଏଣିକି ଧର୍ମ ତାକୁ ନ ନମିବେ କଦାପି ।
ଦ୍ରୌପଦୀ ଭାବିଲେ ମନେ ଆମ୍ଭ ଅଜାସୁର
ଆଜି ରକ୍ଷାକଲେ ମୋର ଭାଇଙ୍କର ଶିର ।

ଜୟ ଜୟ ମାଧବ ହେ କମଳା ବିଳାସ
ଜୟ ଜୟ ପୀତାମ୍ବର ଜୟ ହୃଷୀକେଶ ।
ଜୟ ଜୟ ଦୀନବନ୍ଧୁ ଅଗତିର ଗତି
ଜୟ ଜୟ ରାଧାନାଥ ଗୋକୁଳର ପତି ।
ଏହିପରି ଘୋଷୁଥାଏ ତୋର ନାମ ନିତି
ଶାରଳା ଦାସର ସଦା ଏହାହିଁ ବିନତି ।



## ଏକଶତ ରଥ ସୁବର୍ଣ୍ଣ ମାଗିବା ନିମନ୍ତେ ଯୁଧିଷ୍ଠିରଙ୍କ ନିକଟକୁ ଶିଶୁପାଳର ଗମନ

ପଚାରିଲେ ବୈବସ୍ୱତ ମନୁ ନୃପବର
କେବଣ ବିଷୟ ହେଲା କହ ଅତଃପର ।
କହନ୍ତି ଅଗସ୍ତି ମୁନି ଶୁଣ ଆହେ ନୃପ
ପୁଣି ଯାହା ଯାହା ହେଲା କହୁଛି ସ୍ୱରୂପ ।
ଯୁଧିଷ୍ଠିରଙ୍କ ବହୁଳ ଧନ ଦ୍ରବ୍ୟ ଦେଖି
ଦୁଷ୍ଟଜନେ ଭାଳୁଛନ୍ତି ସୁହୃଦ ଉପେକ୍ଷି ।
କୃପ ଆଚାର୍ଯ୍ୟ ଶକୁନି ଦୁଃଶାସନ ମୂଳେ
ଶଲ୍ୟ ଶିଶୁପାଳ ପୁଣି ଦୁର୍ଯ୍ୟୋଧନ ମେଳେ ।
ଶକୁନି ତିଆରି କହେ ସେ ଶିଶୁପାଳକୁ
ଶତେରଥ ପାଣିଦ୍ରବ୍ୟ ମାଗ ଯୁଧିଷ୍ଠିଙ୍କୁ ।
ଦେଇ ନ ପାରିବ ସେହୁ ନାହିଁ ତ ଭଣ୍ଡାର
ଦୂଷିତ ହୋଇବ ନିଶ୍ଚେ ଜାଣ ଏ ସଭାର ।
ଦମଘୋଷର ନନ୍ଦନ ଏ ବଚନ ଶୁଣି
ହରଷରେ ଶତରଥ ସଙ୍ଗେ ନେଇ ପୁଣି ।
ପ୍ରବେଶ ହେଲା ଯଜ୍ଞର ଭିତର ଦୁଆରେ
କାଳିଞ୍ଜନ ଡଗରକୁ ଡାକେ ଧାଡିକାରେ ।
ବୋଲେ ଆରେ ଶୁଣ କାଳିଞ୍ଜନ ପ୍ରତିହାରୀ
ଯୁଧିଷ୍ଠିରଙ୍କୁ ବାରତା ଦିଅ ବେଗକରି ।
ବୋଲ ଚେଦିଦେଶ ରାଜା ଦମଘୋଷସୁତ
ଦରିଦ୍ର ଦୋଷ ଘଟିଲା ତାହାର ଆସିତ ।
ଯୁଧିଷ୍ଠି ରାଜା ପ୍ରସନ୍ନେ ଦରିଦ୍ରତା ଯିବ
ପାଣିଦ୍ରବ୍ୟ ଶତେ ରଥ ଏହିକ୍ଷଣି ଦେବ ।
ନୋହିଲେ ଯଜ୍ଞ ତୋହରି ହୋଇବ ଦୂଷଣ
କଲା କୃତ୍ୟମାନ ତୋର ହେବ ଅକାରଣ ।
ଶିଶୁପାଳର ବଚନ ଶୁଣି ପଢ଼ିହାରୀ
ଭୀମସେନର ଆଗରେ କହେ ଯାଇ କରି ।
ସ୍ୱାମୀ ଶିଶୁପାଳ ରାଜା ହୋଇଲା ଭିକ୍ଷାଶୀ
ଧନ ଅଭାବେ କୁଟୁମ୍ବ ନ ପାରଇ ପୋଷି ।

ଶଏରଥ ଆଣିଅଛି ନେବ ପାଣିଦ୍ରବ୍ୟ
ନ ଦେଲେ ତୁମ୍ଭର ଯଜ୍ଞ ଦୂଷଣ ହୋଇବ ।
ଭୀମସେନ ଆଜ୍ଞା କଲେ ସେ କାଳିଞ୍ଜନକୁ
କହ ଯାଇ ଦୁର୍ଯ୍ୟୋଧନ ଭଣ୍ଡାର ନାଥକୁ ।
ବୋଲେ ଦୁଃଖୀ ଶିଶୁପାଳ ମାଗୁଅଛି ଧନ
ପାଣିଦ୍ରବ୍ୟ ଶଏରଥ ଦେବ ତାକୁ ଦାନ ।
ଆଜ୍ଞାପାଇ ଚଳିଗଲା କାଳିଞ୍ଜନ ଦୂତ
ଭଣ୍ଡାର ନାଥକୁ ଯାଇ ଜଣାଏ ବୃତ୍ତାନ୍ତ ।
ହେ ଭଣ୍ଡାର ନାଥ ତୋତେ ଭୀମଙ୍କର ବାଣୀ
ଶିଶୁପାଳେ ପାଣିଦ୍ରବ୍ୟ ଦେବ ଏହିକ୍ଷଣି ।
ତହୁଁ ବୋଲେ ଦୁର୍ଯ୍ୟୋଧନ ଶୁଣ ଆରେ ଦୂତ
ଆସୁ ସେହି ଶିଶୁପାଳ ମୋହର ପଶ୍ଚାତ ।
ତକ୍ଷଣେ ସେ ଶିଶୁପାଳ ରାଜା ସଙ୍ଗେ ଗଲା ।
ବାଆନ ଭାର ଭଣ୍ଡାର ସକଳ ଦେଖିଲା ।
ବୋଲେ ଶିଶୁପାଳ ଏଥେ ପାଣିଦ୍ରବ୍ୟ ନାହିଁ
ଏ ଦ୍ରବ୍ୟମାନ ଅପୂର୍ବ କିବା ତୁମ୍ଭଙ୍କୁ ହିଁ ।
କାଳିଞ୍ଜନେ ବୋଲେ ତୁହି ଯାଅ ବେଗ ହୋଇ
ଏହି କଥା ଭୀମସେନେ ଦିଅ ଯେ ଜଣାଇ ।
ଚଳେ କାଳିଞ୍ଜନ ତହୁଁ ଭୀମର ଛାମୁକୁ
ବୋଲେ ଭଣ୍ଡାର ଦେଖାଏ ସେ ଶିଶୁପାଳକୁ ।
ଶିଶୁପାଳ ଦେଖେ କୋପେ ପାଣିଦ୍ରବ୍ୟ ନାହିଁ
ସବୁ ନାଶଗଲା ମୋତେ ପ୍ରତୀତି ହୁଅଇ ।
ଏ ବାରତା ପାଇଣ ସେ ପବନ ଆତ୍ମଜେ
ଆପଣେ ଅତି ଯତ୍ନରେ ତହୁଁ କଲେ ବିଜେ ।
ଦୁର୍ଯ୍ୟୋଧନର ନିକଟେ ବିଜେ ବୃକୋଦର
ଶତେରଥ ପାଣିଦ୍ରବ୍ୟ ଦିଅ ହେ ଭଣ୍ଡାର ।
ଦୁର୍ଯ୍ୟୋଧନ ଦେଖାଏ ଯେ ଭଣ୍ଡାର ସରବ
ଦେଖିଲେ ଭାରକେ ତହିଁ ନାହିଁ ପାଣିଦ୍ରବ୍ୟ ।
ବାହୁଡ଼ି ଭୀମ କହଇ ଶ୍ରୀ ବାସୁଦେବଙ୍କୁ
ଶିଶୁପାଳ କଟାଳ ତ କରୁଛି ଆମ୍ଭଙ୍କୁ ।
ପାଣିଦ୍ରବ୍ୟ ଶତେରଥ ମାଗେ ଦୃଢ଼ କରି
ମୁହିଁ ଦେଖିଲି ଭାରକେ ନାହିଁ ତହିଁ ହରି ।
ଭୀମସେନ ମୁଖୁ ଏହି ବଚନକୁ ଶୁଣି
ଆପଣେ ବିଜେ କରିଲେ ଦେବ ଚକ୍ରପାଣି ।
କଟିମେଖଳାରେ ଗନ୍ତା କାଖେ ବେତ ଧରି
ଶିଶୁପାଳର ଛାମୁରେ ବିଜେ ନରହରି ।
କିସ ବୋଲି ଶିଶୁପାଳ ମାଗୁଅଛି ଧନ
ଆମ୍ଭର ସୋଦର ହୋଇ ଏଥେଁ କଲୁ ମନ ।
ଶିଶୁପାଳ ବୋଲେ ମୋର ପାଣିଦ୍ରବ୍ୟେ କାର୍ଯ୍ୟ
ଯୁଧିଷ୍ଠିରଙ୍କୁ ମାଗିଲେ ନାହିଁ ମୋତେ ଲାଜ ।
ତହୁଁ ତାର ବାମକର ଧରି ଦାମୋଦର
ବିଜୟେ କରିଲେ ସ୍ୱାମୀ ଭଣ୍ଡାର ଦୁଆର ।
ବୋଇଲେ ଦୁର୍ଯ୍ୟୋଧନ ଏ ଶିଶୁପାଳ ଦୁଃଖୀ
ପାଣିଦ୍ରବ୍ୟ ଶତେଭାର ମାଗେ ଦିଅ ଲେଖି ।
ଶୁଣି ବିନୟ ଭାବରେ ବୋଲଇ କୌରବ
ପାଣିଦ୍ରବ୍ୟ ଭଣ୍ଡାରରେ ନାହିଁ ବାସୁଦେବ ।
ଗୋବିନ୍ଦ ବୋଇଲେ ଦେଖ ଦେଖ ତ ଭଣ୍ଡାର
ଅଞ୍ଜଳିଏ ଆଣ ଦେଖି ଆମ୍ଭର ଛାମୁର ।
ନାରାୟଣଙ୍କ ଆଜ୍ଞାରେ ମାନଚକ୍ରବର୍ତ୍ତୀ
ଭଣ୍ଡାରୁ ଅଞ୍ଜଳିଏ ସେ ଆଣେ ତତ୍‌କ୍ଷଣାନ୍ତି ।
ଛାମୁରେ ନେଇଣ ଦେଲା ଦେଖି ବାସୁଦେବ
ଶିଶୁପାଳ ଦେଖେ ସୁବ ଅଟେ ପାଣିଦ୍ରବ୍ୟ ।
ଦୁର୍ଯ୍ୟୋଧନ ଯେ ଦ୍ରବ୍ୟରେ ଯେ କରକୁ ଲଗାଇ
ପଥର ହୋଇଲେ ମଧ ପାଣିଦ୍ରବ୍ୟ ହୋଇ ।
ଏକ ଭଣ୍ଡାରରୁ ସେହି ଶତେଭାର ଦେଲା
ଅକ୍ଷୟ ଭଣ୍ଡାର ତାର କେବେ ନ ସରିଲା ।
ଶୁଣ ହେ ମନୁ ରାଜନ ଶ୍ରୀହରି ମାହାତ୍ମ୍ୟ
ଅଦୃଷ୍ଟି ଅଶ୍ରୁତି ପୁଣି ଅଟେ ଅଲୋକିତ ।
ଶିଶୁପାଳକୁ ବୋଇଲେ ତହୁଁ ଦେବରାଜା
ଦାରିଦ୍ର୍ୟ ଫିଟୁ ତୋହର ପୁରେ ଏବେ ଯା ଯା ।
ମନୁ ନୃପତି ବୋଇଲେ ଶୁଣ ଚଇତନ
ପନ୍ନଗନାରାୟଣ ଯେ ଅଟେ ଦୁର୍ଯ୍ୟୋଧନ ।
ଶଙ୍ଖନିଧି ପଦ୍ମନିଧି ଅଛି ତାର କରେ
କର ଲାଗନ୍ତେ ପଥର ପାଣିଦ୍ରବ୍ୟେ ଫେରେ ।
ଚାଲନ୍ତେ ମହୀରେ ସ୍ୱର୍ଣ୍ଣପଦ୍ମ ଯେ ଫୁଟଇ
ପ୍ରତ୍ୟକ୍ଷେ ମାନଗୋବିନ୍ଦ ଶ୍ରୀହରି ଅଟଇ ।
କାହାକୁ ଯେ ନମସ୍କାର କେବେ ନ କରଇ
ଅଭୟ ବାରିଧି ସେହୁ କହି ନ ସରଇ ।
ଯେବଣ ଦ୍ରବ୍ୟ ତାହାର ହସ୍ତରେ ଲାଗିଲେ
ତତକ୍ଷଣେ ପାଣିଦ୍ରବ୍ୟ ହୁଅଇ ସେ ଭଲେ ।
ତୋଷେ ମନୁ ବୋଲେ ଶୁଣି ଚଇତନ ବାଣୀ
କହସି କଥାର ଏବେ ସୁଧାରରସ ଜାଣି ।
ଚଇତନ ବୋଲେ ଅତି ଅସମ୍ଭବ କଥା
ସାବଧାନ ହୋଇ ଶୁଣ ଯଜ୍ଞର ବାରତା ।
ଜୟ ଜୟ ଶାରଳା ମା ଝଙ୍କଡ଼ବାସିନୀ
ଶାରଳା ଦାସ କହଇ ଘେନ ତା ଦଇନୀ ।

■ ■ ■

## ଜୟସିଂହ ଦୈତ୍ୟ ବଧ

ବୈବସ୍ୱତ ମନୁ ଶ୍ରୋତା ଅଗସ୍ତି ବକତା
ଆସ୍ଥାନତଳର ରାଜାମାନଙ୍କର ବାର୍ତ୍ତା ।
ଗୋସିଂହ ଦୈତ୍ୟକୁ ବଧ କଲେ ଅରଜୁନ
ଜୟସିଂହ ନାମରେ ଯେ ତାହାର ନନ୍ଦନ ।
ଜେନବଳୀ ନଗ୍ରରେ ଯେ ଅଟେ ଅଧିପତି
ମହିଷାସୁରର ପୁଣି ଅଟେ ପଣନାତି ।
ଜୟସିଂହ ମନ୍ତ୍ରୀ ନାମ କୃତାନ୍ତକ ଜାଣ
ରାଜସୂୟଯାଗର ବାର୍ତ୍ତା ପାଇଲା ସେ ପୁଣ ।
ଜୟସିଂହ ଆଗେ କର ଯୋଡ଼ିଣ ବୋଇଲା
ତୁମ୍ଭ ନିକଟକୁ ରାୟେ ବାର୍ତ୍ତା ନ ଆସିଲା ।
ରାଜା ହୋଇଣ ଯଦ୍ୟପି ହୁଏ ଅବରଣ
ତାହାଙ୍କ ରାଜ୍ୟରେ ଥିବା ଅଟେ ଅକାରଣ ।
ରାଜସୂୟଯାଗ ଦେବ ଯୁଧିଷ୍ଠିର କରେ
ଲକ୍ଷେ ରାଜାଙ୍କୁ ନିମନ୍ତ୍ରି ଅଛି ସମ୍ବର୍ଭରେ ।
କେବଣ ଦୋଷରୁ ତୋତେ ନ ବରିଲା ସେହି
ବିଚାର କର ଏ କେଡ଼େ କଥା ଯେ ଅଟଇ ।
ମନ୍ତ୍ରୀର ବଚନ ଶୁଣି ରାଜା ଜୟସିଂହ
କଦଳୀ ପତର ପ୍ରାୟେ କମ୍ପେ ତାର ଅଙ୍ଗ ।
ମନ୍ତ୍ରିକି ଆଜ୍ଞାଦେଲା ସେ ପ୍ରତାପୀ ଦନୁଜ
ବୋଇଲାକ ଅତିବେଗେ ଦଣ୍ଡ ମୋର ସାଜ ।
ସମଦଣ୍ଡେ ଯିବି ମୁହିଁ ରାଜସୂୟଯାଗକୁ
ଭାଙ୍ଗିବି ମହାସଭା ଯେ ପାରିବ କେ ରଖୁ ।
ନୃପତି ବଚନେ ମନ୍ତ୍ରୀ ଦଣ୍ଡକୁ ସାଜିଲା
ରଥ ଗଜ ଅଶ୍ୱ ଆଦି ସବୁ ସଜକଲା ।
ତିନିପଦ୍ମ ଅଶ୍ୱ ତ୍ରିଂଶପଦ୍ମ ପୁଣି ହସ୍ତୀ
ଷାଠିଏ ସହସ୍ର ରଥ ବହୁତ ପଦାତି ।
ପାଞ୍ଚଲକ୍ଷ ବାଜଇ ଯେ ଟମକ ନିଶାଣ
ଥାଟ ଚାଲନ୍ତେ ମେଦିନୀ ହୁଏ କମ୍ପମାନ ।
ଅନ୍ଧାର କାଳରେ ପୁଣି ଦିଶଇ ଆଲୁଅ
ବୃନ୍ଦାରକେ ଆକାଶେ ଥାଇ କଲେ ମହାଭୟ ।
ନାରଦ କହିଲେ ଯାଇ ଇନ୍ଦ୍ର ଦେବତାଙ୍କୁ
ନ ପୁଣ ଧାଡ଼ି ଦିଅଇ ତୋର ଭୁବନକୁ ।
ଧାମନ୍ତି ଯେ ନିଶାଚର ବଳ ଅତି ବେଗେ
ଦେବତାଏ ଭୟ ପାନ୍ତି ଥାଇଣ ସ୍ୱରଗେ ।
ନାରଦଙ୍କ ବଚନରେ ଦେବ ପୁରନ୍ଦର
ଅମର ଭୁବନ ସେହୁ କରିଣ ଅନ୍ତର ।
ହର ଉଦ୍ୟାନ ବନରେ ଯାଇଣ ଲୁଚିଲେ
ଜୟସିଂହ ଦଣ୍ଡ ଦେଖି ଦେବେ ପଳାଇଲେ ।
ନାରଦ ମହାଋଷି ଯେ ତେଜିଲେ ଆକାଶ
ରାସୁଜି ଯାଗ ସଭାରେ ହୋଇଲେ ପ୍ରବେଶ ।
ହସ୍ତେ ଅଛି ମହାମ୍ଭାର ବୀଣା ସପ୍ତସ୍ୱର
ଦେଖିକରି ପୂଜା କଲେ ଦେବ ଚକ୍ରଧର ।
ଆସ୍ଥାନ ତେଜିଣ ଧର୍ମ ଉଠିଲେ ସତ୍ୱରେ
ଶତ ପ୍ରଣିପାତ ହେଲେ ନାରଦ ପୟରେ ।
ଆସ୍ଥାନ ତେଜିଣ ବେଗେ ସକଳ ରାଜନ
ମୁନିଙ୍କର ପାଦପଦ୍ମ କରିଲେ ବନ୍ଦନ ।
ନାରଦ ବୋଇଲେ ତହୁଁ ଶୁଣ ଧର୍ମସୁତ
ତୋର ସଭାକୁ ବାହିଲା ଜୟସିଂହ ଦୈତ୍ୟ ।
ଭାଙ୍ଗିବ ମହାଯଜ୍ଞ ସେ କରିବ ବିଧ୍ୱଂସ
ଅସଂଖ୍ୟ ବଳ ତାହାର ରଥ ଗଜ ଅଶ୍ୱ ।
ତୁ ଯହୁଁ ଯଜ୍ଞେ ବରିଲୁ ଲକ୍ଷେ ରାଜାଗଣ
ଜୟସିଂହ ଦଇତ୍ୟକୁ ନ କଲୁ ବରଣ ।
ଏ ସମ୍ବାଦ କହିଦେଲା ଯାଇ ତାର ମନ୍ତ୍ରୀ
ତେଣୁକରି ଦଣ୍ଡ ସାଜି ଅସୁର ଦୁର୍ମତି ।
ନାରଦ ମୁଖରୁ ଶୁଣି ଏସନକ ବାଣୀ
ଭୟେ ସମସ୍ତଙ୍କ ଚିତ୍ତ ଛନ୍ନ ଛନ୍ନ ପୁଣି ।
ବ୍ୟାସଦେବ ବୋଇଲେ ହେ ଶୁଣ ବାସୁଦେବ
ଜୟସିଂହ ବାହିଲା ଯେ କେମନ୍ତ କରିବ ।
ଅନେକ ବ୍ୟାକୁଳ ହେଲେ ସର୍ବ ରାଜାମାନେ
ସମସ୍ୟା ନ ଦିଅନ୍ତି ସେ ଭୟକରି ମନେ ।
ଏମନ୍ତ ବଚନ ଶୁଣି ଦେବ ଦଇତ୍ୟାରି
ସନ୍ନିଧିକୁ ଅତିବେଗେ ଅର୍ଜୁନ ହକାରି ।
ବୋଇଲେ ଜୟସିଂହ ଯେ ବାହିଲା ଏଥର
କିପରି ଏ ସଭା ରକ୍ଷା ହେବ ତା ବିଚାର ।
ଅର୍ଜୁନ ବୋଇଲେ ସ୍ୱାମୀ କିପାଁ କରୁ ଚିନ୍ତା
ଏ ମହାଯାଗକୁ ତୁହି ହରି ସେ ରଖନ୍ତା ।
ଥାଆନ୍ତୁ ରାଜାମାନେ ଯେ ନିଶ୍ଚିନ୍ତରେ ରହି
ମୋହଠାରେ ସୁପ୍ରସନ୍ନ ହୋଇଥା ଗୋସାଇଁ ।
ଗୋବିନ୍ଦ ବୋଇଲେ କରୁ ପ୍ରତିଜ୍ଞା ତୁହି ତ
କି ପ୍ରକାରେ ଦୂର ହେବ ଜୟସିଂହ ଦୈତ୍ୟ ।
ସଭାକୁ ଆସିବ ଯେବେ ଦୈତ୍ୟ ଗଳଗାଜି
ଉପଦ୍ରବେ ରାଜାମାନେ ପଳାଇବେ ଭାଜି ।
ପାର୍ଥ ବୋଇଲେ ସେ ଅଟେ ଗୋସିଂହର କିସ
ଗୋବିନ୍ଦ ବୋଇଲେ ଅଟେ ତାହାର ଯେ ଶିଷ୍ୟ ।
ଅର୍ଜୁନ ବୋଇଲେ କି ସେ ଗୋସିଂହ ହୁଁ ତାପି
ତୋହର କଥା ହରି କି ନ ଜାଣୁ ଅଦ୍ୟାପି ।
ନାରାୟଣ ବୋଇଲେ ଯେ କହୁ ବଡ଼କଥା
ରାଜାଏ ଜାଣନ୍ତି ନାହିଁ ତୋହର ବାର୍ତ୍ତା ।

ଗୋବିନ୍ଦ ବୋଇଲେ ଚାଲ ଯିବା ଆମ୍ଭେ ବେନି
ସଙ୍ଗେ ଯିବେ ବାୟୁସୁତ ହନୁମନ୍ତ ଘେନି ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ କୁହ କି ଏମନ୍ତ
କିପାଇଁ ସଙ୍ଗରେ ନେବା ବୀର ହନୁମନ୍ତ ।
ଭାରତେ ଭାରୋଇ ମଲ୍ଲ ଅଟଇ ଯେ ମୁହିଁ
ଯାଗ ଚର୍ଚ୍ଚା କର ତୁମ୍ଭେ ଦେଖେ ମୁହିଁ ଯାଇ ।
ନାରାୟଣେ ତିଆରିଣ ପାର୍ଥ ହୃନ୍ତି ସଜ
ଗରୁଡ଼ ହକାରି ଆଜ୍ଞା ଦେଲେ ଦେବରାଜ ।
ବାବୁ ଜୟସିଂହ ଯୁଦ୍ଧେ ଯାଉଛି କିରୀଟି
ଅର୍ଜ୍ଜୁନକୁ ବୈନତେୟ ବସା ତୋର ପିଠି ।
ନାରାୟଣ ବଚନରେ ହୋଇ ତତପର
ଅର୍ଜ୍ଜୁନକୁ ଖଗେଶ୍ୱର ବସାଏ ପିଠିର ।
ଅକ୍ଷୟ ତୂଣ କରରେ ଗାଣ୍ଡିବ ଯେ ଧନୁ
ଅତିବେଗେ ଅନ୍ତରୀକ୍ଷେ ବିଜେ ଇନ୍ଦ୍ରସୂନୁ ।
ଦୈତ୍ୟସୈନ୍ୟ ନନ୍ଦିକେଶ ନଗରକୁ ଘୋଟି
କାଶୀନଦୀ ତୀରେ ପାର୍ଥ ଯାଇ ତାଙ୍କୁ ଭେଟି ।
ନାରାୟଣ ବିଜେ ଯେହ୍ନେ ଖଗେଶ୍ୱର ପିଠି
ସେହିରୂପେ ଦିଶଇ ସେ ପାଣ୍ଡବ କିରୀଟି ।
ଅସୁର ଥାଟ ଦେଖିଣ ଗରୁଡ଼ ରାବିଲା
ଭୟେ ନିଶାଚରବଳ ଚମକି ପଡ଼ିଲା ।
ଲୋକଙ୍କର ମୁଖରାବ ଖଗେଶ୍ୱର ରଡ଼ି
ଶୁଣି ଦୈତ୍ୟଙ୍କ ହସ୍ତରୁ ଶସ୍ତ୍ର ପଡ଼େ ଝଡ଼ି ।
ଥାଟର ଭିତରେ ଉଲ୍କାପାତ ପ୍ରାୟ ଦେଖି
ଆସିଲେ କି ନାରାୟଣ ବୈକୁଣ୍ଠ ଉପେକ୍ଷି ।
ଦୈତ୍ୟବଳ ନିସୂଦନକାରୀ ଯେଉଁ ଦେବ
ତାହାଙ୍କ ସମ୍ମୁଖେ ପଡ଼ି ଦୈତ୍ୟ କେ ବର୍ତ୍ତିବ ।
ଜୟସିଂହ ପଚାରଇ କୃତାନ୍ତ ମନ୍ତ୍ରୀକି
ବାହନ ଚଢ଼ିଣ କେହୁ ଅଇଲା ଏଥିକି ।
ବୋଲଇ ଯେ ମନ୍ତ୍ରୀବର ଶୁଣ ଜୟସିଂହ
କି ଅବା ସେ ବାସୁଦେବ କି ଅବା ପନ୍ନଗ ।
ଭାରତେ ଭାରୋଇ ମଲ୍ଲ ଅସଂଖ୍ୟ ମହିମା
ରୂପେ ଅଜୟ ଅଟନ୍ତି କୁଳକୁ ବଢ଼ିମା ।
ରାଜାମାନଙ୍କୁ ପ୍ରବୋଧ କରି ବାସୁଦେବ
ତୋହର ନିକଟେ ବିଜେ କଲେକ ସେ ଦେବ ।
ଏକକୌଣୀ ଦୈତ୍ୟସୈନ୍ୟ ମାର୍କଣ୍ଡେ ବୋଇଲେ
ଏକା ଜଣେ ତହିଁ ଫାଲଗୁନି ବିଜେ କଲେ ।
ତା ସଙ୍ଗେ ସମର କେହ୍ନେ କରିବ ଏ ଜଣେ
ଗୋସିଂହ ପୁତ୍ରକୁ ସରି ହେବ କି ଅର୍ଜ୍ଜୁନେ ।
ବ୍ୟାସଦେବ ବୋଇଲେକ ଆହେ ମାରକଣ୍ଡ
ଏକମନ ହୋଇକରି ଶୁଣ ଗ୍ରନ୍ଥ ଖଣ୍ଡ ।

ତାହାର ପିତା ଯେ ଅଟେ ଗୋସିଂହ ଦଇତ
ଦ୍ୱାରକା ଭୁବନେ ଆସି ହେଲା ଉପଗତ ।
ସାତବଂଶ ଯାଦବଙ୍କୁ ଘେନି ରାମହରି
ରଣ କଲେ ନ ଘୁଞ୍ଚିଲା ଅମର ଅଇରି ।
ବାହୁବଳେ ଜୟ ସେହୁ କରିଲା ସମରେ
ରାମକୃଷ୍ଣ ପଶିଲେ ଯେ ଅଗ୍ନିର ଭିତରେ ।
ବାସୁଦେବ ପ୍ରଦ୍ୟୁମ୍ନ ଏ ଦୁହିଙ୍କି ଯେ ଧରି
ଯଜ୍ଞକୁଣ୍ଡେ ଫିଙ୍ଗିଦେଇ ବାହାନାଦ କରି ।
ସାତବଂଶ ଯାଦବଙ୍କୁ ସମୂଳେ ନାଶିଲା
ଭଣ୍ଡାର ଲୁଟ କରିଣ ସତ୍ୟଭାମା ନେଲା ।
ବୈଶାଖ ମାସ ଯେ କୃଷ୍ଣ ନବମୀର ଦିନ
କିରାତରୂପେ ଅର୍ଜ୍ଜୁନ ବୁଲୁଥିଲେ ବନ ।
ଭବାନୀ ନଦୀ ତୀରରେ କାମେଶ୍ୱର ଗିରି
ତହିଁପରେ ବସିଥିଲେ ପାର୍ଥ ଧନୁର୍ଦ୍ଧାରୀ ।
ଗୋସିଂହ ରଥେ ଥାଇଣ ଡ଼ାକେ ସତ୍ୟଭାମା
ଆସ ପାର୍ଥ ରକ୍ଷାକର ଦେଖା ତୋ ମହିମା ।
ଅଣ୍ଡିର କୋକିଳ ଜିଣି ଶୁଭିଲାକ ବାଣୀ
ପର୍ବତ ଉପରେ ଥାଇ ଶୁଣିଲେ ଫାଲଗୁନି ।
ପୁଣି ଆଉ ବେଳେ ଦେବୀ ଡାକଦେଲେ ଧାତି
ଅସୁର ବଳକୁ ପାର୍ଥ ଦେଖିଲେ ସେ କତି ।
ପୁଣି ଡାକଦେଲେ ସତ୍ୟଭାମା ଅଟେ ମୁହିଁ
ବଳାତ୍କାରେ ମୋତେ ହରିନିଏ ଦୈତ୍ୟ ଏହି ।
ସତ୍ୟଭାମାର ବଚନ ଶୁଣିଲେ ସ୍ୱରୂପ
ତକ୍ଷଣେ ଅର୍ଜ୍ଜୁନ ବୀର କଲେ ମହାକୋପ ।
ଦଶଯୂଣ ମାଡ଼ିଯାନ୍ତି ଅସୁର ସଇନି
ଏକା ଜଣକରେ ଉଗାଳିଲେ ଫାଲଗୁନି ।
ଅସୁର ବଳଙ୍କୁ ଯାଇଁ ଓଗାଳିଲା ପାର୍ଥ
ରାତ୍ର ଦିବା ଯୁଦ୍ଧ କରି ମାଇଲା ସମସ୍ତ ।
ଗୋସିଂହ ବଧ କରିଣ ନେଲା ଶକ୍ରାବତୀ
ଦ୍ୱାରକାରେ ଉତ୍ସବ ଯେ କଲେ ଶିରୀପତି ।
ବ୍ୟାସଦେବ ବୋଇଲେ ସେ ରାଜସୁ ସଭାରେ
ଅର୍ଜ୍ଜୁନର ଶରଘାତେ ମଲେ ଦୈତ୍ୟବୀରେ ।
ବ୍ୟାସଙ୍କର ମୁଖୁ ଯହୁଁ ଶୁଣିଲେ ଏସନ
ମନୁ ଭ୍ରାନ୍ତି ଛାଡ଼ିଲେ ସେ ସର୍ବ ରାଜାଗଣ ।
ଅସୁର ସଇନିମାନ ଦେଖି ଫାଲଗୁନି
କ୍ରୋଧରେ ବିନ୍ଧିଲେ ବୀର ଦିବ୍ୟଶର ଘେନି ।
ଏକ ନାରାଚରେ ଦୈତ୍ୟ ସଇନିଙ୍କି ଘୋଟି
ଆଟଯାକେ ତାହାର ଯେ ହେଲା ଶରବୃଷ୍ଟି ।
ସମସ୍ତଙ୍କର ଉପରେ ପଡ଼େ ଯାଇ ବାଣ
ଆକାଶୁଁ ବୃଷ୍ଟି ଯେସନେ କରେ ମଘବାନ ।

ଦେଖିକରି ଭାଜିଗଲେ ଦୈତ୍ୟବଳମାନେ
ଶସ୍ତ୍ର ବୁଲାଇ ଧାଇଁଲେ ପାର୍ଥ ଅବିଚ୍ଛନ୍ନେ ।
ଏକା ଜଣକେ ନାରଚ ବିନ୍ଧି ଶତ ଶତ
ବ୍ୟାକୁଳ କରିଣ ଦେଲେ ରାକ୍ଷସଙ୍କ ଚିତ୍ତ ।
ଦଇତ୍ୟେ ଯେତେକ ଶର ପ୍ରହାର କରନ୍ତି
ଦେଖିକରି ଅର୍ଜ୍ଜୁନ ତା ଦୂରୁ ନିବାରନ୍ତି ।
ଅପୂର୍ବ ସମର ତହିଁ କରନ୍ତି ଅର୍ଜ୍ଜୁନ
ଗରୁଡ଼ ପକ୍ଷରେ ବାଜି ଶର ହୋଏ ଚୂର୍ଣ୍ଣ ।
ଜୟସିଂହ ପୂରାଇଣ ଲକ୍ଷେ ତୀକ୍ଷ୍ଣଶର
ଅର୍ଜ୍ଜୁନ ଆଗରେ ମିଳେ କରି ରେରେକାର ।
ଦେଖିଣ ସାନନ୍ଦ ହେଲେ ସେ ଗାଣ୍ଡୀବଧାରୀ
ଯୋଦ୍ଧାକେ ବିନ୍ଧିଲେ ଶର କୋଟି କୋଟି ଚାରି
ଏକାଥରେ ଶରପେଷି ଅର୍ବୁଦ ଯୋଦ୍ଧାଙ୍କୁ
କାହା ଭୁଜ କାହା ଜାନୁ ଫାଟିଯାଏ ବୁକୁ ।
ଏକ ଲୋମକରେ ପଞ୍ଚ ପଞ୍ଚ ଶର ଫୁଟି
ବାତେ ଚୂତ ଫଳପ୍ରାୟେ ପଡ଼ିଲେ ସେ ଲୋଟି ।
ହାବୋଡ଼ା ଶରକେ ପୁଣି ମାଇଲେ ଫାଲ୍‌ଗୁନି
ରୁଧିର ବହି କର୍ଦ୍ଦମ ହୋଇଲା ମେଦିନୀ ।
ଅସଂଖ୍ୟ ଶର ମାରି ଯେ ବୀର ଧନଞ୍ଜୟ
ଲୋଟିଲେ ରାକ୍ଷସେ ବାତେ ରମ୍ଭାବନ ପ୍ରାୟ ।
କାଳାନଳ ଜିଣିକରି ଦିଶେ ଫାଲଗୁନି
ଏକାଜଣେ ଜୟ କଲା ଅସୁର ସଇନି ।
ସଇନି ବିଘାତ ଦେଖିକରି ଜୟସିଂହ
ସମରେ ବୀରବର ସେ ହୋଇଲା ଅଥୟ ।
ଆରେ ଆରେ ମାନବରେ ପିତା ଶତ୍ରୁ ମୋର
କେଉଁଠାକୁ ଯିବୁ ଆଜି ତୁହିରେ ପାମର ।
ଗୋସିଂହ ନାଶିଲୁ ତୁହି ଏବେ ମୁଁ ଜାଣିଲି
ଯତ୍ନେ ଯାକୁ ଲୋଡୁଥିଲି ତାହାକୁ ପାଇଲି ।
ଅସୁର ବଚନ ଶୁଣି କହିଲେକ ପାର୍ଥ
ମୁହିଁ ସେ ନାଶିଲି ଆରେ ଗୋସିଂହ ଦଇତ ।
ଯୁଗେ ଯୁଗେ ହେବ ତୁମ୍ଭେ ମୋର ହସ୍ତେ ବଧ
ଶକ୍ତି ଯେବେ ଅଛି ତେବେ କର ଆରେ ଯୁଦ୍ଧ ।
ନ ପୁଣ ନିଜ ସହିତ ନାଶ ବନ୍ଧୁଗଣ
ଅର୍ଜ୍ଜୁନ ବଚନ ଶୁଣି କୋପ ସେ ହୋଇଣ ।
ଧଇଲା ଲୁହାର ଧନୁ କରେ ଅତି ରାଗେ
ଗରଜିଣ ଲକ୍ଷେ ଲକ୍ଷେ ଶର ବିନ୍ଧେ ବେଗେ ।
ହୁତାଶନ ପରାୟେ ସେ ଦିଶେ ତେଜୀୟାନ
ସାକ୍ଷାତରେ ଦେଖାଯାଏ କି ଅବା ଶମନ ।
ବୁଲାଇ ମାଇଲା ତାହା ଅର୍ଜ୍ଜୁନ ଉପରେ
କାଟିଦେଲେ ପାର୍ଥ ତାକୁ କିଞ୍ଚିତ ମାତ୍ରରେ ।

ପୁଣି ଜୟସିଂହ ଧରି ଶର ଲକ୍ଷ୍ୟକରି
ପେଷନ୍ତେ ନାଶିଲା ତାହା ସେ ଗାଣ୍ଡୀବଧାରୀ ।
କୋପେ ଦୂରନ୍ତକ ଶର ପେଷିଲା ଦଇତ
ଖଗେଶ୍ୱର ଗିଳିଦେଲା ତାହାକୁ ତୁରିତ ।
ଦେଖିକରି ଆଶ୍ଚର୍ଯ୍ୟ ଯେ ହୋଇଲା ଅସୁର
ପକ୍ଷୀ ହୋଇ ମହିମା ତୋ ଅଟଇ ଅପାର ।
ଦେବେ ସହି ନ ପାରନ୍ତି ଯେଉଁ ଶର ତେଜ
ଗର୍ଭେ ସଂହରିଲୁ କେହ୍ନେ ଏ ବଡ଼ ଆଶ୍ଚର୍ଯ୍ୟ ।
ଲୁହାର ଚକ୍ରେକ ତହୁଁ ଘେନିଣ ଦଇତ
ଖଗେଶ୍ୱର ପରେ ପିଟେ ଯେହ୍ନେ ବଜ୍ରାଘାତ ।
ଅତୁଟ ମହାରଥୀ ସେ ଜାଣି ବଜ୍ରସେହ୍ନା
ଗରୁଡ଼ ପକ୍ଷ ଘାତରେ ହୋଇଗଲା ଚୂନା ।
ପୁଣ ପୁଣ ଅରଜୁନ ନାରାଚକୁ ବିନ୍ଧି
ଜୟସିଂହ ଧନୁ ସବୁ ପକାଇଲେ ଛେଦି ।
ଧନୁଭଗ୍ନ ଦେଖିକରି କ୍ରୋଧରେ ଦଇତ
ଲୁହାର ବେନି ଗଦା ସେ ଧରି ବେନିହାତ ।
କୋପେଣ ଗର୍ଜ୍ଜଇ ଦୈତ୍ୟ କାଳସର୍ପ ପ୍ରାୟ
ମେରୁଗିରି ସମାନରେ ଦିଶେ ତାର କାୟ ।
ଲୁହାର ବେନିଗଦା ସେ କ୍ରୋଧରେ ଫିଙ୍ଗଇ
ତାହା ଦେଖି ଖଗବର ପକ୍ଷ ଉହାଡ଼ଇ ।
ଗରୁଡ଼ ପରେ ପଡ଼ିଲା ଗଦା ଦୁଇ ଯାଇ
ଶତଖଣ୍ଡ ହୋଇଲା ସେ ଅର୍ଜ୍ଜୁନ ଦେଖଇ ।
ଖଗବର ଦେଖି ଯେହ୍ନେ ଭୁଜଙ୍ଗର ଭ୍ରାନ୍ତି
ଗଦାବର ଛାଡ଼ି ଦୈତ୍ୟବଳା ଶାନ୍ତମୂର୍ତ୍ତି ।
ଶୂନ୍ୟହସ୍ତ ହୋଇକରି ଗୋସିଂହ ବଳା
ପୁନରପି ଦେଖିଣ ସେ କରେ ଖଡ୍‌ଗଫଳା ।
କୁରାଳ ଚକ୍ର ପରାୟେ ବୁଲାଏ ନୟନ
କି ଅବା ମର୍ତ୍ତ୍ୟଭୁବନେ ବିଜୟ ଶମନ ।
କୋପେଣ କୋପାନଳ ସେ ସେତୁପତ୍ନୀ ସୁତ
ପାର୍ଥ ଉପରେ ଖଡ୍‌ଗକୁ ପିଟିଲା ତୁରିତ ।
ବିନତା ନନ୍ଦନ ତାହା ନୟନରେ ଦେଖି
ଅର୍ଜ୍ଜୁନକୁ ଉହାଡ଼ିଲା ମେଲାଇ ସେ ପକ୍ଷୀ ।
ପକ୍ଷର ଉପରେ ଆସି ପଡ଼େ ଅସିବର
କ୍ଷଣମାତ୍ରେ ଚାହୁଁ ଚାହୁଁ ହେଲା ଶତଚୂର ।
ନିଶସ୍ତ୍ର ହୋଇ ଦଇତ ଯଳାଏ ଲେଉଟି
ବଜ୍ରାବଳା ଗଦା ଘେନି ପିଟିଲା କିରୀଟି ।
ଦେଖିକରି ଦଇତ ଯେ ପାତେ ବକ୍ଷସ୍ଥଳ
ଅର୍ଜ୍ଜୁନ ହସ୍ତରୁ ଶସ୍ତ୍ର ଘେନିଲା ତତ୍କାଳ ।
ସେହି ଶର ଘେନି ଲେଉଟାଇ ପୁଣି ପିଟି
ଗରୁଡ଼ ପିଠିରେ ବାଜି ଶସ୍ତ୍ର ଗଲା ଫୁଟି ।

ପୁଣି ଅରଜୁନ ବିନ୍ଧେ ଶର ତୀକ୍ଷ୍ଣମୁନା
ଦୈତ୍ୟହୃଦେ ପଡ଼ି ଫୁଟିଗଲା ବଜ୍ରସେହ୍ନା ।
ପୁନରପି ବିନ୍ଧିଲେ ସେ ହାବୋଡ଼ାକ ଶରେ
ଗିରିବର ଉପୁଡ଼ି କି ପଡ଼ିଲା ଉପରେ ।
ନିର୍ଘାତ ଶରେ ଦଇତ ହେଲା ଭୂମିଶାୟୀ
ନାସା ଭିତରୁ ରୁଧିର ଘନ ଘନ ବହି ।
ଘାଏଣ ଅଚେତନ ସେ ହୋଇଲା ଦୁର୍ଦ୍ଧାନ୍ତ
ଚେତିଉଠି ରଣେ ବାଣ ପେଷିଲା ତୁରିତ ।
ତାହା ଛେଦି ପାର୍ଥ ପେଷେ ଅମୋଘ ଶକତି
ପ୍ରାଣତ୍ୟାଗ ପ୍ରାୟ ହେଲା ଅସୁର ନୃପତି ।
ପୁଣି ପାର୍ଥ ମହାକୋପେ କରେ ଚକ୍ର ଘେନି
ପେଷନ୍ତେ ଦଇତ ଅଙ୍ଗେ ଚୂର ହେଲା ପୁଣି ।
ବହୁତ ଶର ଘେନିଣ ମାରେ ଧାତି ଧାତି
ଭୟେ ପାର୍ଥ ନ ଯାଏ ଯେ ଦଇତ୍ୟର କତି ।
ଜୟସିଂହ ପରେ ପଡ଼ି ଅନେକ ଯେ ଶର
ଚାହୁଁ ଚାହୁଁ ଚୂର୍ଣ୍ଣ ସେହୁ ହେଲେ ଧାତିକାର ।
ଜ୍ୱଳନ୍ତ ଅନଳ ପ୍ରାୟ କ୍ରୋଧରେ ଦେବାରି
ଧାତିକାରେ ଉପାଡ଼ଇଲା ଏକୋଗିଟି ଗିରି ।
ବିନତାନନ୍ଦନ ଖଗ ଉହାଡେ ତା ଦେଖି
ଆଗଭର ହୋଇକରି ରହିଲା ଯେ ପକ୍ଷୀ ।
ଗିରି ବୁଲାଇଣ ପିଟେ ଦଇତ ପ୍ରଚଣ୍ଡା
ବୈନତେୟ ପୃଷ୍ଠେ ପଡ଼ି ହେଲ ମସିଗୁଣ୍ଡା ।
ଖଗେଶ୍ୱର ପିଟଇ ଯେ କୋପେ ପକ୍ଷ ନେଇ
ନିଶ୍ଚେଷ୍ଟ ହୋଇଣ ପଡ଼ିଗଲା ଦୈତ୍ୟସାଇଁ ।
ପଡ଼ନ୍ତେ ଦଇତ୍ୟ ପରେ ମାରେ ନେଇ ଥଣ୍ଟ
ବେନିଫାଳ ହୋଇଗଲା ତକ୍ଷଣେ ପାପିଷ୍ଠ ।
ପକ୍ଷୀରାଜ ବୋଲେ ଦେବ ଦୈତ୍ୟ ହେଲା ହତ
ଜେନାବଳୀ ପାଟଣାକୁ ଚାଲ ଯେ ତୁରିତ ।
ଅନେକ ଧନ ଭଣ୍ଡାର ଅଛଇ ଯେ ତହିଁ
ଅପୂର୍ବ ଦ୍ରବ୍ୟ ଆଣିବା ଆମ୍ଭେ ତହୁଁ ଯାଇ ।
ସାନନ୍ଦ ହୋଇଣ ତହୁଁ କଶ୍ୟପର ବଳା
କଉତୁକେ ଉଡ଼ଇ ସେ ପକ୍ଷୀ ଅନର୍ଗଳା ।
ଜେନାବଳି ନଗ୍ରପାଶେ ହୋଇଲେ ପ୍ରବେଶ
କିଞ୍ଚିତରେ ପକ୍ଷ ଝାଡ଼େ କଶ୍ୟପର ଶିଷ୍ୟ ।
ଯେତେ ଦେଉଳ ମଣ୍ଡପ ଥିଲା ସେ ଜଗତୀ
ଭାଜିଣ ବିନିଷ୍ଟ ସବୁ ହେଲା ତତ୍‌କ୍ଷଣାନ୍ତି ।
ଅନେକ ଥିଲେ ଯେ ତହିଁ ଅସୁର ଅସୁରୀ ।
ଏଣେ ତେଣେ ପଡ଼ିଲେ ଯେ ଯାଇ ଉଡ଼ିକରି ।
ଯେତେ ରହିଥିଲେ ତହିଁ ଅସୁରଙ୍କ ବଂଶ
ଗରୁଡ଼ ବିଘାତେ ସର୍ବେ ହେଲେ ପ୍ରାଣେ ନାଶ ।

ଅନେକ ରତ୍ନ ଭଣ୍ଡାର ଘେନି ସବ୍ୟସାଚୀ
ଗରୁଡ଼ ପୃଷ୍ଠେ ଥୋଇଲେ ନାନା ଦ୍ରବ୍ୟ ସଞ୍ଚି ।
ବାହୁଡ଼ଇ ଖଗେଶ୍ୱର ଅର୍ଜ୍ଜୁନଙ୍କୁ ଘେନି
ସଭାରେ କହିଲେ ଯାଇ ନାରଦ ଯେ ମୁନି ।
ଆହେ ରାଜାମାନେ ତୁମ୍ଭେ ନ ହୁଅ ବିକଳ
ଅର୍ଜ୍ଜୁନ ଧ୍ୱଂସିଲା ଜୟସିଂହ ଦୈତ୍ୟବଳ ।
ଜେନାବଳୀ ନଗ୍ର ସବୁ କରି ଛିନ୍ନଛତ୍ର
ବହୁତ ଧନ ଭଣ୍ଡାର ଘେନି ତହୁଁ ପାର୍ଥ ।
ରଣଜୟ କରିଣ ସେ ବାହୁଡ଼ନ୍ତି ହର୍ଷେ
ଏହା ସତ୍ୟ ଅଟେ ତୁମ୍ଭେ ନ ଭାଳ ମାନସେ ।
ନାରଦ ବଚନେ ତୋଷ ସକଳ ନୃପତି
ଛାଡ଼ିଲେ ମନରୁ ଚିନ୍ତା ଲଭିଲେକ ଶାନ୍ତି ।
ଅନେକ ଆନନ୍ଦ ହେଲେ ଯୁଧିଷ୍ଠିର ରାୟେ
ଏସନକ ସମୟରେ ବୀର ଧନଞ୍ଜୟେ ।
ତାରକା ବିନାଶେ ଯେହ୍ନେ କାର୍ତ୍ତିକେୟ ମୂର୍ତ୍ତି ।
ବିକାଶଇ ତେହ୍ନେ ବୀର ଅର୍ଜ୍ଜୁନର ଜ୍ୟୋତି ।
ସକଳ ନୃପତିଗଣ ହୋଇଣ ଆନନ୍ଦ
ଧନ୍ୟ ଧନ୍ୟ ପାର୍ଥ କହି କଲେ ସାଧୁବାଦ ।
ନ ଥିବେ ମହୀରେ ଏହି ରୂପେ କ୍ଷତ୍ରୀ ଜଣେ ।
ଯାଙ୍କ ବିନା ଏହି କାର୍ଯ୍ୟ ନ ହୁଅଇ ଆନେ ।
ଏକମୁଖେ କଲେ ତହୁଁ ପାର୍ଥଙ୍କୁ ପ୍ରଶଂସା
ସାଧୁପାଣ୍ଡବ ତୁମ୍ଭର ପୂରିବ ମନୀଷା ।
ଆମ୍ଭର କ୍ଷତ୍ରିୟପଣ ଅଟେ ଯେବେ ସତ୍ୟ
ପଣ୍ଡୁ ନରେନ୍ଦ୍ରଙ୍କୁ ହେଉ ସ୍ୱର୍ଗ ପରାପତ ।
ଏସନ ବାଣୀ ସକଳେ ଉଚ୍ଚସ୍ୱରେ ଭାଷି
ଶୁଭେ ଖଗେଶ୍ୱର ହୁଏ ପରବେଶ ଆସି ।
ବହୁତ କାଳର ଧନ ବହୁତ ଜିନିଷ
ବହନ୍ତେଣ ନ ସରଇ ରଜନୀ ଦିବସ ।
ବାଉନ ଭଣ୍ଡାର ସବୁ ପାଣି ଦ୍ରବ୍ୟମୟେ
ଆକାଶେ ଅମରେ ଥାଇ କଲେ ଜୟେ ଜୟେ ।
ଦୈତ୍ୟଙ୍କୁ ଦେବତାଙ୍କର ବହୁ ଭୟ ଥିଲା
ଜୟସିଂହ ନାଶି ପାର୍ଥ ତାହା ଦୂର କଲା ।
ଅନେକ ସନ୍ତୁଷ୍ଟ ହେଲେ ସର୍ବ ଦେବଗଣ
ସଭାସ୍ଥଳେ କଲେ ପୁଣି ପୁଷ୍ପ ବରଷଣ ।
ଶୁଣ ହେ ମହାତ୍ମା ଗଣ ରାଜସୂୟ କଥା
ବିପୁଳ ଧନ ମିଳିବ ଶୁଣିଲେ ସର୍ବଥା ।
ବହୁତ ମହିମା ତାର ନ ସରେ କହନ୍ତେ
ଯମଦଣ୍ଡ ଦୂରହୁଏ ବିଷ୍ଣୁ ସୁମରନ୍ତେ ।
ସେ ବିଷ୍ଣୁ ଚରଣ ଆଉ ସରସ୍ୱତୀ ପାଦ
ଭଜଇ ସାରଳା ଦାସ ମନ ଷଟପଦ ।

■ ■ ■

## ଅନନ୍ତ ନାଗଙ୍କୁ ନିମନ୍ତ୍ରଣ କରିବା ପାଇଁ ଅର୍ଜୁନଙ୍କର ପାତାଳେ ଗମନ ଓ ଶରମୁନେ ପୃଥିବୀ ଧାରଣ ଏବଂ ନାଗବାଳା ବିବାହ ପ୍ରସଙ୍ଗ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ତୁମ୍ଭ ତୁଲ୍ୟ ଶ୍ରୋତା ମୁହିଁ ନ ଦେଖଇ କ୍ଷିତି ।
ଏ ଭାରତ ଚରିତକୁ ଶୁଣି ଶୁଣାଇଲେ
ନିଶ୍ଚୟ ମୁକତ ହେବ ମିଥ୍ୟା ନାହିଁ ତିଳେ ।
ଚଇତନ ପୁଚ୍ଛାକଲେ ସେ ମହାମୁନିଙ୍କୁ
ସୁଧା ରସମୟ କଥା କହ ହେ ଆମ୍ଭଙ୍କୁ ।
ଅମୃତ ତୁଲ୍ୟ ପଦ ଯେ ମୋତେ କହି କରି
ଏହି ଭବସାଗରରୁ ରଖ ତୁ ଉଦ୍ଧାରି ।
ବୋଇଲା ଯେ ମନ ତୁମ୍ଭେ ଶୁଣ ଚଇତନ
ହୃଦଗତେ ଲୟ ରଖିଥିବୁ ତୁହି ପୁଣ ।
ଯୁଧିଷ୍ଠିର ଦେବଙ୍କର ମହିମାକୁ ଶୁଣ
ଅଷ୍ଟାଦଶ ବଂଶର ଯେ ଛନ୍ତି ରାଜାଗଣ ।
ବାଦ୍ୟ ନୃତ୍ୟ ଗୀତେ ତହିଁ ପାହିଗଲା ରାତି
ଆକାଶପଥେ ଉଦୟ ହେଲେ ଛାୟାପତି ।
ଅର୍ଜୁନ ଶ୍ରୀହରି ପାଦେ ହୋଇ ପରଣାମୀ
ବୋଲେ ଜୟସିଂହ ନାଶକଲି ଦେବସ୍ୱାମୀ ।
ସଂକ୍ଷେପି କହିଲେ ଜୟସିଂହର ବାରତା
ପ୍ରଭୁ ତୁମ୍ଭ ପ୍ରସାଦରେ ଜଣିଲି ଦଇତା ।
ଅର୍ଜୁନ କହନ୍ତେ ଏହା ପ୍ରସନ୍ନ ମୁରାରି
ଯୁଧିଷ୍ଠିପାଦେ ଦର୍ଶନ କଲେ ଯାଇ କରି ।
ଦେଖିଣ ପରମ ତୋଷ ହେଲେ ଧର୍ମବାଳ
ପ୍ରସନ୍ନ ମନରେ ତାର ବାଞ୍ଛିଲେ ମଙ୍ଗଳ ।
ଏସନ ସମୟେ ଆସି ଋଷ୍ୟଶୃଙ୍ଗ ଯତି
ବିଭାଣ୍ଡକ ଭାଣ୍ଡ ତୁଲେ ଉପସ୍ଥିତ ହନ୍ତି ।
ଅପୂର୍ବ ମହାତ୍ମା ଋଷ୍ୟଶୃଙ୍ଗ ମୁନିବର
ମନୁଷ୍ୟ ଶରୀର ମୃଗ ମୁଣ୍ଡଗୋଟି ତାର ।
ରାଜାଗଣ ଦେଖିକରି ହୋଇଲେ ଆଶ୍ଚର୍ଯ୍ୟ
ଅଗସ୍ତିଙ୍କୁ ପୁଚ୍ଛିଲେ ଏ କାହା ସୁତ ଆର୍ଯ୍ୟ ।
ବଦୟନ୍ତି ଅଗସ୍ତି ଯେ ଶୁଣ ନୃପରାଣ
ବିଭାଣ୍ଡକ ସ୍ୱର୍ଗପୁରେ କରିଲେ ଗମନ ।
ସନ୍ନିଧେ ଖଟି ଅଛନ୍ତି ସର୍ବ ଦିଗପାଳ
ସେ ଅମର ପୁରେ ବିଜେ ଦେବ ଆଖଣ୍ଡଳ ।
ନୃତ୍ୟ ଗୀତ କରନ୍ତି ଯେ ଅପସରାଗଣ
ତାଳ ଦୁନ୍ଦୁଭି ବାଦ୍ୟରେ ଉଛୁଳେ ଭୁବନ ।
ଏମନ୍ତ ସମୟେ ଗଲେ ବିଭାଣ୍ଡକ ଋଷି
ବାସବ ଦେବ ତାହାଙ୍କୁ ନ ଦେଲେ ଯେ ବସି ।
କ୍ରୁଦ୍ଧ ହୋଇ ମହାତମା ଗଲେ ଅପସରି
ଅଭିମାନେ ବାସବକୁ ନୟନରେ ହେରି ।
ଆହୋ ସୁନାସୀର ତୁହି ହୋଇ ଗର୍ବେ ମତ୍ତ
ଅଭିମାନେ ଅପମାନ ଦେଲୁ ତୁ ଆମ୍ଭନ୍ତ ।
ମୋର ନାମ ବିଭାଣ୍ଡକ ଜାଣିଥାଅ ତୁହି
ଇନ୍ଦ୍ରପଦବୀ ତୋହର ନିଶ୍ଚୟ ନେବଇଁ ।
ଏତେ ବୋଲି ଚଳିଗଲେ ମହାବ୍ରହ୍ମଋଷି
ବଦରିକା ଆଶ୍ରମରେ ପ୍ରବେଶିଲେ ଆସି ।
ଇନ୍ଦ୍ରପଦ ଘେନିବାକୁ କଲେ ସେହୁ ବୁଦ୍ଧି
ଆହାର ମୈଥୁନ ତେଜି ବସେ ହୋଇ କ୍ରୋଧୀ
ସତ୍ୟଯୁଗେ ବହୁତ ବରଷ ପରିଯନ୍ତେ
ପବନ ପିଇଣ ମୁନି ରହିଲେ ନିଶ୍ଚିନ୍ତେ ।
ରଜନୀ ପ୍ରଭାତେ ନିରଞ୍ଜନ ପରସନ୍ନେ
ବସିବେ ସୁଦେବ ସୁତ ସେ ଅମର ସ୍ଥାନେ ।
ଅଭିମାନେ ବାସବର ଘେନିବେ ସେ ପଦ
ଏସନ ବାରତା ପାଇ ମହର୍ଷି ନାରଦ ।
ଧିକାର କରିଲେ ଯାଇ ଇନ୍ଦ୍ର ଦେବତାଙ୍କୁ
ନ ଚିହ୍ନିଲୁ ଇନ୍ଦ୍ର ବିଭାଣ୍ଡକ ମହର୍ଷିଙ୍କୁ ।
ନିରଞ୍ଜନ ପ୍ରସାଦେ ସେ ସ୍ୱର୍ଗପୁର ଘେନି
କାଲି ବେଳ ଦଶଦଣ୍ଡେ ଇନ୍ଦ୍ର ହେବେ ମୁନି ।
ନାରଦଙ୍କ ମୁଖୁଁ ନିରାଧାର ବାକ୍ୟ ଶୁଣି
ବିଷାଦ ଲଭିଲା ତହୁଁ ଦେବ ବଜ୍ରପାଣି ।
ଅସକନ୍ଦା ନାମେଣ ଯେ ଏକଇ ଅପ୍ସରୀ
ତାହାକୁ ପାଶେ ହକାରି ବୋଲେ ବଜ୍ରଧାରୀ
ତୁରେ ସୁନ୍ଦରୀ ବାରେକ ରଖ ମୋର ଗିର
ବିଭାଣ୍ଡକ ଋଷି ତପ ଭଙ୍ଗ ଯାଇ କର ।
ନିରାଧାର ଆଜ୍ଞା ଯହୁଁ ଦେଲେ ଦେବରାଜ
ଋଷି ଆଶ୍ରମକୁ ନାରୀ ହୋଏ ବେଗେ ସଜ ।
ବିବିଧ ବସନମାନ ଅଳଙ୍କାର ନାଇ
ସାକ୍ଷାତେ ହରମୋହିନୀ ପରାୟେ ଦିଶଇ ।
ସୁନାସୀର ବଚନରେ ଚଳଇ ଅସ୍କନ୍ଦା
ବିଭାଣ୍ଡକ ଆଶ୍ରମରେ ପ୍ରବେଶ ପ୍ରମଦା ।
ଅନେକ ମଧୁର ବାକ୍ୟେ ମୋହିଲା ସେ ମୁନି
ଅପସରୀ ରୂପେ ମୁଗଧେ ହେଲେ ତପୋଧନୀ ।
ବିଚଳିତ ଚିତ୍ତ କାମ ହେଲା ଜର୍ଜ୍ଜରିତ
କଠୋର ତପରୁ ମନ ହୋଇଲା ନିବୃତ୍ତ ।
ତତକ୍ଷଣେ ଅଙ୍ଗୁଠାଙ୍କ ଖସେ ବ୍ରହ୍ମବୀର୍ଯ୍ୟ
ପୃଥ୍ୱୀ ନ ସହି ପାରିଲା ତାହାର ସେ ତେଜ ।

ବେଗେ ମୁନିବର ତାକୁ ନିଜ କରେ ଧରି
ଗଙ୍ଗାକୁ ଫିଙ୍ଗିଣ ଦେଲ ହୃଦେ ମୋଦକରି ।
ଇଷ୍ଟକା ନାମରେ ଥିଲା ଏକଇ ମୃଗୁଣୀ
ତୃଷାରେ ଅଇଲା ସେହୁ ପିଇବାକୁ ପାଣି ।
ଋଷି ବୀର୍ଯ୍ୟ ପଶିଲାକ ଯାଇ ତାର ଗର୍ଭେ
କୁମାର ପ୍ରାପତ ହେଲା ଏହିପରି ଭାବେ ।
ମୃଗୁଣୀ ଗର୍ଭରୁ ଜାତ ହୋଇଲା ସନ୍ତତି
ମାନବ ଶରୀର ତାର ମୃଗ ଶିର ମୂର୍ତ୍ତି ।
ବିଭାଣ୍ଡକ ଦେଖିଲେ ସେ ପୁତ୍ର ବାଳଯତି
ଧ୍ୟାନରେ ଜାଣିଲେ ଏହୁ ଆମ୍ଭର ସନ୍ତତି ।
ଯତନ କରିଣ ମୁନି ପାଳିଲେକ ବାଳ
କ୍ଷୀର ବିନା ସେ କୁମର ହୋଇଲା ଦୁର୍ବଳ ।
ବିଭାଣ୍ଡକ କୋପ କଲେ ଇନ୍ଦ୍ର ଦେବତାଙ୍କୁ
ଭଗନ କରିଲୁ ପୁତ୍ର ଅର୍ଜିବା ତପକୁ ।
ଦଇବେ ପ୍ରାପଦ ହେଲି ମୁହିଁ ପୁତ୍ର ଗୋଟି
କେମନ୍ତେ ବର୍ତ୍ତିବ ଏହୁ କ୍ଷୀର ବିହିନେଟି ।
ଯେବେ ଲୋଡ଼ିବ ବାଳକ ଭୋକେ କ୍ଷୀରନୀର
ବୃଷ୍ଟି ତକ୍ଷଣେ କରିବୁ ଆରେ ପୁରନ୍ଦର ।
ପାଣି ଯେବେ ନ ବର୍ଷିବୁ ଜାଣିଥାଅ କୋପେ
ଅମର ପୁର ଦଗଧ କରିବି ପ୍ରତାପେ ।
ଶୁଣ ଆହୋ ମହାମନା ଋଷି ପରାଶର
ବାଳଯତି କୋପେ କମ୍ପେ ଅମର ନଗର ।
ଯେବଣ ଦେଶରେ ଜାଣ ହୁଏ ଅନାବୃଷ୍ଟି
ଏ ମହାତ୍ମା ବାକ୍ୟେ ତହିଁ ହୁଏ ଜଳବୃଷ୍ଟି ।
ଏମନ୍ତ ବାରତା ମୁନି କହିଣ ଦିଅନ୍ତେ
ଋଷ୍ୟଶୃଙ୍ଗ ବିଜେ କଲେ ଯୁଧିଷ୍ଠି ଅଗ୍ରତେ ।
ଯୁଧିଷ୍ଠିଦେବ ଦେଖିଣ କଲେ ପାଦପୂଜା
ଋଷିମେଳେ ବିଜେ ଋଷ୍ୟଶୃଙ୍ଗ ମହାତେଜା ।
ଶୁଣ ମନ ଦେଇ ଏବେ ଚୈତନ୍ୟ ମହାତ୍ମା
ସଂକ୍ଷେପି ପୁଚ୍ଛା କରିଲୁ ରାଜସୂ ମହିମା ।
ଅକଳିତ ମହିମା ଯେ ସିନ୍ଧୁସମ ଜାଣି
କିଏ ମୁଖେ କହିପାରେ ଏହି ତଥ୍ୟବାଣୀ ।
ବହୁତ ମହିମା ଜାଣି ନ ସରେ କହନ୍ତେ
ପାଇବ ପରମଗତି ଭାରତ ଶୁଣନ୍ତେ ।
ନିତ୍ୟକର୍ମ ବିଧାନରେ ରହି ସର୍ବଦେବା
ବାରଦିନ ଯାଏ ହେଲା ମହା ଯାଗସଭା ।
ପୁଣିହିଁ ମୁନି ଆହୁତି କଲେ ଅନୁକୂଳେ
ଥୋଇଲେକ ଲକ୍ଷେ କୁମ୍ଭ ଘୃତ ମନ୍ତ୍ରବଳେ ।
ଲକ୍ଷେ କୁମ୍ଭ ଆହୁତିରେ ଅଗ୍ନି ଜିଣି କାନ୍ତି
ତୋଳିଲେ ସେ ମହାମନ୍ତ୍ର ପରାଶର ଯତି ।

ବ୍ୟାସଦେବ କହିଲେ ଯେ ଶ୍ରୀକୃଷ୍ଣଙ୍କ ପାଶେ
ଲକ୍ଷେ କୁମ୍ଭ ଢ଼ାଳିଦେଲେ ଧର୍ମ ଷଡ଼ଶ୍ୱାସେ ।
ସନ୍ତକେ ଜାଣିଲେ ପଣ୍ଡୁ ହତ୍ୟାଦୋଷୁ ଗଲେ
ମହାମନ୍ତ୍ରେ ବ୍ୟାସ ତାହା ବାକ୍ୟ ଉଚ୍ଚାରିଲେ ।
ଯୁଧିଷ୍ଠିଙ୍କ ଆଗେ ବିଜେ ଧୌମ୍ୟ ପୁରୋହିତ
ଜଳରେ ଉଦକପନ୍ତି କରିଲେ ସେ ସତ୍ୟ ।
ଆକାଶ ଗଙ୍ଗା ବୋଲିଣ ଅଛି ଯେଉଁ ନଦୀ
ମେରୁ ମେଖଳା ଐଶାନ୍ୟେ କୃଷ୍ଣାବେଣୀ ଭେଦି
ସଂଯୋଗିଲେ ଗୋପପୁତ୍ରମାନେ ପାଣି ଆଣି
ଏକଲକ୍ଷ ଘଟ ତହିଁ ସଂଯୋଗିଲେ ପୁଣି ।
ସ୍ନାନ ସନ୍ଧ୍ୟାକର୍ମ ଆଦି କରି ପୁରୋହିତେ
ଯୁଧିଷ୍ଠିରଙ୍କୁ ସ୍ନାହାନ କରାଇ ସମସ୍ତେ ।
ଧର୍ମଙ୍କ ଷଡ଼ ନିଃଶ୍ୱାସେ ଲକ୍ଷେକ ଆହୁତି
ଏକ ଘଟକେ ନ ଚଳେ ଦେବ ମନଭ୍ରାନ୍ତି ।
ଏହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ମହାତମା
ମହାମନ୍ତ୍ର ପୋଥି ଦେଲେ ତାଙ୍କୁ ଶୁକବ୍ରହ୍ମା ।
ବ୍ୟାସଙ୍କୁ କହିଲେ ତହୁଁ ଦେବ ଜଗନ୍ନାଥେ
କୁମ୍ଭେକ ନ ଚଳି ମୁନି ରହିଲା କେମନ୍ତେ ।
ଶ୍ରୀକୃଷ୍ଣ ଆଗେ କହିଲେ ନାରଦ ଯେ ମୁନି
ଘଟେକ ନ ଚଳେ ଆମ୍ଭେ ବାର୍ତ୍ତା ଅଛୁଘେନି ।
ନାରଦ କହିଲେ ହରି ନଇଲା ଛାଡ଼ିଏ
କି ପ୍ରକାରେ ନ ଚଳିଲା କୁମ୍ଭରୁ ଗୋଟିଏ ।
ଏହା ଶୁଣିଣ ବିରସ ହୋଇଲେ ଅଚ୍ୟୁତ
କେବଣ ନୃପତି କାହିଁ କହସି ଆଗତ ।
ବ୍ୟାସ ବୋଇଲେ ତୁମ୍ଭେ ହେ ଶୁଣ ଦେବହରି
ପାତାଳ ସ୍ୱର୍ଗେ ବାସୁକି ଅଟେ ଅଧିକାରୀ ।
ପଣ୍ଡୁରାଜା ତିନି ପାବଚ୍ଛର ତଳେ ଥିଲା
ମଧପୁରେ ଅନ୍ନ ଦେଲା ପ୍ରାବଚ୍ଛେ ଉଠିଲା ।
ନାଗବଳ ଘେନି ଯେବେ ଆସିବ ସେ ରାଜା
ସେହି ଷୋଳଦିନ ଆସି କରିବେକ ପୂଜା ।
ତେବେ ସେ ପଣ୍ଡୁର ସର୍ବ ପାପ ଯିବ କ୍ଷୟ
ଶୁଣିକରି ଆଶ୍ଚର୍ଯ୍ୟ ଯେ ହେଲେ ଦେବରାୟ ।
ଯୁଧିଷ୍ଠି ବିରସ ଦେଖିକରି ଦେବହରି
ପାର୍ଥଙ୍କୁ ଆଣିଲେ ତହୁଁ ଅର୍ଜୁନେ ହକାରି ।
ଯୁଧିଷ୍ଠି ଦେବ ବୋଇଲେ ବ୍ରହ୍ମାଣ୍ଡ ଧାରଣ
ନବଦ୍ୱୀପ ସପ୍ତସିନ୍ଧୁ ଅଛି ତା ଶିରେଣ ।
କେହ୍ନେ ଆସିବ ସେ ପ୍ରତେ ନ କରଇ ମୁହିଁ
ସେ ମହାଭାଗ ମେଦିନୀ ସହିବ ଯେ କାହିଁ ।
ତା ଶୁଣି ହରି ଚାହିଁଲେ ଅର୍ଜୁନର ମୁଖ
ପିତୃକାର୍ଯ୍ୟ ନିମିତ୍ତରେ ସହିବୁ ତୁ ଦୁଃଖ ।

ପାତାଳ ସ୍ୱର୍ଗକୁ ତୁହି ଯିବୁ ଏହିକ୍ଷଣି
ବାସୁକୀ ନଗବଳକୁ ସଙ୍ଗେ ଆସ ଘେନି ।
ନାରାୟଣଙ୍କ ବଚନେ ସନମତ କରି
ବହୁ ସାନନ୍ଦେ ଚଳିଲେ ସେ ଗାଣ୍ଡିବଧାରୀ ।
ପୁଣି ବ୍ୟାସ ପକାଇଲେ ଲକ୍ଷେକ ଆହୁତି
ସେ ବିଧି ମହାମନ୍ତ୍ରକୁ ଟେକି ତକ୍ଷଣାନ୍ତି ।
ଚଳିଲେ ପାର୍ଥିବ ବୀର କ୍ଷତ୍ରିୟ ପୁଙ୍ଗବ
ଶ୍ରୀକରରେ ଶୋଭାବନ ଧନୁ ଯେ ଗାଣ୍ଡିବ ।
ରଥ ଗଜ ଅଶ୍ୱ ତୁଲେ ନାହିଁ ଯେ ପଦାତି
ଏକା ଜଣେ ଚଳଇ ସେ ଶାନ୍ତନୁଙ୍କ ନାତି ।
ହିମବନ୍ତ ସ୍ଥିତ ବନ ପର୍ବତର ତଟେ
ତହିଁର ସମୀପେ ଅଛି ପାତାଳକୁ ବାଟେ ।
ମହାବ୍ରହ୍ମକୁ ଅର୍ଜ୍ଜୁନ ହୃଦେ କରି ଲୟ
ଲକ୍ଷେ ଯୋଜନ ପାତାଳେ ପଶେ ଧନଞ୍ଜୟ ।
ନାଗମାନେ ଆଶ୍ଚର୍ଯ୍ୟ ଯେ ହେଲେ ତାହାଦେଖି
କାହିଁର ନର ଅଇଲୁ ତୋ ପୁର ଉପେକ୍ଷି ।
ପାର୍ଥ ବୋଇଲେ ତୁମ୍ଭର ରାଜା ସପ୍ତଶାଖା
ତାହାକୁ ମୁଁ ନିମନ୍ତ୍ରିବି କରା ମୋତେ ଦେଖା ।
ସେଠାବରୁ ଚଳିଯାନ୍ତି ପାଣ୍ଡବ କିରୀଟି
ଅନନ୍ତ ନାଗ ବାସୁକି ଦେବଙ୍କୁ ଯେ ଭେଟି ।
ଦେଖିକରି ସାନନ୍ଦ ଯେ ସେ ଅନନ୍ତ ରାଜା
ଅର୍ଜ୍ଜୁନକୁ ବାସୁକି ଯେ କରେ ଦିବ୍ୟ ପୂଜା ।
ବହୁ ପୁରୁଷାର୍ଥ ତାକୁ କରିଣ ବାସୁକି
ପୁରେ ଉତ୍ସବ କରାଏ ଅର୍ଜ୍ଜୁନକୁ ଦେଖି ।
ଅନେକ କୁଟୁମ୍ବ ଘେନି ନାଗ ଯେ ଅନନ୍ତ
ବହୁତ ବିନୟୀ ହୋଇ ହେଲେ କୃତ କୃତ୍ୟ ।
କରଯୋଡ଼ି ପଚାରଇ ଶୁଣ ତୁ ଫାଲ୍‌ଗୁନି
ତୋତେ ଯେ ଦେଖିଲି ମୁହିଁ ଜୀବନ ମୋ ଧନି
ମୋତେ ଅନୁଗ୍ରହ କଲୁ କିପାଁ ଧନଞ୍ଜୟ
କେବଣ ହେତୁ ମୋ ପୁରେ କରିଲ ବିଜୟ ।
ଅର୍ଜ୍ଜୁନ ବୋଇଲେ ତାତ ସାବଧାନେ ଶୁଣ
ମୋତେ ରାଇ ଆଜ୍ଞା ଦେଲେ ଦେବ ନାରାୟଣ
ରାଜସୂୟ ଯାଗ କରୁଛନ୍ତି ଧର୍ମସୁତ
ମୁହିଁ ଯେ ଅଇଲି ତୋତେ ନେବାର ନିମିତ୍ତ ।
ବେଗ ହୋଇ ଆସ ତାତ ଯିବା ମଧ୍ୟପୁରେ
ନାଗବଳମାନ ଘେନି ଯିବୁ ସମ୍ଭର୍ବରେ ।
ହାସ୍ୟ କରିଲା ଅନନ୍ତ ଅର୍ଜ୍ଜୁନ ବଚନେ
ମୋର କଥା କି ଅଜଣା ଅବା ନାରାୟଣେ ।
ଏ ମହୀମଣ୍ଡଳେ ଛନ୍ତି ନାନା ଜୀବଜନ୍ତୁ
ମୋହର ଶିରେ ସେ ସବୁ ସହିବାର ହେତୁ ।
ଅଚଳାଚଳ ଅଟଇ ପୃଥ୍ୱୀ ମହାଭାର
ଯତ୍ନେ ସମ୍ଭାଳଇ ମୁହିଁ ତାହାକୁ ହେ ବୀର ।
ଅନେକ ଅଛଇ ବନ ଡ଼ିଙ୍ଗର ପର୍ବତ
ମୋହ ଅଭାବରେ ସେହୁ ହେବ ରସାଗତ ।
ଅନନ୍ତର ବଚନେ ଯେ ଅର୍ଜ୍ଜୁନ ବିଚାରି
ଯାଅ ବୋଲି ଆଜ୍ଞା ତୋତେ ଦେଲେ ଦେବହରି ।
ମୁହିଁ ତହିଁ ବିଚାର ତ ନ କଲି ଏମନ୍ତ
ଏଡ଼େ ବଡ଼ ଭାରା ଏହୁ ସହିଅଛି ମାଥ ।
ମୁହିଁ ଏହାକୁ ନ ନେଲେ ଫେରିବି କେମନ୍ତ
ନିଶ୍ଚୟେ କୋପ କରିବେ ମୋଠାରେ ଅଚ୍ୟୁତ
ପ୍ରତିଜ୍ଞା କରି କହିଲି ମୁହିଁ ଧନଞ୍ଜୟ
ତ୍ରୈଲୋକ୍ୟ ମଧ୍ୟରେ ନାମ ବହିଲି ବିଜୟ ।
ନ ଜିଣିଲେ ନ ବାହୁଡ଼େ ମୋହର ବୀରଧୁ
ସରିଲା ପ୍ରତିଜ୍ଞା ମୋର ହୋଇଲି ଅସାଧୁ ।
ସଭାସ୍ଥଳେ ମୋହର ଯେ ଶୁଭୁଅଛି ଧ୍ୱନି
ପାର୍ଥ ଏକ୍ଷଣି ଆସିବ ନାଗବଳ ଘେନି ।
ଦୁଷ୍ଟ ରାଜାଏ ଅଟନ୍ତି ବଡ଼ ଦୁରାଶୟ
ବାସୁକୀ ନ ଗଲେ ମୁହିଁ ହେବି ନିନ୍ଦନୀୟ ।
ଏତେ ବିଚାରି ବୋଇଲା ଯିବୁ ହସ୍ତିନାକୁ
ଅନନ୍ତ ବୋଇଲା ଭାରା ଦେବି ମୁଁ କାହାକୁ ।
ଏଡ଼େ ପଣ୍ଡିତ ହୋଇ ତୁ ଗଲୁରେ ହୁଡ଼ି ତ
ଏ ପୃଥିବୀ ନିଶ୍ଚୟ ଯେ ହେବ ରସାଗତ ।
ଅର୍ଜ୍ଜୁନ ବୋଇଲା ପୃଥ୍ୱୀ ଛାଡ଼ ନାଗରାଜା
ମୁହିଁ ପୃଥ୍ୱୀ ଧରିବି ତୁ ବେଗ ହୋଇ ଯା ଯା ।
ଅରଜୁନ ବଚନରେ ଚତୁର୍ଦ୍ଦିଗ ସାକ୍ଷୀ
ଶୁଣିକରି ବିଷାଦିତ ହୋଇଲେ ବାସୁକି ।
ପନ୍ନଗନାରାୟଣ ତ ଅଟଇ ନିୟତ
ଯାକୁ ଅସମ୍ଭବ ନୁହେଁ ଏ ମହାଭାରତ ।
ବାସୁକି ବୋଇଲେ ଜ୍ଞାନ ତୋହର ଯେ ନାହିଁ
ଏଡ଼େ ଗର୍ବ ବହୁ ନରକୁଳେ ଜନ୍ମ ହୋଇ ।
ଏ ପୃଥ୍ୱୀର ମହାଭାର ଦେବେ ଅଗୋଚର
ଯ ଭାର ବହି ନ ପାରେ ମେରୁ ଯେ ମନ୍ଦର ।
ଅର୍ଜ୍ଜୁନ ବୋଇଲେ ତୁହି କିଛିହିଁ ନ ଭାଳ
ଧରିବି ଭରୀକୁ ମୁହିଁ ଛାଡ଼ ମହୀଆଳ ।
ଅର୍ଜ୍ଜୁନର ବଚନରେ ବାସୁକି ଯେ ନାଗ
ବୋଲେ ଦେଖିବା ଧରିବୁ କେହ୍ନେ ମହୀଭାଗ ।
ଏସନ ବଚନ ଶୁଣି ପାର୍ଥ ଧନୁର୍ଦ୍ଧର
ମହା ଭଇରବ ମୂର୍ତ୍ତି ହୁଏ ଅବତାର ।
ଏକପାଦ ଆଗୁସାରେ ଆସେ ବୀରଧୀରେ
ମହାତେଜ ମୂର୍ତ୍ତି ଧରି ପାର୍ଥ ଧନୁ ଧରେ

ଧନୁହୁଳେ ନେଇ ଦେଲେ ଡାହାଣର ଜାନୁ
ଆରେକ ହୁଳ ଲଗାଇ ସେ ମଧ ଭୁବନୁ ।
ଜାନୁରେ ଏକହୁଳେ ଯେ ଆରହୁଳେ ପୃଥ୍ୱୀ
ଅରଜୁନ ଧଇଲା ସେ ମହାଭାରା କ୍ଷିତି ।
ଛାଡ଼ ଏବେ ଅନନ୍ତ ଯେ ବୋଲେ ଫାଲଗୁନୀ
କାଢ଼ ତୋହର ଫଣା ମୁଁ ଧଇଲି ମେଦିନୀ ।
ଅନନ୍ତ ବୋଇଲେ ତୁହି କହିଲୁ କିଂସ ହେ
ନବଦ୍ୱୀପ ସାଗର କି ଧନୁହୁଳେ ରହେ ।
ଯଦି ପୃଥ୍ୱୀତଳୁ ମୁହିଁ ଫେରୁ ଦେବି କାଢ଼ି
ତୋହର ଉପରେ ପଡ଼ିଯିବ ଆଜ ମାଡ଼ି ।
ଅର୍ଜୁନ ବୋଇଲେ ତୁହି ଏମନ୍ତ ନ କହ
ଛାଡ଼ିଦେଇ ପୃଥିବୀ ତୁ ନିଶ୍ଚିନ୍ତରେ ଯାଅ ।
ଅର୍ଜୁନ ବଚନେ ଫେରୁ କାଢ଼ଇ ଅନନ୍ତ
ନିଶ୍ଚିନ୍ତେ ରହିଲା ଧରା ଧରେ ବୀର ପାର୍ଥ ।
ଅଳପ କରି ବାସୁକି କାଢ଼ିଲେ ଅଚଳ
ଦେଖେ ମହାଭାରା ପୃଥ୍ୱୀ ରହେ ଧନୁହୁଳ ।
ଶୁଣ ତୁହୋ ଚଇତନ ଅର୍ଜୁନ ମହିମା
ଆକାଶରେ ସାଧୁ ସାଧୁ କଲେ ବେଦ ବ୍ରହ୍ମା ।
ଦେଖିକରି ଆଶ୍ଚର୍ଯ୍ୟ ଯେ ହେଲେ ନାଗବଳ
ଧଇଲା ବୀର ଅର୍ଜୁନ ପୃଥିବୀ ଅଚଳ ।
ଧନୁହୁଳେ ରହିଲା ସେ ମହୀ ମହାଭାର
ସପତ ସାଗର କୀଟ ପତଙ୍ଗ ଆବର ।
ସପ୍ତଦ୍ୱୀପ ପୃଥ୍ୱୀ ଆଦି ଯେତେ ଧରାଧରେ
ସମସ୍ତେହେଁ ରହିଲେ ଯେ ଯାହାର ହେତୁରେ ।
ଅନେକ ସାନନ୍ଦ ହେଲେ ଦେଖି ମହୀପାଳ
ଅର୍ଜୁନର କଣ୍ଠେ ନେଇ ଦେଲେ ରତ୍ନମାଳ ।
ପ୍ରତ୍ୟକ୍ଷରେ ରୂପ ତନୁ ନାରାୟଣ ମୂର୍ତ୍ତି
ଅନନ୍ତ ବାସୁଦେବ କି ଧରିଅଛି ପୃଥ୍ୱୀ ।
ନିଶ୍ଚୟ ଅର୍ଜୁନ ତୁହି ଅନନ୍ତାବତାର
ବାବୁ ପାର ଯେବେ ତୁହି ଯାକୁ ସେବାକର ।
ଦେଖିକରି ଆଶ୍ଚର୍ଯ୍ୟ ଯେ ହେଲେ ନାଗମାନେ
ଯାଅ ନାଗରାଜା ଘେନି ତୋହର ସଇନ୍ୟେ ।
ଅନନ୍ତ ବୋଇଲେ ବାବୁ ଭାରା ହେଲା ତୋତେ
ଦେଖିଣ ଆଶ୍ଚର୍ଯ୍ୟ ମୁହିଁ ଯିବଇଁ କେମନ୍ତେ ।
ବାସୁକି ରାଜାର ଅଟେ ଏକଇ ଦୁଲାଳୀ
ତାହାର ନାମ ଅଟେ ଯେ ପୁଣି ସନ୍ଧ୍ୟାବାଳୀ ।
ଅନନ୍ତ ଯେ ହକାରିଣ ପାଶେ ଦୁହିତାକୁ
ବୋଲେ ତୁ ସେବା କରିବୁ ଅର୍ଜୁନ ବୀରକୁ ।
ଜାଣିଥାଅ ମୁହିଁ ଏବେ ଯାଉଛି ଉପରେ
ତୁ ଦିବାରାତ୍ର ଖଟିବୁ ଏହାର ପୟରେ ।
ଶଙ୍ଖରେ ଜଳ ଘେନିଣ ଧୋଇବୁ ଯା କାୟେ
ଝୀନବସ୍ତ୍ର ଗୋଟି ଆଣି ପିନ୍ଧାଇବୁ ମାୟେ ।
କସ୍ତୁରୀ ଗନ୍ଧ ଚନ୍ଦନ ଲେପିବୁ ଶରୀରେ
ଅନେକ କୁସୁମଗଭା ଖଞ୍ଜିବୁ କେଶରେ ।
ଅମୃତ ଯୋଗାଡ଼ମାନ ଦେଉଥିବୁ ନିତି
ଆଚମନ କରାଇବୁ କର ଧରି ଧାତି ।
ମାଗୋ ଯେମନ୍ତେ ଖଟଇ ସ୍ୱାମୀକୁ ଭାରିଯା
ସେହିମତ ଖଟିଥିବୁ ସବୁ କରି ତେଜ୍ୟା ।
ମାଗୋ ଯଦ୍ୟପି ଭାରାକୁ ପାଇବ ଅର୍ଜୁନ
ତୁ ଧରିବୁ ପୃଥ୍ୱୀ ତେବେ ସ୍ଥିର କରି ମନ ।
ମାଗୋ ଯେସନେ ବିରସ ନୋହେ ସବ୍ୟସାଚୀ
ତେସନ ପ୍ରକାରେ ତୁହି ପୂଜୁଥିବୁ ସଞ୍ଚି ।
ଅର୍ଜୁନକୁ ବୋଲେ ଦୋଷ କ୍ଷମିବୁ କିରୀଟି
ତୋ ଚରଣେ ଖଟିଥିବ ମୋର କନ୍ୟାଗୋଟି ।
ଅର୍ଜୁନ ବୋଇଲେ ଆହେ ନାଗକୁଳ ରାଜା
ନାଗବଳ ଘେନି ତୁହି ଶୀଘ୍ର ହୋଇ ଯା ଯା ।
ଯେତେକ ନାଗ ଅଛନ୍ତି ତୋହର ଏ ପୁରେ
ବାଳବୃଦ୍ଧ ଆଦି ଘେନି ଯାଅ ତୁ ସଙ୍ଗରେ ।
ଅର୍ଜୁନର ଆଜ୍ଞାରେ ସେ ସର୍ବ ନାଗବଳେ
ସଜ ହେଇ ବାହାରିଲେ ସେ ଦୁଆର ବିଳେ
ସହସ୍ରେକ ଫଣା ଶତେ ଫଳା ଲାଗେ ଶିରେ
ପାତାଳ ଉଭାରି ହୋଇ ବାହାରେ ଦୁଆରେ ।
ତାହା ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ମନୁଷ୍ୟେ
କାଳ ଗରଳମାନ ଯେ ଉଡ଼ନ୍ତି ଆକାଶେ ।
ଆନନ୍ଦେ ଭୁଜଙ୍ଗଗଣ ଯାଉଛନ୍ତି ଗର୍ଜି
ଅନେକ ଗିରି ବୃକ୍ଷ ଯେ ପଡୁଅଛି ଭାଜି ।
ଅର୍ଜୁନକୁ ବହୁରୂପେ ଖଟଇ ନାଗୁଣୀ
ବହୁତ ପରିଚର୍ଯ୍ୟା ଯେ ଦାସ ଦାସୀ ପୁଣି ।
ପ୍ରଭାତ କାଳରେ ସ୍ନାନ ସନ୍ଧ୍ୟା କରାଇଣ
ଆୟଅଳଙ୍କାର ମାନ ଅନେକ ଖଞ୍ଜିଣ ।
ବହୁତ ଅମୃତ ବିଧି ଦେଉଥାଇ ସଞ୍ଚି
ଭାବରେ ଭୋଜନ ବସି କରେ ସବ୍ୟସାଚୀ ।
ଭକତି ଭାବରେ ଖଟିଥାଇ ସେ ବନିତା
ପୂଜାବିଧିରେ ଯେମନ୍ତେ ଖଟେ ପତିବ୍ରତା ।
ଏସନ ଭକତିଭରେ ଖଟେ ସନ୍ଧ୍ୟାବାଳୀ
କରଯୋଡ଼ି ସଦା ଥାଏ ଦାସୀଠାରୁ ବଳି ।
ସମଦଣ୍ଡେ ନାଗରାଜା ଚଳିଲେ ହରଷେ
ପ୍ରବେଶିଲେ ଚତୁର୍ଦ୍ଦଶ ଦିନେ ଧର୍ମଦେଶେ ।
ଦେଶାଉରେ ବାରତା ଯେ କହିଲା ସତ୍ୱରେ
ଅନନ୍ତ ବିଜୟ କଲେ ଇନ୍ଦ୍ରପ୍ରସ୍ଥରେ ।

ଶାୟକୁମର ବୋଇଲା ସେ କାଳିଞ୍ଜନକୁ
ବାସୁକୀ ଅଇଲେ ଜଣା ଭୀମ ଠାକୁରଙ୍କୁ ।
କାଳିଞ୍ଜନ ବୋଲେ ସ୍ୱାମୀ ବିଜୟେ ବାସୁକୀ
ଅର୍ଜ୍ଜୁନ ବିଜୟେ କଲେ ପାତାଳ ପୁରୀକି ।
ଭୀମ ବୋଇଲେ ହରି ହେ ଆସ ବେଗହୋଇ
ଆଜ୍ଞାପାଇ ଗଲେ ବେଗେ ଗୋବିନ୍ଦ ଗୋସାଇଁ
ପଶ୍ଚିମ ଦ୍ୱାର ପଥରେ ହୋଇ ସଜବାଜ
ବାରୁଣୀ ପର୍ବତ ପରେ ବିଜେ ଦେବରାଜ ।
ଗିରି ଶିଖରେ ଉଠିଲେ ଯାଇ ଦେବ ହରି
ସଙ୍ଗେ ଗୋକ୍ଷୀର ଯେ ବଳାକର୍ଣ୍ଣ ନାଗବାଳୀ ।
ପାଞ୍ଚସହସ୍ର ଭାର ସେ ପାଣି ଦ୍ରବ୍ୟ ଘେନି
ମହୀ ହାନ୍ଦୋଳା ହେଉଛି ଫୁଫୁକାର ଧ୍ୱନି ।
ନାଗବଳ ସଇନର ଦେଖିଲେ ମୂରତି
ଖଗେଶ୍ୱରଙ୍କୁ ସ୍ମରଣ କଲେ ଲକ୍ଷ୍ମୀପତି ।
ବିନତାସୁତ ନିମିଷମାତ୍ରେ ଯାଇଁ ଭେଟି
ବିଜୟ ଶ୍ରୀଜଗନ୍ନାଥ ବୈନତେୟ ପିଠି ।
ଯହୁଁ ବିକାଶିଲା ତହିଁ ଖଗବର ରୂପ
ଦେଖିକରି ଫଣୀଙ୍କର ଭାଙ୍ଗିଗଲା ଦର୍ପ ।
ନାନାବିଧ ବିଶ୍ୱରୂପ ମୂର୍ତ୍ତି ଧରିଥିଲେ
ଗରୁଡ଼ଙ୍କୁ ଦେଖିକରି କିଙ୍କର ହୋଇଲେ ।
ନାଗବଳ ଘେନି କରି ବିଜୟ ବାସୁକୀ
ପ୍ରଣତ ହୋଇଲେ ବାସୁଦେବଙ୍କୁ ସେ ଦେଖି ।
ଉତୁରିଲେ ବୈନତେୟ ପୃଷ୍ଠରୁ ଗୋବିନ୍ଦ
ଅନନ୍ତ ବହୁତ ଭାବେ ପୂଜେ ପ୍ରଭୁପାଦ ।
ଗୋବିନ୍ଦ ବୋଇଲେ ତୁହି ଅଇଲୁ ବାସୁକି
ଅନେକ ଭକ୍ତିରେ ଏବେ ଖଟ ଯୁଧିଷ୍ଠିଙ୍କି ।
ଆହୋ ନାଗରାଜା ତୋର ତହିଁ ପାର୍ଥ ଗଲା
ତୁହି ତ ଅଇଲୁ ସେହି କାହିଁକି ରହିଲା ।
ସେ ବୋଲେ ମହତ ତୁ ତ ପୁରୁଷ ଉତ୍ତମ
ତୁ ଦେବ ଅନନ୍ତ ମୂର୍ତ୍ତି ହେଉ ଉତପନ୍ନ ।
ଅର୍ଜ୍ଜୁନ ବୀର ପ୍ରତ୍ୟକ୍ଷେ ନାରାୟଣ ସେହି
ଧନୁହୁଳେ ମେଦିନୀକୁ ହେଳେ ଅଛି ବହି ।
ସ୍ୱାମୀ ଦେବେ ଅଗୋଚର ଅଶେଷ ମହିମା
ତୋହର ଅଟଇ ସିନା ଏସନ ଗାରିମା ।
ଅନେକ ମହିମା ଏହ୍ନେ କହିଲା ବାସୁକୀ
କୃଷ୍ଣ ବୋଲେ ନ କହ ତୁ ଧର୍ମ ଯୁଧିଷ୍ଠିଙ୍କି ।
ବହୁତ ବ୍ୟାକୁଳ ହେବେ ଧର୍ମ ତାହା ଶୁଣି
ବୋଲିବେ ଭାଇକୁ ମାଡ଼ି ବସିବ ଧରଣୀ ।
ନାଗ ସଇନ୍ୟ ଘେନିଣ ସେ ଅନନ୍ତ ରାଜା
ହରି ସଙ୍ଗେ ଗଲା ଧର୍ମେ କରିବାକୁ ପୂଜା ।

ଅନନ୍ତ ଘେନି ଚଳିଲେ ଜଗତ ମୋହନ
ବିଜୟ କରିଲେ ସ୍ୱାମୀ ସଭାର ଆସ୍ଥାନ ।
ଦେଖି ପରମ ସାନନ୍ଦ ହୁଅନ୍ତି ନରେନ୍ଦ୍ର
ନାଗ ନୃପତିକୁ ଦେଲେ ବହୁ ପରସାଦ ।
ଏ ନାଗରାଜାଙ୍କୁ ଆମ୍ଭେ ଦେଖିବା ହୋ କାହିଁ
ଅନେକ କାଳ ରାଜାଏ ଦେଖିଲା ତ ନାହିଁ ।
ଅନୁକ୍ରମେ ଗୋପାଳଙ୍କୁ କହନ୍ତି ମୋହନ
ନାଗରାଜା ସଇନିଙ୍କୁ ଦିଅ କ୍ଷୀରପାନ ।
କ୍ଷୀର ପାନରେ ରହିଲେ ନାଗବଳମାନେ
ପଳାଇ ଲୋଡ଼ନ୍ତି କରି ଗରୁଡ଼ ଦର୍ଶନେ ।
ଶ୍ରୀହରି ବୋଇଲେ ତୁମ୍ଭେ କାହିଁକି କାତର
ଗରୁଡ଼କୁ ଦେଖି କେହି ଭ୍ରାନ୍ତି ଯେ ନ କର ।
ଏ ମହାଯାଗ ଅଟଇ ଧରମର ସଭା
କାହିଁର ବଳେ କାହାକୁ ଲଙ୍ଘନ୍ତି କେ ଅବା ।
ସୁଖେଥାଅ ତମ୍ଭେ କ୍ରୀଡ଼ାରସ କୁତୂହଳେ
ନାରାୟଣ ବଚନରେ ରହିଲେ ସକଳେ ।
ବିହାର କରନ୍ତି ପୁଣି ଆପଣା ଇଚ୍ଛାରେ
କିନ୍ତୁ ଗରୁଡ଼କୁ ଭୟ ଥାଇ ଯେ ଅନ୍ତରେ ।
ଅନନ୍ତ ନାଗ ଘେନିଣ ଏଣେ ଦେବ ହରି
ଯୁଧିଷ୍ଠି ଦେବ ଛାମୁରେ ଯାଇ ବିଜେ କରି ।
କୃଷ୍ଣ ବୋଇଲେ ପାତାଳପୁର ନାଗରାଜା
ସ୍ୱାମୀଙ୍କର ଭକତିରେ କରି ପାଦ ପୂଜା ।
ଛାମୁରେ କହିଲେ ଯାଇ ପାତାଳର ସ୍ୱାମୀ
ଯୁଧିଷ୍ଠିର ଦେବଙ୍କର ପାଦେ ପରଣାମି ।
କରତାଳି ଦେଲେ ତହୁଁ ଦେବ ନାରାୟଣ
ହସ୍ତରେ ହସ୍ତ ଦେଇଣ ବିନୟ ହୋଇଣ ।
ଲକ୍ଷେଭାର ସୁବର୍ଣ୍ଣ ଯେ ଦେଖା ଦରଶନୀ
ନାଗମାନେ ତାହାଛନ୍ତି ସଙ୍ଗତରେ ଘେନି ।
ଭଣ୍ଡାର ଥୋଇଲେ ନେଇ ସର୍ବ ଧନମାନ
ନିମିଷକେ ଦୁର୍ଯ୍ୟୋଧନ ଦେଲା ସବୁ ଦାନ ।
ଶ୍ରୀକୃଷ୍ଣ ଆଜ୍ଞା ହେଲା ସଭା ମଧ୍ୟେ ବସ
ଭୁଜଦେଇ ଆସ୍ଥାନରେ ବସିଲେ ନାଗେଶ ।
ଦେଲେକ ଆହୁତି ପରାଶରଙ୍କ ତନୟେ
ମହାଅନଳେ ଦେବତା ସୁଖେ ସୁସ୍ଥ ହୁଏ ।
ଢ଼ାଳନ୍ତି ଆହୁତି ଘୃତ ଧର୍ମରାୟ ତୋଳି
ଆକାଶ ଉଛୁଳଇ ସେ ଆହୁତି ପ୍ରଜ୍ୱଳି ।
ସ୍ୱାହାନ ଭୋଜନ ଅଟେ ଯାର ଯେତେ ଇଚ୍ଛା
ଦାନରେ ତୋଷ ହୋଇଣ ଯେ ଯାହାର ବାଞ୍ଛା
ଶତ୍ରୁ ମିତ୍ର ସମସ୍ତେ ଯେ ହେଲେ ଏକମୂର୍ତ୍ତି
ଦାନମାର୍ଗରେ ଯେହୁ ମାଗନ୍ତି ଯା ପାଆନ୍ତି ।

ଯେତେକ ଅଛନ୍ତି ତହିଁ ପିତୃଜନମାନେ
ସମସ୍ତେ ତୃପତ ହେଲେ ଘୃତରସପାନେ ।
ଅନେକ ସମ୍ପର୍କେ ଦ୍ୟନ୍ତି ଅନେକ ଯେ ଧନ
ଦରିଦ୍ର ଦୁଃଖୀ ନାହିଁ ଯେ ଅବିଚ୍ଛିନ୍ନେ ଦାନ
ସତ୍ୟ ତ୍ରେତୟା ଦ୍ୱାପର ଆଉ ଯୁଗ କଳି
ଚାରିଯୁଗକୁ ଗଣ୍ଡାଏ ଏହାକୁହିଁ ବୋଲି ।
ଚତୁର୍ଦ୍ଦଶ ଗଣ୍ଡାରେ ଯେ ହୁଏ ମନୁ ଜାଣ
ସାତ ମନୁରେ କଳପେ ହୁଅଇ ପ୍ରମାଣ ।
ସାତକଳପେକ ଏକ ଉଆଳେକ ବୋଲି
ଉଣେଇଶ ଉଆଳକେ ଚନ୍ଦ୍ରେକ ସେ ଭାଳି ।
ଏତେକାଳ ଯାଏ ଭୋଗ ହୋଇଲେ ପୃଥ୍ୱୀର
ରାମାୟଣ ଭାରତ ଯେ ହୁଅଇ ନିକର ।
ଚନ୍ଦ୍ରେକ ପୂରିଲେ ପୃଥ୍ୱୀ ପ୍ରଳୟରେ ଯାଇ
ଏତେକାଳ ପରିଯନ୍ତେ ନିଦ୍ରା ହୋଇଥାଇ ।
ପୁଣିହିଁ ସେ ନିରଞ୍ଜନ ହୁଅଇ ପୁରୁଷ
ବ୍ରହ୍ମଲୋକ ଶିବଲୋକ କରଇ ଉଦ୍ଦେଶ୍ୟ ।
ପୁଣି ନବସୃଷ୍ଟି ଜାତ କରଇ ବିଧାତା
ଉତ୍ପତ୍ତି ପ୍ରଳୟ କରେ ଯେ ଆମ୍ଭ ଦେବତା ।
ପୁଣି ଏହୁ ସତ୍ୟଯୁଗ ହୁଅଇ ଆନର
ଉପୁଜନ୍ତି ପୁରୁରବା ଆଦି ନୃପବର ।
ଆବର ଧାର୍ମିକ ଶ୍ରେଷ୍ଠ ମାନଧାତା ବୀର
ପର୍ଶୁରାମ ଜାନଘଣ୍ଟ ଭଗୀରଥ ଶୂର ।
ହରିଚନ୍ଦନ ଶମ୍ଭୁ ଯେ ଦକ୍ଷ ପ୍ରଜାପତି
ଏ ସମସ୍ତ ଏ ପୃଥ୍ୱୀର ଜନମ ହୁଅନ୍ତି ।
ସତ୍ୟଯୁଗର ଅନ୍ତରେ ତ୍ରେତୟା ଧାରଣ
ପୌଲସ୍ତି ବଂଶେ ଉପୁଜେ ପୁଣିହିଁ ରାବଣ ।
ଅଲୌକିକ ବର ପାଇ ସେ ହରଇ ସୀତା
ଏପରି ଅଲୌକିକ ସଂସାରରେ କଥା ।
ଏଥୁଅନ୍ତେ ସୁଜନେ ହେ ଶୁଣ ଦେଇ ମନ
ଯାଗସ୍ଥାନେ ଏହ୍ନେ ହୁଏ କଥୋପକଥନ ।
ଏଣେ ଦୁର୍ଯ୍ୟୋଧନ ରାଜା ବହୁପୁଣ୍ୟ ଅର୍ଜି
ଦାନରେ ସକଳ ଧନ ଦିଅନ୍ତି ବିସର୍ଜି ।
ଭାରେକ ଦେଲେ ଯେ ତାହା ଶତେଭାର ହୋଇ
ଦୁର୍ଯ୍ୟୋଧନ ଛୁଇଁଲେ ଯେ ତାହା ନ ଖରଇ ।
ଶଙ୍ଖନିଧି ପଦ୍ମନିଧି ଯାହାର ହସ୍ତରେ
ଭାରେ ବ୍ୟୟ କଲେ ପୂର୍ଣ୍ଣ ହୁଏ ଶତେ ଭାରେ ।
ସୋମ ବଂଶରେ ଯାହାର ଯେତେ ପାପ ଥିଲା
ସେ ମହାଯାଗ କରନ୍ତେ ଦହନ ହୋଇଲା ।
ଅନେକ ଜନ୍ମର ତହିଁ ଖଣ୍ଡଇ ଦୁଷ୍କୃତି
ମହା ପୁଣ୍ୟତୋୟା ନଦୀ ଦିଶେ ପୁଣ୍ୟବନ୍ତ ।
ଯେବଣ ନର ପଢ଼ନ୍ତି ଭାବି ହୃଦଗତେ
ଦହନ ହୁଏ ତାଙ୍କର ପାପ ଥାଏ ଯେତେ ।
ଯେବଣ ଜନ ପଢ଼ଇ ଶ୍ରବଣ ବା କରେ
ଧନ ସମ୍ପଦ ପାଇଣ ଯାଏ ସ୍ୱର୍ଗପୁରେ ।
ହିଂସ ଦ୍ୱେଷ ପାପଆଦି ଯେତେ ହୃଦେ ଥାଇ
କୁଳର କଳଙ୍କମାନ ସବୁ ନାଶ ଯାଇ ।
ସତ୍ୟାଦୋଷକୁ ମୋଚନ କରେ ଯାଗଗୋଟି
ଦୃଢ଼କରି ହୃଦଗତେ ଏ କଥା ଭାବଟି
ଜୟ ଜୟ ଜଗନ୍ନାଥ ନୀଳଗିରି ସାଇଁ ।
ଜୟ ଜୟ ଜଗନ୍ନାଥ ଭକ୍ତି ଭାବଗ୍ରାହୀ ।
ଜୟ ଜୟ ଜଗନ୍ନାଥ କରୁଣା ସାଗର
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧର ।
ତୋହର ପାଦେ ଶରଣ ଶ୍ରୀସାରଳା ଦାସ
ମମ କଣ୍ଠେ ବସି ଶୁଦ୍ଧ ପଦମାନ ଭାଷ ।



## ଶିଶୁପାଳ ବଧ ଓ ତାହାର ପୂର୍ବଜନ୍ମ ବୃତ୍ତାନ୍ତ

ଚଇତନ ପୁଚ୍ଛା କଲେ କହ ଆହେ ମନ
ଏବେ ସେ ସଭା ସମ୍ପନ୍ନ ହୋଇଲା ଜେସନ ।
ମାଘମାସ ପୌର୍ଣ୍ଣମାସୀ ତିଥି ରବିବାର
ମଘାନାମେ ନକ୍ଷତ୍ର ଯେ ଭୋଗ ସେ ଦିନର ।
ବବନାମେ କରଣ ସୌଭାଗ୍ୟ ନାମେ ଯୋଗ
ସେ ଦିନ ସମାପତ ଯେ ହେଲା ମହାଯାଗ ।
ସ୍ନାହାନ କରିବେ ଦିବସରେ ମହାଯତି
ସେକାଳେ ଅମୋକ୍ଷ ବ୍ୟକ୍ତି ମୋକ୍ଷ ଯେ ହୁଅନ୍ତି
ସୁବର୍ଣ୍ଣ ଘଟକୋଟି ଯେ ସୁବର୍ଣ୍ଣର ଝରା
କୋଟିଏ ତୀର୍ଥ ଘେନିଣ ବିଜୟ ପୁଷ୍କରା ।
ଅନ୍ନଦାନ ଦେଇ ସ୍ତିରୀ ଜଣେକ ଚରଣେ
ଯୁଧିଷ୍ଠି ଦେବଙ୍କୁ ସ୍ନାନ କରାନ୍ତି ବ୍ରାହ୍ମଣେ ।
ସ୍ନାହାନ ସାରିଣ ଦେଲେ ଅନେକ ଯେ ଦାନ
ଦିବ୍ୟମହାରସ ଘେନି କରନ୍ତି ଭୋଜନ ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ବ୍ରାହ୍ମଣକେ ଦଶମାଢ଼ ସୁବର୍ଣ୍ଣ ସମ୍ପଦ ।
ବୈତରଣୀ ନଦୀତୀରେ ଉଦକରେ ସ୍ନାନ
କରି ବ୍ରାହ୍ମଣକେ ଦେଲେ ଲକ୍ଷେମାଢ଼ ସ୍ୱର୍ଣ୍ଣ ।
ଆନବେଳେ ପ୍ରତିଗ୍ରହ ନ କରିବ ଆନେ
ଦ୍ୱାପରେ ଥିବ ଯୁଧିଷ୍ଠିଦେବଙ୍କ ପ୍ରସନ୍ନେ ।
ନ କରିବ କୃଷି ଯେ ନ କରିବ ବାଣିଜ୍ୟ
କୁଟୁମ୍ବ ଘେନିଣ ଭୋଗ କରିବ ଐଶ୍ୱର୍ଯ୍ୟ ।

ଏସନକ ଦାନ ଦେଲେ ସେ ରାଜା ଯୁଧିଷ୍ଠି
ଖଣ୍ଡିଲେ ପାତକମାନ ଗଲା ଯେ ଅରିଷ୍ଟି ।
ବ୍ୟାସଦେବ ବୋଇଲେ ହେ ଶୁଣ ଦେବରାୟେ
ଶ୍ରୀକରେ ତୋହର ଘେନ ତୁ ଅର୍ଘ୍ୟ ଗୋଟିଏ ।
ସୁବର୍ଣ୍ଣର ଏକପାତ୍ରେ ଲକ୍ଷ ଅଷ୍ଟରତ୍ନ
ମାଣିକ୍ୟର ଘେନିଲେ ସେ ଲକ୍ଷେ ଦୀପମାନ ।
ବିଜେ ଧର୍ମରାୟ ମହାଯାଗରେ ସଭାରେ
ଲକ୍ଷେରାଜା ଉଭା ହୋଇଅଛନ୍ତି ଆଗରେ ।
ଏଥେ ଅଛନ୍ତି ଛତିଶକୁଳ ପାଟବଂଶୀ
ବ୍ରହ୍ମରଷି ରାଜରଷି ନିରାକାର ଋଷି ।
ଶ୍ରୀକରେ ଅର୍ଘ୍ୟ ଘେନିଣ ପଚାରନ୍ତି ଧର୍ମ
ଯେଉଁ ପରିରେ ବିଚାର ଅଛି ପୂର୍ବକର୍ମ ।
ମହାବିଜ୍ଞ ବ୍ରହ୍ମ ତୁମ୍ଭେ ଧାର୍ମିକ ବିବେକ.
ଗୁଣବନ୍ତ ସୁଧୀ ସର୍ବେ ଗୁଣର ଭାବୁକ ।
ଆଗେ କରିବା କାହାକୁ ପାଦାର୍ଘ୍ୟରେ ପୂଜା
ଦ୍ୱିତୀୟରେ ଅକ୍ଷତ ଯେ ଦେବା ସର୍ବରାଜା ।
ଏତେ ଆଜ୍ଞା ମୋତେ କହ ତୁମ୍ଭେ ଶୁଦ୍ଧଚିତ୍ତେ
ବିଚାରି ଆଜ୍ଞା ସକଳ ଦିଅ ବେଗେ ମୋତେ ।
ଯୁଧିଷ୍ଠିର ମୁଖୁଁ ଏହି ବଚନକୁ ଶୁଣି
ରାଜାମାନେ ସ୍ତମ୍ଭୀଭୂତ ମୌନବ୍ରତ ଜାଣି ।
ସମସ୍ତ ନୃପତିଗଣ ମୌନବ୍ରତ ହୋଇ
ଦ୍ରୋଣ ଗୁରୁଙ୍କୁ ସକଳେ ପାଶରେ ବସାଇ ।
ବୋଇଲେ ହେ ଦ୍ରୋଣଗୁରୁ ଭରଦ୍ୱାଜବଂଶି
ପର୍ଶୁରାମଙ୍କର ଗୁଣ ବିଦ୍ୟା ତବ ଅଛି ।
ଧର୍ମ ଶାସ୍ତ୍ର ପ୍ରମାଣରେ ତୁମ୍ଭେ ଅଟ ଗୁରୁ
ଧର୍ମ ବୋଇଲା ଯାହା ତୁ କେମନ୍ତେ ବିଚାରୁ ।
ବିପ୍ରର ମୁଖୁଁ ବାହାର ହେବ ଯେଉଁ କଥା
ତାହା କେ ଅନ୍ୟଥା କରି ପାରିବ ସର୍ବଥା ।
ଦ୍ରୋଣ ବୋଇଲେ ତୁମ୍ଭେ ହୋ ଲକ୍ଷେ ନରପତି
ମୋତେ ଯେ ପୁଚ୍ଛାକଲେ ମୁଁ କହିବି ଯୁକତି ।
ଧର୍ମ ଅର୍ଥ ମୋକ୍ଷ କାମ ଏ ଚାରିବର୍ଗକୁ
ବିଷ୍ଣୁ ଥାଉଁ ଥାଉଁ ଅର୍ଘ୍ୟ ନ ଦେଇ କାହାକୁ
ଏସନକ ବିଚାର ଯେ ଅଛି ଶାସ୍ତ୍ରଯୋଗେ
ମୁଁ ତାହା କହିଣ ଅଛି ବ୍ୟାସଙ୍କର ଆଗେ ।
କାଶୀଦେଶ ରାଜା ତହୁଁ ଦ୍ରୋଣଙ୍କୁ କହିଲେ
ଦିଅନ୍ତୁ ପାଦ୍ୟାର୍ଘ୍ୟ ସର୍ବେ ନୃପତି ବୋଇଲେ ।
ଦ୍ରୋଣଗୁରୁ ବୋଇଲେକ ଶୁଣ ଯେ ଯୁଧିଷ୍ଠି
ଶ୍ରୀକୃଷ୍ଣ ଚରଣେ ଦିଅ ପାଦ୍ୟ ଅର୍ଘ୍ୟ ଗୋଟି ।
ଶୁଣିଣ ଯୁଧିଷ୍ଠି ଦେବ ବୋଇଲେ ସାନନ୍ଦେ
ଜୟ ତୁ ଜଗନ୍ମୋହନ ପରମ ଆନନ୍ଦେ ।
ଜୟ ଜଗତ ପୁରୁଷ ସର୍ବଜନ ଚିନ୍ତା
ଯୋଗୀଜନ ଶରଣ ତୁ ଅଟୁ ବରଦାତା ।
ଶ୍ରୀକରେ ଯୁଧିଷ୍ଠି ଦେବ ପାଦ୍ୟ ଅର୍ଘ୍ୟ ଘେନି
କରେ ପଖାଳିଲେ କୃଷ୍ଣଙ୍କର ପାଦ ବେନି ।
କୋଟିଏ ତୀର୍ଥ ଘେନିଣ ପୁଷ୍କର ସ୍ନାହାନେ
ଆକଶରୁ ପୁଷ୍ପବୃଷ୍ଟି କଲେ ଦେବଗଣେ ।
ମସ୍ତକରେ ସୁବାସିତ କୁସୁମର ଗଭା
ଜଗନ୍ମୋହନ ଦିଶନ୍ତି ଅତିଶୟ ଶୋଭା ।
ସପତସରି ମାଳା ଯେ ଅଷ୍ଟରତ୍ନେ ଖଞ୍ଜା
ଶ୍ରୀକୃଷ୍ଣଙ୍କ ଅଙ୍ଗେ ନେଇ ଦେଲେ ଧର୍ମରାଜା ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜ
ମୋହନ ରୂପେ ରାଜନ୍ତି ପ୍ରଭୁ ଦେବରାଜ ।
ଅନେକ ସମ୍ପଦ ଦେଲେ ଧର୍ମ ଭଗବାନେ
ସାନନ୍ଦରେ ସବୁ ତାହା ଘେନିଲେ ମୋହନେ ।
ବିଜୟେ ଦୁଷ୍ଟମାନେ ଯେ ଏକଇ ଆସନେ
ପାଣ୍ଡବଙ୍କର ଚରିତ୍ର ଦେଖିଣ ନୟନେ ।
ବିଚାରିଲେ କୋଟିପାଟେ ଆମ୍ଭ ଅଭିଷେକୀ
ବସୁଧା ଧାରଣ ପୁଣି ଅଟୁ ପୃଥିବୀକି ।
ଆମ୍ଭଙ୍କୁ ପାଦାର୍ଘ୍ୟ ଦେଇ ନ କଲା ବରଣ
ଭୂମିଧାରଣ ଅଟୁ ଯେ ଏ ମଧ ଭୁବନ ।
ନନ୍ଦର ପୁଅ ଗଉଡ଼ କହ୍ନାଇ ଅଟଇ
ତାକୁ ଅର୍ଘ୍ୟ ଦେଲା ବଡ଼ ସଙ୍କଟ ଏ ହୋଇ ।
କେହି କିଛି ନ ବୋଇଲେ ହୋଇଲେକ ତୁନି
ଇନ୍ଦ୍ରପ୍ରାୟ ବସିଲେ ସେ ଅଭିଷେକ ଘେନି ।
ଶକୁନି ବୋଇଲା ଚାହିଁ ସେ ଶିଶୁପାଳକୁ
କୃଷ୍ଣ ଅର୍ଘ୍ୟ ଘେନେ କେହ୍ନେ ଯୋଗାଇ ମନକୁ ।
ସଂସାର ଶୁଭଇ କୃଷ୍ଣ ଶିଶୁପାଳ ଭ୍ରାତ
ତୋହର ବୋଲକୁ ଛଳ କରିବ ଶ୍ରୀନାଥ ।
ପାରୁ ଯେବେ ବୋଲୁ କି ନା ତୁହି ଶ୍ରୀହରିଙ୍କି
ଶିଶୁପାଳ ବୋଲେ ମୋତେ ପାରିବ କି ରଖି ।
ଶାଲ୍ୱ ପୁଣ୍ଡରୀକ ଦୁର୍ଯ୍ୟୋଧନାଦି ବୋଇଲେ
ତ୍ରୈଲୋକ୍ୟେ କେବା ଜିଣିବ ଆମ୍ଭେମାନେ ଥିଲେ
ତୋର ବଚନକୁ ଯେବେ କୋପିବ ଶ୍ରୀହରି
ଆମ୍ଭେ ସର୍ବେ ମିଳି ତାକୁ ପକାଇବା ମାରି ।
ଯେଉଁ ଲୋକକୁ ଆଶ୍ରିତ ହୋଇଥିବ ମେରୁ
ଯାଅ ଯାଅ ଶିଶୁପାଳ କାକୁ ଭୟ କରୁ ।
ସମୁଦ୍ର ଲଙ୍ଘନ କଲେ କେତେ ମାତ୍ର ପୃଥ୍ୱୀ
ପାଣ୍ଡୁପୁତ୍ରଙ୍କ ଅଗ୍ରତେ କରାଯା ଯୁକତି ।
ଏ ବଚନ ଶୁଣିକରି ଦମଘୋଷ ବାଳ
ହରଷେ ଖଣ୍ଡା ଘେନିଣ ଉଠେ ଶିଶୁପାଳ ।

ବିଜେ କରିଛନ୍ତି ସଭାମଧ୍ୟେ ଦେବହରି
ଭୀମ ନକୁଳ ଅଛନ୍ତି ଖଡ଼ଗ ଉଭାରି ।
ଦମଘୋଷ ପୁତ୍ର ଦୁଷ୍ଟ ବଚନ ପ୍ରକାଶି
ହେ ଧର୍ମ ତୁ ମହାଯାଗ କରିଲୁ ରାଜୁସି ।
ଏଡ଼େବଡ଼ ସମ୍ପଦ ତୁ ଅରଜିଲୁ ପୁଣ୍ୟେ
ନାନା ଅନ୍ନଛତ୍ର ଦେଲୁ ସଭା ବିଦ୍ୟମାନେ ।
ସମସ୍ତଙ୍କୁ ତୁହି ସେବାକଲୁ ମହାରାଜ
କେଉଁ ଦେଶ ରାଜାର ଏ ଅଟଇ ତନୁଜ ।
ଶୁଣି କେ ବୋଲେ ଏ ଜାତ ବସୁଦେବ ଘରେ
କେ ବୋଲଇ ଗୋପେ ପଳାଇଲେ କଂସଡରେ ।
କେ ବୋଲେ ପିତା ଗଉଡ଼ ମାତା ଗଉଡୁଣୀ
ବେପାର ଦଧି ବିକନ୍ତି ପ୍ରତ୍ୟକ୍ଷେ ଏ ଜାଣି ।
ଦୁଇ ବାପ ଏକ ପୁତ୍ର ବର୍ତ୍ତିବା ନିମନ୍ତେ
ଏବେ ପାମରକୁ ପାଦ୍ୟ ଦେଲୁ ତୁ କେମନ୍ତେ ।
ପୁଣି ବୋଇଲା ତୁମ୍ଭେ ଯେ ଅଟ ଜାରଜାତ
ଏକ ମାତା ତୁମ୍ଭର ଯେ ଅଟେ ପାଞ୍ଚପିତା ।
ଏକ ଭାରିଯାକୁ ତୁମ୍ଭେ ପାଞ୍ଚଗୋଟି ଭ୍ରାତା
ବିଭା ହୋଇକରି ଏବେ ହେଉଛ ଭକତା ।
ଯେ ଯାଦବ ଶ୍ରୀକୃଷ୍ଣଙ୍କ ଅଟଇ ପାତକ
ତୁମ୍ଭ ବନ୍ଧୁପଣେ ଏବେ ହେବ ସେହି ଲେଖା ।
ଅବରଣ ଲୋକ ଆଣି କଲ ଯେ ବରଣ
ପଣ୍ଡିତ ଲୋକମାନଙ୍କୁ ବୋଲନ୍ତି ଅଜ୍ଞାନ ।
ଏହି ଅବା ନ ଜାଣିଣ ବରିଲେକ ତୋତେ
ତୁରେ ଗଉଡ଼ ପାଦ୍ୟାର୍ଘ୍ୟ ଘେନିଲୁ କେମନ୍ତେ !
ବାଳୁତକାଳରେ ବଧ କରିଲୁ ପୂତନା
ସ୍ତିରୀହତ୍ୟା ମହାଦୋଷ ତୋହର ତ ଜଣା ।
ଭୂମନ୍ୟୁ ମହାରାଜା ଯେ ସ୍ତିରୀହତ୍ୟା କଲା
ସାତଜନମ୍ ଚଣ୍ଡାଳ ଗୃହେ ଜନ୍ମ ହେଲା ।
ପୂତନା ହତ୍ୟା କଲୁ ତୁ ସ୍ତିରୀହତ୍ୟା ଦୋଷୀ
ଯୁକତେ ପୁଣ୍ୟ ସ୍ଥାନରେ କେହ୍ନେ ଅଛୁ ବସି ।
ଶିଶୁପାଳ ଝିଙ୍ଗାସକୁ ଶୁଣି ବୃକୋଦର
ରାଗେ ଅଧର କମ୍ପାଇ କମ୍ପେ ଥରହର ।
ଲୋଚନରୁ ଅଶ୍ରୁଜଳ ବହେ ମହାରାଗେ
ବୋଲେ ଶିଶୁପାଳ ମୁଣ୍ଡ କାଟିବି ମୁଁ ଆଗେ ।
ଯୁଧିଷ୍ଠି ଦେବ ବୋଇଲେ କୋପ ଛାଡ଼ ବାବୁ
ରାଗ କଲେ ଧର୍ମମାନ ନାଶଯିବ ସବୁ ।
ବୋଲୁ ପଛେ ଶିଶୁପାଳ ନ କର ତୁ ରାଗ
ଦଇବ ଫଳାଇ ଦେବ ସିନା ପରାଭାବ ।
ଧର୍ମେ ଝିଙ୍ଗାସିଲେ ନ ସହନ୍ତି ଦିଗପାଳେ
ଆମ୍ଭର କୋପ ତ ସେ ନ ସହେ ଏତେବେଳେ
ମୋହର ଶପଥ ଆହେ ଶାନ୍ତ ହୁଅ ଭୀମ
ଧର୍ମ ଅଧର୍ମ ସୁମରି ରୁହାଅ ତୋ ତମ ।
ସ୍ୱାମୀର ବଚନେ ଭୀମସେନ ହୋଇ ଶାନ୍ତି
ଯୁଧିଷ୍ଠି ଅନେକ ବାକ୍ୟେ ଭୀମକୁ ବୁଝାନ୍ତି ।
ନ ଜାଣୁ ଭୀମସେନ ରେ ଏଥିର ଚରିତ
ଜଗନ୍ନାଥ ଶିଶୁପାଳ ସହୋଦର ଭ୍ରାତ ।
ସତ୍ୟବ୍ରତ ବୋଲି ବ୍ରହ୍ମବଂଶେ ଏକରାଜା
ଦେବକୀ ବୋଲିଣି ତାର ଏକଇ ତନୁଜା ।
ଯେ ଦୁହିତା ନାମ ତାର ଅଟଇ ଦେବକୀ
ବସୁଦେବେ ବିଭାଦେଲେ ଧର୍ମପଣ ଦେଖି ।
ଆରେକ ଦୁହିତା ନାମ ଅଟେ ଦଇବକୀ
ତାକୁ ବିଭାଦେଲେ ଦମଘୋଷ ନୃପତିକି ।
ଦେବକୀର ଗର୍ଭେ ଉପୁଜିଲେ ଜନାର୍ଦ୍ଦନ
ଦଇବକୀ ଗର୍ଭେ ହେଲା ଶିଶୁପାଳ ଜନ୍ମ ।
ଏକଇ ସୋଦର ଦୁଇ ଭଗିନୀର ସୁତ
ସୋଦର ପଣରେ ମୋହୁଅଛି ଜଗନ୍ନାଥ ।
ଯୁଧିଷ୍ଠି ବଚନେ ଭୀମସେନ ଶାନ୍ତି ଭଜି
ପୁଣ ପୁଣ ଶିଶୁପାଳ କହେ ଗଳଗାଜି ।
ଆରେ ରେ ଗଉଡ଼ ତୁହି ଅଟୁ ବଡ଼ଭଣ୍ଡ
ପୂତନା ନାଶ କରିଲୁ ନାଶକଲୁ ଷଣ୍ଢ ।
ଈଶ୍ୱର ବାହନ ବଧ କଲୁ କାଳେ କାଳେ
ତୋର ହତ୍ୟାଦୋଷ ମୋତେ ଲାଗିଲା ଏବେଳେ ।
ଯେଉଁ ଦେବେ ଧ୍ୟାଉଛନ୍ତି ଋଷି ଯୋଗୀମାନେ
ନାଶ କଲୁରେ ପାମର ତାହାର ବାହନେ ।
ଯେବଣ ଦେବଙ୍କୁ ଧ୍ୟାନ କରନ୍ତି ବ୍ରହ୍ମାଣ୍ଡ
ସେତେବେଳେ ଖପରରେ ଅଛି ଗୋରୁମୁଣ୍ଡ ।
ଗୋହତ୍ୟା ପାତକର ନ ଯାଇ କହନ୍ତେଣ
ସମସ୍ତ ପାପ କରିବା ଲାଭ ବଡ଼ପଣ ।
ଗୋପାଳୁଣୀମାନେ ତୋତେ ସମସ୍ତେ ହେଁ ମାନି
କୁଞ୍ଜବନେ କ୍ରୀଡ଼ା କଲୁ ସେମାନଙ୍କୁ ଘେନି ।
ଆରେ ପାମର ତୁ ଅଟୁ ଭୟାନକ ପାପୀ
ଅଜ୍ଞାନୀ ପାଣ୍ଡବ ତୋତେ ସଭା ମଧ୍ୟେ ସ୍ଥାପି ।
ଯଦୁ ଋଷିଙ୍କର ପୁତ୍ର ଏବେ ବୋଲାଇଲୁ
ପ୍ରତିଗ୍ରହ ଘେନିକରି ସେଠାରେ ରହିଲୁ ।
ସ୍ତ୍ରୀ ହତ୍ୟା ଦୋଷ ଗୋହତ୍ୟା କରଣର ଦୋଷେ
କେମନ୍ତେ ବରତିଅଛୁ ଯଦୁଆ ଏ ଦେଶେ ।
ଯେବଣ ଜନ ବର୍ତ୍ତନ୍ତି ହତ୍ୟାର ବିବାଦେ
ସଂସାରେ ଭଲ ତାହାକୁ ନ ବୋଲନ୍ତି ହାଦେ ।
ଭଣ୍ଡୁ କାର୍ଯ୍ୟ ଘେନିକରି ଅଧର୍ମ ନ ଜାଣି
ଭଣ୍ଡିଲୁ ମିଛେହେଁ ତୁହି ସର୍ବ ଗୋପାଳୁଣୀ ।

ତୋତେ କେହ୍ନେ ସହିବଟି ଧର୍ମ ଏ ମେଦିନୀ
ପୁଣି ପାଣ୍ଡବେ ବରଣ କଲେ ତୋତେ ଆଣି ।
ମରିବା ଜୀଇଁବା ଦୁଇ ତୁ ନ ଜାଣିକରି
ମରିବାକୁ ଭୟ ତୁ ନ କଲୁ ଦେବହରି ।
ଏ ମହାସଭାରେ ଏଡ଼େ ଗାରିମା ତୋହର
ଦ୍ରୋଣ ବୋଇଲେ ତୁ ଶୁଣ ଶିଶୁପାଳ ବୀର ।
ଶ୍ରୀଜଗଦ୍‌ବନ୍ଦନ ନାଥ ଜଗତ ଠାକୁର
ତାହାଙ୍କୁ ଆଉ ବହୁ ତୁ କଟାଳ ନ କର ।
ଯାହାର ହୃଦେ ବସଇ ମହୀ ନବଖଣ୍ଡ
ଲୋମ ଅଗ୍ରତେ ଯାହାର ବସଇ ବ୍ରହ୍ମାଣ୍ଡ ।
ଅନେକ କହିଲୁ ତୁହି ସହିଲେ ସେ ଏତେ
ପ୍ରାଣେ ନାଶକଲେ କିଏ ରଖିବରେ ତୋତେ ।
ଦୋଷ ଅବା ମନ୍ଦ ଅବା ବୋଇଲ କି ବାବୁ
କିଞ୍ଚିତ ଦୋଷେ ତୁ ଅକାରଣେ ନାଶଯିବୁ ।
ଦ୍ରୋଣଙ୍କର ବଦନରୁ ଏହିବାକ୍ୟ ଶୁଣି
ମହାକ୍ରୋଧେ ଶିଶୁପାଳ ଉଠେ ଶିରଝୁଣି ।
ତୁହି ଯାହାଟି ବୋଇଲୁ ଭରଦ୍ୱାଜ ସୁତ
ଆମ୍ଭେ କହୁଅଛୁ ତୋତେ ଏଥିର ଚରିତ ।
ଜରାସନ୍ଧ ଦୁହିତା ଯେ ହେତି ପରହେତି
ତାହାଙ୍କ ବଲ୍ଲଭ ଅଟେ କଂସ ନରପତି ।
ତାହାକୁ ବଧ କରିଲେ ଏହୁ ବାଳକାଳେ
ଦୁହିତାଏ କାନ୍ଦି ପିତା ଆଗରେ କହିଲେ ।
ଭୋ ପିତା ତୁ ତ୍ରୈଲୋକ୍ୟରେ ଅଟୁ ମହାଦେବା
ତୋର ପରା ପିତା ଥାଉଁ ହୋଇଲୁ ବିଧବା ।
ଦୟାସାଗର ଅଟଇ ତୋହର ବୀରଧୃ
ତୋର କନ୍ୟା ହୋଇ ଆମ୍ଭ ଜୀବନ ଅସାଧୁ ।
ଦୁହିତାଙ୍କ କଷ୍ଟ ଆଉ ମାତାଙ୍କ ବିକଳେ
ମଥୁରା ରାଜ୍ୟକୁ ସେହୁ ବାହେ ଅବହେଳେ ।
ବନ୍ଧୁବର୍ଗ ଛାଡ଼ି ପଳାଇଲେ ତାର ଡ଼ରେ
ଦୁଇଭାଇ ଲୁଚିଥିଲେ କୌସ୍ତୁଭ ବନରେ ।
ଦ୍ୱିତୀୟ ଧାଡ଼ିରେ ଦୈତ୍ୟ ବେଢ଼ିଲେ ସେ ବନ
ତହୁଁ ପଳାଇ ଲୁଚିଲେ ଗରିଜା ଅରଣ୍ୟ ।
ସେ ବନସ୍ତକୁ ବେଢ଼ିଣ ବସିଲେ ସେ ବଳେ
ତହୁଁ ପଳାଇଲେ ଏହୁ ପ୍ରାଣର ବିକଳେ ।
କୌସ୍ତୁଭ ମଣ୍ଡଳ ବୋଲି ଏକଇ ବନସ୍ତେ
ତହିଁ ଯାଇ ରହିଲେ ସେ କୁଟୁମ୍ବ ସହିତେ ।
ଚାରଗଣ ମୁଖୁଁ ଦୈତ୍ୟ ବାରତା ପାଇଲା
କଉସ୍ତୁଭ ବନେ ଯାଇ ଏହାଙ୍କୁ ଘେରିଲା ।
ଖଣା ଖୋଳିକରି ଦେଲା ଅନଳ ଲଗାଇ
ନାନା ଜୀବଜନ୍ତୁ ମଲେ ଏହାଙ୍କର ପାଇଁ ।
ଜରାସନ୍ଧ ଭୟେ ତହୁଁ ଏହି ପଳାଇଲା
ଅରୁସା ନାମେ କୁଣ୍ଡଳୀ ନଗ୍ରରେ ରହିଲା ।
ଆମ୍ଭେ ସର୍ବେ ମିଳିକରି ଧାଇଁଲୁ ତହିଁକି
ନାନା ଜୀବ ବଧକଲୁ ନ ପାରିଲୁ ଦେଖି ।
ତହୁଁ ପଳାଇଣ ଏହୁ ପାଶେ ହିମବନ୍ତେ
ଲୁଚିଲେ ବନ୍ଧୁବର୍ଗକୁ ଛାଡ଼ି ବେନିଭ୍ରାତେ ।
ମହାଧାର୍ମିକ ରାଜା ସେ ଅଟେ ଜରାସନ୍ଧ
ଲୁଚିଲା କୁଟୁମ୍ବଙ୍କୁ ସେ ନ କରଇ ବଧ ।
ପୁଣ ପୁଣ ପଳାଇଣ ଗଲେ ବେନିଭ୍ରାତେ
ସଭିଏଁ ଲୁଚିଲେ ଯାଇ ଭୟକରି ଚିତ୍ତେ ।
କଷ୍ଟ ଦେଖି ରାଜା ଦୟା ଏମାନଙ୍କୁ କଲା
ରଣକାଳେ ଜରାସନ୍ଧ ଯାଙ୍କୁ ଉପେକ୍ଷିଲା ।
ତହୁଁ ପଳାଇଣ ଗଲା ହୋଇଣ ବିମୁଖେ .
ଗୋମତ ପର୍ବତେ ଲୁଚେ ଯାଇ ମହାଦୁଃଖେ ।
କକ୍ଷାବନ୍ତ ରାଜାଅଟେ ଜରାସନ୍ଧ ବୀର
ପରବତ ବେଢ଼ିଲା ସେ କରି ଲକ୍ଷେପୁର ।
ପର୍ବତ ପୋଡ଼ିଣ ସେହୁ ଅନଳ ଲଗାଇ
ଅନେକ ଜନ୍ତୁ ମରିଲେ ଏହାଙ୍କର ପାଇଁ ।
ସେହି ଗୋମତୁ ଓହ୍ଲାଇ ପୁଣି ଆମ୍ଭ ଡରେ
କୁଟୁମ୍ବ ଘେନି ରହିଲେ ଏ ମଧୁବନରେ ।
ଘେରାଇ ତହିଁ ରହିଲୁ ଆମ୍ଭେ ଅବହେଳେ
କାଳଦମନ ପଠାଇ ଦେଲୁ ତତକାଳେ ।
ଭାଙ୍ଗିଲା ମଧୁବନ ସେ କରିଲା ବିଧ୍ୱଂସ
ସମୁଦ୍ର ଭିତରେ ଯୋଇ କଲେ ଏହୁ ବାସ ।
କହୁଁ କହୁଁ କୋପଭର ହୋଇ ଶିଶୁପାଳ
ଖଣ୍ଡା ଝମକାଇ ବୀର କରେ ବାହୁବଳ ।
ଶିଶୁପାଳକୁ ଦେଖିଣ ଭୀଷ୍ମ ଆଗବଢ଼ି
ଆରେ ଶିଶୁପାଳ ତୁହି ଅଟୁ ବଡ଼ ରାଢ଼ି ।
ଏଡ଼େ କଟାଳ କିପାଁ ତୁ କରୁ ତାକୁ ଆଜ
ସପତ ବ୍ରହ୍ମାଣ୍ଡ ଆଜ ହୋଇବ ଦହିଯ୍ୟ ।
ଦୁଃସହ ପ୍ରତାପୀ ହୋଇଥିଲେ ଦୁଷ୍ଟମଲ୍ଲେ
ବାଳଖେଳ କୁତୂହଳେ ସବୁ ନାଶଗଲେ ।
ସେ ବୀରମୂର୍ତ୍ତି ଦେଖିଣ ହେଲେ ସର୍ବେ ହତ
ଅଷ୍ଟମଲ୍ଲ ସହିତରେ ହୋଇଲେ ନିପାତ ।
ହେ ଶିଶୁପାଳ କହିଲୁ ଅଷ୍ଟାଦଶ ଧାଡ଼ି
କେତେ କେତେ ସଇନି ଯେ ଗଲେ ତହିଁ ପଡ଼ି ।
ଗୋମତ ଯୁଦ୍ଧର ତୁହି କହିଲୁ ଯେ କଥା
ଆମ୍ଭେମାନେ ଜାଣୁ ତାର ସକଳ ବାରତା ।
ତେଇଶ କ୍ଷଉଣୀ ବଳ ତୁମ୍ଭେ ଘେନିଗଲ
ସତର କ୍ଷଉଣୀ ତହିଁ ସୈନ୍ୟ ମରାଇଲ ।

କେତେ କୃତ୍ୟ କଲେ ତହିଁ କୃଷ୍ଣ ବଳରାମ
ପଳାଇଲା ତୁମ୍ଭ ରାଜା ହାରିଣ ସଂଗ୍ରାମ ।
କାଳଦମନ ତୁମ୍ଭର ଗଲା ବିଶୁଆସେ
ତାଙ୍କୁ ଭେଟି ନ ଅଇଲା ଆଉ ତୁମ୍ଭ ପାଶେ
ଅନେକ ପ୍ରତିଜ୍ଞା ତହିଁ କରୁଥିଲା ଜରା
ବେଳେ ସହି ନ ପାରିଲା ଭୀମସେନ ଭାରା ।
ଛାର ପାମର ବୋଲିଣ ଆପଣେ ନ ମାରି
ସେବକ ହସ୍ତେ ଜରାକୁ ଦେଲେ ବଧକରି ।
ଆରେ ରେ ତ୍ରିକାଳ ବାସୁଦେବ ନାଶକଲା
ତୁମ୍ଭେ ପଳାଇଲ ପୁଣି ମଧ୍ୟସ୍ଥ ମରିଲା ।
ଅଜ୍ଞାନେ ମୁରୁଖ ବାଇ ବିକଳ ସ୍ୱଭାବ
ନାଶକର ଆଗେ ତୁମ୍ଭେ କହ କିସ ଗର୍ବ ।
ଶିଶୁପାଳ ବୋଲେ ତୁରେ ନ ଜାଣୁ ଗାଙ୍ଗେୟ
କ୍ଷତ୍ରୀ ହୋଇ ପଳାଇଲେ କିସ ଧର୍ମ କହ ।
ଭୀଷ୍ମ ବୋଇଲେ ଭୀଷ୍ମକ ଅଟେ କେଡ଼େ ବୀର
ଲକ୍ଷେକ ରାଜା ଆଣିଣ କଲା ସ୍ୱୟମ୍ବର ।
ସ୍ୱୟମ୍ବରେ ସର୍ବ ନୃପ ଅଛନ୍ତି ଯେ ବସି
ପାଞ୍ଚଦିନେ ରାମ କୃଷ୍ଣ ପ୍ରବେଶିଲେ ଆସି ।
ରାଜାମାନେ ବିଚାର ଯେ କରନ୍ତି ଆସ୍ଥାନେ
ନନ୍ଦ ଗଉଡ଼ ୟା ପିତା ଅଟେ ବିଦ୍ୟମାନେ ।
ଆମ୍ଭେ ଯେ ରାଜକୁମାରେ ଅଛୁ ଏଥେ ବସି
କେହ୍ନେ ଗଉଡ଼ ବସିବ ଏ ସଭାରେ ଆସି ।
ସଭାସ୍ଥଳେ ନ ଛାଡ଼ିଲେ ତାଙ୍କୁ ଏହା କହି
ତିନି ପାବଚ୍ଛ ତଳରେ ରହିଲେ ଦ୍ୱିଭାଇ ।
ରାଜାମାନେ ନ ଚିହ୍ନିଲେ ବହି ମତ୍ତଗର୍ବ
ଏସନ ଅଟଇ ଜାଣ ଦୁଷ୍ଟଙ୍କ ସ୍ୱଭାବ ।
ରାଗେ ଜଗନ୍ନାଥ ତହୁଁ ଗଲେ ଆଗସରି
ଆଜ୍ଞାଦେଲେ ଦେବରାଜ ଗରୁଡ଼େ ହକାରି ।
ବିନତାସୁତ ମାଇଲା ପକ୍ଷକୁ ତୁରିତେ
ସ୍ୱୟମ୍ବର ଭଗ୍ନ ହେଲା ପକ୍ଷ ବାତାଘାତେ ।
ସମସ୍ତ ରାଜାଏ ତହୁଁ କୁଟାପ୍ରାୟେ ଉଡ଼ି
ସହସ୍ର ଯୋଜନେ ଯାଇ ଘୋଡ଼ାହାତୀ ପଡ଼ି ।
ସେ ସ୍ୱୟମ୍ବର କାଳେ ଯେ ଆମ୍ଭେ ତହିଁ ଥିଲୁ
ସଭାରୁ ତିରିଶଯୁଣେ ଉଠିଣ ପଡ଼ିଲୁ ।
ବୋଲାଇ ଥିଲୁ ଯେ ଦମଘୋଷର ଦୁଲଣା
ଚକ୍ଷୁଥାଉ ଆରେ କିପାଁ ହେଉଅଛୁ କଣା ।
ରୁକ୍ମିଣୀର ବର ହେଉଥିଲ ଶିଶୁପାଳ
ବିଭାରେ ବସିଲୁ ଛାୟାମଣ୍ଡପର ତଳ ।
ପ୍ରପଞ୍ଚ ବର ବେଶରେ ହୋଇଲୁ ବରଣ
ଅବଜ୍ଞାରୁ କନ୍ୟା ଗଲା ନେଇ ନାରାୟଣ ।

କାଳଦମନ ସହିତେ ସାଜି ଜରାସନ୍ଧ
ବଳ ସୈନ୍ୟ ମଗାଇଲା ମନେ ବହି ଛନ୍ଦ ।
ଦୟାସାଗର ହରି ସେ କକ୍ଷା ଜଗନ୍ନେଠି
ତୁମ୍ଭ ଦେଖନ୍ତେ ରୁକ୍ମଣ କଲେ ସାତବେଣ୍ଟି ।
କୁତୂହଳେ ନ ପାରିଣ ତ କଲ ପ୍ରପଞ୍ଚ
ନିର୍ଲ୍ଲଜ ଜୀବନ ଘେନି କିପାଁ ତୁମ୍ଭେ ଅଛ ।
ଭୀଷ୍ମଙ୍କ ଝିଙ୍ଗାସ ବାକ୍ୟ ଏହିପରି ଶୁଣି
ରାଗେଣ ଶିଶୁପାଳ ଯେ ଉଠେ ଶିରଝୁଣି ।
ପୁଣ ପୁଣ ମତ୍ତଗର୍ବେ କରଇ ପ୍ରତିଜ୍ଞା
ମହତ ଲୋକ ବଚନ କରଇ ଅବଜ୍ଞା ।
ଗର୍ଜିଣ ଉଠି ଅଧରେଦଶନଙ୍କୁ ଚାପି
କରେ ଗଦା ବୁଲାଇଣ ଉଠେ କାମରୂପୀ ।
ଏଡ଼େ ଅଧର୍ମ ଅର୍ଜିଲୁ ତୁହିରେ ଯୁଧିଷ୍ଠି
ଶୁଣହେ ଗାଙ୍ଗେୟ ତୁମ୍ଭେ ଏହାର ଯେ ଗୋଷ୍ଠୀ
ବରଦାୟକ ଦ୍ୱିଜର ଯେଉଁପରି ରୀତି
ତୁମ୍ଭ ଆଗରେ କହୁଛି ମୁହିଁ ସେ ଭାରତୀ ।
ବରଦାୟକ ବୋଲିଣ ଏକଇ ବ୍ରାହ୍ମଣ
ଅତି ଦୁଃଖେ ସେହି ଦ୍ୱିଜ ବଞ୍ଚୁଥିଲା ଦିନ ।
ଅନେକ ଦାନ ସେହୁ ସେ ଘେନେ ଧନଲୋଭେ
ଏକାକୀ ବର୍ତ୍ତଇ ସେହୁ କୁଟୁମ୍ବ ଅଭାବେ ।
ଏମନ୍ତେ ଚତୁର୍ଥ ବୟ ହୋଇଲା ସେ ଭ୍ରମ
ଛାଡ଼ିଲା ସବୁ କରମ ଦିଶେ ଆସି ଧର୍ମ ।
ଏକାକୀ ଲୋକ ଯେହୁ ତ ଏକେ ଭିକ୍ଷାବାସୀ
ତଥାପି ସେ ନ ପାରିଲା ଉଦରକୁ ପୋଷି ।
ନାନା ଦୁଃଖ ପାଏ ବରଦାୟକ ବ୍ରାହ୍ମଣ
କ୍ଷୁଧାରେ ବିକଳ ତାର ହୁଏ ପଞ୍ଚପ୍ରାଣ ।
ସ୍ୱଦେଶ ଛାଡ଼ିଣ ସେହୁ ଗଲାକ ବିଦେଶ
ଜପାମାଳା କରେ ଧରି ପିନ୍ଧେ କକ୍ଷା ବାସ ।
ଉଜାଣ ବୋଲି କରିଣ ଏକଇ ନଗରୀ
ମଳୟାନୀଳ ତହିଁରେ ଅଟେ ଅଧିକାରୀ ।
ବଡ଼ ସାଧୁ ସମ୍ପଦେ ସେ ଅଟେ ଲକ୍ଷ୍ମୀଧର
ଅନେକ ବୋଇତ ସେହୁ କରଇ ବେଭାର ।
ତାହା ପିଣ୍ଡାରେ ବସିଲା ସେହୁ ଜୟବନ୍ତ
ଆସିଣ ବେଦ କାଣ୍ଡିକୁ ପଢ଼ଇ ଅତିଥ ।
ଧାର୍ମିକ ଦେବ ସାଧବ କରଇ ଗୌରବ
ପୁତ୍ର ପୌତ୍ର ଘେନିଣ ସେ କରେ ଭକ୍ତିଭାବ ।
ଅନେକ ଭକତି କଲେ ତହିଁ ଜନେ ଆସି
ମଉନ ହୋଇଥାଇ ସେ ନ ଦେଇ ସମ୍ଭାଷି ।
ଦୃଢ଼ ଆସନେ ବସିଣ କରେ ନାନା କର୍ମ
ବଡ଼ ଧାର୍ମିକ ଦେଖିଣ ତୋଷ ହୁନ୍ତି ଜନ ।

ମିଛେହେଁ ବୋଲେ ମୋହର ଅନ୍ନଭୋଗ ନାହିଁ
ଶୂନ୍ୟେ ପବନ ଭେଦଇ ନିରଞ୍ଜନ ଧ୍ୟାୟି ।
ନିଷ୍ଠା ତାର ଦେଖି ଜନେ ବହୁ ତାକୁ ମାନି
ବେନି ଚରଣ ପଖାଳି ଉଦକହିଁ ଘେନି ।
ବଡ଼ ଧାର୍ମିକ ସେ ଅତି ଲୋକଙ୍କର ପ୍ରିୟ
ପରାପର ନାହିଁ ତାର ସବୁ ଏକମୟ ।
ଯେତେବେଳେ ନିଦ୍ରାଯାନ୍ତି ସେହି ଗ୍ରାମଜନ
ଗୁପତେ ରାନ୍ଧଣାଶାଳେ ପଶଇ ବହନ ।
ନାନା ବ୍ୟଞ୍ଜନ ଅନେକବିଧ ରସମାନ
ହାଣ୍ଡିରେ ହସ୍ତ ଭରିଣ କରଇ ଭୋଜନ ।
ଉଦର ପୂରିଲେ ପୁଣି ବାହାରି ସେ ଆସି
ମହାନିଷ୍ଠା ପାଇଁ ମଉନରେ ଥାଏ ବସି ।
ଏହିରୂପେ ମାସ କେତେ ଅତୀତ ହୋଇଲା
ସୁପକ୍ୱ ଅନ୍ନ ତାହାର ସବୁ ଭକ୍ଷ ହେଲା ।
ରଜନୀ ପ୍ରଭାତେ ପୁଣି ଦେଖେ ସୂପକାର
ସୁସ୍ୱାଦୁ ଦ୍ରବ୍ୟମାନ ଯେ ନ ଥାଇ ହାଣ୍ଡିର ।
କେବଣ ଚରିତ ଏହା ଜାଣିବା କେମନ୍ତେ
ଏସନ ଆଶ୍ଚର୍ଯ୍ୟ କଥା ନ ଜାଣିଲି ଏଥେ ।
ଏହିରୂପେ ଗଲା ଦଶମାସ ପରିଯନ୍ତେ
ଶରୀର କଷ୍ଟ ହୋଇଲା ତାର ଅକସ୍ମାତେ ।
ଶିଶୁପାଳ ବୋଲେ ଭୀଷ୍ମ ସାବଦାନେ ଶୁଣ
ଦିନ ବଞ୍ଚେ ଏହିପରି ପାତି ଭଣ୍ଡପଣ ।
ପ୍ରତିଦିନ ଯହୁଁ ଅନ୍ନ ବ୍ୟଞ୍ଜନ ତୁଟିଲା
ପରକ୍ଷନ୍ତେ ଲୋକଙ୍କୁ ଯେ କିଛି ନ ଅଣ୍ଟିଲା ।
ସେ ସୂପକାରକୁ ସର୍ବେ ଦେଲେ ଯହୁଁ ଗାଳି
ବିକଳରେ ଦ୍ୱିଜବର ପୁନଃ ପୁନଃ ଭାଳି ।
ଦିନେ ରାନ୍ଧଣାଶାଳରେ ଦ୍ୱିଜବର ଟାକି
ଛଦମ ବ୍ରାହ୍ମଣ ମଧ୍ୟେ ପଶିବାର ଦେଖି ।
ହାଣ୍ଡିରୁ ଖାଆନ୍ତେ ବେଗେ ପିଟେ ମୁଣ୍ଡେ ବାଡ଼ି
ଫାଟିଣ ବ୍ରାହ୍ମଣ ମୁଣ୍ଡ ପଡ଼େ ମୁହଁମାଡ଼ି ।
କରେ ସୂପକାର ଘେନିକରି ଦୀପାବଳି
ନଗ୍ର ଲୋକମାନେ ତହିଁ ହେଲେ ଯାଇଁ ମେଳି ।
ସମସ୍ତେ ଆସି ଦେଖିଲେ ଛଦମ ବ୍ରାହ୍ମଣ
ଚଣ୍ଡାଳ ହାତେ କାଢ଼ିଣ ପକାଇଲେ ପୁଣ ।
ସର୍ବେ ଝିଙ୍ଗାସନ୍ତି ତାର ପ୍ରପଞ୍ଚ ପ୍ରକୃତି
ସେହି ପ୍ରକାରେ ଅଟଇ ଏହାର ଯୁକତି ।
ଶିଶୁପାଳ ବୋଲେ ଭୀଷ୍ମ କହିଲେ ଯେ କଥା
ଏହାର ଚରିତ ଅଟେ ଏମନ୍ତ ବ୍ୟବସ୍ଥା ।
ପାମର ପାଣ୍ଡବେ ଏହା ନ ଜାଣନ୍ତି ଖଣ୍ଡି
ଏହି ରୂପରେ ଗଉଡ଼ ଖାଉଅଛି ଭଣ୍ଡି ।

ଶିଶୁପାଳର ବହୁତ ପ୍ରତିଜ୍ଞାକୁ ଶୁଣି
ନୟନ ବୁଲାନ୍ତି ଚକ୍ରପ୍ରାୟ ଚକ୍ରପାଣି ।
ଦମଘୋଷ ବୋଇଲାରେ ଶୁଣ ଶିଶୁପାଳ
ମୃତ୍ୟୁକୁ ଆଶ୍ରୟ କରି କରୁ ତୁ କଟାଳ ।
ଜଗନ୍ନାଥଙ୍କ ଚରଣେ ଦମଘୋଷ ନମି
ବୋଲେ ଶିଶୁପାଳ ଦୋଷ ଉଦ୍ଧର ହେ ସ୍ୱାମୀ
ଟେଳା ମାଇଲେ କି ସ୍ୱାମୀ ଟଳଇ ମାଳ
ଧୂଳିରେ ପୋତିଲେ ପୋତା ହୁଏ କି ଆକାଶ
ଦୁଷ୍ଟଙ୍କର ଦୋଷୁ ଦେବ ତୁହି ଉଦ୍ଧାରତା
ତେଣୁ ତୁମ୍ଭ ନାମ ଅଟେ ଜଗତ କରତା
ସ୍ୱାମୀ ଯମୁନା କୂଳରେ ଖେଳ କୁତୂହଳେ
ଶିଶୁପାଳ ନାମ ଯାକୁ ଦେଲେ ତେତେବେଳେ
ଶରଣ ସମ୍ଭାଳ ତୁହି ଆହେ ମହାପ୍ରଭୁ
ଅରିଷ୍ଟ ଉତପାତରୁ ଉଦ୍ଧାରନ୍ତା ସବୁ ।
ସର୍ବଜନ ଉଦ୍ଧାରନ୍ତା ସର୍ବଜନ ଚିନ୍ତା
ଭକତ ଅଭକତ ତୁ ସକଳ କରତା ।
ଭାବଗ୍ରାହୀ ଜଗନ୍ନାଥ ଭକତ ବତ୍ସଳ
କଳଙ୍କ ଧ୍ୱଂସନ ନାମ ତୋର ସର୍ବ ଖେଳ ।
ସକଳ ବ୍ରହ୍ମାଣ୍ଡ ନାଥ ତୁହି ସର୍ବ ଚକ୍ଷୁ
ଛାର ଶିଶୁପାଳେ କିମ୍ପାଁ କୋପ କରୁଅଛୁ ।
ମୁଣ୍ଡେ ପେଲିଲେକି ଅବା ପୃଥିବୀ ଟଳଇ
କିଞ୍ଚିତ ପାମର ଶିଶୁପାଳ ତ ଅଟଇ ।
ଦୋଷ ଉପେକ୍ଷା କରିଣ ଘେନିବା ଦଇନୀ
ଶ୍ରୀକୃଷ୍ଣ ଚରଣ ସଦା ସେବେ ଶୁଦ୍ରମୁନି ।
ଶ୍ରୀହରି ବୋଇଲେ କିମ୍ପାଁ ବିନୟୀ ତୁ ହେଉ
ମୋତେ କିସ ତିଆରୁ ତୋ ପୁତ୍ରକୁ ନ କହୁ ।
ନାଶଯିବା କାଳ ଆସି ହୋଇଲେକ ପ୍ରାଣୀ
ଅପରାପର କଥା ସେ କିଛିହିଁ ନ ଜାଣି ।
ଶୁଣି ଗରଜଇ ଶିଶୁପାଳ ମହାବୀର
ଅପରାପର କି ବୋଲ ମୋତେ ରେ ପାମର ।
ଗୋପାଳ ମାତ୍ରକ ତୋର କିସ କରି କକ୍ଷା
ଗୋପାଳୁଣୀ ପଲ ଘେନି ଥିବୁ ତୋର ବାଞ୍ଛା ।
ତୁହି କିମ୍ପାଇଁ ଆସୁରେ ରାଜୁସି ସଭାକୁ
କିସ ସାମରଥ ତୁଲେ ଅର୍ଘ୍ୟ ଘେନିବାକୁ ।
କୂପ ଭଲ ହେଲେ ହୁଏ ସାଗରେ କି ସରି
ବ୍ରାହ୍ମଣ ଚଣ୍ଡାଳ ଲୋକେ କିବା ଲକ୍ଷ୍ୟ କରି ।
ସେବତୀ ପୁଷ୍ପେ ମିଶାଉ ଆଣି ଅନ୍ୟ ଫୁଲ
ଗୁଞ୍ଜପୁଞ୍ଜ ନେଇ କରୁ ମାଣିକ୍ୟର ତୁଲ ।
ସ୍ଫଟିକ ଗୁନ୍ଥୁଛୁ ତୁହି ହୀରା ସଙ୍ଗେ ନେଇ
ଭଣ୍ଡୁଛୁ ପାଣ୍ଡବେ ଜଗନ୍ନାଥ ନାମ ବହି ।

ଆରେ ଗଉଡ଼ କାହିଁକି କଥା ନ କହୁଛୁ
ମଉନ ହୋଇ ସଭାରେ କିମ୍ପାଁ ବସିଅଛୁ ।
ଚାପୋଡ଼େ ମାରି ମୁଁ ତୋର ଛିଣ୍ଡାଇବି ଶିର
ଜୀବନେ ଗତି ପାଇବୁ ଇଷ୍ଟକୁ ସୁମର ।
ପାଶୁପତ ହଲାଇଣ ଓଷ୍ଟକୁ କାମୋଡ଼ି
ଆକର୍ଷିଣ ଶିଶୁପାଳ ଉଠେ ଛାଡ଼ି ରଡ଼ି ।
ଯହୁଁ ଦେବ ଜଗନ୍ନାଥ ଦେଖିଲେ ତା ରଙ୍ଗ
କଦଳୀ ପତ୍ର ପରାୟେ କମ୍ପାଇଲେ ଅଙ୍ଗ ।
ଭାବିଲେ ମୋଡ଼ି ୟା ମୁଣ୍ଡ ପକାଇବି ତଳ
କିନ୍ତୁ ଏ ସଭାରେ ହେବ ଏହିକ୍ଷଣି ଗୋଳ ।
ପୁନରପି ହୃଦମଧ୍ୟେ ଭାଳନ୍ତି ଶ୍ରୀହରି
ସୁଦର୍ଶନ ଚକ୍ରେ ୟାକୁ ପକାଇବି ମାରି ।
ସ୍ଥିରକରି ସୁଦର୍ଶନେ ହରି ଆଜ୍ଞା ଦେଲେ
ଶିଶୁପାଳ ଶିର ଛେଦି ପକାଅ ବୋଇଲେ ।
ଅନ୍ତରୀକ୍ଷରୁ ପଡ଼ିଲା ଚକ୍ର ସୁଦର୍ଶନ
ଶିଶୁପାଳ ମୁଣ୍ଡ ଛିଡ଼ି ପଡ଼ିଲା ବହନ ।
ପ୍ରତ୍ୟକ୍ଷରେ ଦେଖିଲେ ତା ଦୁଷ୍ଟରାଜାମାନେ
ବୋଇଲେ ଏ ନାଶଗଲା ଆପଣା ଅଜ୍ଞାନେ ।
ଭୀଷ୍ମ ଦ୍ରୋଣ ବୋଇଲେ ନ କର ତୁମ୍ଭେ ଗୋଳ
ଧରମକୁ ଲଙ୍ଘିଲେଟି ଜୀବନ ବିଫଳ ।
ଅକାରଣେ ଜଗନ୍ନାଥେ ବହୁ ଝିଙ୍ଗାସିଲା
କାଳଚକ୍ର ଶିରେ ପଡ଼ି ପରାଣ ଛାଡ଼ିଲା ।
ନିରାକାର ପୁରୁଷ ଯେ ନ ପାରିଲେ ସହି
କ୍ଷଣକରେ ହରିନେଲେ ତାର ଜୀବନହିଁ ।
ଆସ୍ଥାନରେ ବସିଥିଲେ ଯେତେ ଦୁଷ୍ଟରାୟେ
ପଳାଇଲେ ସେ ସଭାରୁ ପାଇ ମହାଭୟେ ।
ଉଠିଲା ସଭାରେ ମହା କୋଳାହଳ ଧ୍ୱନି
ଯୁଧିଷ୍ଠି ସର୍ବରାଜାଙ୍କୁ ସମ୍ଭାଷିଲେ ପୁଣି ।
ମହାଗୋଳ ଦେଖିକରି ବ୍ୟାସ ମହାଯତି
ପାତକ ଧ୍ୱଂସ ନିମନ୍ତେ ଦେଲେକ ଆହୁତି ।
ଷଡ଼ଶ୍ୱାସେ ଯୁଧିଷ୍ଠିର ଲକ୍ଷେ କୁମ୍ଭ ଢ଼ାଳି
ଶୂନ୍ୟବାଣୀ ହେଲା ପଣ୍ଡୁ ସ୍ୱର୍ଗେ ଗଲେ ଚଳି ।
ବ୍ରହ୍ମହତ୍ୟା ଦୋଷଯାକ ଅଙ୍ଗୁ ଗଲା ପାର
ବସିଲେ ଅମରପୁରେ ପଣ୍ଡୁ ନୃପବର ।
ସମସ୍ତ ବ୍ରାହ୍ମଣେ ତହିଁ କଲେ ବେଦଧ୍ୱନି
ଧୃତରାଷ୍ଟ୍ରଙ୍କୁ ପୂଜିଲେ କରେ ଅର୍ଘ୍ୟଘେନି ।
ଅନେକ ସମ୍ଭାରେ କଲେ ରାଜାମାନେ ପୂଜା
ବହୁତ କଣୟ ଦେଲେ ଧର୍ମର ତନୁଜା ।
ବେଗେ ରାଜାମାନଙ୍କୁ ଯେ କରି ସମାର୍ଜନ
ଲେପନ୍ତି କର୍ପୂର ଆଦି ସୁଗନ୍ଧ ଚନ୍ଦନ ।
ରତ୍ନ ବସ୍ତ୍ର ଅଳଙ୍କାର ଶରୀରରେ ଭରି
ଚଳନ୍ତି ରାଜାମାନେ ସେ ଯେ ଯାହାର ପୁରୀ ।
ସମାର୍ଜି ରାଜାମାନଙ୍କୁ ପଠିଆନ୍ତି ଦେଶ
ବହୁ ବିନୟେ କହିଲେ କରିଣ ବିଶ୍ୱାସ ।
ବିଭୀଷଣାଦି ରାଜାଙ୍କୁ ଦେଲେ ପୁଣି ଆଜ୍ଞା
ଯେ ଯାହା ଦେଶରେ ଥିବ ନ କର ଅବଜ୍ଞା ।
ଆଜ ଅବଧି ଆମ୍ଭର ଥିବ ଯେଉଁ କାର୍ଯ୍ୟ
ଦୂତ ପେଷନ୍ତେ ଆସିବ ସର୍ବେ ହୋଇ ସଜ ।
ଏକ ରାଜା ନ ଲଙ୍ଘିବ ଆରେକର ସୀମା
ପାବନୀ ବୋଲେ ଜାଣିଥା ମୋର ନାମ ଭୀମା ।
ସର୍ବ ରାଜନେ ବାରୁଣାବନ୍ତେ ପରଣାମି
ତୁମ୍ଭ ପାଦେ ଖଟିଥିବୁ ସଦା ଦେବସ୍ୱାମୀ ।
ରିହଅଛୁ ଆମ୍ଭେ ଏଥେ ଯେତେ ଦଣ୍ଡଧର
ଲକ୍ଷେ ରାଜାଙ୍କ ଉପରେ ଭୀମ ଯେ ଠାକୁର ।
ଗଙ୍ଗାପାର ହୋଇ ଗଲେ ସର୍ବ ରାଜାମାନେ
ବାରୁଣାବନ୍ତୁ ବାହାର ହେଲେ ଭୀମସେନେ ।
ନାରଦ ଜମାଗୋଷ୍ଟଙ୍କୁ କରାଇଲେ ପ୍ରୀତି
ଏକଆତ୍ମା ହୋଇ ଚଳିଲେ ବେନି ନରପତି ।
ତ୍ରିଗର୍ତ୍ତ ବୋଇଲା ମୁହିଁ ମଗଧାଧିପତି
ମୋହର ରାଜ୍ୟ ଘେନିଲା ବିରାଟ ନୃପତି ।
ଦୁହାଁଳ ଦୁଇପଦ୍ମ ଯେ ବାରଲକ୍ଷ ଗାଈ
ଅଣ୍ଡିରା ନବସହସ୍ର ବସ୍ତା ଲକ୍ଷେ ମାଈ ।
ଭୀମସେନର ବଚନେ ତ୍ରିଗର୍ତ୍ତେଶ ଗଲା
ତାହା ଦେଖି ଦୁର୍ଯ୍ୟୋଧନ ଆଶ୍ଚର୍ଯ୍ୟ ହୋଇଲା
ଯୁଧିଷ୍ଠିଙ୍କ ବାକ୍ୟେ ଦମଘୋଷ ପରଣାମି
ଶିଶୁପାଳକୁ ଦହନ କରିବା ହେ ସ୍ୱାମୀ ।
ଯେ ଯାହା ଅର୍ଜିଲା କର୍ମ ଭୁଞ୍ଜିବ ଯୁକତେ
ଅପାର କାଳରୁ ତାହା ଦିଶୁଥିଲା ମୋତେ ।
ଯୁଧିଷ୍ଠିର ଆଜ୍ଞାଦେଲେ କରାଅ ଦର୍ଶନ
ଲୋକମାନେ ଶବକୁ ଯେ ଅଣାଇ ବହନ ।
ଦିବ୍ୟ ପଲ୍ୟଙ୍କରେ ତାକୁ ଶୁଆଇଲେ ନେଇ
ଗଙ୍ଗାନଦୀ କୂଳଯାଏ ନେଲେ ତାକୁ ବହି ।
ମୃତ ପିଣ୍ଡକୁ ଦହନ କଲେ ଶମଶାନେ
ଅନେକ ଦାନ ଦେଲେ ସେ ବୁଭୁକ୍ଷିତ ଜନେ ।
ବ୍ରାହ୍ମଣମାନଙ୍କୁ କଲେ ବହୁତ ସେ ପୂଜା
ଅନେକ ଭକତି କଲେ ତହିଁ ଧର୍ମରାଜା ।
ବସନ କୁଣ୍ଡଳ ଆଦି ଧୂପ ନଇବେଦ୍ୟ
ପୁଣ୍ୟତୋୟା ନଦୀତୀରେ ଶ୍ମଶାନ ସମ୍ପଦ ।
ଭଣ୍ଡାରରେ ରହିଥିଲା ବହୁତ ଯେ ଧନ
ଚଉବିଂଶ ଦିନ ଯାଏ ଦେଲେ ନାନାଦାନ ।

ରାଜାମାନଙ୍କୁ ଦେଲେ ଯେ ପୁଣି ଜଗଦ୍‌ବଳା
ସୀମନ୍ତିନୀ କୁଣ୍ଡଳାଦି ଦେଲେ ରତ୍ନମାଳା ।
ନାନାବିଧ ଅଳଙ୍କାରେ ଦେବାଙ୍ଗ ବସନ
ଶାଢ଼ୀମାନ ପାଇଲେ ସେ ସକଳ ରାଜନ ।
ସମସ୍ତ ରାଜାଏ ତାଙ୍କୁ ସାଧୁ ସାଧୁ ଭଣି
ପଣ୍ଡୁର ଆପଦ ଗଲା ସ୍ୱର୍ଗେ ଶୁଭେ ବାଣୀ ।
ଆହେ ଯୁଧିଷ୍ଠିର ଆମ୍ଭ ଆଜ୍ଞା ଘେନି ବର୍ତ୍ତି
ଶତ୍ରୁମାରି ପଞ୍ଚରାଜ୍ୟେ ହୁଅ ଅଧିପତି ।
ଋଷିମାନେ କଲେ ତହିଁ କଲ୍ୟାଣକୁ ବାଞ୍ଛା
ଅବିଳମ୍ବେ ପୂର୍ଣ୍ଣ ହେଉ ତୋହର ଯେ ଇଚ୍ଛା ।
ନିଷ୍କଳଙ୍କ ହୋଇଥାଉ ତୋର ଦେହ ଗୋଟି
ଏହି ଦେହ ଘେନି ସ୍ୱର୍ଗେ ଗମିବୁ ଯୁଧିଷ୍ଠି ।
ଏ ରାଜ୍ୟର ଭାର ତୋତେ ପ୍ରାପ୍ତ ହୋଇଥାଉ
ଦେବ ଯେ ଦାନବ ତୋତେ ସରିସମ ନୋହୁ ।
ଇନ୍ଦ୍ରପ୍ରସ୍ଥ ଆଦିକରି ଏହୁ ପଞ୍ଚଦଶ ।
ନିଷ୍କଳ ହୋଇଣ ରହୁ ତୋହର ଏ ବଂଶ ।
ଯେତେ ସମ୍ପଦ ଅର୍ଜିଲୁ ତୁ ଧର୍ମନନ୍ଦନ
ଆମ୍ଭର କଲ୍ୟାଣେ ଏବେ ଲଭ ହେ ସେମାନ ।
ଯେବେ ଅଟଇ ଆମ୍ଭର ଜପତପ ସତ
ପଞ୍ଚରାଜ୍ୟେ ଜମ୍ବୁଦ୍ୱୀପେ କର ତୁ ରାଜତ୍ୱ ।
ବ୍ରହ୍ମର୍ଷି ଦେବର୍ଷି ରାଜଋଷି ଦେଲେ ଅର୍ଘ୍ୟ
ଆମ୍ଭର କଲ୍ୟାଣେ ତୋତେ ପ୍ରାପ୍ତ ହେଉ ସ୍ୱର୍ଗ ।
ସମସ୍ତ ଋଷିଙ୍କୁ ଦେବ ମିଷ୍ଟାନ୍ନ ଭୋଜନ
ପୁଣି ସେମାନଙ୍କୁ ଦେଲେ ଶୀତର ବସନ ।
ଏସନ ବିଧାନେ ସର୍ବେ ତୃପତ ହୋଇଲେ
ପନିର ସୁଗନ୍ଧ ଜଳ ଆଚମନ କଲେ ।
ଚଳନ୍ତି ବ୍ରାହ୍ମଣେ ନାନା କଲ୍ୟାଣକୁ କରି
ଅକଣ୍ଟକ ହୋଇଥାଉ ତୋର ନିଜ ପୁରୀ ।
ଚଇତନ ପୁଚ୍ଛାକଲେ ତହୁଁ ମନଦେବ
ଶିଶୁପାଳ ମହିମାତ ଦେବଙ୍କୁ ଦୁର୍ଲ୍ଲଭ ।
ନାରାୟଣ ଚକ୍ରେ ତାକୁ ମାଇଲେ ଶ୍ରୀହସ୍ତେ
ଶିଶୁପାଳ ଭାଗ୍ୟକଥା ନ ସରେ କହନ୍ତେ ।
ଚଇତନ କହିଲେ ହୋ ଶୁଣ ମନୁରାଣ
ଶିଶୁପାଳର ଚରିତ କହିବା ଏକ୍ଷଣ ।
ସାମାନ୍ୟ ନୁହଇ ସେ ଯେ ଅଟେ ବଡ଼ଜଣ
ଯେ ଅର୍ଥେ ତାକୁ ମାଇଲେ ଚକ୍ରେ ନାରାୟଣ ।
ବିଷ୍ଣୁଗର୍ଭ ନାମେ ସତ୍ୟଯୁଗେ ଏକଦିନେ
ପଦ୍ମଯୋନି ବ୍ରହ୍ମା ଗଲେ ବୈକୁଣ୍ଠ ଭୁବନେ ।
ନବଯୁଗ ଯାଏ ଦ୍ୱାରେ ରହିଲେ ସେ ବସି
ଜୟ ବିଜୟ ଯେ ପୁରେ ନ ଦେଲେକ ପଶି ।
ସାର ନାମରେ ଏକଇ ବୈକୁଣ୍ଠ ଅଟଇ
ଅଣାକାର ବିଷ୍ଣୁର ସେ ଆସନ ବୋଲାଇ ।
ଏକଲୟ କରି ଧାତା ବସି ଉପଲକ୍ଷ୍ୟ
ଅଣାକାର ପୁରୁଷଙ୍କୁ ନ ପାରିଲା ଦେଖି ।
ବାହୁଡ଼ିଣ ପିତାମହ ଆସେ ମଧ୍ୟସ୍ୱର୍ଗେ
ବସିଲା ସେ ଶୁକ୍ଳାମ୍ବର ପର୍ବତର ଲାଗେ ।
ତହିଁ ଭାଳେ ଆକଶକୁ ଯାଇ କି କରିବି
ନାରାୟଣଙ୍କ ମୂରତି କେମନ୍ତେ ଦେଖିବି ।
ନିରାହାରେ ଲୟକରି ବସିଲା ନିରାଶି
ଶୂନ୍ୟପବନ ଭକ୍ଷିଣ କଳ୍ପ ଯାଏ ବସି ।
ପବନ ନିରୋଧି ସେହୁ ଛନ୍ଦିଲା ଉଜାଣି
ଅଣାକାର ବିନା କିଛି କଥାହିଁ ନ ଜାଣି ।
ମହାଯୋଗେ ସେ ପୁରୁଷ ପ୍ରବର ଏମନ୍ତେ
ବସିଲାକ ସତଷଠି ଯୁଗ ପରିଯନ୍ତେ ।
ଅଣାକାର ପୁରୁଷ ଯେ ଜାଣିଲେ ତା ଲୟେ
ବିଧାତା ବୈକୁଣ୍ଠପୁର ଇଚ୍ଛଇ କି ପ୍ରାୟେ ।
ପ୍ରିୟବତୀ କମଳାଙ୍କ ଚାରିଗୋଟି ବାଳୀ
ହକାରିଣ ଆଜ୍ଞା ଦେଲେ ଦେବ ବନମାଳୀ ।
ଏହିଠାରୁ ଯିବ ତୁମ୍ଭେମାନେ ମଧ୍ୟପୁରୀ
ପଦ୍ମଯୋନି ବସିଅଛି ବୈକୁଣ୍ଠକୁ ହେରି ।
ତୁମ୍ଭେ ଚାରିହେଁ ଯାଇଣ ତପ ତାର ଭଞ୍ଜ
କଠୋର କର୍ମ କରିଣ ତପ ତାର ଗଞ୍ଜ ।
ନାରାୟଣଙ୍କ ଆଜ୍ଞାରେ ଗଲେ ସେ ଯୁବତୀ
ଦେଖିଲେ ତାଙ୍କର ତପ କଠୋର ଯେ ଅତି ।
କରେ ସପ୍ତସ୍ୱର ବୀଣା ଧରିଣ କାମିନୀ
ମନୋହର ଉପହାରମାନଙ୍କୁ ସେ ଘେନି ।
ମୂରଲୀ ପଞ୍ଚମସ୍ୱରେ ଗୀତ ଆରମ୍ଭିଲେ
ଧାତାଙ୍କର ହୃଦୟକୁ ମୁଗ୍ଧ ଯେ କରିଲେ ।
ଯୁକତେ ଯୁବତୀ ପୁଣି ସ୍ୱଭାବରେ ନାରୀ
ଶରୀର ବିରାଜେ ତାଙ୍କ ସ୍ୱର୍ଣ୍ଣପତ୍ର ପରି ।
ନାନାବିଧ ଅଳଙ୍କାର ହୋଇ ଆଭରଣ
ବ୍ରହ୍ମାଙ୍କ ନିକଟେ ଆସି ମିଳିଲେ ବହନ ।
ଯୁକତେ ଶିଶିରମାସ କୁହେଳିକା ବୃଷ୍ଟି
ସ୍ତନ ଜାନୁ ଯଉବନ ସବୁଦିଶେ ଫୁଟି ।
ସେ ପିତାମହଙ୍କ ଆଗେ ହେଲେ ପରବେଶ
ତାଙ୍କ ରୂପ ଦେଖି ପିତାମହ ମତି ଧ୍ୱଂସ ।
କ୍ଷଣେ କ୍ଷଣେ ଅବଲୋକି ତାହାଙ୍କର ଜାନୁ
କାମରେ ଅସାକ୍ଷମ ଯେ ପିତାମହ ତନୁ ।
ଏଡ଼େକ ମହାତମା ସେ ପୁଣିହିଁ ସୁଜ୍ଞାନୀ
ସମସ୍ୟା ନ କରି ଠାରି ଦେଲେ କର ଘେନି ।

ଦେଖିଣ ଆନନ୍ଦ ହେଲେ ସେ ପ୍ରମଦାଗଣ
ଅମୋଘ ରେତ ଧାତାଙ୍କ ହେଲା ଯେ ସ୍ଖଳନ ।
ବହିଗଲା ସେହି ରେତ ହୋଇ ଚାରିଧାର
ତହିଁରୁ ଉତ୍ପତ୍ତି ହେଲେ ଚାରୋଟି କୁମର ।
କୁମରଙ୍କୁ ଦେଖିକରି ଭାଳନ୍ତି ବିଧାତା
ମୋର ତପସ୍ୟା ଭାଙ୍ଗିଲେ ଏ ସର୍ବ ବନିତା ।
ଏଡ଼େବଡ଼ ତପ ଭାଙ୍ଗି ଦେଲେ ମୋତେ ଦୁଃଖ
କୋପେ ଅଭିଶାପ ତାଙ୍କୁ ବହି ଚତୁର୍ମୁଖ ।
ତ୍ରିଭୁବନେ ତୁମ୍ଭଙ୍କୁ କେ ନୁହନ୍ତୁ ବିବାହ
ନିଷ୍ଫଳ ହେଉ ତୁମ୍ଭର ଯଉବନ ଦେହ ।
ଅଭିଶାପ ଦେଇ ତାଙ୍କୁ ଅତିଶୟ ରାଗେ
ପୁତ୍ରଙ୍କୁ କୋଳରେ ନେଇ ଧଇଲେ ସରାଗେ ।
ଶୁଣିକରି କନ୍ୟାଗଣ ଆଶ୍ଚର୍ଯ୍ୟ ହୋଇଲେ
ସ୍ୱାମୀ ଅଙ୍ଗ ମୋକ୍ଷ କର ବୋଲିଣ କହିଲେ ।
ସୁପ୍ରସନ୍ନ ହୋଇ ବିହି ବୋଇଲେ ଏସନ
ପୁରୁଷଙ୍କୁ ସୁରତି ଯେ କରିବ ପ୍ରଦାନ ।
ଚାରିପୁତ୍ରଙ୍କୁ ଅନାଇ ବୋଇଲେ ସେ ପୁଣି
ଏହିଠାରୁ ଯାଅ ତୁମ୍ଭେ ମୋର କଥା ମାନି ।
ସନକ ସନନ୍ଦ ସନାତନ ମନୁ ଯେହି
ତାଙ୍କ ମଧ୍ୟରୁ ମନୁର ବଦନକୁ ଚାହିଁ ।
ବୋଇଲେ ତୁ ପାତାଳକୁ ଯାଅ ବେଗ ହୋଇ
ଦର୍ଶନ କର ଅନାଦି ପୁରୁଷଙ୍କୁ ଯାଇ ।
ମନୁ ମହର୍ଷି ତହୁଁ ଯେ କରିଲେ ଗମନ
ସୁତଳ ଯେ ଅତିତଳ ତଳାତଳ ପୁଣ ।
ରସାତଳ ଅତିତଳ ଜଗତ ପାତାଳ
ଏମନ୍ତ ସପତ ପୁର କ୍ଷେପି ଧାତାବାଳ ।
ସାର ବଇକୁଣ୍ଠେ ଯାଇ ହୋଇଲେ ପ୍ରବେଶ
ଦେଖିଲେ ଦ୍ୱାରରେ ପୁଣ ଏମନ୍ତ ଭବିଷ୍ୟ ।
ଦୀର୍ଘାକାର ଦୁଇଗୋଟି ପୁରୁଷ ପ୍ରବର
ବସିଛନ୍ତି ହସ୍ତରେ ସେ ଧରି ଧନୁଶର ।
ତାଙ୍କୁ ଚାହିଁ ମହାଋଷି ବୋଇଲେ ଏସନ
ବାଟଛାଡ଼ ଅନାଦିଙ୍କୁ କରିବୁ ଦର୍ଶନ ।
ଜୟ ବିଜୟ ବୋଇଲେ ନାମ ତୋର କିସ
ବିଷ୍ଣୁଙ୍କୁ ଦେଖିବୁ ବୋଲି କରୁ ଅଭିଳାଷ ।
ଯାଅ ଯାଅ ଏଥେ ତୁହି କ୍ଷଣହେଁ ନ ରହ
ଏତେ ବୋଲି ପେଲି ଦେଲେ ସେ ଜୟ ବିଜୟ
କର ଲାଗିଣ ଉଡ଼ିଲା ତାହାଙ୍କର ତନୁ
ପାଞ୍ଚଲକ୍ଷ ଯୋଜନରେ ପଡ଼ିଗଲେ ମନୁ ।
ସାଷ୍ଟାମ ହୋଇଣ ପୁଣି କୁମର ଅଇଲେ
ବେନିଘଡ଼ି ମଧ୍ୟେ ଆସି ଦ୍ୱାରରେ ମିଳିଲେ ।
ବେଦ ଅଧ୍ୟୟନ କରି ସେହୁ ବାଳଯତି
ଭିତରକୁ ପଶିବାକୁ କଲେ ପୁଣି ମତି ।
ପେଲିଦେଲେ ତାଙ୍କୁ ପୁଣି କାଣି ଅଙ୍ଗୁଷ୍ଠିରେ
ଅସାଷ୍ଟମେ ମହାତମା ଭୂମିରେ ଲୋଟିଲେ ।
ମୁଖରୁ ମହାତମାର ବହିଲା ଶୋଣିତ
ଅଭିଶାପ ଦେଲେ ତାଙ୍କୁ ହୋଇ କୋପଚିତ୍ତ ।
ବିଷ୍ଣୁଙ୍କ ଦ୍ୱାରପାଳ ଯେ ମହତ୍ୱ ହୋଇବ
ଦୁରନ୍ତ ଜନେ ଦର୍ଶନ ନେଇ କରାଇବ ।
ନିର୍ଦ୍ଦୟ ଚଣ୍ଡାଳ ତୁମ୍ଭେ ଅଟ ମନ୍ଦଜାତି
ଏହିକ୍ଷଣି ତୁମ୍ଭେ ଏଥୁ ଚଳିଯାଅ ଧାତି ।
ଜୟ ବିଜୟ ବୋଲାଇ ରାକ୍ଷସ ଯେ ହୁଅ
ମର୍ତ୍ତ୍ୟପୁରେ କର ଯାଇ ନାନା ଅପଚୟ ।
ମୋର ଏଡ଼େକ ଧର୍ମକୁ ନାଶିଲରେ ଦୁଷ୍ଟ
ଅସୁର ହୋଇଣ ତୁମ୍ଭ କାୟା ହେଉ ନଷ୍ଟ ।
ମୁନିଙ୍କର ଅଭିଶାନେ ସେ ଜୟ ବିଜୟ
ପଚାରିଲେ ଯତି ତୁମ୍ଭେ କାହାର ତନୟ ।
ମୁନି ବୋଇଲେ ଅଟେ ମୁଁ କୁଶକେତୁ ସୂନୁ
ମୁନି ସାନପୁତ୍ର ମୋର ନାମ ଅଟେ ମନୁ ।
ପିତାଙ୍କର ବାକ୍ୟେ ମୁହିଁ ଅଇଲି ଏଥିକି
ସାର ବୈକୁଣ୍ଠେ ଆସିଛ ଅଣାକାର ଦେଖି ।
ତୁମ୍ଭେ ଦୁଇ ପାମାରରେ କଲ ମନ୍ଦବୁଦ୍ଧି
ଭକତ ଲୋକଙ୍କୁ ଦେଲ ଦୁଆର ନିରୋଧି ।
ଜୟ ବିଜୟ ବୋଲନ୍ତି ପାଇଲୁ ସନ୍ଦେଶ
ଶାପକୁ କାରଣ ଏବେ କୁହ ବ୍ରହ୍ମଶିଷ୍ୟ ।
ମନୁ ବୋଲନ୍ତି ତୁମ୍ଭେରେ ନ ଚିହ୍ନିଲ ମୋତେ
ମୁକତି ହୋଇବ ଯାଇ ତିନିଜନ୍ମ ଅନ୍ତେ ।
ଦୈତ୍ୟକୁଳେ ତୁମ୍ଭେ ଜନ୍ମେ ଜନ୍ମେ ଅବତରି
ନାରାୟଣଙ୍କ କରରେ ବାରମ୍ବାର ମରି ।
ପୁଣି ଆସି ଏହି ପୁରେ ଦୁଆରୀ ହୋଇବ
ମିଥ୍ୟା ନୁହେଁ ଏହି କଥା ଅଟଇ ଯେ ଧ୍ରୁବ ।
ଆହେ ଚଇତନ ସେହି ମନୁ ଅଭିଶାପେ
ଅସୁର ଜନ୍ମ ଲଭିଲେ ଗତଦୋଷ ପାପେ ।
ପ୍ରଥମେ ହେଲେ ହିରଣ୍ୟ ଆଉ ହିରଣ୍ୟାକ୍ଷ
ତାହାଙ୍କୁ ବିନାଶ କଲେ ପ୍ରଭୁ ଶିରୀବତ୍ସ ।
ସେହି ବଂଶେ ଉପୁଜିଲା ହିରଣ୍ୟକଶିପୁ
ନରସିଂହ ରୂପେ ହରି ହରିଲେ ତା ବପୁ ।
ତ୍ରେତାରେ ହେଲେ ରାବଣ ଆଉ କୁମ୍ଭକର୍ଣ୍ଣ
ରାମାବତାରେ ନାଶିଲେ ତାଙ୍କୁ ରଘୁନାନ ।
ଦନ୍ତବକ୍ର ନାଶହେଲା ରୁକ୍ମିଣୀ ହରଣେ
ଶିଶୁପାଳ ମଲା ଏହି ରାଜସୂୟ ବିଧାନେ ।

ଦେଖୁ ଦେଖୁ ନାରାୟଣ ଶଙ୍ଖ ଚକ୍ରଧାରୀ
ଶୂନ୍ୟେ ରହି ଶିଶୁପାଳ ନାନାସ୍ତୁତି କରି ।
ଜୟ ତୁ ଜୟ ଗୋବିନ୍ଦ କୃଷ୍ଣ ଅବତାର
ବରାହ ବତାରେ ପୃଥ୍ୱୀ ଦନ୍ତଅଗ୍ରେ ତୋର ।
ସ୍ୱାମୀ ଆମ୍ଭେ ଯେ ତୋହର ଦ୍ୱାରପାଳ ଥିଲୁ
ମନୁର ଅଭିଶାପରେ ମର୍ତ୍ତ୍ୟେ ଜନମିଲୁ ।
ମେଦିନୀରେ ରହିକରି ହୋଇଲୁ ବିବାଦୀ
ଦାଢ଼େ ବିଦାରଣ କଲୁ ତୁହି ଜନ୍ମଆଦି ।
ହିରଣ୍ୟକଶିପୁ ରୂପେ ଦେବ ସ୍ୱର୍ଗ ଇଛି
ନୃସିଂହ ରୂପେ ବିଦାର କରିଲୁ ଶ୍ରୀବତ୍ସି ।
ରାବଣ କୁମ୍ଭକର୍ଣ୍ଣ ଯେ ହେଲୁ ତ୍ରେତୟାରେ
ଲଙ୍କାପୁରେ ନାଶ କଲୁ ପୁଣି କୋଦଣ୍ଡରେ ।
ଯାମଳା ଅର୍ଜୁନ ବିନାଶିଲୁ ବାଳକାଳେ
ପାଦେ ଶକଟା ଭଞ୍ଜନ କଲୁ ଶିଶୁବେଳେ ।
ଜୟ ତୁ ଜୟ କେଶବ ନାରାୟଣ ମୂର୍ତ୍ତି
କାଳେ କାଳେ ଦୁଷ୍ଟଙ୍କୁ ତୁ କରୁ ବିନଶ୍ୟତି ।
ତୁ ଦେବ ବ୍ରହ୍ମାଣ୍ଡନାଥ ତୁ ଅନନ୍ତ ଦେବ
ପ୍ରଥମେ ନାଶ କଲୁ ତୁ ମଧୁକଇଟଭ ।
ମାଳି ସୁମାଳିଙ୍କୁ ତୁହି ମାଇଲୁ ଶ୍ରୀକରେ
କେ ତୁ ମହାତ୍ମା କେତୁର ପ୍ରାଣ ନେଲୁ ଖରେ ।
ଆହେ ଦେବ ଅଭଞ୍ଜନ ଭଞ୍ଜନ କୌଣପ
ବିଲଙ୍କ ଦେଶ ନାଥର ହରିଲୁ ତୁ ଦର୍ପ ।
କୁମ୍ଭ ନିକୁମ୍ଭ ବୋଲିଣ ଦୈତ୍ୟ ବେନିମାରି
ମହାପାପୀ ଜନ ନାଥ ତୋହର ବଇରି ।
ବଜ୍ରକବଚ ଯେ ଦୁଇ ଦଇତଙ୍କ ନାମ
କୁଶ ହସ୍ତରେ ଚାପିଲେ ପୁରୁଷ ଉତ୍ତମ ।
ଯାବଇନ୍ଦ୍ର ଦିବାକର ଅଛନ୍ତି ଦେବତା
ତୁ ଯେ ଉଦ୍ଧରୁଛୁ ପୁଣ ପୁଣ ବସୁମାତା ।
ଅନନ୍ତ ଅବତାର ତୁ ହେଲୁ କାର୍ଯ୍ୟଅର୍ଥେ
କାହାକୁ ଦେବ ମାଇଲୁ ପୁଣି ଚକ୍ରାଘାତେ ।
ସାଧୁ ମହିମା ତୋହର କୃଷ୍ଣ ଅବତାର
ଦୁଃସହ କଷଣୁ ଦେବ କରୁ ଯେ ଉଦ୍ଧାର ।
ଭାରିଯା ହରଣେ ନାଥ ତୋହର କଟାଳ
ତାହା କି ଉପେକ୍ଷି କରୁ ତୁହି ସର୍ବକାଳ ।
ମୁକ୍ତିକୁ କାରଣ ଏବେ କର ହେ ଶ୍ରୀବତ୍ସି
ଆଜ୍ଞା ଦିଅ ଦେବ ମୋତେ ବୈକୁଣ୍ଠ ଯାଉଛି ।
ଅନେକ ସ୍ତୁତି ସେ ଯହୁଁ କଲା ମହାଜ୍ଞାନେ
ଯୋଗାଇଲେ ନାନ୍ଦ୍ରା ପାଟଛନ୍ତି ବିଷ୍ଣୁଗଣେ ।
ସାର ବଇକୁଣ୍ଠେ ଯାଇ ବିଜୟ ତକ୍ଷଣ
ବାଜେ ଜୟଶଙ୍ଖ ଦେବ ଦୁନ୍ଦୁଭିର ସ୍ୱନ ।
ସାରଳା ଦାସ ବୋଲଇ ମୁହିଁ ତ ଅଜ୍ଞାନ
ସେ ପାଦପଦ୍ମକୁ ସଦା କରିଅଛି ଧ୍ୟାନ ।



## ଦୁର୍ଯ୍ୟୋଧନର ଅପମାନ, ଅନନ୍ତଶିରେ ପୃଥିବୀ ସ୍ଥାପନ, ସନ୍ଧ୍ୟାବାଳୀର ବିବାହ ଓ ସିଂହ ଶୃଗାଳ କଥା

ବୈବସ୍ୱତ ପୁଚ୍ଛାକଲେ ଅଗସ୍ତି ମୁନିଙ୍କୁ
ଶିଶୁପାଳ ଚଳିଗଲା ବୈକୁଣ୍ଠ ପୁରକୁ ।
ବୈକୁଣ୍ଠ ଦୁଆର ସେହୁ ଆବୋରିଲା ଯାଇ
ଜୟ ବିଜୟ ବସିଲେ ଯୋଗାଭାବ ହୋଇ ।
ଏଣେ ଆସ୍ଥାନରେ ଆଜ୍ଞା ଦେଲେ ଧର୍ମରାଣ
ଦୁର୍ଯ୍ୟୋଧନକୁ ହକାରି ଆଣ ଭୀମସେନ ।
ସ୍ୱାମୀଙ୍କର ଆଜ୍ଞା ଗୋଟି ଶିରେ ଭୀମ ଘେନି
ଦୁର୍ଯ୍ୟୋଧନକୁ ଡକାଇ ଆଣିଲା ତକ୍ଷଣି ।
ଯୁଧିଷ୍ଠି ଦେବ ବୋଇଲେ ଦୁର୍ଯ୍ୟୋଧନେ ଦେଖି
ବାବୁ ଆସ ବସ ତୁ ରେ ଆସ୍ଥାନ କତିକି ।
ମୟଠାରୁ ଆଣିଥିଲେ ତାକୁ ଭଗବାନ
ତେଜରେ ଗଞ୍ଜାଇ ସେହୁ ଦେବ ବିବସ୍ୱାନ ।
ସ୍ଫଟିକ ପାବଚ୍ଛ ବୋଲି ରାଜା ଦୁର୍ଯ୍ୟୋଧନ
ତହିଁରେ ଚରଣ ନେଇ କରନ୍ତେ କ୍ଷେପଣ ।
ଚାହୁଁ ଚାହୁଁ ତିନିଯୁଣେ ଉଡ଼ିଣ ପଡ଼ିଲା
ଚେତନା ଲଭିଣ ପୁଣି ଉଠିଣ ବସିଲା ।
ଦେଖି କରତାଳି ଦେଇ ହସେ ଭୀମସେନ
ବେକରେ କର ଦେଇଣ ଆଣିଲା ଯାଇଣ ।
ଧରି ସଭା ଉପରକୁ ନେଲା ଯେ ମାରୁତି
ଆସ୍ଥାନ ଦେଖାଇ ବୋଲେ ବସ ହେ ନୃପତି ।
ଆସ୍ଥାନରେ ଦୁର୍ଯ୍ୟୋଧନ ଯାଇଣ ବସିଲା
ପଛଆଡ଼େ ସ୍ୱର୍ଣ୍ଣସ୍ତମ୍ଭ ଏକ ସେ ଦେଖିଲା ।
ଖମ୍ଭେ ଆଉଜି ଯାଆନ୍ତେ ଯହୁଁ ସେ ଢ଼ଳିଲା
ମୁହଁମାଡ଼ି ଦୁର୍ଯ୍ୟୋଧନ ଭୂମିରେ ପଡ଼ିଲା ।
ଦେଖି ଗାଲତୁରୀ ମାରି ହସେ ଭୀମସେନ
କୁରୁଳି ରଡ଼ି ଛାଡ଼ିଲେ ସର୍ବ ରାଜାଗଣ ।
ନାସିକାରେ ହସ୍ତ ଦେଇ ହସିଲେ ଶ୍ରୀନାଥ
ଭୀମସେନ ଧରି ପୁଣି ଆଣିଲା ତୁରିତ ।
ଯୁଧିଷ୍ଠିଦେବ ବୋଇଲେ ମୋ କତିକି ଆଣ
ମୋହର ଆସ୍ଥାନ ପରେ ବସାଅ ବହନ ।
ସୁବର୍ଣ୍ଣର ପୀଢ଼ାପରେ ବସନ୍ତେଣ ଯାଇ
ମୁହଁମାଡ଼ି ଭୂମିପରେ ପୁଣ ସେ ପଡ଼ଇ ।

ଦେଖିକରି ବୃକୋଦର ଧାଇଁଲା ସତ୍ୱରେ
ବାହାଧରି ଉପସ୍ଥିତ କରିଲା ସଭାରେ ।
ପୁନରପି ଯୁଧିଷ୍ଠିର ବୋଇଲେ ରେ ବାବୁ
ଆସିଣ ଧନ ରତନ ନିଅ ବେଗେ ସବୁ ।
ଶୁଣିକରି ଦୁର୍ଯ୍ୟୋଧନ ସତ୍ୱରେ ଧାଇଁଲା
ନଇଁପଡ଼ି ଧନରତ୍ନମାନ ଦରାଣ୍ଡିଲା ।
ମୁଣ୍ଡ ତଳକୁ ମାଡ଼ିଣ ପଡ଼ିଲା ଉପରୁ
ନୟନରେ ଦେଖିକରି ଭୀମ ତାହା ଦୂରୁ ।
ଉଚ୍ଚେ କରତାଳି ଦେଇ ହସିଣ ଉଠିଲା
ବାପ ପରାୟେ ଏବେ ତୋ ନୟନ ଦିଶିଲା ।
କିମ୍ବା ଏମନ୍ତ ହୋଇଲା ରେ ମାନଗୋବିନ୍ଦ
ଚକ୍ଷୁ ଥାଉ ଥାଉ ଏବେ ହୋଇଲୁ ତୁ ଅନ୍ଧ ।
ଜଳ ଫୁଟୁକା ବୋଲି କି ନ ପାରିଲୁ ବାରି
ବାରମ୍ବାର ଧାଉଁଅଛୁ ଧନେ ଲୋଭ କରି ।
ଅପମାନ ପାଇ ରାଜା ନ ରହି ଦଣ୍ଡେହେଁ
ହସ୍ତିନା ରାଜ୍ୟକୁ ଗଲା ସେହି ମୁହୂର୍ତ୍ତେହେଁ ।
ଶଲ୍ୟ ଯେ ଶକୁନି ଦୁଃଶାସନର ସହିତେ
ସଭାରୁ ଉଠିଣ ଗଲେ ସର୍ବ ଅମନାତ୍ୟେ ।
ଚଳିଯାନ୍ତି କଉରବେ ଆପଣା ନଗରୀ
ମୁହଁମାଡ଼ି ଶୁଏ ରାଜା କୁଶଶଯ୍ୟା କରି ।
ଆସ୍ଥାନ ଧରମଦେବ କରି ପରିତେଜ୍ୟା
ବାସୁକି ନାଗରାଜାର ପାଦେ କଲେ ପୂଜା ।
ଅନେକ ଧନରତନ ଅଳଙ୍କରାର ଦେଇ
ବୋଇଲେ ତପ ପ୍ରସାଦେ ସବୁ ପାଇବଇଁ ।
ଅଷ୍ଟକୁଳା ନାଗଙ୍କୁ ସେ କଲେ ବହୁପୂଜା
ନାଗବଳ ଘେନି ରାଜା ପାତଳକୁ ଯା ଯା ।
ଚଳଇ ଅନନ୍ତ ରାଜା ପାତଳା ଭୁବନେ
ଯୁଧିଷ୍ଠି ପୂଜିଲେ ଲଙ୍କରାଜା ବିଭୀଷଣେ ।
ବିଭୀଷଣ ବୋଲେ ଦେବ ଏ ଦ୍ୱାପର ଯୁଗେ
ଦେଖିଲି ମୁଁ କୃଷ୍ଣ ରୂପ ତୋର ଅନୁରାଗେ ।
କଳିରେ ନାଥ ମୁଁ ତୋତେ ଦେଖିବଇଁ କାହିଁ
କେବଣ ଭୁବନେ ଥିବି ପଥକୁ ମୁଁ ଚାହିଁ ।
ଗୋବିନ୍ଦ ବୋଇଲେ କହେ ସଦଭାବେ ତୋତେ
ବାରାନିଧିର ତଟରେ ଯମନିକ ତୀର୍ଥେ ।
ଯେବଣ କଳପବଟ ଅଟେ ନୀଳଗିରି
ତହିଁ ବିଜୟ କରିବୁ ବୌଦ୍ଧରୂପ ଧରି ।
ମିଥୁନ ଶୁକଳପକ୍ଷ ଦ୍ୱିତୀୟାର ତିଥି
ପୁନର୍ବସୁ ନକ୍ଷତ୍ର ସେ ଦିନର ପାହାନ୍ତି ।
ସେଦିନ କରିବୁ ଆମ୍ଭେ ରଥଯାତ୍ରା ଖେଳ
ଦକ୍ଷିଣ ମୂର୍ତ୍ତିରେ ବିଜେ କରିବୁ ବାଳିର ।
ଅର୍ଦ୍ଧଘଡ଼ିଯାଏ ହେବ ଦକ୍ଷିଣ ମୂରତି
ଦକ୍ଷିଣ ଦିଗ ତୋହର ଭାଜିବ ଜଗତୀ ।
ଆମ୍ଭେ ରହିଥିବୁ ନୀଳସୁନ୍ଦର ପର୍ବତେ
ଲଙ୍କାଗଡ଼କୁ ହୋଇବ ଅବକାଶ ତୋତେ ।
ଯାଅ ବିଭୀଷଣ ରାଜା ଆଜ୍ଞା ଦେଲେ ସ୍ୱାମୀ
ବିଭୀଷଣ ଦୃଶ୍ୟ ହେବାଯାଏ ପରଣାମି ।
ଜଗନ୍ନାଥ ବାହୁଡ଼ିଲେ ଯମୁନା ତଟରୁ
ଦଣ୍ଡ ଘେନି ଲଙ୍କପତି ଚଳଇ ସେଠାରୁ ।
ଗୋବିନ୍ଦ ଅଦୃଶ୍ୟ ହୋଇଗଲେ ଯେତେବେଳେ
ବିମାନେ ଚଳିଲେ ସର୍ବେ ସେ ଅସୁରବଳେ ।
ଆନନ୍ଦେ ଅନେକ ସେହୁ ଉସତ ଯେ ହୋଇ ।
ସମୁଦ୍ର ଲଙ୍ଘି ଲଙ୍କାରେ ପ୍ରବେଶିଲେ ଯାଇ
ନାଗବଳ ପାରିକରି ନାଗବଳ ରାଜା
ଆଜ୍ଞା ଦେଲେ ହରି ତୁହି ପାତଳକୁ ଯା ଯା ।
ସ୍ୱାମୀ ମୋହର ନିକଟେ ପାର୍ଥ ବିଜେକଲା
ଧନୁହୁଳରେ ମେଦିନୀ ସମଗ୍ର ଧଇଲା ।
ଶ୍ରୀ ବାସୁଦେବ ଯେ ତହୁଁ ଭାଷନ୍ତି ଏସନ
ହେ ପୃଥ୍ୱୀ ନ ଜାଣୁ ତୁହି ତହିଁର ବିଧାନ ।
ପୁରୁରବା ତିନିଲକ୍ଷ ସତାଶୋଇ ବର୍ଷେ
ଧାତା ବିଜେକଲେ ଆସି ଅମର ଆକାଶେ ।
ବ୍ରହ୍ମାର ଡାହାଣେ ଅଛି ଯେବଣ ବଦନ
ଋକ ବେଦଟି ତହିଁରୁ ହେଲା ଉତପନ୍ନ ।
ଚାରି ବଦନକୁ ଯହୁଁ ବିକାଶଇ ବାମେ
ସାମବେଦ ତହୁଁ ଜାତ ହୋଇ ମହାବ୍ରହ୍ମେ ।
ତାର ପଛେ କରତାର ବଦନ ବିରଞ୍ଚି
ସେ ବଦନ କରତାର ଅଥରବ ରଚି ।
ଆଗେ ବ୍ରହ୍ମାଙ୍କର ଯେଉଁ ମୁଖ ବିକାଶଇ
ସେ ମୁଖରେ ବ୍ରହ୍ମା ଯଜୁର୍ବେଦକୁ ଘୋଷଇ ।
ଚାରିମୁଖେ ବେଦ ଏହି ରୂପରେ ପଢ଼ଇ
ଉର୍ଦ୍ଧ୍ୱମୁଖେ ଅଜପାକୁ ଦୃଢ଼ରେ ଜପଇ ।
ଅଦଭୁତେ ଦେବତାଙ୍କ ଟଳିଲା ଆସନ
ଧାତାଙ୍କୁ ଭେଟିଲା ଯାଇ ସେ ପଞ୍ଚବଦନ ।
ଦେଖିକରି ବିଧାତା ଯେ ପଢ଼େ ବେଦମନ୍ତ୍ର
ଈଶ୍ୱର ବୋଇଲେ ଧାତା ତୋର ଏ କେମନ୍ତ ।
ମୁହିଁ ସେ ପଞ୍ଚବଦନେ ଅଟେ ପରଂଯୋଗୀ
ସଦା ମନ୍ତ୍ରେ ହୋଇଥିବି ଗାୟତ୍ରୀ ମୁଁ ଲାଗି ।
ଚତୁର୍ବଦନେ ସେ ତୋର ଚାରିବେଦ ଯୁକ୍ତ
ପୁଣି ବେଦ ଭାଷୁ ତୁହି କେବଣ ସଙ୍ଗତ ।
ଆବର ମୋହର ଶଙ୍ଖ ଅଟେ ଭୟଙ୍କର
କରରେ ଧରିଥାଏ ମୁଁ ସଦା ଧନୁଶର ।

ବିଧାତା ବୋଇଲେ ମୁହିଁ ପୃଥ୍ୱୀର କରତା
ଧାତୁବାଦ୍ୟ ପୁରୁଷ ମୁଁ ବିହିର ବିଧାତା ।
ତୋହର ଇଚ୍ଛା ଯଦ୍ୟପି ହୁଏ ତ୍ରିଲୋଚନ
ଦେହ ସ୍ୱରୂପରେ ମୁହିଁ ପଞ୍ଚର ବଦନ ।
ଚାହୁଁ ଚାହୁଁ ବ୍ରହ୍ମା ଶିରେ ହେଲା ମୁଣ୍ଡେ ଜାତ
ଈଶ୍ୱର ବୋଇଲେ ଏବେ କଲୁ କୂଟମାଥ ।
ଏ ନଗର ଲୋକଙ୍କର ଏସନ ପ୍ରକୃତି
ମୁଣ୍ଡେ ହରନ୍ତି ମୁଣ୍ଡେକ କରନ୍ତି ଉତ୍ପତ୍ତି ।
କହୁଁ କହୁଁ କ୍ରୋଧାନଳ ହେଲେ ତ୍ରିପୁରାରି
ସେ ପଞ୍ଚବକ୍ତ୍ର ଏହାଙ୍କୁ ଯାଇ ଦୃଢ଼େ ଧରି ।
ବ୍ରହ୍ମାର ମୁଣ୍ଡ ମୋଡ଼ିଲେ ସେ ପରମ ଯୋଗୀ
ବ୍ରହ୍ମାଙ୍କ ମସ୍ତକ ରୁଦ୍ର କରତଳେ ଲାଗି ।
ଈଶ୍ୱର ଦେବତା ତାକୁ ପକାନ୍ତେ ଛିଞ୍ଚାଡ଼ି
ଛଡ଼ାଇ ସେ ନ ପାରିଲେ କରୁଁ ତ୍ରିପୁରାରି ।
ବିଦାରଣ କରନ୍ତେ ଯେ ପରଶୁ ଅସ୍ତ୍ରରେ
ନ ତୁଟଇ ସେ ଶିରଟି ଯେ କେତେ କାଳରେ ।
ବ୍ରହ୍ମାଙ୍କର ମୁଣ୍ଡରୁ ଯେ ବହିଲା ରୁଧିର
ତା ମଧ୍ୟରୁ ପୁରୁଷେକ ହୋଇଲା ବାହାର ।
ମର୍ତ୍ତ୍ୟରେ ଚରଣ ତାର ଆକାଶରେ ଶିର
ବିଧାତାର ମୁଖ ଚାହିଁ ମାଗଇ ଆହାର ।
ବ୍ରହ୍ମା ବୋଇଲେ ଦେଖ ତୁ ଏହି ପଞ୍ଚମୁଖ ।
ଅତିଶୀଘ୍ର ଯାଇଣ ତୁ ଏହାକୁ ଯେ ଭକ୍ଷ ।
ବିଧାତାଙ୍କ ଆଜ୍ଞାରେ ସେ ଚଳେ ତକ୍ଷଣାନ୍ତି
ଈଶ୍ୱର ଦେବତାଙ୍କୁ ସେ ଭେଟିଲେ ଝଟତି ।
ଅନେକ ସମର କଲା ରୁଦ୍ରଙ୍କ ସଙ୍ଗତେ
ଲାଗିଲା ଭୀଷଣ ରଣ ବର୍ଷେ ପରିଯନ୍ତେ ।
କ୍ରୋଧେ ଭୀମ ହୃଦୟରେ ମାଇଲେ ଶକତି
ତଥାପି ନାଶ ନ ହେଲା ସେହି ସେନାପତି ।
ତ୍ରାସେ ଈଶ୍ୱର ସେଠାରୁ ପଳାଇଲେ ଭାଜି
ଗୋଡ଼ାଇଛି ବ୍ରହ୍ମବେତ୍ତା କୋପେ ଗଳଗାଜି ।
ସୂର୍ଯ୍ୟଙ୍କୁ ବୋଇଲେ ଚାହିଁ ସେ ରୁଦ୍ର ଦେବତା
ଆହେ ସୂର୍ଯ୍ୟ ଗୋଡ଼ାଇଛି ମୋତେ ବ୍ରହ୍ମବେତ୍ତା
ଆଦିତ୍ୟ କହିଲେ ତୁମ୍ଭେ ବ୍ରହ୍ମହତ୍ୟା ଦୋଷୀ
ତୁମ୍ଭର ମୁଖ ଚାହିଁଲେ ନାନା ଦୋଷ ଅଛି ।
ସୂର୍ଯ୍ୟଙ୍କ ବଚନ ଶୁଣି ଦେବ କାଶୀବାସୀ
ଅମରାବତୀ ନଗ୍ରକ ଗଲେ ବିଶ୍ୱବାସୀ ।
ତହିଁ ମିଳି ବୋଲନ୍ତି ହେ ଶୁଣ ଆଖଣ୍ଡଳ
ବ୍ରହ୍ମବେତ୍ତାର ବହୁତ ମୋତେ ଯେ କଟାଳ ।
ରୁଦ୍ରଙ୍କ ବଦନ ଚାହିଁ ସେ ଇନ୍ଦ୍ରଦେବତା
ଅତି କୋପଭର ହୋଇ କହିଲେ ଏ କଥା ।
ଆଖଣ୍ଡଳ ବୋଇଲେକ କଲ ବ୍ରହ୍ମହତ୍ୟା
ତେଣୁ ତୁମ୍ଭଙ୍କୁ ଗୋଡ଼ାଇଛନ୍ତି ବ୍ରହ୍ମବେତ୍ତା ।
ମୋହର ମନ୍ତ୍ରରେ ତୁମ୍ଭେ ପଶ ସମୁଦ୍ରରେ
ତକ୍ଷଣେ ଶଙ୍କର ପଶିଗଲେ ସେ ଜଳରେ ।
ଜଳ ହାନ୍ଦୋଳା ହୋଇଲା ମନ୍ଥନ ପରାଯେ
ବ୍ରହ୍ମା ଦେବତାଙ୍କୁ ପାଣି ହୁଅଇ ଆଣ୍ଠୁଏ ।
ବ୍ରହ୍ମବେତ୍ତା ପଛେ ପଛେ ଗୋଡ଼ାଇଣ ଗଲା
ଈଶ୍ୱର ଦେବତାଙ୍କୁ ଯେ ଯାଇଣ ଭେଟିଲା ।
ମହା ସମର ଲାଗିଲା ଦୁଇ ଜଣଙ୍କର
ଭୟରେ ହରି ଚିନ୍ତିଲେ ତହୁଁ ସେ ଶଙ୍କର ।
ଶ୍ରୀ ନାରାୟଣ ଆସିଣ ଉପସ୍ଥିତ ହେଲେ
ସମର ନ କର ଆଉ ବୋଲିଣ କହିଲେ ।
କେଶବ ଆଜ୍ଞାରେ ତହୁଁ ଗଲା ସେହି ଫେରି
ବ୍ରହ୍ମରୂପୀ ଅର୍ଜୁନର ମହିମା ଏପରି ।
ହେ ବାସୁକି ଏସନ ଯେ ଅର୍ଜୁନ ମହିମା
ଅର୍ଜୁନ ପ୍ରତ୍ୟକ୍ଷରେ ଯେ ଅଟେ ଆଦିବ୍ରହ୍ମା ।
ବିଷ୍ଣୁଙ୍କ ରକତ ସଦାଶିବଙ୍କର ମାଂସ
ବ୍ରହ୍ମାର ମୁଣ୍ଡ ବାସବ ରେତ ଯେ ପ୍ରକାଶ ।
ଯେତେ ଯେତେ ରୂପେ ଜାତ ହେଲେ ଫାଲଗୁନି
ତାହା କି କହିବି ମୁହିଁ ବୋଲି ଅନ୍ତର୍ଯ୍ୟାମୀ ।
ଶୁଣିଣ ପରମ ତୋଷ ହୋଇଲା ବାସୁକି
କୃଷ୍ଣଙ୍କ ବଚନେ ଗଲା ଅର୍ଜୁନ ତହିଁକି ।
ଅଷ୍ଟକୁଳ ନାଗ ଘେନି ଚଳିଲା ଚଞ୍ଚଳ
ପ୍ରବେଶ ହେଲା ଅନନ୍ତ ଯାଇଣ ପାତାଳ ।
ଦେଖିଲେ ବାସୁକି ତହୁଁ ବିଜୟେ ବାସବି
ଧନୁହୁଳେ ଧରିଅଛି ସପତ ପୃଥିବୀ ।
ଦେଖିକରି ବହୁ ହର୍ଷ ହେଲେ ନାଗରାଜା
ବହୁତ ଦ୍ରବ୍ୟ ଘେନିଣ କରେ ପାଦପୂଜା ।
ସାଧୁ ପାଣ୍ଡବ ସାଧୁରେ ଧନ୍ୟ ଧନ୍ୟ ତୁହି
ସାଧୁ ସେହି ଜାତକଲେ ଯା ସନ୍ତତି ତୁହି ।
ନାଗରାଜା କୁଟୁମ୍ବଙ୍କ ସହ ପରଣାମି
ଏହି ମହାଭାର ତୋତେ ଦେଲେ ଦେବସ୍ୱାମୀ
ଦୟାର ସାଗର ନାଥ କର ମୋତେ ପାର
ଦେବ ପୃଥିବୀକୁ ଛାଡ଼ ମୋର ମସ୍ତକର ।
କିସ ଦେଇ ଭକ୍ତି ମୁକ୍ତି କରିବି ତୋହର
ଅର୍ଜୁନ ବୋଇଲା ଏବେ ବସୁନ୍ଧରା ଧର ।
ଏ ମହା ପୃଥିବୀ ଭାରା ଦୃଢ଼କରି ଧର
ଯେ ଯାହାଠାରେ ବସାଅ ମହାଫେରୁ ତୋର ।
ସେ ଅନନ୍ତ ନାଗରାଜା ପାର୍ଥଙ୍କୁ ଯେ ଭାଷି
ମୋହର ମସ୍ତକେ ପୃଥ୍ୱୀ ଛାଡ଼ି ତୁ ଦିଅସି ।

ଆହୋ ଅନନ୍ତ ନାଗ ତୁ ଧଇଲୁ ପୃଥିବୀ
ଦିନାକେତେ ନ ଥିଲା ତୋ ଶିରେ ପୃଥ୍ୱୀଦେବୀ
ଯାହା ତାହା ହେଉ ଏହି କଥା ଦୂରାପଦ
ଏଥର ଆଜୁ ତୋହର ନିଅ ତୁ ସମ୍ପଦ ।
ସମ୍ଭାଳ ସମ୍ଭାଳ ବୋଲି ବାସବର ବାଳ
ସ୍ଥିର କରିଣ କାଢ଼ିଲେ ତହୁଁ ଧନୁଝୁଳ ।
ଅନନ୍ତ ଧଇଲା ଯହୁଁ ମେଦିନୀର ଭାର
ସାଧୁ ସାଧୁ ବୋଲିକରି ପାର୍ଥ ଧନୁର୍ଦ୍ଧର ।
ଯାଉଅଛି ପିତାମହ ଏବେ ମୁଁ ହସ୍ତିନା
ନାଗରାଜ ବୋଲେ ବାବୁ ତୁହି ଯିବୁ କିନା ।
ମୁହିଁ ତୋର ଦେଇଗଲି ଏଡ଼େ ମହାଭାର
ଭକତି କରିବି ତୋତେ କିସ ଦେଇ ବୀର ।
ଅର୍ଜ୍ଜୁନ ବୀର ବୋଲଇ ଶୁଣ ଦେବରାଜେ
ମେଦିନୀ ଧଇଲି ମୁହିଁ ଆମ୍ଭରହିଁ କାର୍ଯ୍ୟେ ।
ଆମ୍ଭର ଅନେକ କାର୍ଯ୍ୟେ ତୋର ଅନୁଗ୍ରହ
ସର୍ବଦା ଆମ୍ଭରେ ଦେବ ରଖିଥିବୁ ସ୍ନେହ ।
ଅର୍ଜ୍ଜୁନ ବୋଇଲେ ତୋର ଅନୁଗ୍ରହ ମୋତେ
ନ ଦେଖି ନିଷ୍କଳଙ୍କ ମୁଁ ଜାଣିବି କେମନ୍ତେ ।
ପୁଣି କହିଲେକ ଆହୋ ଶୁଣ ନାଗରାୟେ
ଯେମନ୍ତେ ପରତେ ଯାଇ କର ତା ଉପାୟେ ।
ନାଗ ବୋଲେ ମୋର ସନ୍ଧ୍ୟାବାଳୀ ଯେ ଦୁହିତୀ
ହୋଇଥାଏ ସେହି ତୋତେ ନିତ୍ୟେହେଁ ଭକତି
ବିଚାର କରିଅଛି ମୁଁ ମନର ହିଆଳି
ତୋର ଅନୁଗ୍ରହ ହେଲେ ଦେବି ସନ୍ଧ୍ୟାବାଳୀ ।
ଅରଜୁନ ବୋଇଲେ ଯା ତୋହର ବିଚାର
ଯେପରି ମନକୁ ଆସେ ବିଭାବିଧି କର ।
ପୁତ୍ରଙ୍କୁ ରାଇ ବୋଇଲେ ସେହି ନାଗଦେବା
ପୁରେ ଉତ୍ସବ କରାଅ ସନ୍ଧ୍ୟାବାଳୀ ବିଭା ।
ଶୁଣିକରି ସାନନ୍ଦ ଯେ ହେଲେ ନାଗଲୋକେ
ନାନା ଉତ୍ସବ କରିଲେ ଅତ୍ୟନ୍ତ ଉତ୍ସୁକେ ।
ବିଭାର ଉତ୍ସବମାନ କରିଲେ ପାତାଳେ
କନ୍ୟାର ବେଶ ମଣ୍ଡିଲେ ସାଧବୀ ସକଳେ ।
ଯେ ବିଧି ଉତ୍ସବ ତହିଁ ସାରି ପୁରୋହିତେ
ସୀଉକାର ବିଧିକୁ ସେ କରି ଯେଉଁ ମତେ ।
ସୋମବଂଶରେ ସଞ୍ଜାତ ପାଣ୍ଡବ ଫାଲ୍‌ଗୁନି
ଅନନ୍ତ ଗୋତ୍ରରେ ନାଗରାଜାର ନନ୍ଦିନୀ ।
ପଦ୍ମନାଗର କୋଳରେ ବିଜୟ କୁମାରୀ
ବର କନ୍ୟାକୁ ସେ ଯୋଗେ ହସ୍ତଗ୍ରନ୍ଥି କରି ।
ନାରୀମାନେ ହୁଳହୁଳି ଦିଅନ୍ତି ସଭାରେ
ଅନେକ ଉତ୍ସବ ହୁଏ ପାତାଳ ପୁରରେ ।

ଅମୃତ ରସପାନ ଯେ କରି ବର କନ୍ୟା
ଆଚମନ ଶେଷକରି ସେହି ଅନ୍ନପୂର୍ଣ୍ଣା ।
ସୁସଞ୍ଚ ପଲ୍ୟଙ୍କରେ ସେ ଶେଯାଇ ସୁପାତି
ଦ୍ୱାରରେ ମଙ୍ଗଳଧ୍ୱନି ଭାଷନ୍ତି ଯୁବତୀ ।
ନାନାବିଧ କ୍ରୀଡ଼ାକଲେ ନାଗୁଣୀର ତୁଳେ
ପାର୍ଥର ସେ କ୍ରୀଡ଼ାମାନ କେବା କହିପାରେ ।
ନାଗୁଣୀର ସଙ୍ଗେ ପାର୍ଥ ନାନା କ୍ରୀଡ଼ାରସେ
ରହିଲେ ଅନେକକାଳ ପାତାଳର ଦେଶେ ।
ବହୁତ ହରଷ ତହୁଁ ହୋଇଲା ନାଗୁଣୀ
ପୁରୁଷ ମୋହବିଦ୍ୟାରେ ମୋହିନୀ ଫାଲ୍‌ଗୁନୀ
ଯୁଧିଷ୍ଠିର ଜଗନ୍ନାଥ ଦେବଙ୍କୁ ଅର୍ଜ୍ଜୁନ
ପାସୋରିଲେ ସୁଭଦ୍ରା ଯେ ଦ୍ରୌପଦୀଙ୍କୁ ପୁଣ
ପାଣ୍ଡବ ବୀର ରହିଲେ ନିଶ୍ଚିନ୍ତେ ପାତାଳେ
ସକଳ ତେଜ୍ୟା କରିଣ ନାଗୁଣୀର ମେଳେ ।
ବହୁ ଭକ୍ତିରେ ନାଗୁଣୀ ପାଶେ ଥାଏ ଖଟି
ପଞ୍ଚକଟକକୁ ଦେଲା ପାସୋରି କିରୀଟୀ ।
ସନ୍ଧ୍ୟାବାଳୀ ତେଜିବାକୁ ନ ବଳିଲା ମନ
ସର୍ବ ତେଜିଣ ପାତାଳେ ରହିଲା ଅର୍ଜ୍ଜୁନ ।
ବଦୟନ୍ତି ଅଗସ୍ତି ଯେ ଶୁଣ ଯୋଗେଶ୍ୱର
ସଭା ସମାପତ ହେଲା ରାଜୁସି ଯାଗର ।
ଅନେକ ସମ୍ଭର୍ବେ ଦେଶେ ଗଲେ ରାଜାମାନେ
ଏକମାତ୍ର ଦୁର୍ଯ୍ୟୋଧନ ଗଲା ଅପମାନେ ।
ଦଇବେ ଯେବଣ ସଭା କଲେ ବାସୁଦେବ
ମାୟାସଭା ତାଙ୍କୁ ଦେଇ ଅଛଇ ଦଇବ ।
ବାଡ଼ ନ ଥାଇ ଶୂନ୍ୟରେ ଅଛି ସଭାଚାଳ
ସ୍ଫଟିକର ସଙ୍ଗେ ତୁଲ କଲା ଆଣି ଜଳ ।
ଭକତ ଲୋକଙ୍କୁ ତହିଁ ଦିଶଇ ଆକାର
ବାରଣ ନ ଯାଇ ସେହୁ ଅଟେ ଅଣାକାର ।
ଶତ୍ରୁଖଳ କଣ୍ଟକ ଯେ ଅଟେ ସଭା ନାମ
ଚିତ୍ରକୂଟ ସୃଜିଲେ ଯେ ଶ୍ରୀପୁରୁଷୋତ୍ତମ ।
ଯୁଧିଷ୍ଠି ଦେବଙ୍କୁ ଯେହୁ ଭକତି କରଇ
ସଭା ତାହାକୁ ଅଦୃଶ୍ୟ କେବେହେଁ ନୁହଇ ।
ଯୁଧିଷ୍ଠି ଦୁର୍ଯ୍ୟୋଧନକୁ ରାଇଲେ ସ୍ୱଭାବେ
ମନରେ ହିଂସା କରିଣ ଉଠି କୁରୁଦେବେ ।
ନିଷ୍କଳଙ୍କ ଚିତ୍ତେ ଯହୁଁ ନ ଗଲା ସଭାକୁ
ନାନା ଝିଙ୍ଗାସ ହୋଇଲା ତେଣୁ ଯେ ତାହାକୁ ।
ସଭାରେ ବସି ନ ଜାଣି ପାଇଲା ସେ ଲଜ୍ଜା
ଅପମାନିତ ହୋଇଲା କୁରୁର ଆତ୍ମଜା ।
ଭୀଷ୍ମ ଦ୍ରୋଣ ଆଦି ଅଶ୍ୱତ୍ଥାମାର ସହିତ
ସଭାରୁ ଉଠିଣ ଗଲେ ସର୍ବ ଅମାତ୍ୟ ।

ଶୋଇଛନ୍ତି ଚନ୍ଦ୍ରଶାଳାପୁରେ ଚକ୍ରବର୍ତ୍ତୀ
ଦ୍ୱାରେ ଉପସ୍ଥିତ ଯାଇ ସର୍ବ ପାତ୍ର ମନ୍ତ୍ରୀ ।
କର୍ଣ୍ଣ ମହାରଥୀ ଯାଇ ଦ୍ୱାରେ ଦେଲେ ଡକା
ଶୁଣ ହୋ ମହାତ୍ମା ତୁହି କରୁ କିପାଁ ଦକା ।
ତୁହି ଦେବ ଚିନ୍ତାମଣି ସର୍ବଜନ ତ୍ରାତା
ମହାବିଜ୍ଞ ପଣ୍ଡିତ ତୁ କିପାଁ କରୁ ଚିନ୍ତା ।
ଗୁପ୍ତେ କହେ ଦୁର୍ଯ୍ୟୋଧନ ଶୁଣ ଆହୋ ମିତ
ସେଠାବରେ ଅପମାନ ପାଇଲି ବହୁତ ।
ଆବର ସମ୍ପଦ ମୋର ମାତୁଳ ଶକୁନି
ଦୁହିଙ୍କର ପ୍ରସାଦେ ମୁଁ ସାଧିବି ମେଦିନୀ ।
ଯେବଣ ସମ୍ପଦମାନ ଅର୍ଜିଲେ ପାଣ୍ଡବ
ଦେବତାଙ୍କୁ ଦୁର୍ଲ୍ଲଭ ତା ଅତି ଅସମ୍ଭବ ।
ଦେବଙ୍କୁ ଦୁର୍ଲ୍ଲଭ ସେ ଯେ ହେଲା ମହାଯାଗ
ଦୁଃଖୀ ଦୀନଜନ କଲେ ଅଇଶ୍ୱର୍ଯ୍ୟ ଭୋଗ ।
ନାନା ଚିନ୍ତାକରୁ ଧନ ସରିବା ନିମନ୍ତେ
ତେବେ ଦେଇ ନ ପାରିଲୁ ଦାନ କଦାଚିତେ ।
ଶିଶୁପାଳ ନାଶଗଲା ଆମ୍ଭର ସକାଶେ
କେହି ଜିଣି ନ ପାରିଲେ ଗରିଷ୍ଠ ରାଜା ସେ ।
ଅମର ବାରସ୍ୱତୀକୁ ଜିଣି ତାଙ୍କ ପୁର
ଦେବତା ତୁଲ୍ୟ ଦିଶନ୍ତି ପାଞ୍ଚ ସହୋଦର ।
ଅନେକ ଧନ ବିନାଶ କଲଇଁ ମୁଁ ରାଗେ
କି ମାୟାରେ ପୁଣି ଧନ ପୂରେ ସେଇଲାଗେ ।
ଦିଅନ୍ତେଣ ନ ସରଇ ଲକ୍ଷେ ଲକ୍ଷେ ଧନ
ଗୁଣେ ଦେଲେ ଶତେଗୁଣେ ପଶଇ ସୁବର୍ଣ୍ଣ ।
ଏଥିରେ ସନ୍ଦେଶ କିଛି ବୁଝି ନ ପାରିଲୁ
ବଳବୀର୍ଯ୍ୟ ଥାଇ ଆମ୍ଭେ ହୀନ ଯେ ହୋଇଲୁ ।
ସଭାସ୍ଥଳେ ଭୀମ କେତେ କଥା ନ କହିଲା
ଜୀବନେ ଥାଇଣ କିସ ମରଣହିଁ ଭଲା ।
ଆପଣାର ଶରୀରରେ ବଳବୀର୍ଯ୍ୟ ଥାନ୍ତେ
ସାବତ ଭାଇ ବିକ୍ରମ ଦେଖିବା ନିମନ୍ତେ ।
ବିଷ ଖାଇ ମରିବି ସେ ଆତ୍ମଘାତୀ ହୋଇ
ଅନଳେ ପଶିଣ ଦଗ୍ଧ କାୟା କରିବଇଁ ।
ଦୁର୍ଯ୍ୟୋଧନ ବଚନରେ ବୋଇଲା ଶକୁନି
ଏହି ଛାର କଥାକୁ ତୁ ଏଡ଼େ ଅଭିମାନୀ ।
ତୋହର ସହିତ ମୋର ଅଛି ଏକ ବୁଦ୍ଧି
କ୍ଷଣକେ ହରି ପାରଇ ତାହାଙ୍କ ସମୃଦ୍ଧି ।
ଶକୁନିର ବଚନରେ ତହୁଁ କୁରୁରାଣ
କବାଟ ଫେଡ଼ି ବାହାର ହୋଇଲା ସେକ୍ଷଣ ।
ଶ୍ରୀଭୁଜରେ ଶକୁନିକୁ କଲେ ରାୟେ କୋଳ
ହୃଦେ ଲଗାଇଲେ ନେଇ ଚଉସରି ମାଳ ।
ବେଳେ ମାତୁଳ ତୋହର ମହିମା ପ୍ରସାଦେ
ଭୀମକୁ ବିଷ ଦେଇଣ ଚିନ୍ତିଲୁ ପ୍ରମାଦେ ।
ତୁ ଯେ ଜଉଘର ଚିନ୍ତି କରାଇଲୁ କୂଟେ
ବେଳକେ ମେଲିଲି ମାମୁଁ ଯମୁନାର ଘାଟେ ।
ନାଗୁଣୀ ମାରଣେ ପୁଣି ବଞ୍ଚେ ପୁଣ୍ୟବଳେ
ଏରୂପେ ଭିଆଣ ମାମୁଁ କଲୁ ବେଳେ ବେଳେ
ସବୁଠାରୁ ପାରି ସେହୁ ହ୍ୱନ୍ତି ଧର୍ମବଳେ
ଚତୁର ବୁଦ୍ଧିରେ ତରିଯିବେ କାହାବଳେ ।
ଯେସନେ ଉପାୟ ଅଛି କହିବୁ ନା ମୋତେ
ତାଙ୍କୁ ବିନାଶିଲେ ମୋର ସବୁ କାର୍ଯ୍ୟ ମର୍ତ୍ତ୍ୟେ
ମନ୍ତ୍ରୀ ବୋଲେ ଏବେ ସ୍ନାନ ଭୋଜନକୁ କର
ଉପାୟ କରି ଶତ୍ରୁକୁ କରିବା ସଂହାର ।
ତୁ ଯାହାକୁ କରିଥିବୁ ମନେ ଅଭିମାନ
ତେବେ ସେ ସମ୍ପଦ ହରି ନେବା ଦୁର୍ଯ୍ୟୋଧନ ।
ଶକୁନି ବୋଇଲା ଦୁଃଶାସନ ବୀର ରାଇ
ରାଜାକୁ ସ୍ନାହାନ ବେଗେ କରାଅ ତୁ ନେଇ ।
ସ୍ନାହାନ ସାରିଣ ରାୟେ ମଣୋହିରେ ବିଜେ
ବିରସରେ ଅନ୍ନ ଆଦି ସେହି ଯେ ନ ଭୁଞ୍ଜେ ।
ଆଚମନ ସାରି ରାୟେ ତାମ୍ବୁଳକୁ ଭୁଞ୍ଜି
ଶକୁନିର ବଚନକୁ ଭଲ ସେହୁ ବୁଝି ।
ବିଜୟ ମାନଗୋବିନ୍ଦ ଚନ୍ଦ୍ରଶାଳା ପୁରେ
ଶକୁନି ହକାରି ରାଜା ବସେ ବିଶ୍ୱାସରେ ।
କହିବୁ ନା ମାତୁଳ ହୋ ତୋର ବୁଦ୍ଧି ଗୋଟି
ତା ଶୁଣି ସନ୍ଦେହ ମୋର ଯିବ ଯେହ୍ନେ ତୁଟି ।
ଶକୁନି କହିଲା ଶୁଣ ହେ ମାନଗୋବିନ୍ଦ
ଏବେ ତୋତେ ଦେଲି ମୁହିଁ ଧର୍ମଙ୍କ ସମ୍ପଦ ।
ଆସ୍ଥାନେ ବିଜୟ କରି ପାଶେ ତାଙ୍କୁ ବସା
ଯୁଧିଷ୍ଠିର ସଙ୍ଗେ ତୋତେ ଖେଳାଇବି ପଶା ।
ମୋ ସଙ୍ଗେ ଖେଳିଲେ ସେହି ହାରିବ ଯୁକତେ
ଯୁଧିଷ୍ଠି ସମ୍ପଦ ନିଶ୍ଚେ ଦେବଇଁ ମୁଁ ତୋତେ ।
ଦୁର୍ଯ୍ୟୋଧନ ବୋଲେ ମାମୁଁ ଯେ କଥା କହିଲୁ
ଏଡ଼େକ ପଦାର୍ଥ ତୁହି କେଉଁଠୁ ପାଇଲୁ ।
ଶକୁନି ବୋଇଲା ତୁହୋ ଶୁଣ କୁରୁନାଥ
ଏ ପଶା ମହିମା ମୋର ଜାଣିଥିଲେ ତାତ ।
ପଶାଦେଲେ ମୋତେ ପିତା ସେ ଗାନ୍ଧାରସେନ
ବିଚାରି କିଣିବି କେଉଁରୂପେ ରାଜାମାନ ।
ପଶାଖେଳେ ହାରି ପିତା ଭାଳୁଥାନ୍ତି ନିତ୍ୟେ
ସବୁ ରାଜାଙ୍କୁ ପଶାରେ ଜିଣିବି କେମନ୍ତେ ।
ଏତେ ବୋଲି ପିତା ଗଲେ ଚିତ୍ରୋତ୍ପଳାତୀରେ
ଗଙ୍ଗାଙ୍କୁ ଧ୍ୟାନ କଲେ ସେ ପଶା ନିମିତ୍ତରେ ।

ମୀନମାସ କୃଷ୍ଣପକ୍ଷ ଚନ୍ଦ୍ରବାର ଦିନେ
ପୁଷ୍ୟାନକ୍ଷତ୍ରରେ ପିତା ବସିଲେକ ଧ୍ୟାନେ ।
ମନ ବଚନ କର୍ତ୍ତବ୍ୟେ ଏକଲୟ ଚିତ୍ତେ
ଧ୍ୟାନରେ ବସିଲେ ପାଞ୍ଚବର୍ଷ ପରିଯନ୍ତେ ।
ଅନେକ ବିନୟ ଭକ୍ତି ପିତା ମୋର କଲା
ମହାମାୟାଙ୍କ ଆସନ ଅଭୂତେ ଟଳିଲା ।
ଜଳ ଭିତରେ ଥାଇଣ ଜାହ୍ନବୀ ବୋଲଇ
କିପାଁ ଭକ୍ତି କରୁ ମୋତେ ଗାନ୍ଧାରର ସାଇଁ ।
ଗାନ୍ଧାରସେନ ବୋଲଇ ମୋର ହୀନକର୍ମ
ତେଜିଲି ସକଳ ସେବା କଲି ଏହି ଧର୍ମ ।
ଅନାଦି ମାହେଶ୍ୱରୀ ତୁ ଯୋଗେ ଯୋଗେଶ୍ୱରୀ
କି ସେବା କରିବି ମାତ ଚରଣେ ତୋହରି ।
ଯହିଁର ନିମନ୍ତେ ମାତଃ କରେ ମୁଁ ଭକତି
ବିଜୟ ପଶାକାଠି ତୋ ମୋତେ ଦେବା ସତୀ
ମୋହର ଚାଳନ୍ତେ କେହି ନୋହିବେ ଯେ ସରି
ଅନୁଗ୍ରହ କର ମୋତେ ଏହା ଦେଇକରି ।
ଗଙ୍ଗାଦେବୀ କହିଲେ ମୁଁ ତୋର ବୋଲେ ଦେବି
ସମୟେ ଫେରାଇ ଦେବୁ ଯେବେ ମୁଁ ଲୋଡ଼ିବି
ଅନ୍ତରୀକ୍ଷେ ପଶାକାଠି ଦେଲେକ ପକାଇ
ତିନି ବରଷ ଭିତରେ ଦେବୁ ବାହୁଡ଼ାଇ ।
ଶକୁନି ବୋଇଲା ବାବୁ ଶୁଣ ଦୁର୍ଯ୍ୟୋଧନ
ବିଜୟ ପଶାକାଠିକୁ ଘେନି ସେ ବହନ ।
ଦ୍ୱାଦଶ ବରଷ ଯାଏ ପାଶରେ ରଖିଲେ
ପଶାରେ ଖେଳି ସମସ୍ତ ରାଜାଙ୍କୁ ଜିଣିଲେ ।
ପଶା ନ ପାଇଣ ଶାପ ଦେଲେ ସେ ଜାହ୍ନବୀ
ବୋଇଲେ ପଥର ଘରେ ହୁଅ ଯାରାଭବୀ ।
ସମୟେ ପଶା ଘେନିଣ ଗଲା ସେ ରାଜନ
ପ୍ରବେଶ ହୋଇଲା ଯାଇ ଉତ୍ତର କୂଳେଣ ।
ଜଳ ଭିତରକୁ ଦେଲା ପଶାକାଠି ଫିଙ୍ଗି
ଶ୍ରୀକରେ ଧରିଣ ତାହା ନେଲେ ଧବଳାଙ୍ଗୀ ।
ଗାନ୍ଧାର ବୋଇଲା ଆଜ୍ଞା ଦିଅ ହେ ହରଷେ
କେମନ୍ତ ଏ କଥା ରହିଥିବ ମୋର ବଂଶେ ।
ଶୂନ୍ୟରେ କହିଲେ ଦେବୀ ପରମ ଈଶ୍ୱରୀ
ଯେବଣ ଭୁବନେ ତୋର ପଶାକାଠି ମାରି ।
ତୋହର ମୃତ୍ୟୁକାଳରେ କର ହାଡ଼ ଗୋଟି
ତା ନେଇ କରିବ ଯେଉଁ ଲୋକ ପଶାକାଠି ।
ତୋହର ପୁତ୍ରେ ତାହାକୁ ଘେନିଥିବେ ପାଶ
ଜାଣିଥା ପଶାରେ ସେହୁ ଜିଣିବେ ଅବଶ୍ୟ ।
ଜିଣନ୍ତ ନୋହିବେ କେହୁ ଏ ମର୍ତ୍ତ୍ୟଭୁବନ
ଯାହା ବୋଲିଣ ଡାକିବେ ପଡ଼ିବ ସେ ଦାନ ।

ଏମନ୍ତ ଘଟଣା ପୂର୍ବୁ ଅଛି କୁରୁମଣି
ମୃତ୍ୟୁବେଳେ କହିଥିଲେ ମୋତେ ପିତା ପୁଣି ।
ଏ ମୋହର ବଚନକୁ ଶୁଣ ରେ ଶକୁନି
ଏମନ୍ତ କହିଲା ମୋତେ ମୋର ପିତା ପୁଣି ।
ଏ ରୂପେ କହନ୍ତେ ପିତା ତାଙ୍କ କରଅସ୍ଥି
ମୃତ୍ୟୁକାଳରେ ତାହା ମୁଁ ରଖିଛି ସାଇତି ।
ପଶାକାଠି ହୋଇଅଛି ଦେଖ ଯତ୍ନକରି
ଏଥେ ପାଣ୍ଡବ ସମ୍ପଦ ପାରେ ମୁହିଁ ହରି ।
ଶକୁନି ବଚନ ଶୁଣି ହୋଇଲା ହରଷ
ଏ ସମୟେ ଧୃତରାଷ୍ଟ୍ର ହେଲେ ପରବେଶ ।
ଆସ୍ଥାନେ ବିଜୟ କରି ହସ୍ତିନାର ନାଥ
ପଞ୍ଚପାଣ୍ଡବେ ପ୍ରଶଂସା କରିଲା ବହୁତ ।
ସାଧୁ ଆମ୍ଭ ବଂଶ ସାଧୁ ସାଧୁ ରେ କୁମର
ସାଧୁ ହୋଇଲେ ପାଣ୍ଡବ ଏ ପଞ୍ଚ ରାଜ୍ୟର ।
ଏଡ଼େ ଶୁଭକ୍ଷଣେ ଜାତ ହେଲେ ପାଣ୍ଡୁସୁତ
ଧନ୍ୟ ମାହେଶ୍ୱରୀ ତୁମ୍ଭ ଗର୍ଭଧାରୀ ମାତ ।
ବଂଶେ ପୁଣ୍ୟ ଅରଜିଲ ଏ ପୁତ୍ର ପ୍ରସାଦେ
କୀରତି ରୁହାଇବେ ଏ ଚାରିଯୁଗ ମଧ୍ୟେ ।
ପାପକର୍ମ ସକାଶରୁ ଚକ୍ଷୁଗଲା ନାଶ
ଦେଖି ନ ପାରିଲି ତୁମ୍ଭମାନଙ୍କର ଯଶ ।
ପିତାର ବଚନେ ମାନଗୋବିନ୍ଦ ବୋଇଲା
ଏହି ବିଚାରରୁ ତୁମ୍ଭ ଚକ୍ଷୁ ଅନ୍ଧ ହେଲା ।
ଯେବଣ ପୁରୁଷ ଦେହେ ଥିବ ବଳ ପ୍ରାଣ
ପରର ପ୍ରଶଂସା ମୁଖେ ନ କରେ ଏସନ ।
ତାଙ୍କ ପାଇଁ ଏକବୁଦ୍ଧି କରିଅଛି ମୁହିଁ
ତାଙ୍କ ସମ୍ପତ୍ତି ଉପାୟେ ଏବେ ହରିବଇଁ ।
ଶୁଣିଣ ବିଷାଦ ହେଲା ଅମ୍ବିକା ନନ୍ଦନ
ଭୂମି ଛୁଇଁଣ ସେ ପୁଣି ଛୁଏଁ ବେନିକର୍ଣ୍ଣ ।
କିସ ଉପାୟ କଲୁ ତୁ କହ ବାବୁ ମୋତେ
ଆନର ବେଳେ ଏ କଥା ନ ଧରିବୁ ଚିତ୍ତେ ।
ଗୁପତରେ ଚାରଗଣ ଥାନ୍ତି ସନ୍ନିଧାନେ
ବାରତା କହିବେ ଯାଇ ଦେବ ଜନାର୍ଦ୍ଦନେ ।
ବାବୁ ତୁହି କି ନ ଜାଣୁ ସେହି ପଣ୍ଡୁ ସୁତେ
ନାରାୟଣ ତାଙ୍କ ସେବା କରୁଥାନ୍ତି ନିତ୍ୟେ ।
ଯାହାଙ୍କର ବାହୁବଳେ ପୃଥ୍ୱୀ ନରନାଥ
ସେବା କଲେ ଆସି ନାଗ ଅନନ୍ତ ସହିତ ।
ତ୍ରେତୟା ଯୁଗର ପୁଣି ବିଭୀଷଣ ରାଜା
ଷୋଳଦିନ ଯାଏ କଲା ଭକତିରେ ପୂଜା ।
ବାବୁ ତ୍ରୈଲୋକ୍ୟର ନାଥ ଦେବ ଚକ୍ରଧାରୀ
ଯାହାଙ୍କ ଯାଗଶାଳାରେ ହେଲେ ପଡ଼ିହାରୀ ।

ଯାକୁ ସମ୍ଭାଳି ଅଇଲୁ ଅପମାନ ଏବେ
ବାଦ କରିଅଛୁ ମନେ କହ କେଉଁ ଭାବେ ।
ଦେବତାମାନେ ଯେ ହେଲେ ତାର ବଶ ଆସି
ସେ ମହାଯାଗ ସଭାରେ ସର୍ବେ ଥିଲେ ବସି ।
ବାବୁ ଏକଛତ୍ରୀ ହେଲେ ଏ ତିନି ଜଗତେ
ତୁ ତାଙ୍କ ସମ୍ପଦ ହରି ଲୋଡୁଛୁ କେମନ୍ତେ ।
ସୁଜନ ଲୋକକୁ ହାଦେ ବିପଦ ଲୋଡ଼ିଲେ
ଆପଣାକୁ ହାନି ହୁଏ ସଂକ୍ଷେପି ବୁଝିଲେ ।
କେବେ ସେ ତ ନ ଭାବନ୍ତି ତୋହର ଅହିତ
ଆଉ ବେଳେ ଯୁଧିଷ୍ଠିଙ୍କୁ ପ୍ରମାଦ ନ ଚିନ୍ତ ।
ପରେ ପ୍ରମାଦ ଚିନ୍ତନ୍ତି ଯେଉଁ ଯେଉଁ ପ୍ରାଣୀ
ଏହି ପାପେ ଦୋଷୀ ସେହୁ ପୁରାଣେ ମୁଁ ଶୁଣି ।
ଆରେ ତୁ ଏହା ବିଚାର କରୁ କିପାଁ ମନେ
ମହାପ୍ରଭୁ ତୁହି ଅବା ହୋଇବୁ କେସନେ ।
ବାବୁ ଲକ୍ଷେ ନୃପତି ଯା ହେଲେ ବଶୀଭୂତ
ତୁ ତାକୁ ଅନୀତି କାର୍ଯ୍ୟ କରିବୁ କେମନ୍ତ ।
ଏହିରୂପେ ତିଆରନ୍ତେ ରାଜା ଧୃତରାଷ୍ଟ୍ର
ଦୁର୍ଯ୍ୟୋଧନ ବୋଲେ ତୁମ୍ଭ ବୁଦ୍ଧି ହେଲା ଭ୍ରଷ୍ଟ ।
ତୁମ୍ଭେ ବ୍ୟସ୍ତ ନୁହଁ ଆମ୍ଭେ କରିବୁ ସେ କାର୍ଯ୍ୟ
ଉପାୟରେ ଯୁଧିଷ୍ଠିଙ୍କ ହରିବୁ ଐଶ୍ୱର୍ଯ୍ୟ ।
ଉପାୟେ ଯାହା କରି ସେ ନୁହେଁ ପରାକ୍ରମେ
ସିଂହକୁ ଶୃଗାଳ ଜିଣିଥିଲା କୂଟକର୍ମେ ।
ସିଂହ ଶୃଗାଳ ଶାର୍ଦ୍ଦୂଳ ଆବର ନକୁଳ
ଏ ଚାରିହେଁ ମିତ୍ର ହୋଇଥାନ୍ତି ଏକମେଳ ।
ବନସ୍ତେ ବୁଲନ୍ତି ନିତ୍ୟେ ହୁନ୍ତି ଭେଟାଭେଟି
ଚାରିହେଁ ଦିନେ ମାଇଲେ ଏକ ମୃଗଗୋଟି ।
ଶୃଗାଳ ବୋଇଲା ଅନାଚାର ନ କରିବ
ଶଉଚ ହୋଇଣ ମୃଗମାସଂକୁ ଖାଇବ ।
ପୁଣିହିଁ ବୋଇଲା ମୁହିଁ ଏହା ଜଗିଅଛି
ସ୍ନାହାନ କରିଣ ଆସ ମୋ ପାଶେ କହୁଛି ।
ସିଂହ ଶାର୍ଦ୍ଦୁଳ ନକୁଳ ଏହି ତିନି ଜୀବେ
ସ୍ନାହାନ କରିବାପାଇଁ ଗଲେ ଜଳଠାବେ ।
ସିଂହ ସ୍ନାନ ସାରି ଚକ୍ଷୁ ପଲକେ ଅଇଲା
ଖାଇବା ପାଇଁକି ମାଂସ ଉଦବେଗ ହେଲା ।
କରପତ୍ର ଯୋଡ଼ିକରି ବୋଇଲା ଶୃଗାଳ
ଆଗେ ବଳେ ମାଂସ ଭକ୍ଷି ଗଲା ମହାବଳ ।
ସିଂହ ବୋଇଲା ମାଂସ ତ ହୋଇଲା ଉଚ୍ଛିଷ୍ଟ
ମୁହିଁ ଅଟେ ବନପତି ପଶୁରାଜ ଶ୍ରେଷ୍ଠ ।
ଏହା ବୋଲି ସିଂହ ଛାଡ଼ିଗଲା ମୃଗମାଂସ
ଶାର୍ଦ୍ଦୁଳ ହୋଇଲା ଆସି ଜମ୍ବୁକର ପାଶ ।
ସିଂହା ଖାଇଲା କି ମାଂସ ଶାର୍ଦ୍ଦୁଳ ପଚାରି
ଜମ୍ବୁକ ବୋଇଲା କରପତ୍ର ଯୋଡ଼ିକରି ।
ମାଂସଯାକ ସିଂହ ଆଗେ ଖାଇଗଲା ବଳେ
ଆବର ନ ଯୋଗାଇ ଏ ମାଂସ କେତେବେଳେ
ଉପେକ୍ଷା କରିଣ ମାଂସ ହେଲା ବଡ଼ରାଗ
ରୁଷିକରି ସେହିଠାରୁ ଚଳିଗଲା ବ୍ୟାଘ୍ର ।
ସିଂହର ଭୟରେ ବ୍ୟାଘ୍ର ପଳାଇଲା ଡରି
ଅପାର ଦୂରକୁ ସେହୁ ଗଲା ଭୟକରି ।
ନେଉଳ ପ୍ରବେଶ ଆସି ସମସ୍ତଙ୍କ ପଛେ
ଦେଖି ଶୃଗାଳ ଧଇଲା ତାକୁ କୋପମୁଖେ ।
ଶୃଗାଳକୁ ଦେଖିକରି ନେଉଳ ଚଳିଲା
ଏକା ସେ ଶୃଗାଳ ମୃଗ ମାଂସକୁ ଭୁଞ୍ଜିଲା ।
ମାନ ଗୋବିନ୍ଦ ବୋଇଲା ଶୁଣ ତାତ ରାୟେ
ପୂର୍ବ କର୍ମରେ ବହୁତ ହେବଣି ଉପାୟେ ।
ଉପାୟ ମହିମା ମୁହିଁ ଦେଖେ ଦୁର୍ଯ୍ୟୋଧନ
ଖୁଆଇଲ  ବିଷଲଡୁ କିପାଁ ଭୀମସେନ ।
ବିଷର ଲହରୀ ଆସି ଘାରେ ଯେତେବେଳେ
ନାଗୁଣୀ ଖାଉ ବୋଲିଣ ପେଲିଦେଲ ଜଳେ ।
ପୁଣ୍ୟର ବଳେ ଜିଣିଣ ଭୀମ ମହାବଳୀ
ନାଗମାନଙ୍କ ସଙ୍ଗତେ ରଣେ କୁତୂହଳୀ ।
ନାଗୁଣୀ ସଙ୍ଗତେ ଭୀମ କ୍ରୀଡ଼ାକରେ ନିତି
ବଳିବେଳାକ ବୋଲିଣ ଜନ୍ମିଲା ସନ୍ତତି ।
ମାନଗୋବିନ୍ଦ ବୋଇଲା ପୂର୍ବର ଚରିତ
ଶୃଗାଳ ବିକ୍ରମେ ସିଂହ ମାରିଲା ଯୁକତ ।
ସେହି ବନସ୍ତର ପତି ଅଟଇ କେଶରୀ
ଭକ୍ଷଣ କରଇ ନାନା ଜୀବ ନାଶକରି ।
ବୋଲନ୍ତି ଜୀବେ ତୁମ୍ଭେ ହୋ ଶୁଣ ବନପତି
ରାଜା ହୋଇ ସ୍ୱାମୀ କିପାଁ କରୁଛ ଅନୀତି ।
ଏଥକୁ ସ୍ୱାମୀ ବଚନ ଆମ୍ଭ ପ୍ରତିପାଳି
ସବୁ ଜୀବେ ଆମ୍ଭେ ଜଣେ ଜଣେ ଦେବୁ ପାଳି
ଏ କଣୟ ପର୍ବତରେ ବିଜେ କରଥିବୁ
ଯାହାର ପାଳି ପଡ଼ିବ ତାକୁ ପେଷିଦେବୁ ।
ସିଂହ ବୋଲେ ମୋତେ ଏହା ଭଲ ତ ହୋଇଲା
ଆଜିଠାରୁ ଜାଣ ମୋର ସବୁ ଦୁଃଖ ଗଲା ।
ନିତ୍ୟେ ଜୀବ ପଠିଆନ୍ତି ଯାର ପଡ଼େ ପାଳି
ସୁଖେଣ ମଣୋହି ସିଂହ କରଇ ହିଆଳି ।
ଏହି ପରକାରେ ତହୁଁ କିଛିଦିନ ଗଲା
ଅବଶେଷେ ପାଳି ବୃଦ୍ଧ ଶଶାର ପଡ଼ିଲା ।
ମନରେ ଭାଳଇ ଶଶା ବଇକୁଳ୍ୟ ହୋଇ
ସିଂହ ପାଶେ ଯିବାପାଇଁ ମନ ହେଉନାହିଁ ।

ପୁଣି ବିଚାରଇ ଶଶା ସେହି ନଗପତି
ତାହାର କୋପେ କେ ଥିବ ବନରେ ବରତି ।
ଆହେ ଦଇବ ପୁରୁଷ ତୁମ୍ଭେ ହୁଅ ସାକ୍ଷ
ମୁଁ ତୋର ଶରଣ ଗଲି ବଂଶ ମୋର ରଖ ।
ଏକମନେ ଭ୍ରାନ୍ତି କରି ଚଳେ ବୃଦ୍ଧ ଶଶା
କ୍ଷୁଧାଭରେ ବନପତି କରିଛି ମନୀଷା ।
ଉଚ୍ଛୁର କରିଣ ଶଶା ମିଳିଲା ସନ୍ନିଧେ
ବନପତି ବିଚାରଇ ଦେଖି ମହାକ୍ରୋଧେ
ଆରେ ରେ କ୍ଷୁଧାରେ ମୋର ଆରତ ମନୀଷା
ଏତେ ଉଚ୍ଛୁର କିପାଇଁ କଲୁ ବୃଦ୍ଧ ଶଶା ।
ମନେ ପାଞ୍ଚି କୂଟ କଥା ସେ ଶଶା କହଇ
ବାଟରେ ସଙ୍କଟ ମୋତେ ପଡ଼ିଲା ଗୋସାଇଁ ।
ଆହୁରି ସିଂହେକ ମୋତେ ଦେଖିଲା ଆସନ୍ତେ
ବଳାତ୍କାରେ ଭୁଞ୍ଜୁଥିଲା ରହି ସେହି ପଥେ ।
ସ୍ୱାମୀ ମୁହିଁ ତାହାଠାରେ ହୋଇଲି ବିଶ୍ୱାସୀ
ତୋତେ କହି ଯିବାପାଇଁ ମୁହିଁ ଅଛି ଆସି ।
ସିଂହ ବୋଲେ ମୁଁ ଏ ବନେ ଅଟଇ ଏକାକୀ
ତୁରେ ବୃଦ୍ଧ ଶଶା ଦେଖିଅଛୁ କେଉଁ ସିଂହ ।
ଏହିକ୍ଷଣି ବିକୋଡିବି ମୁଁ ତାହାର ଶିଖା
କେବଣ ସ୍ଥାନରେ ଅଛି ନେଇ ମୋତେ ଦେଖା
କପଟେ ସିଂହକୁ ଶଶା ନେଲାକ କଢ଼ାଇ
ମହା ଗହନ ବନରେ କଲା ଶଶା ନେଇ ।
ଏକ କୂପ ନିକଟରେ ପ୍ରବେଶ ହୋଇଲା
ତୋର ଭୟେ ଏଥେ ସିଂହ ପଶିଛି ବୋଇଲା ।
ବୃଦ୍ଧ ଶଶା ଯେ ସିଂହକୁ ପାଞ୍ଚିଲାକ କୂଟ
କୂଅକୁ ଚାହିଁଣ ସିଂହ ଓଷ୍ଠ କଲା ପୃଷ୍ଟ ।
ଏକା ମୁହିଁ ଯାହା ଦେଖେ ତାହା ମାରି ଖାଇ
ପଳାଇଲା ଜୀବଙ୍କର କତିକି ନ ଯାଇ ।
ଲେଉଟି ଆସିଲା ସିଂହ ଗରଜନ କରି
ଜଳରେ ଦେଖିଲା ତାର ଛାଇ ଅଛି ପଡ଼ି ।
ତାହାର ତେଜ ବିକାଶେ ସେହିପରି ମୂର୍ତ୍ତି
ବୋଇଲା ଯଥାର୍ଥ ଏହି ଅଟେ ବନପତି ।
ଶଶାର ବଚନ ମୁହିଁ କରିଥିଲି ମିଥ୍ୟା
ନିଶ୍ଚୟ ଏ ବନପତି କରିଅଛି ଇଚ୍ଛା ।
ଶୁଭଯୋଗ ବିଚାରିଣ ନ ମାଇଲେ ଏହା
ଏହାର ଥାଆନ୍ତେ କିସ ମୁହିଁ ଜୀବନାହା ।
ଏହିକ୍ଷଣି ବିଦାରିଣ ପକାଇବି ମାରି
ମୋହର ଛାମୁରେ ଏଡ଼େ ଦର୍ପ ଏହୁ କରି ।
ରେ ରେକାର କରି ସିଂହ ଡାକ ହାକ କଲା
କୂପର ଭିତରେ ତାର ଶବଦ ଶୁଭିଲା ।
ଶୁଣ ଆହେ ତାତ ତାର ଅପଣ୍ଡିତ ପଣ
ରେ ରେକାର କରି ଡେଇଁ ପଡ଼ିଲା କୂପେଣ ।
ସେ କୂପ ଗଭୀର ତାର ଏକାଅଶୀ ତାଳ
ଠାବ ନ ପାଇଣ ସେହୁ ହୋଇଲା ବିକଳ ।
ଆହେ ତାତ କ୍ଷୁଦ୍ର ଶଶା ଉପାୟ କରନ୍ତେ
ଆନ ଜୀବମାନେ ଏଣେ ରହିଲେ ନିଶ୍ଚିନ୍ତେ ।
ଶଶାର ବୁଦ୍ଧିବଳରେ ସିଂହ ନାଶଗଲା
ଉପାୟେ ତାତ ଏସନ ଦୁର୍ବୁଦ୍ଧି ହୋଇଲା ।
ଶୁଣ ହେ ତାତ ସିଂହର ପଣ ଅପଣ୍ଡିତ
ପାଣ୍ଡବେ ହୋଇଲେ ମୋତେ ସିଂହର ସଂଜାତ
ଆମ୍ଭେ ଯେ ହୋଇଲୁ ତାତ ଶଶା ବୁଦ୍ଧିମନ୍ତ
ଉପାୟ କଲେ ପାଣ୍ଡବେ ନିଶ୍ଚେ ହେବେ ହତ ।
ଦୟାକରି ମୋତେ ଆଜ୍ଞା ଦିଅ କୁରୁରାଜ
ଉପାୟରେ ଯୁଧିଷ୍ଠିଙ୍କ ଘେନିବଇଁ ରାଜ୍ୟ ।
କୂଟ ପାଞ୍ଚକରି ତୋଷି ରାଜା ଦୁର୍ଯ୍ୟୋଧନ
ତିଆରିଣ ଧୃତରାଷ୍ଟ୍ର ହେଲା ହତମାନ୍ୟ ।
ଯେ ଯାହାର ବିଚାରକୁ ଯୋଗାଏ ଯୁକତ
ଶକୁନି ଉପାୟେ ବଂଶ କରାଇବୁ ହତ ।
କୂଟ କପଟ ମନ୍ତ୍ରୀ ସେ ଅଟେ ବଡ଼ ଦୁଷ୍ଟ
ଅପଣ୍ଡିତ ପାମର ସେ ମୁରୁଖ ପାପିଷ୍ଠ ।
ଶକୁନି ବଂଶ ନାଶିଲୁ ପଥର ଘରରେ
ଜ ପୁଣ ତୋ ବଂଶ ନାଶ କରଇ କୂଟରେ ।
ଏହି ଉପାୟ ନିଶ୍ଚୟ ତୋହରି ଉପରେ
ପାଣ୍ଡବ କୋପେ ବିନଷ୍ଟ ହେବେ କୁରୁବୀରେ ।
ଦୁର୍ଯ୍ୟୋଧନ ବୋଲେ ତାତ ମନ୍ଦ ତୁମ୍ଭ ବୁଦ୍ଧି
ଶକୁନି ପ୍ରସାଦେ ମୋର ସକଳ ସମୃଦ୍ଧି ।
ଶୋଷକାଳେ ପ୍ରାଣୀଙ୍କର ବଢ଼େ ରୋଗ ଯେବେ
ତହିଁପାଇଁ ମୂର୍ଖଲୋକ ଶୋକ କରେ ତେବେ ।
ଧୃତରାଷ୍ଟ୍ରକୁ ବସାଇ ଚଳନ୍ତି କୌରବେ
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଯାଇ ବିଜୟେ ସମ୍ଭର୍ବେ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା କର୍ଣ୍ଣ ଯେ ଶକୁନି
ଅଶ୍ୱତ୍ଥାମା କୃପାଚାର୍ଯ୍ୟ କୃପବ୍ରହ୍ମା ଘେନି ।
ସଭାରେ ବିଜୟ କଲେ ସକଳ ଅମାତ୍ୟ
ଯେଝା ପ୍ରତିଜ୍ଞା କରନ୍ତି ତହିଁ ଅପ୍ରମିତ ।
ଏକକୁ ଆରେକ କହେ ଦମ୍ଭେ ଦର୍ପ କଥା
କୌରବଙ୍କ ଛାମୁରେ କି ପାଣ୍ଡବେ ସମର୍ଥା ।
ଏସନକ ବିଚାରନ୍ତେ ଗଲା ମାସ ବେନି
କୁରୁବୀରେ ରହିଛନ୍ତି ମନେ ଛିଦ୍ର ଘେନି ।
ଜୟ ଜୟ ଜଗନ୍ନାଥ ଅନନ୍ତ ମୂରତି
ଜୟ ଜୟ ଜଗନ୍ନାଥ ବଇକୁଣ୍ଠ ପତି ।

ଜୟ ଜୟ ଜଗନ୍ନାଥ କମଳାରମଣ
ଜୟ ଜୟ ଜଗନ୍ନାଥ ଦୁଃଖ ନିବାରଣ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ଜୟ ଜଗନ୍ନାଥ ସର୍ବ ପିତାମାତ ।
ଆହେ ଦେବ ଜଗନ୍ନାଥ ତୁମ୍ଭ ଶ୍ରୀଚରଣେ
ଶାରଳା ଦାସର ମନ ରହୁ ଅନୁକ୍ଷଣେ ।



## ଅର୍ଜ୍ଜୁନ ବୃକ୍ଷର ଉତ୍ପତ୍ତି ଓ ଇନ୍ଦ୍ରପ୍ରସ୍ଥେ ସବ୍ୟସାଚିଙ୍କର ଉପସ୍ଥିତି

ପୁଚ୍ଛା କଲେ ବୈବସ୍ୱତ ମନୁ ଅଗସ୍ତିଙ୍କୁ
ଅର୍ଜ୍ଜୁନ ବୀର ଯେ ଗଲା ପାତାଳ ପୁରକୁ ।
ନାଗୁଣୀ ମେଳରେ ସେହୁ ନିଶ୍ଚିନ୍ତେ ରହିଲା
ହସ୍ତିନା ସଭାକୁ କୁହ କିପାଇଁ ନଇଲା ।
ଅଗସ୍ତି ମୁନି ବୋଇଲେ ଶୁଣ ହୋ ରାଜନ
ନାଗୁଣୀ ସଙ୍ଗତେ ତହିଁ ରହିଲା ଅର୍ଜ୍ଜୁନ ।
ଏହିରୂପେ ତିନିମାସ ତହିଁ ବହିଗଲା
ଶୁଣ ତୁହି ଏକମନେ ତଦନ୍ତେ ଯା ହେଲା ।
ଯୁଧିଷ୍ଠିର ପଚାରିଲେ ଶୁଣ ହୋ ଅନନ୍ତ
ଅର୍ଜ୍ଜୁନ ଚରିତ ତୁହି ମଣୁଛୁ କେମନ୍ତ ।
ଧନୁ ହୁଳରେ ଧଇଲା ସେହି ବସୁମତୀ
କି ଅବା ହୃଦେ ତାହାର ପଡ଼ିଲାକ କ୍ଷିତି ।
କୁଶଳେ ରହିଅଛି କି କହ ମୋର ପାର୍ଥ
ତାହାକୁ ନ ଦେଖି ମନ ହୁଏ ବ୍ୟାକୁଳିତ ।
ଯୁଧିଷ୍ଠିର ବଚନରେ ଦେବ ଦାମୋଦର
ସହଦେବ ମୁଖ ଚାହିଁ ପୁଚ୍ଛନ୍ତି ଏ ଗିର ।
ଆହେ ସହଦେବ ତୁମ୍ଭେ କହ ତତ୍ତ୍ୱ ତାର
କେଉଁପରି ରହିଅଛି ପାର୍ଥ ମହାବୀର ।
ତହୁଁ କହନ୍ତି କରକୁ ଚାହିଁ ସହଦେବ
ପାତାଳରେ ପ୍ରବେଶନ୍ତେ ସେ ଅନନ୍ତ ଦେବ ।
ପୃଥ୍ୱୀ ଛାଡୁ ଧନୁହୁଳେ ଅର୍ଜ୍ଜୁନ ଧଇଲେ
ସନ୍ତୋଷରେ ନାଗରାଜା କନ୍ୟା ସମର୍ପିଲେ ।
ତାର ନାମ ସନ୍ଧ୍ୟାବାଳୀ ତ୍ରିପୁର ମୋହିନୀ
ତାହାର ରୂପ ଦେଖିଲେ ଟଳିବେ ଯେ ମୁନି ।
ବଡ଼ଇ ସୁନ୍ଦର ନାଗରାଜାର ଦୁଲଣୀ
ମୋହବଶେ ପଡ଼ିଗଲେ ତହିଁ ଫାଲଗୁନି ।
ଅର୍ଜ୍ଜୁନ ସ୍ୱାମୀ ଅଛନ୍ତି ନାଗୁଣୀଙ୍କ ମେଳେ
ବହୁ ଭକ୍ତି କରୁଛନ୍ତି ତାଙ୍କୁ ନାଗବଳେ ।
ଯୁଧିଷ୍ଠି ବୋଇଲେ ପାର୍ଥ ରହିଲା ପାତାଳେ
ମୋହର ବୈରୀ ଅଟନ୍ତି କଉରବ ବଳେ ।
ଏବେ ଅର୍ଜ୍ଜୁନକୁ ଧ୍ୟାନ କର ହୋ ଶ୍ରୀହରି
ବହନ ସେ ଆସୁ ଏଥେ ବିଳମ୍ବ ନ କରି ।
ଯୁଧିଷ୍ଠିରଙ୍କ ବଚନେ ଦେବ ଶିରୀପତି
ସଂକଳ୍ପ କରି ପାର୍ଥକୁ ସୁମରିଲେ ଧାତି ।
ନାଗୁଣୀକୁ କୋଳେ ଧରି ବସିଥିଲେ ପାର୍ଥ
କ୍ରୀଡ଼ାରଙ୍ଗ କୁତୁହଳେ ମଜାଇ ସେ ଚିତ୍ତ ।
ଏସନକ ସମୟରେ କମ୍ପନ୍ତେ ଆସ୍ଥାନ
ହୃଦଗତେ ଚିନ୍ତି ତାହା ଜାଣିଲେ ଅର୍ଜ୍ଜୁନ ।
ମନେ ବିଚାରିଲେ ମୋତେ ସୁମରିଲେ ହରି
ତକ୍ଷଣେ ସେ ନାଗୁଣୀକୁ ପରିତ୍ୟାଗ କରି ।
ତାହା ଦେଖି କୋଳକଲା ଅନନ୍ତ ଦୁହିତୀ
ଆହେ ନାଥ କି ନିମିତ୍ତ ବିଚଳିତ ମତି ।
ଦୃଢ଼କରି ବାରମ୍ବାର ପୁଛେ ସ୍ତିରୀମଣି
ଏଡ଼େ ପ୍ରୀତି କିପାଁ ନାଥ ଛାଡୁଅଛ ପୁଣି ।
ଅର୍ଜ୍ଜୁନ ବୋଇଲେ ତୁ ଗୋ ଶୁଣ ସନ୍ଧ୍ୟାବାଳୀ
ମୋର ଠାକୁର ଅଟନ୍ତି ଦେବ ବନମାଳୀ ।
ମୋତେ ସେ ହାଦେ ଚିନ୍ତିଲେ ହୃଦୟ ମଧ୍ୟରେ
ଏବେ ମୁହିଁ ଯିବି ପ୍ରିୟେ ହସ୍ତିନା ନଗରେ ।
ଆଗୋ ସୁନ୍ଦରୀ ତୁ ଶୁଭେ ଏଥେଁ ରହିଥାଅ
ମୁହିଁ ପୁଣି ସମୟେକେ ଆସିବି ନିଶ୍ଚୟ ।
ନାଗୁଣୀ ବୋଇଲା ତୁମ୍ଭେ ମୋର ପଞ୍ଚଆତ୍ମା
ଅକସ୍ମାତେ ପ୍ରାପ୍ତ ହୋଇଥିଲ ହେ ମହାତ୍ମା ।
ମୁହିଁ ତୁମ୍ଭର ଭାବିନୀ ତୁମ୍ଭେ ମୋର ପତି
ସ୍ୱାମୀ ବିହୁନେ କି ରହିପାରଇ ଯୁବତୀ ।
ଏଡ଼େ ମାୟା ଲଗାଇଣ ଛାଡୁଛ କେମନ୍ତେ
ଜାଣିଲଇଁ ତିଳେମାତ୍ର ଦୟା ନାହିଁ ଚିତ୍ତେ ।
ପୁଣି ବୋଇଲା ତୁମ୍ଭେ ଯେ ଅତ୍ୟନ୍ତ ନିର୍ଦ୍ଦୟ
ଯେଣୁ ଭାବ ଲଗାଇଣ ଭଣ୍ଡି କରି ଯାଅ ।
ଜାଣିଲଇଁ ଶୁକପକ୍ଷୀ ପ୍ରାୟେ ତୁମ୍ଭ ମତି
ସ୍ୱର୍ଣ୍ଣ ପଞ୍ଜୁରୀରେ ଅନ୍ନ ଦେଉଥିଲେ ନିତି ।
ଅକସ୍ମାତେ ପିଞ୍ଜରୀରୁ ଫିଟିଣ ସେ ଗଲେ
ସେ କଥା ପାସୋରମ୍ପାଏ ଡାଳରେ ବସିଲେ ।
ପୋଡୁ ପୋଡୁ ସ୍ୱାମୀ ଏହି ସ୍ତିରୀଙ୍କ ଜନମ
ପରେ ଦୃଷିତା ହୋଇଣ ରଖନ୍ତି ସେ ପ୍ରାଣ ।
ଅନେକ ବାଗେ ପୁରୁଷ ମନ ରଖିଥାନ୍ତି
କାଳେ ପୁଣି ସେହି ତାକୁ ଛାଡ଼ିଣ ଯାଆନ୍ତି ।
ଏସନ ପ୍ରକୃତି ବୋଲି ଜାଣିଲଇଁ ଏବେ
ଧିକ ଧିକ ଏ ଜୀବନ ତୋହର ଅଭାବେ ।
ସ୍ୱାମୀ ପିଅର ମୋହର ଅଟନ୍ତି ଅନନ୍ତ
ପ୍ରତ୍ୟକ୍ଷେ ତୁମ୍ଭ ମହିମା ଦେଖିଛନ୍ତି ସେତ ।

ପୋଡ଼ିଯାଉ ନାଥ ଏବେ ଏ ହୀନ କରମ
କେଉଁ ପାପଯୋଗେ ଭବେ ଲଭିଲି ଜନମ ।
କୁହ ଅବା କାଳେ ମୁହିଁ କରିଲି କି ଦୋଷ
ତେଣୁ ଛାଡ଼ି ଯାଉଅଛ ମୋତେ ପ୍ରାଣଈଶ ।
ଏତେ ବୋଲି ଅର୍ଜ୍ଜୁନକୁ କୋଳାଗ୍ରତ କରି
ମୁଖେ ଚୁମ୍ବନ ଦେଇଣ ବୋଲେ ସେ ନାଗରୀ ।
ଏକେ ନବଯୁବା ପୁଣି ହେଲି ଅଭାଗିନୀ
କେମନ୍ତେ ବଞ୍ଚିବି ନାଥ କହ କାହା ଘେନି ।
ତୋହର ଅଭାବେ ମୋର ନ ରହିବ ଜୀବ
ନିଶ୍ଚୟ ତୁମ୍ଭଙ୍କୁ ହତ୍ୟା ଦୋଷ ଯେ ଲାଗିବ ।
ଏତେ ବୋଲି ଉଚସ୍ୱରେ କରଇ ବିଳାପ
ନୟନରୁ ଅଶ୍ରୁଜଳ ବହେ ଅନର୍ଯ୍ୟାପ ।
ଅର୍ଜ୍ଜୁନ ବୋଇଲେ ତୁ ଗୋ ଶୁଣ ରାମାମଣି
ବୃଥାରେ ରୋଦନ କିପାଁ କରୁଅଛୁ ପୁଣି ।
ଲୋହିତ ବରନ ଦିଶୁଅଛଇ ନୟନ
ଲାବଣ୍ୟ ବଦନ ଗୋଟି ନ କର ମଳିନ ।
ଜାଣୁ ତୁ ସୁଭଦ୍ରା ଦେବୀ ଅଟେ ମୋର ଭାର୍ଯ୍ୟା
ତୋ ନିମନ୍ତେ କରିଅଛି ତାକୁ ପରିତେଜ୍ୟା ।
ଏବେ ଦେଖିବଇଁ ଯାଇ କୁଟୁମ୍ବ ମୋହର
ପୁଣି ସମୟକେ ଫେରି ଆସିବି ନିକର ।
ଅକାରଣେ ବାଳାମଣି ନୁହସିଟେ ଗଞ୍ଜି
କର୍ମେ ଯାହା ଅରଜିଛୁ ତାହା ସିନା ଭୁଞ୍ଜି ।
ଅଳପ ସମୟ ମୋତେ ଥାଅ ତୁ ରେ ମୂର୍ଚ୍ଛି
ନିଜ ମନ୍ଦିରକୁ ଏବେ ଯାଅ ମୁଁ କହୁଛି ।
ଅର୍ଜ୍ଜୁନର କଥା ଶୁଣି ନାଗୁଣୀ ଚଳିଲା
ଅନନ୍ତ ଆଗରେ ଯାଇ ସକଳ କହିଲା ।
ଭୋ ତାତ ନ ଜାଣି ମୋତେ କଲୁ ତୁ ପ୍ରଦାନ
ଏଡ଼େ ବଡ଼ ରାଜା ହୋଇ ହେଲୁ ତୁ ଅଜ୍ଞାନ ।
ଯାହା ହସ୍ତରେ ପ୍ରଦାନ କରିଥିଲୁ ମୋତେ
ସେହି ଏବେ ଛାଡ଼ିକରି ଯାଉଅଛି ମର୍ତ୍ତ୍ୟେ ।
ଅନେକ ପ୍ରକାରେ ତାକୁ ବିନୟେ କହିଲି
ନ ମାନଇ ମୋର ବୋଲ ତୋତେ ଜଣାଇଲି ।
ଶୁଣି ଅନନ୍ତ ମନରେ ହେଲା ମହାଦୁଃଖ
ଆପଣାର ପୁତ୍ରଙ୍କୁ ସେ ଡକାଇଣ ପାଖ ।
ଶଙ୍ଖ ପଦ୍ମ ମହାପଦ୍ମ କୁଳିକ ତକ୍ଷକ
ରାଇଣ ଆଜ୍ଞା ଦିଅଇ ପାତାଳ ନାୟକ ।
ଆରେ ବାବୁ ଶୀଘ୍ର ଚଳ ଅର୍ଜ୍ଜୁନ ପାଖକୁ
କି ନିମନ୍ତେ ହୀନମାନ କରେ ମୋ ଝିଅକୁ ।
କିସ ଅସୁବିଧା ଏଥେ ତାହାକୁ ହୋଇଲା
କାହିଁପାଇଁ ମର୍ତ୍ତ୍ୟକୁ ସେ ଯିବାକୁ ଇଚ୍ଛିଲା ।

ପିତାଙ୍କ ଆଦେଶ ପାଇ ସେହି ନାଗବୀରେ
ଅତିବେଗେ ଧାଇଁଲେ ସେ ପବନହୁଁ ଖରେ ।
ତାଙ୍କ ସଙ୍ଗେ ସନ୍ଧ୍ୟାବାଳୀ ଗୋଡ଼ାଇଣ ଗଲା
ଅର୍ଜ୍ଜୁନ ନିକଟେ ଯାଇ ପ୍ରବେଶ ହୋଇଲା ।
ଅନୁକୂଳ ଘେନି ପାର୍ଥ ଅଛି ଉଭାହୋଇ
ଏହିକାଳେ ନାଗମାନେ ପହଞ୍ଚିଲେ ଯାଇ ।
ଅନେକ ରତ୍ନ ନେଇଣ ଥିଲେ ସର୍ବ ନାଗ
ଅର୍ଜ୍ଜୁନ ଛାମୁରେ ନେଇ ଥୋଇଦେଲେ ବେଗ ।
ଦେଖିଣ ତାଙ୍କୁ ଅର୍ଜ୍ଜୁନ ଏସନ ବୋଲଇ
ଏବେ ମଞ୍ଚ ଭୁବନକୁ ଯାଉଅଛି ମୁହିଁ ।
ଏହା ଶୁଣି ବିନୟରେ କହଇ କୁଳିକ
ସ୍ୱାମୀ ପାତାଳ ଭୁବନେ ପାଇଲ କି ଦୁଃଖ ।
ଆମ୍ଭେ କି ତୋହର କରି ନ ପାରିଲୁ ସେବା
ତେଣୁକରି ଯିବାପାଇଁ ଲୋଡୁଅଛ ବାବା
ଅଥବା ଆମ୍ଭର ଭଗ୍ନୀ କରିଲା କି ଦୋଷ
ତେଣୁକରି ଯିବାପାଇଁ ବଳିଛି ମାନସ ।
ଅର୍ଜ୍ଜୁନ ବୋଇଲେ ସେହି ପରମ ସାଧବୀ
ତାହାଠାରେ ଦୋଷ ବୃଥା କିପାଇଁ ମୁଁ ଦେବି ।
ଅନେକ ପ୍ରକାରେ ତୁମ୍ଭେ କରିଅଛ ସେବା
ତୁମ୍ଭର କି ଦୋଷ ମୁହିଁ ବାଛିବଇଁ ଅବା ।
ଆମ୍ଭର ଯେ କାଳେକାଳେ ବୈରୀ ଦୁର୍ଯ୍ୟୋଧନ
କୌରବ ନୃପତି ସେହି ଅଟେ ତୁମ୍ଭେ ଜାଣ ।
କି ଅବା ଆସିଣ ସେହି ଲଗାଇଛି ଦ୍ୱନ୍ଦ
ତେଣୁକରି ସୁମରିଲେ ମୋତେ ଆଦିକନ୍ଦ ।
ଯାଉଛି ସକଳ କଥା ବୁଝି ମୁଁ ଆସିବି
ତୁମ୍ଭ ପାଶେ ରହିଥାଉ ମୋହର ବାନ୍ଧବୀ ।
ଏମନ୍ତ ସମୟେ ତହିଁ ଅନନ୍ତ ମିଳିଲା
ବହୁତ ବିନୟେ ସେହି ପାର୍ଥଙ୍କୁ କହିଲା ।
କିପାଇଁ ହେ ସବ୍ୟସାଚୀ ଛାଡ଼ ଏ ଭୁବନ
ତାହା ମୋହର ଆଗରେ କହ ହେ ବହନ ।
ଏହା ଶୁଣି ଧନଞ୍ଜୟ କହନ୍ତି ଏ ବାଣୀ
କି କାରଣେ ଜଗନ୍ନାଥ ସୁମରନ୍ତି ପୁଣି ।
କିବା ଦଇତ୍ୟ ଆସିଣ କଲେ ଉତପାତ
ତେଣୁ କରି ଘନ ଘନ ସ୍ମରନ୍ତି ଅଚ୍ୟୁତ ।
ଅର୍ଜ୍ଜୁନ ବଚନ ଶୁଣି ଚେତିଲେ ଅନନ୍ତ
ମୁହିଁ ତୋତେ କଟାଳ ନ ପାରେ ବୀର ପାର୍ଥ ।
ଅନେକ ଦ୍ୱନ୍ଦ୍ୱରେ ରକ୍ଷାକଲୁ ମହାଭାରା
କୃଷ୍ଣ ଆଉ ତୁମ୍ଭେ ପୁଣ ଏକଆତ୍ମା ପରା ।
ତୁମ୍ଭ ଯୋଗରୁ ଉଶ୍ୱାସ ହୋଇବ ମେଦିନୀ
ଏହା ମୁହିଁ ପୂର୍ବୁ ଭଲରୂପେ ଅଛି ଜାଣି ।

ଅର୍ଜୁନ ବୋଇଲେ ତାତ ଆଜ୍ଞାଦିଅ ମୋତେ
ବହନ ଯାଇଣ ଫେରି ଆସିବଇଁ ଏଥେ ।
ଏହା କହି ସନ୍ଧ୍ୟାବାଳୀ ମୁଖକୁ ଅନାଇଁ
ବୋଇଲେ ଗୋ ଶୋକ ଏବେ ଛାଡ଼ ପ୍ରାଣସହି
ହରଷ ହୋଇଣ ଅର୍ଘ୍ୟ ଦିଅ ମୋର ମାଥେ
କଷ୍ଟେ ଏଥେ ରହିଥାଅ ତୁମ୍ଭେ ଦିନାକେତେ ।
ସନ୍ଧ୍ୟାବାଳୀ ବୋଲେ ନାଥ ନିରାଶ ନ କର
ତୁମ୍ଭ ସଙ୍ଗେ ନେଇଯାଅ ମୋତେ ମଞ୍ଚପୁର ।
ଅର୍ଜୁନ ବୋଇଲେ ମୋର ଭାରିଯା ପାଞ୍ଚାଳୀ
ତୁମ୍ଭଙ୍କୁ ଦେଖିଲେ ସେହି ଲଗାଇବେ କଳି ।
ସୁଭଦ୍ରା ବୋଲିକରି ଯେ କୃଷ୍ଣଙ୍କ ଭଉଣୀ
ସେହି ଜାଣ ମହାଦୁଷ୍ଟ ଅଟଇଟି ପୁଣି ।
ଛାଡ଼ ଅଭିମାନ ଏବେ ନ କର ଯେ ଶୋକ
ପୁଣି ସାନ୍ତ୍ୱନା କରିଲେ ଚାହିଁ ନାଗଲୋକ ।
ନାଗୁଣୀ ବୋଇଲା ମୋର ଗର୍ଭ ବେନିମାସ
ତୁମ୍ଭେ ଗଲେ ପାଇବଇଁ ମୁହିଁ ଉପହାସ ।
ଅର୍ଜୁନ ବୋଇଲେ ଯେବେ ପୁତ୍ର ହେବ ଜନ୍ମ
ତୋର ମୋର ଦୁହିଙ୍କର ଦେବୁ ତାର ନାମ ।
ଶୁଣି କରପତ୍ର ଯୋଡ଼ି ପୁଚ୍ଛଇ ନାଗୁଣୀ
ଏ ଯୁବା ବୟସ ନାଥ ଭୋଗିବ କେ ପୁଣି ।
କାହାର ସଙ୍ଗତେ ମୁହିଁ କରିବି ବିହାର
କେମନ୍ତେ ମୁଁ ସମ୍ଭାଳିବି କାମ ପଞ୍ଚଶର ।
ତହୁଁ ବାବଲ ଶରକୁ ଘେନି ଫାଲଗୁନି
ଦକ୍ଷିଣ ଭୁଜ ଆଘାତ କରେ ବେଳ ତିନି ।
ଝର ଝର ହୋଇ ରକ୍ତ ବହିଲା ତକ୍ଷଣ
ତହିଁରୁ ଗୋଟିଏ ବୃକ୍ଷ ହୋଇଲା ଉତ୍ପନ୍ନ ।
ତାକୁ ଚାହିଁ ଅରଜୁନ କହନ୍ତି ଗୋ ଦେଖ
ଏହାର ନାମ ଅଟଇ ଅରଜୁନ ବୃକ୍ଷ ।
ଯେତେବେଳେ ହେବ ତୋର ଶୃଙ୍ଗାରକୁ ଇଚ୍ଛା
ଏହା ସଙ୍ଗେ ପୂରାଇବ ତୋର ମନବାଞ୍ଛା ।
ମୋ ନାମ ସୁମରି ଏହି ବୃକ୍ଷ କୋଳ କଲେ
ଭାଙ୍ଗିବ କନ୍ଦର୍ପ ପୀଡ଼ା ଯାକୁ ଆକର୍ଷିଲେ ।
ନାଗୁଣୀ ବୋଇଲା ମୋତେ ଦେଲ ଯେ ସନ୍ଦେଶ
ଆବର କଥାଏ ସ୍ୱାମୀ ମନେ ହୁଏ ତ୍ରାସ ।
ତୁମ୍ଭେ ଯେ କ୍ଷତ୍ରିୟ ଅଟ ସଦା ଦ୍ୱନ୍ଦ୍ୱକାରୀ
ଅନୁବ୍ରତେ ପ୍ରମାଦ ଯେ ଆଗତ ତୁମ୍ଭରି ।
ପାପ ପ୍ରମାଦକୁ ମୁହିଁ ଜାଣିବି କେମନ୍ତେ
ଏ ସନ୍ଦେହ ଫେଡ଼ି ସ୍ୱାମୀ କହିଦିଅ ମୋତେ ।
ନାଗୁଣୀର ବଚନରେ ଭାଷିଲେକ ପାର୍ଥ
ବାତୁଳ ପରାୟେ କଥା କହୁ ରେ ସଙ୍ଗାତ ।
ଆମ୍ଭେ ପୃଥିବୀ ମଧ୍ୟରେ ଅଟୁ ଜଗଜିତା
ଯମଦଣ୍ଡ ନିବାରଣେ ଆମ୍ଭେ ଯେ ଶକତା ।
ପୁଣି ଆମ୍ଭ ଜ୍ୟେଷ୍ଠଭ୍ରାତା ବୀର ବୃକୋଦର
ଯା ମୂର୍ତ୍ତି ଦେଖି ତ୍ରାସଇ କାଳ ଦଣ୍ଡଧର ।
ଆମ୍ଭେ ତ ପରର ମୃତ୍ୟୁପଥ ରୋଧିପାରୁ
ମରଣ କଥା ଆମ୍ଭଙ୍କୁ ତୁ କିପାଁ ପଚାରୁ ।
ଏହା ଶୁଣି ସନ୍ଧ୍ୟାବାଳୀ କହେ କରଯୋଡ଼ି
ଏ ପୃଥ୍ୱୀରେ ଜାତ ହୋଇ ଅବଶ୍ୟ ତ ମରି ।
ଯାହାଙ୍କ ପ୍ରତିଜ୍ଞାମାନ ତୁମ୍ଭେ ଦେଖାଇଲ
ସେହି ପୁଣି ସମୟେକ ତେଜିବ ଶରୀର ।
ନାଗୁଣୀର ବଚନରେ ବୋଲେ ସବ୍ୟସାଚୀ
ଅବଶ୍ୟ ତ ସୁନ୍ଦରୀରେ ମରଣଟି ଅଛି ।
ଯଦ୍ୟପି କାଳେ ମୋତେ ତ ପ୍ରମାଦ ପଡ଼ିବ
ଅର୍ଜୁନ ବୃକ୍ଷ ଗୋଟିକ ମଳିନ ହୋଇବ ।
ଏସନ ଶକୁନ ତାକୁ କହିଣ ଅର୍ଜୁନ
ପାତାଳ ପୁରରୁ ତହୁଁ କରିଲେ ଗମନ ।
ଗାଣ୍ଡୀବ ଧନୁ ତୂଣୀର ଶ୍ରୀଭୁଜରେ ଶୋହେ
ଇନ୍ଦ୍ରପ୍ରସ୍ଥେ ସବ୍ୟସାଚୀ କରିଣ ବିଜୟେ ।
ଯୁଧିଷ୍ଠିରଙ୍କ ନିକଟେ ଛନ୍ତି ବାସୁଦେବ
ଆବର ଅଛନ୍ତି ତହିଁ ଭୀମ ସହଦେବ ।
ଏସନ ସମୟେ ଯାଇ ପ୍ରଣମିଲା ପାର୍ଥ
ହରଷେ କଲ୍ୟାଣ କଲେ ତାକୁ ଧର୍ମସୁତ ।
ଅର୍ଜୁନକୁ ଦେଖିକରି ପ୍ରଭୁ ଦଇତ୍ୟାରି
ତତକ୍ଷଣେ ଉଠିଯାଇ କୋଳାଗ୍ରତ କରି ।
କୁଶଳ ବାରତା ପୁଣି ପୁଚ୍ଛିଲେ ଅଚ୍ୟୁତ
ଧନୁହୁଳେ ମହୀଭାର ଉଶ୍ୱାସିଲୁ ତୁ ତ ।
କର ଯୋଡ଼ିଣ ବୋଲନ୍ତି ବୀର ଧନଞ୍ଜୟ
ଯାହା ଯାହା ହେଲା ତୁମ୍ଭେ ଶୁଣ ଦେବରାୟ ।
ମୋହର ପ୍ରାକର୍ମ ଦେଖି ସେ ଅନନ୍ତ ନାଗ
ଦୁହିତା ଗୋଟିଏ ଆଣି ଦେଲା ମୋତେ ବେଗ
ଶୁଣିକରି ହସ ହସ ହୋଇଲେ ଅଚ୍ୟୁତ
ଆମ୍ଭଙ୍କୁ ପାସୋରି ପାର୍ଥ ରହିଲୁ କେମନ୍ତ ।
ଯୁଧିଷ୍ଠିଦେବ ବୋଇଲେ ହୋଇ କୃତକୃତ୍ୟ
କୁଶଳରେ ଥିଲୁଟି କି ଆରେ ବାବୁ ପାର୍ଥ ।
ଏହିରୂପେ ପୁଣ ପୁଣ ସମସ୍ତ ପୁଚ୍ଛିଲେ
ସକଳ କୁଶଳ ବୋଲି ଅର୍ଜୁନ କହିଲେ ।
ଯୁଧିଷ୍ଠି ବୋଇଲେ ଆମ୍ଭ ବାଦୀ ଦୁର୍ଯ୍ୟୋଧନ
ସେ ହେତୁରେ କୃଷ୍ଣ ତୋତେ କରିଲେ ସ୍ମରଣ
ଅର୍ଜୁନ ପୁଚ୍ଛା କରନ୍ତି ଆହେ ଜଗନ୍ନାଥ
ତୁହି ଜଗତବାନ୍ଧବ ନାମ ତୋ ଅଚ୍ୟୁତ ।

ଏହି ସଂସାରକୁ ଦେବ ତୁହି ଉଦ୍ଧାରନ୍ତା
ମଧୁରିପୁ ନାମ ତୋର ବିହିଲେ ବିଧାତା ।
ଜଳ ସ୍ଥଳ କଲୁ ମଧୁକଇଟଭ ମାରି
ତାର ମାଂସରେ କରିଲୁ ପୁଣି ବସୁନ୍ଧରୀ ।
ବିଶ୍ୱଜନ ହିତେ ନାଥ ସମୁଦ୍ର ମନ୍ଥାଇ
ଅନେକ କଣୟ ତହୁଁ ତୁହି ଉପୁଜାଇ ।
ପରମାନନ୍ଦ ପୁରୁଷ ଜପ ମନ୍ତ୍ର ମୂଳ
ତୋହର ଉଦରୁ ଜାତ ବ୍ରହ୍ମାଣ୍ଡ ସକଳ ।
ଦୁର୍ଲ୍ଲଭ ଚରିତ ତୋର ଦେବଙ୍କୁ ଦୁର୍ଲ୍ଲଭ
ଜଗତବାନ୍ଧବ ତୁହି ଅଟୁ ବାସୁଦେବ ।
ସ୍ଥାବର ଜଙ୍ଗମ କୀଟଆଦି ଚାରିଖାନି
ଏହି ତୋହର ଶରୀରୁ ସର୍ବ ନିରିମାଣି ।
ନିରିମଳ ନିଷ୍କଳଙ୍କ ପୁଣି କେ ନିଃଶଙ୍କା
ଖେଳି କୁତୂହଳେ ଦେବ ଦଗ୍‌ଧ ଜଳ ଶଙ୍କା ।
ଜାତ ଅବସାନ ତୁହି କରୁ ନରହରି
ରାଜୀବ ଲୋଚନ ସ୍ୱାମୀ ଦେବ ଦଇତ୍ୟାରି ।
ଶରଣ ସୋଦର ନାଥ ଅଗାଧ ପୟୋଧି
ଯାହାର ଅନ୍ତ ନ ପାନ୍ତି ବ୍ରହ୍ମା ଶିବ ଆଦି ।
ନମସ୍ତେ ହେ ହୃଷୀକେଶ କାଳିନ୍ଦୀର ନାଥ
ଶରଣ ସୋଦର ପ୍ରଭୁ ଅଟ ପରମାର୍ଥ ।
ଏହି ଆଜ୍ଞା କର ପ୍ରଭୁ ସଦା ତୁମ୍ଭ ପାଦେ
ପଞ୍ଚମନ ରହିଥାଉ ନିତ୍ୟ ଅପ୍ରମାଦେ ।
ତୁଳସୀ ବଲ୍ଲଭ ନାଥ ପଦ୍ମପାଦ ତଳେ
ଶାରଳା ଦାସର ମନ ରହୁ ଯେ ନିଶ୍ଚଳେ ।



## ପଶାଖେଳ ଓ ସଭାକୁ ପାଣ୍ଡବଙ୍କ ଆଗମନ

ହେ କୁମ୍ଭଋଷି ତନୟେ ମୋତେ ଦୟାକର
ତୁମ୍ଭ ପ୍ରସାଦେ ଭାରତ କରିବି ପ୍ରଚାର ।
ବହୁତ ବିନୟେ ତାଙ୍କୁ କହିଲେ ଫାଲ୍‌ଗୁନି
ତୁମ୍ଭର ପ୍ରସାଦେ ମୁହିଁ ଧଇଲି ମେଦିନୀ ।
ଅର୍ଜ୍ଜୁନଙ୍କୁ ସମ୍ଭାର୍ଜ୍ଜନା କରି ଦେବରାଜ
ଦ୍ୱାରକାକୁ ଯିବାପାଇଁ ହେଲେ ସଜବାଜ ।
ଯୁଧିଷ୍ଠିରଙ୍କ ଛାମୁରେ କହିଲେ ଶ୍ରୀବତ୍ସ
ସ୍ୱାମୀ ଆଜ୍ଞା ଦିଅ ମୋତେ ଦ୍ୱାରକା ଯାଉଛି ।
ସନ୍ତୋଷରେ ଯୁଧିଷ୍ଠିର କହିଲେ ହୋ ଯାଅ
ଗରୁଡ଼ ପିଠିରେ ବସି ଗଲେ ଦେବରାୟ ।
ବିଜୟେ ଶ୍ରୀନାରାୟଣ ଆପଣାର ପୁରୀ
ଯୁଧିଷ୍ଠିର ଦେବ ଏଣେ ଘେନି ଭାଇ ଚାରି ।
ବିଚାର କରନ୍ତି ବସି କଥା ଏହିପରି
ଚାଲ ଯିବା ଧୃତରାଷ୍ଟ୍ରେ ଦରଶନ କରି ।
ମିଥୁନ ଶୁକ୍ଳ ଚତୁର୍ଥୀ ବୁଧବାର ଦିନ
ଅଶ୍ଳେଷା ନକ୍ଷତ୍ର ଭୋଗ ତେରଦଣ୍ଡ ଜାଣ ।
ତେର ଦଣ୍ଡର ଉତ୍ତାରେ ମଘା ସିଂହରାଶି
ଯିବାପାଇଁ ଅନୁକୂଳ ବିଚାରନ୍ତି ବସି ।
ବିଷ୍ଟିକରଣ ଚାଳିଶ ଦଣ୍ଡ ପରିଯନ୍ତେ
ବ୍ୟତିପାତ ଯୋଗ ପୁଣି ସମ୍ପୂର୍ଣ୍ଣ ଯୁକତେ ।
ନୈର୍ଋତେ ଯୋଗିନୀ ଜାଣ ଅଟଇ ତାହାଙ୍କୁ
ଏ ସମୟେ ବାହାରିଲେ ହସ୍ତିନା ପୁରକୁ ।
ଶ୍ୱେତହସ୍ତୀ ଗୋଟିକରେ ବସି ପାଞ୍ଚଜଣ
ଶ୍ରୀହରି ସୁମରି ତହୁଁ ଚଳିଲେ ତକ୍ଷଣ ।
ଧୃତରାଷ୍ଟ୍ରଙ୍କ ସମୀପେ ଯାଇଣ ମିଳିଲେ
ମହାନାଗ ପୃଷ୍ଠ ତତକ୍ଷଣେ ତେଜ୍ୟା କଲେ ।
ଅନ୍ଧରାଜାଙ୍କ ଚରଣେ ନମିଲେ ଯୁଧିଷ୍ଠି
ସଞ୍ଜୟ ବୋଲେ ଯୁଧିଷ୍ଠି ତବ ପାଦେ ଲୋଟି ।
ଅମ୍ବିକା ନନ୍ଦନ ତହୁଁ ଦରାଣ୍ଡି ଧଇଲେ
ବାବୁ ସୋମବଂଶେ ଜାତ ହୋଇଲୁ ବୋଇଲେ
ମୁଁ ମହାପାତକୀ ଜନ ଭବେ ଅବତରି
ମୋହର ପୁତ୍ର ହୋଇଲେ ସଦା ଦ୍ୱନ୍ଦ୍ୱକାରୀ ।
ବାବୁ ତୋହର ପରାୟେ ପୁତ୍ର ଜାତ ହେଉ
ଦୁର୍ଯ୍ୟୋଧନ ପ୍ରାୟେ ଦୁଷ୍ଟସୁତ ଜନ୍ମ ନୋହୁ ।
କର୍କଶ ମଧୁପିଙ୍ଗଳ ଯା ପ୍ରକୃତି ଦୁଷ୍ଟ
ସେ ପୁତ୍ର ଜନମ ହେଲେ ବଂଶ ହୁଏ ନଷ୍ଟ ।
ଯଦ୍ୟପି ପୁତ୍ର ମୋହର ଦ୍ୱନ୍ଦ୍ୱକାରୀ ରାଗୀ
ତୁ ଧର୍ମ ତାର ଦୋଷକୁ ଥିବୁ ପରିତ୍ୟାଗୀ ।
ବାବୁ ଯେ ପାପପୁଣ୍ୟକୁ ସର୍ବଦା ସମ୍ଭାଳେ
ପାପ ଆପେ ନାଶଯାଇ ତାର ପୁଣ୍ୟବଳେ ।
କଦାଚିତେ ନ ଧରିବୁ ଦୁର୍ଯ୍ୟୋଧନ ଦୋଷ
ଏବେ ହସ୍ତିନା ସଭାରେ ଯାଇକରି ବସ ।
ଧର୍ମ ବୋଇଲେ କହିଲ ତୁମ୍ଭେ ନ ବିଚାରି
ଦୁର୍ଯ୍ୟୋଧନ ଭାଇ ସଙ୍ଗେ ଭୀମ ନୁହେଁ ସରି ।
ଯେ ଭଣ୍ଡାର ଆବୋରିଲା ମହାଯଜ୍ଞ କାଳେ
ଧନେ କଳନ୍ତା ନୋହିଲା ଦୁର୍ଯ୍ୟୋଧନ ବଳେ ।
ଭୋ ପିତା ଯେତେକ ଦେଖା ଦରଶନୀ ଧନ
ଭଣ୍ଡାରୁ ନ ଆସୁ ଦିଏ କେତେକ ସେ ଦାନ ।
ଚକ୍ଷୁହୀନ ବୁଦ୍ଧିହୀନେ କଥା କିପାଁ କହୁ
ଦୁର୍ଯ୍ୟୋଧନ ପରା ଭାଇ ଜନ୍ମେ ଜନ୍ମେ ଥାଉ ।
ଧୃତରାଷ୍ଟ୍ର ବୋଲେ ବାବୁ ନିସ୍ତରିଲି ମୁହିଁ
ଅଛି ଯେବେ ସେହି ଏତେ କଥା ଉପୁଜାଇ ।

ବହୁତ ପ୍ରଶଂସା ତାକୁ କଲେ ଧର୍ମରାଜେ
ସଭାସ୍ଥାନେ ଯାଇ କଲେ ଯୁଧିଷ୍ଠିର ବିଜେ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା କର୍ଣ୍ଣ ଭୂରିଶ୍ରବା
ନମସ୍କାର କଲେ ଗୁରୁ ଜ୍ୟେଷ୍ଠ ପାଦସେବା ।
ମଧ୍ୟସ୍ଥାନେ ହୋଇଲେ ଧର୍ମ ଦେବ ଉଭା
ମଘବା ପରାୟେ ତହିଁ ପାଇଲେକ ଶୋଭା ।
ଦ୍ୱିତୀୟ ଖୟକୁ ମାଡ଼ିବସିଛି ଶକୁନି
ଆପେ ଆପେ ପାରଇ ସେ ପଶାକାଠି ଘେନି ।
ପଶା ଦେଖିଣ ବସିଲେ ଯୁଧିଷ୍ଠି ଛାମୁରେ
ବୋଇଲେ ପଶା ଖେଳନ୍ତି ମାମୁଁ ଏ ସଭାରେ ।
ଅଣ୍ଟାରୁ ଖଡ଼ିଗୋଟାଳି କାଢ଼ିଲେ ଯୁଧିଷ୍ଠି
ସ୍ୱହସ୍ତେ ଧର୍ମନନ୍ଦନ ପଶାକୋଠି କାଟି ।
ଦ୍ୱାଦଶ କୋଠି ତ୍ରିକଚ୍ଛ ଚରଣ ତା ଶିର
କାଟିଲେକ ବୈଜୟନ୍ତି ମାଳ ଯୁଧିଷ୍ଠିର ।
ହରଷରେ ମହାରାଜା କାଟିଲେ ଏକାଳେ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସଭାରେ ସକଳେ ।
ଦୁର୍ଯ୍ୟୋଧନ ବୋଲେ ମାମୁଁ ପଛକୁ ଯେ ଘୁଞ୍ଚ
ଯୁଧିଷ୍ଠିର ତୁଲେ ମୋର ପଶାଖେଳ ରଚ ।
ପୂର୍ବେ ଯୁଧିଷ୍ଠି ପଶ୍ଚିମେ ରାଜା ଦୁର୍ଯ୍ୟୋଧନ
ମଧ୍ୟ ପୀଢ଼ରେ ବସିଲା ଗାନ୍ଧାର ନନ୍ଦନ ।
ମାନଗୋବିନ୍ଦର ମୁଖ ଚାହିଁ ମହାରାଜା
ବୋଲନ୍ତି କିସ ଖେଳକୁ କରିବା ପରିଜା ।
ଯୁଧିଷ୍ଠି ବଚନେ ମାନଗୋବିନ୍ଦ କହିଲା
ମୋର ଦେହ ଅଳଙ୍କାର ପରିଜା ହୋଇଲା ।
ଅଳଙ୍କାରମାନ କାଢ଼ି ଥୋଇଲା ସେ ଭୂମି
ଦେଖି ମନେ ବିଚାରନ୍ତି ଧର୍ମରାଜା ସ୍ୱାମୀ ।
ଆପଣା ଶରୀରେ ଥିଲା ଯେତେ ଅଳଙ୍କାର
ଶରୀରୁ ସବୁ କାଢ଼ିଲେ ଦେବ ଯୁଧିଷ୍ଠିର ।
ସମସ୍ତ ଅଳଙ୍କାର ସେ କଲେ ଭୂମିଗତ
ଯୁଧିଷ୍ଠିଦେବ ବୋଇଲେ ଏହି ସେ ଯୁକତ ।
ବେନି ରାଜାଏ ବସିଲେ ଖେଳେ ପୀଢ଼କରି
ବୋଇଲେ ଯେହୁ ଜିଣିବ ଏ ସବୁ ତାହାରି ।
ଦୁର୍ଯ୍ୟୋଧନ ବୋଇଲାକ ଏ କଥା ଯୁକତ
ଯୁଧିଷ୍ଠି ଯାହା ବୋଇଲେ ମୋର ସନମତ ।
ଦୁର୍ଯ୍ୟୋଧନ ବୋଲେ ପୁଣି ଶକୁନିକୁ ଚାହିଁ
ସବୁ ଧର୍ମ ଭୋ ମାତୁଳ ଅଛି ତୋର ତହିଁ ।
ବେନି ତୁଲ କରି ବାବୁ ଗଡ଼ାଇବୁ ପଶା
ଉଭୟ କୁଳର ଏହି କରିବୁଟି ଆଶା ।
ଯେ ମଧ୍ୟପାତ୍ର ପ୍ରତ୍ୟକ୍ଷ ଅଟଇ ସେ ଧର୍ମ
ତୋ ଜିଣନ୍ତେ ହାର ଜିଣା ଯେ ଯାହାର କର୍ମ ।

ଗଡ଼ାଅ ଶକୁନି ମାମୁଁ ଗୋରେଖ ସୁମରି
ବେନିକୁଳ ଜିତୁ ଆମ୍ଭେ ଯେମନ୍ତେ ନ ହାରି ।
କୂଟ ପଶାକୁ ପାତିଲେ ବେନି ନରପତି
ସୁମରେ ମନେ ଶକୁନି ଗୋରେଖ ଯେ ଯତି ।
ବେନିଲକ୍ଷ ସ୍ୱର୍ଣ୍ଣ ଥିଲା ଦୁର୍ଯ୍ୟୋଧନ ଦେହେ
ତାହା ସବୁ ପୀଢ଼କଲା ରାଜା ଖେଳ ସ୍ନେହେ ।
ସହସ୍ରେକ ରତ୍ନ ଥିଲା ଯୁଧିଷ୍ଠିର ହୃଦେ
ତାହା ପୀଢ଼କଲେ ପଶା ଖେଳର ବିବାଦେ ।
ଗଡ଼ାଏ ଶକୁନି ମନେ ସୁମରି ଜାହ୍ନବୀ
ମମ ପିତା ପୂର୍ବେ ତୋତେ ଅଛଇ ନା ସେବି ।
ପଥରେ ଘରେ ମାଇଲା ଦୁର୍ଯ୍ୟୋଧନ ଭରି
ଅନୁରୂପେ ସାଧିବାକୁ ନୋହିଲି ମୁଁ ସରି ।
ତୋହର ଆଜ୍ଞାରେ ମାତ ପାରଇ ବା ସାଧି
ବଂଶକୁ ମୁଁ ଉଦ୍ଧାରିବି କରାଇ ବିବାଦୀ ।
ଆଜ ପଶାରେ ଯୁଧିଷ୍ଠି ହାରନ୍ତି ଯେମନ୍ତେ
ରାଜ୍ୟ ଧନ ସିଂହାସନ ଦ୍ରୌପଦୀ ସହିତେ ।
ଏହା ହସ୍ତେ ପାଣ୍ଡବଙ୍କୁ ଦିଆଇବି ଶାସ୍ତି
ସତୀ କେଶ ଆକର୍ଷଣ କରାଇ ସଂପ୍ରତି ।
ସତୀର ଝିଙ୍ଗାସେ କୋପ କରି ଭୀମସେନ
କରିବ ଏ କୌରବଙ୍କୁ ଯେମନ୍ତେ ନିଧନ ।
ପରମ ପଣ୍ଡିତ ବ୍ରହ୍ମଯତି ତୁ ଗୋରେଖ
ଏତେବେଳେ ହୋଇବୁ ନା ମୋହର ସପକ୍ଷ ।
ଗଡ଼ାଇ ମନ୍ତ୍ରୀ ବୋଇଲେ ଜିଣିବେ ନୃପତି
ପ୍ରଥମ ପୀଢ଼ ପାଇଲା ରାଜା କୁରୁପତି ।
ଚାରିରେ ଯୁଧିଷ୍ଠି ଦେବ ପାଞ୍ଚରେ ନୃପତି
ଗଡ଼ାନ୍ତେ ପଡ଼ିଲା ପାଞ୍ଚକାଠି ପଞ୍ଚୁଆତି ।
ଦୁର୍ଯ୍ୟୋଧନ ବୋଇଲେକ ସବୁ ଦିଅ ମୋତେ
ମୋହର ଜିଣିବା ତେବେ ହୋଇଲା ଯୁକତେ ।
କଳିକାଳ ସୁମରିଣ ପାତଇ ସେ ମନ୍ତ୍ରୀ
ପ୍ରଥମବାରେ ପଡ଼ିଲା ଦାନ ପଞ୍ଚୁଆତି ।
ପ୍ରଥମେ ପଶା ପକାନ୍ତେ ହାରିଲେ ଯୁଧିଷ୍ଠି
ଅଳଙ୍କାରମାନ ଘେନିଗଲେ ଧାର୍ତ୍ତରାଷ୍ଟ୍ରି ।
ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ କର୍ଣ୍ଣର କୁଣ୍ଡଳ
ତହିଁରେ ଯେ ସମକକ୍ଷ ଏ ରତ୍ନ ସକଳ ।
ଦୁଇ ରାଜାଙ୍କର ଯେତେ ରତନ ଭୂଷଣ
କୁଣ୍ଡଳକୁ ଇଚ୍ଛାକଲା ରାଜା ଦୁର୍ଯ୍ୟୋଧନ ।
ହାରି ମହାକୋପ କଲେ ଦେବ ଧର୍ମବାଳ
କର୍ଣ୍ଣୁ କାଢ଼ିନେଲେ ଦେବ ଅମୃତ କୁଣ୍ଡଳ ।
ସତ୍ୟଯୁଗେ ଯଜ୍ଞ କଲେ ରାଜା ଯେ ଯଯାତି
ଇନ୍ଦ୍ର ଦେବତା କୁଣ୍ଡଳ ଦେଲେ ହୋଇ ପ୍ରୀତି ।

ସେ କୁଣ୍ଡଳ ଯେତେବେଳେଯାଏ ଥାଏ କର୍ଣ୍ଣେ
ନିଶି ଦିବସ ପରାୟେ ଥାଏ ବିଦ୍ୟମାନେ ।
ସେ କୁଣ୍ଡଳ ଥିଲେ କର୍ଣ୍ଣେ ନ ପୀଡ଼ଇ ବ୍ୟାଧି
ନାନା କ୍ଳେଶ ସେ ହରଇ ପରମ ଔଷଧି ।
ସେହି ସୋମବଂଶର ଯେ ନୃପତି ମରୁତ
ତା କର୍ଣ୍ଣେ ଥାଇ ହୋଇଲା ଯୁଗ ସମାପତ ।
ଯୁଧିଷ୍ଠିର ଦେବଙ୍କର ମହାଯାଗ କାଳେ
ମରୁତ କୁଣ୍ଡଳ ଦେଲା ରାଜା ଧର୍ମବାଳେ ।
ସେ କୁଣ୍ଡଳ କର୍ଣ୍ଣେ ଥିଲେ ନ ଘଟଇ ମୃତ୍ୟୁ
ଅଷ୍ଟଧାତୁ କ୍ଷରଇ ସେ ମହୌଷଧି ହେତୁ ।
ପଶାଖେଳ କୁତୁହଳେ ଦେବ ଧର୍ମବାଳ
ଶ୍ରୀକରେ ଯେ ପୀଢ଼ କଲେ ଅମୃତ କୁଣ୍ଡଳ ।
ପୀଢ଼ ବୋଇଲେ ପାତିଲା ପଶାକୁ ଶକୁନି
ପଞ୍ଚୁଆତି ପଡ଼ନ୍ତେ ସେ ହାରିଲେ ଯେ ବେନି
ହସ୍ତେ ଦୁର୍ଯ୍ୟୋଧନ ତାହା ଘେନିଲେ ତକ୍ଷଣେ
ଭୂଷଣ କଲା ସେ ବେନି ନେଇ ନିଜ କର୍ଣ୍ଣେ ।
ମତୁଆଳ ନାଚଖଣ୍ଡ ନାଚନ୍ତି ଆନନ୍ଦେ
ଗାଲତୁରି ଦେଇ ପଶା ଭାଷନ୍ତି ଶବଦେ ।
ରାଗେ ପୀଢ଼ କରୁଛନ୍ତି ଦେବ ଯୁଧିଷ୍ଠିର
ଏ ଘାନ୍ତି ହୋଇଲା ମୋର ଚଉଦ ଭଣ୍ଡାର ।
ଦୁର୍ଯ୍ୟୋଧନ ବୋଲେ ମୋର ତହିଁକି ଦ୍ୱିଗୁଣ
ସବୁ ଭଣ୍ଡାର ମୋହର ହେଲା ପୀଢ଼ ଜାଣ ।
ପାତିଲା ଶକୁନି ମନ୍ତ୍ରୀ ତହିଁ ପଶାକାଠି
ପଞ୍ଚୁଆତି ପଡ଼ିଲାକ ହାରିଲେ ଯୁଧିଷ୍ଠି ।
କାଠିକି ଘେନି ବିଚାର କଲେ ଯୁଧିଷ୍ଠିର
ପାଲଟ କରିବା ଦାନ ତୋହର ମୋହର ।
ପଞ୍ଚୁଆତି ଆମ୍ଭର ତୁ ଘେନ ଦାନ ଆନ
ଦୁର୍ଯ୍ୟୋଧନ ବୋଲେ ମୋର ହେଲା ଚାରିଦାନ
ମୋର ହେଲା ଚାରିଦାନ ତୋର ହେଲା ପାଞ୍ଚ
ତହିଁକି ଶୋଚନା ନାହିଁ ମାମୁଁ କାଠି ମୁଞ୍ଚ ।
ପଞ୍ଚୁଆତି ପଡ଼ିଲେ ତୁ ଜିଣିବୁ ଯୁକତେ
ଚଉଠି ପଡ଼ିଲେ ରାୟେ ହାରୁ କିନା ମୋତେ ।
ତୁ ଯେବେ ଦାନ ପାଲଟ କଲୁ ଧର୍ମ ସୁତ
ଅଶ୍ୱଦଣ୍ଡଯାକ ପୀଢ଼ କଲି ମୁଁ ଯୁକତ ।
ଦୁର୍ଯ୍ୟୋଧନ ବୋଲେ କଲ ତୋହର ପରିଜା
ପୀଢ଼କଲେ ଅଶ୍ୱ ଗଜ ଯୁଧିଷ୍ଠିର ରାଜା ।
ପଶା ମନ୍ତ୍ରିଣ ପାରଇ ମନ୍ତ୍ରୀ କୂଟବୁଦ୍ଧି
ପଡ଼ିଲା ଚଉଠି ଦାନ ଯେହ୍ନେ ପୂର୍ବବିଧି ।
ଅଶ୍ୱ ଦଣ୍ଡକୁ ହାରିଲେ ଖେଳ କୁତୂହଳେ
ଦେଖି ଉପହାସ କଲେ କୌରବ ସକଳେ ।
ଦୁର୍ଯ୍ୟୋଧନ ବୋଇଲା ଏ ଘାନ୍ତି ପୀତକର
ଗଜଦଣ୍ଡ ପୀଢ଼ ହେଲା ଏ ଘାନ୍ତି ମୋହର ।
ଯୁଧିଷ୍ଠି ଦେବ ବୋଇଲେ ମୋର ଗଜବଳ
ସରାଗେ ବୋଇଲେ ପଶା ପାର ହେ ମାତୁଳ ।
ଗଜଦଣ୍ଡ ନବଖର୍ବ ଚାରି ଯେ ଅୟୁତ
ସରାଗେ ଯେ ପୀଢ଼ କଲେ ଦେବ ଧର୍ମସୁତ ।
ଜିତ ଜିତ ବୋଲି ପଶା ଶକୁନି ପାତିଲା
ଯୁଧିଷ୍ଠିର ଦେଖିଲେ ଯେ ଚଉଠି ପଡ଼ିଲା ।
ହାରିଲେ ସେ ଗଜବଳ ପଶା କୁତୂହଳେ
କିଳିକିଳା ନାଦ କଲେ କୌରବେ ସକଳେ ।
ଧର୍ମ ବୋଇଲେ ଘେନିବା ଦୁହେଁ ଦୁଇଦାନ
ତୁହି ଆନ ଦାନ ଘେନ ମୁହିଁ ଘେନେ ଆନ ।
ଶକୁନି କହେ ଯୁଧିଷ୍ଠି ବୋଇଲେକ ଯାହା
ତୁମ୍ଭେ କୁରୁପତି ଆନ ନ କର ହେ ତାହା ।
ଦୁର୍ଯ୍ୟୋଧନ ବୋଲେ ଘେନ ଯେ ତୋହର ଇଚ୍ଛା
ମୋହର ଯେ ସନମତ ନ କରଇ କଛା ।
ଯୁଧିଷ୍ଠି ଦେବ ବୋଇଲେ ମୋର ହେଲା ଦଶ
ବେନି ଚଉକ ଘେନିଣ ଗାନ୍ଧାରୀର ଶିଷ୍ୟ ।
ଦୁର୍ଯ୍ୟୋଧନ ବୋଲେ ମୋର ପୀଢ଼ ରଥଯାନ
ସରାଗେ ହସି ବୋଇଲେ ଦେବ ଧର୍ମନାନ ।
ମୋହର ରଥହିଁ ପୀଢ଼ ହୋଇଲା ଯୁକତେ
ପାର ହୋ ମାମୁଁ ଶକୁନି ଧର୍ମର ଆଶ୍ରିତେ ।
ପଶାକୁ ଘେନି ମନ୍ତ୍ରଇ ମନ୍ତ୍ରୀ ବେନିକରେ
ପାରଇ ସେ ମହାମନ୍ତ୍ର ପଢ଼ିଣ ମନରେ ।
ଜିତ ଜିତ ବୋଲି ମନ୍ତ୍ରୀ ପାରିଲାକ ଦାନ
ପଡ଼ିଲା ବେନି ଚଉକ ଜିତେ ଦୁର୍ଯ୍ୟୋଧନ ।
ହାରିଲେକ ଅଶୀକୋଟି ରଥ ଦେବ ଧର୍ମେ
ପଶା ପ୍ରଶଂସା କରନ୍ତି କଉରବେ ପ୍ରେମେ ।
ଭୀଷ୍ମ ବୋଇଲେ ଆଉ ତୁ ନ ଖେଳ ଯୁଧିଷ୍ଠି
ଆଜକୁ ବିପଦ ତୋର ଜନ୍ମ ନକ୍ଷତ୍ରଟି ।
କରନ୍ତି ସେ କଉରବେ କୂଟେ ଉପହାସ
ହାରି ଯୁଧିଷ୍ଠିରଙ୍କର ବେଳେ ବଢ଼େ ରୋଷ ।
ଦୁର୍ଯ୍ୟୋଧନ ବୋଇଲାକ ପାର ହୋ ଶକୁନି
ଏ ଘାନ୍ତି ପୀଢ଼ ମୋ ଏକାଦଶ ଅକ୍ଷୌହିଣୀ ।
ପୁଣି ସାନନ୍ଦ ହୋଇଲେ ଦେବ ଧର୍ମବଳ
ମୋର ପୀଢ଼ କଲି ସାତ ଅକ୍ଷୌହିଣୀ ବଳ ।
ମନ୍ତ୍ରୀ ଚୂଡ଼ାମଣି କୂଟେ ପାତିଲାକ କାଠି
ପଡ଼ିଲା ବେନି ଚଉକ ହାରିଲେ ଯୁଧିଷ୍ଠି ।
ରଥ ଗଜ ଅଶ୍ୱ ସହ ସମସ୍ତ ପଦାତି
ହାରିଲେ ଯୁଧିଷ୍ଠି ଦେବ ଜିଣେ କୁରୁପତି ।

ହସନ୍ତି କୌରବ ତାଳିମାରି ଗୀତ ଗାଇ
ନାଚନ୍ତି ସେ ଆନନ୍ଦରେ ଗାଲତୁରୀ ଦେଇ ।
ପ୍ରେମର ମିଷ୍ଟ ଅଟଇ ପାଇଲେଟି ରୁଷା
ରାଜାର ମିଷ୍ଟ ଅଟଇ ପାଇଲେ ସୁଭାଷା ।
ରାନ୍ଧଣା ମିଷ୍ଟ ସୁପକ୍ୱ ଅନ୍ନ ଯେବେ ସିଝି
କହିବା ମିଷ୍ଟ ଶୁଣିବା ଜନ ଯେବେ ବୁଝି ।
ଶାସ୍ତ୍ରର ମିଷ୍ଟ ବକତାଜନ ଯେବେ ଘେନି
ସ୍ୱରର ମିଷ୍ଟ କୋକିଳ ପ୍ରାୟ ଯେବେ ଧ୍ୱନି ।
ଚିତ୍ତର ମିଷ୍ଟ ହସ୍ତକ ଚଳେ ଯେବେ ଭଲେ
ଆହାର ମିଷ୍ଟ ଭୁଞ୍ଜିବା ବେଳେ ଭୋକ ଥିଲେ ।
ବାଣିଜ୍ୟର ମିଷ୍ଟ ଯେବେ ଶୁଭେ ଯାଇ ବିକା
ରୂପର ମିଷ୍ଟ ଯଦ୍ୟପି ସୁନ୍ଦର ନାସିକା ।
ସମର ମିଷ୍ଟ ଯଦ୍ୟପି ବହଇ ରୁଧିର
ଗୃହର ମିଷ୍ଟ ଯେବେଟି କୁଟୁମ୍ବ ବିସ୍ତାର ।
ତପର ମିଷ୍ଟ ଯେବେଟି ନୋହେ ଦ୍ୱନ୍ଦ୍ୱକାରୀ
ଜୂତର ମିଷ୍ଟ ମଙ୍ଗଳ କରି ଯେବେ ହାରି ।
ଖେଳରେ ହାରିବା ମିଷ୍ଟପାଇ ଧର୍ମରାୟେ
ବେଳକୁ ବେଳ ସରାଗ ଖେଳେ ବଢ଼ିଯାଏ ।
ବଦନ୍ତି ଗାଙ୍ଗେୟ ଆଉ ନ ଖେଳସି ବାବୁ
ସବୁ ସମ୍ପଦ ସରିଲା ଆଉ କିସ ଦେବୁ ।
ବିପଦ କାଳଟି ତୋତେ ପଡ଼ିଅଛି ଆସି
ବେଳେବେଳେ ହାରୁଅଛୁ ଖେଳସୁଖେ ବସି ।
ଅତିହିଁ ହାରିଲେ ଆଉ ଆସଇ କି ଖେଳ
ବୁଦ୍ଧି ଭ୍ରଂଶ ହୋଏ ରୋଷ ହେବାରୁ ପ୍ରବଳ ।
ଛାଡ଼ ଛାଡ଼ ବାବୁ ପଶା ନୁହଇ ଗୁପତ
ଏବେ ତୁମ୍ଭେ ଯା ଯା ଆନନ୍ଦିତେ ଖେଳ ଜୂତ ।
ଭୀଷ୍ମଙ୍କ ବଚନେ କର୍ଣ୍ଣବୀର ଯେ ବୋଇଲା
ତୁମ୍ଭେ ଯେ ବୋଲୁଛ କିସ ଯୁଧିଷ୍ଠି ହାରିଲା ।
ମରୁତ ଦେଲା କୁଣ୍ଡଳ ଆବର ମୁକୁଟ
ଜରାସନ୍ଧ ମାରି ଆଣିଥିଲେ ଗଜ ଥାଟ ।
ଦ୍ରୁପଦ ଯୌତୁକ ଦେଲା ସାତ ଅକ୍ଷୌହିଣୀ
ରାଜାମାନେ ଆଣିଦେଲେ ଦେଖା ଦରଶନୀ ।
ମୟ ଆଣିଦେଲା ପୁଣି ବହୁତ ରତନ
ବାହୁବଳେ କରିଛନ୍ତି ଏ ସବୁ ଅର୍ଜନ ।
ସଞ୍ଚିଲା ଧନ ଏଥିରେ ପଦାର୍ଥ ତ ନାହିଁ
ପୂର୍ବ ସଞ୍ଚିଲା ପଦାର୍ଥ ରଖିଅଛି କାହିଁ ।
ରାଜ୍ୟକୁ ହାରନ୍ତେ ଯେବେ ଆଜି ଏ ପଶାରେ
ତେବେ ସେ ସାତ୍ତ୍ୱିକ ଖେଳ ହୁଅନ୍ତା ବିଚାରେ ।
ଦୁର୍ଯ୍ୟୋଧନ ବୋଇଲା ଯା କହିଲା ମୋ ମିର୍ତ
ଅଢ଼ାଇ କଟକ ମୋର ଅଟଇ ଯଥାର୍ଥ ।
ହସ୍ତିନା ଯେ ଯମପ୍ରସ୍ଥ ଏ ଦୁହେଁ ମୋହର
ଜୟନ୍ତା ବାରୁଣାବନ୍ତ ଏହୁ ଏହାଙ୍କର ।
ଇନ୍ଦ୍ରପ୍ରସ୍ଥକୁ କରିବା ଆମ୍ଭେ ଅଧ ଅଧ
ଏହି ରାଜ୍ୟ ପୀଢ଼ ପଶାଖେଳ ହୋଇ ସାଧ ।
ମୋହର ଅଢ଼ାଇରାଜ୍ୟ କଲି ମୁହିଁ ପୀଢ଼
ଦୁଇରାଜା ଏ ବଚନ କଲେ ତହିଁ ଦୃଢ଼ ।
ଶକୁନି ପାତନ୍ତେ ତାହା ଭାଙ୍ଗିଲେ ଯୁଧିଷ୍ଠି
ଆପଣା ହସ୍ତେ ଚାଳନ୍ତି ଧରି ପଶାକାଠି ।
ଫିଙ୍ଗ ବୋଲି ନେଇ ଦେଲେ ଶକୁନିର ହାତେ
ଶକୁନି ବୋଇଲେ ଧର୍ମ ପ୍ରାପ୍ତ ହେଉ ତୋତେ ।
ଜିତ ଜିତ ବୋଲି ଭାଷେ ପଶାକାଠି ଛାଡ଼ି
ଦେଖିଲେ ଯୁଧିଷ୍ଠି ବେନି ଚୌକ ଅଛି ପଡ଼ି ।
ଦାନ ପଡ଼ିଲା ହାରିଲେ ରାଜା ଧର୍ମନାନ
ତଥାପି କିଛି ବିକାର ନାହିଁ ତାଙ୍କ ମନ ।
ବିଚାରନ୍ତି ପଶାକାଠି ଘେନି ହୃଦଗତେ
କିସ ପୀଢ଼ ଆମ୍ଭେ ଏବେ କରିବା ଯୁକତେ ।
ଦୁର୍ଯ୍ୟୋଧନ ବୋଲେ ଯେବେ ଲୋଡୁ ଖେଳିବାକୁ
ଏଥର ତୁ ପୀଢ଼କର ତୋହର ଭାଇଙ୍କୁ ।
କହ କିନା ଆଉ କିସ ବିଚାରୁ ଯୁଧିଷ୍ଠି
ଭୀମର ପୀଢ଼ ଏଘାନ୍ତି ପାତ ପଶାକାଠି ।
ଏ ଘାନ୍ତି ତୁ ପାତ ଯେତେ ପଡ଼ଇ ତୋହର
ପଞ୍ଚାଶ ଭାଇ ଘେନି ମୁଁ ହୋଇବି କୋୟର ।
ଅନେକ ସରାଗେ ପୁଣି କହିଲେ ଯୁଧିଷ୍ଠି
ପବନ ନନ୍ଦନ ଭୀମା ମୋର କକ୍ଷାଜେଠି ।
ଶତଶୃଙ୍ଗ ଚୂର ହେଲା ବାଜି ଯା ଅଙ୍ଗୁଷ୍ଠି
ମହାବଳୀ ବଳିୟାର ଭୀମ କୋପଦୃଷ୍ଟି ।
ପାରିଦଣ୍ଡ ମାରି ପାରକଲା ବିଷଲଡୁ
ବୀର ଦର୍ପ ଚୂର୍ଣ୍ଣ କଲା ଖେଳ ଖେଳୁ ଖେଳୁ ।
ହାରିଲାକ ନାଗବଳ ଜିଣି ବେଳାବଳୀ
କାମ୍ୟକ ବିବାଦେ ଧ୍ୱଂସ କଲା ବୀରକାଳି ।
କ୍ଷଣକରେ ଜଉଘର ଦେଲା ଭସ୍ମକରି
ନିଜ ବାହୁବଳେ ଚୂର୍ଣ୍ଣ କଲା ମଧୁଗିରି ।
ଗୋପନରେ ଧ୍ୱଂସକରି ପଶି ଶିବପୁରେ
ଚଣ୍ଡାଳ ବଳକୁ ଧ୍ୱଂସି ଆଣି ବିଷ୍ଣୁ କରେ ।
ବକରାକ୍ଷସ ଧ୍ୱଂସିଲା ଏକଚକ୍ରା ପୁରେ
ରାଜାଙ୍କ ଦର୍ପ ଚୂରିଲା କୃଷ୍ଣା ସ୍ୱୟମ୍ବରେ ।
ପଶ୍ଚିମଦିଗ ରାଜାଙ୍କୁ ଆଣିଲାକ ସାଧି
ପୁଣ୍ଡରୀକକୁ ଆଣିଲା ରଥ ଚକ୍ରେ ବାନ୍ଧି ।
ଯମର ଉପରେ କାଳଦଣ୍ଡ ଯା ବିରଧୁ
ରାଜାଙ୍କ ମଉଡ଼ମଣି ଯା ମହିମା ସାଧୁ ।

ବିଚାରେ ସେ ବୀରବର କକ୍ଷା ଜଗଜ୍ଜେଠି
ଆକାଶେ ଶୁଭେ ମାତୁଳ ଯାର ନାମ ଗୋଟି ।
ଦିଗପାଳ ଜିଣିବାକୁ ସମର୍ଥ ମୋ ଭାଇ
ଏବେ ପୀତ ପରିଜା ମୁଁ କଲି ତାହାପାଇଁ ।
ଯୁଧିଷ୍ଠିର ମୁଖ ଚାହିଁ ବିଚାରେ ଶକୁନି
ପାରୁଅଛି ଦୃଢ଼ବ୍ରତ କଲ କିହୋ ବେନି ।
ଯୁଧିଷ୍ଠି ବୋଇଲେ ମୋର ହେଲା ସନମତ
ଦୁର୍ଯ୍ୟୋଧନ ବୋଇଲା ହୋ ମୋହରହିଁ ସ୍ୱତ ।
ଉଭୟଙ୍କୁ ଦୃଢ଼କରି ପାରଇ ଶକୁନି
ସାକ୍ଷୀ କରଇ ସେ ଭୀଷ୍ମ ଦ୍ରୋଣ କର୍ଣ୍ଣ ତିନି ।
ଦୁଇକୁଳ ସନମତ ପାତୁଛି ମୁଁ ପଶା
ଧର୍ମ ସିନା ଏଥକୁହିଁ ଅଟଇ ଭରସା ।
ଜିତ ଜିତ ବୋଲି ପଶା ପାତେ ମହାମନ୍ତ୍ରୀ
ପଡ଼ିଲା ବେନି ଚଉକ ଜିଣେ କୁରୁପତି ।
ସଭାରେ ଯେ ବାହାସ୍ଫୋଟ ମାରି ଦୁଃଶାସନ
ଏ ଘାତୁ ଜାଣିମା ସିନା ଭୀମ ଦର୍ପମାନ ।
ଭୂମିରେ ପ୍ରହାର କରି ପଶା ବେନିକାଠି
ଉପହାସ ପ୍ରାୟ କରି ହସେ ଧାର୍ତ୍ତରାଷ୍ଟ୍ରି ।
ଭୀମର ପ୍ରାୟ ସୋଦର ହରାଇଲା ରାୟ
ଏ ଘାନ୍ତି ପୀତ କରିବୁ ବୀର ଧନଞ୍ଜୟ ।
ତୁ ଯେବେ ଏ ଘାନ୍ତି କରୁ ପାର୍ଥକୁ ପରିଜା
ମୋହର ଏ ଶତଭ୍ରାତା କହେ କୁରୁରାଜା ।
ହାରନ୍ତେ ରାଗ ତାଙ୍କର ବଢ଼ଇ ଦ୍ୱିଗୁଣ
ଖେଳରେ ବିଶେଷ ଶ୍ରଦ୍ଧା ବଢ଼େ କ୍ଷଣ କ୍ଷଣ ।
ତ୍ରୈଲୋକ୍ୟ ସାଧୁ ଯେବଣ ଅର୍ଜ୍ଜୁନ ମହିମା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ସାର୍ଥକ ଗାରିମା ।
ଇନ୍ଦ୍ର ବିବାଦେ ଖାଣ୍ଡବ ବନ ଯେହୁ ଧ୍ୱଂସି
ମହୌଷଧି ଦେଇ ଅଗ୍ନି ଦେବ ମନ ତୋଷି ।
ସୁଗନ୍ଧିକା ହରଣେ ଯେ ଜିଣି ହନୁମନ୍ତ
ଶତେ ସାଗର ବାନ୍ଧିଲା ଯୋଜନେକ ଶତ ।
ଅଙ୍ଗାର ପନ୍ନଗକୁ ଯେ ଜିଣିଲାକ ରଣେ
ସଦାଶିବଙ୍କୁ ଜିଣିଲା ହେଳେ ହରବନେ ।
ପଞ୍ଚାଳ ଦେଶରେ ଯେହୁ ରାଧାଚକ୍ର ବିନ୍ଧି
ସଂଗ୍ରାମେ ଲକ୍ଷେ ନୃପତି ମାନ ଦର୍ପେ ମର୍ଦ୍ଦି ।
ଚାଳିଶ ସହସ୍ର ରାଜା ଜିଣିଲା ଉତ୍ତରେ
ଜମାଗୋଷ୍ଠକୁ ବାନ୍ଧିଲା ରଥଖମ୍ଭ ଡୋରେ ।
ସାତବଂଶ ସହିତରେ ରାମକୃଷ୍ଣ ମେଳେ
ସୁଭଦ୍ରା ହରି ଆଣିଲା ସେହୁ ଭୁଜବଳେ ।
ଯାର ଶରାଘାତେ ତ୍ରଇଲୋକ୍ୟ ନ ସହଇ
ସର୍ବଙ୍କୁ ଜିଣିଲା ସବ୍ୟସାଚୀ ନାମ ପାଇ ।
ଧନୁହୁଳରେ ଧଇଲା ସପତ ବ୍ରହ୍ମାଣ୍ଡ
କିଞ୍ଚିତମାତ୍ରେ ବହିଲା ପୃଥ୍ୱୀ ନବଖଣ୍ଡ ।
ଭାରତେ ଭାରୋଇମଲ୍ଲ ଶରଣ ପଞ୍ଜର
ସାଧୁ ସାଧୁ ବୀରବର ପ୍ରତିଜ୍ଞା ଯାହାର ।
କିରାତରୂପେ ଜିଣିଲା ବନେ ପଶୁପତି
ଭୋଳେ ବହୁତର ବିଦ୍ୟା ଦେଲେ ଉମାପତି ।
କହନ୍ତେ ପ୍ରତିଜ୍ଞା ଯାର ନ ସରଇ ଗାଢ଼
ତାହାର ପୁଣ୍ୟେ ଅବା ମୁଁ ଜିଣିବି ଏ ପୀଢ଼ ।
ଶକୁନି ସାନନ୍ଦ ତୋଷ ଦୁର୍ଯ୍ୟୋଧନ ଚିତ୍ତ
ପଶା ଘେନିଣ ଶକୁନି ପାତେ ଜିତ ଜିତ ।
ଧବଳାଙ୍ଗୀକି ସୁମରି ପଶାକାଠି ପାରି
ଦେଖିଲେ ବେନିଚଉକ ଦାନ ଦଣ୍ଡଧାରୀ ।
ହସନ୍ତି ଯେ କଉରବେ ମାରି କରତାଳି
ନାଚନ୍ତି ମତ୍ତ ହୁଅନ୍ତି ଦେଇ ହୁଳହୁଳି ।
ବେନି ସୋଦର ସଭାରେ ହାରି ଧର୍ମସୁତ
ତଥାପି ତାହାଙ୍କ ମନେ ନ ଆସେ ବିକୃତ ।
ଯୁଧିଷ୍ଠିର ମୁଖ ଚାହିଁ ବୋଲେ ଦୁର୍ଯ୍ୟୋଧନ
ପଶାରେ ହାରିଲେ ଏବେ ଭୀମ ଅରଜୁନ ।
ନକୁଳ ଯେ ସହଦେବ ବାଳକ ଅଟନ୍ତି
ତାହାଙ୍କୁ କି ପୀଢ଼ ତୁମ୍ଭେ କରିବ ଏଘାନ୍ତି ।
ଯାଙ୍କ ପୁଣ୍ୟେ ଜିଣୁ ଅବା କହେ କୁରୁସାଇଁ
ମୋହର ଓଲଟ ପୀଢ଼ ଭୀମ ଅର୍ଜ୍ଜୁନହିଁ ।
ଆବର ପ୍ରତିଜ୍ଞା କରି କହୁଅଛି ତୋତେ
ପୀଢ଼ କଲି ଦୁଃଶାସନ ଦୁର୍ଜ୍ଜୟ ସହିତେ ।
ସରାଗ ବଢ଼ିଲା ରାଜା କଲା ସନମତ
ଶକୁନିର ମୁଖ ଚାହିଁ ବୋଲେ ଧର୍ମସୁତ ।
ଶୁଣ ହେ ଶକୁନି ମୋର ନକୁଳ ଚରିତ
ସୁକୁମାରପଣେ ସମ ନାହିଁ ତ୍ରିଜଗତ ।
ନବଦିନ ଧଇଲା ସେ ପୃଥ୍ୱୀ କୁନ୍ତମୁନେ
କୁମାର ମୁଖେଟି ପାଟ ପାଇ ସେ ଗଗନେ ।
ଦକ୍ଷିଣ ଦିଗ ଜିଣିଲା ଯେହୁ ବାହୁବଳେ
ସେ ମାଦ୍ରୀନନ୍ଦନ ପୀଢ଼ କଲି ଏତେବେଳେ ।
ଏ ଦାନ ଛାଡ଼ି ଘେନିବି ମୁହିଁ ଆନ ଦାନ
ସପତ ଦାନ ମୋହର ବୋଲେ ଧର୍ମନାନ ।
ଦୁର୍ଯ୍ୟୋଧନ ବୋଲେ ପୁଣ ପୁଣ ଘେନୁ ଦାନ
ମୋହର ଦାନ ହୋଇଲା ନବମ ରାଜନ ।
ପାତିଲା ଶକୁନି ପଶା ଜିତ ଜିତ ବୋଲି
ଅସ୍ତୁ ଅସ୍ତୁ କର ମାଗୋ ଯାହା ବାଞ୍ଛା କଲି ।
ନବମ ଦାନ ପଡ଼ିଲା ଦେଖିଲେ ସାକ୍ଷାତେ
ନକୁଳ କୁମାରକୁ ଯେ ହାରିଲେ ଯୁକତେ ।

ଯୁଧିଷ୍ଠିଙ୍କ ମୁଖ ଚାହିଁ ବୋଲେ କୁରୁଦେବ
ତିନିଙ୍କୁ ହାରିଲୁ ଏବେ ଅଛି ସହଦେବ ।
ତାହାକୁ କିସ କରିବୁ ସେ ପୁଣି କନିଷ୍ଠ
ଭୀମ ଅର୍ଜ୍ଜୁନ ହାରିଲୁ ହେଲୁ ରାଜ୍ୟଭ୍ରଷ୍ଟ ।
ଯୁଧିଷ୍ଠି ବୋଇଲେ ମୋର ଭାଇ ଗୁଣବନ୍ତ
କରତଳକୁ ଚାହିଁଲେ ଜାଣେ ଭବିଷ୍ୟତ ।
ଅତ୍ୟନ୍ତ ଧାର୍ମିକ ସେହୁ ଗୁଣେ ଗୁଣନିଧି
ଜଗତଭୂତ ଯାହାକୁ ମାଗନ୍ତି ସୁବୁଦ୍ଧି ।
ଯୁଗାନ୍ତକ ଜ୍ଞାତା ମୋର ଭାଇ ସହଦେବ
ଗୋଲକ ବିଦ୍ୟା ପାଇଲା ତୋଷି ବାସୁଦେବ ।
କପିଳାର ସୁପ୍ରସନ୍ନେ ଜାଣେ ସର୍ବବୁଦ୍ଧି
ଗୋକୁଳେ ହରିଲା ଶଏ ଅଷ୍ଟୋତ୍ତର ବ୍ୟାଧି ।
ଆନନ୍ଦ ମତି ସର୍ବଦା ଅଟେ ମୋର ଭାଇ
ଚଉଦ ଭୁବନ ମଧ୍ୟେ ସେହୁ ଗୁଣଗ୍ରାହୀ ।
ପୂର୍ବଦିଗ ରାଜାଙ୍କୁ ସେ ନିମନ୍ତ୍ରି ଆଣିଲା
ଦୁଷ୍ଟ ରାଜାଙ୍କୁ ସମର କରିଣ ଜିଣିଲା ।
ତାର ଗୁଣ କହିବାକୁ ମୋତେ ବେଳ ନାହିଁ
ଏଥର ସେହି ଭାଇକି ପୀଢ଼ କଲି ମୁହିଁ ।
ପଶାକାଠି କରେ ଘେନି ଘଷି ତିନିଥର
ପକା ମାମୁଁ ବୋଲି ଦେଲେ ଶକୁନିର କର ।
ଯୁଧିଷ୍ଠିଙ୍କ ମୁଖ ଚାହିଁ ଶକୁନି ପାତିଲା
ଯୁଧିଷ୍ଠିଦେବ ଦେଖିଲେ ନବମ ପଡ଼ିଲା ।
ସହଦେବକୁ ପଶାରେ ହାରିଲେ ଯୁଧିଷ୍ଠି
ସୁମରନ୍ତି ବାସୁଦେବ ମନରେ କିରୀଟି ।
ପଶାରେ ସବୁ ସୋଦର ହାରି ଧର୍ମରାୟେ
ଚାରିଭାଇ ବିକେ କଲେ ଆସି ଏ ସମୟେ ।
ବାରୁଣାବନ୍ତେ ଦେଖିଲେ ନାହାନ୍ତି ଯୁଧିଷ୍ଠି
ଭାଳି ସହଦେବ ଭୀମ ନକୁଳ କିରୀଟି ।
ଅର୍ଜ୍ଜୁନର ଅଗ୍ରତରେ ଦ୍ରୌପଦୀ କହିଲେ
ଯୁଧିଷ୍ଠିଦେବ ହସ୍ତିନା ରାଜ୍ୟକୁ ତ ଗଲେ ।
ମନେ ବିରସ ହୋଇଲେ ଶୁଣି ଭାଇ ଚାରି
ସଙ୍କଟ ପଡ଼ିଲା ବୋଲି ଅର୍ଜ୍ଜୁନ ବିଚାରି ।
ଚାଲ ହୋ ଏଠାରୁ ଯିବା ଆମ୍ଭେ ହୋଇଶୀଘ୍ର
କାଳେ ଦେଖି ନ ପାରିବା ବୋଲି ହେଲେ ବ୍ୟଗ୍ର
ଧାମନ୍ତି ପାଣ୍ଡବ ବେଗେ ପବନହୁଁ ଗତି
ହସ୍ତିନା ରାଜ୍ୟେ ପ୍ରବେଶ ହୋଇଲେ ତଡ଼ତି ।
ଝାଳେ ତ୍ରିପଣ୍ଡ ହୋଇଛି ସବୁଙ୍କରି କାୟ
ଶ୍ରମେ ଦିଶନ୍ତି ଚାରିହେଁ କାଳଯୂଥ ପ୍ରାୟ ।
ହସ୍ତିନା ସଭା ଆସ୍ଥାନେ ସନ୍ନିଧିକି ଘୋଟି
ବେନି କୋଶ ଥାଉଁ ଶୁଭେ ଡାକ ପଶାକାଠି ।

ଆସ୍ଥାନ ତଳେ ପ୍ରବେଶ ହେଲେ ବୀର ଧାତି
ଆରେ ସଭାକୁ ନ ଉଠ ବୋଲେ କୁରୁପତି ।
କରେ ଗଦାବର ଘେନି ଧାଏଁ ଦୁଃଶାସନ
ଉଠନ୍ତେ ସେ ପେଲିଦେଲ ବଳେ ଭୀମସେନ ।
ଦୁର୍ଜ୍ଜୟ ଦୁର୍ମନ ଆଉ ଦୁର୍ବାର ଦୁଃଶୀଳ
ଦୁରାନ୍ତକ ଦୁରଦେଷ୍ଟ ଆବର ଦୁର୍ବଳ ।
ଏ ଆଦି ଦର୍ଯ୍ୟୋଧନର ସତାଣୋଇ ଭାଇ
ଆରେ ରହ ରହ ବୋଲି ବଳେ ପେଲି ଦେଇ ।
ରାଗେ ମାରୁତି ଅଧର ବେନି କଲା ପୁଷ୍ଟ
କାଳନୟନ ବୁଲାଇ କମ୍ପାଇ ମୁକୁଟ ।
ବାଉନ ବାଉନ ଭାର ଗଦା କରେ ଘେନି
ହୁଂକାର ଶବଦ କରି ବୁଲାଇ ପାବନି ।
ଗୋଳ ଶୁଣିଣ ଲେଉଟି ଚାହିଁଲେ ଯୁଧିଷ୍ଠି
ବାବୁ ରହ ରହ ଭୀମ ସଭାକୁ ନ ଉଠି ।
ପଶା କୁତୂହଳେ ବାବୁ ପଶିଲି ବିବାଦେ
ସ୍ୱୟଂ ଅରଜି ପଡ଼ିଲି ମୁଁ ଏଡ଼େ ପ୍ରମାଦେ ।
ରାଜଦଣ୍ଡ ସିଂହାସନ ସମସ୍ତ ହାରିଲି
ତୁମ୍ଭ ଚାରିଙ୍କୁ ବିକ୍ରୟ ପଶାରେ ମୁଁ କଲି ।
ଥାଅ କିନା ବାବୁ ଦଣ୍ଡେ ସଭାତଳେ ରହି
ଏ ଘାନ୍ତି ପୀଢ଼େ ଅବଶ୍ୟ ଜିଣିବଇଁ ମୁହିଁ ।
ଯୁଧିଷ୍ଠିରଙ୍କ ଆଜ୍ଞାରେ ଗଲେ ଅପସରି
ନବ ପାବଚ୍ଛର ତଳେ ବସିଲେ ସେ ଚାରି ।
ଝାଳେ ତ୍ରିପଣ୍ଡ ଲୋତକ ଗଳେ ବେନି ନେତ୍ର
ଅଶ୍ରୁଜଳେ ବୃଷ୍ଟି ହୁଏ ଶରୀରେ ବହୁତ ।
ଭୀମ ବୋଲେ ପାର୍ଥ ଆମ୍ଭେ ମନ୍ଦକୃତ୍ୟ କଲୁ
ଯୁଧିଷ୍ଠିଙ୍କି ଛାଡ଼ି କିପାଁ କୃଷ୍ଣ ତୁଳେ ଗଲୁ ।
ଅର୍ଜ୍ଜୁନ ବୋଇଲେ ଏବେ ହେବ ବଡ଼ ଲାଜ
ପ୍ରାଣେ ନାଶ ନ ଗଲେ ତ ଯୁଧିଷ୍ଠିର ରାଜ ।
ସ୍ୱାମୀ ଜୀଇଥିଲେ କରିପାରି ନାନା ବୁଦ୍ଧି
କୂଟେ ଯେ ଘେନିଅଛନ୍ତି ଆମ୍ଭର ସମୃଦ୍ଧି ।
ଭୀମ ବୋଇଲା ଏହା ମୁଁ ନ ପାରଇ ସହି
କ୍ରୋଧ ଅନଳେ ମୋହର ତନୁ ହୋଏ ଦହି ।
ଆଜ କଉରବଙ୍କୁ ମୁଁ ପକାଇବି ମାରି
ଶଲ୍ୟ ଶକୁନି ସହିତେ କର୍ଣ୍ଣ ଦୁରାଚାରୀ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ବାହ୍ଲୀକ ଆବର
ସୋମଦତ୍ତ କୃପାଚାର୍ଯ୍ୟ କୃତବର୍ମା ବୀର ।
ଏଡ଼େ ମାନହୀନେ ବାବୁ ପାରି କିରେ ବର୍ତ୍ତି
ଯୋଦ୍ଧା ଆଦିକରି ସବୁ ଲୋଟାଇବି କ୍ଷିତି ।
ଅର୍ଜ୍ଜୁନ ବୋଇଲେ ନାହିଁ ଠାକୁରଙ୍କ ଆଜ୍ଞା
ସ୍ୱାମୀର ବଚନ କାହୁଁ କରିବା ଅବଜ୍ଞା ।

ବହୁତ ବିନୟେ ପାର୍ଥ ଭୀମକୁ ତିଆରି
ପୁଣ ପୁଣ ଭୀମ ଉଠେ ବାହାସ୍ଫୋଟ ମାରି ।
ପଣ୍ଡିତ ପଣେ କୋପକୁ ସମ୍ଭାଳିଣ ସେହି
ନବ ପାବଚ୍ଛର ତଳେ ଉଭା ହେଲେ ଯାଇ ।
ଦୁର୍ଯ୍ୟୋଧନ ବୋଇଲେକ ଆହେ ଯୁଧିଷ୍ଠିର
ଭାଇଙ୍କି ହାରି କି ଦମ୍ଭପଣ ହୋ ତୁମ୍ଭର ।
ସେତ ହୋଇଲେଣି ନିଜ ଭୃତ୍ୟହିଁ ଆମ୍ଭର
ତୁ ଥାଇ କିସ କରିବୁ କହ ହୋ ଆବର ।
ଭାଇଙ୍କି ଛାଡ଼ିଣ ତୁହି କାହିଁଯିବୁ ଏକା
ତୋ ତହୁଁ ମୋହର ଆନଜନ ନାହିଁ ସଖା ।
ଏ ଘାନ୍ତି ପୀଢ଼ କି ତୁହି ହୋଇବୁ ଯୁଧିଷ୍ଠି
ଧର୍ମବଳ ଥିଲେ ଅବା ପାରଇ ଲେଉଟି ।
କି ପୀଢ଼ ହୋଇଲେ କଛ ଆମ୍ଭ ଶତଭାଇ
ଜିତିଲେ ପାଇବୁ ତୋର ଭାଇ ଆମ୍ଭଙ୍କୁହିଁ ।
ଦୁର୍ଯ୍ୟୋଧନର ବଚନେ ସରାଗେ ନୃପତି
ବିଚାରିଲେ ଧର୍ମ ଥିଲେ କଡ଼ାକରେ ଜିତି ।
ସମ୍ପଦ ବିପଦ ଏହି କ୍ଷଣ କ୍ଷଣ ମାୟା
ସର୍ବଦା ପ୍ରାଣୀକି କୃଷ୍ଣ କରିବେ କି ଦୟା ।
ଶକୁନି ମୁଖକୁ ଚାହିଁ ରାୟେ କରି ଦୃଢ଼
ବୋଇଲେ ମୋହର ଆତ୍ମା କଲି ଏବେ ପୀଢ଼ ।
କର୍ଣ୍ଣ ଦୁଃଶାସନ ଦେଲେ ନାସିକାରେ ହସ୍ତ
ଏ ତୋହର କଥା ଗୋଟି ଅଟଇ ଯୁକତ ।
ଯାବତ କାଳକୁ ଏହି କଥାହିଁ ରହିଲା
ଭାଇଙ୍କି ହାରିଣ ଆତ୍ମା ବିକ୍ରୟ ହୋଇଲା ।
ଦୁର୍ଯ୍ୟୋଧନ ବୋଇଲା ହୋ ଶୁଣ ତୁ ମାତୁଳ
ପାତ ବେଗେ ପଶାକାଠି ବିଳମ୍ବ ନ କର ।
ଏ ବେଳେକ ଜିଣା ବୋଲି ପାତିଲା ଶକୁନି
ନବମ ଦାନ ପଡ଼ିଲା ହାରିଲା ନୃମଣି ।
ଦେଖି ତାହା ଦୁଃଶାସନ ଉଠି କୋପଚିତ୍ତେ
ଯୁଧିଷ୍ଠିର ବେନିଭୁଜ ଧଇଲା ତ୍ୱରିତେ ।
ସଭାର ତଳକୁ ଯା ଯା ଧର୍ମର ତନୟ
କିସ ବସି ବିଚାରୁଛୁ ବଧିରାତ୍ମା ପ୍ରାୟ ।
ଭୁଜ ଧରି ଉଚ୍ଛୁଡ଼ଇ ବଳେ ଦୁଃଶାସନ
ଘେନିଯା ଘେନିଯା ବୋଲି ବୋଲେ ଦୁର୍ଯ୍ୟୋଧନ
ଦୁର୍ଯ୍ୟୋଧନର ବଚନେ ଯୁଧିଷ୍ଠିର ଉଠି
ଅରୁଣ ବେନି ନୟନ ଅଶ୍ରୁଜଳ ଫୁଟି ।
ଆଷ୍ଟାନୁ ତିନିପାବଚ୍ଛ ପରିଯନ୍ତେ ନେଲେ
ବାହୁଡ଼ାଇ ଆଣ ବୋଲି ଦୁର୍ଯ୍ୟୋଧନ ବୋଲେ
ଶୁଣି ଛାମୁକୁ ଆଣିଲେ ଧରି ଅନ୍ତରୀକ୍ଷେ
ଦୁର୍ଯ୍ୟୋଧନ ଅଗ୍ରେ ଉଭା ହେଲେ ଧର୍ମବକ୍ଷେ ।

ଦୁର୍ଯ୍ୟୋଧନ ବୋଲେ ସବୁ ହାରିଲୁ ତୁ ରାୟ
ଆନ ବୁଦ୍ଧି ତୋର କିସ ଅଛି କି ଉପାୟ ।
ମଉନ ବ୍ରତରେ ଉଭା ହେଲେ ଧର୍ମଶିଷ୍ୟ
କ୍ରୋଧଭରେ କିଛି କହି ନ ପାରନ୍ତି ଭୀଷ୍ମ ।
ଶକୁନି ବୋଇଲା ଅପଚୟ କାଳେ ପ୍ରାଣୀ
ହରଇ ସହସ୍ରବଳ ବୁଦ୍ଧି ହୀନ ଜାଣି ।
ଦୁର୍ଯ୍ୟୋଧନ ବୋଲେ ସବୁ ହାରିଲ ନୃପତି
କଥାଏ କହିବା ତହିଁ ନ କରିବୁ ଭୀତି ।
ଦ୍ରୌପଦୀକି ପୀଢ଼କରି ପାରିବୁ କି ତୁ ତ
କତିକେ ହୋଇଲା ମୋର ଗଜଅଶ୍ୱ ରଥ ।
ଧନ ଭଣ୍ଡାର ଆବର ଭୂଷଣ ସହିତେ
ରାଜ୍ୟଭାର ସିଂହାସନ ତୁମ୍ଭେ ପଞ୍ଚଭ୍ରାତେ ।
ମୋର ଶତଭାଇ ରାଜ୍ୟସେନା ଆଦିକରି
ଏକା ଦ୍ରୌପଦୀ ପୀଢ଼କୁ କରିବା ନା ସରି ।
ଯେବେ ତୋହର ପଡ଼ଇ ରାୟେ ରାଣୀଦାନ
ସବୁ ତୋହର ହୋଇବ ହାରିଥିବା ଧନ ।
ମୋହର ରାଜ୍ୟ ଭଣ୍ଡାର ସଇନ୍ୟ ସହିତେ
ଆମ୍ଭେମାନେ ଭୃତ୍ୟପଣେ ଖଟିଥିବୁ ତୋତେ ।
ଦୁର୍ଯ୍ୟୋଧନର ବଚନେ ଯୁଧିଷ୍ଠିର ହସି
ପଶାକାଠିକି ଆବୋରି କତିରେ ଯେ ବସି ।
ଆମ୍ଭର ଦୁରାପଦ ଯେ ଆନ ଆନକଲା
ଅଶାଲୁବ୍‌ଧେ ସଂସାରରେ ଥାଉଁ ଥାଉଁ ମଲା ।
ଯେବେଣ ପ୍ରାଣୀ ହାରିଣ କରୁଥାନ୍ତି ଆଶ
ଆତ୍ମା କ୍ଷୟ ଯାଇ ପୁଣି ହୁଏ ସର୍ବ ନାଶ ।
ଆତ୍ମାର ପରମ ସୁଖ ସମସ୍ତେ ବିଚାରି
ନ ଜାଣ ଏଡ଼େ ଅଭିଜ୍ଞ ପଡୁଅଛି ହୁରି ।
ଯୁଧିଷ୍ଠିର ବିଚାରନ୍ତି ଆପଣା ହୃଦୟେ
ପଞ୍ଚାଳ ଦୁହିତା ମହାଯଜ୍ଞରୁ ଉଦୟେ ।
କୋଟିଏକ ଋଷି ଘେନି ମହାଋଷି ବ୍ୟାସ
ମହାଅନଳୁ ଶରୀର ଯାହାର ବିକାଶ ।
ପରମ ମାହେଶ୍ୱରୀ ସେ ଅନାଦି ଅପର୍ଣ୍ଣା
ଯୁଗାନ୍ତର୍କ ରୂପିଣୀ ସେ ଅଭୟା ଅପର୍ଣ୍ଣା ।
ତାହାକୁ ଆମ୍ଭେ କି ଖେଳେ ହାରିବୁ ସମୟେ
ସେ କୃଷ୍ଣା ପ୍ରସାଦେ ଅବା ହରେ ଅପଚୟେ ।
ବେଦମନ୍ତ୍ରେ ସାଧବୀ ସେ ପରମ ଯୋଗିନୀ
ଚାରି ଅବାତାରେ ସେହି ହୋଇଲେ ଅଯୋନି
ମୁହିଁ ଅବା ଜିଣିବଇଁ ତାର ପୁଣ୍ୟବଳେ
ବୁଡ଼ିଲା ଭେଳା ଲାଗଇ ଅବା ମୋର କୂଳେ ।
ଜାତକ ଅନ୍ତକ ସେହି ପାଳଇ ସେନେହେ
ମନୁଷ୍ୟ ମୂରତି ଧରି ଜଗତକୁ ମୋହେ ।

ଅନଳେ ଯେ ପଖାଳଇ ଶରୀରକୁ ନିତି
ସେ ପାଞ୍ଚାଳୀ ପରସାଦେ ଫିଟେ ବା ଦୁର୍ଗତି
ମୃଦୁରସ ବୟସୀ ସେ ଭାରଧ୍ୱଂସକାରୀ
ତାର ପ୍ରସାଦେ ଆପଦୁଁ ହୁଏ ଅବା ପାରି ।
ଯୁଧିଷ୍ଠି ଦେବ କହିଲେ ହେ ଶକୁନି ମାମୁଁ
ଦ୍ରୌପଦୀ ପୀଡ଼ କଲି ମୋର ପାପକର୍ମୁଁ ।
କ୍ରୋଧେ ଗଦଗଦ ଧର୍ମରାୟ ଯେ ଯୁଧିଷ୍ଠି
ଭୋ ଦଇବ ପୁରୁଷ ମୋ ଖଣ୍ଡିବା ଅରିଷ୍ଟି ।
ଧର୍ମ ଧର୍ମ ସୁମରନ୍ତି ଦେବ ପଞ୍ଚଭୂତେ
ପାଞ୍ଚଭାଇ ପୀଡ଼ ହେଲେ ଦ୍ରୌପଦୀ ନିମନ୍ତେ ।
ଯୁଧିଷ୍ଠିର କୋପ ଦେଖି ବିହନ୍ତା ପୁରୁଷେ
ଭୟରେ ମିଳିଲେ ଯାଇ ପିତାମହ ପାଶେ ।
ଭୋ ଦେବ ପଞ୍ଚଭୁବନ ରାଜନ ଯୁଧିଷ୍ଠି
ସର୍ବ ସମ୍ପଦ ହାରିଲା ନିଏ ଧାର୍ତ୍ତରାଷ୍ଟ୍ରି ।
ଭାଇ ସହିତେ ବିକ୍ରୟ ହେଲା ଆପେ ପୁଣି
ପୀଡ଼ କରୁଅଛି ଏବେ ଦ୍ରୁପଦ ଦୁଲଣୀ ।
ସେ ପଞ୍ଚ ପାଣ୍ଡବ ଜାଣି କୃଷ୍ଣଙ୍କ ସ୍ୱରୂପ
ନ ପୁଣ ଅନ୍ତେ ଆମ୍ଭଙ୍କୁ କରନ୍ତି ସେ କୋପ ।
ତୁ ଧାତା ପୁରୁଷ ନବସୃଷ୍ଟିର କରତା
ଧାତୁବାଦ୍ୟ ପୁରୁଷ ତୋ ନାମ ଅଟେ ଧାତା ।
ଧାତା ଆଜ୍ଞା ଦେଲେ ଅସ୍ତୁକାର ପୁରୁଷଙ୍କୁ
କଳିକାଳ ହରାଉଛି ଯୁଧିଷ୍ଠି ଦେବଙ୍କୁ ।
ପୃଥ୍ୱୀର ଭାରା ଉଶ୍ୱାସ ହୋଇବା ନିମନ୍ତେ
ଜିଣୁ ଦୁର୍ଯ୍ୟୋଧନ ଯାଜ୍ଞସେନୀର ସହତେ ।
ସତୀ ଝିଙ୍ଗାସେ ତୁଟିବ ସବୁରି ଆୟୁଷ
ଭାରିଯା ପାଇଁ ସୋଦର କରିବେ ନା ରୋଷ ।
ଯାଅ ତୁମ୍ଭେ ପୁରୁଷ ହୋ ବେଗେ ଅସ୍ତୁକରା
କଉରବଙ୍କୁ ଜିଣାଇ ଯୁଧିଷ୍ଠିରଙ୍କୁ ହରା ।
ଯେମନ୍ତେ ସେ ଦୁର୍ଯ୍ୟୋଧନେ ଯୁଧିଷ୍ଠି ଝିଙ୍ଗାସୁ
ରାଗେ ଭୀମସେନ କଉରବ ବଳ ନାଶୁ ।
ବ୍ରହ୍ମା ନିର୍ମାଣ ପୂର୍ବରୁ ଯାହା ଅଛି କରି
କେ ତାହାର କଥାକୁ ଯେ ଆନ କରିପାରି ।
ଅସ୍ତୁକାର ପୁରୁଷେ ଯେ ତକ୍ଷଣେ ଅଇଲେ
ଶକୁନିର ଅସ୍ତୁବାକ୍ୟ ସମସ୍ତେ ଜିଣିଲେ ।
ଜିତ ଜିତ ବୋଲି ପଶା ପାଡ଼ିଲାକ ମନ୍ତ୍ରୀ
ପଡ଼ିଲା ଦାନ ହାରିଲେ ଯୁଧିଷ୍ଠି ନୃପତି ।
ହସନ୍ତି ଯେ କଉରବେ କରତାଳି ଦେଇ
ଅଦାତା ଚରିତ ପ୍ରାୟ ହୋଇଲା ନା ଏହି ।
ଛାଡ଼ିଲାକ ଶିରୀ ତୋତେ ଅତି ଧର୍ମପଣେ
ଦୁଃଶାସନ ନେଇ ବସା ତଳେ ଏହିକ୍ଷଣେ ।
ରାଜାର ବଚନେ ଦୁଃଶାସନ ଯେ କୁମାର
ଉଠ ହୋ ଯୁଧିଷ୍ଠି ବୋଲି ଆକର୍ଷଇ କର ।
ଯୁଧିଷ୍ଠି ଦେବଙ୍କ କ୍ରୋଧ ଅବସ୍ଥାକୁ ଦେଖି
କାଳଚକ୍ର ପ୍ରାୟ ସେହି ବୁଲାଇଣ ଆଖି ।
ଭୀଷ୍ମ ବୋଇଲେ ତୁ ଏବେ ଶୁଣ କୁରୁପତି
ଚାରି ଭାଇଙ୍କୁ ତୁ ଦେଲୁ ଦୁଃସହ ଦୁର୍ଗତି ।
ଯୁଧିଷ୍ଠିର ଥାଉ କିନା ସଭାର ଉପର
ଅତିହିଁ ଝିଙ୍ଗାସ ତୁ ନ କର କୁରୁବୀର ।
ଲକ୍ଷେ ନୃପତି ଚରଣ ତଳେ ଯାର ବନ୍ଦେ
ଜଗନ୍ନାଥ ପ୍ରଣିପାତ କରେ ଯାର ପାଦେ ।
ତ୍ରେତା ଯୁଗର ଯେ ରାଜା ଲଙ୍କା ବିଭୀଷଣ
ଯାହାର ପଦ୍ମଚରଣ କଲା ପ୍ରଦକ୍ଷିଣ ।
କୋଟି କଳପ ଅନନ୍ତ ନାମେ ନାଗରାଜା
ଯେବଣ ଯୁଧିଷ୍ଠି ଦେବ ପାଦେ କଲା ପୂଜା ।
ପ୍ରତ୍ୟକ୍ଷେ ଧର୍ମଦେବତା ତାହାକୁ ଝିଙ୍ଗାସୁ
ଆୟୁ ଥାଉଁ ଥାଉଁ କିପାଁ ମରଣେ ଭରସୁ ।
ଆସ୍ଥାନର ତଳେ ବସିଥିଲେ ଚାରିଭାଇ
ଏକା ଯୁଧିଷ୍ଠିର କିପାଁ ଆସ୍ଥାନୁ ନ ଯାଇ ।
କର୍ଣ୍ଣ ବୋଇଲା ସଭାରେ ହାରିଲେ ସମସ୍ତ
ସଭାର ତଳେ ବସିଲେ ଯାଇ ଚାରିଭ୍ରାତ ।
ସୋଦରଙ୍କ ଝିଙ୍ଗାସରେ ଆପେ କିସ ସୁଖୀ
ଏହୁ ଯେ ବୋଲି ଏ କଷ୍ଟ ପାରଇ ନା ଦେଖି ।
ଦୁଃଶାସନ ନାସିକାରେ ହସ୍ତ ଦେଇ ହସେ
ଏଡ଼େ ନିଲ୍ଲଜ ସଭାରେ ପୁଣି ଆସି ବସେ ।
ବହୁତ ଝିଙ୍ଗାସ ପାଇ ବୀର ଭୀମସେନ
ସଭାର ତଳକୁ ଉଠିଗଲେ ଧର୍ମନାନ ।
ଭାଇଙ୍କି ଘେନି ବସିଲେ ଯାଇଁ ସଭାତଳେ
ଆନନ୍ଦେ ବସି ହସନ୍ତି କୌରବ ସକଳେ ।
ଭୀମସେନର ଶରୀର କମ୍ପେ ମହାତମ
ଗଦାବରକୁ ବୁଲାଇ ଗର୍ଜ୍ଜେ ବୀର ଭୀମ ।
ଯୁଧିଷ୍ଠି ବଦନ ଭୀମ ଚାହିଁଲେ ଲେଉଟି
ଏତେବେଳେ କିପାଁ ଆଜ୍ଞା ନ ଦିଅ ଯୁଧିଷ୍ଠି ।
ଶତ୍ରୁର ଝିଙ୍ଗାସ ବାଣୀ ସହି ତ କି ପାରି
ବଳ ବୀର୍ଯ୍ୟ ଥାଉଁ କିପାଁ ଦ୍ୱନ୍ଦ୍ୱ ଅପସରି ।
ଅତିଧର୍ମେ ବୁଡ଼ାଇଲ ଆପଣାର ରାଜ୍ୟ
ଦ୍ୟୂତ ଖେଳି ହରାଇଲ ଏଡେକ ଐଶ୍ୱର୍ଯ୍ୟ ।
ଆବର ଏହି ଜୀବନେ ପ୍ରୟୋଜନ କିସ
ଅବଶ୍ୟ ଖାଇ ମରିବୁଁ କାଳକୂଟ ବିଷ ।
ଦୁରାପ ସମସ୍ୟା ଦିଏ ବୀର ଫାଲଗୁନି
ଗର୍ଜି ଉଠନ୍ତି ନକୁଳ ସହଦେବ ବେନି ।
ସମସ୍ତଙ୍କ ରୋଷ ଦେଖି ବୋଲନ୍ତି ଯୁଧିଷ୍ଠି
କୋପ ନ କର ବାବୁରେ ନ କର ଅରିଷ୍ଟି ।
ମୁହିଁ ଯାହା ଅରଜିଲି ଭୁଞ୍ଜିବି ନା କର୍ମେ
ଦଇବ କଷଣ ମୋତେ ଦେଇ ଅଛି ଧର୍ମେ ।

ଯୁଧିଷ୍ଠି ବଚନେ ସର୍ବେ ଛଡ଼ିଲେକ ଦର୍ପ
ଗରୁଡ଼ ଦେଖିଲେ ଯେହ୍ନେ ଘୁଞ୍ଚେ କାଳସର୍ପ ।
କର୍ମ ଆଦରଣ କଲେ ବସି ଚାରିଭାଇ
ସାଧୁ ମହିମା ତୋହର ସାଧୁ ନୃପସାଇଁ ।
ଆସ୍ଥାନେ ଥାଇ ବୋଲଇ କୁରୁକୁଳରାଣ
ହାରିଲା ରାଜ୍ୟଭଣ୍ଡାର କଲା ଭୃତ୍ୟପଣ ।
ତୁମ୍ଭେମାନେ ହେଲ ଏବେ ଆମ୍ଭ ଦୋଷକାରୀ
ତୁମ୍ଭର ଏହି ଜୀବନ ହେଲା ଭୃତ୍ୟସରି ।
ବିଦୁର ବୋଇଲେ କେତେ ପାଣ୍ଡବ ଝିଙ୍ଗାସୁ
ବଂଶନାଶ କରିବାକୁ ଆପେ ଆପେ ଇଛୁ ।
ଦୁର୍ଯ୍ୟୋଧନ ବୋଇଲା କି ନ ଦେଖିଲ ତୁମ୍ଭେ
ମାୟା ସଭାରେ ଝିଙ୍ଗାସ ପାଇଲୁଟି ଆମ୍ଭେ ।
ଜଳ ଆଉ ସ୍ଫଟିକର ଏକଇ ମୂରତି
ବାରି ନ ପାରିଲି ମୁହିଁ ଯେ କୂଟ ପ୍ରକୃତି ।
ଆଉଜି ବସିଲି ମୁହିଁ ଖମ୍ଭ ମନେ କରି
ଜଳର ମଧ୍ୟେ ପଡ଼ିଲି ଯାଇ ମୁହଁ ମାଡ଼ି ।
କରତାଳି ମାରି ତହିଁ ହସିଲେ ପାଣ୍ଡବେ
କେତେବେଳେ କଥା ମନେ ପଡ଼ିଲା ପ୍ରସ୍ତାବେ
ସମ୍ପଦ ବିପଦ ରାତ୍ର ଦିବସ ପରାୟେ
ଏବେ ବିପଦ ପଡ଼ିଲା ସହିବା ନା ରାୟେ
ମାୟାଧର ପୁରୁଷର ମାୟା ଅଗୋଚର
ଜନ୍ମେ ଜନ୍ମେ ଏ ଶାରଳା ଦାସ ତୋ କିଙ୍କର ।



## ଦୁଃଶାସନ କର୍ତ୍ତୃକ ଦ୍ରୌପଦୀଙ୍କୁ ସଭାସ୍ଥଳକୁ ଆନୟନ

ବଦନ୍ତି ଅଗସ୍ତି ଶୁଣ ମନୁ ନରପତି
କହୁଁ କହୁଁ ମହାକୋପ ବହେ କୁରୁପତି ।
ଦୁଃଶାକୁ ଚାହିଁ ବୋଇଲା ଯାଅରେ ବହନ
ପାଣ୍ଡବଙ୍କ ନିକଟକୁ ଦ୍ରୌପଦୀଙ୍କୁ ଆଣ ।
ଏହାଙ୍କର ତୁଲେ ବସା ତାହାକୁହିଁ ଆଣି
ସଭାରୁ ଯେ ଦୁଃଶାସନ ଧାଇଁଗଲା ଶୁଣି ।
ଚଉଷଠି ଚଉଷଠି ଭାର ଗଦା କରେ
ଧାମଇଁ ସେ ଦୁଃଶାସନ ପବନହୁଁ ଖରେ ।
ଖାଙ୍କର କେଶ ବିକଟ ଉର୍ଦ୍ଧ୍ୱକୁ କପାଳ
ବୁଲେ ତମ୍ବାପତ୍ର ପ୍ରାୟେ ନୟନ ଯୁଗଳ ।
ଧାମଇଁ କୁମରମଣି ଦୁଃଶାସନ ଜେନା
ତାଡ଼ ତୋଡ଼ର ବାହୁଟି ମୁକୁଟ ଯେ ସେହ୍ନା ।
ଅନେକ ରତ୍ନ ଭୂଷଣ ମଣ୍ଡିଅଛି କାୟେ
ଦିଶଇ କୁମରମଣି କାର୍ତ୍ତିକ ପରାୟେ ।

ରଡ଼ିର ନାଦେ କମ୍ପଇ ସକଳ ବ୍ରହ୍ମାଣ୍ଡ
ପ୍ରତିଜ୍ଞା କରଇ ବାରେ ବାରେ ସେ ପ୍ରଚଣ୍ଡ ।
ପ୍ରତିଜ୍ଞା କରିଣ ବୀରବର ଦୁଃଶାସନ
ପ୍ରବେଶ ହୋଇଲା ଯାଇ ବାରୁଣା ଭୁବନ ।
ଦୁଃଶାକୁ ଦେଖି ପଳାଇ ଗଲେକ ପୋଇଲୀ
କହିଲେ ଦ୍ରୌପଦୀ ଆଗେ ଯାଇ ମୃଦୁସୁଲୀ ।
ମାଗୋ ଦୁଃଶାସନ କିପାଁ ଧାଏଁ ଅତି ରାଗେ
ସିଂହଦ୍ୱାରେ ଅଛି ଘରେ ପଶିବ ସେ ବେଗେ ।
ଦ୍ୱାର ରକ୍ଷା କରିଗଲେ ଦ୍ୱାରେ ଦ୍ୱାରପାଳେ
ବାଟ ଓଗାଳିଲେ ବଳେ ପଶିବାର ବେଳେ ।
ଆଡ଼େଇ ଯାଅ ବୋଲିଣ ଶବଦକୁ କରି
ପଶେ ବୀରବର ଦ୍ୱାର ରକ୍ଷକକୁ ପେଲି ।
ତାହା ଦେଖି ଲକ୍ଷେ ଯୋଦ୍ଧା ଓଗାଳିଲେ ଯାଇ
ଆରେ ଆରେ କଉରବା ପଶୁ ଆଜ କାହିଁ ।
ଗଦାମୁଦ୍‌ଗର ପରିଘ କୁନ୍ତ ତୀକ୍ଷ୍ଣ ମୁନା
ଧନୁ ତୋମର ଶକତି ଅସି ବଜ୍ରସେହ୍ନା ।
ଅନେକ ନାରାଚ ଧରି ଧନୁରେ ପୁରାଇ
ଦୁଃଶାସନ ଉପରକୁ ବୀର ଗଲେ ଧାଇଁ ।
ପଡ଼ନ୍ତି ବାଣେ ଗଗନୁ ଘନଧାରା ଜାଣି
ଯେସନେ କକଡ଼ାମାସ ବରଷାର ପାଣି ।
ଏରୂପେ ବାଣ ପଡ଼ିବା ଦେଖି ଦୁଃଶାସନ
ମତ୍ତଗଜ ପ୍ରାୟ ବୀର କରିଣ ଗମନ ।
ବୀର ଡାକରେ କମ୍ପାଇ ବୀର ତିନିପୁର
ଧାଇଁ ପ୍ରହାର କରଇ ହୋଇ କୋପଭର ।
ମତ୍ତଗଜ ଦେଖି ଯେହ୍ନେ ଧାଏଁ ମତ୍ତସିଂହ
ତେସନେ ବିକ୍ରମି ଦୁଃଶା କରେ ରଣରଙ୍ଗ ।
ଦୁଃସହ ସେ ଦୁଃଶାସନ ପ୍ରତିଜ୍ଞା ବୀରଧୁ
ଅରିବଳ ଗଞ୍ଜନ ସେ ଗର୍ଜନ ତା ସିନ୍ଧୁ ।
ରେରେକାର ଶବଦରେ ଗର୍ଜି ବୀର ଉଠି
ସୈନ୍ୟଙ୍କ ଉପରେ କୋପେ ଧାଇଁଯାଇ ପିଟି ।
ଗଜବର ଆରୋହିଣ ଥିଲେ ଯେ ମାହୁନ୍ତେ
ଟଳିଲେ ସେ ମହାନାଗେ ଦୁଃଶା ଗଦାଘାତେ ।
ପୁଣ ପୁଣ ପ୍ରହାର ଯେ କରଇ କୁମର
ହସ୍ତୀଙ୍କର କୁମ୍ଭସ୍ଥଳ ଭାଙ୍ଗି ହୁଏ ଚୂର ।
ଅଶ୍ୱ ପଦାତି ବହୁତ ପଡୁଛନ୍ତି ଢ଼ଳି
ରୁଧିରରେ ଦୁଃଶାସନ କରେ ରଙ୍ଗକେଳି ।
ଗରୁଡ଼ ଦେଖି ପଳାନ୍ତି ଯେହ୍ନେ ମହାନାଗେ
ତ୍ରାସେ କେହି ନ ରହିଲେ ଦୁଃଶାସନ ଆଗେ ।
ଦୁଆର ଜଗତୀ ବୀର ପକାଇଲା ଭାଙ୍ଗି
ଭିତରେ ସେ ଦୁଃଶାସନ ପଶିଲା ଗରଜି ।

ଦ୍ୱିତୀୟ ଦୁଆରେ ଥିଲେ ମୁକୁଟ ବନ୍ଧାଏ
ବସୁସେନ ବୀରସେନ ଶୂରସେନ ଧାଏଁ ।
ଶୂରଧ୍ୱଂସନ ଗୋପାଳସିଂହ ମହାରଣା
ଅନୁକେଶରୀ କେଶରୀ ବଦନ ସୁମନା ।
ଏହାଙ୍କ ମୂଳେ ଅନେକ ଥିଲେ ସେନାପତି
ଅଶ୍ୱ ଆରୋହି ମିଳିଲେ ଆଗରେ ଝଟତି ।
ଛ ଲକ୍ଷ ଗଜ ମୁକୁଟବନ୍ଧା ଯୋଦ୍ଧା ସାଥେ
ଝଲକାନ୍ତି ଲଙ୍କିଆକୁ ବୁଲାନ୍ତି ସେ ହାତେ ।
ଆରେ ଆରେ ଦୁଃଶାସନ ଯିବୁ ଆଜ କାହିଁ
ଗୃହେ ପଶିଛୁ ଠାକୁର ଜଣେ କେହି ନାହିଁ ।
ଦୁଃଶାସନ ବୋଇଲାରେ ତୁମ୍ଭେ ତ ଆମ୍ଭର
ସମସ୍ତ ନାଶ କରନ୍ତି ଅଟ ଆପଣାର ।
ଯୁଧିଷ୍ଠି ପଶିଲା ପଶାଖେଳର ବିନୋଦେ
ରାଜ୍ୟ ସମ୍ପଦ ହାରିଣ ପଡ଼ିଲା ବିପଦେ ।
ଭାଇ ସହିତରେ କଲା ଆମ୍ଭକୁ ବିକ୍ରୟ
ଦ୍ରୌପଦୀକି ହାରିଲାକ ପଶାରେ ସେ ରାୟ ।
ରଥ ଗଜ ଅଶ୍ୱ ସୈନ୍ୟ ଧନ ଆଦିକରି
ସମସ୍ତ ଆମ୍ଭର ହେଲା ନୁହ ଦ୍ୱନ୍ଦ୍ୱକାରୀ ।
ଆଶ୍ୱାସନା ବାକ୍ୟ କହି ଦୁଃଶାସନ ଯୋଧୀ
ସ୍ୱରୂପ ବାରତା କହି ସବୁଙ୍କୁ ନିରୋଧି ।
ଯଦ୍ୟପି ଦ୍ୱନ୍ଦ୍ୱ କରିବ ତୁମ୍ଭେ ଆମ୍ଭ ତୁଲେ
କେହି ନ ବର୍ତ୍ତିବ ଦୁର୍ଯ୍ୟୋଧନ କୋପକଲେ ।
ଦୁଃଶାସନ ବୋଲେ ସୈନ୍ୟ ପାଇଲେ ପ୍ରବୋଧ
ଭଲେ ବାଟ ଛାଡ଼ିଦେଲେ ନ କଲେ ନିରୋଧ ।
ରାହୁର ପରାୟେ ଘୋଟେ ଦୁଃଶାସନ ବୀର
ଗର୍ଜନ କରି ପଶିଲା ଯାଇଁ ଅନ୍ତଃପୁର ।
ଦୁଃଶାସନର ବଚନ ଶୁଣିଣ ପାଞ୍ଚାଳୀ
ଅନ୍ତଃପୁରେ ଲୁଚଇ ସେ ଦ୍ରୁପଦ ଦୁଲାଳୀ ।
ଆଲୋ ଆଲୋ ବୋଲି ଉଚ୍ଚେ ଡାକେ ବୀରମଣି
କାହିଁ ଲୁଚିଛୁ ପାଣ୍ଡବକୁଳ ଠାକୁରାଣୀ ।
ଦୁଃଶାସନ ମୁଖୁ ଶୁଣି ବଚନ ଅନୀତି
ପୁରଦ୍ୱାରେ ଆସି ଉଭାହେଲେ ଦେବୀ କୁନ୍ତି ।
ବୋଇଲେରେ ବାବୁ ଏଥେ ଅଇଲୁ କିପାଇଁ
ସିଂହର ଗହ୍ୱରେ କିରେ ଶୃଗାଳ ପଶଇ ।
ବସ ଦଣ୍ଡେ ବୁଝିବାନା କି କି ସମାଚାର
ଶୁଣି ଦୁଃଶାସନ ବୋଲେ ଯୋଡ଼ି ବେନିକର ।
ମୋହର ନାହିଁଟି ମାତ କିଞ୍ଚିତରେ ଦୋଷ
ତବ ପୋଏ ମନ୍ଦପଣେ ହାରିଲେ ସର୍ବସ୍ୱ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ସଙ୍ଗେ ପଶାଖେଳେ
ରାଜ୍ୟଧନ ସିଂହାସନ ହାରିଲେ ସେ ଭୋଳେ
କୁରୁପତି ଆଜ୍ଞା ଘେନି ମୁହିଁ ବଳେ ପଶି
ଦ୍ରୌପଦୀକୁ ନେବି ତାର କେଶକୁ ଆକର୍ଷି ।
ତୁ ଗୋ ମାତ ଦ୍ୱାର ଛାଡ଼ ଯିବଇଁ ଭିତର
ଦଣ୍ଡ ପାଇବି ମୁଁ କ୍ଷଣେ ହୋଇଲେ ଉଛୁର ।
କୁନ୍ତୀ ବୋଲନ୍ତିରେ ବାବୁ ଶୁଣ ଦୁଃଶାସନ
କେଉଁ ପୀଢ଼େ କି କି ଦ୍ରବ୍ୟ ହାରିଲେ ନନ୍ଦନ ।
ଦୁଃଶା ବୋଲେ ପ୍ରଥମରେ ହାରିଲେ ଭୂଷଣ
ଦ୍ୱିତୀୟରେ ରାଜ୍ୟଧନ ଦଣ୍ଡ ସିଂହାସନ ।
ତୃତୀୟରେ ଚାରିଭାଇ ଆପଣାକୁ ହାରି
ଚତୁର୍ଥରେ ପୀଢ଼କଲେ ଦ୍ରୁପଦ କୁମାରୀ ।
କୁନ୍ତୀ ବୋଇଲେ ରେ ବାବୁ ଶୁଣ ମୋ ବଚନ
ଅବିଚାରେ ଦ୍ରୌପଦୀକି ନେବୁ ତୁ କେସନ ।
ପ୍ରଥମ ବିବାହୀ ନାରୀ ଦ୍ରୁପଦ ଦୁଲଣୀ
ଆପଣାକୁ ହାରି ପଛେ ପୀଢ଼କଲେ ପୁଣି ।
ତାହାଠାରେ ନ ରହିଲା ତାଙ୍କ ଅଧିକାର
ପ୍ରଥମରେ ହାରିଥିଲେ ନିଅନ୍ତୁ କୁମର ।
ଏ ଛାର କଥାକୁ ପୁତ୍ର କରୁଛୁ କଟାଳ
ଭାଇ ଭାଇ ମିଛେ ଖେଳେ କରିଅଛ ଗୋଳ ।
ଦ୍ରୌପଦୀର ଦୋଷ କିଛି ନାହିଁ ତ ଏଥିରେ
ଦୁଃଶାସନ ବୋଲେ ଦ୍ୱାର ଛାଡ଼ିଯାଅ ଦୂରେ ।
ଅନେକ ତିଆରେ ଦେବୀ ବିନୟ ବଚନେ
ଦୁଃଶାସନ ପେଲିଦେଲା ତାଙ୍କୁ କୋପମନେ ।
ଭୂତଳ ଶାୟିନୀ କୁନ୍ତିଭୋଜର ଦୁଲାଳୀ
ଡେଇଁ ଦୁଃଶାସନ ଗଲା ଭିତରକୁ ପେଲି ।
କବାଟ କଣରେ ଦେବୀ ପଡ଼ି ଉଚ୍ଚସ୍ୱରେ
ବୋଇଲେ କି ହରି ନାହିଁ ଦ୍ୱାରକା ନଗରେ ।
କେତେ କେତେ ବିପଦରୁ ଉଦ୍ଧରିଲୁ ହରି
ଏବେ ମୋ ପୁତ୍ରଙ୍କୁ ଦୟା ଛାଡ଼ିଲୁ କିପରି ।
ଜାଣିଲି ମଲେଟି ହରି ମଲେ ପୁତ୍ର ମୋର
ବଞ୍ଚିଥିଲେ ପଶନ୍ତା କି ଛାର ଦୁରାଚାର ।
ଦ୍ରୁପଦ ଦୁଲଣୀ ବେଗେ ହୁଅ ସାବଧାନ
ସୁଭଦ୍ରାକୁ ଘେନି ପଶ ଭିତର ଭୁବନ ।
ବଳାତ୍କାରେ ଦୁଃଶାସନ ପଶେ ତୁମ୍ଭ ପୁରେ
ଗୋପନରେ ରହ ତୁ ଗୋ ଅଦୃଶ୍ୟ ଭାବରେ ।
ଶୁଣିଣ ଦ୍ରୌପଦୀ ଭୟେ ବିହ୍ୱଳିତ ହୋଇ
ପଳାଇ ପାକଶାଳରେ ଲୁଚିଲେ ସେ ଯାଇ ।
ତରତର କେଶବାସ ଫିଟିପଡ଼େ ଲୋଟି
ବ୍ୟାଧ ଭୟେ ଏଣୀ ଯେହ୍ନେ କରୁଥାଇ ଦୃଷ୍ଟି ।
ବ୍ୟାକୁଳେ ଦେବୀ ନୟନ ନ ପାରେ ପିଛାଡ଼ି
କାତରେ ବସିଲେ ଖର ନିଃଶ୍ୱାସକୁ ଛାଡ଼ି ।

ଏକାଳେ ଭିତରେ ପଶି ଦୁଃଶାସନ ବୀର
ଖୋଜଇ ଡାଳିମ୍ବାପୁର ନେତ୍ରାବାସ ପୁର ।
ଝୀନପୁର ରତ୍ନପୁର ମଣିପୁର ଖୋଜେ
ଅବକାଶପୁରେ ଚନ୍ଦ୍ରଶାଳାପୁରେ ବିଜେ ।
ଯେଉଁପୁର ଯୁଧିଷ୍ଠିରଙ୍କ ଶୟନ ମନ୍ଦିର
ସରି ନୋହିବ ତାହାକୁ ବାରସ୍ୱତୀ ପୁର ।
ଚାରିକ୍ରୋଶ ଦୀର୍ଘ ପ୍ରତି ଅଟେ ସେ ଭୁବନ
ହୀରା ନୀଳା ଗଜମୋତି ମାଣିକ୍ୟ ଭୂଷଣ ।
ସ୍ଥାନେ ସ୍ଥାନେ ଲାଗିଅଛି ମୁକୁତାର ଝରା
ପ୍ରବାଳ ସ୍ତମ୍ଭରେ ରତ୍ନଦୀପ ଦିଶେ ତ୍ୱରା ।
ନେତର ଚାନ୍ଦୁଆ କାହିଁ ପାଟର ଚାନ୍ଦୁଆ
ନାନା ପ୍ରକାର ଚାମର ଦିଶେ ନୂଆ ନୂଆ ।
ଖୋଜି ଖୋଜି ଦୁଃଶାସନ କାହିଁ ନ ପାଇଲା
ରୋଷାଇ ଶାଳରେ ଯାଇ ପ୍ରବେଶ ହୋଇଲା
ଚାରିଦିଗ ଚାହେଁ ବୀର ଭୟ ତେଜି ମନୁ
ରବିର କିରଣ ପ୍ରାୟ ପାଞ୍ଚାଳୀର ତନୁ ।
ଦେଖି ଦୁଃଶାସନ ମନେ କରଇ ବିଚାର ।
ଆକାଶ ଛୁଡ଼ି କି ଏଥେ ଉଦେ ଦିନକର ।
ରାହୁଭୟେ କଳାକର ଲୁଚିଛି କି ଏଥେ
ନଇଁପଡ଼ି ଦୁଃଶାସନ ନିରୂପଇ ଚିତ୍ତେ ।
ଦ୍ରୁପଦ ଦୁଲାଳୀ ଏହି ଚିହ୍ନିଲାକ ବୀର
ଦେଖିଣ ଦ୍ରୌପଦୀ ଦେବୀ ଭୟରେ କାତର ।
ଆକୁଳେ ବୋଲନ୍ତି ବୀରମଣି ତୁ ନ ଛୁଅଁ
ପାକାସ୍ୱରଶ ହୋଇଛି ଏ ମୋହର କାୟ
ଦୁଃଶାସନ ବୋଲେ ତୁହି ଦୋଚାରୀ ଅସତୀ
ଭଣ୍ଡାଉଛୁ ମୋତେ କହି ମୁହିଁ ରଜୋବତୀ ।
ଛୁଇଁଲେ ତୋ ଅଙ୍ଗ ମୋତେ ଘଟିବ କି ଦୋଷ
ପ୍ରଥମ ଦିନ ଛୁଇଁଲେ ନାରୀକୁ ପୁରୁଷ ।
ଲିଙ୍ଗ ଭଗ୍ନ ଦୋଷ ଲାଗେ କହଲି ହେ ବୀର
ଦ୍ୱିତୀୟ ଦିନେ ଗୋହତ୍ୟା ଦୋଷ ପାଏ ନର ।
ତୃତୀୟ ଦିନରେ ଲାଗେ ବ୍ରହ୍ମହତ୍ୟା ଦୋଷ
ଚତୁର୍ଥେ ବାଳକହତ୍ୟା ପାଏଟି ପୁରୁଷ ।
ପଞ୍ଚମ ଷଷ୍ଠ ଦିନରେ ତୁଟଇ ଯେ ଶିରୀ
ସପତମ ଦିବସରେ ଶୁଦ୍ଧ ହୁଏ ନାରୀ ।
ସେ ଦିନ ହଳଦୀ ଘେନି ଥାଉଁ ବିଭାବରୀ
ଓଦା ବସନରେ ଗୃହେ ଆସେ ସ୍ନାନକରି ।
ଗୁରୁଜନଙ୍କୁ ପ୍ରଣମି କାନ୍ତେ କରି ସଙ୍ଗ
ଅପୂର୍ବ ନନ୍ଦନ ହୁଏ ସାକ୍ଷାତେ ଅନଙ୍ଗ ।
ଲକ୍ଷେ ପ୍ରାଣୀର ପୋଷଣେ ହୁଅଇ ଭାଜନ
ସ୍ତିରୀଙ୍କୁ ବିଶ୍ୱାସ ନାହିଁ ବୋଲେ ଦୁଃଶାସନ ।

କଣେ କଣେ ଦେବୀ ଲୁଚି କାନ୍ଦୁ ଉଚ୍ଚସ୍ୱରେ
ଶବଦ ଶୁଣି ମିଳିଲା ତାହାଙ୍କ କତିରେ ।
ଚନ୍ଦ୍ର ଦେବତାଙ୍କୁ ଦେଖି ଘୋଟେ ଯେହ୍ନେ ରାହୁ
ସେହି ସ୍ୱରୂପ ଦିଶଇ ଦୁଃଶା ଉର୍ଦ୍ଧ୍ୱବାହୁ ।
ଆକର୍ଷଇ ଦୁଃଶାସନ ମୂରୁଖ ଚଣ୍ଡାଳ
ବେନି କରେ ଧଇଲା ସେ ଦ୍ରୌପଦୀର ବାଳ ।
ଭୋ ଦେବତା ପୁରୁଷ କି ବୋଲିବା ତୁମ୍ଭଙ୍କୁ
ଏ ଗତି ବିହିଲ ତୁମ୍ଭେ ଆଦି ଅପର୍ଣ୍ଣାଙ୍କୁ ।
ଚାରିଜନ୍ମ ଅଯୋନିଜା ଯେଉଁ ଯାଜ୍ଞସେନୀ
କୋଟି ଋଷି ଘେନି ଯାଗ କଲେ ବ୍ୟାସମୁନି ।
ବିକାଶିଲା ଜ୍ୱାଳାନଳ ପିଙ୍ଗଳ ଯେ ଜ୍ୱାଳା
ସେ ଅଗ୍ନି ବିଦାରି ଜାତ ଯେବଣ ଅବଳା ।
ମହା ଅଭିଜ୍ଞ ବ୍ରାହ୍ମଣ ଦ୍ରୁପଦ ଯା ପିତା
ଅନଳରୁ ଅବତାର ଯୁଧିଷ୍ଠି ବନିତା ।
ଭୀମ ଅର୍ଜୁନ ନକୁଳ ମନ୍ତ୍ରୀ ସହଦେବ
ପବନ ଇନ୍ଦ୍ର ଅଶ୍ୱିନୀକୁମାର ସମ୍ଭବ ।
ଦିଗପାଳଙ୍କର ବଧୂ ପଞ୍ଚଇନ୍ଦ୍ର ଭାର୍ଯ୍ୟା
କୋଟି ବିଳାସିନୀ ଯାର ଖଟଣୀ ପରଜା ।
ଏସନକ ସୁଲକ୍ଷଣୀ ଦେବଙ୍କ ବନିତା
ତାହାଙ୍କୁ ଏମନ୍ତ କଷ୍ଟ ବିହିଲୁ ବିଧାତା ।
ବିହନ୍ତା ପୁରୁଷ ତୁହି ଅପାପ ତୋ କାୟା
ଦେବଙ୍କୁ ଦୁର୍ଲ୍ଲଭ ଯାହା ଦେଖିଲି ତୋ ମାୟା ।
ଆପଦ ବିପଦ ଦେବ ତୁହି ସିନା ବିହୁ
ଏ ଘୋର କଷଣ ଦେବ ମାନବ କେ ସହୁ ।
ଅଦୃଷ୍ଟ ଅଶ୍ରୁତ ସ୍ୱାମୀ ଯାର ଦିବ୍ୟରୀତି
ଶୂନ୍ୟସ୍ଥଳ ପୁରୁଷ ତୁ ଅନଳ ଅଜ୍ୟୋତି ।
ସ୍ତମ୍ଭନ ମୋହନ ବିଦ୍ୟା ବଶ୍ୟ ଉଚ୍ଚାଟନ
ଗୁଟିକା ଅଞ୍ଜନ ଧାତୁ ବାଦ ଯେ ଧାରଣ
ସତ୍ତ୍ୱ ରଜ ତମ ତିନିଗୁଣ ଦେବ ତୁହି
ସମ୍ପଦ ବିପଦ ବିହୁ ଧାତା ନାମ ବହି ।
ଅକାରଣକୁ କାରଣ ଅଗୁଣକୁ ଗୁଣ
ଦୁଃସହ ଦୁଷ୍କୃତ ହେଉ ଦୁର୍ଗତିକି ପୁଣ ।
ମହାକର୍ମ ପୁରୁଷର ଦେବ ତୁ ବିହନ୍ତା
ସବୁ ଆତଯାତ କରୁ ତୁହି ଯେ ବିଧାତା ।
ଅନ୍ତର ନୋହୁ ହୋ ମନ ବଚନ କର୍ତ୍ତବ୍ୟେ
ଭଜୁ ପଞ୍ଚଭୂତ ମୋର ଧାତା ଲୟ ଭାବେ ।
ନମୋ ଦଇବ ବିଧାତା ସର୍ବଗୁଣ ନିଧି
ଅପରିଚିତ ସୋଦର ଶରଣ ବାରିଧି ।
ମହୀନ୍ଦ୍ର ଧାରଣ ନାଥ ତୁ ପରମ ଯୋଗୀ
ତୋହର କି ଦୋଷ ଲୋକ କର୍ମଫଳ ଭୋଗୀ ।

ନ ବୁଝି ବୋଲନ୍ତି ଦେଉଅଛନ୍ତି ପ୍ରାଭବ
ଯେ ଜାଣଇ ତୋତେ ସେହି ଏ ବିଧିରେ ଥିବ ।
ଶୂନ୍ୟ ଅଣାକାର ତୁହି ଅକାଳ ସଞ୍ଚିତ
ଯମଦଣ୍ଡୁ ସ୍ୱାମୀ ଯେହ୍ନେ ହୋଇବା ବଞ୍ଚିତ ।
ବିଧାତା ସୁମର ନରେ ଆପଦହିଁ ଖଣ୍ଡୁ
ବିଧାତା ସୁମର ନରେ ତର ଯମଦଣ୍ଡୁ ।
ଅଭାବ ଅପ୍ରୀତି କିଛି ନ କର ସୁଜନେ
ଲଭିବି ମୁଁ ପାପପୁଣ୍ୟ ବିଧାତା ପ୍ରସନ୍ନେ ।
ଉଦ୍ଧାରଣ ପୁରୁଷର ଚରଣେ ମୋ ମତି
ବ୍ୟାକୁଳେ ଶାରଳାଦାସ କରଇ ବିନତି ।



## କୁରୁସଭାରେ ଦ୍ରୌପଦୀର ଅପମାନ

ଶୁଣ ମନୁ ଦୁଃଶାସନ ଅଟେ ମହାବଳୀ
କେଶ ଧରିଣ ଆକର୍ଷି ଆଣଇ ପାଞ୍ଚାଳୀ ।
ନ ଚାହିଁ ପାରିଲେ ଦେବୀ କାହାରି ମୁଖହିଁ
ମୋର କର୍ମେ ଭବିଷ୍ୟ ଏସନ ଅଛଇ ।
ନାରାୟଣ ନାରାୟଣ କହେ ଯାଜ୍ଞସେନୀ
ରଖ ରଖ ଆଦିମୂଳ ମୁହିଁ ଅନାଥିନୀ ।
ରକ୍ଷାକର ଦୀନବନ୍ଧୁ ଭକତ ବତ୍ସଳ
ଚକ୍ର କି ହସ୍ତରେ ନାହିଁ ବସୁଦେବ ବାଳ ।
ତୁମ୍ଭେ ପରା ଦୀନବନ୍ଧୁ କରୁଣା ନିଧାନ
ଏ ଆରତ ରକ୍ଷାକର ହେ ଆରତ ତ୍ରାଣ ।
ଏମନ୍ତେ କାନ୍ଦି କହନ୍ତେ ଉଚ୍ଚେ ଯାଜ୍ଞସେନୀ
ଆକର୍ଷି ସେ କଉରବ ଆସୁଅଛି ଘେନି ।
ଲୋକେ କହନ୍ତି ପାଣ୍ଡବେ ନାହାନ୍ତି ଜୀବିତେ
ଭାରିଯା ଝିଙ୍ଗାସ ସେହି ସହନ୍ତେ କେମନ୍ତେ ।
କେବଣ କୂଟ କପଟ ମନ୍ତ୍ରୀ ଭିଆଇଲା
ହସ୍ତିନା ରାଜ୍ୟରୁ ନିଶ୍ଚେଁ ଲକ୍ଷ୍ମୀ ଛାଡ଼ିଗଲା ।
ରାଜ୍ୟ ରକ୍ଷା କରୁଥିଲେ ଯେତେକ ସଇନି
ତ୍ରାସେ ଆଡ଼ ହୋଇଗଲେ ଦୁଃଶା ଆସୁ ଘେନି
ପାଞ୍ଚଯୋଜନ ହସ୍ତିନା ବାରୁଣାବନ୍ତକୁ
ଆଣେ ଦୁଃଶାସନ ଧରି ଦ୍ରୌପଦୀ କେଶକୁ ।
କେଶ ଧରିଅଛି ତଳେ ନ ଲାଗେ ଚରଣ
ରୋଦନ ଶବଦେ ପୂର୍ଣ୍ଣ ବାରୁଣା ଭୁବନ ।
ବାମକରେ ଧରିଅଛି ଦ୍ରୌପଦୀର ବାଳ
ଡାହାଣ କରେ ବୁଲାଏ ଗଦା ମହାବଳ ।
ଆକୁଳେ ପାଞ୍ଚାଳୀ ଧର୍ମ ଧର୍ମ ସୁମରଇ
ପୁରଜନେ ହାହାକାରେ ଅଛନ୍ତି ଗୋଡ଼ାଇ ।
ହସ୍ତିନାର ସଭାତଳେ ବିଜେ ପଞ୍ଚଭ୍ରାତ
ମିଳିଲା ସେ ଦ୍ରୌପଦୀଙ୍କୁ ଘେନିଣ ତ୍ୱରିତ ।
ବାମକରେ ସେ ଚଣ୍ଡାଳ କେଶ ଅଛି ଧରି
ଯାଉଅଛି ପବନହୁଁ ବେଗ ଗତି କରି ।
ପ୍ରବେଶ ହୋଇଲା ଯାଇ ହସ୍ତିନା ନଗରେ
ଦ୍ରୌପଦୀ ବୋଲନ୍ତି କାନ୍ଦି ବ୍ୟାକୁଳ ମନରେ ।
ସଭାକୁ ନ ନିଅ ତୋତେ ମୋହରଟି ରାଣ
ସଭାରେ ରହିଅଛନ୍ତି ମୋର ମାନ୍ୟଜନ ।
ଲଜ୍ଜା ମୋତେ ହେବ ଏହା ନ ଜାଣୁ କି ବୀର
ଏହିଠାବରେ ଅଛନ୍ତି ପାଞ୍ଚ ସହୋଦର ।
ସଭାତଳେ ରଖି ତହିଁ ଗଲା ଦୁଃଶାସନ
ଦ୍ରୌପଦୀକୁ ଅଣିଲଇଁ ହେ କୁରୁରାଜନ ।
କି କରିବି କୁହ ପାକାମ୍ବରଣ ଯେ ନାରୀ
ଶୁଣି ଟହ ଟହ ହୋଇ ହସେ ଦଣ୍ଡଧାରୀ ।
ଶକୁନିକୁ କୁରୁପତି ବୋଲେ ମାମୁଁ ଶୁଣ
ଦ୍ରୌପଦୀକୁ ଆଣିବାର ହେଲା ଅକାରଣ ।
ଆଜ ରଜୋବତୀ ହୋଇ ଅଛଇ ସେ ନାରୀ
ମୁଖ ନ ଚାହିଁ ତୁଟଇ ଛୁଇଁଲେ ତା ଶିରୀ ।
ଶକୁନି ବୋଲେ ଚତୁରୀ ନିର୍ଲ୍ଲଜ ଯୁବତୀ
ଦେଖୁଛ ତ କରୁଅଛି ପାଞ୍ଚଗୋଟା ପତି ।
ମହାସତୀ ବୋଲାଉଛି ଆଉ ଏହି ଘଡ଼ି
ତାର ପିନ୍ଧିବା ବସନ ପକାଇବା ଫେଡ଼ି ।
ସତୀ କି ଅସତୀ ସେହି ଜାଣିବା ସାକ୍ଷାତେ
ହସି ଦୁର୍ଯ୍ୟୋଧନ ବୋଲେ ଆଣ ଯା ତୁରିତେ
ଶୁଣି ଦୁଃଶାସନ ତହୁଁ ବେଗେ ଚଳିଗଲା
କେଶ ଧରି ସଭା ଭିତରକୁ ଦେବୀ ନେଲା ।
ଦୁର୍ଯ୍ୟୋଧନ ବୋଲେ ତୋର ପାଞ୍ଚପତି ଥାଇ
ଜଣେ ହେଲେ କେହି ତୋତେ ରଖିଲେ ତ ନାହିଁ
ଗାରିମା କରନ୍ତି ଏବେ ରଖନ୍ତୁ ତୋ ବର
ରକ୍ଷକ ପରା ଶ୍ରୀକୃଷ୍ଣ ଅଟନ୍ତି ତୋହର ।
ପାଣ୍ଡବଙ୍କୁ କାଳେ କାଳେ ରଖଇ କହ୍ନାଇ
ଆରତ ହେଉ ସେ ତୋତେ ନ ରଖେ କିମ୍ପାଇଁ ।
ଦ୍ରୌପଦୀ ଦେବୀ ବୋଇଲେ ଏ କୁରୁସଭାରେ
ଧାର୍ମିକ ବିବେକ ଜନ ଅଛନ୍ତି ଏଠାରେ ।
କେହି ପଦେ ନ କହୁଛ କରୁଛି ଅନୀତି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଆବର ଅଛନ୍ତି ।
ଆମ୍ଭାକୁ ହାରିଲେ ଖେଳେ ଧର୍ମ ନୃପବର
ମୋ ତହିଁ ରହିଲା କାହିଁ ତାଙ୍କ ଅଧିକାର ।
କେହି ନ କହିଲେ କିଛି ରହିଲେ ମଉନେ
ଦୁର୍ଯ୍ୟୋଧନ ନୃପତିକି ଭୟ ରଖି ମନେ ।

କୁରୁପତି ବୋଲେ କିସ ପଚାରୁ ସୁନ୍ଦରୀ
ଡାକ ତୋତେ ରଖୁ ଆସି ତୋର ଚକ୍ରଧାରୀ ।
ଦ୍ରୌପଦୀ କହନ୍ତି କୁରୁପତିଙ୍କୁ ଅନାଇ
ଆରତ ତ୍ରାଣଙ୍କୁ ନିନ୍ଦା କରୁଛ କିମ୍ପାଇଁ ।
ସତ୍ୟ ଯୁଗର ଚରିତ ତୋ ଆଗେ କହିବା
ମନୁ ସଂଶୟ ତୋହର ଏବେ ଘୁଞ୍ଚାଇବା ।
ଘୋରବନେ ଏକ ଶଶା କରିଥିଲା ବାସ
ଜଳପାନ ଅର୍ଥେ ଗଲା ସରୋବର ପାଶ ।
ଦୂରରୁ ଆସଇ ଏକ ସିଂହକୁ ଦେଖିଲା
ପ୍ରାଣଭୟେ ଶଶାଗୋଟି ତହୁଁ ପଳାଇଲା ।
ଆଗେ ଥାଏ ଶଶା ସିଂହ ଗୋଡ଼ାଏ ପଛରେ
ବିବର ଏକ ଦେଖିଲା ଶଶା ସେ ବନରେ ।
ଭୟରେ ବିହ୍ୱଳ ହୋଇ ତହିଁରେ ପଶିଲା
ସିଂହ ଯାଇ ସେ ବିବର ମୁହଁରେ ବସିଲା ।
ଶୃଗାଳର ଗର୍ତ୍ତ ସେହି ଅଛଇ ଶୃଗାଳ
ତାକୁ ଦେଖି ଶଶା ଭୟେ ହୋଇଲା ବ୍ୟାକୁଳ ।
ଭାଳଇ ସିଂହ ମୁଖରୁ ବର୍ତ୍ତି ଏବେ ମୁହିଁ
ଶୃଗାଳ ମୁଖେ ପଡ଼ିଲେ ରକ୍ଷା ମୋର ନାହିଁ ।
ପଳାଇ ଯିବାକୁ ଆଉ ନାହିଁ ବାଟ ମୋତେ
ବିବର ମୁଖ ଜଗିଛି ସିଂହ ମୋ ନିମନ୍ତେ ।
ନିଶ୍ଚୟ ବିନାଶ ହେଲି ଗର୍ତ୍ତମଧ୍ୟେ ପଡ଼ି
ଏଥୁ ଉଦ୍ଧରିବ କେହୁ କିଏ ଦେବ ଛାଡ଼ି ।
ଶୁଣିଛି ଆରତତ୍ରାଣ ଅଟନ୍ତି ଶ୍ରୀହରି
ସେହି ଅବା ଏ ବିପଦୁଁ ପାରନ୍ତି ଉଦ୍ଧାରି ।
ଏମନ୍ତ ଭାଳି ଡାକିଲା ରଖ ଜଗନ୍ନାଥ
ଦୀନବନ୍ଧୁ କୃପାସିନ୍ଧୁ ହେଲି ମୁଁ ଅନାଥ ।
ଆରତଜନ ନିମନ୍ତେ ତୁମ୍ଭେ ଚକ୍ରଧାରୀ
ତୁମ୍ଭେ ନ ତାରିଲେ କିଏ ତାରିବ ହେ ହରି ।
ତୁମ୍ଭେ ନ ରଖିଲେ ନିଶ୍ଚେ ହୋଇବି ନିଧନ
ତୁମ୍ଭ ବିନା ଭରସା କେ ନାହିଁ ଭଗବାନ ।
ଶଶା ଆରତ ଗୋବିନ୍ଦ କର୍ଣ୍ଣରେ ଶୁଣିଲେ
ରଖିଲୁଁ ରଖିଲୁଁ ବୋଲି ଉଚ୍ଚରେ ବୋଇଲେ ।
ଶଶାକୁ ସାହା ହୁଅନ୍ତେ ଜଗତ ଜୀବନ
ଦିଶିଲା ତାହାକୁ ନାନା କୂଟ ଛନ୍ଦମାନ ।
ଶଶାକୁ ଦେଖି ଶୃଗାଳ କରଇ ବିଚାର
ଦଇବେ ଆସି ମୋ ପାଶେ ମିଳିଲା ଆହାର ।
ଆନନ୍ଦ ହୋଇ ବୋଲଇ କିମ୍ପାଇଁ ଅଇଲୁ
ଜାଣୁ ଜାଣୁ ଆସି ମୋର ଗର୍ତ୍ତରେ ପଶିଲୁ ।
ଶଶା ବୋଲଇ ଶୁଣ ହେ ଶୃଗାଳ ମୋ ଭାଷ
ସର୍ବ ଜନ୍ତୁଏ ପେଶିଲେ ମୋତେ ତୁମ୍ଭ ପାଶ ।
ବୋଇଲେ ଶଶା ତୁ ଯାଇ ଶୃଗାଳକୁ ଆଣ
ଏହି ବନରେ କରିବୁ ତାଙ୍କୁ ଜନ୍ତୁରାଣ ।
ଆମ୍ଭେ ସମସ୍ତେ କରିବୁଁ ତାଙ୍କ ପାଦପୂଜା
ପ୍ରଜାହେବୁ ଆମ୍ଭେମାନେ ସେ ହୋଇବେ ରାଜା
ଶଶା ମୁଖରୁ ଶୁଣିଣ ଶୃଗାଳ ଏ ଭାଷ
ଆନନ୍ଦ ମନେ କହଇ ହୋଇ ହସ ହସ ।
ଯେବେବରେ ଶଶା ଏ ବନେ ମୁଁ ରାଜା ହୋଇବି
ମନ୍ତ୍ରୀପଣେ ତୋର ଶିରେ ଶାଢ଼ୀ ମୁଁ ବାନ୍ଧିବି ।
ଚାଲ ଏବେ ଅରଣ୍ୟକୁ ଯିବାରେ ତୁରିତେ
ଶଶା ବୋଲେ ଦେବ ଏବେ ଚାଲନ୍ତୁ ଅଗ୍ରତେ ।
ପ୍ରଭୁ ଆଗରେ ଭୃତ୍ୟର ଚାଲି ନ ଯୋଗାଇ
ଆଗରେ ବିଜେ କରନ୍ତୁ ବନଜନ୍ତୁ ସାଇଁ ।
ତୁମ୍ଭ ପଛେ ଯିବା ମୋର ହୋଇଲା ଉଚିତ
ତୁମ୍ଭେ ମୋର ରାଜା ମୁହିଁ ଅଟେ ତୁମ୍ଭ ଭୃତ୍ୟ ।
ଶଶା କପଟ ଶୃଗାଳ ନ ପାରିଲା ଜାଣି
କାହୁଁ ସେ ଜାଣିବ ସିଂହ ଜଗିଅଛି ପୁଣି ।
ଗର୍ତ୍ତ ମଧ୍ୟରୁ ଶୃଗାଳ ହୁଅନ୍ତେ ବାହାର
ବସିଥିଲା ସିଂହ ମାଡ଼ିବସିଲା ସତ୍ୱର ।
ଆହେ କୁରୁପତି ସାହା ଗୋବିନ୍ଦ ହେବାରୁ
ବଞ୍ଚିଲା ଶଶା ଉଭୟ ଶତ୍ରୁର ମୁଖରୁ ।
ତୁମ୍ଭେ ହରିଙ୍କି କିପାଇଁ ନିନ୍ଦୁଛ ନୃପତି
ଗୋବିନ୍ଦେ ଚିନ୍ତିଲେ କେଭେଁ ନ ଥାଇ ଦୁର୍ଗତି ।
ଶୁଣି ରୋଷେ ବୋଲେ ରାଜା ଆରେ ଦୁଃଶାସନ
ତୁରିତ ଫେଡ଼ ଦ୍ରୌପଦୀ ଅଙ୍ଗରୁ ବସନ ।
କେମନ୍ତେ ରଖିବେ ହରି ଦେଖିବା ଏହାକୁ
ଶୁଣି ଦୁଃଶାସନ ଧାଇଁଗଲା ତା ପାଶକୁ ।
ଦ୍ରୌପଦୀ ବୋଲନ୍ତି ରହ ରହ ଦୁଃଶାସନ
ମୋ ପାଞ୍ଚପତି ବସିଛନ୍ତି ସନ୍ନିଧାନ ।
ଏତେବେଳେ ତାହାଙ୍କୁ ମୁଁ କହେ ପଦେ ପଦେ
ରଖିବେ କି ନ ରଖିବେ ପଡ଼ିଛି ବିପଦେ ।
ଯୁଧିଷ୍ଠିଙ୍କୁ ଚାହିଁ ଦେବୀ ଲୋତକ ଲୋଚନେ
କହନ୍ତି ଭୋ ପ୍ରଭୁ ଥାଇ ତବ ସନ୍ନିଧାନେ ।
ବାରନାରୀ ପ୍ରାୟ ଆଣି କରନ୍ତି ଏ ବଳେ
ଧର୍ମରାଜ ବୋଲାଉଛ ଏ ମହୀ ମଣ୍ଡଳେ ।
ଏ ମହାସଭାରେ ଦେବ ତୁମ୍ଭ ରମଣୀକି
ବିବସ୍ତ୍ର କଲେ ତୁମ୍ଭଙ୍କୁ ଲଜ୍ଜା ନ ହେବ କି ।
ଶୁଣି ଯୁଧିଷ୍ଠି ତଳକୁ ପୋତିଲେ ବଦନ
ପ୍ରତି ଉତ୍ତର ନ ଦେଲେ ହୋଇଲେ ମଉନ ।
ପାର୍ଥ ମୁଖ ଚାହିଁ ପୁଣି ଗଦ ଗଦ ସ୍ୱରେ
ବୋଲନ୍ତି ଦ୍ରୌପଦୀ ଦେବୀ ଅତ୍ୟନ୍ତ କାତରେ

ବାସବ ନନ୍ଦନ ତୁମ୍ଭେ ପୃଥ୍ୱୀର ଭୂଷଣ
ଦ୍ୱିତୀୟ କୃଷ୍ଣ ବୋଲାଇ ଦେଖ ମୋ କଷଣ ।
ଧିକ ବୀରପଣ ଧିକ ତୁମ୍ଭ ଜୀଇଁବାର
ଘରୁ କେଶ ଧରି ମୋତେ ଆଣି ଏ ପାମର ।
ବିବସନ କରୁଅଛି ଏ ମହା ସଭାରେ
ନିର୍ଲ୍ଲଜ ଜୀବନ କିମ୍ପା ଧରିଛ ସଂସାରେ ।
ଦ୍ରୌପଦୀ ମୁଖରୁ ଶୁଣି ଏ ବାଣୀ ଅର୍ଜ୍ଜୁନ
ବୋଲନ୍ତି କିମ୍ପା ଧିକାର କରୁ ଅକାରଣ ।
ମୋହର ପ୍ରତିଜ୍ଞା ଜାଣି ନାହୁଁ କି ସୁନ୍ଦରୀ
ସତ୍ୟଭାମାକୁ ଗୋସିଂହକୁ ନେଉଥିଲା ହରି ।
ଅର୍ଜ୍ଜୁନ ରଖ ବୋଲି ସେ ଡାକିଲା ରାତ୍ରରେ
ସେ ଶବ୍ଦ ପଶିଲା ଆସି ମୋ ବେନି କର୍ଣ୍ଣରେ ।
ପୁଣି ଶତଧନୁ ମୋତେ ସେ କଥା କହିଲା
ଶରେ ପଥ ରୁନ୍ଧିଲି ସେ ଯାଇ ନ ପାରିଲା ।
ଯୁଦ୍ଧକରି ଗୋସିଂହ ପକାଇଲି ମାରି
ସତ୍ୟଭାମାକୁ ଆଣିଲି ବିପଦୁଁ ଉଦ୍ଧାରି ।
ରୈବତ ପର୍ବତେ ଯାଇ କୃଷ୍ଣଙ୍କୁ ଭେଟିଲି
ଶକ୍ରାଜିତ ଦୁହିତାକୁ ନେଇ ସମର୍ପିଲି ।
ମୋତେ ନ ଧିକ୍‌କାର କୁରୁସୈନ୍ୟ କେତେଛାର
ବାଣରେ ଏ ସମସ୍ତଙ୍କୁ କରନ୍ତି ସଂହାର ।
କିଞ୍ଚିତ ଆଜ୍ଞା ଦିଅନ୍ତେ ଯେବେ ଧର୍ମସୁତ
ଦେଖନ୍ତ ସଖୀ କିପରି ମୋହର ସାମର୍ଥ୍ୟ ।
ପାର୍ଥ ମୁଖୁଁ ଏହା ଶୁଣି ଦ୍ରୁପଦ ଦୁଲଣୀ
ନକୁଳ ମୁଖକୁ ଚାହିଁ କହୁଛନ୍ତି ପୁଣି ।
ହେ ନକୁଳ ତୁମ୍ଭେ ପରା ମହା ବଳୀୟାର
କୁମାର ପଣରେ ପାଟ ସ୍ୱର୍ଗରେ ତୁମ୍ଭର ।
ନବନିଶିତ କୁନ୍ତକୁ ବହ ବୀରପଣେ
ମୋର ଏ କଷଣ ଦେଖି ରହିଛି ଯା ପ୍ରାଣେ ।
ସଭାମଧ୍ୟେ ଦୁଃଶାସନ କରୁଛି ଉଲଙ୍ଗ
କିପରି ସହୁଛ ଛିଡ଼ି ନ ପଡ଼ଇ ଅଙ୍ଗ ।
ନକୁଳ ବୋଇଲା ସଖୀ ବିଧାତା ଲିଖନ
ଏ ମହୀରେ ତାହା କରି ପାରଇ କେ ଆନ ।
କାହିଁପାଇଁ ସଖୀ ମୋତେ କରୁଛ ଝିଙ୍ଗାସ
କିଞ୍ଚିତେ ଆଜ୍ଞା ଦିଅନ୍ତେ ଯେବେ ଧର୍ମଶିଷ୍ୟ ।
କୁନ୍ତମୁନରେ ଉପାଡ଼ି ହସ୍ତିନା ପୁରକୁ
ସମୁଦ୍ରେ ପକାନ୍ତି ନେଇ ଭୟ ମୋ କାହାକୁ ।
ଛାର କୁରୁ ସୈନ୍ୟ ଅବା କେତେକ ମାତର
ପେଷନ୍ତି ମୁଁ କୁନ୍ତମୁନେ ଗୁଞ୍ଚି ଯମପୁର ।
ନକୁଳ ବିମୁଖ ଦେଖି ଦ୍ରୁପଦ କୁମାରୀ
ସହଦେବ ମୁଖ ଚାହିଁ ବୋଲନ୍ତି ଏପରି ।
ଆଗହୁଁ କିମ୍ପାଇଁ ମୋତେ ନ କଲ ଗୋଚର
ଏବେ ହରି ପାରିବ କି ଦୁର୍ଗତି ମୋହର ।
ତୁମ୍ଭେ ମନ୍ତ୍ରୀବର ପରା ତିନିକାଳଜ୍ଞାତା
ଛାମୁରେ ଜଣାଅ ଭୂତ ଭବିଷ୍ୟତ କଥା ।
ତୁମ୍ଭଠାରେ ଥାଉଁ ଥାଉଁ ଏମନ୍ତ ଶକତି
ଜାଣି ନ ଥିଲ କି ଆଗୁଁ ପଡ଼ିବ ବିପତ୍ତି ।
ସହଦେବ ବୋଲେ ସଖୀ ଏତ ଦେବକୂଟ
ତୁମ୍ଭେ କଷଣ ପାଇଲେ ମରିବେ ଏ ଦୁଷ୍ଟ ।
ଦୁର୍ଯ୍ୟୋଧନ ନୃପତିର ଏକଶତ ଭାଇ
ଆବର ଅଛନ୍ତି ମହାବୀରେ ଏଥେ ରହି ।
ଏହି ଦୁଷ୍ଟଙ୍କ ବିନାଶ ପାଇଁ ଦେବଗଣ
କୂଟକରି ଦେଉଛନ୍ତି ତୁମ୍ଭଙ୍କୁ କଷଣ ।
ବିରସ ନ ହୋଇ ଦଣ୍ଡେମାତ୍ର ଦୁଃଖସହ
ଜଗଜ୍ଜନ ମାତା ତୁମ୍ଭେ କିମ୍ପା କର କୋହ ।
ଦ୍ରୌପଦୀ ଶୁଣି ମନ୍ତ୍ରୀର ଏ ନିଷ୍ଠୁର ବାଣୀ
ଅନାଥା ରମଣୀ ପ୍ରାୟ ନେତ୍ରୁ ବହେ ପାଣି ।
ବୁଡ଼ିଲେ ଚିନ୍ତା ସମୁଦ୍ରେ ଜ୍ଞାନ ହଜିଗଲା
ଚନ୍ଦ୍ରମା ବଦନ ଗୋଟି ମଳିନ ଦିଶିଲା ।
ମୁନି କହନ୍ତି ହେ ମନୁ ଶୁଣ ଦିବ୍ୟରସ
ହେଠମୁଖେ ବସିଅଛି ଭୀମ ଭ୍ରାତା ପାଶ ।
ମନର ରୋଷେ ବିରସ ନଖେ ଚିରେ ମହୀ
ବେନି ନୟନୁ ଲୋତକ ଝର ଝର ବହି ।
ଶିରେ କର ଦେଇ ବୀର କରେ ଗୁରୁଚିନ୍ତା
ସନ୍ତାପଜଳେ ବୁଡ଼ିଛି ଦେଖି ଦେବୀ ବ୍ୟଥା ।
ଦ୍ରୌପଦୀ ଚାହିଁ ବୋଇଲେ ଭୀମକୁ ହୋ ଦେଖ
ତୁମ୍ଭପରା ବୀର ଥାଉଁ ମୋର ଏଡ଼େ ଦୁଃଖ ।
ଏ ପାମର ଦୁଃଶାସନ ଧଇଲା ମୋ କେଶ
ଦେଖି କେମନ୍ତେ ମନରେ ନ ଧରୁଛ ରୋଷ ।
ବାଉନ ଭାର ଗଦା କି କରେ ନାହିଁ ଘେନି
ସିଂହ ନାରୀକି ଶୃଗାଳ ଘରୁ ବଳେ ଆଣି ।
ସଭାମଧ୍ୟେ ବିବସନ କରେ ତୁମ୍ଭ ଆଗେ
ଧିକ ତୁମ୍ଭ ବଳବୀର୍ଯ୍ୟ ଧର କେଉଁ ବାଗେ ।
ଭୀମସେନ ବୋଲେ ସଖି ନାହିଁ ମୋର ଦୋଷ
ସେ ପ୍ରତିଜ୍ଞା ଟାଣ କଲେ ଯୁଧିଷ୍ଠିର ନାଶ ।
ବାରେ ଚାହିଁ ଯେବେ ଠାରି ଦିଅନ୍ତେ ସେ ଚକ୍ଷୁ
ହସ୍ତିନା ଚୂର କରନ୍ତି ତୋର ଦେଖୁ ଦେଖୁ ।
କଦଳୀ ବନ ପବନେ ପଡ଼େ ଯେହ୍ନେ ଲୋଟି
କ୍ଷଣକେ ରଥୀ ପଦାତି ପକାନ୍ତି ମୁଁ ପିଟି ।
ବୁଲାଇଲେ ସଖି କାଳେବର ଗଦାବର
ଉଡାଇ ଦିଅନ୍ତି ଯାଇ ପଡ଼ନ୍ତା ସାଗର ।

ଦ୍ରୌପଦୀ ବୋଇଲେ ବୀର ଧିକ ତୁମ୍ଭ ପ୍ରାଣ
ନିର୍ଲ୍ଲଜ ହୋଇ ଜୀଇଁଛ କିମ୍ପା ପାଞ୍ଚଜଣ ।
ଏ ନିର୍ଲ୍ଲଜ ମୁଖ ତୁମ୍ଭେ ଦେଖାଅ କିପାଇଁ
ପାଞ୍ଚଜଣ ହସ୍ତ ଧରି ଅନାଥ ହେଲଇଁ ।
ତୁମ୍ଭେ ମହତ ବୋଲି ମୁଁ ଆଶା କରିଥିଲି
ଅନାଥା ନାରୀ ପରାୟେ ବ୍ୟର୍ଥେ ଦିନ ନେଲି ।
କିପାଇଁ ଆଣିଲ ଲକ୍ଷେ ରାଜା ମଧ୍ୟୁଁ ଜିଣି
ପଞ୍ଚପତି ଆଗେ ଦୁଃଶା କେଶ ଧରି ଟାଣି ।
ଧିକ ତୁମ୍ଭ ଗଦାବଳ ଧିକ ତୁମ୍ଭ ବାହା
ଉଲଗ୍ନ ବେଳେ ନୋହିଲ ଜଣେ କେହି ସାହା ।
ଦେବୀର ଏ କଟୁବାଣୀ ଶୁଣି ବୃକୋଦର
ସହି ନ ପାରି ଉଠିଲା ଦେଇ ଆସ୍ପୁଭାର ।
ରେରେକାର କରି ବୀର ଛାଡ଼ି ଘୋର ରଡ଼ି
ଅଭୁତେ ମନ୍ଦରଗିରି ପଡ଼ିଲା କି ଝଡ଼ି ।
ଲକ୍ଷେ ଯୋଜନରେ ଯମ ଆସ୍ଥାନ ତେଜିଲା
ଭୂମି ସହିତେ ସପତ ପାତାଳ କମ୍ପିଲା ।
ସେ ସଭାରେ ଭୀଷ୍ମ ଦ୍ରୋଣ ଆସି ବସିଥିଲେ
ଭୀମର ଗର୍ଜ୍ଜନ ଶୁଣି ଆସ୍ଥାନ ତେଜିଲେ ।
ଭୀଷ୍ମ କହନ୍ତି ଭୋ ଦେବ ଗୁରୁ ଦ୍ରୋଣ ଦେଖ
ଏ ଭୀମ କୋପିଲା ଦେଖି ଦ୍ରୌପଦୀର ଦୁଃଖ ।
ଏକା ଯୁଧିଷ୍ଠି ଏହାକୁ ଆଜ୍ଞା ଯେବେ ଦେବ
ଦୁର୍ଯ୍ୟୋଧନ ସହିତରେ କ୍ଷଣକେ ନାଶିବ ।
ରଣେ ଶରଣ ବୋଇଲେ ଦ୍ୱିଗୁଣ ମାରଇ
ବୀର ପରେ ଏ ଦ୍ୱିତୀୟ ଯମ ଯେ ଅଟଇ ।
ଦୁର୍ଯ୍ୟୋଧନ ସଭାପାଖେ ଥିଲା ଦୁଃଶାସନ
ଭୀମର ଗର୍ଜ୍ଜନ ଶୁଣି ଆସି ସନ୍ନିଧାନ ।
ବୋଇଲା ଭୀମ ପାମର ହେଲୁ ତୁ କି ବାଇ
ଗତ ଆଗତ କଥା କି ନ ଜାଣୁରେ ତୁହି ।
ସେବକ ପ୍ରାୟେ ହୋଇଲ ଯେବେ ପାଞ୍ଚଜଣ
ନିର୍ଲ୍ଲଜ ଆମ୍ଭାକୁ ରଖି କିମ୍ପା କର ଟାଣ ।
ଯେ ଯେଉଁ ସେବା କରିବ ଶୁଣ ତାହା କହି
ପ୍ରମାଣ କଥାକୁ କିମ୍ପା ଦ୍ୱନ୍ଦ୍ୱ କରୁ ତୁହି ।
ଯୁଧିଷ୍ଠି ଉଠି ନ ପାରି ଦ୍ୱାରେ ବସିଥିବ
ରଥ ଦଉଡ଼ି ବଳିବ ଯେତେ ଲୋଡ଼ା ହେବ ।
ଅର୍ଜ୍ଜୁନ ରୋଷଘରର ହେବ ସୂପକାର
ତୁ ରେ ଭୀମ ଅନ୍ତଃପୁରେ ନୀତି ଦେବୁ ନୀର ।
ନକୁଳ ସିଂହ ଦୁଆରେ ଜଗି ବସିଥିବ
ଏସନ ସେବାରେ ତୁମ୍ଭ ଦିନକାଳ ଯିବ ।
ଏ ମନ୍ତ୍ରୀ ପଣ୍ଡୁକୁମର ଆମ ସାନଭାଇ
ଏହାକୁ କରିବୁ ରାଜା ଅଧେ ରାଜ୍ୟ ଦେଇ ।

ଭୀମ ବୋଇଲେ ଯୁଧିଷ୍ଠି ଦେବ ଆଜ୍ଞା ନାହିଁ
ଚାପୋଡ଼କେ ତୋର ମୁଣ୍ଡ ପକାନ୍ତି ଛିଣ୍ଡାଇ ।
ଶୁଣି ଦୁଃଶାସନ ମହାକୋପରେ ପ୍ରଚଣ୍ଡ
ବୋଲେ ଗଦାରେ କରିବି ତୋର ଶିର ଗୁଣ୍ଡ ।
ଭୀମସେନ କୋପକରି ବୋଲେରେ ପାମର
ଏହିକ୍ଷଣି ଗଦାରେ ଭାଙ୍ଗନ୍ତି ତୋର ଶିର ।
ଏହା କହିଣ କୁହାଟି ଧଇଲା ସେ ଗଦା
ରେ ରେ କାର ଶବଦରେ ମାଇଲାକ କୁଦା ।
ଦୁର୍ଯ୍ୟୋଧନ ଦ୍ୱନ୍ଦ୍ୱ ଦେଖି ସଭାକୁ ଅନାଇ
ବୋଲେ ପରା ସତ୍ୟବାଦୀ ଯୁଧିଷ୍ଠି ଅଟଇ ।
ଭାଇକି ସେ କହିଦେଇ ଆପେ ହୋଇ ତୁନି
ବସିଅଛି ମଉନରେ ହେଲା ପ୍ରାୟ ମୁନି ।
ନିସତ ହୋଇ କିପାଇଁ ହୁଏ ଛଟପଟ
ନିସତ ମୁଖରେ କହି ନେଉ ତାର ରାଷ୍ଟ୍ର ।
ତାର ସାନଭାଇ କିମ୍ପା କରୁଅଛି ଦ୍ୱନ୍ଦ୍ୱ
ସମସ୍ତେ ତ ବୋଲୁଥାଅ କଉରବେ ମନ୍ଦ ।
ଯୁଧିଷ୍ଠି ଉଠି ବୋଇଲେ ରହ ରହ ଭୀମ
କଥା ନ ଜାଣି କିପାଇଁ କରୁଅଛୁ ତମ ।
ତୋର ମୂର୍ଖବୁଦ୍ଧି ବାବୁ ଏବେ ମନୁ ଛଡ଼ା
ନୋହିଲେ ହୋଇବୁ ଆଗେ ନିଶ୍ଚେ ଘରବୁଡ଼ା ।
ଦ୍ରୌପଦୀ ପରା ଯୁବତୀ ମିଳିବରେ ଭାଇ
ଭାଇକି ମାରିଲେ ଆଉ ପାଇବା କି କାହିଁ ।
ସୋଦରେ ଦ୍ୱନ୍ଦ୍ୱ ଆରମ୍ଭ କରୁଛ କାହିଁକି
ଶୁଣିଣ କୁପିତ ଭୀମ ଚାହିଁ ଯୁଧିଷ୍ଠିଙ୍କି ।
ଅନ୍ଧ ଶତପୁତ୍ର ମାରି କରିବି ମୁଁ ପଦା
କି କରି ପାରିବେ ମୋର ହସ୍ତେ ଥିଲେ ଗଦା ।
ପାର୍ଥ କହେ କୋପ ଛାଡ଼ ଆମ୍ଭ ଜ୍ୟେଷ୍ଠଭାଇ
ତାଙ୍କ ଆଜ୍ଞା ଅବଜ୍ଞାରେ ପଛେ ଦୁଃଖପାଇ ।
ନୁହଁ ଅସ୍ଥିର କାତର ନୁହଁ କୋପମୂର୍ତ୍ତି
ଅର୍ଜ୍ଜୁନ ବୋଲେ ବସିଲା ଭୀମ ଲଭି ଶାନ୍ତି ।
ନକ୍ଷତ୍ର ମଧ୍ୟେ ଯେସନେ ଚନ୍ଦ୍ର ବିରାଜଇ
ଭାଇଙ୍କ ମଧ୍ୟରେ ଭୀମ ତେସନ ଦିଶଇ ।
ଭୀମ ବୋଲେ ଦ୍ରୌପଦୀ ନ କର ମୋତେ ମାନ
ଯେ କରେ କେଶ ଧରିଛି ତୋର ଦୁଃଶାସନ ।
କହୁଅଛି ତୁମ୍ଭଙ୍କୁ ମୁଁ ଶ୍ରୁତିପଥେ ଶୁଣ
ସେ ଭୁଜ ମୁଁ ଉପାଡ଼ିବି ଏ ସତ୍ୟ ବଚନ ।
ଯୁଧିଷ୍ଠିଙ୍କ ରାଣ ମୋତେ ନିଶ୍ଚେ ଉପାଡ଼ିବି
ଏହା ମୁଁ ନ କଲେ ପିତୃ ଦୋରେହା ହୋଇବି ।
ଭୀମର ବଚନ ସତ୍ୟ ନୋହିବଟି ଆନ
ହୃଦରେ କାଟିଲା ତିନି ଗାର ଭୀମସେନ ।

ପାଣ୍ଡବଙ୍କ ନିଷ୍ଠୁରତା ଦେଖି ମହାସତୀ
ମନେ ମନେ ସୁମରିଲେ ପ୍ରଭୁ ଯଦୁପତି ।
ଗୋବିନ୍ଦଙ୍କ ପାଦେ ମନ ଚୈତନ୍ୟକୁ ଦେଇ
ମନ ବିରସେ ବସିଲେ ଏକଲୟେ ଧ୍ୟାୟି ।
ବୋଇଲେ ହେ ରକ୍ଷାକର ଶ୍ରୀମଧୁସୂଦନ
ଭକତ ବତ୍ସଳ ହରି ଆରତ ନାଶନ ।
ତୁମ୍ଭେ ନ ରଖିଲେ ମୁହିଁ ହୋଇଲି ଅନାଥ
ରଖ ରଖ ଜଗନ୍ନାଥ ଦୁଃଖୀର ସଙ୍ଗାତ ।
କୁରୁସଭା ତଳେ ମୋର ଯାଉଅଛି ମାନ
ଏତେବେଳେ ରକ୍ଷାକର ଦୂରିତ ନାଶନ ।
ଲଗାଇଲେ ପଦ୍ମପାଦ ତଳେ ଦେବୀ ଧ୍ୟାନ
ଦ୍ୱାରକାରେ ଜାଣିଲେ ତା ଶ୍ରୀମଧୁସୂଦନ ।
ସତ୍ୟଭାମା ସଙ୍ଗେ ପଶା ଖେଳନ୍ତି ଶ୍ରୀହରି
ଶୁଣିଲେ ଦ୍ରୌପଦୀ ଡାକ ପ୍ରଭୁ କର୍ଣ୍ଣଡେରି ।
ରଖିଲୁ ରଖିଲୁ ଆମ୍ଭେ ବୋଲିଣ ବୋଇଲେ
ଆଜାନୁଲମ୍ବିତ ଭୁଜ ବେଗେ ଟେକିଦେଲେ ।
ସତ୍ୟଭାମା ବୋଲୁଛନ୍ତି ଶ୍ରୀହରିଙ୍କୁ ଚାହିଁ
କେଉଁସାରକୁ ରଖିଲ କାହିଁ ହେ ଗୋସାଇଁ ।
ପଞ୍ଚୁଆତି ଦାନ ଗୋଟି ପଡ଼ିଛି ମୋହର
କାହାକୁ ରଖିଲ କୁହ ପ୍ରାଣର ଈଶ୍ୱର ।
ଗୋବିନ୍ଦ ବୋଇଲେ ପଶା ଖେଳ ଏ ନୁହଇ
ଦ୍ରୌପଦୀ ଡାକିଲେ କୁରୁସଭା ମଧ୍ୟେ ଥାଇ ।
ଦୁର୍ଯ୍ୟୋଧନ ସଙ୍ଗେ ପଶା ଯୁଧିଷ୍ଠି ଖେଳିଲେ
ଦ୍ରୌପଦୀଙ୍କି ଅବିବେକ ପଣେ ସେ ହାରିଲେ ।
ବିବସ୍ତ୍ର କରୁଛି ତାଙ୍କୁ ଦୁଃଶା ଯେ ପାମର
ଦ୍ରୌପଦୀ ଡାକିଲେ ମୋତେ ରଖ ଚକ୍ରଧର ।
ସତ୍ୟଭାମା ବୋଇଲେ ଏ କପଟ ବଚନ
ହସ୍ତିନାରୁ ଦ୍ୱାରକା ଯେ ସହସ୍ର ଯୋଜନ ।
କେମନ୍ତେ ଶୁଭିଲା ଏତେଦୂରୁ ତାଙ୍କ ଡାକ
ମିଛେ ମୋତେ ଭଣ୍ଡାଉଛ ପରାଣ ନାୟକ ।
ଯେବେ ତୁମ୍ଭେ ଦୌପଦୀଙ୍କୁ ହୋଇଲ ହେ ସାହା
ମୋ ମନେ ପ୍ରତେ ନୁହଇ ଦେଖା ନେଇ ତାହା
ଗରୁଡ଼କୁ ସୁମରିଲେ ରକ୍ମିଣୀର ସାଇଁ
ରମ୍ୟକ ଦ୍ୱୀପରେ ପକ୍ଷୀ ଭୁଞ୍ଜୁଥିଲା ରହି ।
ବୋଇଲା ତାହାର ପତ୍ନୀ ମୁଖକୁ ଅନାଇ
ଅମୃତ ଭୋଜନ ପିତା ମୋତେ ତ ଲାଗଇ ।
ମଦନା ବୋଲଇ ଶୁଣ ପ୍ରାଣର ଈଶ୍ୱର
ପ୍ରମାଦ ପଡ଼ିଲା କିବା ଦ୍ୱାରକା ନଗର ।
ଶୁଣି ଖଗବର ତହୁଁ ବେଗରେ ଅଇଲା
ଲକ୍ଷେ ଯୋଜନକୁ ଡେଣା ବିସ୍ତାରିଣ ଦେଲା ।

ଗୋବିନ୍ଦଙ୍କୁ ସୁମରିଣ ବେଗେ ଗଲା ଚଳି
କ୍ଷଣକ ଭିତରେ ଯାଇ ଦ୍ୱାରକାରେ ମିଳି ।
ଆସ୍ଥାନ ଉପରେ ବିଜେ ଜଗତ ଗୋସାଇଁ
ପାଦତଳେ ଖଗବର ପଡ଼ିଲାକ ଯାଇଁ ।
ଉଠ ଉଠ ବୋଲି ପ୍ରଭୁ ଧଇଲେକ ତୋଳି
ଦେଖିଣ ହରଷ ଶତ୍ରାଜିତର ଦୁଲାଳୀ ।
ଗରୁଡ଼ ବୋଲେ କିପାଇଁ କଲ ସୁମରଣ
କି କାର୍ଯ୍ୟ କରିବି କହ ରୁକ୍ମିଣୀ ରମଣ ।
ଗୋବିନ୍ଦ ବୋଇଲେ ବାବୁ ପିଠିକି ବିସ୍ତାର
ଆମ୍ଭଙ୍କୁ ଘେନିଣ ଯିବୁ ହସ୍ତିନା ନଗର ।
ଶୁଣି ଖଗବର ବେଗେ ପିଠି ବିସ୍ତାରିଲେ
ସତ୍ୟଭାମାକୁ ଘେନିଣ ପ୍ରଭୁ ବିଜେକଲେ ।
ପ୍ରବେଶ ହୋଇଲେ ଯାଇ ହସ୍ତିନା ନଗରେ
ଅଦୃଶ୍ୟ ହୋଇ ରହିଲେ ଆକାଶ ମାର୍ଗରେ ।
ମୁଖ ଟେକି ଦେଲେ ଦେବୀ ଦ୍ରୌପଦୀ ଅନାଇଁ
ଗରୁଡ଼ ପିଠିରେ ବିଜେ ତ୍ରୈଲୋକ୍ୟ ଗୋସାଇଁ
ଚର୍ମନେତ୍ରେ ଦେବୀ ତାଙ୍କୁ କଲେ ଦରଶନ
ନିସ୍ତରିଲି ନିସ୍ତରିଲି ବୋଇଲେ ଏସନ ।
ଏ ସଭାରେ ମୋର ଯେତେ ମନ ଦୁଃଖ ଥିଲା
ଶ୍ୱେତପଦ୍ମ ଡୋଳା ଦେଖି ଦୂର ହୋଇଗଲା ।
ବୋଇଲେ ହେ ପ୍ରଭୁ ଶ୍ୱେତ କମଳ ଲୋଚନ
ତୁମ୍ଭ ଘେନି ବଡ଼ଲୋକ ପଣ୍ଡୁର ନନ୍ଦନ ।
ରାଜସୂୟ ଯଜ୍ଞକାଳେ ତୁ ଦେବ ଅନନ୍ତ
ପଡ଼ିହାରୀପଣ ନେଇ ଧରିଥିଲୁ ବେତ ।
ମଣିମା ମଣିମା ବୋଲି ପରା ଡାକୁଥିଲୁ
ଏବେ ପାଣ୍ଡବଙ୍କଠାରୁ ଦୟା କି ଛାଡ଼ିଲୁ ।
କପଟ ପଶାରେ ଜିଣି ସକଳ ସମ୍ପଦ
ସଭାତଳେ ବସାଇଛି ଏ ମାନଗୋବିନ୍ଦ ।
ମୋହର ଯେ ଦୁଃଖ ପ୍ରଭୁ କହିବଇଁ କେତେ
କେଶ ଧରି ଦୁଃଶାସନ ଆଣିଲାକି ମୋତେ ।
ସଭାରେ ବିବସ୍ତ୍ର ପୁଣି କରିବ ପାମର
ତୁମ୍ଭେ ନ ରଖିଲେ ପ୍ରଭୁ ହେବି ମୁଁ କାହାର ।
ଗୋବିନ୍ଦ ବୋଇଲେ ଛାଡ଼ ମନର ବେଦନା
ଏ ଛାର କଥାକୁ କିମ୍ପା କରୁଛ ଭାବନା ।
ଯେତେ ବସ୍ତ୍ର ଅଭ୍ୟାଗତେ କରିଅଛ ଦାନ
ରଖାଇଛୁ ଆଦିତ୍ୟଙ୍କ ଠାରେ ସେ ବସନ ।
ସମ୍ପଦକାଳେ ଯେ ଯାହା ଦାନ ଦେଇଥାଇ
ବିପଦକାଳରେ କୋଟିଗୁଣେ ତା ମିଳଇ ।
ଆଦିତ୍ୟଙ୍କୁ ସୁମରଣା କରଗୋ ସରାଗେ
ଶତଗୁଣ ହୋଇ ତାହା ମିଳିବ ଯେ ବେଗେ ।

ଆସ୍ଥାନ ତେଜିଣ ଭୀଷ୍ମ ଦ୍ରୋଣ ବେଗେ ଉଠି
ବିଚାରନ୍ତି ଆଜ୍ଞା କି ଦିଅନ୍ତି ଯୁଧିଷ୍ଠି ।
କିଞ୍ଚିତ ଆଜ୍ଞା ପାଇଲେ ଏହି ଭୀମସେନ
ଆଜ କି ବର୍ତ୍ତନ୍ତେ ଏଥେ କୌରବ ସଇନ ।
ବଦନ୍ତି ଗାଙ୍ଗେୟ ଶୁଣ ହେ ମାନଗୋବିନ୍ଦ
ଏତେ ଝିଙ୍ଗାସୁ ନ ପୁଣ ହୁଅଇଟି ଦ୍ୱନ୍ଦ୍ୱ ।
ନ ପୁଣ ଯୁଧିଷ୍ଠି ଦେବ କହେ ମନ୍ଦବାଣୀ
କଠୋର ପ୍ରଳୟ ଜାଣ ହେବ ଏହିକ୍ଷଣି ।
ଛାଡ଼ିଦିଅ ପାଞ୍ଚାଳିକି ନିଜପୁରେ ଯାଉ
ସବୁରି ଆପଦମାନ ବେଗେ ଶାନ୍ତହେଉ ।
ଦ୍ରୋଣ ବୋଇଲେ ନ ଧର ତୁ ମଉନବ୍ରତ
ପାଣ୍ଡବଙ୍କ କୋପେ ନାଶ ଯିବଟି ସମସ୍ତ ।
ପ୍ରତ୍ୟକ୍ଷ ଦେଖିଲୁ ଭୀମ କେଡ଼େ ମହାବୀରା
କୁତୂହଳେ ମାଲବନ୍ଧେ ବଧକଲା ଜରା ।
ବକ ହିଡ଼ିମ୍ବକ ବଧି ବନବାସ କାଳେ
କୁମ୍ଭୀର ଦୈତ୍ୟ ମାରିଲା ଅଗାଧ ସଲିଳେ ।
ଗଦାବର ବୁଲାନ୍ତେ ସେ କମ୍ପଇ କୃତାନ୍ତ
କୁମ୍ଭକ ଦୈତ୍ୟ ମାଇଲା ତ୍ରୈଲୋକ୍ୟ ବିଦିତ ।
ଅର୍ଜ୍ଜୁନର ମହିମା ତୁ ଜାଣୁ ନା ପ୍ରତ୍ୟକ୍ଷେ
ଖାଣ୍ଡବବନ ଦହନ କିଣି ସହସ୍ରାକ୍ଷେ ।
ପାଣ୍ଡବାସୁରକୁ ହେଲେ ଯୁଦ୍ଧେ ପୁଣି ମାରି
ତୁମ୍ଭ ଆମ୍ଭ ସମସ୍ତଙ୍କ ଅଛି ସେହି ତାରି ।
ସମସ୍ତେ କହିଲେ ଯହୁଁ ପାଣ୍ଡବ ମହିମା
ଶୁଣିଣ ଦୁଷ୍ଟ କୌରବେ ଦେଖାନ୍ତି ଗାରିମା ।
ମହା ପ୍ରତାପୀ ରାଜା ନ ଶୁଣେ କାହା ବାଣୀ
ଆସ୍ଥାନ ତେଜି ଉଠିଣ ବୋଲେ କୁରୁମଣି ।
ରେ ଦୁର୍ଜ୍ଜନ ଦୁରାନ୍ତକ କିମ୍ପା ଅଛ ଚାହିଁ
କେତେ ଗଞ୍ଜି ହୋଇନାହିଁ ଏ ପାଞ୍ଚାଳୀ ପାଇଁ ।
ପାଞ୍ଚାଳୀ ବୋଇଲେ ମୁହିଁ ଅଟେ ଯେ ଧର୍ମିଣୀ
ମୋତେ ଝିଙ୍ଗାସ ନକର ବାବୁ କୁରୁମଣି ।
ସଭାରେ ଥାଇ କହଇ ରାଜା କୁରୁପତି
ମିଥ୍ୟା କହଇ ଦ୍ରୌପଦୀ ଅଟଇ ଅସତୀ ।
ଫେଡ଼ି ପକାଅ ଏହାର ପିନ୍ଧିଲା ବସନ
ନିର୍ମଳ କରି ଦେଖିବା ଜାନୁ ଯଉବନ ।
ରାଜା ଆଜ୍ଞା ପାଇ ଉଠିଗଲେ ସର୍ବଦୁଷ୍ଟେ
ବେନିଭୁଜେ ଦ୍ରୌପଦୀକି ଧଇଲେ ପାପିଷ୍ଟେ ।
ପକାଉଛନ୍ତି ପିନ୍ଧିଲା ବସନକୁ ଫେଡ଼ି
ଦ୍ରୌପଦୀ ଦେଖିଲେ ଉଦେ ଗଗନ ବିହାରୀ ।
ବିଚାରନ୍ତି ଦେବୀ ମୋର ସ୍ୱାମୀ ଅପରାଧୀ
ଏ କଷ୍ଟଣୁ ନ ରଖିଲେ ନୋହିଲେ ବିରୋଧୀ ।

ଜୟ କମଳଲୋଚନ ଦେବ ଦିନକର
ଆଦି ଅନାଦି ନାଥ ତୁ ଛାୟାଦେବୀ ବର ।
ଜୟ ନାରାୟଣ ତୁହି ଆଦି ସିଦ୍ଧିଦାତା
ତୁ ଯେ ଜାଣୁ ନାଥ ତୁ ତ ଭବିଷ୍ୟ ବାରତା ।
ଜଳ ସ୍ଥଳ ପାତାଳ ତୁ ଅନଳର ଆଦି
ପୃଥ୍ୱୀ ଆପ ତେଜ ବାୟୁ ମଧ୍ୟରେ ପ୍ରସିଦ୍ଧି ।
ଯୋଗେଶ୍ୱର ତୁ ଜଗତଜନଙ୍କର ବନ୍ଧୁ
ଅବିକାର ପୁରୁଷ ତୁ ଜ୍ୟୋତିରୂପ ଇନ୍ଦୁ ।
ଅକ୍ଷୟ ଅବ୍ୟୟ ନିରଞ୍ଜନ ନିରାକାର
ତମ ବିଦାରଣ ନାଥ ଜୟ ଦିନକର ।
ତୁହି ଦେବ ଏ ସଂସାରେ ସର୍ବଜନ ସାକ୍ଷୀ
ଏ ଦ୍ୱାପର ଯୁଗରେ ମୁଁ ଅଟଇ ନିର୍ମାକ୍ଷୀ ।
ଦୁଃଖୀଜନ ନିବାରଣ ତିମିର ବାରଣ
ଜୟ ପ୍ରଭାକର ତୁହି ସଂସାର ତାରଣ ।
ପରମାନନ୍ଦ ସ୍ୱାମୀ ତୁ ପର ହିତକାରୀ
ଇତର ଜନ ପ୍ରଣମେ ଚରଣେ ତୋହରି ।
କ୍ଷୀରୋଦକୂଳେ ସେ ଚନ୍ଦ୍ରଭାଗା ଅର୍କତୀର୍ଥେ
ଅର୍କଦୈତ୍ୟ ବିଦାରିଲୁ ନାଥ ଜନହିତେ ।
ବାରିନିଧି ଭୁବନରେ ତୋ ଅଟେ ଉତ୍ପତ୍ତି
ସର୍ବଜ୍ଞ ପୁରୁଷ ତୁହି ସଦାନନ୍ଦ ମତି ।
ନମୋ ନମୋ ହେ ବିରଞ୍ଚିନାରାୟଣ ଦେବ
ନମୋ ବ୍ରହ୍ମାଣ୍ଡଧାରଣ ନମୋ ସଦାଶିବ ।
ନମୋ ବିରଞ୍ଚି ଭାସ୍କର ବିଶ୍ୱାଧିଦେବତା
ସଂଜ୍ଞାର ବଲ୍ଲଭ ନାଥ ସର୍ବଜ୍ଞ ତୁ ଜ୍ଞାତା ।
ତୁ ଦେବ ଶୟଳ ଜନ ପ୍ରଳୟ ଉଦ୍ଧାରି
ମନମୋହନ ତୁ ସର୍ବଜନ ଅଧିକାରୀ ।
ମମ କଷ୍ଟ ଉଦ୍ଧାରଣ କର ହେ ଭାସ୍କର
ପରମାନନ୍ଦ ତୁ ପର ଦୁଃଖରେ କାତର ।
ସକଳ ଦେବଙ୍କର ତୁ ଅଟୁ ଦିବ୍ୟଚକ୍ଷୁ
ପାପ ପୁଣ୍ୟ ଆଚରଣ ତୁ ସମସ୍ତ ଦେଖୁ ।
ଅନୁଭବରେ ବତିଶକୋଟି ତୋ ସକଳ
ନିର୍ଧୂମ ଅଗ୍ନିରୁ ତୋର ତେଜ ଅନର୍ଗଳ ।
ଚଉଷଠି ଅକ୍ଷର ତୋ ମନ୍ତ୍ର ଭଗବାନ
ସଂଜ୍ଞାର ବିବାହେ ତୁହି ଜଗତ ମୋହନ ।
ନ ଜାଣି ଦକ୍ଷ ନନ୍ଦିନୀ ତୋତେ କି ପ୍ରସବି
ତୋହର ଚରଣତଳେ ଏ ସଂସାର ସେବି ।
ସଂଜ୍ଞା ବୋଇଲେ ତୋ ତେଜ ଅଟେ ଅସହନ
ତୋ ଭୟରେ ସ୍ୱାମୀ ତେଣୁ ହୋଇଲେ ଗୋପନ
ବୟସର ମତ୍ତଗର୍ବେ ସଂଜ୍ଞା ନ ଚିହ୍ନିଲା
ତୋତେ ଛାଡ଼ିଯାଇ ସେହି ଗୁପତେ ରହିଲା ।

ଆପେ ତୁ ପୁଣ ବିଚାର କଲୁ ଆଦିମୂଳ
ତେଣୁ ସଂଜ୍ଞାକୁ ରଖିଲୁ କଶ୍ୟପର ବାଳ ।
ଆମ୍ଭଙ୍କୁ ନିନ୍ଦିଲା ଏହି ସ୍ତିରୀ ଯେ ଦୁର୍ବୁଦ୍ଧି
ଆମ୍ଭର ରୂପ ଦେଖିଲେ ଘୋଟେ କାମବ୍ୟାଧି ।
ଆମ୍ଭେ ସେହି ବଳେ ଯେବେ ହେଉ ଉନମତ୍ତା
ସେ ବଳେ ଯେ ନ ଗଣନ୍ତି ସ୍ୱାମୀଙ୍କୁ ବନିତା ।
ଏତେବୋଲି ଦେଖାଇଲେ ଦେବ ନିଜରୂପ
ବ୍ରହ୍ମାଣ୍ଡେ ଲାଗିଲା ଦେବ ଯାଇ ସେ ସ୍ୱରୂପ ।
ଅନନ୍ତ ମୂରତୀ ଦେବୀ ନ ପାରିଲା ସହି
ପଡ଼ିଲେ ସେ ଅସାଷ୍ଟମେ ହେଉଥିଲେ ଦହି ।
ତେଜ ସହି ନ ପାରି ସେ ପଳାଇଲେ ଡରେ
ଅଶ୍ୱରୂପେ ଗୋପ୍ୟ ହେଲେ ମେରୁ କ୍ରୋଟରରେ
ଶରୀରରୁ ଦେବୀ ଛାୟା ଜାତକରି ଗଲା
ଅନେକ ମହୌଷଧିରେ ପ୍ରକୃତି ମୋହିଲା ।
ତୁ ନାରାୟଣ କଲୁ ତା ତୁଳେ ଅଭିଳାଷ
ନବକଳ୍ପ ପରିଯନ୍ତେ କଲୁ ଗୃହବାସ ।
ନାଶକର ତୁଳେ ଯହୁଁ କଲା ସେହୁ କଳି
ରାଗେ ଶାପଦେଲା ବାମପାଦୁଁ ପୂଯ ଗଳି ।
ଯମର ଚରଣେ ଯହୁଁ ହେଲା କୁଷ୍ଟବ୍ୟାଧି
ଧ୍ୟାନରେ ଜାଣିଲୁ ଦେବ ତାର ମହୌଷଧି ।
ଛାୟାକୁ ତୁ ତେଜ୍ୟାକରି ଗଲୁ ହୋ ବିରଞ୍ଚି
ଅଶ୍ୱରୂପ ହୋଇ ସଂଜ୍ଞା ଗର୍ଭେ ତେଜ ସଞ୍ଚି ।
ଅଶ୍ୱରୂପେ ତୁ ଶୃଙ୍ଗାର କଲୁ ଯେତେ ଇଚ୍ଛା
ଅଶ୍ୱିନୀକୁମାର ଜାତ ହେଲେ ବେନିବତ୍ସା ।
ନିଜ କାୟା ଚିହ୍ନାଇଲୁ ନିଜକୁଳେ ବସି
ସହସ୍ର କିରଣ ସହ୍ୟ କଲା ଶୁଭ୍ରକେଶୀ ।
ମେଷମାସରେ ତୋହର ଷାଠିଏ କିରଣ
ବୃଷମାସରେ ସତୁରି କିରଣ ତୋ ପୁଣ ।
ମିଥୁନେ ଅଶୀ କିରଣ ପ୍ରକାଶ ହୁଅଇ
କକଡ଼ା ମାସେ ତିରିଶ କିରଣ ଖସଇ ।
ସିଂହରେ ପ୍ରକାଶ ହୁଏ କିରଣ ତୋ ଶତ
କନ୍ୟାମାସେ ଅର୍ଦ୍ଧଶତ ରଶ୍ମିହୁଏ ଜାତ ।
ଷାଠିଏ ଅଂଶ କିରଣ ବହି ଦେବ ତୁଳେ
ବିଛାରେ ଷୋଡ଼ଶ ଅଂଶ ଗଗନ ମଣ୍ଡଳେ ।
ଧନୁରେ ଶତଚାଳିଶ ଅଂଶେ ହିମ ନାଶୁ
ଶତ କିରଣ ଅଂଶ ତୋ ମକରେ ପ୍ରକାଶୁ ।
କୁମ୍ଭେ ଷାଠିଏ କିରଣ ମୀନରେ ଚାଳିଶ
ଏମନ୍ତେ କିରଣେ ଅଂଶ ତୋ ଅଙ୍ଗେ ବିକାଶ ।
ଯାଗଯଜ୍ଞ ଦେବପୂଜା ଅରୁଣ ତୋ ସଙ୍ଗୀ
ସାଧୁଜନ ଉଦ୍ଧାରଣ ତୁ ପରମ ଯୋଗୀ ।

ମୋହର ଚରିତ ନାଥ ଜାଣୁ ନା କି ପୂର୍ବେ
ଏ ବେଳକ ଏ ସଙ୍କଟୁ ଉଦ୍ଧାର ତୁ ଏବେ ।
ଶରୀର ବିକାଶି ନାଥ ଅନୁବ୍ରତେ ଭ୍ରମୁ
ମୋତେ ଦୂଷିତା କରିବେ ପାମରେ ତୋ ଛାମୁ
ଯଦ୍ୟପ ନାଥ ତୁ ଅଟୁ ପରମ ଦେବତା
ଅନାଦି ଜନର ତୁହି ଯେବେ ଉଦ୍ଧରନ୍ତା ।
ଅନାଦି ଯୁଗାଦି ନାଥ ତୁ ପରମବନ୍ଧୁ
ଏକ କନ୍ୟା ଏକ ଯୁଗେ ତୁ ଅଜପା ସାଧୁ ।
ସ୍ୱାମୀ ଭଲେ ଥାଉ ଘେନି ଧନୁ ସୁଷୁମ୍ନା
ମୋର ଶରୀରେ ମେଖଳା ହୋଇ ସେହି ସିନା
ସର୍ବଦା ଭକତନାଥ ମୁଁ ତୋର ଶରଣ
ସେବାଜାଣି ଦୟାକର ସୂର୍ଯ୍ୟ ନାରାୟଣ ।
ଆଦି ସମ୍ଭବ ଅନନ୍ତ କୋଟି ତୋ କିରଣ
କାଳେ ରଖିଲୁ ତୋ ପ୍ରିୟା ହେଲା ତା କାରଣ ।
ମୁହିଁ ଲଭିଲି ଭୋ ସ୍ୱାମୀ ମନୁଷ୍ୟର ଯୋନି
ତୁହି ସିନା ସାକ୍ଷୀ ପ୍ରାତଃ ସନ୍ଧ୍ୟାକାଳ ତିନି ।
ଚେତନା ପୁରୁଷ ତୋର ଜାତ ଅନ୍ତ ନାହିଁ
ମୋ ବିନୟ ଘେନି ଦେବ କଷ୍ଟ କର ତ୍ରାହି ।
ଯୋଗେଶ୍ୱର ତୁ ସଂସାରଜନ ପ୍ରାଣନାଥ
ଏ ଆପଦକାଳେ ବେଳେ ସାହା ହୁଅ ନାଥ
ତବ ଲୟେ ଥାଇ ନାଥ ନିତ୍ୟ ତୋତେ ସେବି
ବଦନ୍ତି ଶାରଳା ଦାସ ଶୁଦ୍ରମୁନି କବି ।



## ଦ୍ରୌପଦୀଙ୍କ ବସ୍ତ୍ରହରଣ ଓ ଧୃତରାଷ୍ଟ୍ରଙ୍କଠାରୁ ବରପ୍ରାପ୍ତ

### ଶ୍ଳୋକ

ହେ ନାଥ ନାଥ ଯଦୁନାଥ କୃପାକଟାକ୍ଷ
ଲକ୍ଷ୍ମୀପତେ ଯଦୁପତେ କମଳାୟତାକ୍ଷ ।
ଶୀଘ୍ରଂ ନିଦେହି କରୁଣା ନୃପତେଃ ସଭାୟାଂ
ଦୁଃଶାସନୋ ବିବସନାଂ କୁରୁତେ ହି ମାଂଚ ।

### ଗୀତ

ବୈବସ୍ୱତ ମନୁଙ୍କୁ ଯେ ବଦନ୍ତି ଅଗସ୍ତି
ଦ୍ରୌପଦୀ କଲେ ଅନେକ ବିରଞ୍ଚିକୁ ସ୍ତୁତି ।
ପାଞ୍ଚାଳୀର ସ୍ତୁତି ଶୁଣି କମଳ ଲୋଚନ
ଗଗନ ସ୍ଫୁଲିଙ୍ଗ ସ୍ୱାମୀ ହୋଇଲେ ପ୍ରସନ୍ନ ।
ଶୂନ୍ୟ ଶବଦ କରନ୍ତି ଦେବେ ଅଂଶୁମାଳୀ
ବୋଇଲେ ଅଭୟବର ମାଗିଲେ ପାଞ୍ଚାଳୀ ।
କରପତ୍ର ଯୋଡ଼ି ତାଙ୍କୁ କହେ ଯାଜ୍ଞସେନୀ
ଦୁଃଶାସନ ପାମର ତ ଅଇଲାକ ଘେନି ।

ମୋ କେଶ ଧରି ଆଣିଲା କୋପାନଳେ ବଳେ
ପାଞ୍ଚ ଯୋଜନ ମୋ ପାଦ ନ ପଡ଼ିଲା ତଳେ ।
ଆବର ପ୍ରପଞ୍ଚ ମୋତେ କରେ ବିବସନା
ଜାନୁ ଦେଖନ୍ତେ ଝିଙ୍ଗାସ ହୋଇବି ମୁଁ ସିନା
ପ୍ରସନ୍ନ ହୋଇବା ଦେବ ଗଗନ ବିହାରି
ଯେମନ୍ତେ ପାମର ଅଙ୍ଗ ଦେଖି ତ ନ ପାରି ।
ଏଥକୁ ହେଳା କରିବୁ ଯେବେ ଦେବ ରବି
ବିବସ୍ତ୍ର କଲେ ଜୀବନ କେବେ ନ ରଖିବି ।
ଦ୍ରୌପଦୀ କଷ୍ଟ ବିନୟ ବାଣୀ ଶୁଣି ସୂର
ରଖିବି ରଖିବି ଦେବୀ ନ ହୁଅ କାତର ।
ଛାୟା ମାୟା ଯୁବତୀଙ୍କୁ ଡାକି ଦିନମଣି
ବୋଇଲେ କୁରୁସଭାକୁ ଯିବ ଏହିକ୍ଷଣି ।
ବେନିକୋଟି ଯେ ପଟଳ ବସ୍ତ୍ର ତୂଲେ ଘେନି
ଦ୍ରୁପଦ ନନ୍ଦିନୀ ଅଙ୍ଗ ଘୋଡାଇବ ଘେନି ।
ଏସନକ ଅଜ୍ଞା ଯହୁଁ ଦେଲେ ମାରତଣ୍ଡ
ଘୋଡ଼ାନ୍ତି ଦ୍ରୌପଦୀ ଅଙ୍ଗେ ନେଇ ବସ୍ତ୍ର ଖଣ୍ଡ
ଦୁଃଶାସନ ଦୁର୍ଜ୍ଜୟ ଏ ଦୁହେଁ ବସ୍ତ୍ର କାଢ଼ି
ଛାମୁରେ ପକାନ୍ତି କୁଢ଼ ହେଉଅଛି ପଡ଼ି ।
କୋଟିଏ ବସ୍ତ୍ର ଏମନ୍ତେ ସମ୍ପୂର୍ଣ୍ଣ ହୋଇଲା
ମୂର୍ଖ ପାମରଙ୍କ ମନ ଶାନ୍ତିହିଁ ନୋହିଲା ।
କଠୋର ଦେଖି ବିରଞ୍ଚି ଦେବ ନାରାୟଣ
କୋଟିଏକ ବସ୍ତ୍ର ପୁଣି ଦେଲେ ତତକ୍ଷଣ ।
ଛାୟା ମାୟାରୂପେ ଯାଇ ସେ ବେନି ଯୁବତୀ
ପାଞ୍ଚାଳୀ ଶରୀରେ ବସ୍ତ୍ର ଗୁଡ଼ାଇ ଦିଅନ୍ତି ।
ପୁଣ ପୁଣ ପକାନ୍ତି ସେ ବସ୍ତ୍ର ପାଲଟାଇ
ବେନିକୋଟି ବସ୍ତ୍ର କାଢ଼ି ଶାନ୍ତି ସେ ନ ହୋଇ
ଅନାଦିପୁରୁଷ ଯହୁଁ ପ୍ରସନ୍ନ ହୋଇଲା
ପୁଣି କୋଟିଏକ ବସ୍ତ୍ର ଶରୀରେ ଲାଗିଲା ।
ପୁଣି ସେ କୋଟିଏ ବସ୍ତ୍ର ପକାଇଲେ କାଢ଼ି
ଚାରିକୁଢ଼ ହୋଇ ବସ୍ତ୍ର ସଭାତଳେ ପଡ଼ି ।
କଉରବେ ନ ଜାଣନ୍ତି ତ ମୂର୍ଖ ସ୍ୱଭାବ
ପୁଣି କୋଟିଏକ ବସ୍ତ୍ର ଦେଲେ ସୂର୍ଯ୍ୟଦେବ ।
ଶୂନ୍ୟରୁ ଲାଗଇ ଆସି ଦ୍ରୌପଦୀର କାୟେ
କାଢ଼ି ପକାନ୍ତି ତାହାକୁ ଗାନ୍ଧାରୀର ପୋଏ ।
ଅଶେଷ ବସ୍ତ୍ର ଦିଅନ୍ତି କମଳ ଲୋଚନ
କାହାକୁହିଁ ଦୃଶ୍ୟ ନୁହେଁ ମୂଢ଼ ମୂର୍ଖଜନ ।
ଛାୟା ମାୟା ବେନି କନ୍ୟା ଦ୍ରୌପଦୀଙ୍କୁ ଘୋଟି
ବସ୍ତ୍ର ପିନ୍ଧାନ୍ତେ ନିରତେ ପଞ୍ଚାବନ କୋଟି ।
ତଥାପି ଗୋଚର ନାହିଁ ନ ବୁଝି କୌରବେ
ଦେଖିବାନା ଜାନୁସ୍ଥଳ ଦିଶେ କେଉଁଭାବେ ।
ଲକ୍ଷ ଲକ୍ଷ ବସ୍ତ୍ର ଅଙ୍ଗୁ ପକାନ୍ତି ସେ କାଢ଼ି
ପୁଣ ପୁଣ ପାଞ୍ଚାଳୀର ଶରୀର ଉହାଡ଼ି ।
ଅସମ୍ଭବ ଦେଖି ଭୀଷ୍ମ ବୋଲନ୍ତି କୌରବେ
ବାବୁ ଅଜ୍ଞାନୀ ହେଲ କି ନ ବୁଝ ଏ ଭାବେ ।
ପକାଇଲଣି ତ ବସ୍ତ୍ର କୋଟି କୋଟି କାଢ଼ି
ପୁଣ ପୁଣ ପାଞ୍ଚାଳୀର ଶରୀର ଉହାଡ଼ି ।
ବାବୁ ଅନ୍ତଃପୁରେ ଥାନ୍ତି ତୁମ୍ଭର ଭାରିଯା
କେତେ ବସ୍ତ୍ର ପିନ୍ଧିଥାନ୍ତି କହ ତୁ ତ ରାଜା ।
ଅନାଦି ମାହେଶ୍ୱରୀକି କେତେହେଁ ଝିଙ୍ଗାସୁ
କୋପାନଳେ ଚାହିଁଲେ ତୁ ହେବୁ ଧୂଳିପାଂଶୁ ।
କି ଲକ୍ଷଣେ ଜାତ ହେଲୁ ତୁ ମାନଗୋବିନ୍ଦ
ପିତାର ପ୍ରାୟ ହୋଇଲୁ ତୁ କି ଜାତି ଅନ୍ଧ ।
ପରମ ମାହେଶ୍ୱରୀ ସେ ସ୍ତିରୀକୁଳୋତ୍ତମ
ତାର ଜାନୁ ଦେଖିବାକୁ ତୁହି କିରେ କ୍ଷମ ।
ପଚାରିଲେ ବୈବସ୍ୱତ ମନୁ ଅଗସ୍ତିଙ୍କି
ବଡ଼ ଆଚମ୍ୱିତ କଥା କହିଲ କାହିଁକି ।
ଦିନକର ନାଥଙ୍କୁ କି ସେବିଥିଲେ ପୂର୍ବେ
କେମନ୍ତେ ଛପନକୋଟି ବସ୍ତ୍ର ଦେଲେ ଏବେ ।
ଏଥିର ଚରିତ ମୋତେ କହିବା ବିଶେଷି
ମନୁ ଭ୍ରାନ୍ତି ଫିଟୁ ମୋର ଅଗସ୍ତି ମହର୍ଷି ।
କୁମ୍ଭଋଷି ନନ୍ଦନ ଯେ କହନ୍ତି ପ୍ରସ୍ତାବେ
ବିରଞ୍ଚିର ଦ୍ରୌପଦୀର ପ୍ରୀତି ଅଛି ପୂର୍ବେ ।
ସତ୍ୟଯୁଗର ଚରିତ ଶୁଣ ମହାଜ୍ଞାତା
ସୁରସିଦ୍ଧ ନାମେ ସତ୍ୟଯୁଗର ବାରତା ।
ଚାରି ଅବତାରେ ଏହି ଦ୍ରୁପଦ ଦୁହିତୀ
ଭାରା ନିବାରଣ ଅର୍ଥେ ଜାତ ଏହି ପୃଥ୍ୱୀ ।
ଆଦି ଅବତାରେ ଏହୁ ଅଟଇ କେତୁକା
ଏକବଳା ପାର୍ବତୀ ଏ ଅଟେ ଜାଣ ଏକା ।
ନାରାୟଣ ଜାତକଲେ ପଞ୍ଚଦଶ ବ୍ରହ୍ମା
ବାହୁଡ଼ି ଯୋଗନିଦ୍ରାକୁ ରଚିଲେ ମହାତ୍ମା ।
ଏହି କେତୁକା ଚଉଦ ବ୍ରହ୍ମାଙ୍କୁ ଖାଇଲା
ଶୂଦ୍ରକ ନାମରେ ବ୍ରହ୍ମା ଏକାକେ ରହିଲା ।
ଦ୍ୱିତୀୟରେ ଏ ନିଘାତ ଘରେ ଉତପତ୍ତି
ନାମ ବହିଲା ଏ ଏକବଳା ପାରବତୀ ।
ପାଟଳବର୍ଣ୍ଣ ଯେ ପଞ୍ଚାବନ କୋଟି ଶାଢ଼ୀ
କଳପେ ବସିଲା ଦେବୀ ଗୃହବାସ ଛାଡ଼ି ।
ଦକ୍ଷର ନନ୍ଦିନୀ ସଂଜ୍ଞା ଆଦିତ୍ୟ ଭାରିଯା
ତାର ଗର୍ଭୁ ଉପୁଜିଲେ ଶନି ଯମରାଜା ।
କଶ୍ୟପ ଦୁହିତା ବେନି କାଳୀ ଯେ କରାଳୀ
ଯମକୁ ପ୍ରଦାନ କରାଇଲେ ଅଂଶୁମାଳୀ ।

ସୋମବାସ ବୋଲି ଏକ ଗନ୍ଧର୍ବ ନୃପତି
ଲୋହିତା ନାମେ ଦୁହିତା ତାର ଉତପତ୍ତି ।
ଆଦିତ୍ୟ ବୋଇଲେ ସୋମବାସ ଗନ୍ଧର୍ବକୁ
ତୋ ଦୁହିତା ଗୋଟି ଦେବୁ ଆମ୍ଭର ଶନିକୁ ।
ଦିବାକର ବଚନ ସେ ନ ପାରିଲେ ଭାଙ୍ଗି
ବୋଇଲା ଦେବଇଁ ସତ୍ୟ କନ୍ୟା ତୁମ୍ଭ ଲାଗି ।
ସ୍ୱାମୀ ଶନିର ଦୃଷ୍ଟିରେ ଦଗ୍‌ଧ ହୁନ୍ତି ଦେହୀ
ତହିଁରେ କି ବୁଦ୍ଧି ଦେଇ କରିବୁ ବା ତୁହି ।
ରଙ୍ଗବସ୍ତ୍ର ଶନିଶ୍ଚର ଦୃଷ୍ଟିକୁ ଯେ ବିଷ୍ଟି
ରଙ୍ଗବସ୍ତ୍ର ଦେବୁ ମୋତେ ପଞ୍ଚାବନ କୋଟି ।
ସୂର୍ଯ୍ୟ କହିଲେକ ଏକବଳା ପାର୍ବତୀକି
ପଞ୍ଚାବନ କୋଟି ରଙ୍ଗବସ୍ତ୍ର ଅଛି ଯାକି ।
ପୁତ୍ରକୁ ବିଭା କରିବି ଦିଅ ମହାମାୟୀ
ତୋହର ବସ୍ତ୍ର ମୁଁ ତୋତେ ଦେବି ବାହୁଡ଼ାଇ ।
ଏକବଳା ବୋଇଲେ ତୁ ଏବେ ନେଇଥିବୁ
ଦ୍ୱାପର ଯୁଗେ ମାଗିଲେ ମୋତେ ବେଗେ ଦେବୁ
କୋଟିଏ ବସ୍ତ୍ର ମୋହର କଳନ୍ତର ହୋଇ
ଛପନ କୋଟି ବସ୍ତ୍ର ତୁ ଦେବୁ ହୋ ବଢ଼ାଇ ।
ମୋର କଷଣେ ନ ଦେବୁ ଯେବେ ଅଂଶୁମାଳି
ମୋହର କୋପେ ତୋହର ଦେହ ଯିବ ଜଳି ।
ଶୁଣ ଆହେ ମନୁ ପୂର୍ବେ ଏସନକ କଥା
ସତ୍ୟକରି ବସ୍ତ୍ର ନେଲେ ଆଦିତ୍ୟ ଦେବତା ।
ଲୋହିତାକୁ ଘୋଡ଼ାଇଲେ ନେଇ ବିଭାକାଳେ
ରଙ୍ଗବସ୍ତ୍ର ଦେଖି ଶାନ୍ତ ହେଲେ ବେନିଡ଼ୋଳେ
ବିଭା ଶେଷକରି ସୋମବାସ ମହୀପତି
ସେ ପାଟଳ ବସ୍ତ୍ର ଦେବସ୍ତିରୀଙ୍କି ଦିଅନ୍ତି ।
ସଂଜ୍ଞା ମାଗିଲେ ସେ କାଳେ ଦେବସ୍ତ୍ରୀମାନଙ୍କୁ
ଏ ପାଟଳ ବସ୍ତ୍ର ଦିଅ ସମସ୍ତେ ଆମ୍ଭଙ୍କୁ ।
ଶନିକୁ ଝିଙ୍ଗାସ ମୋର ପଡ଼ିବ ଯେ କାଳେ
ତାହା ଦେବି ଦୁଃଶାସନ କଟାଳର ବେଳେ ।
ସେହି ଦ୍ରୌପଦୀର କୋପେ ନ ବର୍ତ୍ତିବି ମୁହିଁ
ଜାଣି ଦେବସ୍ତିରୀମାନେ ଦେଲେ ବାହୁଡ଼ାଇ ।
ପାଟଳ ବର୍ଣ୍ଣର ପଞ୍ଚାବନ କୋଟି ବସ୍ତ୍ର
ଯତନେ ସାଇତି ଥିଲେ ଦିନକର ନାଥ ।
ପ୍ରଥମ ଅବତାର ଏ କେତୁକା ମୂରତି
ଦ୍ୱିତୀୟ ଅବତାର ଏ ହୋଇଲା ପାର୍ବତୀ ।
ଯାହା ଆଜ୍ଞା ଦେଇଥିଲେ ସେହି ଦିନନାଥ
ସେ ଶୂଦ୍‌କ୍ର ବ୍ରହ୍ମା ଦୁଃଶାସନ ରୂପେ ଜାତ ।
ନାରାୟଣ ଆଜ୍ଞା ଯାହା ଦେଇଛନ୍ତି ପୂର୍ବେ
ଦ୍ରୌପଦୀକି ଝିଙ୍ଗାସ ସେ କଲା ପୁଣି ଏବେ ।

ଦୁଃଶାର ରକ୍ତ ଭକ୍ଷିବ ଦ୍ରୁପଦ ଦୁହିତୀ
ସତ୍ୟଯୁଗେ ସଞ୍ଚିଅଛି ମହା ମହାସତୀ ।
ଦ୍ରୌପଦୀଙ୍କୁ ଦେଲେ ଆଣି ସେ ବସ୍ତ୍ର ବିରଞ୍ଚି
ପୂର୍ବରୁ ସେ ପଞ୍ଚାବନ କୋଟି ଥିଲେ ସଞ୍ଚି ।
ଶୁଣିଣ ସନ୍ତୋଷ ହେଲେ ବୈବସ୍ୱତ ମନୁ
ଅନେକ ସ୍ୱର୍ଣ୍ଣ ଦେଲେ ସେ କେବା ତାହା ଗଣୁ
ବଦନ୍ତି ଅଗସ୍ତି ଶୁଣ ମନୁ ବ୍ରହ୍ମବେତ୍ତା
ତୁହି ଯାହା ପୁଛାକଲୁ ସଭାପର୍ବ କଥା ।
ଅନେକ ଝିଙ୍ଗାସ ଯହୁଁ କଲେ ଦୁଷ୍ଟମତି
କାଳାନ୍ତକ ଜାଣି ଚାରି ପାଣ୍ଡବ ମୂରତି ।
ମହାବାତେ ଯେହ୍ନେ କମ୍ପେ ପୃଥ୍ୱୀ ନବଖଣ୍ଡ
ଭୀମସେନର ଡାକରେ କମ୍ପେ ମେରୁଦଣ୍ଡ ।
ଅର୍ଜ୍ଜୁନ ନକୁଳ ସହଦେବ ମହାକୋପେ
ଜନ ଗହଳେ ଗର୍ଜ୍ଜନ୍ତି ଯେହ୍ନେ କାଳସର୍ପେ ।
ଅଧର ପୁଷ୍ଟ ଭୀମର ମହାକୋପ ଦୃଷ୍ଟି
ବାବୁ ଶାନ୍ତ ହୁଅ ବୋଲି ବୋଲନ୍ତି ଯୁଧିଷ୍ଠି ।
ସହଦେବ ବୋଲେ ଦେବ ନୁହଇ ଏ ବେଳ
ବିପଦ କର୍ମ ଆମ୍ଭଙ୍କୁ କରୁଛି କଟାଳ ।
ଭୀମସେନ ପାଦତଳେ ସହଦେବ ନମି
ସହିଲେ ପରମପଦ କୋପ ଛାଡ଼ ସ୍ୱାମୀ ।
ସହଦେବର ବଚନେ ଭୀମ କୋପ ଶାନ୍ତି
ଅଶେଷ ବସ୍ତ୍ରକୁ ଦେଖି କୋପିଲେ ଦ୍ରୌପଦୀ
ପଞ୍ଚାବନ କୋଟି ବସ୍ତ୍ର ସରିଲା ଯୁକତେ
ନବଲକ୍ଷ ବସ୍ତ୍ର କାଢ଼ିଦେଲେ ବେନିଭ୍ରାତେ ।
ନବସହସ୍ର ବସନ ଶୂନ୍ୟେ ଯାନ୍ତି ଉଡ଼ି
ବାହୁଡ଼ି ଆସି ଦ୍ରୌପଦୀ ଶରୀରରେ ଜଡ଼ି ।
ବୋଇଲେ ସେ ଭୀଷ୍ମ ଦ୍ରୋଣ ବହୁତ ଝିଙ୍ଗାସି
ତଥାପି ଚେତନା ଦେହେ ନ ପଶଇ ଆସି ।
ମହାକଠୋର ଦେଖିଣ ସେ ଦେବୀ ପାଞ୍ଚାଳୀ
ହସ୍ତିନା ପୁରକୁ ଚାହିଁଦେଲେ ଚକ୍ଷୁ ମଳି ।
ଦ୍ରୌପଦୀ ଦେବୀ ଚାହିଁଲେ ଯହୁଁ କୋପାନଳେ
କୋପଅଗ୍ନି ଜାତହେଲା ପୁରନାରୀ ମେଳେ ।
ଅଦ୍ଭୁତେ ଜଗତୀଚାଳ ପଡ଼ିଲାକ ଭାଜି
ଦୋହରା ଘରୁ ଅନଳ ଉଠିଲା ଗରଜି ।
ଲୋହିତ ବର୍ଣ୍ଣ ପିଙ୍ଗଳ ମହାତେଜ ଜ୍ୱାଳା
ଅନ୍ତଃପୁର କାନ୍ଦି ଭୟେ ପଳାନ୍ତି ଅବଳା ।
ରାଜାର ନଗର ଦ୍ୱାରେ ଲାଗିଲାକ ଧ୍ୱନି
କାରୁଣ୍ୟ ବାଣୀ ଶୁଭଇ ପୁରେ ଗୋଳଧ୍ୱନି ।
ଭୀଷ୍ମ ବୋଇଲେ ରାଜା ନ କଲୁ ମୋର ବୋଲ
ମହତ ଜନ ଝିଙ୍ଗାସେ ନାହିଁ ତୋର ଭଲ ।

ସେ ମହାସତୀ ଯଦ୍ୟପି ଚାହାନ୍ତା ସଭାକୁ
ସମସ୍ତେ ମରନ୍ତ କାହିଁ ଦେଖନ୍ତ ଆମ୍ଭଙ୍କୁ ।
ଛାଡ଼ ଛାଡ଼ ଦୁଃଶାସନ ଦ୍ରୌପଦର ବାଳ
ତଥାପି ଆକର୍ଷି ବାଳ ଧରିଛି ଚଣ୍ଡାଳ ।
କ୍ରୋଧ ଅନଳେ ଚାହିଁଲେ ଯହୁଁ ଯାଜ୍ଞସେନୀ
ପଡ଼ିଲେ ଦୁର୍ଜ୍ଜୟ ଦୁଃଶା ବ୍ରଜପାତ ଜାଣି ।
ପାଷାଣ ପାବଚ୍ଛେ ପଡ଼ି ମୁଣ୍ଡ ଗଲା ଫାଟି
ଅଚେତନରେ ରୁଧିର ବହେ ଫାଟିଫୁଟି ।
ଆସ୍ଥାନ ଉପରୁ ଢ଼ଳିପଡ଼େ କୁରୁପତି
ଶଲ୍ୟ କର୍ଣ୍ଣ ଶକୁନି ଯେ ମୋହରୁ ନିବର୍ତ୍ତି ।
ଦୁର୍ଯ୍ୟୋଧନକୁ ବୋଇଲେ ଭୀଷ୍ମ ଦ୍ରୋଣ ଧରି
ଗତ ଆତ୍ମା ପ୍ରାୟ ଚେତା ନାହିଁ ଯେ କାହାରି ।
ନଗରେ ଭିତରେ ତାର ଯେତେ ପୁତ୍ର ବାଳୀ
ଅଦ୍ଭୁତେ ଶୁଭିଲା ରୋଳ ପଡ଼ିଲା ବୋବାଳି ।
ଅଗ୍ନି ଦେଖି ମହାଭୟେ ଭାନୁମତୀ ରାଣୀ
ଘରୁ ବାହାରି ପଳାଇ ଆସଇ ତରୁଣୀ ।
ସଙ୍ଗରେ ଅଛନ୍ତି ତାର ଅନେଶ୍ୱତ ଯାଆ
ଦାସୀ ପରିବାରୀ କେତେ କହିବି ମୁଁ ତାହା ।
ଅନଳ ଆସଇ ତାଙ୍କ ପଛରେ ଗୋଡ଼ାଇ
ଲୁଗାରେ ଲାଗନ୍ତେ ତଳେ ପକାଇଲେ ଫେଇ ।
ଉଲଗ୍ନ ହୋଇ ସଭାରେ ମିଳିଲେକ ଆସି
ନାସାରେ ହସ୍ତ ଦେଇଣ ଭୀଷ୍ମ ଦ୍ରୋଣ ହସି ।
ଲଜ୍ଜାରେ ବଦନ ପୋତି ରହିଲେ ନୃପତି
ବସ୍ତ୍ର ଖଣ୍ଡେ ଖଣ୍ଡେ ଦେଲେ ପିନ୍ଧିଲେ ଝଟତି ।
ବିଚାର କରନ୍ତି ତହିଁ ସଭାଜନ ବସି
ଉଲଗ୍ନ ଯେ କରୁଥିଲା ସତୀଙ୍କୁ ଝିଙ୍ଗାସି ।
ଆପଣା ଭାରିଯା ହେଲା ସଭାରେ ଉଲଗ୍ନ
ପରକୁ ଯେ ମନ୍ଦ ଚିନ୍ତେ ଆପେ କରେ ଭୋଗ ।
ସର୍ବଦା ହିଁ ସାହାପକ୍ଷ ଯାହାକୁ ଶ୍ରୀହରି
ଏ ଦୁଷ୍ଟମାନେ ତାହାର ପାରିବେ କି କରି ।
କଉରବ ଷଣ୍ଢ ଏହି ବୀର ଦୁଃଶାସନ
ଦୁର୍ଜ୍ଜୟକୁ ସଙ୍ଗେ ଘେନି କାଢ଼ିଲା ବସନ ।
ଦୁଇ ପ୍ରହର ହୋଇଲା ନ ପାରିଲେ କାଢ଼ି
ଦୁହେଁ ପଡ଼ିଲେଣି ଶ୍ରମପାଇ ମୁହଁମାଡ଼ି ।
କୋଟି କୋଟି ବସ୍ତ୍ର କାଢ଼ି କରିଛନ୍ତି କୁଢ଼
ଶ୍ରୀହରିର ମାୟା କାହୁଁ ଜାଣିବେ ଏ ମୂଢ଼ ।
ସଞ୍ଜୟ ବୋଇଲେ ଆହୋ ଶୁଣ ଧୃତରାଷ୍ଟ୍ର
କିମ୍ପା ନ ଡିଆରୁ ତୋର ପୁତ୍ର ଏଡ଼େ ଦୁଷ୍ଟ ।
କୂଟ କପଟ ଶକୁନି ମନ୍ତ୍ରୀ ମହାବୁଦ୍ଧି
ନିଶ୍ଚେ ବୁଡ଼ାଇଲୁ ରାଜା ଏଡ଼େକ ସମୃଦ୍ଧି ।

ଧାତିକାରେ ସେ ସଭାକୁ ଆସି ଭାନୁମତୀ
ଦ୍ରୌପଦୀ ଚରଣେ କରି ବିନୟେ ଭକତି ।
ଭୋ ମାତା ଅନାଦି ମାହେଶ୍ୱରୀ ତୁ ଅପର୍ଣ୍ଣା
ମୂର୍ଖ କୌରବ ଏମାନେ ଦୁଷ୍ଟଜନ ସିନା ।
ଅନାଦି ଶକତି ଜାତ ଅନଳ ବିଦାରି
ଅନଳ ସ୍ଥାନ ଅଟଇ ନିତ୍ୟ ଗୋ ତୋହରି ।
ଧାର୍ମିକ ବିବେକ ଶାନ୍ତ କୁଳଶୀଳ ପଣେ
ବଢ଼ିଲା ମାତ ଦ୍ରୁପଦ ରାଜାର ଭବନେ ।
ଲକ୍ଷେ ନୃପତି ଯାହାର ପାଦତଳେ ବନ୍ଦେ
ଏ ଛାର ପାମର ତୋତେ ପକାନ୍ତି ପ୍ରମାଦେ ।
ତିନି ଭୁବନେ ଯାହାର ଅସଂଖ୍ୟ ମହିମା
ଆମ୍ଭର ଯେ ଅପରାଧ କରିବା ନା କ୍ଷମା ।
ପ୍ରଣିପାତ ଭାନୁମତୀ ପାଞ୍ଚାଳୀର ପାଦେ
ପ୍ରବେଶିଲେ ଧୃତରାଷ୍ଟ୍ର ଆସି ସଭାମଧ୍ୟେ ।
ସଙ୍ଗେ ଅଛନ୍ତି ବିଦୁର ସଞ୍ଜୟ ଗାନ୍ଧାରୀ
କହନ୍ତି ଯେ ଦ୍ରୌପଦୀକୁ ଚାହିଁ ଦଣ୍ଡଧାରୀ ।
ବିନୟ ଭାବରେ ଧୃତରାଷ୍ଟ୍ର କୃତାଞ୍ଜଳି
ମୋର କୁଳ ମଣ୍ଡଣି ଗୋ ଦ୍ରୁପଦର ବାଳୀ ।
ପ୍ରସନ୍ନ ହୁଅ ସାଧବୀ ଆଦି ସିଦ୍ଧଦେବୀ
ଶୂନ୍ୟ ଭୁବନକୁ ଭେଦି ଯେ ତେଜ ପ୍ରଭବି ।
ମୋ ପୁତ୍ରଙ୍କ ଅପରାଧ କ୍ଷମାକର ମାଏ
ମନ୍ଦପଣ ଉପୁଜିଲେ ଏ ମୋହର ପୋଏ ।
ନ ଜାଣି ପାମର କଲେ ଏଡ଼େ ମନ୍ଦକୃତ୍ୟ
ଦୁଷ୍ଟଙ୍କର ଦୋଷ ମାଗୋ ନ ଧରେ ମହତ ।
ଯାବତ ଚନ୍ଦ୍ରମା ଯହିଁ ଦିବାକର ଏକା
ଅଭୟା ବରଦାୟିନୀ ସର୍ବଜନ ଶିଖା ।
ବିନୟ ହୋଇ ବୋଲନ୍ତି ରାଜା ଧୃତରାଷ୍ଟ୍ର
ଅନେକହିଁ ଅପରାଧ କଲେ ମନ୍ଦ ଦୁଷ୍ଟ ।
ମୋର ଦୁଃଖ ଦେଖି କର ସେହି ଦୋଷ କ୍ଷମା
ତୋର କୋପ କଲେ କି ବଂଶର ଗାରିମା ।
କୁଳକୁ କଳଙ୍କ କଲେ ରୁହାଇବ କଥା
ତୁହି ସିନା କଷଣରୁ ଉଦ୍ଧରିବୁ ମାତା ।
ମହା ବଇଷ୍ଣବୀ ତୁ ଗୋ ପରମା ସାଧବୀ
ଧୃତରାଷ୍ଟ୍ରର ବଚନେ କୋପ ଶାନ୍ତି ଦେବୀ ।
ଚାହିଁଲେ ସେ ପୁନରପି ଅମୃତ ନୟନେ
ଲିଭିଲା ବହ୍ନି ଦେଖିଲେ ସର୍ବ ଜନମାନେ ।
ଦ୍ରୌପଦୀକୁ ଘେନିଗଲା ରାଣୀ ଭାନୁମତୀ
ଆପଣା ପୁରେ ବିଜୟ ଯାଇ ସେ ତଡ଼ତି ।
ଅନ୍ତଃପୁର ମଧ୍ୟେ ଥିଲେ ଯେତେ ବଧୂବାଳୀ
ଦ୍ରୌପଦୀଙ୍କୁ ବନ୍ଦାଇଲେ ଘେନି ରତ୍ନଥାଳି ।

ଯୁଧିଷ୍ଠି ହସ୍ତ ଧଇଲେ ରାଜା ଧୃତରାଷ୍ଟ୍ର
ଅଶ୍ରୁତ ଅଦୃଷ୍ଟ କଥା କଲେ ମହାଦୁଷ୍ଟ ।
ପରମ ପଣ୍ଡିତ ବାବୁ ସହିବୁ ନା ତାହା
ଉଠ ବୋଲି କୋଳ କଲେ ଗାନ୍ଧାରୀର ନାହା ।
ବାବୁ ଯଦ୍ୟପି ଲଙ୍ଘନ୍ତି ଦୁଷ୍ଟେ ପଣ୍ଡିତଙ୍କୁ
ପଣ୍ଡିତ ଜନେ କଟାଳ କରିବେ କି ତାଙ୍କୁ ।
ଅଜାତ ଶତ୍ରୁ ଅଟଇ ଯେବଣ ଯୁଧିଷ୍ଠି
ପାସୋରିଲେ କଷ୍ଟ ରାଜା ବାକ୍ୟେ ଗଲେ ଉଠି
ଭୀମକୁ କୋଳ କରିଣ ଧଇଲେ ସଞ୍ଜୟ
ଛାଡ଼ି ଅଭିମାନ ଘେନ ରାଜାର ବିନୟ ।
ଅନେକ ଦୁର୍ଗତି ତୋତେ ଚିନ୍ତିଲେଣି ଭୀମ
ବିଷଲଡୁ ଖାଇ ପାର କଲୁ ପୁଣ୍ୟଧର୍ମ ।
ଜତୁଗୃହ ଭିଆଇଲେ ବାବୁ ଯେବେ କୂଟେ
ପୁରୋଚନ ପଣ୍ଡାକୁ ସେ ପେଷିଲେ କପଟେ ।
ତୁମ୍ଭେ ତହୁଁ ପାରହୋଇ ଗଲ ଧର୍ମବଳେ
ପୁରୋଚନ ନାଶଗଲା କର୍ମର ଅବଳେ ।
ବାବୁ ଚାରିଯୁଗେ ଜାଣ ଧର୍ମସିନା ବଳ
ପ୍ରତ୍ୟକ୍ଷେ ଦେଖିଲେ ଧର୍ମ ବଳହିଁ ସକଳ ।
ଉଠ ଉଠ ଭୀମସେନ ଉଠିଲେ କିରୀଟି
ବିଦୁର ସଞ୍ଜୟ ବୋଲେ ଶାନ୍ତି ହୋଇ ଉଠି ।
ଆପଣା ମନ୍ଦିରେ ବିଜେ ହେଲେ ଧୃତରାଷ୍ଟ୍ର
ପାଣ୍ଡବେ ଘେନି ସାନନ୍ଦ ମନ ଅତିହୃଷ୍ଟ ।
ବହୁତର ପୁରୁଷାର୍ଥ କରି ଅନ୍ଧ ରାୟ
ଅଳଙ୍କାର ଦେଇ କହେ ବହୁତ ବିନୟ ।
ସ୍ନାନ ଭୋଜନ କରାଇ ଆପଣାର ପୁରେ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ଅତି ଭକତିରେ ।
ଦିବ୍ୟ ପଲ୍ୟଙ୍କ ଉପରେ କୃଷ୍ଣାଙ୍କୁ ବସାଇ
ଗାନ୍ଧାରୀ ଭାନୁମତୀ ଏ ଆଗେ ଉଭା ହୋଇ ।
ବୋଇଲେ ଦ୍ରୌପଦୀ ମାଗୋ ଯାଅ ନିଜପୁରେ
ମୋ ଦୁଷ୍ଟ ପୁତ୍ରଙ୍କ ଦୋଷ ନ ଧର ମନରେ ।
ଧୃତରାଷ୍ଟ୍ର ବୋଇଲା ମା କର ଅନୁଗ୍ରହ
ମୋର ପୋଏ ହୋଇଛନ୍ତି ଅଜ୍ଞାନରେ ମୋହ ।
ଦ୍ରୌପଦୀ ବୋଇଲେ ଆମ୍ଭ ବିପଦର କାଳ
ତୁମ୍ଭଙ୍କୁ କିସ ବୋଲିବୁ କର୍ମର ଅବଳ ।
ଧୃତରାଷ୍ଟ୍ର ବୋଇଲେ ତୁ ଅଟୁ ମାହେଶ୍ୱରୀ
ସର୍ବଥା ମହାପଣ୍ଡିତା ପଞ୍ଚାଳ କୁମାରୀ ।
ଅନୁଗ୍ରହ କଲୁ ଯେବେ ମୋତେ ବର ମାଗ
ପୂର୍ବ କଥାକୁ ପାସୋରି ଛାଡ଼ ମନୁ ରାଗ ।
ଏ ମୋହର କଥା ସତ୍ୟ ଅଟେ ତିନିବାର
ତୁ ଯାହା ମାଗିବୁ ତାହା ଦେବି ନିରାଧାର ।
ଦ୍ରୌପଦୀ ବୋଇଲେ ଯେବେ ବର ଦେବ ମୋତେ
ସ୍ୱାମୀ ଯେ ହାରିଲେ ଧନ ଭଣ୍ଡାର ସହିତେ ।
ତାହା ମୁଁ ମାଗଇ ଭାଇ ସହିତ ସମସ୍ତ
ଧୃତାରାଷ୍ଟ୍ର ବୋଇଲେ ଗୋ ଦେଲି ମୋର ସତ
ଆବର ବରେକ ମାଗ ଦେବି ଗୋ ପାଞ୍ଚାଳି
ଯେ ତୋହର ଇଚ୍ଛା ତାହା ମନ ମଧ୍ୟେ ଭାଳି ।
ଦେବୀ ବୋଇଲେ ଦିଅ ଗୋ ରଥ ଗଜ ସୈନ୍ୟ
ଦେଲି ସମସ୍ତ ଆବର ମାଗ ଯାହା ମନ ।
ଦ୍ରୌପଦୀ ବୋଇଲେ ଦିଅ ମୋର ପାଞ୍ଚପତି
ମୋତେ ପୁଣ ହାରିଥିଲେ ଖେଳରେ ନୃପତି ।
ସନ୍ତୋଷରେ ବର ଦେଲେ ଅମ୍ବିକାର ସୁତ
ଆବର ଦେବଇଁ ବର ଯେ ତୋର ସମ୍ମତ ।
ଦ୍ରୌପଦୀ ବୋଇଲେ ସ୍ତିରୀ ପାଏ ତିନିବର
ପୁରୁଷଙ୍କୁ ଦଶବର ଅଛଇ ବେଭାର ।
ତିନିରୁ ଅଧିକ ବର କରେ ଯେହୁ ଆଶା
ଅବଶ୍ୟ ଛେଦନ ହୁଏ ସେ ସ୍ତିରୀର ନାସା ।
ଦଶବରହୁଁ ଅଧିକ ମାଗେ ଯେ ପୁରୁଷ
ଅବଶ୍ୟ ସେ ପୁରୁଷର କନ୍ଧଯାଏ ନାଶ ।
ଧୃତରାଷ୍ଟ୍ର ବୋଇଲେ ତୁ ସର୍ବଜ୍ଞ ପଣ୍ଡିତା
ସ୍ୱାମୀଙ୍କୁ ଘେନି ତୁମ୍ଭର ବିଜେ କର ମାତା ।
ଦୁର୍ଯ୍ୟୋଧନ ଠାରେ ଯେତେ ଥିଲା ଅଳଙ୍କାର
ତାହାକୁ ଘେନି ଅଇଲେ ସଞ୍ଜୟ ବିଦୁର ।
ବର ପାଇ ଦ୍ରୌପଦୀ ଯେ ପାଣ୍ଡବଙ୍କୁ ଘେନି
ବାରୁଣାବନ୍ତେ ବିଜୟ ଯାଇ ଯାଜ୍ଞସେନୀ
ସମଦଣ୍ଡ ସଙ୍ଗେ ଘେନି ଧୃତରାଷ୍ଟ୍ର ତୁଲେ
ଭୀଷ୍ମ ଦ୍ରୋଣ ସହିତରେ ପାଛୋଟିଣ ଗଲେ ।
ବାହୁଡ଼ିଲେ ଆଶ୍ୱାସନା ପାଇ ଧର୍ମସୁତ
ପୁଣିହିଁ ସେ ଏକଆତ୍ମା ହେଲେ ବେନିଭ୍ରାତ ।
ଦୁହିଁଙ୍କର ହେଲା ପୁଣି ଅଭେଦ ପୀରତି
ଧୃତରାଷ୍ଟ୍ରଙ୍କର ସେବା କରୁଥାନ୍ତି ନିତି ।
ଜୟ ତୁ ଜୟ ତୁ ମାଗୋ ତୁ ଦେବୀ ହିଙ୍ଗୁଳା
କ୍ଷଣକେ ସଂସାର ଜାଳିଦେଉ ହୋଇ ଭୋଳା
ଜଗତ ଜନନୀ ଦେବୀ ତୋହର ଶ୍ରୀପଦେ
ଶୂଦ୍ର ମୁନି ଶ୍ରୀଶାରଳା ଦାସ ନିତ୍ୟେ ବନ୍ଦେ ।

## ଶିବଙ୍କଠାରୁ ନାଗାର୍ଜ୍ଜୁନର ବରପ୍ରାପ୍ତି

ମନୁ ପୁଚ୍ଛାକଲେ ତୁମ୍ଭେ ଶୁଣ ଅଗସ୍ତିହେ
କହିବା ହେଉ ପଡ଼ିଛି କଥାରେ ସନ୍ଦେହେ ।

ପାତାଳେ ହେଲା ନାଗୁଣୀ ଅର୍ଜ୍ଜୁନର ପ୍ରୀତି
ବେନି ମାସ ହୋଇଥିଲା ସେହି ଗର୍ଭବତୀ ।
ସମ୍ପୂର୍ଣ୍ଣେ ପୁଣି କି ଜାତ ହୋଇଲା ମୁନି ହେ
ସଂକ୍ଷେପି କହ ପଡ଼ିଛି ମୁଁ ଏହି ସନ୍ଦେହେ ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ସାବଧାନେ
ପୁତ୍ର ଏକ ଜାତ ହେଲା ଦଶମାସ ପୂର୍ଣ୍ଣେ ।
ନାଗୁଣୀକି କହିଛନ୍ତି ଏମନ୍ତ ବିବସ୍ତ
ଦ୍ୱାରେ ରହିଛି ଅର୍ଜ୍ଜୁନ ନାମେ ମହାବୃକ୍ଷ ।
ଯେତେବେଳେ ନାଗୁଣୀର ହୋଏ ରସ କାଳ
ବେଶ ହୋଇ ସେ ବୃକ୍ଷକୁ କରେ ଯାଇ କୋଳ
ସୁସଞ୍ଚ କୋମଳ ଏହି ଅର୍ଜ୍ଜୁନର ଅଙ୍ଗ
ତାହାକୁ ସୁମରି ଯାଇ କରେ ତାର ସଙ୍ଗ ।
ଫାଲ୍‌ଗୁନ ଶୁକ୍ଳ ଦଶମୀ ହେଲା ଗର୍ଭବତୀ
ପଉଷ ମାସେ ତାହାର ପୂର୍ଣ୍ଣ ମାସ ରୀତି ।
ଧନୁ କୃଷ୍ଣ ଏକାଦଶୀ ଅର୍କବାର ଜାଣ
ସ୍ୱାତୀ ନକ୍ଷତ୍ରର ଭୋଗ ସେ ଦିନ ସମ୍ପୂର୍ଣ୍ଣ ।
ବେଳ ପାଞ୍ଚଦଣ୍ଡଠାରେ କୁମାର ଉତ୍ପତ୍ତି
ମନୁଷ୍ୟ ବଦନ ସେହି ନାଗର ମୂରତି ।
ଅକଳଙ୍କ ଚନ୍ଦ୍ର ପ୍ରାୟ କୁମାର ବିକାଶି
ମକର ଲଗନେ ବୁଧ କୁଜ ଶୁକ୍ର ମିଶି ।
ଗୁରୁ କେନ୍ଦ୍ରେ କୋଣେ ଶନି ଏକାଦଶେ ରାହୁ
ପ୍ରତାପ କୁମାର ବର ଆଜାନୁ ତା ବାହୁ ।
ତୈତିଳ ନାମେ କରଣ ଇନ୍ଦ୍ର ନାମେ ଯୋଗ
କୁମ୍ଭ ସଙ୍କରାନ୍ତି ଯେ ପାଞ୍ଚଳ ଦିନ ଭୋଗ ।
ଏସନକ ଯୋଗଲଗ୍ନେ କୁମାର ଉତ୍ପନ୍ନ
ସନ୍ଧ୍ୟାବାଳୀ ନାମ ତାର ଦେଲା ନାଗାର୍ଜ୍ଜୁନ ।
ଅନେକ ଯତ୍ନେ ପୁତ୍ରକୁ ପାଳେ ସନ୍ଧ୍ୟାବାଳୀ
ନାଗ କୁମାରେ ଖଟନ୍ତି ଜାଣି ମହାବାଳୀ ।
କୁମାରକୁ ଦେଖି ନାଗରାଜା ଯେ ଆନନ୍ଦ
ଅତ୍ୟନ୍ତ ଯତ୍ନେ ପାଳଇ ବଢ଼ଇ ସେ ସୁତ ।
ଦିନୁ ଦିନୁ ବଢ଼େ ଯେହ୍ନେ ଚନ୍ଦ୍ରମାର କଳା
ପଞ୍ଚଦଶ ବରଷର ହେଲା ସେହି ବଳା ।
ତକ୍ଷକ ନନ୍ଦନ ନାମ ବାତାପି ସେ ବାଳି
ନାଗାର୍ଜ୍ଜୁନ ସଙ୍ଗେ ସେହି ଲଗାଇଲା କଳି ।
ନାଗାର୍ଜ୍ଜୁନ ମାଇଲାକ ବାତାପି ନାଗକୁ
ଅନେକ ଝିଙ୍ଗାସ କରି କହିଲା ତାହାକୁ ।
ବୋଇଲେ ତୁମ୍ଭେ ପାମର ଛାର ଜାତି ସର୍ପ
ପ୍ରଭାତୁ ଉଠି ଦେଖିଲେ ହୁଏ ମହାପାପ ।
ଯାତ୍ରାକାଳେ ତୁମ୍ଭର ଯେ ମୁଖ ଦେଖେ ଆଗ
କାର୍ଯ୍ୟ ନାଶଯାଇ ଅନୁକୂଳର ବିଯୋଗ ।
ତୁମ୍ଭର ମଳ ପଡ଼ିଲେ ମନୁଷ୍ୟ ଉପରେ
ପିତୃଲୋକ ପାଣି ତାର ନ ପାନ୍ତି ତା କରେ ।
ଛୁଇଁଲେ ପାପ ଖାଇଲେ ଲୋକେ ଯିବେ ମରି
ବିନତା ସୁତ ତୁମ୍ଭର ଏକାହିଁ ବଇରି ।
ଜାଣ ଗରୁଡ଼ ତୁମ୍ଭଙ୍କୁ ମାରି ଖାଏ ଖେଦି
ତା ଭୟେ ତୁମ୍ଭେ ପାତାଳପୁରେ ଅଛ ଭେଦି ।
ମୋତେ ଏକା ଦେଖି ତୁମ୍ଭ ଗର୍ଜ୍ଜନ ହେଉଛି
ନୋହିଲେ ଗରୁଡ଼ କେହ୍ନେ ଯାଏ ପୁଣି ଭକ୍ଷି ।
ନାଗାର୍ଜ୍ଜୁନ ଏସନକ ବଚନ ଝିଙ୍ଗାସି
ତକ୍ଷକ ନନ୍ଦନ ତାକୁ ବୋଇଲା ନିରାଶି ।
କ୍ରୋଧଭରେ କହେ ନାଗଅର୍ଜ୍ଜୁନକୁ ଚାହିଁ
ଏତେ ଦର୍ପ ବହୁ ତୋର କୁଳମୂଳ ନାହିଁ ।
ବାପର ପାମର ତୋର ଗୋଳକୁଣ୍ଡା ପୁଣି
କେଉଁ ପାପ ଥିଲା ଆମ୍ଭ ବାପର ଭଉଣୀ ।
ଆମ୍ଭ ଘରେ ଥାଇ ପୁଣି ଆମ୍ଭଙ୍କୁ ଝିଙ୍ଗାସୁ
କାହାର ବଡ଼ାଇ ପରି କଥାମାନ ଭାଷୁ ।
ଯୋଗୀ ତପସ୍ୱୀ ସନ୍ନ୍ୟାସୀ ଆବର ଭିକାରୀ
ମାତା ଯୋଗେ ଥିଲେ ଆମ୍ଭ ସଙ୍ଗେ ନୁହେଁ ସରି
ଦେଶ ଗ୍ରାମ ବାଡ଼ି ବୃତ୍ତି ତୁମ୍ଭର ତ ନାହିଁ
ଆମ୍ଭଙ୍କୁ ମାରୁ ଅକୂଳ ଅମୂଳ ତୁ ହୋଇ ।
କେ ତୋହର ପିତାମାତା ନାମକୁ ଧରନ୍ତି
ସମସ୍ତେ ବୋଲନ୍ତି ତୋତେ ବାସୁକୀର ନାତି ।
ମାତୁଳ ଘରେ ଯେ ବଢ଼େ ହୁଅଇ କୁଜନ
ମନୁଷ୍ୟପଣେ ତାହାକୁ ନ କରି ଗଣନ ।
ନାଗାର୍ଜ୍ଜୁନକୁ ଝିଙ୍ଗାସି ବୋଇଲା ବାତାପି
କାନ୍ଦି ସେ କୁମରମଣି ଚଳଇ ପ୍ରତାପୀ ।
ମାତାର ଅଗ୍ରେ କୁମର ପଡ଼େ ଯାଇ ମୂର୍ଚ୍ଛା
କୋଳେ ଧରି ସନ୍ଧ୍ୟାବାଳୀ କରେ ତାକୁ ପୁଚ୍ଛା ।
ଆରେରେ ବାପ ତୁ ମୋର ଅନାଥର ବନ୍ଧୁ
ଦୁଃଖୀର ସଙ୍ଗାତ କିମ୍ପା ଅନିମିତ୍ତେ କାନ୍ଦୁ ।
ଅନାଥ ବାନ୍ଧବ ମୋର ଅନ୍ଧର ଲଉଡ଼ି
କାହିଁକି କାନ୍ଦୁଛୁ ବାବୁ ଧରାତଳେ ପଡ଼ି ।
ଶୋକେ କହଇ କୁମର ମାତା ମୁଖ ଚାହିଁ
ତୁ ମୋତେ ଜନ୍ମଦେଲୁ ଗୋ ପିତାମୋର କାହିଁ
ମୁହିଁ ଏପୁରେ ଜନମ ହୋଇଲଇଁ ମାତା
କେବଣ ଦେଶେ ଅଛନ୍ତି ମୋହର ଗୋ ପିତା ।
ସନ୍ଧ୍ୟାବାଳୀ ବୋଇଲା ସେ ବହୁଦୂର ସୀମା
ଜଗତେ ଉଦିତ ପଞ୍ଚଜୟନ୍ତୀ ହସ୍ତିନା ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ଏ ପାଞ୍ଚ
ଯେ ଯାହାର ଠାକୁର ସେ ଅଛି ଜାଣି ମଞ୍ଚ ।

ବାବୁ ସପତ ବ୍ରହ୍ମାଣ୍ଡ ବହିଲା ଯେ ବଳେ
ଷୋଳଦିନ ପରିଯନ୍ତେ ଧରି ଧନୁହୁଳେ ।
ବାବୁ ଏ ପୃଥ୍ୱୀର ଭରା ନିବାରଣ ଅର୍ଥେ
ଅନନ୍ତ ଶରଣ ପାଞ୍ଚ ଦାନକଲା ମୋତେ ।
ବାବୁ ଏହାଙ୍କ ଛାରକୁ କିସ ତୋର ଭୟ
ମାରିପକା ଅଷ୍ଟକୂଳ ନାଗଙ୍କର ପୁଅ ।
କୁମର ବୋଲେ ନ ଜାଣେ ମୁହିଁ ଶସ୍ତ୍ର ବିଦ୍ୟା
ପୁଣି ପାଠ ନାହିଁ ମୋର ନୁହଁଇ ମୁଁ ଯୋଦ୍ଧା ।
ମୁହିଁ ଯାଉଅଛି ମାଗୋ ମଧ ଭୁବନକୁ
ଲୋଡ଼ି ଠାବ କରିବଇଁ ମୋହର ପିତାକୁ ।
ପାଠ ଶାସ୍ତ୍ର ଶସ୍ତ୍ରବିଦ୍ୟା ମୁହିଁ ଗୋ ଶିଖିବି
ତେବେ ମୁଁ ଏଠାକୁ ପୁଣି ବାହୁଡ଼ି ଆସିବି ।
ନାଗ ମାରିବାକୁ ହେବି ଯେବେ ସାମରଥ
ତେତେବେଳେ ଏ ପୁରକୁ ବାହୁଡ଼ିବି ମାତ ।
ଅମୃତ ଲଡୁ ନାଗୁଣୀ ଦେଲା ତାର ହସ୍ତେ
ଧର୍ମ ଦେବତା ପ୍ରସନ୍ନ ହେଉ ବାବୁ ତୋତେ ।
ନାଗୁଣୀ ଯେ ପ୍ରବୋଧଇ ନାଗଅର୍ଜୁନକୁ
ପାତାଳୁ ବାହାରି ଗଲା ମଧ ଭୁବନକୁ ।
ପ୍ରବେଶ କୁମାର ଯାଇ ହେଲା ମଧ ସ୍ୱର୍ଗେ
ଚଳଇ କୁମରମଣି କାଶୀନଦୀ ଲାଗେ ।
ଅପାର ଗଭୀର ବୋଲି ନ ପଶଇ ଜଳେ
ଉତ୍ତର ମୂରତି ହୋଇ ଯାଏ କୂଳେ କୂଳେ ।
ନାବ ଲଗାଇ ଚଳଇ କୂଳେ ବାଳଶିଷ
ହର ଉଦ୍ୟାନ ବନରେ ହୋଇଲା ପ୍ରବେଶ ।
ଅନନ୍ତଗିରି ଯେ ଗନ୍ଧମାର୍ଦ୍ଧନ ପର୍ବତେ
କଉଶିକ ପରବତେ ନୀଳ ପରକତେ ।
ବିନ୍ଧ୍ୟମାଳି ସହିତରେ ଗିରି ଆଠଶତ
ଅପାର ଡ଼ିଙ୍ଗର ତହିଁ ନଦୀହିଁ ବହୁତ ।
ଗନ୍ଧନଦୀ ନାମେ ବହେ ତାର ଗନ୍ଧନୀର
ନଦୀକି ଦେଖି ସାନନ୍ଦ ବାଳୁତ କୁମର ।
ସେ ନଦୀର ଗନ୍ଧବାସେ ଶରୀର ଆମୋଦି
ସେହି ନଦୀ ବହୁଅଛି କପିଳାସ ଭେଦି ।
ପାର୍ବତୀ ଯେ ସ୍ନାନ କରୁଛନ୍ତି କପିଳାସେ
ଯାଙ୍କ ଦେହ ଗନ୍ଧ ବହି ନଦୀ ଜଳବାସେ ।
ରୁଦ୍ରହିଁ ସ୍ନାନ କରନ୍ତି ସେ ଜଳ ଉଦ୍ୟାନେ
ତହୁଁ ନଦୀ ଏକ ବହିଆସେ ବିଦ୍ୟମାନେ ।
ରୁଦ୍ର ନଦୀ ନାମ ବୋଲି ଅଟଇ ତାହାର
ଦେଖି ସାନନ୍ଦ ହୋଇଲା ବାଳୁତ କୁମର ।
ଦେଖଇ ରୁଦ୍ର ଭୁବନ ଗିରି କପିଳାସ
ବାରସ୍ୱତୀ ପୁର ଜିଣି ସେ ପୁର ପ୍ରକାଶ ।
ଝଟକଇ ରତ୍ନ ଜ୍ୟୋତି ଜଗତି ଉପରେ
ଉଡ଼ନ୍ତି ପତାକାମାନେ ଗଗନ ଶିଖରେ ।
ପୂର୍ବଦିଗେ ଝଲକଇ ବାଳାର୍କ ଆଦିତ୍ୟ
ଅହର୍ନିଶି ଦିବସହିଁ ବହଇ ବସନ୍ତ ।
ନଉଶତ ଯୋଜନହିଁ ତାର ଆୟତନ
ତହିଁ ଖଟିଥାନ୍ତି ନବକୋଟି ଶିବଗଣ ।
ବହଇ ରୁଦ୍ରାଙ୍ଗୀ ବଇତରଣୀ ଯେ ନଦୀ
ଧବଳାଙ୍ଗୀ ସରସ୍ୱତୀ ଯେ ଗଙ୍ଗା ପ୍ରସିଦ୍ଧି ।
ଦେଖଇ ନନ୍ଦିକେଶ୍ୱର ପୁଣି ମହାବଳ
ବିଜେ କର୍ଣ୍ଣକଟାରକୁ ଘେନି ଦ୍ୱାରପାଳ ।
ଯୁଗକରେ ଦିବସେକ ହୁଅଇ ତାହାକୁ
କିଞ୍ଚିତ ପ୍ରାୟ ମଣନ୍ତି ଦେବତାମାନଙ୍କୁ ।
ସେ ଦ୍ୱାର ଦେଖିଲା ଯାଇ ନାଗଅରଜୁନ
ଦକ୍ଷିଣ ଦ୍ୱାରେ ଖଟନ୍ତି ସର୍ବ ଦେବଗଣ ।
ଅଶୀ ସହସ୍ର ଯୋଜନ ତାର ଆୟତନ
ଦ୍ୱାରପାଳ ବିନାୟକ ଦେବ ଗଜାନନ ।
ଚଉଷଠି ଲକ୍ଷ ଜାଣ ତହିଁ ଶିବଗଣ
ଅନେକ ରତ୍ନ ଭୂଷଣ କୁବେର ସମାନ ।
ସପ୍ତସିନ୍ଧୁ ଫଣିରତ୍ନ ଆବର ଜଳଧି
ଖଟଇ ବରୁଣ ଯେହ୍ନେ ଶଙ୍ଖ ପଦ୍ମନିଧି ।
ବ୍ରହ୍ମା ରୁଦ୍ର ବୃହସ୍ପତି କୁବେର ସହିତେ
ଯମ ପବନ ଯେ ଗ୍ରହଗଣ ଛନ୍ତି ଯେତେ ।
ଅନନ୍ତହିଁ ନାରାୟଣ ଦଶଦିଗପାଳ
ସମସ୍ତେ ଖଟନ୍ତି ରୁଦ୍ରେ ବନ ବୃକ୍ଷ ଦଳ ।
ରୁଦ୍ରଙ୍କୁ ଧ୍ୟାନେ ଭଜନ୍ତି ରଜନୀ ଦିବସ
ଅନେକ ଭକତି କରି ପାଉଛନ୍ତି ଯଶ ।
ଉତ୍ତରଦ୍ୱାରେ ଦେଖଇ ଯାଇ ବାଳଶିଷ୍ୟ
ଚଣ୍ଡ ପ୍ରଚଣ୍ଡ ଆବୋରିଛନ୍ତି ଦ୍ୱାରଦେଶ ।
ତା ଆୟତନ ସତୁରି ସହସ୍ର ଯୋଜନ
ଖଚିତ ମାଣିକ ହୀରା ନବକୋଟି ରତ୍ନ ।
ତିରିଶ ଲକ୍ଷ ବସନ୍ତି ତହିଁ ଭୃଙ୍ଗୀଗଣେ
ମେଘମାନେ ଖଟିଥାନ୍ତି ଯେ ଯାହାର ସ୍ଥାନେ ।
ଆବର୍ତ୍ତକ ମେଘ ପୁଣି ମେଘ ସମ୍ବର୍ତ୍ତକ
ଦ୍ରୋଣ ପୁଷ୍କର ନିଘାତ ଅନନ୍ତ କାମ୍ୟକ ।
କାଳାନଳ ମେଘ ପୁଣି ମେଘ ଘଟ ଘଟ
ସଙ୍କୁଚିତ ଧାରା ମେଘ ମେଘ ଧାତୁପୁଷ୍ଟ ।
କାମଳ କାମତରଳ ମେଘ ଯେ ଚଞ୍ଚଳ
ଅରୁଣ ମେଘ ବରୁଣ ମେଘ ଯୁଗପାଳ ।
ପ୍ରଳୟ ଅନନ୍ତ ମେଘ ତପତ ଅନ୍ତକ
ସାଗର ମନ୍ଥନ ମେଘ ଖଣ୍ଡକ ଊର୍ଦ୍ଧ୍ୱକ ।

ଯମଘଣ୍ଟ ମେଘ ଜଳ ଗମ୍ଭୀର ଆବର
ବରୁଣ ମେଘ ତାପିତ ମେଘହିଁ ମୁଦିର ।
ଜଳତରଙ୍ଗ ଆବର ମେଘ ନାଗାନ୍ତକ
ଜଳ ଜୀମୂତକୁ ଘେନି ପାଞ୍ଚହିଁ ପଦକ ।
ଖଟନ୍ତି ଉତ୍ତରଦ୍ୱାର କପିଳାସ ସ୍ୱର୍ଗ
ପାଞ୍ଚପଦ୍ମ ସୈନ୍ୟ ସଙ୍ଗେ ଘେନି ଚାରିମେଘ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ବିଷ୍ଣୁ ରୁଦ୍ରର ମେଖଳ
ଏ ପାଞ୍ଚମେଖଳା ନଦୀ ଅଟଇ ଧବଳ ।
ଏହି ପାଞ୍ଚନଦୀ ତଳେ ଉତ୍ତର ଭାଗରେ
ସେ ଦ୍ୱାର ମହିମା ଅନ୍ତ କେହୁ କରିପାରେ ।
ମନୁ ଏକ ଦିବସରେ ହୁଅଇ ଅନ୍ଧାର
ଦେବ ନାଶକ ଅଛଇ ଆବୋରି ସେ ଦ୍ୱାର ।
ଦେବତା ଅସ୍ଥି ପଡ଼ିଛି କୂଢ଼ କୂଢ଼ ହୋଇ
ନାଗାର୍ଜ୍ଜୁନ ଯାଇ ସେହି ବୃକ୍ଷକୁ ଦେଖଇ ।
ପାର୍ବତୀ ସହିତେ ବିଜେ କରିଛନ୍ତି ହର
କଳ୍ପେ ପରିଯନ୍ତେ ହର ନୁହଇ ବାହାର ।
ଦର୍ଶନ ନ ପାଇ ନାଶଯାନ୍ତି ଦିଗପାଳେ
ଏହାଙ୍କ ଅସ୍ଥି ପଡ଼ିଛି ସେହି ବୃକ୍ଷମୂଳେ ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସେ ନାଗଅର୍ଜ୍ଜୁନ
ପଶି ନ ପାରିଲା ବୀର ବଡ଼ହିଁ ଗହନ ।
ଚଳଇ କୁମରମଣି ତା ପଶ୍ଚିମ ଦ୍ୱାରେ
ସେହି ଚାଳିଶ ସହସ୍ର ଯୋଜନ ବିସ୍ତାରେ ।
ଜୟନ୍ତ ଯେ ଅଜୟନ୍ତ ଦ୍ୱାରପାଳ ବେନି
ମେରୁ ପର୍ବତ ଉପାଡ଼ି ପାରନ୍ତି ସେ ପୁଣି ।
ଖଟନ୍ତି ଅର୍ବୁଦ ଚଣ୍ଡପୁତ୍ର ଶିବଗଣେ
ଦ୍ୱାର ନିରୋଧନ୍ତି ସେହି ବଳବନ୍ତ ପଣେ ।
ଗଙ୍ଗା ଯେ ଯମୁନା ସରସ୍ୱତୀ ଯେ ତ୍ରିବେଣୀ
ପଞ୍ଚନଦୀ ବହଇ ଯେ ମନ୍ଦାକିନୀ ଘେନି ।
ପଶ୍ଚିମ ମୁଖେ ଚଳନ୍ତି ଏ ମେରୁ ମେଖଳା
ଦକ୍ଷିଣ ଭାଗେ ସଙ୍ଗମ ସିନ୍ଧୁ ସଙ୍ଗେ ମେଳା ।
ବରୁଣର ନୀରବତୀ ବ୍ରହ୍ମାର ସାବିତ୍ରୀ
ଅଗ୍ନିର ଭାରିଯା ସ୍ୱାହା ସ୍ୱଧା ଯେ ଅଟନ୍ତି ।
କୁବେର ଭାରିଯା ବୃହସ୍ପତିଙ୍କର ତାରା
ଶୁକ୍ଳା ନଇର୍ଋତ ଭାର୍ଯ୍ୟା ଭୃଗୁ ଭାର୍ଯ୍ୟା ହାରା ।
ଆଦିତ୍ୟ ସଂଜ୍ଞା ଆବର ପବନ ଅଞ୍ଜନା
ବଶିଷ୍ଠ ଅରୁନ୍ଧତୀ ଯେ ବିଶ୍ୱଦେବା ପୂର୍ଣ୍ଣା ।
କଶ୍ୟପ ବିନତା କଦ୍ରୁ ଏ ବେନି ଭଉଣୀ
ସନକ ମଳୟାବସୁ ଚନ୍ଦ୍ର ଯେ ରୋହିଣୀ ।
ଗୌତମ ଅହଲ୍ୟା ଯୋଗେଶ୍ୱର ମଇତ୍ରେୟୀ
ଯମ କରାଳୀ ଆବର ମେଘ ବିଦ୍ୟୁତହିଁ ।

ସଞ୍ଚିତ ଯେ ମହେଶ୍ୱର ଅନାଦି ଅପର୍ଣ୍ଣା
ଖଟିଥାନ୍ତି ପାର୍ବତୀଙ୍କି ଲୟକରି ସିନା ।
ଦେଖି ବିଚାରଇ ମନ ମଧ୍ୟେ ନାଗାର୍ଜ୍ଜୁନ
ଅନବରତ ରାତ୍ରିହିଁ ଉଦୟହିଁ ଜହ୍ନ ।
ଲକ୍ଷେ ବରଷ ହେଲାଣି ଦ୍ୱାରେ ରହିଛନ୍ତି
ମାଜଣା ନ ସରଇ ସେ ଦର୍ଶନ ନ ପାନ୍ତି ।
ସେ ଭୁବନ ଦେଖି ନାଗଅର୍ଜ୍ଜୁନ ପ୍ରଶଂସି
ଗଣନାୟକଙ୍କ ସଙ୍ଗେ ପ୍ରୀତିକଲା ବସି ।
ପଚାରେ କୁମରମଣି ବୁଦ୍ଧି କହ ମୋତେ
ଏ ପ୍ରଭୁଙ୍କ ଦରଶନ ପାଇବି କେମନ୍ତେ ।
ସେ ବୋଇଲେ ଏକଧ୍ୟାନେ କଲେ ରୁଦ୍ରପୂଜା
ପ୍ରସନ୍ନେ ଅଭୟ ବର ଦେବେ ଦେବରାଜା ।
ସମସ୍ତ ସେବକ ଆମ୍ଭେ ବ୍ରହ୍ମମନ୍ତ୍ର ସାଧି
କଳପଜୀବୀ ହୋଇଛୁ ଲୟକୁ ସମ୍ପାଦି ।
ଗନ୍ଧବହ ନାମେ ବହେ ଯେଉଁ ନଦୀ ଗୋଟି
ଶତଯୋଜନ ପର୍ଯ୍ୟନ୍ତେ ସ୍ୱର୍ଣ୍ଣ ପଦ୍ମ ଫୁଟି ।
ପାର୍ବତୀଙ୍କ ସ୍ନାନ ପାଳି ପଡ଼ଇ ଯେ ଦିନ
ସୁବର୍ଣ୍ଣ ପଦ୍ମ ଫୁଟଇ ନାହିଁ ରାତ୍ର ଦିନ ।
ବରୁଣ ଦେବତା ତାହା ସଂହାରେ ସାଗରେ
ତେଣୁ ବିଳସଇ ବାରାନିଧି ରତ୍ନାକରେ ।
ପଶ୍ଚିମ ଦୁଆରେ ହର ଉଦ୍ୟାନ ଯେ ବନ
ଅହର୍ନିଶି ବହେ ତହିଁ ଦକ୍ଷିଣା ପବନ ।
ଯେତେ ବୃକ୍ଷ ଅଛଇ ସେ ସବୁ ଗନ୍ଧମୟ
ଅଗୁରୁ ଆମୋଦ ଦିଏ ବହି ଗନ୍ଧବହ ।
ଦକ୍ଷିଣ ଦ୍ୱାରେ କାବେରୀ ଶିପ୍ରା କୃଷ୍ଣଭଦ୍ରା
ଗଉରୀ ଯେ ପଦ୍ମବେଣୀ ଶିବା ଲକ୍ଷ୍ମୀମୁଦ୍ରା ।
ଦକ୍ଷିଣଦ୍ୱାରେ ବସନ୍ତି ଏହି ଷଡ଼ନଦୀ
ପଞ୍ଚକୋଟି ତୀର୍ଥ ଘେନି ମହୋଦଧି ଭେଦି ।
କୋଟିତୀର୍ଥ ଘେନି କ୍ଷେତ୍ରାଧିପତି ପୁଷ୍କର
ଏମାନେ ଖଟନ୍ତି ଦେବେ ତେଜି ସ୍ୱର୍ଗପୁର ।
ରତ୍ନ କୁଢ଼ କୁଢ଼ ହୋଇଅଛି ଚଉକତି
ଗୁରୁ ବୋଲି ନ ବହନ୍ତି ତା ଛାଇ କରନ୍ତି ।
ବରଷକେ ତିନିଦିନ ହୁଏ ସ୍ୱର୍ଣ୍ଣବୃଷ୍ଟି
ଲକ୍ଷେ ଯୋଜନ ଆୟତ୍ତ କେହି ନ ସାଉଁଟି ।
ଗଙ୍ଗା ଗୟା ଗୋଦାବରୀ ରୁଦ୍ରା ସରସ୍ୱତୀ
ନର୍ମଦା ପାପନାଶିନୀ ନଦୀ ପୁଣ୍ୟବତୀ ।
ରୁଦ୍ରବେଣୀ କୃଷ୍ଣବେଣୀ କାଶୀ କଉଶିକୀ
ରାମବେଣୀ ଗଉତମୀ ଗୋମତୀ ପୁଲକୀ ।
ହରିଭଦ୍ରା ତୁଙ୍ଗଭଦ୍ରା ଚିତ୍ର ଉତପଳା
ଅନନ୍ତା ଶବରୀ ଚନ୍ଦ୍ରଭାଗା ବ୍ରହ୍ମକଳା ।

ସାଗର ମଙ୍ଗଳା ଲକ୍ଷ୍ମୀବେଣୀ କ୍ଷେତ୍ରବେଣୀ
ମାରକଣ୍ଡ କଣ୍ଡାୟୁ ଯେ ଅଭୟା ଭଦ୍ରାଣୀ ।
ବାଞ୍ଛିକା କୁଞ୍ଚିକା ବୃଦ୍ଧମାତା ଯେ ବିମଳା
ମାହେଶ୍ୱରୀ ମାଧବୀ ଯେ ବୀଳେନ୍ଦ୍ରୀ କମଳା ।
ଏ ନଦୀଙ୍କ ମୁଖେ କୋଟି ନଦୀଙ୍କ ସଙ୍ଗମେ
ପ୍ରଦକ୍ଷିଣ କରୁଛନ୍ତି ପୁରେ ନିତ୍ୟକର୍ମେ ।
ରୁଦ୍ର ପାଦୋଦକ ବହି ସର୍ବେ ଧବଳାଙ୍ଗୀ
ସଂସାର ପାପହାରିଣୀ ପୁଣି ସଉଭାଗୀ ।
କହନ୍ତେ ଅସଂଖ୍ୟ କପିଳାସ ସ୍ୱର୍ଗକଥା
ଦେଖି ନ ପାରନ୍ତି ଯାର ମହିମା ଦେବତା ।
ଅସଂଖ୍ୟ ସାଗରେ କେହି ପାରିବନି ଲକ୍ଷି
କିଞ୍ଚିତ କରି ତୋଷିବି ଶୂର ସଙ୍ଗେ ଲେଖି ।
ତହିଁ ଦ୍ୱାରପାଳ ଏହି କୈଳାସ ଭୁବନେ
ନନ୍ଦିକେଶ୍ୱରର ଶାପେ ରହିଲି ଅଜ୍ଞାନେ ।
ଯେସନେକ ଆଜ୍ଞା ମୋତେ ଦେଲେକ ପାର୍ବତୀ
ଅନେକ ସଂସାରୁ ଲୋକେ ପାରି ହୋଇଯାନ୍ତି
କୁଟୁମ୍ବ ଦେଖାନ୍ତେ ତେଜି ଭାବ ମୋହ ହିଂସା
ସଦାନନ୍ଦ ଚରଣରେ କେବଳ ଭରସା ।
ମୋ ଦୋଷ ହରଣ ନାଥ ରୁଦ୍ର କାଶୀବାସୀ
ଏ ମୋହ ସଂସାରେ ପାରିକର ମୋତେ ଆସି
କୃପାଜଳ ନନ୍ଦିନୀ ଗୋ ଦେବୀ ସରସ୍ୱତୀ
ପିତାମହ ଶାପେ ଦେବୀ ଧରୁ ଚଣ୍ଡୀମୂର୍ତ୍ତି ।
ତବ ଲୟେ ମୋ ପ୍ରକୃତି ଭାବେ ପରହୃଦେ
ମାଗୋ ମୁକତି ଗୋ ଦିଅ ତୋହର ପ୍ରସାଦେ ।
ଯେ ଶାସ୍ତ୍ର ବାହାର ହେଲା ସୁଷୁମ୍ନା ଦେହୁ
ଶୂଦ୍ରମୂନି ପଦ ମୋର ଶାରଳାଙ୍କୁ ତହୁଁ ।
ଏସନ ଦୁର୍ଲ୍ଲଭ କପିଳାସ ସ୍ୱର୍ଗ କଥା
ନାଗାର୍ଜ୍ଜୁନ ଦେଖି ଶୁଣି ସମସ୍ତ ବ୍ୟବସ୍ଥା ।
କାଶୀନଦୀ ତୀରେ ହର ଉଦ୍ୟାନ ଯେ ବନ
ନାଗାର୍ଜ୍ଜୁନ ବସି ତହିଁ କଲା ତପ ସ୍ଥାନ ।
ସଲିଳ ତୁଳସୀପତ୍ର ବରଷକେ ଭକ୍ଷି
ରୁଦ୍ର ବ୍ରହ୍ମମନ୍ତ୍ରେ ଜପେ ଅଜପାକୁ ବାଛି ।
ବାଲୁକାରେ ଲିଙ୍ଗ ସ୍ଥାପି ତାଡ଼ି ବେନିଡ଼ୋଳା
ସେ ଲିଙ୍ଗ ଉପରେ ଦେଇ ଖଟେ କରି ଲୀଳା ।
ଚଞ୍ଚପୁଟ ଚାଞ୍ଚପୁଟ ତାଣ୍ଡବର ନାଟେ
ଧିମିକି ଧିମିକି ବାଦ୍ୟ ବଜାଇ ସେ ଖଟେ ।
କୁମାରର କଅଁଳଇ ପୁଣି ବେନି ଆଖି
ଦିବ୍ୟ ଚକ୍ଷୁ ଘେନି ସର୍ବ ଭୁବନ ଉପେକ୍ଷି ।
ପ୍ରତିଦିନ ସେ କୁମର ତାଡ଼ଇ ଲୋଚନ
କାନ୍ଦି କହେ ବିଶ୍ୱନାଥ ହୋଇବା ପ୍ରସନ୍ନ ।
ପାଞ୍ଚ ବରଷ ସେ ତପକଲା ଏହିମତେ
ଲୋଟିଲା ଶରୀର ସେହି ରହି ଅଶକତେ ।
ପୁଣିହିଁ ପାଡ଼ିଲା ତହିଁ ତଦ୍ୟାର ଆହୁତି
ବେନି ସ୍ତମ୍ଭହିଁ ଉସର୍ଗ ପାତାଳେ ସାଇତି ।
ତହିଁ ଉପରେ ଧାରଣ କାଠ ଖଣ୍ଡେ ଲଦି
ଊର୍ଦ୍ଧ୍ୱ ରେତା ହୋଇ ଦୁଇପାଦ ଊର୍ଦ୍ଧ୍ୱେ ଛନ୍ଦି
ଆକାଶକୁ ଦୁଇପାଦ ତଳକୁ ତା ଶିର
ନାସିକାବାଟେ ବାହାର ହୋଇଲା ରୁଧିର ।
ପ୍ରଚଣ୍ଡ ହୋଇ ବାହାର ପବନ ଧରିତ୍ରୀ
ଶରୀର କ୍ଷେପି ଅନାଦି ଅନଳର ଜ୍ୟୋତି ।
ଯେତେକ ମାଂସ ତାହାର ପଡ଼ଇ ମିଳାଇ
ପୁଣି କଅଁଳଇ ସେହି ରୁଦ୍ର ଆଜ୍ଞାପାଇ ।
ଊର୍ଦ୍ଧ୍ୱରେତା ହେଲା ପାଞ୍ଚବରଷ ପର୍ଯ୍ୟନ୍ତେ
କଠୋର ତପେ କମ୍ପିଲେ କାଶୀ ବିଶ୍ୱନାଥେ ।
ହୃଦୟ ହାର ଲୋହିତ ବର୍ଣ୍ଣ ପିଙ୍ଗ ନାଗ
ବାହୁର କଙ୍କଣ କାଳୀ ବଳୟ ଉରଗ ।
କଟିମେଖଳା ଅନନ୍ତ ନାଗ ହୋଇଅଛି
ଶିରରେ ବାସୁକି ନାଗ ଫଣା ଅଛି ସଞ୍ଚି ।
ସିନ୍ଧୁ ଘୋଷ ଜାଣି ଫୁଫୁକାର ନାଦେ ଗର୍ଜି
ନବଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ବାଜି ।
ଲୋହିତ ଧବଳ ନୀଳ ନେତ୍ର ଜଳଦଗ୍ନି
ଜଟାଭେଦି ମଉଳିରେ ଖେଳେ ଧବଳାଙ୍ଗୀ ।
ଦକ୍ଷର ନନ୍ଦିନୀ ବାମ ଅଙ୍ଗେ ଯାଇ ଭ୍ରମେ
ନାଭି ମଣ୍ଡଳକୁ ଚାହିଁଥାଏ ଅତି ପ୍ରେମେ ।
ଶବଦ ଘନ ଗର୍ଜ୍ଜଇ ହୁଁକାର ଯାହାର
ନିରାକାର ପୁରୁଷ ଯେ ମହା ସିଦ୍ଧେଶ୍ୱର ।
ମହାଯୋଗେଶ୍ୱର ସ୍ୱାମୀ ବୃଷଭ ବାହନେ
ନିଜରୂପ ଦୃଶ୍ୟହେଲେ ସେ ପ୍ରଭୁ ଈଶାନେ
ଦହିଲେ ଯଜ୍ଞପୁରୁଷ ରୂପେ କାମଦେବ
ଅଣାକାର ସାକାର ଯେ ଦେବ ସଦାଶିବ ।
ଧବଳ ଅଙ୍ଗପୁରୁଷ ଅବ୍ୟୟ ଅଚିନ୍ତ୍ୟ
ଅନନ୍ତ ସଂସାରେ ନାଥ ବିବସ୍ୱାନ କାନ୍ତ ।
ମଧ ଭୁବନ ଚରଣ ସ୍ୱର୍ଗଙ୍ଗା ମଉଳି
ନେତ୍ର ଦିନକର ନାଥ ଅଭୟ କପାଳି ।
ପର ଦୁଃଖରେ କାତର ତ୍ରିଶୂଳ ପିନାକୀ
ଅଶେଷ ମହିମା ଯାର କେ ପାରଇ ଲେଖି ।
ଶ୍ରୀବିଶ୍ୱନାଥ ସ୍ୱରୂପ ଦିବ୍ୟନେତ୍ର ଦେଖି
ଶତ ସହସ୍ର ପ୍ରଣାମ ସକଳ ଉପେକ୍ଷି ।
ଲୟ କରି ସୁପ୍ରସନ୍ନ ନାଥ ପଦ୍ମପାଦେ
ଶାରଳା ଦାସ ବୋଇଲେ ସେ ଶିବ ପ୍ରସାଦେ ।
ଧ୍ୟାନେ ଜାଣିଲା ପ୍ରସନ୍ନ ହେଲେ ଦେବଶୂଳୀ
ଯୋଗେଶ୍ୱର ପୁରୁଷ ଯେ ଅଭୟ କପାଳୀ ।
କାଟିଲେ ରଜ୍ଜୁ କୁମର ପଡ଼ିଲା ଅଜ୍ଞାନେ
ଅମୃତ ସିଞ୍ଚିଲେ ଉଠି ବସିଲା ତତ୍‌କ୍ଷଣେ ।

ନାଗାର୍ଜ୍ଜୁନ ଦେଖିଲାକ ଏସନକ ଯୋଗୀ
ସମାଧି ଆସନ ତପ ଜପ ଲୟ ତ୍ୟାଗୀ ।
ବୋଇଲା ମହାତ୍ମା ଦୁଃଖେ ଅର୍ଜିତ ମୋ ତପ
କିପାଇଁ ଭାଙ୍ଗିଲୁ ତୋର ଏ କେଉଁ ସ୍ୱରୂପ ।
ଈଶ୍ୱର ବୋଇଲେ ତୁହି କାହାକୁ ସୁମରୁ
ସତ ବୋଲେ ବିଶ୍ୱନାଥ ମୋର ଇଷ୍ଟ ଗୁରୁ ।
ଈଶ୍ୱର ବୋଇଲେ ତୋର ତପ ହେଲା ସ୍ୱାର୍ଥ
ମୁହିଁ ଧୂର୍ଜ୍ଜଟି ଅଭୟ କାଶୀ ବିଶ୍ୱନାଥ ।
ନାଗାର୍ଜ୍ଜୁନ ବୋଲେ ନୁହେଁ ଏମନ୍ତ ତୋ ରୂପ
ପ୍ରସନ୍ନ ହୋଇଲ ଯେବେ ଦେଖାଅ ସ୍ୱରୂପ ।
ଶୁଣିଣ ନାଗାର୍ଜ୍ଜୁନର ସେ ଦୃଢ଼ ବଚନ
ଧଇଲେକ ନିଜ ରୂପ ଦେବ ତ୍ରିଲୋଚନ ।
ଶୁକ୍ଳବର୍ଣ୍ଣ ସୁସଞ୍ଚ ପାଞ୍ଚଗୋଟି ମୁଖ
ଲଲାଟରେ ବିରାଜଇ ଶଶୀକଳା ରେଖ ।
କଟିରେ ମହାମେଖଳା ପିଙ୍ଗବର୍ଣ୍ଣ ଜଟ
ସୋମ ସୂର୍ଯ୍ୟ ଅଗ୍ନି ତିନି ନୟନ ପ୍ରକଟ ।
ବଦନକେ ତ୍ରିଲୋଚନ ପଞ୍ଚଦଶ ନେତ୍ର
ବେନି ବେନି ଶ୍ରବଣହିଁ କୁଣ୍ଡଳେ ମଣ୍ଡିତ ।
ବହନ୍ତି ଗଙ୍ଗା ଯମୁନା ସରସ୍ୱତୀ ତଟେ
ମହା କାଳକୂଟ ଶୋଭପାଏ କଣ୍ଠତଟେ ।
ପିନାକ ସାରଙ୍ଗ ଅଜଗର ଦଶଭୁଜେ
ଶୂଳ ପାଶୁପତ କୁନ୍ତ ଶିବଧନୁ ରାଜେ ।
ବୈଷ୍ଣବ ଧନୁ ଖଟ୍ୱାଙ୍ଗ ଡମ୍ବରୁ ଶୋଭନ
ସର୍ବାଙ୍ଗ ସୁଢ଼ଳ ନାଥ ବିଭୂତି ଲେପନ ।
ନିଜ ରୂପ ଦେଖାଇଲେ ସେ ଦେବ ଈଶାନ
କୀଟ ପ୍ରାୟ ଦୃଶ୍ୟ ହେଲେ ସ୍ଥାବର ଜଙ୍ଗମ ।
ନାଗାର୍ଜ୍ଜୁନ ଦେଖି ପାଦେ ସହସ୍ର ପ୍ରଣମି
ଦୁଷ୍କୃତ ଦୋଷ ମୋହର କ୍ଷମାକର ସ୍ୱାମୀ ।
ବର ମାଗ ବୋଇଲେ ସେ ପ୍ରଭୁ ବିଶ୍ୱନାଥ
ଯାହା ଇଚ୍ଛା କରିବୁ ହୋ ହେବ ପରାପତ ।
ନାଗାର୍ଜ୍ଜୁନ ବୋଲେ ଶୁଣ ସ୍ୱାମୀ ବିଶ୍ୱେଶ୍ୱର
ବର ମାଗିବା ପାଇଁ ମୋ ଇଚ୍ଛା ଯେ ପ୍ରକାର ।
ପୁରୁଷର ଦଶ ବର ସ୍ତିରୀ ତିନି ବର
ଏଣୁ ଦଶ ବର ତୋତେ ମାଗିବି ଈଶ୍ୱର ।
ମାଗୁଅଛି ଯାହା ଏବେ ମୋର ମନ ଇଚ୍ଛା
ଉଦେ ଅସ୍ତ ପରିଯନ୍ତେ ସିଦ୍ଧ ହେବ ବାଞ୍ଛା ।
ଈଶ୍ୱର ବୋଇଲେ ତୁହି ମାଗୁ କି ନା ବର
ନାଗାର୍ଜ୍ଜୁନ ବୋଇଲେ ମୁଁ ହୋଇବି ଅମର ।
ଜିଣିବଇଁ ଅଷ୍ଟକୁଳ ନାଗ ତ୍ରିପୁରାରୀ
ନାଗବଳ ମୋତେ ରଣେ ନୋହିବେଟି ସରି ।
ପୃଥିବୀକି ଧରିବାକୁ ମୁଁ ହେବି ସମର୍ଥ
ଅନନ୍ତ ପ୍ରାକର୍ମ ମୋତେ ଦିଅ ବିଶ୍ୱନାଥ ।
ଶରୀର ମୋହର ବଜ୍ର ହୋଇବ କପାଳି
ଦେବ ଅସ୍ତ୍ରମାନ ଅଙ୍ଗେ ପଡ଼ି ହେବ ଧୂଳି ।
ଯମ କାଳଦଣ୍ଡେ ଦେବ ନୋହିବି ମୁଁ ବଧ
ବ୍ରହ୍ମା ବିଷ୍ଣୁ ରୁଦ୍ର ହାରିଯିବେ କଲେ ଯୁଦ୍ଧ ।
ଚନ୍ଦ୍ର ସୂର୍ଯ୍ୟ ଆଦିଙ୍କି ମୁଁ ଜିଣିବଇଁ ଧରି
ଅଗାଧ ସମୁଦ୍ରେ ବଧ ନ ହେବି ଯେପରି ।
ଦିବ୍ୟଚକ୍ଷୁ ଦେଇ ମୋତେ କର ମହାଯୋଗୀ
ତବ ଦ୍ୱାରପାଳ ହୋଇ ହେବି କଷ୍ଟଭୋଗୀ ।
ସଦାଶିବ ବୋଇଲେ ଯେ ହେଉ ସର୍ବସିଦ୍ଧି
ତ୍ରୈଲୋକ୍ୟ ମଧରେ ହୁଅ ତୁହିଁ ଏକଯୋଧି ।
ବିଭୂତି ଲେପିଲେ ଦେବ ନାଗାର୍ଜ୍ଜୁନ ଅଙ୍ଗେ
ଶରୀର ବଜ୍ର ହୋଇଲା ରୁଦ୍ର ଆଜ୍ଞା ସଙ୍ଗେ ।
ପୁନରପି ବୋଇଲା ସେ ଅର୍ଜ୍ଜୁନର ସୂନୁ
ଦେବାହେଉ ସ୍ୱାମୀ ମୋତେ ତୋ ପିନାକ ଧନୁ
ଅକ୍ଷୟ ତୂଣୀର ବେନି ପାଶୁପତ ଶର
ତ୍ରିଶୂଳ ଖଟ୍ୱାଙ୍ଗ ଶକ୍ତି ଅମୋଘ ମୁଦ୍‌ଗର ।
ଭୋଳେ ସୁପ୍ରସନ୍ନେ ଦେଲେ ସ୍ୱାମୀ ବିଶ୍ୱନାଥ
ମାଗିଲା କୁମର ନାଗପାଶହିଁ ସହିତ ।
ଅନଳେ ପଶିଲେ ମୋର ନ ପୋଡ଼ିବ କାୟ
ନ ବୁଡ଼ିବି ଜଳେ ମୋତେ ହୋଇବ ସହାୟ ।
ଏ ସମସ୍ତ ବିଦ୍ୟାରେ ଯେ ମୋର ଥାଇ ଆଶ
ପୃଥିବୀ ସଲିଳ ତେଜ ବାୟୁ ଯେ ଆକାଶ ।
ଏହି ପଞ୍ଚ ମହାଭୂତ ହେବ ମୋତେ ଦୃଶ୍ୟ
ତୁ ମୋହର ପିଅର ସେ ଅଟୁ ବିଶ୍ୱବାସ ।
ପାର୍ବତୀ ଦେବୀ ମୋହର ଅଟନ୍ତି ଜନନୀ
ଜ୍ୟେଷ୍ଠଭ୍ରାତା କାର୍ତ୍ତିକେୟ ଗଜାନନ ବେନି ।
ନାଗାର୍ଜ୍ଜୁନକୁ କୋଳରେ ଧରି ଯୋଗେଶ୍ୱର
ପାର୍ବତୀଙ୍କ କୋଳେ ଦେଇ ବୋଇଲେ ତତ୍ପର
ଏ ମୋହର ପୁତ୍ର କ୍ଷୀର ଦିଅ ଗୋ ଗିରିଜା
ପ୍ରସନ୍ନେ ଅଭୟବର ଦେଲେ ଦେବ ରାଜା ।
ଈଶ୍ୱର ବଚନେ କୋଳେ ନାଗାର୍ଜ୍ଜୁନେ ଧରି
ମୁଖେ କ୍ଷୀରଦେଲେ ତାକୁ ଦେବୀ ଶାକମ୍ବରୀ ।
ତେଣୁ ସେହି ନାଗାର୍ଜ୍ଜୁନ ହୋଇଲେ ଚିରଜୀବୀ
ଶରୀର ତାର ଆରୋଗ୍ୟ କଲେ ଶିବା ଦେବୀ
ପାର୍ବତୀ ଦେଲେ ତାହାକୁ ଅମୋଘ ଶକତି
ପରଶୁ ଅମୃତ ଅକ୍ଷ ଦେଲେ ଗଣପତି ।
ସ୍କନ୍ଦ ଦେଲେ ସୂର୍ଯ୍ୟାବର୍ତ୍ତ ଚକ୍ର ଗଦା ବେନି
କେଶରୀ ଯେ କୁନ୍ତ ଦେଲା ଅତିସ୍ନେହ ଘେନି ।
ଅଗ୍ନି ନାରାଚ ଆବର ମହାକାଳ ବାଣ
ବାରାହୀ ଯେ ମାହେଶ୍ୱରୀ ଦେଲେ ତତକ୍ଷଣ ।
କୁଣ୍ଡଳ ଚକ୍ରକୁ ଦେଲେ ପୁଣି ସେ ପାର୍ବତୀ
ପର୍ବତାସ୍ତ୍ର ପୁଣି ଆଣିଦେଲେ ଗଣପତି ।

କାଳପାଶ ଜଳପାଶ ନାଗପାଶ ତିନି
ଦେଇ ପୂଜିଲେ ଜୟନ୍ତ ଅଜୟନ୍ତ ବେନି ।
ଏମନ୍ତେ ସମସ୍ତ ଅସ୍ତ୍ର ଦେଲେ ଶିବଗଣ
କୋଟି କଳ୍ପ ଚିରଜୀବୀ ଯେ ହୋଇଲା ନନ୍ଦନ ।
ଈଶ୍ୱର ବୋଇଲେ ତୁହି ହେଲୁ ଆମ୍ଭ ବନ୍ଧା
ଆମ୍ଭ ଉଦ୍ୟାନକୁ ତୁହି କରଯାଇ ରକ୍ଷା ।
ପାର୍ବତୀ ବୋଇଲେ ବାବୁ ମୋର ଗଣ୍ଡାଗୋଟି
ଯତନ କରି ତାହାକୁ ଥିବୁ ତୁ ଆକଟି ।
ଅନେକ ରତ୍ନ ମୁଁ ଲଗିଅଛି ତାର କାୟେ
ରଖିବାକୁ ନ ପଡ଼ିବ ଯେହ୍ନେ ଅପଚୟେ ।
ବର ମାଗନ୍ତେ ଏମନ୍ତେ ରବି ହେଲା ଅସ୍ତ
କପିଳାସ ସ୍ୱର୍ଗେ ବିଜେକଲେ ଶୂଳହସ୍ତ ।
ବର ପାଇଣ ସାନନ୍ଦ ସେ ନାଗାର୍ଜ୍ଜୁନ
ରହିଲା କୁମର ହର ଉଦ୍ୟାନ ଯେ ବନ ।
ବରପାଇ ନାଗାର୍ଜ୍ଜୁନ ପାତାଳକୁ ଗଲା
ଅମରାଧିନାଥ ପ୍ରାୟ କୁମର ଦିଶିଲା ।
ପୁତ୍ରକୁ ଦେଖି ସାନନ୍ଦ ହୋଇଲା ନାଗୁଣୀ
ସମସ୍ତ ବୃତ୍ତାନ୍ତ କହି ସେ କୁମରମଣି ।
ମାତା ସନ୍ନିଧିରେ ବୀର ସୁପ୍ରସନ୍ନେ କହି
ଯାଉଛି ଗୋ ମାତ କ୍ଷଣେ ନ ପାରିବି ରହି ।
ଦାନବେ ଉପଦ୍ରବ ନ କରନ୍ତି ନା ଅବା
କପିଳାସ ରକ୍ଷକ ମୁଁ ଅଟେ ରାତ୍ର ଦିବା ।
ଆଉ ମୋତେ ଚିନ୍ତା ତୁ ଗୋ ନ କରିବୁ ମାଏ
ଈଶ୍ୱର ପ୍ରସାଦେ ମୁହିଁ ତ୍ରୈଲୋକ୍ୟ ବିଜୟେ ।
ପାର୍ବତୀଙ୍କ ଗଣ୍ଡା ମାଗୋ ରଖେ ମୁଁ ଯତନେ
ଭୂଷଣ ହୋଇଛି ସେହି ଅନେକ ରତନେ
ପାତାଳୁ କୁମର କହି ବାହାର ହୋଇଲା
ହର ଉଦ୍ୟାନ ବନରେ ଯାଇ ପ୍ରବେଶିଲା
ସୁଖେ ବିହରଇ ସେହି ଭୁବନ କୈଳାସେ
ଶାରଳା ଦାସକୁ ହର ରଖ ନେଇ ପାଶେ ।



## ଅର୍ଜ୍ଜୁନ କର୍ତ୍ତୃକ ଗଣ୍ଡାବଧ

ଅଗସ୍ତି କହନ୍ତି ମନୁ ଶୁଣ ଦଣ୍ଡଧର
ମୀନ କୃଷ୍ଣଦଶମୀ ଯେ ତିଥି ଅର୍କବାର ।
ଶ୍ରବଣା ନକ୍ଷତ୍ର ଭୋଗ କରେ ଦିନଯାକ
ମକର ରାଶିକି ଭୋଗ କରଇ ଶଶାଙ୍କ ।
ବାଳବ ନାମେ କରଣ ବଇଧୃତି ଯୋଗ
ନାରଦ ବିଜେ ବାରୁଣାବନ୍ତ ନାମେ ସ୍ୱର୍ଗ ।
ଦଣ୍ଡ କମଣ୍ଡଳୁ ଆଶା କକ୍ଷା କଉପୀନ
ଦ୍ୱାଦଶଚିତା ସର୍ବାଙ୍ଗେ ବିଭୂତି ଲେପନ ।
ଦୂରୁ ଦେଖି ଆସନରୁ ଉଠି ଧର୍ମବାଳ
ବ୍ରହ୍ମାଙ୍କ ନନ୍ଦନ ପାଦେ ଢ଼ାଳି ଶୁଦ୍ଧଜଳ ।
ପାଦ ପଖାଳି ନୂତନ ବସ୍ତ୍ରେ ପୋଛି ଦେଇ
ଅଷ୍ଟାଙ୍ଗ ଶରୀରେ ଗନ୍ଧ ଚତୁଃସମ ନାଇ ।
ଚନ୍ଦନ ଅକ୍ଷତ ପୁଷ୍ପ ତାମ୍ବୁଳ ସହିତେ
ଷଡ଼ ଅର୍ଘ୍ୟ ଦେଇ ପୂଜାକଲେ ବିଧିମତେ ।
ବସ୍ତ୍ର କୁଣ୍ଡଳ ରତନମାଳା ଗଳେ ଦେଇ
ଧୂପ ଦୀପ ନଇବେଦ୍ୟ ଦେଇଣ ବିନୟୀ ।
କନକର ପୀଢ଼ା ଦେଲେ ମୁନିଙ୍କୁ ଆସନ
ପୂଜା ପାଇଣ ବସିଲେ ବିଧାତା ନନ୍ଦନ ।
କରପତ୍ର ଯୋଡ଼ି ଉଭା ଯୁଧିଷ୍ଠିର ସ୍ୱାମୀ
ବ୍ରହ୍ମମୁନି ପାଦେ ଶତସହସ୍ର ପ୍ରଣମି ।
ବଡ଼ ସୁଫଳ ଦେଖିଲି ଆଜ ମହାତମା
ବ୍ରହ୍ମବେତ୍ତା ପ୍ରତ୍ୟକ୍ଷରେ ତୁ ଦ୍ୱିତୀୟ ବ୍ରହ୍ମା ।
ଏହା କହି ପଚାରିଲେ କୁଶଳ ବାରତା
କେବଣ ପୁରେ ଦେଖିଲେ କେବଣହିଁ କଥା ।
ନାରଦ ବୋଇଲେ ଶୁଣ ଧର୍ମ ନୃପବରେ
ଆମ୍ଭେ ଯେ ଥିଲୁ ପ୍ରଥମେ ବ୍ରହ୍ମାଙ୍କ ସଭାରେ ।
ଯୁଧିଷ୍ଠିର ପଚାରିଲେ ଶୁଣ ବ୍ରହ୍ମଯତି
କୁହ ବ୍ରହ୍ମାଙ୍କ ସଭାରେ କେ କେ ବସିଛନ୍ତି ।
ବ୍ରହ୍ମା ସମୀପେ ବସନ୍ତେ ମୁନି ଯେ ବଶିଷ୍ଠ
ପୌଲସ୍ତ୍ୟ ବସନ୍ତି ସେହୁ ମୁନିଙ୍କର ଶ୍ରେଷ୍ଠ ।
ଅଛନ୍ତି ଯେ ମାର୍କଣ୍ଡେୟ ଋଷି ସନ୍ନିଧାନେ
ଅଗସ୍ତି ବାଲ୍ମୀକି ପୁଣ ସୁମନ୍ତ ଏମାନେ ।
ବାମଦେବ ଉଦାଳକ ଆବର ଦୁର୍ବାସା
ତପୋବନ୍ତ ବିଶ୍ୱାମିତ୍ର ମୁନି ମହାଯଶା ।
ଅଷ୍ଟବକ୍ର ଭରଦ୍ୱାଜ ଜନକ ମହର୍ଷି
ଉତଙ୍କ ଯେ ଗଉତମ ବିଭାଣ୍ଡକ ଋଷି ।
ଋଷ୍ୟଶୃଙ୍ଗ ଯମଦଗ୍ନି ମରୀଚି କଶ୍ୟପେ
ମେରୁଶୃଙ୍ଗ ମାଲ୍ୟବନ୍ତ ବସନ୍ତି ସମୀପେ ।
ଆସ୍ଥାନର ତଳେ ଅଛି କହ୍ନି ମହାରାଜ
ଆସ୍ଥାନ ନିରୋଧ ଚନ୍ଦ୍ରକେତୁର ଆତ୍ମଜ ।
ହା ହା ହୁ ହୁ ଘେନି ତିନିକୋଟି ଯେ ଗନ୍ଧର୍ବେ
ନିରୋଧନ୍ତି ଆସ୍ଥାନକୁ ବଡ଼ାଇ ସମ୍ଭର୍ବେ ।
ଦେବ ଡ଼ଗର କହନ୍ତି ସେଠାରେ ବାରତା
ସପ୍ତସ୍ୱର ବୀଣା ମୋର ଶୁଣନ୍ତି ବିଧାତା ।
କରତା ପୁରୁଷ ଭିଆଇଲା ଚାରିଖାନି
ସତ୍ୟବନ୍ତ ପୁରୁଷକୁ ସମସ୍ତେ ପ୍ରଣମି ।
ତେତିଶକୋଟି ଅମରଗଣ ଘେନି ସଙ୍ଗେ
ବିଜେ ଅମରାଧିନାଥ ଗନ୍ଧର୍ବଙ୍କ ଆଗେ ।
ଚୌଷଠି କୋଟି ଅମରପୁର ବିଳାସିନୀ
ମୃଦଙ୍ଗ ତାଳ କଂସାଳ ବଂଶୀ ରୁଦ୍ରବେଣୀ ।
ଘେନି ଚଉଷଠି କୋଟି ଗନ୍ଧର୍ବ ଗାୟିକା
ଚିତ୍ରରେଖା କାମସେଣା ଉର୍ବଶୀ ମେନକା ।

ଏହାଙ୍କ ମୂଳେ ସମସ୍ତେ ସ୍ୱର୍ଗ ବିଦ୍ୟାଧରୀ
ରହସ୍ୟ ରସେ ନାୟିକା ନୃତ୍ୟରଙ୍ଗ କରି ।
ହରିଲା ଯେଣୁ ସେ ଜମ୍ଭଦୈତ୍ୟର ସମୃଦ୍ଧି
ତଦାର୍ଥେ ତାହାର ନାମ ଅଟେ ଜମ୍ଭଭେଦୀ ।
ବାଷଠିକୋଟି ଅଛନ୍ତି ବାସବ ନନ୍ଦନ
ସମସ୍ତେ ଦିଶନ୍ତି ଦେବ ଇନ୍ଦ୍ରର ସମାନ ।
ଏସନକ ସମାରୋହ ଦେଖିଲୁ ଅମ୍ଭରେ
ବିଜୟ ଦେବ ମଘବା ଅମର ନଗରେ ।
ସ୍ୱର୍ଗ ଭୁବନ ଦେଖିଲୁ ପୁର ଦାରସ୍ୱତୀ
ଦେବ ଭଣ୍ଡାରେ ଦେଖିଲୁ ପୌଲସ୍ତିର ନାତି ।
ସପ୍ତ ଭଣ୍ଡାର ନାୟକ ଦେବ ଅଧିକାରୀ
ଅଷ୍ଟୋତ୍ତରଶତ ପୁତ୍ର ଅଟଇ ତାହାରି ।
ବହୁତର ବିଦ୍ୟାଧର ଖଟନ୍ତି ତା ପୁରେ
ଦେବ ଭୁବନହିଁ ରକ୍ଷା ହୁଏ ଏହାଙ୍କରେ ।
ଶ୍ରୀଈଶ୍ୱର ଦେବତାର ନିଃଶଙ୍କ କୈଳାସ
ମହାକଳ୍ପ ଆୟୁ ଘେନି ବିଜେ ବିଶ୍ୱବାସ ।
ଚନ୍ଦ୍ରଭୁବନ ହିରଣ୍ୟ ଗର୍ଭେ ଅଛି ପୁରି
ସେ ଭୁବନ ପୁରୁଷ ସେ ନିଶା ଅଧିକାରୀ ।
ଆଦିତ୍ୟ ଦେବ ବିଜୟ ରଥରେ ଆକାଶେ
ଅରୁଣ ସାରଥି ଅଛି ତାହାଙ୍କର ପାଶେ ।
ଅସଂଖ୍ୟ ମହିମା ତାର ନ ସରେ କହନ୍ତେ
ସଂଯମନୀ ପୁର ମୁହିଁ ଦେଖିଲି ଆସନ୍ତେ ।
ବସନ୍ତି ସେ ନବଗ୍ରହ ଏହାଙ୍କର ଦେହେ
ନାଶକର ଦେବତା ଯେ ବଡ଼ ସମାରୋହେ ।
ନାରଦଙ୍କ ବଚନରେ ବଦନ୍ତି ଯୁଧିଷ୍ଠି
ଯମର ସଭାରେ ତୁମ୍ଭେ ଥିଲ ତପୋନିଷ୍ଠି ।
ସବୁ ସ୍ଥାନରେ ଦେଖିଲ ସବୁ ଦେବତାଙ୍କୁ
ଯମପୁରେ ଦେଖିଲ କି ମୋ ପିତା ପଣ୍ଡୁଙ୍କୁ ।
ନାରଦ ବୋଇଲେ ତୁହୋ ପୁଚ୍ଛାକଲୁ ଯାହା
ପଣ୍ଡୁର ଚରିତ ତହୁଁ ଶୁଣ ନରନାହା ।
ପିତା ପଣ୍ଡୁ ତୋହର ଯେ ବ୍ରହ୍ମହତ୍ୟା କଲା
ତଦନ୍ତେ କୃତାନ୍ତ ତାକୁ ଅବସ୍ଥା ବିହିଲା ।
ତିନି ପାବଚ୍ଛର ତଳେ ଉଭା ରାଜାପଣ୍ଡୁ
ପାରିହୋଇ ନାହିଁ ବାବୁ ଯମରାଜା ଦଣ୍ଡୁ ।
ଦିନରାତି ପଣ୍ଡୁ ରାଜା ଅଛି ଉଭା ହୋଇ
ବସ ବୋଲି ନ ବୋଲଇ ଯମ ତାହାକୁହିଁ ।
ମୁଁ ବୋଇଲି ଧର୍ମ ରାଜସୂୟ ଯଜ୍ଞ କଲା
ଏଡ଼େ ବଡ଼ ଧର୍ମେ ତାର ପାପ ତ ନ ଗଲା ।
ଯମ ଦେବତା ବୋଇଲା ଦେଲା ଅନ୍ନଛତ୍ର
ପାଇଲେ ସେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସମସ୍ତ ।
ଗଣ୍ଡା ମାରି ଯେବେ କାମ୍ୟ କର୍ମ ସେ କରଇ
ଦେବ ପିତୃଲୋକ ମିଳି ତାହା ପୁରେ ଯାଇ ।
ସେ ଶ୍ରାଦ୍ଧେ ଦେବତା ପିତୃ ସନ୍ତୋଷ ହୋଇବେ
ତେବେ ପଣ୍ଡୁରାୟ ମହାପାତକ ଖଣ୍ଡିବେ ।
ଏହା ଶୁଣି ପଣ୍ଡୁ ମୋତେ ବୋଇଲେ ବିନୟେ
ଯୁଧିଷ୍ଠି ଛାମୁରେ ଯାଇ କହିବ ମୁନି ହେ ।
ଗଣ୍ଡା ଗୋଟିଏକ ମାରି କରୁ କାମ୍ୟଶ୍ରାଦ୍ଧ
ଅଳପେ ଖଣ୍ଡିବ ପାପ ନୁହଇ ଅସାଧ ।
ଶୁଣିଣ ଯୁଧିଷ୍ଠିଙ୍କର ନ ସ୍ଫୁରଇ କିଛି
ସୁମରନ୍ତି ଭଗବାନ ଦେବ ହେ ଶ୍ରୀବତ୍ସି ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ବୃକୋଦର
ବନସ୍ତେ ପଶି ଗୋଟିଏ ଗଣ୍ଡା ଜୀବ ମାର ।
ଭୀମ ବୋଇଲେ ମୁଁ ଯିବି ଏହିକ୍ଷଣି ଦେବ
ନ ଚିହ୍ନଇ କୋଉନ୍ତି ଯେ ଦିଶେ ଗଣ୍ଡା ଜୀବ ।
ଖେଦି ମାରିବି ବନସ୍ତେ ସମସ୍ତ ଜୀବଙ୍କୁ
ସଙ୍ଗେ ଜଣେ ରହିଥାଅ ଗଣ୍ଡା ଚିହ୍ନିବାକୁ ।
ଯୁଧିଷ୍ଠି ଦେବ ବୋଇଲେ ନ ଯା ବୃକୋଦର
ବନେ ପଶି ଗଣ୍ଡା ମାରୁ ପାର୍ଥ ଧନୁର୍ଦ୍ଧର ।
ଶୁଣିଣ କିରାତ ରୂପେ ଗଲା ସବ୍ୟସାଚୀ
ବନଚର ରୂପେ ଖୋଜେ ଗଣ୍ଡାଜୀବ ଲୁଚି ।
ହିରଣ୍ୟ ବନୁ ସେ ମହୋଦର ବନ ଯାଏ
ବୁଲି ବୁଲି ସେ ପାର୍ଥିବ ପରିଶ୍ରାନ୍ତ କାୟେ ।
ଅନେକ ବନ କନ୍ଦର ନଦୀ ଭ୍ରମି ଭ୍ରମି
ନଦୀଘାଟ ଯାକ ଖୋଜି ଖୋଜି ପଥଶ୍ରମି ।
ନବଦିନ ପରିଯନ୍ତେ ଖୋଜି ନ ପାଇଲା
ନିର୍ଝର ବନେ ପଶିଣ ବହୁତ ଖୋଜିଲା ।
କନ୍ଦମୂଳ ଫଳ ତହିଁ କରଇ ଭକ୍ଷଣ
ଦେଖଇ ମୃଗାରୀ ଘେନି ସ୍ୱାମୀର ବଚନ ।
ବାରୁଣୀ ନାମରେ ଅଛି ଏକଇ ପର୍ବତ
ପାପନାଶିନୀ ଯେ ତୁଙ୍ଗଭଦ୍ରା ତହୁଁ ଜାତ ।
ସେ ନଦୀ ପର୍ବତ ଭାଗେ ଅସ୍କନ୍ଦ ପର୍ବତ
ସେ ଗିରି ଉପରେ ଯାଇ ଉଠେ ବୀରପାର୍ଥ ।
ଏମନ୍ତ ସମୟେ ବିଜେ ନାରଦ ସୁଜ୍ଞାନୀ
ଦେଖି ତାଙ୍କୁ ପ୍ରଣିପାତ କଲା ଫାଲଗୁନି ।
ବୋଇଲେ ଗଣ୍ଡା ଜୀବ ନ ପାଇଲି ହେ ମୁନି
ନବଦିନ ହେଲା ଭ୍ରମି ଭ୍ରମି ଏ ମେଦିନୀ ।
ନାରଦ ମୁନି ହସିଲେ ପାର୍ଥ ମୁଖ ଚାହିଁ
ଏରୂପ ଗୋଟି ବାବୁରେ ତୋତେ ଯେ ଶୋଭଇ
ଅର୍ଜୁନ ବୋଲଇ ଆହେ ଶୁଣ ମୁନିବର
ବନେ ନ ପାଇଲି ଗଣ୍ଡା ଜୀବହିଁ ଆବର ।
ଅର୍ଜୁନର ବଚନେ ଯେ ବୋଲନ୍ତି ନାରଦେ
ତୋ ମୃଗୟା ଜାଣି ଗଣ୍ଡା ପଳାଇଲେ ହାଦେ ।
ହର ଉଦ୍ୟାନ ନାମେ ଯେ ଅଛି ଏକ ବନ
ତହିଁ ଗଣ୍ଡାଜୀବମାନେ ହୋଇଲେ ଗୋପନ ।

ଗନ୍ଧନଦୀର ଉତ୍ତର କୂଳେ କୂଳେ ଯିବୁ
ଏହିକ୍ଷଣି ଗଣ୍ଡା ଜୀବ ଗୋଟିଏ ଆଣିବୁ ।
ତେବେ କାର୍ଯ୍ୟକର ବାବୁ ପିତାର ନିମନ୍ତେ
ମୁକ୍ତ ହେଉ ପିତା ତୋର ଯାଉ ସ୍ୱର୍ଗପଥେ ।
କହି ସେ ନାରଦ ମୁନି ଗଲେ ଅନ୍ତର୍ଦ୍ଧାନେ
ଚଳଇ ବାସବୀ ତହୁଁ ସେ ହର ଉଦ୍ୟାନେ ।
ପାଣିଘାଟେ ରହି ବୀର ନିତ୍ୟକର୍ମ ସାରି
ବିଜୟ ଯାଇ ଅର୍ଜ୍ଜୁନ ରୁଦ୍ର ନାମେ ଗିରି ।
ଦେଖଇ ସେ ରୁଦ୍ରବନ ଅତି ପରିମଳ
ଆସନ୍ତି ଯେ ବନଜୀବେ ଶୁଭେ କୋଳାହଳ ।
ଚୌବିଂଶ ଯୋଜନ ଅଟେ ତୋଟା ଆୟତନ
ସୁବର୍ଣ୍ଣ ପାଚେରୀ ସାତତାଳ ପରିମାଣ ।
ପୂର୍ବଦ୍ୱାରେ ଜଗତୀ ଯେ ସୁବର୍ଣ୍ଣକୁ ଜିଣି
ଆକାଶେ ଝଲକେ ହୀରା ମାଣିକ୍ୟ ଖଞ୍ଜାଣି ।
ସ୍ୱରୂପ ଖାଣ୍ଡବ ବନ ତୋଟାପ୍ରାୟ ଦିଶେ
ଦେଖିଣ ସାନନ୍ଦ ହୋଇ ବହୁତ ପ୍ରଶଂସେ ।
ନାଗାର୍ଜ୍ଜୁନ ସ୍ୱନକ୍ଷତ୍ର ଦିନ ବନ୍ଦାପନା
ମାତା ପାଶକୁ ଯାଇଛି ନାଗକୁଳ କେନା ।
ରୁଦ୍ର ପର୍ବତ ଶିଖରେ ବସିଛି କିରୀଟି
ଏକଲଯେ କରି ବୀର ଜଗେ ପାଣିଘାଟି ।
ଦିନକର ନାଥ ମଧ ଗଗନ ବିହାରୀ
ଗଜ ଅଶ୍ୱ ମୃଗପଲ ଶାର୍ଦ୍ଦୂଳ ସଂହାରି ।
ନାରଦ ବଚନ ମିଥ୍ୟା କିପାଇଁ ହୋଇବ
ହରିଣ ଯେ ବାହୁଟିଆ ସିଂହ ଆଦି ଜୀବ ।
ପାଣି ଖାଇ ବନଜୀବେ ଯାଆନ୍ତି ଲେଉଟି
ସର୍ବପଛେ ଆସୁଅଛି ଗଣ୍ଡାଜୀବ ଗୋଟି ।
ସେ ଗଣ୍ଡା ଶରୀରେ ଅଛି ପାଣିଦ୍ରବ୍ୟ ଲକ୍ଷ
ଦେଖିଣ ଆନନ୍ଦମନ ହୋଇଣ ବିବକ୍ଷ ।
ବିଚାରଇ ପାର୍ଥ ଏହି ଅଟେ ଗଣ୍ଡାଜୀବ
ନାରଦ ବଚନ ମିଥ୍ୟା କିମ୍ପାଇ ହୋଇବ ।
ଏସନକ ଘଟଣା ସେ ଗଣ୍ଡାର ମୂରତି
କିମ୍ପା ନ ପାଇବେ ପିତୃଲୋକ ସ୍ୱର୍ଗଗତି ।
ଭକତଜନ ଦେଖିଣ ହେଉଛନ୍ତି ବଶ
ଇଚ୍ଛା ନ ବଳେ କେମିତି କରିବି ମୁଁ ନାଶ ।
ଆସଇ ଏକ ତୃଷାର ଅର୍ଥେ ପାଣି ପିଇ
ତୃଷାର୍ତ୍ତ ପ୍ରାଣୀକୁ ପୁଣଇ ମାରି ନ ଯୋଗାଇ ।
ଲେଉଟି ଆସୁ ମାରିବି ବିଚାରେ କିରୀଟି
ପାଣିଘାଟେ ପାଣି ପିଇ ଗଣ୍ଡାଜୀବ ଗୋଟି ।
ଧୀରେ ଧୀରେ ସେ ବାହୁଡ଼ି ଆସିବାର ବେଳେ
ଆକର୍ଷି ନାରଚ ପାର୍ଥ ବିନ୍ଧେ ଅବହେଳେ ।
ବାମେ ବାଜି ସେ ନାରାଚ ଡାହାଣେ ନିକିଳି
ଭୂମିରେ ପଡ଼ିଲା ଗଣ୍ଡାଜୀବ ଗୋଟି ଢ଼ଳି ।
ଧାଇଁ ଯାଇ ତା କତିକି ଦେଖେ ଧନଞ୍ଜୟ
ପଡ଼ିଛି ସେ ରସାଣିଲା ସୁବର୍ଣ୍ଣର ପ୍ରାୟ ।
ସର୍ବାଙ୍ଗ ଜଡ଼ିତ ରତ୍ନ ଦିଶେ ରତ୍ନମୟ
ଝଟକଇ ଅଷ୍ଟରତ୍ନ ଘଣ୍ଟିରବ ପ୍ରାୟ ।
ଅର୍ଜ୍ଜୁନ ବିଚାରେ ମୋର ଗଣ୍ଡାରେ ତ କାର୍ଯ୍ୟ
ପରଦ୍ରବ୍ୟ କେମନ୍ତେ ମୁଁ କରିବଇଁ ଗ୍ରାହ୍ୟ ।
ଏଥି ଅବା ଧନରତ୍ନ ଯିବଇଁ କୁଢ଼ାଇ
ଆନ ଜନ ସିନା ନେବେ ସେ ପାଇବ ନାହିଁ ।
ଦଣ୍ଡେକ ଏଠାରେ ରହିଥିବଇଁ ମୁଁ ଜଗି
ଗଣ୍ଡା ଯେ ଖୋଜିବ ରତ୍ନ ନେବ ସିନା ମାଗି ।
ପିତୃକାର୍ଯ୍ୟ ନିମନ୍ତେ ମୁଁ ମାଇଲି ଏ ଜୀବ
ପରଧନ ହରଣରେ ବହୁତ ପ୍ରାଭବ ।
ସେ ଗଣ୍ଡା ଉପରେ ଲତା ଲୁଚିଏ ଘୋଡ଼ାଇ
ମାଧବୀ ଲତାର ତଳେ ବସି ସେ ଅଛଇ ।
ଜୟ ତୁ ଦେବୀ ଶାରଳା ଦୁର୍ଗାରୂପେ ଜାତ
ମହିଷାସୁରକୁ ମାଡ଼ି ବସିଲୁ ଗୋ ମାତ ।
ଜୟ ତୁ ଶାରଳା ମାଗୋ ପରମ ବୈଷ୍ଣବୀ
ଜନ୍ମେ ଜନ୍ମେ ଶ୍ରୀ ଶାରଳା ଦାସ ତୋତେ ସେବି ।

## ନାଗାର୍ଜ୍ଜୁନ କର୍ତ୍ତୃକ ଅର୍ଜ୍ଜୁନର ମୃତ୍ୟୁ

ବଦନ୍ତି ଅଗସ୍ତି ଶୁଣ ମନୁ ମହାଜ୍ଞାନୀ
ବସିଅଛି ଲତାତଳେ ବୀର ଫାଲଗୁନି ।
ପାତାଳରେ ବନ୍ଦାପନା ହୁଏ ନାଗାର୍ଜ୍ଜୁନ
ସନ୍ଧ୍ୟାବାଳୀ ଅର୍ଘ୍ୟେ କରେ ମଙ୍ଗଳ ବିଧାନ ।
ଅର୍ଘ୍ୟ ଘେନିବାର କାଳେ ନାଗୁଣୀ ତନୟ
ବାମ ନୟନ ସ୍ଫୁରଇ କମ୍ପିତ ତା କାୟ ।
ଆସନ ତେଜିଣ ବୀର ଧାଡିକାରେ ଉଠି
ମାଗୋ କଂପିଲାସେ ହେଲା ନିଶ୍ଚୟ ଅରିଷ୍ଟି ।
କେ ଅବା ହର ଉଦ୍ୟାନ ବନ ନାଶକଲା
ପାର୍ବତୀଙ୍କ ଗଣ୍ଡା ଗୋଟି କେ ଅବା ମାଇଲା ।
ନାଗୁଣୀ ବୋଇଲା ବାବୁ ଗଣ୍ଡାଜୀବ ଅର୍ଥେ
ପାଣ୍ଡବେ ବୁଲୁଥାନ୍ତିଟି ବେଣ୍ଟର ନିମନ୍ତେ ।
ମାତ୍ର ଅଗ୍ରତେ କହଇ ସେ ନାଗଅର୍ଜ୍ଜୁନ
କାହିଁ ହସ୍ତିନା ଗୋ କାହିଁ ହରଙ୍କ ଉଦ୍ୟାନ ।
ଚୌଷଠି ଯୋଜନ ଅନ୍ତେ ଅଟେ ଗୋ କୈଳାସ
ଏଥି କାହିଁ ଲୋଡୁ ତୁ ଗୋ ପାଣ୍ଡବ ଆବାସ ।
ପାଣ୍ଡବେ ଅଟନ୍ତି ବାବୁ ଜମ୍ବୁଦ୍ୱୀପେ ସ୍ୱାମୀ
ଶିବଙ୍କୁ ଜିଣିଲା ତୋର ପିତା ବନଭୂମି ।
ବାବୁ ଯେ ତୋହର ପିତା ଅଟଇ ଅର୍ଜ୍ଜୁନ
ନୀଳ ଇନ୍ଦୀବର ବର୍ଣ୍ଣ ଯୁଗଳ ନୟନ ।
ଅକୁଞ୍ଚିତ କେଶ ଜୂଡ଼ା କପାଳହିଁ ତୁଲ
ଦରହସିତ ବଦନ ବଚନ ଅମୂଲ୍ୟ ।

ଅମୃତ କୁଣ୍ଡଳ ବେନି ଶ୍ରବଣକୁ ଶୋଭା
ଗରୁଡ଼ ନାସିକା ନୀଳ ଜୀମୂତର ପ୍ରଭା ।
ଦ୍ୱିତୀୟ ନାମ ବହଇ ବୀର ଫାଲଗୁନି
ମୀନକେତନ ଧନୁ କି ଭୂରୂଲତା ବେନି ।
ରକତ ତାମ୍ର ନୟନେ ବିରାଜଇ ଡୋଳା
ନୀଳ ଭ୍ରମରକୁ ଜିଣି ଦିଶଇ ସେ କଳା ।
ଡାଳିମ୍ବ ପୁଷ୍ପ ପରାୟେ ଦିଶେ ଦନ୍ତପନ୍ତି
ଅଣ୍ଡିରା କୋକିଳ ପ୍ରାୟ କହିବାର ରୀତି ।
ନ କହଇ ସେ ଅନୀତି ବାକ୍ୟ କଦାଚିତେ
ଗୁଣସାଗର ନାଥ ସେ ସଦୟ ନିରତେ ।
ଦୁଃଖୀଜନ ଉଦ୍ଧାରଣ କକ୍ଷା ଜଗଜ୍ଜେଠି
ଆରେକ ନାମ ତାଙ୍କର ଅଟଇ କିରୀଟି ।
ଉଜ୍ଜ୍ୱଳ ଗଣ୍ଡ ମଣ୍ଡଳ ସୁନ୍ଦର ସୁରେଖ
କଣ୍ଠତଟେ ଶୋଭାବନ ହିରଣ୍ୟ ପଦକ ।
ଯେବଣ ସ୍ଥାନେ ତୋ ପିତା କରିଥାଇ ବିଜେ
ବିରାଜୁଥାଇ ସେ ସ୍ଥାନ ଆଦିତ୍ୟର ତେଜେ ।
ଆଜାନୁ ଲମ୍ବିତ ଦୀର୍ଘବାହୁ ଭୁଜ ବେନି
ଲକ୍ଷେକ ବଳ ଗାଣ୍ଡୀବ କରେ ଥାଇ ଘେନି ।
ଅକ୍ଷୟ ତୂଣୀର ବେନି ମନଭେଦୀ ଭୁଜେ
ବାବଲ ଯେ ପାଶୁପତ ତା ପାଣିପଙ୍କଜେ ।
ମୋ ପିତା ଅନନ୍ତ ଦେଲା ଯେ ଅଭୟ ମଣି
ଅବିରତେ ସେ ହୃଦରେ ଲୁଳୁଥାଇ ପୁଣି ।
ବିଶାଳ ତା ବକ୍ଷସ୍ଥଳ ସଂକୀର୍ଣ୍ଣ ତା କଟୀ
ଚମ୍ପା କଢ଼ୀକି ସୁସଞ୍ଚ ଦିଶଇ ଅଙ୍ଗୁଷ୍ଠି ।
ଯା ବେନି ଜାନୁ ଦିଶଇ ଉଲଟ କଦଳୀ
ବେନି ପାଦ ଆକ୍ରମଣେ ନୀଳା ରତ୍ନଝଳି ।
କେଶରୀର ପଟାନ୍ତରେ ଚାଲିବା ପ୍ରକୃତି
ଗଜ ଆକର୍ଷଣେ ଯେହ୍ନେ ସିଂହର ମୂରତି ।
ରକତ କୁମୁଦ ଜିଣି ପାଦ ତେଜକାନ୍ତି
ସେ ପାଦତଳରେ ପଦ୍ମ ଚିହ୍ନହିଁ ଦିଶନ୍ତି ।
ମରୁତ ସମାନ ତାର ଅଟଇ ବଡ଼ିମା
ପରଶୁରାମ ସଦୃଶେ ତେଜଇ ଗାରିମା
କୋପ ବିକାଶଇ ପୁଣି ନରସିଂହ ତେଜ
ହସ୍ତୀହସ୍ତ ଜିଣି ଶୋହେ ତାର ବେନିଭୁଜ ।
ପିଠି ଦିଶଇ ରସାଣ ପତ୍ର ପ୍ରାୟ ବାବୁ
ଇନ୍ଦ୍ର ଦେବତା ସୁତକୁ କି ଉପମା ଦେବୁ ।
ପଞ୍ଚକଟକ ଠାକୁର କୁନ୍ତୀଦେବୀ ସୁତ
ବେଦ ମନ୍ତ୍ର ଶାସ୍ତ୍ର ଶସ୍ତ୍ରେ ଅଟଇ ବର୍ଦ୍ଧିତ ।
ହନୁର ବିବାଦେ ଶରେ ସାଗର ଯେ ବାନ୍ଧି
ପାର୍ଥ ନାମକୁ ବହିଲା କରି କାର୍ଯ୍ୟ ସିଦ୍ଧି ।
ବିବସ୍ତ୍ର ଭୟାଳୁକୁ ସେ ନ ମାରନ୍ତି ରଣେ
ବିବସ୍ତ୍ର ନାମ ଗୋଟିକ ବହନ୍ତି ସେ ଏଣେ ।
ଜ୍ୟେଷ୍ଠ ଯୁଧିଷ୍ଠି ରାଜାଙ୍କ ଚରଣ ବନ୍ଦନ
ଜ୍ୟେଷ୍ଠ ସୋଦର ଅଟଇ ପବନ ନନ୍ଦନ ।
ନକୁଳ ସହଦେବ ଯେ ଅଟନ୍ତି ଅନୁଜ
ଅଭେଦ ଆତ୍ମା ଅଟନ୍ତି ପ୍ରଭୁ ଦେବରାଜ ।
ଅପାର ଗୁଣ ତାଙ୍କର କି କହେ ତୋ ଆଗେ
ବଧିର ପ୍ରାୟେ ନ ଶୁଣୁ ଚାହୁଁ ଚଉଦିଗେ ।
ନାଗାର୍ଜ୍ଜୁନ ବୋଲେ ମାତା ଶୁଣିଲଇଁ ମୁହିଁ
ବହନ ଯିବି ଗୋ ଆଉ ନ ପାରଇ ରହି ।
ଏ ମୋର ମନେ ଉପୁଜେ ବଡ଼ଇ ବିଷାଦ
କପିଳାସ ସ୍ୱର୍ଗେ ନିଶ୍ଚେଁ ପଡ଼ିଲା ପ୍ରମାଦ ।
ମାତାକୁ ବିନୟେ କହି ଧାମଇଁ କୁମର
ପାତାଳ ସ୍ୱର୍ଗୁ ସେ ବେଗେ ହୋଇଲା ବାହାର
କୋପଭରେ ଧାମଇଁ ସେ ନାଗୁଣୀର ସୂନୁ
ଶ୍ରୀଭୁଜେ ଶୋହେ ପିନାକ ସମ ମହା ଧନୁ ।
ଅକ୍ଷୟ ତୂଣୀର ବେନି ତା ବାମ ଡାହାଣେ
ଡାହାଣ ପାଣି ଶୋଭଇ ପାଶୁପତ ବାଣେ ।
ବୁଲାଇ ସେ କାଳଚକ୍ର ପ୍ରାୟ ବେନିଡୋଳା
ହର ଉଦ୍ୟାନେ ପ୍ରବେଶ ସନ୍ଧ୍ୟାବାଳୀ ବଳା ।
ଦେଖେ ବନସ୍ତ ସମସ୍ତ ଅଛଇ ତ ଭଲେ
ପାର୍ବତୀଙ୍କ ଗଣ୍ଡା ନାହିଁ ଜୀବଙ୍କର ତୁଲେ ।
ବିଚାରେ ବନକୁ ଅବା ବିଜେ ଗୌରୀହର
ଗଣ୍ଡା ଗୋଡ଼ାଇ ଗଲା ବା ପଛରେ ତାଙ୍କର ।
ବାହୁଡ଼େ କୁମରମଣି ସେ ହର ଉଦ୍ୟାନୁ
କପିଳାସେ ପ୍ରବେଶିଲା ନାଗୁଣୀର ସୂନୁ ।
ନିସ୍ୱତ ଭୁବନେ ବୀର ଲୋଡ଼ଇ ନିରୀକ୍ଷି
ଗଣ୍ଡାଜୀବ ନ ପାଇଲା ପୁରଯାକ ଦେଖି ।
ଆନ କିଛି ଅବିଗୁଣ ନାହିଁ କପିଳାସେ
ଗଣ୍ଡା ଲୋଡ଼ି ଲୋଡ଼ି ବୀର ଭ୍ରମଇ ବିରସେ ।
କିବା ଗଣ୍ଡା ଯାଇଅଛି କରି ଜଳପାନ
ନଦୀକୂଳରେ ଖୋଜଇ ବୀର ନାଗାର୍ଜ୍ଜୁନ ।
ଲତା ଲୋଟିଏ ଉପରେ ଅଛି ଘୋଡ଼ି ହୋଇ
ଦେଖିଲା ସେ ଗଣ୍ଡା ଲତାତଳେ ଅଛି ଶୋଇ ।
କାଢ଼ଇ କୁମର ଧାଇଁଯାଇ ଲତା ଲୋଟି
ଦେଖିଲା ଗଣ୍ଡାର ଗଣ୍ଡେ ବାଣ ଫୁଟିଅଛି ।
ଶରୀର ଯନ୍ତ୍ର ତାହାର ଯାଇଅଛି ଫୁଟି
ତାଳେକ ଗଭୀର ଯାଏ ଭୂମିକି ସେ କଣ୍ଟି ।
ଆକର୍ଷି ଭିଡ଼ନ୍ତେ ତାର ଦେହୁ ବୀର ଶର
ଶରୀରେ ଜୀବନ ନାହିଁ ବହୁଛି ରୁଧିର ।
ଦେଖିଣ ନାଗାର୍ଜ୍ଜୁନର ଉଡ଼ିଲା ସାହସ
କଟାକ୍ଷ ନୟନେ ବୀର ଚାହିଁ ଚଉପାଶ ।
ବୋଇଲା କେ ମୋର ଗଣ୍ଡା ମାଇଲା ତ୍ରୈଲୋକ୍ୟେ
ମାନବ ଛାର ହୋଇ କେ କଲା ଏଡ଼େ ଶକ୍ୟ

ଯଦ୍ୟପି ବ୍ରହ୍ମା ବାସବ ହୋଇଜେ କୁବେର
ତିରଣ ପ୍ରମାଣେ ମାଂସ କାଟିବି ତାହାର ।
ଯେବେ ଅଗ୍ନି ରବି ଶଶୀ ପବନ କୃତାନ୍ତେ
ଏମନ୍ତବେଳେ ଘେନି କି ଯିବେ ସେ ଜୀବିତେ ।
ଯଦ୍ୟପି ଯକ୍ଷ ରାକ୍ଷସ ଜନ ବନମାଳୀ
କାଟିବି ତାହାଙ୍କ ମାଂସ ଦେବି ବିଶାବଳି ।
ପ୍ରତିଜ୍ଞାରେ ସ୍ଥିର ହୋଇଥିଲା ଫାଲଗୁନି
କୃଷ୍ଣ ନିନ୍ଦା ଶୁଣି ଧୈର୍ଯ୍ୟ ନ ଧରିଣ ପୁଣି ।
ଲତା ଭିତରୁ ବାହାର ହେଲା ସବ୍ୟସାଚୀ
ଦେଖିଣ ନାଗାର୍ଜ୍ଜୁନଙ୍କର ନ ସ୍ଫୁରିଲା କିଛି ।
ନାଗାର୍ଜ୍ଜୁନ ବୋଇଲାକ ହେ କିରାତ ଭାଇ
ମୋ ଗଣ୍ଡାକୁ କେ ମାଇଲା ଦେଖିଲୁ କି ତୁହି ।
ଅର୍ଜ୍ଜୁନ ବୋଇଲା ଶୁଣ ଆହେ ତପୋଧନ
ଘେନିଯାଅ ତୁ ଗଣ୍ଡାର ଦେହ ରତ୍ନମାନ ।
ମୋହର କାର୍ଯ୍ୟ ନିମନ୍ତେ ଗଣ୍ଡା ମୁଁ ମାଇଲି
ରତ୍ନମାନଙ୍କ ନିମନ୍ତେ ଜଗି ବସିଥିଲି ।
ଶୁଣି ନାଗାର୍ଜ୍ଜୁନ କୋପକଲା ମହାବୀର
କାଳସର୍ପ ଚାଳିବାକୁ କି କରେ ଶବର ।
ପାର୍ବତୀଙ୍କ ଗଣ୍ଡା ସ୍ନେହ କରନ୍ତି ଈଶାନ
ଆନନ୍ଦେ ବିଜେ କରନ୍ତି ଦେବ ତ୍ରିଲୋଚନ ।
ପର୍ବତ ଫିଙ୍ଗି ପାତିଲୁ ମଥା ତୁ କେମନ୍ତେ
ଆରେ ରେ ଶବର ବିଷ ଖାଇଲୁ ସ୍ୱହସ୍ତେ ।
ସୁମର ଶବର ଏବେ ତୋର ପିତାମାତା
ସୁମର ଶବର ତୋର ଯେ ଇଷ୍ଟ ଦେବତା ।
ଅର୍ଜ୍ଜୁନ ବୋଇଲା ତପୀ ହେଲ କି ଅଜ୍ଞାନ
ଗଣ୍ଡା ମୁଁ ନିଅଇ ଘେନିଯାଅ ରତ୍ନମାନ ।
ଶୁଣି ମହାକୋପାନଳେ ନାଗୁଣୀର ବସା
ଯୋଚୁଛି ନାରାଚ ତୋତେ କେ କରିବ ରକ୍ଷା ।
ଦୁହେଁ କ୍ଷତ୍ରୀ ପିତା ପୁତ୍ର ଅଟନ୍ତି ସେ ବେନି
କିରାତ ରୂପକୁ ନାଗଅର୍ଜ୍ଜୁନ ନ ଚିହ୍ନି ।
ଲୁହାର ଯେ ପଞ୍ଚଶର ଅତି ତୀକ୍ଷ୍ଣମୁନା
ଆକର୍ଷି ନାଗଅର୍ଜ୍ଜୁନ ବିନ୍ଧେ କୋପମନା ।
ଅର୍ଜ୍ଜୁନର ପାଦତଳେ ପଡ଼ିଲା ସେ ଶର
ପୁଷ୍ପ ପରମାଣେ ସେହି ପଡ଼ିଲା ଭୂମିର ।
ପୁଣିହିଁ ଦଶ ନାରାଚ ବିନ୍ଧିଲା ସେ ବଳେ
ପଡ଼ିଲେ ନାରାଚମାନେ ପାର୍ଥ ପାଦତଳେ ।
ପୁଣିହିଁ ଦଶ ନାରଚ ବିନ୍ଧିଲାକ ଟାଣି
ନାରାଚମାନେ ପଡ଼ିଲେ ପାଦେ ଯାଇ ପୁଣି ।
ପରିଘବାଣେ ବିନ୍ଧିଲେ ଅର୍ଜ୍ଜୁନ ଉପରେ
ରୁଧିର କଣ୍ଟିଲା ରୁମେ ରୁମେ ତା ଶରୀରେ ।
ଘାଏ ଧନଞ୍ଜୟ ବୀର କଲା ମହାକୋପ
ଯଷ୍ଟି ପ୍ରହାରେ ଯେସନେ ଗର୍ଜେ କାଳସର୍ପ ।
ରୁଦ୍ର ଦେବତାର ମୁହିଁ ଅଟେ ଉପକାରୀ
ତୁ ଛାର ତପସ୍ୱୀ କିରେ ହେବୁ ମୋତେ ସରି ।
ମୋହର କାର୍ଯ୍ୟେ ତୋହର ଗଣ୍ଡାକୁ ମାଇଲି
ତୋତେ ବାଣେ ନ ଲଙ୍ଘଇ ବାଳପୁତ୍ର ବୋଲି ।
ଅର୍ଜ୍ଜୁନର ଏ ବଚନେ ନାଗାର୍ଜ୍ଜୁନ ହସି
ଭାଟଙ୍କ ପ୍ରାୟ ବହୁତ ପ୍ରତିଜ୍ଞା ତ ଭାଷି ।
ଯଦ୍ୟପି ପ୍ରତିଜ୍ଞାବନ୍ତ ହୁନ୍ତି ମଉନାଗେ
ସେହି କି ରହି ପାରନ୍ତି ଖଗବର ଆଗେ ।
ଯେବେ ମହାବଳବନ୍ତ ହୋଇବେ ଦଇତେ
ନାରାୟଣ ଜ୍ୟୋଛ୍ନାରେ ରହିବେ କେମନ୍ତେ ।
ପ୍ରତିଜ୍ଞା କରି ଆସନ୍ତେ ଯେବେ ଗଜଯୂଥେ
କେତେବେଳେ ବର୍ତ୍ତିବେ କି କେଶରୀ ଅଗ୍ରତେ
ଯଦ୍ୟପି ପ୍ରତିଜ୍ଞାବନ୍ତ ହୋନ୍ତି ବୃକ୍ଷମାନେ
ପବନ ବିଘାତେ ସେ କି ସମ୍ଭାଳନ୍ତି ବନେ ।
ବଳବନ୍ତ ହୁଅନ୍ତିଟି ଯେବେ ତୃଣରାଶି
କିଞ୍ଚିତ ହୁତାଶନେ ସେ ଜଳି ଭସ୍ମରାଶି ।
ଯେବେ ଭୀଷ୍ମରୂପୀ ମୂଷା ହୁଅନ୍ତି ନିଶାରେ
ସେହି କି ରହି ପାରନ୍ତି ମାର୍ଜ୍ଜାର ଆଗରେ ।
ଅର୍ଜ୍ଜୁନ ବୋଇଲା ଅଟୁ ତୁ ଯୋଗୀ ତପସ୍ୱୀ
ମାଇଲେ ତ ଯଶନାହିଁ ଆଜନ୍ମ ଭିକ୍ଷାଶୀ ।
ଅର୍ଜ୍ଜୁନର ଏ ବଚନ ନାଗାର୍ଜ୍ଜୁନ ଶୁଣି
ଗର୍ଜ୍ଜଇ କୁମରମଣି କାଳସର୍ପ ଜାଣି ।
ନାଗାର୍ଜ୍ଜୁନ ଧଇଲାକ କୋପେ ଶୂଳଶକ୍ତି
କୋଟିଏ ସୂର୍ଯ୍ୟ କିରଣ ପ୍ରାୟ ତାର ଜ୍ୟୋତି ।
କାଳଚକ୍ର ପ୍ରାୟ ନେତ୍ର ଦନ୍ତେ ଓଷ୍ଠ ଚାପି
ଅନ୍ତରୀକ୍ଷେ ବୁଲାଇଲା ଶିବ କାମରୂପୀ ।
ମଲୁରେ ଶବରା ଏବେ ତୁ କିଞ୍ଚିତ ଦୋଷେ
ଭଲଲୋକ ହୋଇ ଗଣ୍ଡା ମାରି ମଲୁ ଶେଷେ ।
ଶକତି ବୁଲାଇ ବାଳଶିଷ୍ୟ ଦେଲା ପେଷି
ଅମୋଘ ଅସ୍ତ୍ରେ ଅର୍ଜ୍ଜୁନ ପକାଇଲା ନାଶି ।
ଫରିକ ନାରାଚ ଏକ ବିନ୍ଧିଲା ଅର୍ଜ୍ଜୁନ
ନାଗାର୍ଜ୍ଜୁନ ମୁଖେ ଯାଇ ଦେଲା ସେ ଚୁମ୍ବନ ।
ପୁଣ ପୁଣ ନାଗାର୍ଜ୍ଜୁନ ପ୍ରହାରଇ ଶର
ସମସ୍ତ ନାରାଚ ପଡ଼େ ପାର୍ଥ ପାଦତଳ ।
ଅର୍ଜ୍ଜୁନ ନାରାଚମାନ ବିନ୍ଧେ ଅନୁକ୍ଷଣ
ନାଗାର୍ଜ୍ଜୁନ ମୁଖେ ଯାଇ ଦିଅନ୍ତି ଚୁମ୍ବନ ।
ଯଦ୍ୟପି ସେ ପିତା ପୁତ୍ରେ ଯୁଝିଲେ ନ ଜାଣି
ବାଣେ ଧର୍ମ ନ ଛାଡ଼ନ୍ତି ଅଟନ୍ତି ତ ଜ୍ଞାନୀ ।
ସେ ନାରାଚେ ନାଗାର୍ଜ୍ଜୁନ ଜିଣି ନ ପାରିଲା
କୋପେ କୁମର ଆବର ଶସ୍ତ୍ର ପ୍ରହାରିଲା ।
ଭଦ୍ରାବଳି ବିନ୍ଧେ ସନ୍ଧ୍ୟାବାଳୀର ତନୟ
ଦିଶନ୍ତି ନାରାଚେ ଜୁଳୁଜୁଳା ପୋକ ପ୍ରାୟ ।

ବାରୁଣା ଅସ୍ତ୍ର ପେଷିଲା ବୀର ଯେ କିରୀଟି
ନାଗାର୍ଜୁନ ଶସ୍ତ୍ରମାନ ପକାଇଲା କାଟି ।
ପର୍ବତଶର ବିନ୍ଧିଲା ପୁଣି ନାଗାର୍ଜୁନ
ବଜ୍ର ଶସ୍ତ୍ର ମାରି ତାହା ଛେଦିଲା ଅର୍ଜୁନ ।
ପନ୍ନଗ ଶସ୍ତ୍ରକୁ ପୁଣି ନାଗାର୍ଜୁନ ପେଷି
ଗରୁଡ଼ ଶସ୍ତ୍ରେ ତାହାକୁ ଅର୍ଜୁନ ବିନାଶି ।
କୁହୁକ ନାରାଚ ଏକ ବିନ୍ଧିଲା କୁମର
ପୃଥିବୀଯାକ ଦିଶିଲା ସମସ୍ତ ଅନ୍ଧାର ।
ମାଇଲାକ ସୂର୍ଯ୍ୟାବର୍ତ୍ତ ଶର ସବ୍ୟସାଚି
ତୁଟିଲା କୁହୁଡ଼ି ଆଉ ନ ରହିଲା କିଛି ।
ଅଗ୍ନିଶର ନାଗାର୍ଜୁନ କରଇ ସନ୍ଧାନ
ମହାଅଗ୍ନି ଶିଖ ରାଶି ଉଠିଲା ଗଗନ ।
ଅଗ୍ନିତାପେ ପଳାଇଲେ ଦିଗଲୋକମାନେ
ଭୋ ଅର୍ଜୁନ ରଖ ବୋଲି ଶୁଭଇ ଗଗନେ ।
ଆକର୍ଷି ଅର୍ଜୁନ ମେଘଅସ୍ତ୍ର ଦେଲା ପେଷି
ଅଗ୍ନିତେଜ ଲିଭାଇଲା ସେ ଜଳ ବରଷି ।
ଅର୍ଜୁନକୁ ଅନେକ ସେ ନାରାଚ ବିନ୍ଧିଲା
ସାଧୁ ସାଧୁ କିରାତ ତୋ ଜୀବନ ବୋଇଲା ।
ମୃତ୍ୟୁ ଜଗଜ୍ଜିତା ରୁଦ୍ରଦେବର ପ୍ରସନ୍ନେ
ତ୍ରାସନ୍ତି ଯାର ନାରାଚ ଦେଖି ଦେବଗଣେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଜିଣନ୍ତା କେ ନାହିଁ
ଏ ଶସ୍ତ୍ରମାନ ଶବରା ପାଇଲୁ ତୁ କାହିଁ ।
ବହୁତ ପ୍ରଶଂସା କଲେ ନାଗୁଣୀର ବାଳ
ମୁହିଁ ସଦା ବୀରବର କ୍ଷତ୍ରି ଅନର୍ଗଳ ।
ଅର୍ଜୁନ ବୋଇଲେ ତୁ ତ ଅଜ୍ଞାନ ତପସ୍ୱୀ
ବଡ଼ଜଣ ପୁତ୍ର ହୋଇ କିପାଁ ରଣେ ପଶି ।
ଏ ମୋର ବଚନ ତୋର କର୍ଣ୍ଣେ ନ ପଶିଲା
କି ଅବା ରୁଦ୍ରଦେବତା ତୋତେ ନ କହିଲା ।
ଖାଣ୍ଡବବନ ଦହିଲି ମୁଁ ଯେ ଅବହେଳେ
ଅଗ୍ନିଦେବତା ଆରୋଗ୍ୟ କଲି ଭୁଜବଳେ ।
ପଞ୍ଚାଳ ଦେଶେ ବିବାଦେ ରାଧାଚକ୍ର ବିନ୍ଧି
କୃଷ୍ଣାଙ୍କୁ ଆଣିଲି ଲକ୍ଷେ ରାଜାଙ୍କୁ ମୁଁ ସାଧି ।
ଦ୍ୱାରକା ବିବାଦେ ରାମକୃଷ୍ଣଙ୍କୁ ଜିଣିଲି
ବଳେ ରୋହିଣୀ ନନ୍ଦନ ଭଗ୍ନୀକୁ ହରିଲି ।
କଉଶିକ ବିବାଦେ ମୁଁ ରଖିଲି କୈଳାସ
ଏ ମୋର ଚରିତ ଜାଣେ ଦେବ ବିଶ୍ୱବାସ ।
କିରାତରୂପେ ଜିଣିଲୁ ଆମ୍ଭେ ଈଶ୍ୱରଙ୍କୁ
ଭୟେ ପାଶୁପତ ଶର ଦେଲେ ସେ ଆମ୍ଭଙ୍କୁ ।
ଉତ୍ତରଦିଗ ରାଜାଙ୍କୁ ଆଣିଲି ମୁଁ ସାଧି
ଜମାଗୋଷ୍ଠକୁ ଆଣିଲି ରଥଚକ୍ରେ ବାନ୍ଧି ।
ପାତାଳକୁ ଦିଗବିଜେ କଲି ଯାଗକାଳେ
ଧଇଲି ମୁଁ ନବଦ୍ୱୀପ ପୃଥ୍ୱୀ ଅବହେଳେ ।

ଶରେ ସାଗର ବାନ୍ଧିଲି ହନୁର ବିବାଦେ
ନାଗବଳଙ୍କୁ ରଖିଲି ମୁହିଁ ଅପ୍ରମାଦେ ।
ନାଗାର୍ଜୁନ ମାଇଲା ଯେ ବଜ୍ର ମୁଦ୍ଗର
ଅର୍ଜୁନ ପେଷିଲା ନବନିଶିତ କୁଠାର ।
ମେଘାସ୍ତ୍ର ମାଇଲା କୋପେ ସେ ନାଗଅର୍ଜୁନ
ପୃଥ୍ୱୀ ଅନ୍ଧାର ଦିଶିଲା ଆବୋରିଲା ଘନ ।
ନିର୍ଘାତବାଣ ଅନଳବାଣ ବଜ୍ରସୂଚୀ
ଏକା ଏକା ନାରାଚ ସେ ତ୍ରୈଲୋକ୍ୟ ଘୋଟିଛି
ଦେଖି ଅର୍ଜୁନ ବହୁତ ପ୍ରଶଂସାହିଁ କଲା
ଧନ୍ୟରେ ବାଳକ ତୋରେ କେହୁ ଜନ୍ମଦେଲା ।
ସାଧୁ ସାଧୁ ତପସ୍ୱୀ ରେ ଯେ ତୋହର ମାତା
ସାଧୁ ସାଧୁ ତପସ୍ୱୀ ରେ ଯେ ତୋହର ପିତା ।
ତୋତେ ଜାତ କଲା ଧନ୍ୟ ଯେବଣ ରମଣୀ
ଏକା ନିମିଷକେ ପାରୁ ତୁ ଜଗତ ଜିଣି ।
ଯେ ତୋହର ପିତା ସେହୁ ନୁହଇ ସାମାନ୍ୟ
ତେଣୁ ବଳବନ୍ତ ପଣେ ମୋହୁ ଜଗଜ୍ଜନ ।
ବହୁତ ପ୍ରଶଂସା କରେ ପାଣ୍ଡବ ଫାଲ୍‌ଗୁନି
ଆକର୍ଷି ବିନ୍ଧିଲା ଏକ ପବନାସ୍ତ୍ର ଘେନି ।
ମହା କୋପଭରେ ସେହି ପବନ ବିହାରୀ
ଦଶବିଂଶ ମେଘ ଫାଟିଗଲେ ଶୂନ୍ୟେ ଉଡ଼ି ।
ନାଗାର୍ଜୁନ ବୋଲେ ସାଧୁ ସାଧୁ ରେ ଶବରା
ତୋତେ ନାଶି କି ଅର୍ଜିବି ରାଜ୍ୟେ ହେବ ଭାରା
କିରାତ ହୋଇ ତୁ ପୁଣି ଏଡ଼େ ବଳବନ୍ତା
ଜାଣିଥିଲେ ତୋର ମୋର ପୀରତି ବଢ଼ନ୍ତା ।
ତୋହର ପ୍ରାୟେକ ଗୁଣବନ୍ତ ପୁରୁଷଟି
କିଞ୍ଚିତ ଦୋଷେ ମୁଁ ତୋତେ ପକାଇବି କାଟି ।
ପୁଣ ପୁଣ ସେ ପ୍ରଶଂସା କରି ବାଳଶିଷ୍ୟ
କୋପେ କୁମର ଘେନିଲା କାଳ ନାଗପାଶ ।
ଗରୁଡ଼ଧ୍ୱଜ ନାରାଚ ମାରି କୁତୂହଳେ
କାଟିଲା ପାର୍ଥ ପଳାଇ ଗଲେ ସର୍ପେ ଡ଼ରେ ।
ଅବିଶ୍ରାମ ଯୁଦ୍ଧକଲେ ମିଳି ପିତା ପୁତ୍ର
ତିନିଦିନ ଯାଏ ଯୁଦ୍ଧ ହେଲା ଦିବାରାତ୍ର ।
ଜଳିଲା ସେ କୁମରର କ୍ଷୁଧା କାଳାନଳ
ଧ୍ୟାନେ ଚିନ୍ତିଲା ନାରାଚ ନାମେ ମହାକାଳ ।
କରେ ଖପର କଟାର ମହା ଭୟଙ୍କର
ହୃଦୟରେ ମୁଣ୍ଡମାଳ କେଶ ତା ଖାଙ୍କର ।
ଅନ୍ଧାର ଘର ଶରୀର ଲହ ଲହ ଜିଭ
ମନ୍ଦାର ମାଳ ତା ଗଳେ ମୂରତି ଦୁର୍ଲ୍ଲଭ ।
ବିକଟ ଦଶନ ରକ୍ତବସ୍ତ୍ର ତାର କାୟେ
ଦିଗମ୍ବର ଲୋକେ ଦେଖି ପଳାଇଲେ ଭୟେ ।
ନାଗାର୍ଜୁନ ଛାମୁରେ ସେ ହୋଇଲା ପ୍ରବେଶ
କେ ତୋତେ ଅସାଧ ମୋତେ ବହନ ତୁ ପେଷ

ବିନ୍ଧିଲା ପିନାକ ସମ ଧରି ଏକ ଧନୁ
ଶବରାକୁ ଛେଦ ବୋଲେ ସନ୍ଧ୍ୟାବାଳୀ ସୂନୁ ।
କୁମର ବଚନେ ମହାକାଳ ବାଣ କ୍ଷେପି
ଏକା ନିମିଷକେ ଦିବ୍ୟଭୁବନକୁ ବ୍ୟାପି ।
ମହାତେଜ ମୂରତି ସେ ଅତି ଭୟଙ୍କର
କଟାର ବୁଲାଇ ମିଳେ ଅର୍ଜ୍ଜୁନ ଛାମୁର ।
ଦେଖଇ ସେ ମହାକାଳ ଏ ତ ସୋମବଂଶୀ
ଅର୍ଜ୍ଜୁନକୁ ଦେଖି ମନେ ମହାକାଳ ତ୍ରାସି ।
ବୋଲଇ ଏ ପିତା ପୁତ୍ର ହେଲେ ଅନ୍ୟେ ଅନ୍ୟ
ବୋଲଇ ମହାକାଳ ତୁ ପାଣ୍ଡବ ଅର୍ଜ୍ଜୁନ ।
ବାବୁ ଅର୍ଜ୍ଜୁନ ପାତାଳେ କଲୁ ଦିଗବିଜେ
ସନ୍ଧ୍ୟାବାଳୀକି ପ୍ରଦାନ କଲେ ନାଗରାଜେ ।
ତୋହର ଆସନ୍ତେ ହୋଇଥିଲା ଗର୍ଭବତୀ
ତାର ତହିଁ ହୋଇଲା ଏ କୁମର ଉତ୍ପତ୍ତି ।
ଏ ତୋହର ପୁତ୍ର ଏହା ନାମ ନାଗାର୍ଜ୍ଜୁନ
ଈଶ୍ୱର ସେବାକରି ଏ ପାଇଲା ବିମାନ ।
ହର ଉଦ୍ୟାନ ବନେ ଏ ଗଣ୍ଡା କରେ ରକ୍ଷା
ତୁ ତାହା ଛେଦିଲୁ ବୋଲି କଲା ସେହି କକ୍ଷା ।
ଅନେକ ଶସ୍ତ୍ରେ ତୋତେ ସେ ନ ପାରିଲା ଜିଣି
ଅନିବାର ଶର ମୋତେ ସନ୍ଧାନିଲା ଆଣି ।
ଅପାଲଟ ଶର ମୁହିଁ ନ ଜାଣୁ କି ତୁହି
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ହେଲେ ନାଶ କରିଯାଇ ।
ମନ୍ତ୍ର ପଢ଼ି ସୁମରିଲେ କରେ ଆସି ନାଶ
କାର୍ଯ୍ୟ ନ କରି ବାହୁଡ଼ି ନ ଯାଏ କୈଳାସ ।
ପୁତ୍ର ହୋଇ ନ ଜାଣି ସେ ପେଷିଲାକ ତୋତେ
ମୁଁ ଏବେ ବାହୁଡ଼ି ପାର୍ଥ ଯିବଇଁ କେମନ୍ତେ ।
ମୋତେ ପଛେ ଲାଗୁ ବାବୁ ବ୍ରହ୍ମହତ୍ୟା ଦୋଷ
ମୋହର ସମାନ କରି ବାଣ ଏକ ପେଷ ।
ଅର୍ଜ୍ଜୁନ ବୋଇଲା ଆମ୍ଭ ଦୁହିଁଙ୍କର ଯୁଦ୍ଧେ
ବିନ୍ଧିଲି ସକଳ ଦେବଅସ୍ତ୍ର ରଣ ମଧ୍ୟେ ।
ତୋହର ସମାନେ ଆଉ ଦେବଅସ୍ତ୍ର ନାହିଁ
ଯେସନେ କର୍ମେ ଅଛଇ ଭୁଞ୍ଜିବିନା ମୁହିଁ ।
ମହାକାଳ ବୋଇଲା ମୁଁ ହେଲଇଁ ଦୂଷିତ
ଆନ ନାରାଚ ଗୋଟିଏ ବିନ୍ଧୁ କି ନା ତୁତ ।
ଅର୍ଜ୍ଜୁନ ବୋଇଲା ଶର ତୋ ତୁଲରେ ନାହିଁ
କି ନାରାଚ ଘେନି ତୋତେ ନିବାରିବି ମୁହିଁ ।
ବାଣ ବୋଇଲା ପେଷିଛି ନାଗୁଣୀ ନନ୍ଦନ
କିଛି ତୁ ଗୋଟାଏ ମୋତେ ପେଷ ହେ ଅର୍ଜ୍ଜୁନ ।
ଅର୍ଜ୍ଜୁନ ବୋଇଲା କ୍ଷତ୍ରୀଧର୍ମ ଏ ନୁହଇ
ବିନ୍ଧିବା ଶରମାନ ମୁଁ ଉପେକ୍ଷା କରଇ ।
ବାଣ ବୋଲେ ଭୂମିରେ ଯେ ପଡ଼ିଛି ଅର୍ଜ୍ଜୁନ
ତହୁଁ ଗୋଟାଏ ପେଷିଲେ କରିବି ଗମନ ।
ଅର୍ଜ୍ଜୁନ ବୋଇଲା ତୁ ହୋ ଶୁଣ ମହାକାଳ
ପରର ଶର ନ ବିନ୍ଧେ ନ କରେ କଟାଳ ।
ପରଦ୍ରବ୍ୟ ନ ହରଇ ଏ ମୋହର ପଣ
ପର କାର୍ଯ୍ୟେ ନ ମାରିଣ ଶତ୍ରୁ ଏକଜଣ ।
ନ ହରେ ନ ଲଙ୍ଘେ ପରସ୍ତିରୀ ପରସୀମା
ପର ବଳକୁ ମୁଁ ଚାହିଁ ନ କରେ ଗାରିମା ।
ଅର୍ଜ୍ଜୁନର ଏ ନିଷ୍ଠୁର ବାଣୀ ବାଣ ଶୁଣି
କୋପେ ଗର୍ଜ୍ଜଇ ନାରାଚ କାଳସର୍ପ ଜାଣି ।
କିପାଇଁ ସେ ନାଗାର୍ଜ୍ଜୁନ ପେଷିଲାକ ମୋତେ
କାଳେହେଁ ପ୍ରମାଦ ବାବୁ ପଡୁଅଛି ତୋତେ ।
ଆହେ ଦିଗପାଳମାନେ ସାକ୍ଷୀ ହୋଇଥିବ
ପାର୍ଥକୁ ମାରୁଛି ମୋତେ ଅଖ୍ୟାତି ନ ଦେବ ।
ଚାରିଯୁଗ ଚାରିମେଘ ତୁମ୍ଭେ ସାକ୍ଷୀଥାଅ
ନାଗାର୍ଜ୍ଜୁନ ପେଷିଅଛି ମାରିବି ନିଶ୍ଚୟ ।
ତା ପୁତ୍ର ପେଷିଲା ଦୋଷ ନାହିଁଟି ମୋହର
କହିଲି ଯେତେ ଏ ପାର୍ଥ ନ ବିନ୍ଧିଲା ଶର ।
ଏହା କହି କଟାରକୁ କୋପେ ଦେଲା ବିଞ୍ଚି
କଟୀଠାରୁ ଛିଡ଼ିଗଲା ପଡ଼େ ସବ୍ୟସାଚୀ ।
କଙ୍କାଳଠାରୁ ତାହାର ହେଲା ବେନିଖଣ୍ଡ
ମାରି କଇଳାସ ଗଲା ସେ ବାଣ ପ୍ରଚଣ୍ଡ ।
ଧାଇଁଯାଇଁ ମିଳିଲାକ ପାଶେ ନାଗାର୍ଜ୍ଜୁନ
ପ୍ରଶଂସଇ ଶବରାରେ ଧନ୍ୟ ତୋ ଜୀବନ ।
ଶବରା ହୋଇ ତୋହର ଏଡ଼େ ପୁଣି ସତ
ଏସନ ସଂଗ୍ରାମ ବିଧି ଥିଲା ତୋତେ ଜ୍ଞାତ ।
କିରାତ ହୋଇ ତୁ ପୁଣି ଏଡ଼େ ବଳବନ୍ତା
ଆପଣା ଲଲାଟେ ବୀର ଘେନି ରକ୍ତ ଚିତା ।
ହସ୍ତରେ ଘେନିଲା ବୀର ସେ ଗାଣ୍ଡିବ ଧନୁ
ପାତାଳ ପୁରକୁ ଗଲା ସନ୍ଧ୍ୟାବାଳୀ ସୂନୁ ।
ବିକଶିତ ବଦନ ଯେ ହୋଇଛି କୁମର
ମାତା ଅଗ୍ରତେ ପ୍ରବେଶ ଧାଇଁ ଧାତିକାର ।
ପଚାରଇ ରକ୍ତଚିତା ଦେଖି ସନ୍ଧ୍ୟାବାଳୀ
ଲଲାଟେ ଶୋଣିତ କିପାଁ ମୁଖ ଦିଶେ ଢାଳି ।
କାହାର ତୁଲେ ପୁତ୍ରରେ ହୋଇଲୁ ବିବାଦୀ
ବାଳୁତ କୁମର ହୋଇ ଦ୍ୱନ୍ଦ୍ୱେ ହଉ ଦ୍ୱନ୍ଦ୍ୱୀ ।
ନିଃଶ୍ୱାସକୁ ଘନ ଘନ ଛାଡ଼ଇ କୁମର
କଥା କହି ନ ପାରଇ ଅତି କୋପଭର ।
ପିତା ପୁତ୍ରଙ୍କର ଯୁଦ୍ଧ ମହା ଭୟଙ୍କର
ଶାରଳା ଦାସ ଚିନ୍ତଇ ଗୋବିନ୍ଦ ପୟର ।

## ଅର୍ଜ୍ଜୁନ ନିଧନରେ ଶ୍ରୀକୃଷ୍ଣ ଓ ବଳରାମଙ୍କର ଶିବଙ୍କ ପ୍ରତି କୋପ

ଅଗସ୍ତି କହନ୍ତି ଶୁଣ ମନୁ ଦଣ୍ଡଧର
ଏଥୁଅନ୍ତେ ଯାହା ହେଲା ଶୁଣ ସମାଚାର ।
ଅର୍ଜ୍ଜୁନକୁ ମାରି ଯେବେ ମହାକାଳ ଗଲା
ଆକାଶରେ ଥାଇଁ ଚିତ୍ରସେନ ତା ଦେଖିଲା ।
କୃମି ପଡ଼ିଯିବ ବୋଲି ପୁଷ୍ପ କଲା ବୃଷ୍ଟି
ସେଠାରୁ ସେ ବେଗେ ଯାଇଁ ବାସବକୁ ଭେଟି ।
କହିଲା ସେ ଚିତ୍ରସେନ ଚାହିଁ ବାସବକୁ
ଈଶ୍ୱରଗଣ ମାଇଲା ପୁତ୍ର ଅର୍ଜ୍ଜୁନକୁ ।
ସ୍ୱାମୀ ବେନିଖଣ୍ଡ ହୋଇ ପଡ଼ିଛି ଅର୍ଜ୍ଜୁନ
ଶୁଣି ମୂର୍ଚ୍ଛାଗତ ହେଲେ ଦେବ ମଘବାନ ।
ରୋଦନ କରନ୍ତି ଉଚ୍ଚସ୍ୱରେ ସସ୍ର ଡ଼ୋଳା
ଅଗାଧ ସମୁଦ୍ରେ କିଏ ବୁଡ଼ାଇଲା ଭେଳା ।
ଈଶ୍ୱର ପୁତ୍ର ହୋଇ ମୋ ଅର୍ଜ୍ଜୁନକୁ ମାରି
ଆଜ ଜାଣ ନାଶଗଲା କପିଳାସ ପୁରୀ ।
କୋପେ ଚାହିଁ ପୁଣି ଆଜ୍ଞା ଦେଲେ ଦେବରାଜ
ଅଙ୍ଗାରପନ୍ନଗ ବେଗେ ଦଣ୍ଡ ମୋର ସାଜ ।
ଏଣେ ଯେ ନାରଦ ମୁନି ଗଲେ ଅନ୍ତରୀକ୍ଷେ
ଦ୍ୱାରକା ଭୁବନେ ଯାଇ ମିଳିଲେ ପ୍ରତ୍ୟକ୍ଷେ ।
ସଭାରେ ଯେ ବିଜେ ରାମକୃଷ୍ଣ ବେନିଭାଇ
ତୁରିତେ ବ୍ରହ୍ମାନନ୍ଦନ ମିଳିଲେକ ଯାଇ ।
ନାରଦ ବୋଇଲେ ବେଗେ ଉଠ ହୋ ଗୋବିନ୍ଦ
ଅର୍ଜ୍ଜୁନ ତୋହର ଆଜି ହେଲା ଶିରଚ୍ଛେଦ ।
ଗଣ୍ଡାର ନିମନ୍ତେ ଗଲା ସେ ମୃଗୟା ବେଣ୍ଟେ
ହର ଗଣ୍ଡାକୁ ମାଇଲା କାଶୀ ନଦୀ ଘାଟେ ।
ନାଗାର୍ଜ୍ଜୁନ ବୋଲି ତାର ଏକଜଣ ପୁତ୍ର
ଅର୍ଜ୍ଜୁନକୁ ଛେଦିଲା ସେ କରି ଶରାଘାତ ।
ସଂଶୟ ବାକ୍ୟେ ନାରଦ କଲେ ଯହୁଁ ପୁଚ୍ଛା
ଶୁଣିଣ ଶ୍ରୀକୃଷ୍ଣଚନ୍ଦ୍ର ପଡ଼ଲେ ଯେ ମୂର୍ଚ୍ଛା ।
ଆହାରେ ଅର୍ଜ୍ଜୁନ ବୋଲି ସ୍ୱାମୀ ବଳରାମ
ମୋହେ ଢ଼ଳି ପଡ଼ିଲେକ ହୋଇ ଅସାକ୍ଷମ ।
ନିଭୟ ସୋମବଂଶରେ ତୁ ଜଗତଜିତା
ତୋତେ ଜିଣିବାକୁ କେହି ହେଲା ସାମରଥା ।
ବାବୁ ତୁ ତିନି ଭୁବନେ ଅଟୁ ଏକା ଯୋଧୀ
ହରିଲ ଅଗ୍ନି ଦେବତା ଲୁଦୁବୁଦୁ ବ୍ୟାଧି ।
ପ୍ରସନ୍ନେ ଅଗ୍ନି ଦେବତା ଦେଲା ତୋତେ ରଥ
ପୃଥିବୀକି ଧରିବାକୁ ତୁହି ସାମରଥ ।
ଗୋସିଂହକୁ ବଧ କରି ରଖିଲୁ ଦ୍ୱାରକା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ ବଳବନ୍ତ ଏକା ।
ତ୍ରିଭୁବନ ମୋହର ତୁ ବାମାମନସିଜ
ଏମନ୍ତ ବିଳାପ କେତେ କଲେ ଦେବରାଜ ।
କାହିଁଅଛି ମୁନି ମୋତେ ନିଅ ତୁ କଢ଼ାଇ
ହୃଦର ବାନ୍ଧବ ମୋର ଦେଖେ କିନା ଯାଇ ।
ବଳରାମ ବୋଇଲେକ ଅର୍ଜ୍ଜୁନର କ୍ରୋଧେ
କପିଳାସ ଉପାଡ଼ିବୁ ଆଜି ଆମ୍ଭେ ଯୁଦ୍ଧେ ।
ସାଜରେ ଦାରୁକ ମୋର ତାଳଧ୍ୱଜ ରଥ
ଭାଙ୍ଗି କପିଳାସ ପୁର କରିବି ବିଧ୍ୱସ୍ତ ।
କୋପେଣ ଗର୍ଜ୍ଜନ୍ତି ପ୍ରଭୁ ଦେବ କାମପାଳ
ବେନିକରେ ଧଇଲେ ସେ ଲଙ୍ଗଳ ମୂଷଳ ।
ସମର୍ଥକ ସଉନନ୍ଦ ବେନି କରେ ଧରି
ଦ୍ୱାରକା ପୁର ବାହାର ହେଲେ ହଳଧାରୀ ।
ନନ୍ଦିଘୋଷ ରଥପରେ ବିଜେ ଜଗନ୍ନାଥେ
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗଧନୁ ଶୋହେ ହସ୍ତେ ।
ଭୋଜ ବଂଶର ଯେ ରାଜା ଅଟେ ଉଗ୍ରସେନ
ଛପନ କୋଟି ଯାଦବ ବଳ ମୂଳେ ସୈନ୍ୟ ।
ପାଞ୍ଚଲକ୍ଷ ଯୋଦ୍ଧା ଘେନି ଯଦୁବଂଶ ପତି
ନ ଲକ୍ଷ ଘେନି ଅନ୍ଧକ ବଂଶ ନରପତି ।
ବୀରସେନ ବୋଲି ସେ ଯେ କୃଷ୍ଣବଂଶ ରାଜା
ବାହାର ହେଲେ ବାଜଇ ଲକ୍ଷେ ବୀରବାଜା ।
ବହୁତ ବଳ ଗହଳ କଳନା ନ ଯାଇ
ଦ୍ୱାରକାରୁ ବାହାରିଲେ ଯଦୁକୁଳ ସାଇଁ ।
ବାମେ ବଜ୍ରାଙ୍ଗ ଡାହଣେ ମୂଷଳ ସୌନନ୍ଦ
କୋଟିସିଂହ ପରାକ୍ରମୀ ଯେଉଁ ରାମଚନ୍ଦ୍ର ।
ଅମ୍ୱା କଦମ୍ୱା ପ୍ରଳମ୍ୱା ନାମେ ତିନିବୀର
ଯାହାର ହସ୍ତରେ ମଲେ ଏ ତିନି ଅସୁର
ରଥେ ନ ରହନ୍ତି ରାମ ଧାମନ୍ତି ଗରଜି
ପାଦଭରେ ମେଦିନୀରୁ ବୃକ୍ଷ ପଡ଼େ ଭାଜି ।
ସମଦଣ୍ଡ ଘେନି ଦେବ ସଙ୍କର୍ଷଣ କାହ୍ନୁ
ପ୍ରବେଶ ହସ୍ତିନା ଯାଇ ଦ୍ୱାରକା ଭୁବନୁ ।
ଶୁଣ ହେ କୌରବ ବୋଲୁଛନ୍ତି କାମପାଳ
ଅର୍ଜ୍ଜୁନ ଯେ ମଲା ଆହୋ ଗାନ୍ଧାରୀର ବାଳ ।
ସଦାଶିବ ଗଣପୁତ୍ର ମାଇଲା ଫାଲ୍‌ଗୁନୀ
ସମରେ ମାରି ତାହାକୁ କଲା ଖଣ୍ଡବେନି ।
ଶୁଣି ମୂର୍ଚ୍ଛାଗତ କୁରୁକୁଳ ଅଧିକାରୀ
ବଜ୍ରାଘାତ ପ୍ରାୟ ଦୁର୍ଯ୍ୟୋଧନ ଗଲା ପଡ଼ି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ଶକୁନି
ସମସ୍ତେ ଲୋଟି ପଡ଼ିଲେ ସୁମରି ଫାଲ୍‌ଗୁନି ।
ଗୁଣ ସାଗର ବାନ୍ଧବ ପାର୍ଥ ନାମ ଗୋଟି
ଗତପ୍ରାଣ ପ୍ରାୟ ପଡ଼ିଗଲେ ସର୍ବଲୋଟି ।
ବାବୁ ଅହିଂସା ଅପାପ ଅନାଥର ବନ୍ଧୁ
ସୋମବଂଶତମ ପିଣ୍ଡେ ତୁ ତ ଜାଣୁ ଇନ୍ଦୁ ।

ପାଣ୍ଡବା ଅସୁର ଗିଳୁଥିଲା ଯେତେବେଳେ
ନବସାଗର ସୈନ୍ୟ ତୁ ମାଇଲୁରେ ହେଳେ ।
ଉଦର ବିଦାରି ତାର ଚିରିଲୁ ତୁ ବୁକୁ
ତହୁଁ ଉଦ୍ଧାରି ଆଣିଲୁ ତୁ ଶତଭ୍ରାତାଙ୍କୁ ।
ପାଣ୍ଡବାସୁରକୁ ମାରି ପାଣ୍ଡବ ତୋ ନାମ
ନିଷ୍କଳଙ୍କ ନିର୍ଦ୍ଦୋଷୀ ତୁ ଅନୁଗତ ଧର୍ମ ।
ମୁଁ ତୋର ଗୁଣ ବର୍ଣ୍ଣିବି କିସ ଆରେ ଭାଇ
ଅର୍ଜ୍ଜୁନ ବିହୀନେ ଆଉ ମୋର ଜୀବ ନାହିଁ ।
ଅନାଥନାଥ ଶରଣ ରକ୍ଷଣ ସେ ବନ୍ଧୁ
ହସ୍ତିନାରେ ଲକ୍ଷ୍ମୀ ଆଜ ଛାଡ଼ିଗଲା କନ୍ଧୁ ।
ବାବୁ ସହୋଦର ମୋର ପ୍ରାଣର ସଙ୍ଗାତ
ଦଶଦିଗ ଅନ୍ଧକାର କଲୁ ବୀର ପାର୍ଥ ।
ଅମର ସ୍ୱର୍ଗଭୁବନ ଜିଣିଲୁ ତୁ ହେଳେ
ଏଡ଼େକ ସମ୍ପଦ ନାଶକଲୁ ଏକାବେଳେ ।
ବାରତା ପାଇ କାନ୍ଦଇ ରାଜା ଧୃତରାଷ୍ଟ୍ର
ଏତେକାଳେ ବାବୁ ହେଲା ମୋତେ ପୁତ୍ରକଷ୍ଟ ।
ରାମ ବୋଇଲା ହେ କ୍ରୋଧ ଛାଡ଼ କୁରୁରାଜ
ବେଗ ହୋଇଯିବା ବେଗେ କୁରୁବଳ ସାଜ ।
ସାଜ ସାଜ ହୋଇ ତହିଁ ପଡ଼େ ଗୁରୁ ଡାକ
ବାଜଇ ଯେ ବୀରତୂର ନିଶାଣ ଅନେକ ।
ଏକାଦଶ ଅକ୍ଷୌହିଣୀ ସଇନ୍ୟ ପଲାଣି
ଆକାଶ ଯେ ଉଛୁଳିଲା ମୁଖରାବ ଶୁଣି ।
ଅସୁମାର ଥାଟ ସୈନ୍ୟ ସାଜିଲେ କୌରବେ
ସମଦଣ୍ଡ ଘେନି ବିଜେ ହେଲେ କୁରୁଦେବେ ।
ନନ୍ଦିଘୋଷ ରଥ ଚଢ଼ିଗଲେ ଯେ ଅଚ୍ୟୁତ
ବିଜୟ ବାରୁଣାବନ୍ତେ ପ୍ରଭୁ ଜଗନ୍ନାଥ ।
ଆସ୍ଥାନ ଉପରେ ବିଜେ ଧର୍ମଦେବ ରାୟେ
ସନ୍ନିଧେ ଶ୍ରୀ ନାରାୟଣ କରନ୍ତି ବିଜୟେ ।
ସମସ୍ତେ ତ ଅଛ ମୋର ଅର୍ଜ୍ଜୁନ ଯେ କାହିଁ
ନାରଦ ବୋଇଲେ ପାର୍ଥ ଜୀବନରେ ନାହିଁ ।
ଗଣ୍ଡା ମାରି ପଠାଇଲୁ ଗଲା ସେ ଅର୍ଜ୍ଜୁନ
ଯାଇଣ ପଶିଲା ହର ଉଦ୍ୟାନ କାନନ ।
ହର ଗଣ୍ଡା ଗୋଟିକି ଯେ ମାଇଲା ଫାଲ୍‌ଗୁନି
ମାଇଲେ ଯେ ଶିବଗଣ ମହାକାଳ ଘେନି ।
ଶୁଣିଣ ଢ଼ଳି ପଡ଼ିଲେ ଧର୍ମଙ୍କ ନନ୍ଦନ
ବଜ୍ରାଘାତ ପ୍ରାୟ ପଡ଼ିଗଲା ଭୀମସେନ ।
ଅର୍ଜ୍ଜୁନର ନାମ ଧରି କାନ୍ଦନ୍ତି ଯୁଧିଷ୍ଠି
ସର୍ବଗୁଣ ସୁଲକ୍ଷଣ ମୋର ଭାଇଗୋଟି ।
ଉତ୍ତର ଦିଗକୁ ବାବୁ ଜିଣିଲୁ ତୁ ହେଳେ
ଧଇଲୁ ତୁ ନବଦ୍ୱୀପ ପୃଥ୍ୱୀ ଧନୁହୁଳେ ।
ଶକତା ତୁ ବଳବନ୍ତା ଅତୁଳା ପାକର୍ମ
ଧାନୁଷ୍କ ଚୂଡ଼ାମଣି ତୁ କ୍ଷତ୍ରୀ ନାହିଁ ସମ ।
ଅପାର ଶୋକ କରନ୍ତି ନୃପତି ଯୁଧିଷ୍ଠି
ଏମନ୍ତ ସମୟେ ଦଣ୍ଡଘେନି ଧାର୍ତ୍ତରାଷ୍ଟ୍ରି ।
କାହିଁକି ହେଳା କରୁଛୁ ତୁହୋ ଧର୍ମରାୟ
କେ ନାଶକଲା ଆମ୍ଭର ବୀର ଧନଞ୍ଜୟ ।
ଭାଙ୍ଗି କପିଳାସ ଆଜ କରିବା ବିଧ୍ୱସ୍ତ
ଜଣେ ନ ଥୋଇ ମାରିବା ଗଣହିଁ ସମସ୍ତ ।
କୁନ୍ତୀ ଦ୍ରୌପଦୀ ଆବର ସୁଭଦ୍ରା ସହିତେ
ଉଚ୍ଚସ୍ୱରରେ ରୋଦନ କରନ୍ତି ସମସ୍ତେ ।
କାନ୍ଦନ୍ତି ଗାନ୍ଧାରୀ ଭାନୁମତୀ ଆଦି ବାଳୀ
ଉଚ୍ଚସ୍ୱରେ କାନ୍ଦନ୍ତି ଯେ ଶୁଭଇ ବୋବାଳି ।
ଆହେ ପ୍ରାଣନାଥ ବୋଲି କାନ୍ଦନ୍ତି ସୁଭଦ୍ରା
ତୁ ଯେ ଭାଙ୍ଗିଲୁ ମୋହର ଯୋଗ ପଞ୍ଚମୁଦ୍ରା ।
ରାମ କୃଷ୍ଣଙ୍କ ଛାମୁରେ ପଡ଼ି ବାଳୀ ଲୋଟି
କାହିଁଗଲା ମୋର ପଞ୍ଚଭୂତ ଆତ୍ମା ଗୋଟି ।
ଗୋବିନ୍ଦ ବୋଇଲେ ତୁହି ନ କାନ୍ଦ ଗୋ ସ୍ତ୍ରୀ
ଏହିକ୍ଷଣି ଜୀଆଇ ମୁଁ ଆଣିବି ତୋ ପତି ।
ସବୁରି କ୍ରୋଧକୁ ଦେବ ଶାନ୍ତ ମୋ କରାଇ
ସମଦଣ୍ଡ ଘେନି ବିଜେ ଯଦୁକୁଳ ସାଇଁ ।
ଯଦୁବଳ କୁରୁବଳ ପାଣ୍ଡବ ସଇନି
ପାଞ୍ଚଯୋଜନ ପର୍ଯ୍ୟନ୍ତେ ପୂରିଲା ମେଦିନୀ ।
ଦୁଃସହ ପ୍ରତିଜ୍ଞା କରେ ବୀର ବୃକୋଦର
ଆଜ ନିର୍ଚ୍ଛେ ଭାଙ୍ଗିବି ମୁଁ କପିଳାସ ପୁର ।
ଏକ ପଛକରି ଏକ ହୁଅନ୍ତି ଯେ ଆଗ
ଗଦା ବୁଲାଇଣ ଭୀମ ଧାଏଁ ହୋଇ ବେଗ ।
ନାଗାର୍ଜ୍ଜୁନ ଯେ ପାତାଳ ସ୍ୱର୍ଗପୁରେ ଗଲା
ମାତାର ଆଗରେ ଯାଇ ସମସ୍ତ କହିଲା ।
ମାଗୋ ପାର୍ବତୀଙ୍କ ଗଣ୍ଡା ରକ୍ଷା କରିଥିଲି
ସ୍ୱନକ୍ଷତ୍ର ବନ୍ଦାପନା ନିମନ୍ତେ ଅଇଲି ।
ମାଗୋ ବଡ଼ଇ ସୁନ୍ଦର ଏକଇ କିରାତ
ସେହି ପାର୍ବତୀଙ୍କ ଗଣ୍ଡା କରିଣ ନିହତ ।
ମାରି ଯେବେ ଗଣ୍ଡାଗୋଟି ଘେନି ଯାଇଥାନ୍ତା
ତାହାର ମୋହର କାହୁଁ ଭେଟ ବା ହୁଅନ୍ତା ।
ମୁହିଁ ଯାଇ ପ୍ରବେଶିଲି ତହିଁ ଯେତେବେଳେ
ଅନେକ ସମର କଲା ସେ ମୋହର ତୁଲେ ।
ଦେବଶରେ ନ ପାରିଲି ଜିଣି ମୁଁ ତାହାକୁ
ଅନେକ ପ୍ରତିଜ୍ଞା କରି କହିଲା ମାତାକୁ ।
ପ୍ରଥମେ ବୋଇଲା ମୁହିଁ ଖାଣ୍ଡବ ଦହିଲି
ଅଗ୍ନିର ନିମନ୍ତେ ଇନ୍ଦ୍ର ଦେବତା ଜିଣିଲି ।
ପଞ୍ଚାଳ ଦେଶେ ବିନ୍ଧିଲି ମୁହିଁ ରାଧାଚକ୍ର
ଲାଜେ କରାଇଲି ଲକ୍ଷେ ରାଜାମୁଖ ବକ୍ର ।
ହନୁମନ୍ତ ତୁଲେ ମୁଁ ଯେ ହୋଇଲି ବିବାଦୀ
ଶରେ ଶର ବାନ୍ଧିଲି ମୁଁ ସପ୍ତବାରାନିଧି ।

ଉତ୍ତର ଦିଗେ ଚାଳିଶସହସ୍ର ରାଜା ସାଧି
ଜମାଗୋଷ୍ଠକୁ ଆଣିଲି ରଥେ ମୁହିଁ ବାନ୍ଧି ।
ଏକାକେ ମୁଁ ଦିଗବିଜେ କଲଇଁ ପାତାଳେ
ମେଦିନୀକୁ ଧରଇଲି ମୁଁ ଏହି ଧନୁହୁଳେ ।
ନାଗାର୍ଜ୍ଜୁନ ମୁଖରୁ ଯେ ଏମନ୍ତ ଶୁଣି
ଅସାକ୍ଷମ ହୋଇ ତଳେ ପଡ଼ିଲା ନାଗୁଣୀ ।
ଆହା ସ୍ୱାମୀ ବୋଲି ଢ଼ଳିପଡ଼େ ମହୀଲୋଟି
ଅନାଥ କଲୁ ଜଗତ ସୋଦର କିରୀଟି ।
ତୋ ଚନ୍ଦ୍ରବଦନ ଗୋଟି ଦେଖି ନ ପାରିଲି
ତୋହର ମୁଁ ବିଳାସିନୀ ନିରାଶ ହୋଇଲି ।
କେବଣ ପାପକ୍ଷଣେ ମୁଁ କଲି ତୋତେ ଜାତ
ସ୍ୱାମୀଟି ମୋହର ନାଶ ଗଲେ ତୋର ହସ୍ତ ।
ତୋହର ବିହୁନେ ସ୍ୱାମୀ ହୋଇଲି ମୁଁ ଦୁଃଖୀ
କେଣେ ଗଲେ ପ୍ରାଣନାଥ କରିଣ ନିର୍ମାକ୍ଷୀ ।
ନାଗାର୍ଜ୍ଜୁନ ବୋଲେ ମାତ କିମ୍ପା ଶୋକକଲୁ
ମୋହର ପିତା ବୋଲି ତୁ କେମନ୍ତେ ଜାଣିଲୁ ।
ପୁରରୁ ବାହାର ହୋଇ ଦେଖିଲା ପ୍ରତ୍ୟକ୍ଷ
ଶୁଖିଲା ତରୁ ପରାୟେ ମରିଛି ସେ ବୃକ୍ଷ ।
ଦେଖିଣ ନାଗୁଣୀ ଢ଼ଳି ପଡ଼ିଲାକ ଭୂମି
ଅନାଥ କରି କେଣିକି ଗଲ ମୋତେ ସ୍ୱାମୀ ।
ସର୍ବଜ୍ଞ ହୋଇ କିପାଇଁ ନ ଚିହ୍ନିଲ ପୁତ୍ର
ଅକାରଣେ ନାଶକଲୁ କରିଣ ଅନାଥ ।
କାହିଁଅଛି ସ୍ୱାମୀ ମୋର ଦେଖା ମୋତେ ନେଇ
ନିଜ ପ୍ରାଣ ଛାଡ଼ିବି ମୁଁ ସ୍ୱାମୀ ମୁଖ ଚାହିଁ ।
ଆଗରେ କୁମର ପଛେ ଚାଲେ ସନ୍ଧ୍ୟାବାଳୀ
ପାତାଳୁ ବାହାର ହୋଇ ଚଳଇ ବାତୁଳୀ ।
ରାମକୃଷ୍ଣ ଦୁର୍ଯ୍ୟୋଧନ ଯୁଧିଷ୍ଠି ସହିତେ
ସମଦଣ୍ଡ ଘେନି ତହିଁ ବିଜୟ ସମସ୍ତେ ।
ଅନେକ ପ୍ରତିଜ୍ଞା କରି ଆସନ୍ତି ଗରଜି
ଶବଦେ ଡ଼ିଙ୍ଗର ଝଡ଼ି ପଡୁଅଛି ଭାଜି ।
ଅନେକ ସୈନ୍ୟ ଗହଳ ଦେଖି ସନ୍ଧ୍ୟାବାଳୀ
ନାଗାର୍ଜ୍ଜୁନ ବଦନକୁ ଚାହିଁଣ ସେ ଭାଳି ।
ସ୍ୱାମୀ ବିନାଶ ମୋହର କଲୁ ଦୁଷ୍ଟଦଳା
ତୁହି ମରିବୁ ୦୧ର ପୁତ୍ର ବେଗେ ଏଥୁ ପଳା ।
କୁମର ବହୁତ ସୈନ୍ୟ ଦେଖି କଲା ଭୟ
ପଳାଇଲା କପିଳାସ ପୁରକୁ ତନୟ ।
ସଦାଶିବ ଛାମୁରେ ସେ ହୋଇଲା ପ୍ରବେଶ
ସଦାନନ୍ଦ ପଚାରିଲେ କିପାଇଁ ବିରସ ।
କରପତ୍ର ଯୋଡ଼ି ବୋଲେ ସେ ନାଗଅର୍ଜ୍ଜୁନ
କିରାତ ଗୋଟିଏ କଲା ଗଣ୍ଡାକୁ ନିଧନ ।
ମୁହିଁ ସେହି ଶବରକୁ କଲଇଁ ନିପାତ
ତା ପାଇଁ ଆସିଲେ ରାମ କୃଷ୍ଣ ବେନିଭ୍ରାତା ।

କୌରବ ପାଣ୍ଡବ ଘେନି ଅନେକ ସଇନି
ଆକାଶରୁ ବିଜେ କଲେ ଦେବ ସ୍ୱୟମ୍ଭୁଯୋନି ।
ଅନେକ କଥା କହିଲା ନାଗୁଣୀର ବାଳ
ହସନ୍ତି ଯେ ବିଶ୍ୱନାଥ ପାଇ କୁତୂହଳ ।
କାଶୀନଦୀ ତୀରେ ଯାଇ ବିଜେ ଦେବହଳୀ
ଅର୍ଜ୍ଜୁନ ସନ୍ନିଧେ ବିଜେ କଲେ ବନମାଳୀ ।
ଦେଖିଲେ ଶରଦଚନ୍ଦ୍ର ବଦନ ବିକାଶ
ମୋହେଣ ଢ଼ଳି ପଡ଼ିଲେ ପ୍ରଭୁ ହୃଷୀକେଶ ।
କ୍ଷତ୍ରିୟବର ସୁନ୍ଦର କଷା ଜଗଜ୍ଜେଠି
କିଞ୍ଚିତରେ ବୁଡ଼ାଇଲୁ ତୋର ନାମ ଗୋଟି ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ପଡ଼ିଲେକ ଢ଼ଳି
ଅନେକ କାରୁଣ୍ୟବାଣୀ ପଢ଼ଇ ବୋବାଳି ।
ପ୍ରବେଶ ହୋଇଲେ ସନ୍ଧ୍ୟାବାଳୀ ସନ୍ନିଧାନେ
ଦେଖିଲା ଅର୍ଜ୍ଜୁନ ପଡ଼ିଅଛି ଯୁଦ୍ଧସ୍ଥାନେ ।
ଅଧରକୁ ପୃଷ୍ଠକରି ଓଷ୍ଠେ ଦନ୍ତ ଚାପି
ନୟନ କଟାକ୍ଷି ସେହି ଦିଶେ କାମରୂପୀ ।
ବିସ୍ତାରିତ ବକ୍ଷସ୍ଥଳେ ଲମ୍ବ ବେନି ବାହା
ବିଚାରେ କୁମର କେହ୍ନେ ମାରିଗଲା ଏହା ।
ଦିବ୍ୟ ଅବତାର ପ୍ରାୟ ଦିଶଇ ମୂରତି
ବିସ୍ମୟେ ନାଗୁଣୀ ଯାଇ ଭେଟିଲା ତା କତି ।
ଚକ୍ଷୁବାଟରେ ବାହାରି ପ୍ରାଣ ଛାଡ଼ିଗଲା
ସନ୍ଧ୍ୟାବାଳୀ ସେ କଥାକୁ ଜାଣି ନ ପାରିଲା ।
ବୋଇଲା ଭୋ ନାଥ ଅଟୁ ତୁ କ୍ଷତ୍ରିୟବର
ବାଳୁତପୁଅ ଛାରକୁ ଏଡ଼େ ରୋଷ ତୋର ।
କୋପ ସଂହର ବୋଲି ସେ ସନ୍ନିଧେ ପ୍ରଣମି
ପୁତ୍ରକୁ ମୋହର ପରା ନ ମାଇଲୁ ସ୍ୱାମୀ ।
ଆସ ଆସ ସ୍ୱାମୀ ଏବେ ନିଜପୁରେ ଯିବା
ବାଳୁତ ପୁତ୍ରର ଦୋଷ ମନେ ନ ଧରିବା ।
ଅନେକ ବିନୟେ ଯାଇ ଧରେ ଭୁଜଦଣ୍ଡ
ଉଛୁଡ଼ନ୍ତେ ଭାଙ୍ଗିପଡ଼ି ହେଲା ବେନିଖଣ୍ଡ ।
ଆହେ ମୋର ସ୍ୱାମୀ ବୋଲି ବୋଲେ ସନ୍ଧ୍ୟାବାଳୀ
ଖଣ୍ଡେକ ତୋଳି ଧରିଲେ ପ୍ରଭୁ ବନମାଳୀ ।
ଅନେକ ଶୋକ କରନ୍ତି ଦେଖିଣ ସଇନି
ନାଗୁଣୀ କାନ୍ଦଇ ଏକଖଣ୍ଡ ହୃଦେ ଘେନି ।
ଗତଆତ୍ମା ପ୍ରାୟେକ ଯେ ପଡ଼ିଲା ଯୁବତୀ
ମୂର୍ଚ୍ଛାଯାଇ ପଡ଼ିଲେ ସେ ଦେବ ଶିରୀପତି ।
ଯୁଧିଷ୍ଠି ଦେବଙ୍କ ଶୋକ କହିତ କେ ପାରି
ହରାଇ ବସିଲୁ ଗଣ୍ଡାଲାଗି ଏବେ ଶିରୀ ।
ଜଗତଜନ ବାନ୍ଧବ ବାବୁ ଧନଞ୍ଜୟ
ଯାହାର ସଖା ଅଟନ୍ତି ପ୍ରଭୁ ଦେବରାୟ ।
କେମନ୍ତେ ବର୍ତ୍ତିବୁ ବାବୁ ତୋହର ଅଭାବେ
ଦଶଦିଗ ଅନ୍ଧାର ତୁ କଲୁ ବାବୁ ଏବେ ।

ଏପରି ଅନେକ ଶୋକ କଲେକ ନୃପତି
ତୋର ଅଭାବେ ବାବୁ ରେ ତୁଟିଲା ବିଭୂତି ।
ମେରୁଗିରି ଫୁଟାଇ ତୁ ପାରୁ ଆରେ ବାବୁ
ଏଡ଼େ ବଳବନ୍ତ ହୋଇ ହରାଇଲୁ ସବୁ ।
ବାବୁ ମୋର ସୋଦରରେ ଅଟୁ କୁଳଦୀପ
ଏ ପଞ୍ଚରାଜ୍ୟ ଠାକୁର ବୁଦ୍ଧି ତୋ ଅମାପ ।
ତୋର ଅଭାବେ ବର୍ତ୍ତିବୁ ଆମ୍ଭେ ଅବା କାହିଁ
ତୋ ତହୁଁ ସଂସାରେ ଆନ ଜଗଜ୍ଜିତା ନାହିଁ ।
ଅର୍ଜ୍ଜୁନ ଅଭାବେ ମହାକୋପ ହଳସାଇଁ
ଆଜ ନିଶ୍ଚେ ଉପାଡ଼ିବି କଇଳାସ ମୁହିଁ ।
ଅନେକ ପ୍ରତିଜ୍ଞା କଲେ ଦେବ କାମପାଳ
କଇଳାସ ପର୍ବତରେ ଚଢ଼ିଲେ ସକଳ ।
ବଳରାମଙ୍କ ସଙ୍ଗତେ କୌରବ ସମସ୍ତେ
ନକୁଳ ସହଦେବ ଯେ ସଇନ୍ୟ ସହିତେ ।
ଆକାଶୁଁ ଅମରଗଣ ଘେନି ମଘବାନ
ଐରାବତ ସହିତରେ ବିଜେ ସୁରରାଣ ।
ବାସବର ପ୍ରତିଜ୍ଞା ତ କହିଲେ ନ ସରି
ବଡ଼ ସମାରୋହେ ବେଢ଼ି କଇଳାସ ପୁରୀ ।
ଅନେକ ସଇନ ତାର ନ ଯାଇ କଳନା
ବାଜଇ ଯେ ବୀରତୂର ଟମକ ବାଜଣା ।
ନାରଦ କହିଲେ ଯାଇ ଆହେ ଦେବହର
କଇଳାସ ପୁର ଏବେ ସମ୍ଭାଳ ତୋହର ।
ନାରଦଙ୍କ ମୁଖୁଁ ଶିବ ଏସନକ ଶୁଣି
କୋପାନଳ ହେଲେ ଦେବ ଦେବ ଶୂଳପାଣି ।
ଚଉଦକୋଟି ଯେ ଶିବଗଣ ବେଗେ ସାଜି
ନବଲକ୍ଷ ଡ଼ମ୍ବରୁ ଯେ ଅନ୍ତରୀକ୍ଷେ ବାଜି ।
ବୃଷଭ ଆରୋହି ବିଜେ କଲେ ଦିଗମ୍ବର
ତ୍ରିଶୂଳ ପିନାକ ଆଦି ଧଇଲେ ହସ୍ତର ।
ତ୍ରିନାୟକ ବିନାୟକ ମହାକାଳ ନନ୍ଦି
ଜୟନ୍ତ ଅଜୟ ଚଣ୍ଡ ପ୍ରଚଣ୍ଡ ଏ ଆଦି ।
ଅନେକ ଆୟୁଧ ଧରି ଅଛନ୍ତି ଯେ କରେ
ବହୁତ ନାରାଚ ବିନ୍ଧୁଛନ୍ତି କୋପଭରେ ।
ଈଶ୍ୱର ଦେବତା ଦେଖି ଦେବ ଚକ୍ରଧାରୀ
ସେଠାବରୁ ଅର୍ଜ୍ଜୁନକୁ ଗଲେ ତ୍ୟାଗକରି ।
ଯୁଧିଷ୍ଠିଦେବ ଅର୍ଜ୍ଜୁନ କାୟାକୁ ସମ୍ଭାଳି
ଅନେକ ବିକଳ ହୋଇ କାନ୍ଦେ ସନ୍ଧ୍ୟାବାଳୀ
ବୈନତେୟ ବାହନରେ ବିଜୟ ଅଚ୍ୟୁତ
ବଳଦେବଙ୍କ ଅଗ୍ରତେ ବିଜେ ବିଶ୍ୱନାଥ ।
ରାମହିଁ କୋପିତ ସଦାନନ୍ଦଙ୍କୁହିଁ ଦେଖି
ବଜ୍ର ଲଙ୍ଗଳ ଧଇଲେ ରଙ୍ଗକରି ଆଖି ।
ରୁହ ରୁହ ବୋଲି ବଳରାମେ କରି ଶାନ୍ତି
ନନ୍ଦିଘୋଷରୁ ଉତୁରି ପ୍ରଭୁ ଶିରୀପତି ।
ଶ୍ରୀହସ୍ତରେ ଅର୍ଘ୍ୟ ଘେନି ଦେବ ଯେ ଗୋବିନ୍ଦ
ପ୍ରଣିପାତ କଲେ ଧରି ବୃଷଭର ପାଦ ।
ନାରାୟଣଙ୍କୁ ଦେଖିଣ ଦେବ ସଦାଶିବ
କୋପେ ଉତ୍ତର କରନ୍ତି ଆରେ ବାସୁଦେବ ।
ଆରେ ରେ ପାମର ତୁହି ଅଟୁ ବଡ଼ଦୋଷୀ
ସ୍ୱର୍ଗସଭାକୁ ତୁ ତେଣୁ ନ ପାରିଲୁ ଆସି ।
ବଧିଲୁ ତୁ ବିଶ୍ରବାର ନନ୍ଦନ ରାବଣ
ବ୍ରହ୍ମହତ୍ୟା ଦୋଷ ତୋତେ ଦେଲେ ଦେବଗଣ
ପୁଣି ତୁ ଜନ୍ମିଲୁ ଆସି ବସୁଦେବ ଘରେ
ପୂତନାକୁ ବଧିଲୁ ତୁ କ୍ଷୀର ସଙ୍ଗତରେ ।
ଗୋଗୋଷ୍ଠରେ ପଶି ତୁହିଁ ଷଣ୍ଢ କଲୁ ବଧ
ତୋ ମୁଖ ନ ଚାହିଁ ନାହିଁ ତୋ ଠାରେ ଉପ୍ରୋଧ
ହରିଲୁ ତୁ ଗୋପସ୍ତିରୀମାନ ଦାରାଅର୍ଥେ
ଗୋପାଳ ପ୍ରକୃତି ତୋର ଅଟଇ ଯୁକତେ ।
ଗଉଡ଼ ବାଉଡ଼ ପୁଣି ହାଉଡ଼ ବୋଲାଉ
ଗଉଡ଼ ପୁଅଙ୍କ ସଙ୍ଗେ ଅଇଁଷା ତୁ ଖାଉ ।
ଅପାର ପାତକ ପୁଣି ଅଛି ତୋର ଅଙ୍ଗେ
ତୋହର ମୁଖକୁ ଏଣୁ ନ ଚାହାନ୍ତି ସ୍ୱର୍ଗେ ।
ଗୁଣ ନ ବିଚାରି ଦ୍ୱନ୍ଦ୍ୱମାନ ଦେଉ ଛନ୍ଦି
ବହୁତ ଝିଙ୍ଗାସ କଲେ ସଦାଶିବ ନନ୍ଦି ।
ଈଶ୍ୱର ବଚନେ ଦେବ କୋପେଣ ପ୍ରଜ୍ଜ୍ୱଳି
ପ୍ରତିଉତ୍ତର ଦିଅନ୍ତି ରାଗେ ବନମାଳୀ ।
ଆହେ ଈଶ୍ୱର ତୋହର ଏହି କଥାମାନ
ମୁହିଁ ବୁଝିଲି ତୁ ଏବେ ବୁଝ ତ୍ରିଲୋଚନ ।
ରାବଣକୁ ମାଇଲି ମୁଁ ସେ ବ୍ରହ୍ମରାକ୍ଷସ
ତହିଁକି ଯେ ଦେଲ ମୋତେ ବ୍ରହ୍ମହତ୍ୟା ଦୋଷ
ବ୍ରହ୍ମା ତୋର ସତ୍ୟଯୁଗେ କଲା କେଉଁ ଦୋଷ
ତାର ଶିର ମୋଡ଼ିଲୁ ତୁ କିପାଁ ବିଶ୍ୱବାସ ।
ତୁହି ସ୍ୱୟଂ ବ୍ରହ୍ମହତ୍ୟା କଲୁ ଯେଉଁ ଯୋଗୀ
ସେ ବ୍ରହ୍ମକପାଳ ତୋର କରେ ଅଛି ଲାଗି ।
ସେ ରାବଣକୁ ତୁ ବର ଦେଲୁ ପଶୁପତି
ମନ୍ଦୋଦରୀ ସେବା କରେ ତୋହର ପାର୍ବତୀ ।
ଆପେ ପୁଣି ନୃତ୍ୟ କରୁ ରାବଣ ଅଗ୍ରତେ
ଦେବତାଏ ଖଟିଥାନ୍ତି ଭୃତ୍ୟ ପ୍ରାୟେ ନିତ୍ୟେ ।
ସେ ରାବଣ ଅଟଇ ଯେ ମୋହର ବଇରୀ
ଦେବକଣ୍ଟକ ତାହାକୁ ପକାଇଲି ମାରି ।
କି ଦୋଷ କଲା ତୋହର ପ୍ରଜାପତି ଦକ୍ଷ
ତାହାର ମୁଣ୍ଡକୁ ହସ୍ତେ ମୋଡ଼ିଲୁ ପ୍ରତ୍ୟକ୍ଷ ।
ତୋହର ସେହି କି ଦୋଷ ନୁହଇ କପାଳି
ଆମ୍ଭଙ୍କୁ ବୋଲୁଅଛ ଯେ ପାପୀଲୋକ ବୋଲି
ତୁ ପୁଣି ବୋଇଲୁ ମୁହିଁ ସ୍ତିରୀହତ୍ୟା କଲି
କଂସର ସେ ଦୂତ ମୁହିଁ ତାହାକୁ ମାଇଲି ।

ବେନି ସ୍ତନରେ ସେ ବିଷ ପୂରାଇ ଅଇଲା
ବିଶ୍ୱାସଘାତକ କରି ମାରି ମନ କଲା ।
ସୁଖେ କ୍ଷୀର ଦିଅନ୍ତେ ସେ ମୋହର ବଦନେ
ଗାଢ଼େ ଚୁମ୍ବିଲି ସେ ନାଶଗଲା କ୍ଷୀରପାନେ ।
ମୋର ପ୍ରାଣ ନାଶିବାକୁ ଯେବେ ସେ ଅଇଲା
ମୁହିଁ ତାହାକୁ ମାଇଲି କି ଦୋଷ ହୋଇଲା ।
ସିଦ୍ଧ ସତ୍ୟଯୁଗେ ତୁହି ଉମାଙ୍କୁ ଭଣ୍ଡିଲୁ
ତିନିଦିନେ ଆସିବି ମୁଁ ତାଙ୍କୁ କହିଗଲୁ ।
ଦେବ ବରଷେ ରହିଲୁ ନବ ସମ୍ବତ୍ସର
ଅଭିମାନେ ସେ ପାର୍ବତୀ ଛାଡ଼ିଲେ ଶରୀର ।
ତୋହର ନିମନ୍ତେ ମଲା ଦଉଡ଼ି ଲଗାଇ
ଗଳାରେ ସେ ମୁଣ୍ଡମାଳ କରିଅଛୁ ନେଇ ।
ସେ ସ୍ତିରୀଗୋଟିକୁ ହତ୍ୟା କଲୁ ତୁ ଯୁକତେ
ଅକାରଣେ ଦୋଷ ମୋର ଦେଉ କି ନିମନ୍ତେ ।
ତୁହିବୋଲୁ ମୋତେ ଗୋରୁ ହତ୍ୟା ଦୋଷ କଲୁ
ଗୋ ଗୋଷ୍ଠରେ ପଶି ଷଣ୍ଢାସୁରକୁ ମାଇଲୁ ।
କଂସର ସେ ସେନାପତି ଷଣ୍ଢରୂପ ଧରି
ମୋତେ ମାରିବାକୁ ଥିଲା ଗୋଷ୍ଠେ ଲୁଚିକରି ।
ମୁହିଁ ତାହାକୁ ସଂଗ୍ରାମେ କଲଇଁ ଯେ ବଧ
ସଂଗ୍ରାମରେ ଗୋ ବ୍ରାହ୍ମଣ ହୁଏ ଶିରଚ୍ଛେଦ ।
ତୁ ଯେ ତପ କରୁଥିଲୁ ପାତାଳ ଗଙ୍ଗାରେ
ଶୁଖାଇଥିଲୁ ତୁ କୁଶବିଡ଼ା ତା କୂଳରେ ।
ବେଦମାତା କପିଳା ଯେ ଆସିଥିଲା ଚରି
ନ ଜାଣି ଗୋମାତା ଖାଇଦେଲା କୁଶବିଡ଼ି ।
ରାଗ ସମ୍ଭାଳି ନ ପାରି ଗଲୁ କୋପାନଳେ
ଗୋମାତା କପିଳାକୁ ତୁ ମାଇଲୁ ତ୍ରିଶୂଳେ ।
ଗୋମାତା ଶରୀରେ ଯାଇ ତୋର ଶୂଳ ପଡ଼ି
ଶୂଳ ବିଘାତେ ପଡ଼ିଲା ତାର ମୁଣ୍ଡ ଛିଡ଼ି ।
ଆନକୁ ଯେ ନାନାକଥା କହୁ ଯେ ଧୂର୍ଜଟି
ଭୈରବ ଖର୍ପରେ ତୋର ତାର ମୁଣ୍ଡ ଲୋଟି ।
ଅକାରଣେ ତୁ ଗୋହତ୍ୟା କଲୁ ହେ କପାଳି
ମୋତେ ଝିଙ୍ଗାସୁଛୁ ନୁହେଁ ମୁଁ ତୋହର ଭଳି ।
ତୁ ଯେ ବୋଇଲୁ ହରିଲୁ ଗୋପସ୍ତିରୀପନ୍ତି
ଅନ୍ୟ ଜାତି ସେ ମୋହର ମାନ୍ୟ ତ ନୁହନ୍ତି ।
ଆମ୍ଭର ଯେ ନିଜ ମାତା ଅନାଦି ଶକତି
ତାଠାରୁ ହୋଇଲୁ ତିନିପୁତ୍ର ଉତପତ୍ତି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ସହୋଦର
ସେ ସତୀକି ଘେନି ତୁହି କରିଥିଲୁ ଘର ।
ଏ ମହା କଟୁ ବଚନ ଶୁଣି ଶୂଳପାଣି
କୋପେ ଗର୍ଜ୍ଜନ୍ତି ସେ ଦେବ କାଳସର୍ପ ଜିଣି ।
ଗଳଇ ତ୍ରିପଣ୍ଡ ଝାଳ ତ୍ରିପୁରାନ୍ତ ମୂର୍ତ୍ତି
ତାମ୍ର ଚକ୍ର ପ୍ରାୟ ନେତ୍ର ମିତ୍ର ରୂପ ଜ୍ୟୋତି ।

ଶରୀରକୁ ଉଲୁସାଇ ଓଷ୍ଠେ ଦନ୍ତ ଚାପି
ତୀକ୍ଷ୍ଣ ପରଶୁଏ ମାରି ସେ ପୁରୁଷ କୋପୀ ।
ଦେଖିଣ ପକ୍ଷ ପାତିଲା ବିନତା କୁମର
ଭାଙ୍ଗି ସେ ତୀକ୍ଷ୍ଣ ପରଶୁ ହେଲା ଶତେ ଚୂର
କଦଳୀପତ୍ର ପରାୟେ କମ୍ପେ ତାଙ୍କ ଅଙ୍ଗ
ପୁଣିହିଁ ପ୍ରହାର କଲେ ସେ ଦେବ ଖଟ୍ୱାଙ୍ଗ ।
ଗରୁଡ଼ ପିଠିରେ ପଡ଼ି ସେହି ଚୂରହେଲା
କୋପେ ବିଶ୍ୱନାଥ ପୁଣି ପିନାକ ଧଇଲା ।
ସହସ୍ରେକ ନାରାଚ ସେ ବିନ୍ଧିଲେ ପୂରାଇ
ଗୋବିନ୍ଦକୁ ପଛକରି ହଳୀ ଗଲେ ଧାଇଁ ।
ସଦାମତି କାଦମ୍ବରୀ ପାନେ ମତ୍ତଭୋଳ
ଅନ୍ତରୀକ୍ଷେ ବୁଲାଇଲେ ସୌନନ୍ଦ ମୂଷଳ ।
ବଳେ ଉଛୁଡ଼ି ଘେନିଲେ ତାହା ପଶୁପତି
ବଳରାମଙ୍କ ହସ୍ତରୁ ନେଇ ତା ଝଟତି ।
ପିଟିଲେ ସେହି ହଳକୁ ତାଙ୍କୁ ଲେଉଟାଇ
ପୁଣିହିଁ ଉଛୁଡ଼ି ତାହା ନେଲେ ହଳସାଇଁ ।
କାର୍ତ୍ତିକେୟ ସଙ୍ଗେ ଇନ୍ଦ୍ର ଦେବତାର ଯୁଦ୍ଧ
ଅନେକ ସମର କଲେ ଦୁହେଁ ରଣମଧ୍ୟ ।
ଦୁର୍ଯ୍ୟୋଧନ ସଇନିକି ନନ୍ଦି ଯାଇ ବେଢ଼ି
ଭୀମସେନ ମହାକାଳ ମହାଘୋର ରଡ଼ି ।
ବିନାୟକ ଦୁଃଶାସନ ଦୁହିଁଙ୍କ ସମର
ଜୟନ୍ତ ସଙ୍ଗେ ଗାଙ୍ଗେୟ ରଣ ମହାଘୋର ।
ଚଣ୍ଡ ସେନାପତି ସଙ୍ଗେ ଚିତ୍ରସେନ ଯୁଦ୍ଧ
ମହାକାଳ ପ୍ରଳୟାନ୍ତ ଶସ୍ତ୍ର କଲେ ବିଦ୍ଧ ।
କୁତୂହଳ ସମର ଯେ ହରିହର ଘେନି
ଦଇବ ବିପତ୍ତିରୁ ସେ ହେଲେ ଅନ୍ୟୋଅନି ।
ଷଣ୍ଢ ସେନାପତି ତୁଲେ ଯୁଦ୍ଧ କଲେ ଦ୍ରୋଣ
ପ୍ରଚଣ୍ଡା ତୁଲେ ସମର ଶଲ୍ୟ ମହାରଣ ।
ପାଶ ଗଦା ମୁଦ୍ଗର ଅଧାଚନ୍ଦ୍ର ମୁନା
ବିନ୍ଧନ୍ତେ ନିର୍ବଳ ବଜ୍ର ଅଭେଦ ଯେ ସେହ୍ନା ।
ଶସ୍ତ୍ର ଅସ୍ତ୍ର ବିଘାତରେ କମ୍ପଇ ବ୍ରହ୍ମାଣ୍ଡ
ତ୍ରାସିଣ ଭୂଲୋକ ପୁଣି ମହୀ ନବଖଣ୍ଡ ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ଯୋଦ୍ଧା ଧାମନ୍ତି ଯେ ବେଗେ
ଘଣ୍ଟା ଶବଦେ କମ୍ପନ୍ତି ମତ୍ତ ମହାନାଗେ ।
ଦୁଃସହ ସଂଗ୍ରାମ ତହିଁ ହେଲା ଅପ୍ରମିତ
କ୍ଷତ୍ରିଙ୍କର ପାଦଭରେ ପୃଥିବୀ କମ୍ପିତ ।
କରେ ଘେନି ଗଦା କୋପେ ବୀର ବୃକୋଦର
ଶିବଗଣଙ୍କର ତୁଲେ ବିଷମ ସମର ।
ବାଉନ ବାଉନ ଭାର ଗଦା ଧରି ହସ୍ତେ
କୃତାନ୍ତକ ପ୍ରାୟେ ବୀର ଦିଶଇ ଯେମନ୍ତେ ।
ରେ ରେ କାର କରି ବୀର ପାଣ୍ଡବ ଯେ ଉଠି
ଶିବଗଣମାନଙ୍କୁ ସେ ଗୋଡ଼ାଇଣ ପିଟି ।

ମହା ପ୍ରଳୟେ ଗର୍ଜଇ ଯେହ୍ନେ ମେଘମାଳ
କରେ କୁଠାର ବୁଲାଇ ଆସେ ମହାକାଳ ।
ନେଇ ତା ପ୍ରହାର କଲା ଭୀମର ଉପରେ
ବାମ ଅଙ୍ଗକୁ ପାତିଲା ବୃକୋଦର ଧୀରେ ।
କୁଠାର ପଡ଼ନ୍ତେ ଦେଖି ଧାଇଁଲା ପାବନି
ମହାକାଳ ହସ୍ତରୁ ତା ଉଚ୍ଛୁଡ଼ିଣ ଘେନି ।
ସେ କୁଠାର ବୁଲାଇଲା ଭୀମ ତାକୁ ପିଟି
ଶରୀରେ ପଡ଼ି ତାହାର ଅଗ୍ନି ଜଳେ ଉଠି ।
ବ୍ରଜକୁଠାରେ ଅଚେଷ୍ଟା ହେଲା ମହାକାଳ
ରଡ଼ିଘାତରେ କମ୍ପିଲେ ଆକାଶେ ଦିକ୍‌ପାଳ ।
ମହାକାଳକୁ ନିଚେଷ୍ଟ ଦେଖି ନାଗାର୍ଜ୍ଜୁନ
ଭୀମ ସନ୍ନିଧେ ପ୍ରବେଶ କାର୍ତ୍ତିକ ସମାନ ।
ଦ୍ୱିତୀୟ ପିନାକ ସମ କରେ ଧରି ଧନୁ
ବକ୍ଷେ ନାରାଚ ବିନ୍ଧିଲା ନାଗୁଣୀର ସୂନୁ ।
ଦେଖି ବୃକୋଦର ପାତିଦେଲା ବାମଅଙ୍ଗ
ସମସ୍ତ ନାରାଚ ପଡ଼ି ହେଲା ତହିଁ ଭଙ୍ଗ ।
କୋଟିଏ ନାରାଚ ପୁଣି କୁମର ବିନ୍ଧିଲା
ଆକାଶ ଅନ୍ଧାର ହେଲା କିଛି ନ ଦିଶିଲା ।
ଦେଖି ପ୍ରଶଂସେ ପାଣ୍ଡବ ବୀରବର ଭୀମା
ଧନ୍ୟ ଧନ୍ୟ ତେଜସ୍ୱୀ ରେ ତୋହର ମହିମା ।
ପୁଣ ପୁଣ ନାରାଚ ଯେ ପେଷେ ପୁତ୍ରମଣି
ସମସ୍ତ ନାରାଚ ଚୂର କଲେ ଅଙ୍ଗେ ପୁଣି ।
ଦେଖି ପ୍ରଶଂସଇ ତାକୁ ନାଗୁଣୀର ବାଳ
ମତ୍ତମାତଙ୍ଗ ଜାଣି ତା ତେଜ ଅନର୍ଗଳ ।
କୋପେ ବିକାଶିଲା ବୀର ରୁଦ୍ରର ମୂରତି
କରେ ଧଇଲା କୁମର ତ୍ରିଶୂଳ ଶକତି ।
କୋଟିଏ ସୂର୍ଯ୍ୟକୁ ଜିଣି ଯେଉଁ ଶୂଳତେଜ
ଯେବଣ ଶସ୍ତ୍ର ପଡ଼ିଲେ ତ୍ରୈଲୋକ୍ୟ ଦହିଯ୍ୟ ।
ଅନ୍ତରୀକ୍ଷେ ବୁଲାଇଲା କୁମର ତା ହସ୍ତେ
ତ୍ରାସେ ପାତାଳେ ଲୁଚିଲେ ସମସ୍ତ ପର୍ବତେ ।
ନାଗାର୍ଜ୍ଜୁନ ବୋଇଲାକ ଶୁଣସି ରେ ବାଇ
ଶକତି ପେଷିଅଛିଟି ମୋର ଦୋଷ ନାହିଁ ।
ସୁରନର ସୁନ୍ଦର ତୁ କନ୍ଦର୍ପ ପରାୟ
ଏ ଶକତି ତେଜେ ଦଗ୍‌ଧ ହେଉ ତୋର କାୟ ।
ସମ୍ଭାଳ ସମ୍ଭାଳ ବୋଲି ଶୂଳହସ୍ତ ପେଷି
ଭୀମ ଛାତିରେ ପଡ଼ିଲା ସେହୁ ଶସ୍ତ୍ର ଆସି ।
ଶକ୍ତି ଜ୍ୟୋତ୍ସ୍ନାରେ ହୋଇଲା ବୀର ଅସାକ୍ଷମ
ମୂର୍ଚ୍ଛାଗତ ହୋଇ ତଳେ ପଡ଼ିଲା ସେ ଭୀମ ।
ଶକତିର ତେଜେ ନଉସହସ୍ର ଯେ ଯୋଦ୍ଧା
ମୂର୍ଚ୍ଛାଯାଇ ପଡ଼ିଲେ ସେ ନ ହୋଇ ବିରୋଧୀ ।
ଭୀମ ଅସାକ୍ଷମେ ମାନଗୋବିନ୍ଦ ଯେ ରାୟ
ଅନେଶ୍ୱତ ଭାଇ ଘେନି ଆପଣେ ବିଜୟ ।
ଅନେକ ଶସ୍ତ୍ର ପୂରାଇ ବୀରବର କୋପେ
ବେଢ଼ିଲେକ ଲକ୍ଷେପୁର କରି ଗୁରୁତାପେ ।
ଯେସନେକ ଜଳବୃଷ୍ଟି ହୁଅଇ ଶ୍ରାବଣେ
ଆଦିତ୍ୟ ଦେବତା ଦେଖି ଲୁଚିଲେ ଗଗନେ ।
ଦେଖି କୁପିତ ହୋଇଲା ନାଗୁଣୀର ବାଳ
ଯେହ୍ନେ ମତ୍ତଗଜ ଧାଏଁ ହୋଇ କୋପାନଳ ।
କଦଳୀ ବନେ ପବନ ଗର୍ଜିଦିଶେ ଯେହ୍ନେ
ଭାଙ୍ଗି ଚୂର କଲେ ଥାଟ ଯେତେ ମହାରଣେ
ଏକା କୁମର ସବୁରି ଶିର ଦିଏ ଛେଦି
ପବନ ବେଗେ ନାରାଚ ବୀର ଚାପେ ସନ୍ଧି ।
ପବନ ଘାତେ ଯେସନେ ପଡ଼େ ପକ୍ୱଫଳ
କନ୍ଧ ମୁଣ୍ଡ ଛିଡ଼ି ଯେହ୍ନେ ପଡ଼େ ଭୂମିତଳ ।
ଯେତେକ ନାରାଚମାନ ବିନ୍ଧନ୍ତି କୌରବେ
ନାଗାର୍ଜ୍ଜୁନ ଦେହେ ପଡ଼ି ଚୂର୍ଣ୍ଣ ହୁନ୍ତି ସର୍ବେ ।
ଘାନ୍ତିଏକ ନାଗାର୍ଜ୍ଜୁନ କଲା ଶରବୃଷ୍ଟି
ଶତଭାଇଙ୍କି ବିନ୍ଧିଲା ଶର ଶତକୋଟି ।
ରୁମେକ ନାରାଚ ବିନ୍ଧେ ସବୁରି ଉପରେ
ମୂର୍ଚ୍ଛାଗତ ହୋଇ ପଡ଼ିଲେ ସର୍ବ ବୀରେ ।
ଏକ ଘାନ୍ତିକେ ପଡ଼ିଗଲେ ଘେନି ଶତଭ୍ରାତ
ଶଙ୍ଖ ନାଦ କଲା ଦେଖି ନାଗୁଣୀର ସୁତ ।
ରାଜାର ପଡ଼ନ୍ତେ ଦେଖି ଭାଙ୍ଗିଲେ ସଇନି
ଧାମଇଁ କୁମର କରେ ଗଦାବର ଘେନି ।
ରାହୁ ଯେହ୍ନେ ଉଠେ କୋପେ ଶଶଧର ଦେଖି
ପଳାଇଲେ କଉରବେ ସଂଗ୍ରାମ ଉପେକ୍ଷି ।
ବାସଭଗ୍ନ ପକ୍ଷୀ ଯେହ୍ନେ ପଳାନ୍ତି ଆରତେ
କଉରବେ ନ ରହିଣ ପଳାନ୍ତି ସମସ୍ତେ ।
ଦନ୍ତରେ ତିରଣ ଧରି ହୁଅନ୍ତି ନିସତ
କୋପେ ଧାମଇଁ ନାଗୁଣୀ ଦେବୀର ଯେ ସୁତ ।
କୌରବ ସୈନ୍ୟ ଧ୍ୱଂସିଲା ଯେ ଅନେକ ରଣେ
ମାଇଲାକ ପାଞ୍ଚଲକ୍ଷ ଯୋଦ୍ଧା ଏକଜଣେ ।
ରାଜାର ନିଧନ ଦେଖି ଭୀଷ୍ମ ମହାରଥୀ
ଗଙ୍ଗାର ନନ୍ଦନ ଆସି ଓଗାଳିଲେ ଧାତି ।
ନବ ମହାପଦ୍ମ ସେନା ଅଛନ୍ତି ତା ତୁଲେ
ନାଗାର୍ଜ୍ଜୁନ ସନ୍ନିଧିରେ ଭୀଷ୍ମ ବିଜେ କଲେ ।
ମହାତେଜ ଅନଳ କି ଆସେ ନାଗାର୍ଜ୍ଜୁନ
ପ୍ରଭାତ ସନ୍ଧ୍ୟା ଆକାଶ ପ୍ରାୟ ଦିଶେ ବର୍ଣ୍ଣ ।
ଶ୍ରୀଭୁଜେ ଶୋଭା ପିନାକ ସମ ଏକ ଧନୁ
ସମରେ ଅନିବାରଣ ନାଗୁଣୀର ସୂନୁ ।
ଲକ୍ଷେ ନାରାଚ ବିନ୍ଧିଲା ଭୀଷ୍ମଙ୍କୁ ପୂରାଇ
ଆରେ ଆରେ ମାନବାରେ ଯିବୁ ଆଜ କାହିଁ ।
ପୁଣ ପୁଣ କୁମର ଯେ ବାଣ କରେ ବୃଷ୍ଟି
ଭୀଷ୍ମଙ୍କର ରଥ ବେନିଖଣ୍ଡ କରି କାଟି ।

ହୁଂକାର ଶବଦ କରି ଶରକୁ ଚଳାଇ
ଲକ୍ଷେ ନାରାଚ ବିନ୍ଧିଲା ଅଧର କମ୍ପାଇ ।
ଭୀଷ୍ମଙ୍କ ଉପରେ ଯାଇ ପଡ଼ିଲା ବିକ୍ରମେ
ରୁଧିର ଧାର ବହଇ କଣ୍ଟି ରୋମେ ରୋମେ ।
କୋପେ ଧନୁକୁ ଧଇଲେ ସାନ୍ତନୁର ଶିଷି
ଅନୁକ୍ଷଣେ ଭୀଷ୍ମଦେବ ନାରାଚ ବରଷି ।
ଅସଂଖ୍ୟ ନାରାଚ ପୁଣି ବିନ୍ଧିଲେ ଗାଙ୍ଗେୟ
ଏକା ନାରାଚେ ଛେଦିଲା ତା ବାଳ ତନୟ ।
ଅବିଶ୍ରାନ୍ତ ଚକ୍ର ଘେନି ମାଇଲେ କୁମର
ଭୀଷ୍ମଙ୍କ ଉପରେ ପଡ଼ି ବାହାର ରୁଧିର ।
ସମରେ ନିଚେଷ୍ଟ ହେଲେ ଶାନ୍ତନୁର ବାଳ
ପୁଣି ସାଷ୍ଟାମ ହୋଇଲେ ତେଜ ଅନର୍ଗଳ ।
ବେଗେ ଭୀଷ୍ମ ଧାଇଁଗଲେ ହୋଇ କୋପମୂର୍ତ୍ତି
ନାଗାର୍ଜ୍ଜୁନକୁ ପିଟିଲେ ଅମୋଘ ଶକତି ।
ଦେଖି ନାଗାର୍ଜ୍ଜୁନ ବେଗେ ପାତିଦେଲା ମୁଣ୍ଡ
ଶକତି ମୁଣ୍ଡରେ ପଡ଼ି ହେଲା ବେନି ଖଣ୍ଡ ।
ଅମୋଘ ଶକତି ଯହୁଁ ଦେହେ ହେଲା ଭଗ୍ନ
ସମରେ ଘୁଞ୍ଚିଲେ ତହୁଁ ଗଙ୍ଗାର ନନ୍ଦନ ।
ଭୀଷ୍ମ ଘୁଞ୍ଚନ୍ତେ ଘୁଞ୍ଚିଲେ ସକଳ ସଇନି
ଗୋଡ଼ାଇ ବିନ୍ଧଇ ବୀର ବାଣ କରେ ଘେନି ।
ରଥ ଗଜ ସବୁ ଭାଙ୍ଗିପଡ଼େ ଭଗ୍ନହୋଇ
ନିର୍ଦ୍ଦୟ ଭାବକୁ ବହି କଟାରେ ଛେଦଇ
ବିନ୍ଧନ୍ତି ଶର ଅନେକ ସଇନୀ ସମରେ
ପଡ଼ି ଚୂର ହେଉଛନ୍ତି କୁମର ଉପରେ ।
ଯୋଜନ ପର୍ଯ୍ୟନ୍ତେ ଥାଟ ନେଲାକ ଭଙ୍ଗାଇ
ବେନି କ୍ରୋଶହିଁ ଓସାର ଜାଣ ରଣଭୂଇଁ ।
ତାଡ଼ ଝୁମ୍ପା ସରଳ ଯେ ମୁକୁଟ ବାହୁଟି
ରକତେ କର୍ଦ୍ଦମ ବୀର ପଡୁ ମହୀଲୋଟି ।
ଥାଟ ଭଗ୍ନ ଦେଖିଣ ଯେ ପୁତ୍ର ଅଶ୍ୱତ୍ଥାମା
ନାଗାର୍ଜ୍ଜୁନର ଛାମୁରେ ମିଳି କୃତବର୍ମା ।
ବେଢ଼ିଲେ ସେ କୁମରକୁ ଆସି ବେନି ରଥୀ
ମୁକୁଟବନ୍ଧା ଯୋଦ୍ଧାଏ ପାଞ୍ଚଲକ୍ଷ ହସ୍ତୀ ।
ଲକ୍ଷେପୁର କରି ବେଢ଼ିଗଲେ ସର୍ବଥାଟ
ଆକାଶ ଅନ୍ଧାର କଲେ ବାଣ ବିନ୍ଧି ଆଣ୍ଟ ।
କମ୍ପଇ ମନ୍ଦର ଗିରି ଶସ୍ତ୍ରଙ୍କ ବିଘାତେ
ନିର୍ଭୟେ କୁମର ଅଛି ଶଙ୍କା ନାହିଁ ଚିତ୍ତେ ।
ଅପାର ନାରାଚ ପଡ଼ି ଚୂର ହେଲା ଅଙ୍ଗେ
ରେ ରେକାର ଶବ୍ଦକରି ନାଚେ ରଣରଙ୍ଗେ ।
କୋଟି ନାରାଚ ପୂରାଇ ବିନ୍ଧିଲା ଧନୁରେ
ତିନିଲକ୍ଷ ଯୋଦ୍ଧା ପଡ଼ି ମଲେ ଏକଠାରେ ।
ରଥ ଗଜ ଅଶ୍ୱ ପଡ଼ି ଗଲେ ଭୂମି ଲୋଟି
ଦେଖି କର୍ଣ୍ଣ ଅଶ୍ୱତ୍ଥାମା କୋପଭରେ ଉଠି ।

ନାଗଅର୍ଜ୍ଜୁନ ବାୟବ୍ୟ ଶରେକ ମାଇଲା
ସହସ୍ରେକ ଯୋଦ୍ଧା ଘେନି କର୍ଣ୍ଣ ଉଡ଼ିଗଲା ।
ମାଇଲାକ ପାଶୁପତ ସେ ଅଶ୍ୱତ୍ଥାମାକୁ
ସେନାଭେଦି ଫୁଟିଗଲା ତାର ନିଜ ବୁକୁ ।
ଉତ୍ତାନଶାୟୀ ହୋଇଲା ଦ୍ରୋଣଙ୍କ ନନ୍ଦନ
ଶସ୍ତ୍ର ବିଘାତେ ମହୀରେ ପଡ଼ିଗଲେ ସୈନ୍ୟ ।
ଅସଂଖ୍ୟ ଯୁଦ୍ଧ କଲାକ ସେ ନାଗଅର୍ଜ୍ଜୁନ
ଏକାଳେ ଧ୍ୱଂସଇ ରଣେ କଉରବ ସୈନ୍ୟ ।
ନବକୋଟି ରଥ ନବଲକ୍ଷ ମତ୍ତହସ୍ତୀ
ସାତବୃନ୍ଦ ଅଶ୍ୱ ନବକ୍ଷଉଣୀ ପଦାତି ।
ପାଞ୍ଚଯୋଜନ ପଡ଼ିଲେ ମାଡ଼ି ସୈନ୍ୟ ମରି
ମିଶାଇ କାର୍ତ୍ତିକ ସଙ୍ଗେ ଗୁଣ ନାଦ କରି ।
ଦେବଙ୍କର କାର୍ତ୍ତିକର ଅପ୍ରମିତ ଯୁଦ୍ଧ
ବହୁତ ଗନ୍ଧର୍ବ କଲା କାର୍ତ୍ତିକେୟ ବଧ ।
ନାଗାର୍ଜ୍ଜୁନ ସଙ୍ଗେ ଯୁଦ୍ଧେ ଅଙ୍ଗାର ପନ୍ନଗ
ନାଗୁଣୀ ନନ୍ଦନ କରେ କ୍ଷତ ତାର ଅଙ୍ଗ ।
ଦ୍ୱାଦଶ ମୁଖ ନାରାଚ କଲାକ ସେ ବୃଷ୍ଟି
ଘାଏ ଅଙ୍ଗାର ପନ୍ନଗ ପଡ଼େ ମହୀଲୋଟି ।
ସୋଦର ନିଧନେ ଜୟସେନ ଚିତ୍ରରଥ
କୋପେ ବିନ୍ଧିଲେ ନାରାଚ କୋଟି ଶତ ଶତ ।
ନାଗୁଣୀ ନନ୍ଦନ ପାତେ ନେଇ ବକ୍ଷସ୍ଥଳ
ପଡ଼ିଣ ଧୂଳି ହୋଇଲେ ନାରାଚ ସକଳ ।
ଚିତ୍ରରଥ ମାଇଲାକ ତିମିର ଶକତି
ଦରାଣ୍ଡି ତା ନାଗାର୍ଜ୍ଜୁନ ଧଇଲା ଝଟତି ।
ମାଇଲା ସେ ଶକତିକି ଧରି ମହାବଳୀ
ବାସବନନ୍ଦନ ପଡ଼େ ମହୀତଳେ ଢ଼ଳି ।
କାର୍ତ୍ତିକେୟ କରେ ଅଛି ତ୍ରିଶୂଳ ଶକତି
ବ୍ରଜ ଶକତି ଧରିଛି ଦେବ ସୁରପତି ।
ବୃଷଭ ବାହନେ ବିଜେ କାଶୀ ବିଶ୍ୱବାସୀ
ପିନାକ ଧନୁ ନାରାଚ ଧରିଣ ବିକାଶି ।
ବ୍ରହ୍ମଶର ଏକ କୋପେ ଧନୁରେ ପୂରାଇ
ଜଗନ୍ନାଥ ସମୀପକୁ ଆସୁଛନ୍ତି ଧାଇଁ ।
ସଦାଶିବଙ୍କର କୋପ ଦେଖିଣ ଅଚ୍ୟୁତ
ଧଇଲେକ ନାରାୟଣ ଶର ଜଗଦ୍‌ଭୂତ ।
ରୁଦ୍ରଶରେକ ବିନ୍ଧିଲେ ପୁଣି ମହାଦେବ
ବିନ୍ଧିଲେକ ନାରାୟଣ ଶର ବାସୁଦେବ ।
ଅନିବାରଣ ଶର ଯେ ଅଟନ୍ତି ସେ ବେନି
ବେନି ଶର ପଡ଼ି ତଳେ ଉଠିଲା ବହ୍ନି ।
ବେନି ଭୁବନ ପୂରିଲା ସେ ତେଜ ଅନଳ
ପର୍ବତେ ଗୋପ୍ୟ ହୋଇଲେ ଭୁବନ ପାତାଳ
ତିନି ଭୁବନ କମ୍ପିଲା ସାଗର ସହିତ
ବୃନ୍ଦାରକମାନେ ହେଲେ ଭୟରେ କମ୍ପିତ ।

ପବନ ଦେବତା ସହି ନ ପାରିଲେ ଚଳି
ପୁଣ୍ୟ ପୁରୁଷମାନେ ଯେ ଶାନ୍ତି ଶାନ୍ତି ବୋଲି ।
ଈଶ୍ୱର ଘେନିଲେ କରେ ତ୍ରିଶୂଳ ଶକତି
ଧଇଲେକ ସୁଦର୍ଶନ କରେ ଯଦୁପତି ।
ସଂଗ୍ରାମ ଦେଖିଣ ଭୟେ ଦିଗପାଳମାନେ
ଗୁହାରି କଲେ ପିତାଙ୍କ ଅଗ୍ରତେ ବହନେ ।
ନାରଦ ବୋଇଲେ ଆଜ ଲଗାଇବା କଳି
ବେଗେ ତୁ ପ୍ରହାର କରୁକିନା ଦେବଶୂଳି ।
ଯୁଦ୍ଧେ ପୁଣି ପିତା ପୁତ୍ରେ ହେଲେ ହଣାହଣି
ତୋର କୈଳାସ ଉପାଡ଼ି ଲୋଡ଼େ ହଳପାଣି ।
ଅନୀତି କଥା ହର ତୁ କେମନ୍ତେ ସହିବୁ
ଗଉଡ଼ ବଳକୁ ବେଗେ ମାରି ପକାଇବୁ ।
ପୁଣି ଯାଇଁ ମିଳିଲେ ସେ ଜଗନ୍ନାଥ କତି
କେମନ୍ତେ ରୁଦ୍ରର ଦୋଷ ସହିବୁ ଶ୍ରୀପତି ।
ଏମନ୍ତେ ସେ ସମସ୍ତଙ୍କୁ ଦେଉଥାଇ ବର
ତାର ବର ଘେନି ଧ୍ୱଂସ ହୁଏ ତିନିପୁର ।
କାଳଦମନ ନାରକା ଜରା ବଜ୍ରନାଭ
ଏ ଆଦି ସବୁକୁ ବର ଦେଇ ମହାଦେବ ।
ଏହାକୁ କରେ ବର୍ଦ୍ଧିତ ଚରାଚର ପ୍ରାଣୀ
ଏଠାରେ ବିନାଶ ପାଇ ସକଳ ମେଦିନୀ ।
ମାରି ଶିବଗଣ କପିଳାସ ଭାଙ୍ଗିପକା
ନ ଥାଉ ରୁଦ୍ରଦେବତା ତୁହି ଥାଅ ଏକା ।
ବୋଲଇ ତୋତେ ଗଉଡ଼ ହାଉଡ଼ ବାଉଡ଼
ଧାରଣା ପୁରୁଷ ତୁହି କେବେହେଁ ନ ଛାଡ଼ ।
ଏତେ ବୋଲି କୁତହଳେ କରନ୍ତି ସେ ନାଟ
ଲାଗୁ ଲାଗୁ ଧାଆଁ ଧାଆଁ ବେଗେ ବେନିଥାଟ ।
କଳି ଧୋକଡ଼ିରୁ ଧୂଳି ମାଇଲେ ମୁଠାଏ
ପୁଣି ଲାଗିଲା ରଜନୀ ପରଭାତ ଯାଏ ।
ନାରାୟଣ ହସ୍ତେ ଚକ୍ର ସୁଦର୍ଶନ ଦେଖି
ବିଜେକଲେ ବେଦବର ବ୍ରହ୍ମାଣ୍ଡ ଉପେକ୍ଷି ।
ମରାଳ ବାହନେ ବିଜେ ସେ ଦେବ ବିରଞ୍ଚି
ରୁଦ୍ରଦେବତା ଛାମୁରେ ବିଜେକଲେ ପାଞ୍ଚି ।
ତୁହି ଦେବ ଯୋଗେଶ୍ୱର ପ୍ରସନ୍ନ କପାଳୀ
ତୁ ସେ ସକଳ ଭୁବନ ଦେବଙ୍କ ମଉଳି ।
ତୁ ସେ ନିରାକାର ଦେବ ବରଦ ଅଭୟ
ପରମାନନ୍ଦ ପୁରୁଷ ସର୍ବଦା ସଦୟ ।
ଜାତ ଅନ୍ତ ପୁରୁଷ ତୁ ସଂସାର କରତା
ସଦାନନ୍ଦ ପୁରୁଷ ତୁ ସର୍ବ ବରଦାତା ।
ଶରଣ ପଞ୍ଜର ତୁହି ଜଗଜ୍ଜନ ବନ୍ଧୁ
ଜୀବଜନ୍ତୁ ଆଦି ଆମ୍ଭେ ତୋର ପାଦ ବିନ୍ଦୁ ।
ତୁ ଦେବ ତ୍ରିପୁର ବଧ କଲୁଟି କପଟେ
ଅନ୍ଧକ ବିଦାରିଲୁ ତୁ ପଡ଼ିଣ ସଙ୍କଟେ ।

ଯାବଚ୍ଚନ୍ଦ୍ର ଦିବାକର ବ୍ରହ୍ମା ଆଦିକରି
ବେଳେ ବେଳେ ନାଥ ତୁହି ଏହାଙ୍କୁ ଉଦ୍ଧରି ।
ସୋମ ସୂର୍ଯ୍ୟ ଅନଳ ଏ ତିନି ତୋର ଚକ୍ଷୁ
ଅଲଙ୍ଘିତ ପୁରୁଷ ତୁ କୋପ କରିଅଛୁ ।
ତୁ ଯେବେ ଅନାଦି ସିଦ୍ଧ କରୁ କାର୍ଯ୍ୟସିଦ୍ଧି ।
ଧାରଣା ପୁରୁଷ କେହ୍ନେ ଭାବୁଛୁ ଅବଧି ।
ଯୋଗେଶ୍ୱର ପୁରୁଷ ତୋ ଚରଣେ ନମାମି
ଶତସହସ୍ର ତୋହର ଚରଣେ ପ୍ରଣମି ।
ବ୍ରହ୍ମାଙ୍କର ବଚନେ ସେ ସ୍ୱାମୀ ଦିଗବାସ
ବ୍ରହ୍ମାଙ୍କୁ ଚାହିଁଣ କଲେ ବଚନ ପ୍ରକାଶ ।
ଜଗନ୍ନାଥର ଚରିତ ଶୁଣ ବେଦବର
ବେଢ଼ି ବିଧ୍ୱସ୍ତ କରନ୍ତି କପିଳାସ ମୋର ।
ବିନୟେ ବ୍ରହ୍ମା କହନ୍ତି ଆହେ ବଳରାମ
ନୀଳାମ୍ବର ପୁରୁଷ ତୁ ଦେବଙ୍କ ଉତ୍ତମ
ସର୍ବଦା ତୁ କାଦମ୍ବରୀ ରସପାନେ ଭୋଳ
ଦେବାଧିଦେବଙ୍କ ଶିରୋମଣି କାମପାଳ ।
ରଇବତ ବିବାଦେ ତୁ ଧରି ଗୋବର୍ଦ୍ଧନ
ତାଳବନେ ଧେନୁକାକୁ କଲୁ ଯେ ନିଧନ ।
ସଉନିଧି ବଇକୁଣ୍ଠେ ଥାଉ ଯୋଗଲୟେ
ଦର୍ଶନ କରନ୍ତି ତୋତେ ଯାଇଁ ଦେବତାଏ ।
ଠାକୁର ତୁ ପୃଥ୍ୱୀ ବୀର ନିବାରଣ ଅର୍ଥେ
ବିଷ୍ଣୁଙ୍କର ଜ୍ୟେଷ୍ଠ ତୁହି ଥାଉ ସାଥେ ସାଥେ
ତୁହି ଦେବ ଯୋଗେଶ୍ୱର ସର୍ବଜ୍ଞ ପୁରୁଷ
ତୁହି ପୃଥ୍ୱୀ ଆପ ତେଜ ବାୟବ୍ୟ ଆକାଶ ।
ଦକ୍ଷିଣେ ସୌନନ୍ଦ ବାମେ ତୋର ବଜ୍ରହଳ
କୋଟି କୋଟି କେଶରୀର ତୋର ଅଟେ ବଳ
ଅମ୍ବା କଦମ୍ବା ପ୍ରଳମ୍ବା ଏହି ତିନିବୀର
କିଞ୍ଚିତରେ ନାଶକଲୁ ଏ ତିନି ଅସୁର ।
ତୁ ଦେବ ଅନନ୍ତ କୋଟି ବ୍ରହ୍ମାଣ୍ଡ ଧାରଣ
ଅଣାକାର ପୁରୁଷ ତୋ ନାମ ସଂକର୍ଷଣ ।
କାଳାନଳ ଧ୍ୱଂସନ ତୋ ଶିରେ ସପ୍ତଫଣୀ
ଅନନ୍ତ କୋଟି ପ୍ରଳୟ ମଧ୍ୟେ ତୁହି ମଣି ।
ଯୋଗଆସନ ତୋ ନୀଳକଳ୍ପବଟ ତଟେ
ଦିଗନ୍ତ ଅସୁର ତୁହି ମାଇଲୁ ଯେ କୂଟେ ।
ବିଶ୍ୱଦେବ ପୁରୁଷ ଯେ ତୋର ଦରଶନେ
ବଞ୍ଚିଲେ ସେ କଉଶିକ ଶାପୁଁ ପଞ୍ଚଜନେ ।
ଅନନ୍ତ ରୂପ ଧଇଲୁ ହଟକ ବିବାଦେ
ଅଷ୍ଟକୁଳ ନାଗେ ତରିଗଲେ ତୋ ପ୍ରସାଦେ ।
ବିନାଦୋଷେ ଧ୍ୱଂସିଲୁ ତୁ ଦେବ ତୃଣକେଶୀ
ଯୋଗୀ ଯୋଗେଶ୍ୱର ତୁହି ଯୋଗୀରୂପ ଧ୍ୱଂସି
ତୁ ଦେବ ପରମାନନ୍ଦ ତ୍ରୈଲୋକ୍ୟର ବନ୍ଧୁ
ସର୍ପଙ୍କ ନାସାରୁ ବହେ ଜଳ ସପ୍ତସିନ୍ଧୁ ।

ନୀର କ୍ଷୀର ଲବଣ ଯେ ଘୃତ ମହୋଦଧି
ତୋର ହୃଦୟ ମଧ୍ୟରେ ସପ୍ତଜଳ ଭେଦି ।
ଶୁକ୍ଳାମ୍ବର ପୁରୁଷ ତୋ ଚରଣେ ବିନୟ
ଶରୀର ପ୍ରକାଶେ ଶୁଦ୍ଧ ସ୍ଫଟିକ ପରାୟ ।
ଧବଳ ସରଳ ନୀଳ ଲୋହିତ ପିଙ୍ଗଳ
ବିରାଜଇ ଫଣୀମଣି ସପତ ମଣ୍ଡଳ ।
ଅଣଚାଶ ବର୍ଣ୍ଣ ଦେହ ବହଇ ତୋ ସନ୍ଧ୍ୟା
ଜପତପ ଧ୍ୟାନ ଲୟ ଯୋଗ ପଞ୍ଚମୁଦ୍ରା ।
ଅକାଳ ଅକାମ ତୁହି ଅଭୟ ଅବିଜ୍ଞ ।
ଦବି ଭୁବି ମଧ୍ୟେ ଦେବ ତୁ ଏକା ସର୍ବଜ୍ଞ ।
ନମୋ ବଳରାମ ଶୂନ୍ୟ ଭୁବନ ତୋ ହୃଦେ
ଷଡ଼ଋତୁ ପ୍ରକାଶଇ ତୋହର ପ୍ରସାଦେ ।
ନମୋ ନମୋ ବଳରାମ ଅନନ୍ତ ଧବଳ
ନମୋ ନମୋ ବଳରାମ ସିଦ୍ଧ ସାଧ ମୂଳ ।
ରୋହିଣୀ ନନ୍ଦନ ଦେବ ନାହିଁ ତୋର ମାୟା
କେହି ବାରି ନ ପାରନ୍ତି ଶୂନ୍ୟ ତୋର କାୟା ।
ମୁକ୍ତିର କାରଣ ନାଥ ଶରଣ ରକ୍ଷଣ
ସଂସାର ମଉଳି ଦେବ ଜୟ ସଙ୍କର୍ଷଣ ।
ସେ ପ୍ରଭୁ ଶ୍ରୀରାମଚନ୍ଦ୍ର ଚରଣେ ପ୍ରଣମି
ଶାରଳା ଦାସକୁ ବେଗେ ଉଦ୍ଧର ତୁ ସ୍ୱାମୀ ।



## ଅର୍ଜୁନର ପୁନର୍ଜୀବନ ଲାଭ ଓ ସମସ୍ତଙ୍କ ମହାନନ୍ଦ

ଶୁଣ ମନୁ କହନ୍ତି ଯେ ଅଗସ୍ତି ମହାତ୍ମା
ବଳରାମଙ୍କୁ ଅନେକ ସ୍ତୁତି କଲେ ବ୍ରହ୍ମା ।
ବୋଲନ୍ତି ଯେ ବଳରାମ ଶୁଣ ବେଦବର
ସଂସାର ନାଶ କରୁଛି ଏହି ଦେବ ହର ।
ଦୁଷ୍ଟଙ୍କୁ ବର ଦେଇ ଏ ସବୁ କରେ ନାଶ
ଏହାକୁ ନାଶିଲେ ଏଥେ ଆମ୍ଭର କି ଦୋଷ ।
ପଦ୍ମଯୋନି ରାମଙ୍କୁ ଯେ କରଇ ଦଇନୀ
ରୁଦ୍ର ଦେବତାଙ୍କୁ କୋପ ଛାଡ଼ ଦେବସ୍ୱାମୀ ।
ବ୍ରହ୍ମାଙ୍କ ବଚନେ ତୋଷ ହେଲେ ନୀଳାମ୍ବର
ଅର୍ଜୁନକୁ ଜୀଆଇ ତୁ ଦିଅ ବେଦବର ।
ବଦନ୍ତି ବ୍ରହ୍ମା ତୁ ଶାନ୍ତି ହୁଅ ସଙ୍କର୍ଷଣ
ଅର୍ଜୁନକୁ ଜୀଆଇବା ଆମ୍ଭେ ଏହିକ୍ଷଣ ।
ଶିବ ରାମ ଏ ଦୁହିଙ୍କ କୋପ କରି ଶାନ୍ତି
ଯମକୁ ଯେ ସୁମରନ୍ତି ଧ୍ୟାନେ ବେଦପତି ।
ସଂଯମନୀପୁର ତେଜି ବିଜେ ନାଶକର
ପାଦ୍ୟ ଅର୍ଘ୍ୟ ଦେଇ ବନ୍ଦି ଦେବ ହରିହର ।
ବ୍ରହ୍ମାର ଚରଣ ତଳେ କୃତାନ୍ତ ପ୍ରଣମି
ବୋଲେ କିମର୍ଥେ ସ୍ମରଣ କଲୁ ମୋତେ ସ୍ୱାମୀ
ତୁ ଦେବ ଅନାଦି ସିଦ୍ଧ ନବ ସୃଷ୍ଟିକର୍ତ୍ତା
ଅସ୍ତୁକାର ପୁରୁଷ ତୁ ବିହନ୍ତା ବିଧାତା ।
ଆଗେ ବ୍ରହ୍ମା ପଛେ ତୁହି ବିରଞ୍ଚି ବକତା
ବାମ ଡାହାଣେ ବଦନ ଶୋହେ ତୋର ଧାତା
ପୂର୍ବ ବଦନ ତୁ ଦେବ କଲୁ ବେଦ ସାଧ
ଉତ୍ତର ବଦନୁ ଜାତ କଲୁ ସାମବେଦ ।
ଅଥର୍ବ ବେଦ ପଶ୍ଚିମ ବଦନୁ ତୋ ଜାତ
ଋକବେଦ ତୋ ଦକ୍ଷିଣ ବଦନୁ ସମ୍ଭୁତ ।
ସଂସାର ଜନେ କରନ୍ତି ତୋ ବଦନେ ପୂଜା
କାଷ୍ଠ ପାଷାଣ ମୃତ୍ତିକା ରୂପ ଆଦି ଦ୍ୱିଜା ।
ତୋତେ ପୂଜିବାକୁ ବେଦ ମନ୍ତ୍ର ନାହିଁ କିଛି
ତେଣୁ ତୁ ଆନ ପୂଜାହିଁ ଭୋଗହିଁ ନ ପୁଛି ।
ନ ଜାଣି ପଣ୍ଡିତମାନେ ହେଉଥାନ୍ତି ବଣା
ରୁଦ୍ରର ଶାପେ ଅପୂଜା କେବଳ କହଣା ।
ବିଧାତା ପୁରୁଷ ବଜ୍ର ଅଭେଦ୍ୟ ତୋ କାୟ
ଆନର ଶାପକୁ ଦେବ ତୋର କିସ ଭୟ ।
ତୋହର ଶାପ ସଂସାର ପୂଜାର ଅଭୋଗୀ
ସର୍ବଧାରଣ ପୁରୁଷ ତୁ ପରମ ଯୋଗୀ ।
ବଦନ୍ତି ଯେ ପିତାମହ ଯମ ମୁଖ ଚାହିଁ
ନାଗାର୍ଜୁନ ଶସ୍ତ୍ରାଘାତେ ପାର୍ଥ ଛିଡ଼ିଯାଇ ।
ହରିହର ସମର ଯେ ତହିଁର ନିମନ୍ତେ
ପୃଥ୍ୱୀନାଶ ଯାଉଅଛି ତାଙ୍କ ଶରାଘାତେ ।
ତୁହି ଏବେ ଦିଅ କିନା ବାସବରି ପ୍ରାଣ
ତୋ ଆଜ୍ଞାରେ ଧନଞ୍ଜୟ ବର୍ତ୍ତୁ ଏହିକ୍ଷଣ ।
କୁନ୍ତୀଙ୍କ ନନ୍ଦନ ସେହି ପରହିତକାରୀ
ମନ୍ଦାଗ୍ନି ବ୍ୟାଧିରୁ ଅଗ୍ନି ଦେବଙ୍କୁ ଉଦ୍ଧାରି ।
ଗୋସିଂହକୁ ବଧକରି ରଖିଲା ଦ୍ୱାରକା
କୁମ୍ଭକୁ ନାଶି କୈଳାସ ରଖିଲା ସେ ଏକା ।
ଧରାଭାର ଉଶ୍ୱାସିବ ଏ ଭାରତ ଯୁଦ୍ଧେ
ଅନେକ ଦୁଷ୍ଟ ନାଶିବ ପୁଣି ରଣମଧ୍ୟେ ।
ଧନୁର ହୁଳେ ଧଇଲା ସପତ ବ୍ରହ୍ମାଣ୍ଡ
କିଞ୍ଜିତ ସଂଗ୍ରାମେ ହୋଇଅଛି ବେନିଖଣ୍ଡ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଏ ଅଟେ ଏକ ଜଣେ
ଦ୍ୱାପରେ ଭାରୋଇ ମଲ୍ଲ ରହୁ ଏହି ପ୍ରାଣେ ।
ବେଗେ ତାର ଜୀବଗୋଟି ଛାଡ଼ିଦିଅ ଯମ
ସଂସାରର ହିତ ହେଉ ରକ୍ଷାକର ଧର୍ମ ।
ପିତାମହ ବଚନରେ ବୋଲେ ନାଶକର
ଏ ମୋହର କଥାଗୋଟି ଅଟେ ଅଗୋଚର ।
ମାତାର ଶାପେ ଗଳିତ କୁଷ୍ଠବ୍ୟାଧି ବିଧି
ତିନିଯୁଗ ଗଲା କିଛି ନ କହିଲ ବୁଦ୍ଧି ।
ଈଶ୍ୱର ବୋଇଲେ ତୁ କି ମାତୃଦ୍ରୋହ କଲୁ
କିପାଇଁ ଅଷ୍ଟାଙ୍ଗେ ଏଡ଼େ ଶାପ ତୁ ପାଇଲୁ ।

କରପତ୍ର ଯୋଡ଼ି ତାଙ୍କୁ କହେ କୃତାନ୍ତକ
ଦକ୍ଷ ପ୍ରଜାପତିର ଯେ କନ୍ୟା ଷାଠିଏକ ।
ଧର୍ମକୁ ପ୍ରଦାନ କଲେ ସେ ଦଶ ଦୁହିତା
ତେର କନ୍ୟା ହେଲେ ଋଷି କଶ୍ୟପ ବନିତା ।
ସତାଇଶ କନ୍ୟା ବସି ବିଭା ହେଲେ ଶଶୀ
ଉମାକନ୍ୟା ବିଭା ହେଲେ ଦେବ କାଶୀବାସୀ
ସ୍ୱାହା ସ୍ୱଧା ବେନି ହେଲେ ଅଗ୍ନିର ଯୁବତୀ
ଏକ ଦୁହିତାକୁ ବିଭା ହେଲେ ପ୍ରଜାପତି ।
ବ୍ରହ୍ମା ସାବିତ୍ରୀ ବରୁଣ ନେଲେ ନୀରବତୀ
କୁବେର ଦେବତା ବିଭା କଲେ ହୀରାବତୀ ।
ଆଦିତ୍ୟ ଦେବତା ସଂଜ୍ଞା କନ୍ୟା ବିଭା କଲା
ଏକାଦଶ କୁଆଁରିକି ଷାଠିଏ ସେ ଦେଲା ।
ହେମା ନାମେ କନ୍ୟା ହେଲା ପରମା ଯୋଗିନୀ
ବିଭା ନୋହି ତପ କଲା ବସି ସେ କାମିନୀ ।
ଆଦିତ୍ୟ ଦେବତାଙ୍କର ସଂଜ୍ଞା ଯେ ବଲ୍ଲଭୀ
ନିଦାଘ ସହି ନ ପାରି ସେହି ମହାଦେବୀ ।
ସହି ନ ପାରିଲା ସୂର୍ଯ୍ୟ ତେଜ ମହାମାୟା
ଆପଣା ଶରୀରୁ ଜାତ କଲେ ଦେବୀ ଛାୟା ।
ଆଦିତ୍ୟ ପ୍ରକୃତି ମାନ ସବୁ ତାକୁ କହି
ଆଦିତ୍ୟର ବଲ୍ଲଭୀ ଗୋ ହୋଇଥାଅ ତୁହି ।
ଛାୟାକୁ ସମର୍ପି ସେହି ରହିଲେ ଗୋପନେ
ମେରୁ ମେଖଳେ ଲୁଚିଲେ ଆନ ଆନ ବର୍ଣ୍ଣେ ।
ଛାୟାକୁ ଚାହିଁ ରହିଲେ ଦିନକର ନାଥ
ବହିଗଲା ନବସସ୍ର ବରଷ ପର୍ଯ୍ୟନ୍ତ ।
ଯମ ଶନିଶ୍ଚର ଆମ୍ଭେ ସଂଜ୍ଞା ବେନିପୁତ୍ର
ଦୟାକରି ପାଳିଥାନ୍ତି ସେ ପୁଣି ଆମ୍ଭନ୍ତ ।
ଶ୍ରାବଣ କୃଷ୍ଣ ସପ୍ତମୀ ଶଉରୀବାସର
ଉତ୍ତରଭାଦ୍ର ନକ୍ଷତ୍ର ଅଟେ ସେ ଦିନର ।
ବିଷ୍ଟି ନାମେ କରଣ ସୁକର୍ମା ନାମେ ଯୋଗ
କକଡ଼ା ସଙ୍କରାନ୍ତିର ନବଦିନ ଭୋଗ ।
ଛାୟାଦେବୀ ତୁଲେ ଯାଇ କଳି କଳି ମୁହିଁ
ଭର୍ତ୍ସନା କରି ଛାୟାକୁ ଗାଳି ମୁଁ ଦେଲଇଁ ।
ସେହି ଯେ ଅନେକ ରାଗେ ଝିଙ୍ଗାସିଲେ ମୋତେ
ସହି ନ ପାରି ମାଇଲି ମୁହିଁ ପଦାଘାତେ ।
ରାଗେ ଛାୟା ଆଜ୍ଞା ଦେଲେ କରି ଅଶ୍ରୁପାତ
ଯାଅ ନାଶକର ହେଉ ତୋ ପାଦେ ଗଳିତ ।
ସ୍ୱାମୀ ମାତା ଶାପ ମୁହିଁ ନ ପାରିଲି ମେଣ୍ଟି
ସେହି ଦୋଷେ ହୋଇଲଇଁ ମୁହିଁ ବଡ଼କୁଷ୍ଠୀ

ବିରଞ୍ଚି ନାରାୟଣ ମୋ ଦେଖିଣ ଏ ଶାସ୍ତି
ବିଚାରିଲେ ହୋଇଲା ତ ଏ ବଡ଼ ଅନୀତି ।
ପୁତ୍ରମାନେ ମାତାକୁ ତ କରନ୍ତି ବିମୁଖ
ମାତା ଶାପେ ପୁତ୍ର କେବେ ନ ଲଭଇ ଦୁଃଖ ।
ମାତାର ଶାପ ଯଦ୍ୟପି ପୁତ୍ରକୁ ପଡ଼ିବ
କେମନ୍ତେ ସଚରାଚର ପୃଥିବୀ ରହିବ ।
ଏ ଅବା ମୋ ପୁତ୍ରଙ୍କର ନୁହେଁ ଗର୍ଭଧାରୀ
ଧ୍ୟାନେ ଜାଣିଲେ ସେ ଦେବ ଗଗନ ବିହାରୀ ।
ନିୟତ ଶାପ ଏହି ତ ନୁହଇ ଯୁକତେ
ଛାୟା ପରିଚାରୀ ହୋଇ ଖଟିଅଛି ମୋତେ ।
ସାଧୁ ସାଧବୀ ତୋହର ମହିମା ଦୁର୍ଲ୍ଲଭ
ଚିରକାଳ କଥା ରହୁ ଛାୟାର ବଲ୍ଲଭ ।
କୃତାନ୍ତକ ବୋଇଲେ ଯା ପଚାରିଲୁ ମୋତେ
ଶାପ ଚିରନ୍ତନ ତିନିଯୁଗ ପରିଯନ୍ତେ ।
ମୁହିଁ ଯେବେ ମୁକ୍ତ ହେବି ଜାଣ ଏ ପ୍ରସ୍ତାବେ
ଏ କଷଣୁ ପାରିକର ମୋତେ ମହାଦେବେ ।
ଶୁଣି ପରମ ସାନନ୍ଦ ହେଲେ ବିଶ୍ୱନାଥ
ଶ୍ରୀଚରଣେ ପୋଛିଦେଲେ ଯମ ପାଦରକ୍ତ ।
ଚୌତିରିଶ ଲକ୍ଷ ବର୍ଷ ଯମର ଯେ ବ୍ୟାଧି
ବିଶ୍ୱନାଥଙ୍କ ପ୍ରସାଦେ ଆରୋଗ୍ୟ ଅବଧି ।
ଜୟ ଜୟ ବିଶ୍ୱନାଥ ବ୍ୟାଧି ଉଦ୍ଧାରଣ
ଶଇଳଜାର ବଲ୍ଲଭ ସଂସାର ଧାରଣ ।
ଅନିତ୍ୟ ସଂସାର ମାୟା କୂଟରେ ରଚନା
ଏ ଭବଜଳକୁ ତୁହି ଏକା ନାବ ସିନା ।
ଏ ସଂସାର ଜଳ ହୁଏ ତୋହରେ ଯେ ଧ୍ୱଂସ
ଅନ୍ଧକ ଧ୍ୱଂସନ ନାଥ ପୂରାଅ ମାନସ ।
ପଞ୍ଚଦଶ ନୟନ ତୋ ପଞ୍ଚହିଁ ମଉଳେ
ମହାକୂଟ ବ୍ୟାଧିକି ତୁ ଖଣ୍ଡୁ କୁତୁହଳେ ।
ସର୍ବଦା ତୁ ସୁପ୍ରସନ୍ନ ହେ ଚନ୍ଦ୍ରଶେଖର
କାଳକୂଟ ଭକ୍ଷଣ ତୁ ନାଥ ବିଶ୍ୱେଶ୍ୱର ।
ପ୍ରଳୟ ନିବାରଣ ତୁ ପରମ ସାଧବ
ଏ ତୁମ୍ଭ ଚରଣେ ରହୁ ମୋ ବିନୟ ଭାବ ।
ସେହି ମହାଦେବ ଦେବ ଚରଣ ପ୍ରସାଦେ
ଶୂଦ୍ରମୁନି ଶ୍ରୀଶାରଳା ଦାସ ଗ୍ରନ୍ଥ ଛନ୍ଦେ ।
ନିଷ୍କଳଙ୍କ ହେଲା ଯହୁଁ ସେ ଯମ ଦେବତା
ଅର୍ଜ୍ଜୁନର ସନ୍ନିଧିରେ ବିଜେ ଘେନି ଧାତା ।
ଯୁଧିଷ୍ଠିର ଧରିଥିଲେ କଟିଭାଗ ଖଣ୍ଡ
ନାଗୁଣୀର ତହିଁ ଥିଲା ଅର୍ଜ୍ଜୁନର ମୁଣ୍ଡ ।

ପିତାମହ ଦେଇ ଦେଲେ ଜଡ଼ି ମହୌଷଧି
ଜଡ଼ିତ ଶରୀର ହେଲା ଧାତାବାକ୍ୟ ସାଧି ।
ନାଶକର ଦେବତା ଯେ ଦେଲେ ନିଜ ପ୍ରାଣ
କମଣ୍ଡଳୁ ପାଣି ସିଞ୍ଚି ଦେଲେ ବ୍ରହ୍ମା ପୁଣ ।
ଉଠ ହୋ ଅର୍ଜ୍ଜୁନ ବୋଲି ଶରୀର ଆଉଁଷି
ସାଷ୍ଟାମ ହୋଇ ଅର୍ଜ୍ଜୁନ ଉଠି ବେଗେ ବସି ।
ନୟନ ମଳି ଚାହିଁଲା ବୀର ଫାଲଗୁନି
ଦେଖିଲା ସେ ଅପ୍ରମିତ ମାନବ ସରନି ।
ହର ଗଣ୍ଡା ଜୀବ ଛାଡ଼ିଦେଲାକ କୃତାନ୍ତ
ନିଜ କାୟା ଘେନି ସେହି ଉଠିଲା ତୁରିତ ।
ପଳାଇ ପଶିଲା ହର ଉଦ୍ୟାନ କାନନେ
ଯୁଧିଷ୍ଠି ଦେବ ବୋଇଲେ ଶୁଣ ଫାଲଗୁନେ ।
ବସାଇ ଅଛନ୍ତି ଦେବ କୋଳେ ଅର୍ଜ୍ଜୁନକୁ
ସମସ୍ତ ଚରିତମାନ କହିଲେ ତାହାକୁ ।
ପାତାଳେ ବିଭା ହୋଇଲୁ ତୁ ଯେବଣ ବାଳୀ
ତାହାର ନନ୍ଦନ ନାଗାର୍ଜ୍ଜୁନ ମହାବଳୀ ।
ସେ ତୋତେ ନିରୋଧ କଲା ଯୁଦ୍ଧେ ସବ୍ୟସାଚୀ
ତହିଁପାଇଁ କୋପ କଲେ ଦେବ ଶିରୀବସି ।
ହରିହରଙ୍କ ସମର ହେଲା ତୋରପାଇଁ
ଦଣ୍ଡଘେନି ପଶିଲାକ ଯୁଦ୍ଧେ କୁରୁସାଇଁ ।
କର୍ଣ୍ଣ ଶଲ୍ୟ ଅଶ୍ୱତ୍ଥାମା ଶକୁନି ଆବର
ଶତଭ୍ରାତା ଘେନି ପଡ଼ିଅଛି କୁରୁବୀର ।
ରାମ ହରି ହର ପାଦ ବନ୍ଦି ଫାଲଗୁନି
ଦିଗପାଳଙ୍କ ଚରଣେ କରଇ ଦଇନୀ ।
ଗୋବିନ୍ଦ କହିଲେ କୋଳକରି ଅର୍ଜ୍ଜୁନକୁ
ଈଶ୍ୱର ଅନେକ କଲେ ପୌରୁଷ ପାର୍ଥକୁ ।
ଶୁଭ ଅନୁକୂଳେ ଶିରେ ଦେଲେ ନେଇ ଅର୍ଘ୍ୟ
ଅର୍ଜ୍ଜୁନ ବିନୟେ କହେ ପିତାମହ ଆଗ ।
ଜୀବନ ପାଇଲି ଦେବ ମୁଁ ତୋର ପ୍ରସାଦେ
ମୋହପାଇଁ ପଡ଼ିଛନ୍ତି କୁରୁସୈନ୍ୟ ଯୁଦ୍ଧେ ।
ଏମନ୍ତ ଜୀଆଇଁ ସ୍ୱାମୀ ଦେନ୍ତୁ ବେଦବର
କମଣ୍ଡଳୁ ଜଳ ସିଞ୍ଚିଦେଲେ ଧାତିକାର ।
ନବସୃଷ୍ଟି କର୍ତ୍ତା ଦେଲେ ସେ ଅମୃତ ଦୃଷ୍ଟି
ସାଷ୍ଟମ ହୋଇ ସମସ୍ତେ ଗଲେ ତହୁଁ ଉଠି ।
ଧାତା ବୋଇଲେ ହେ ପାର୍ଥ ଜୀବନ ତୋ ଧନ୍ୟ
ହରଷେ ବୋଇଲେ ବର ମାଗ ହୋ ଅର୍ଜ୍ଜୁନ ।
ଅର୍ଜ୍ଜୁନ ବୋଇଲେ ଯେବେ ହୋଇଲ ସଦୟ
ପଣ୍ଡୁ ବ୍ରହ୍ମହତ୍ୟା ଦୋଷ କରିଦେବ କ୍ଷୟ ।
ସ୍ୱର୍ଗ ପରାପତ ହେଉ ସେ ମୋର ପିତାଙ୍କୁ
ଅସ୍ତୁ ହେଉ ବୋଲି ବ୍ରହ୍ମା କହିଲେକ ତାକୁ ।
ଯମଙ୍କୁ ବୋଇଲେ ହେଲା ସର୍ବ ପାପ ଧ୍ୱଂସ
ଆଜହୁଁ ପଣ୍ଡୁଙ୍କୁ ସ୍ୱର୍ଗେ ଘେନି ତୁମ୍ଭେ ବସ ।
ଯମ ବୋଇଲା ପଣ୍ଡୁଙ୍କ କିଛି ଦୋଷ ନାହିଁ
ମୋ ପାପ ଖଣ୍ଡନ ପାଇଁ ଏହା କହି ମୁହିଁ ।
ପଣ୍ଡୁ ନୃପତି ପ୍ରସାଦେ ଖଣ୍ଡିଲି ଏ ବ୍ୟାଧି
ପରମ ମହାତ୍ମା ମୋର ପରମ ମୌଷଧି ।
ପଣ୍ଡୁଙ୍କୁ ସେ ବସାଇଲେ ସ୍ୱର୍ଗେ ନାଶକର
ନାଗଅର୍ଜ୍ଜୁନକୁ କୋଳେ ଘେନି ବେଦବର ।
ଅର୍ଜ୍ଜୁନ କୋଳରେ ନେଇ ଦେଲେ ବିଶ୍ୱନାଥ
ନାଗାର୍ଜ୍ଜୁନକୁ ଧ୍ୟାଳ ତୋର ବୀର ପାର୍ଥ ।
ନାଗାର୍ଜ୍ଜୁନକୁ ଆପଣା କୋଳେ ପାର୍ଥ ଘେନି
ମୁଖରେ ଚୁମ୍ବନ ଦେଇ ବୀର ଫାଲଗୁନି ।
ବହୁ ରୁଦ୍ର ସେବାକଲୁ ମୋର କୁଳ ସାଧୁ
ଲଭିଲୁ ଅକ୍ଷୟ ସ୍ୱର୍ଗ ହରଙ୍କ ପ୍ରସାଦୁ ।
ଏ କପିଳାସ ସ୍ୱର୍ଗରେ ଥାଅସି ରେ ବାଳ
ଈଶ୍ୱର ପ୍ରସନ୍ନେ ତୋର ତେଜ ଅନର୍ଗଳ ।
ଆମ୍ଭ ସଙ୍ଗେ ଥିଲେ ତୁହି ହେବୁ ଦ୍ୱନ୍ଦ୍ୱକାରୀ
ଦ୍ୱନ୍ଦ୍ୱେ ପଶିଲେ ଅବଶ୍ୟ ହେବୁ ପ୍ରାଣହାରୀ ।
ଈଶ୍ୱରଙ୍କୁ ସମର୍ପିଲେ ନାଗଅର୍ଜ୍ଜୁନକୁ
ହର ଦ୍ୱାରପାଳ କରି ରଖିଲେ ତାହାକୁ ।
ରାମ କୃଷ୍ଣ ଯୁଧିଷ୍ଠିର ଅର୍ଜ୍ଜୁନ ସହିତେ
ଘେନି କପିଳାସ ବିଜେକଲେ ବିଶ୍ୱନାଥେ ।
କଉରବ ସହିତରେ ବିଜେ କପିଳାସେ
ଅନେକ ଉତ୍ସବ କଲେ ବିଶ୍ୱବାସ ବାସେ ।
କରାଇଲେ ସମଦଣ୍ଡ ସହିତେ ଭୋଜନ
ସମସ୍ତ ଚରଚା କଲେ ଦେବ ତ୍ରିଲୋଚନ ।
ଅର୍ଜ୍ଜୁନକୁ କହି ଦେବ ଦେବ ଯେ ମୁରାରି
ଚଳନ୍ତେ ଆନନ୍ଦେ ତହୁଁ ଦ୍ୱାରାବତୀ ପୁରୀ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ଗଲେ ହସ୍ତିନାକୁ
ସନ୍ଧ୍ୟାବାଳୀ ପ୍ରଣିପାତ କଲା ଅର୍ଜ୍ଜୁନକୁ ।
ଅନେକ ଭକତି କରି ଖଟଇ ବିନୟେ
ଅଜ୍ଞାନରେ ଦ୍ରୋହକଲା ତୋତେ ତୋ ତନୟେ
ଅର୍ଜ୍ଜୁନ ବୋଇଲା ମୋର ଅଟେ ସେ ଆତ୍ମଜ
ମୋ ପୁତ୍ର ମୋତେ ଜିଣିଲା ଏଥିରେ କି ଲାଜ ।
ଆନ ହସ୍ତେ ଯେବେ ହୋଇଥାନ୍ତି ମୁଁ ଝିଙ୍ଗାସ
ତେବେ ସିନା ଅପମାନେ ହୋଇଥାନ୍ତି ଧ୍ୱଂସ ।

ତୁ ଏବେ ଯାଅ ଯା ସଖି ପାତାଳ ପୁରକୁ
ପୁଣିହିଁ କାଳେ ଦର୍ଶନ କରିବୁ ଆମ୍ଭଙ୍କୁ ।
ଅନେକ ଯେ ଧନରତ୍ନ ଦେଲେ ସବ୍ୟସାଚୀ
ନାଗୁଣୀକୁ ପୁରୁଷାର୍ଥ କଲେକ ଶ୍ରୀବତ୍ସି ।
ସାଧୁ ସାଧୁ ତୋ ଜୀବନ ତୋ ଚରିତ ଉଚ୍ଚ
ଏସନକ ସୁଲକ୍ଷଣେ ଜାତକଲୁ ବତ୍ସା ।
ତ୍ରୈଲୋକ୍ୟ ଜିଣନ୍ତା ଅଟେ ସେ ତୋହର ପତି
ଜିଣଇ ଇନ୍ଦ୍ର ଗୋବିନ୍ଦ ହର ପ୍ରଜାପତି ।
ତାକୁ ଜିଣିବାକୁ ତୋର ପୁତ୍ର ସାମରଥା
ଯୁଗେ ଯୁଗେ ରହିଲାଙ୍କ ଏ ତୋହର କଥା ।
ଆପେ ପାର୍ଥ ବାହୁଡ଼ାଇ ଦେଲା ସନ୍ଧ୍ୟାବାଳୀ
ପାତାଳ ପୁରକୁ ଗଲା ସେ ନାଗୁଣୀ ଚଳି ।
ବିଜେ ପାଣ୍ଡବ ବାରୁଣାବନ୍ତ ପୁଣ୍ୟସ୍ଥାନେ
ଅର୍ଜ୍ଜୁନ ଘେନି ହସ୍ତିନା ଗଲେ ଦୁର୍ଯ୍ୟୋଧନେ ।
ଧୃତରାଷ୍ଟ୍ର ବିଦୁର ଯେ ସଞ୍ଜୟ ସହିତେ
ଅର୍ଘ୍ୟଦେଲେ ଭାନୁମତୀ ଗାନ୍ଧାର ସମେତେ ।
ଅର୍ଘ୍ୟ ଦିଅନ୍ତି ଅର୍ଜ୍ଜୁନ ଶିରେ ସର୍ବ ବାଳୀ
ଦିଅନ୍ତି ହରଷ ହୋଇ ପୁଣ ହୁଳହୁଳି ।
ବାବୁରେ ବହୁତ ବ୍ୟଥା ପାଇ ଆମ୍ଭେ ଥିଲୁ
ଏ ପଞ୍ଚରାଜ୍ୟ ବୁଡ଼ିଲା ପ୍ରାୟ ଯେ ମଣିଲୁ ।
ଏବେ ଯେ ଧର୍ମ ଉଦିତ ହେଲା ବୀର ପାର୍ଥ
ଉଦ୍ଧରିଲୁ ସୋମବଂଶ କଲୁ ସର୍ବ ସାର୍ଥ ।
ହସ୍ତିନା ରାଜ୍ୟେ ଅନେକ ଉତ୍ସବ କରାଇ
ବହୁତ ଆନନ୍ଦେ ପୁରେ ଗଲେ କୁରୁସାଇଁ ।
ବହୁତ ଉତ୍ସବ ହେଲା ସେହି ପଞ୍ଚରାଜ୍ୟେ
ଅନ୍ନଛତ୍ର ଜଳଛତ୍ର ଲୋକେ କଲେ ବିଜେ ।
ଅର୍ଜ୍ଜୁନକୁ ଦେଖି ତହୁଁ ଦେଖି ଜନାର୍ଦ୍ଦନ
ବିଜୟେ ଶ୍ରୀରାମକୃଷ୍ଣ ଦ୍ୱାରକା ଭୁବନ ।
ସୁଧର୍ମା ସଭାରେ ବିଜେ କଲେ ବନମାଳୀ
ଅଇଲେକ କରେ ଅର୍ଘ୍ୟ ଘେନି ସର୍ବବାଳୀ ।
ଆନନ୍ଦରେ ଅଶ୍ରୁଜଳ ବହିପଡ଼େ କ୍ଷିତି
ଦେଖିବାକୁ ଧାଇଁଲେକ ହୋଇ ତୋଷମତି ।
ସାଧୁ ଅର୍ଜ୍ଜୁନ ବୋଲି ସେ ବହୁତ ପ୍ରଶଂସି
କେଉଁ ପାତକେ ହୋଇଲୁ ଏଡ଼େ ବଡ଼ ଦୋଷୀ
ଜଗତ ହିତ ପୁରୁଷ ଯାର ହିତକାରୀ
ବୀରବର ତ୍ରୈଲୋକରେ ନାହିଁ ତୋତେ ସରି ।
ମେରୁ ତୋଳିବାକୁ କେହୁ ହୋଇଲା ଶକ୍ତତା
ତୋ ପ୍ରତିଜ୍ଞା ଦେଖିବାକୁ ତୁହି ବଳବନ୍ତା ।
ଦ୍ୱାରକା ପୁରେ ଉତ୍ସବ କରନ୍ତି ଶ୍ରୀପତି
ଅନେକ ଅନ୍ନ ଭୋଜନ ଲୋକଙ୍କୁ ଦିଅନ୍ତି ।
ଆପଦ ଶାନ୍ତି ନିମନ୍ତେ କରାନ୍ତି ଆହୁତି
ବ୍ୟାଘ୍ର ଧୌମ୍ୟ ପୁରୋହିତ ସମସ୍ତେ ମିଳନ୍ତି ।
ଅର୍ଜ୍ଜୁନର ଶିରେ ଅର୍ଘ୍ୟ ଦେଲେ ସର୍ବେ ମିଳି
ଆୟୁ ନିମନ୍ତେ ବହୁତ ପୁଣ୍ୟଧ୍ୱନି ତୋଳି ।
ଦ୍ୱାରକାରେ ରହି ଦଶ ଦିବସ ପର୍ଯ୍ୟନ୍ତେ
ଅର୍ଜ୍ଜୁନକୁ ଘେନି କୃଷ୍ଣ ବିଜେ ଯମପ୍ରସ୍ଥେ ।
ଅନେକ ଉତ୍ସବ କଲେ ସେହି ପଞ୍ଚପ୍ରସ୍ଥେ
ହସ୍ତିନାରେ କୁରୁବଳ ପାଣ୍ଡବ ସହିତେ ।
କିଛିଦିନ ରହି ତହିଁ ଗଲେ ଜନାର୍ଦ୍ଦନ
କୌରବେ ପାଣ୍ଡବେ ତାଙ୍କୁ କଲେ ବହୁମାନ୍ୟ ।
ଏଥୁଅନ୍ତେ ଶୁଣିମା ହେ ମନୁ ମହାରାଜ
ନିଜ ସ୍ଥାନକୁ ଯେ ଗଲା ଆଦିତ୍ୟ ତନୁଜ ।
ସଂଯମନୀପୁରେ ବିଜେକଲେ ନାଶକର
କୋଟି ଅର୍ଘ୍ୟ ଦେଲା ନେଇ ପଣ୍ଡୁରାଜା ଶିର ।
ଅନେକ ରତ୍ନ କଲାକ ଅଙ୍ଗେ ଆଭରଣ
ସେବକ ପ୍ରାୟେ ଖଟିଲା ତାହାଙ୍କ ଚରଣ ।
ଅନେକ ପ୍ରଶଂସା ତାକୁ କଲା ନାଶକର
ସାଧୁ ସାଧୁ ପଣ୍ଡୁରାଜା ଜୀବନ ତୋହର ।
ସୁପୁତ୍ରକୁ ଉପୁଜାଇ ହେଲୁ ବ୍ରହ୍ମା ସମ
କନକ ଆସନେ ନେଇ ବସାଇଲେ ଯମ ।
ପଣ୍ଡୁଙ୍କୁ ଅନେକ ମତେ କରାଇ ସେ ପୂଜା
ଅପସରାକୁଳ ଘେନି ଖଟେ ଯମରାଜା ।
ଶୁଣ ହେ ପଣ୍ଡିତଜନେ ସୁପୁତ୍ରର କଥା
ଆପେ ତରଇ ତାରଇ ତା ପିତୃ ଦେବତା ।
ବଂଶ ନିଷ୍କଳଙ୍କ ତାର ହୁଅଇଟି ଭଲେ
ପିତୃଲୋକ ତରଇ ସେ ଶମନ ବୋଇଲେ ।
ଅବିକଳେ ବର୍ତ୍ତନ୍ତି ଯେ ତାର ପିତୃମାନେ
ସମସ୍ତ କାରଣ ହୁଏ ଧର୍ମ ପରସନ୍ନେ ।
ଜୟ ତୁ ଜୟ ତୁ ଦେବ ଦେବ ନିରଞ୍ଜନ
ତୋହର ବର୍ତ୍ତନ୍ତି ସିନା ଏ ସକଳଜନ ।
ତୋହର କୃପାରେ ଲୋକ ହୁଅଇ ପଣ୍ଡିତ
ନିମିଷକେ ଦୁବ ପୁଣି ହୁଏ ମେରୁବତ ।
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତୋ ପୟରେ
ଚିତ୍ତ ରଖି ସଭାପର୍ବ ସାରିଲା ଏଠାରେ ।

ଇତି ଶ୍ରୀ ମହାଭାରତ ସଭାପର୍ବ ସମ୍ପୂର୍ଣ୍ଣ

# ମହାଭାରତ

## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି। କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ। ଏଥିରେ ସ୍ୱତନ୍ତ୍ର କମିଶନ ବ୍ୟବସ୍ଥା ଅଛି।

## ଅଷ୍ଟାଦଶ ପୁରାଣ

- ବ୍ରହ୍ମପୁରାଣ ସେଟ୍
- ପଦ୍ମପୁରାଣ ସେଟ୍
- ମହାବିଷ୍ଣୁ ପୁରାଣ
- ଶିବ ପୁରାଣ ସେଟ୍
- ନାରଦ ପୁରାଣ
- ମାର୍କଣ୍ଡେୟ ପୁରାଣ
- ଅଗ୍ନି ପୁରାଣ
- ଭବିଷ୍ୟ ପୁରାଣ
- ବ୍ରହ୍ମବୈବର୍ତ୍ତ ପୁରାଣ ସେଟ୍
- ଲିଙ୍ଗ ପୁରାଣ
- ବରାହ ପୁରାଣ
- ସ୍କନ୍ଦ ପୁରାଣ
- ବାମନ ପୁରାଣ
- କୂର୍ମ ପୁରାଣ
- ମତ୍ସ୍ୟ ପୁରାଣ
- ଗରୁଡ଼ ପୁରାଣ
- ବ୍ରହ୍ମାଣ୍ଡ ପୁରାଣ
- ଭାଗବତ ସେଟ୍



ପ୍ରକାଶକ-
ଧର୍ମଗ୍ରନ୍ଥ ଷ୍ଟୋର (TM)
ଅଲିଶା ବଜାର, କଟକ-୨
ଫୋନ୍ : (୦୬୭୧)୨୫୦୮୨୯୬
website : www.dharmagranthastore.com